# ସମ୍ବଲପୁର
## ଭାଷା ସାହିତ୍ୟ ସଂସ୍କୃତି



# ସମ୍ବଲପୁର

## ଭାଷା ସାହିତ୍ୟ ସଂସ୍କୃତି

ସଂପାଦନା

ପ୍ରଫେସର ଆଦିକନ୍ଦ ସାହୁ




ସମ୍ବଲପୁର ବିଶ୍ୱବିଦ୍ୟାଳୟ

# ସମ୍ବଲପୁର
## ଭାଷା ସାହିତ୍ୟ ସଂସ୍କୃତି

ସଂପାଦନା
ପ୍ରଫେସର ଆଦିକନ୍ଦ ସାହୁ
ଉପାଧ୍ୟକ୍ଷ ଓଡ଼ିଆ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତି-ବିହାର, ବୁର୍ଲା

ପ୍ରକାଶକ -
ସମ୍ବଲପୁର ବିଶ୍ୱବିଦ୍ୟାଳୟ

ମୁଦ୍ରଣ -
ଇମ୍ପ୍ରେସନ୍ସ, ପାନସଡ଼କ, ସମ୍ବଲପୁର

ଡ଼ି.ଟି.ପି.
ଅଙ୍କିତ କମ୍ପୁଟର୍ସ, ନନ୍ଦପଡ଼ା, ସମ୍ବଲପୁର

ପ୍ରାପ୍ତିସ୍ଥାନ :
ପ୍ର. ଭୁବନେଶ୍ୱର ବେହେରା
କେନ୍ଦ୍ରୀୟ ପାଠାଗାର,
ସମ୍ବଲପୁର ବିଶ୍ୱବିଦ୍ୟାଳୟ

ମୂଲ୍ୟ- ଟ.୩୦୦.୦୦
(ତିନିଶତ ଟଙ୍କା ମାତ୍ର)

# ଉତ୍ସର୍ଗ

ସର୍ପ୍ତର୍ଷିର ପ୍ରତିଷ୍ଠାତା

ବିଶିଷ୍ଟ ସାରସ୍ୱତ ପୁରୁଷ

ସ୍ୱର୍ଗତ ପ୍ରଫେସର ଭୁବନେଶ୍ୱର ବେହେରାଙ୍କ

ଅମ୍ଳାନ ସ୍ମୃତିରେ....

ପ୍ରଫେସର ମାଧବ ଚନ୍ଦ୍ର ଦାଶ
କୁଳପତି
ସମ୍ବଲପୁର ବିଶ୍ୱବିଦ୍ୟାଳୟ




ଜ୍ୟୋତି ବିହାର, ସମ୍ବଲପୁର
୭୬୮ ୦୧୯, ଓଡ଼ିଶା

# ପ୍ରସ୍ତାବନା

ବିଶ୍ୱବିଦ୍ୟାଳୟ ପ୍ରକାଶନ ବିଭାଗ ତରଫରୁ ଓଡ଼ିଶାର ପଶ୍ଚିମ ପ୍ରାନ୍ତ ସାଂସ୍କୃତିକ ମଣ୍ଡଳର ଭାଷା ସାହିତ୍ୟ ଓ ତା'ର ବିବିଧ ସାଂସ୍କୃତିକ ରୂପକୁ ନେଇ ପ୍ରକାଶିତ ହେବାକୁ ଯାଉଥିବା 'ସମ୍ବଲପୁର - ଭାଷା ସାହିତ୍ୟ ସଂସ୍କୃତି' ଶୀର୍ଷକ ଗ୍ରନ୍ଥ ପରିଯୋଜନା ବିଷୟରେ ମୁଁ ଅତ୍ୟନ୍ତ ଆନନ୍ଦିତ ଓ ଆଶାବାଦୀ । ଯେ କୌଣସି ଭୂଖଣ୍ଡର ସାଂସ୍କୃତିକ ପରିଚୟ ହିଁ ସେ ଭୁଖଣ୍ଡକୁ ଇତିହାସର କାଳ ପ୍ରବାହରେ ପ୍ରକୃତ ଭାବେ ପରିଚିତ କରାଇଥାଏ ।

ଗୋଟିଏ ଭୂଖଣ୍ଡର ସଂସ୍କୃତି ଓ ତା'ର ଅତିବଡ଼ ଐତିହ୍ୟ ସେହି ଭୁଖଣ୍ଡର ଅସଲ କୃଷ୍ଟି ବା ସଂସ୍କାରର ସ୍ମାରକୀ । ଜଣେ ବ୍ୟକ୍ତିର ହେଉ କି ଗୋଟିଏ ଜନପଦର ହେଉ ତା'ର ସାଂସ୍କୃତିକ ଜୀବନବୋଧ ହିଁ ତା'କୁ ପ୍ରକୃତରେ ବଞ୍ଚାଇ ରଖେ ।

ଓଡ଼ିଶା ପ୍ରଦେଶର ପଶ୍ଚିମ ପ୍ରାନ୍ତ ତା'ର ଭୂମି ସଂଲଗ୍ନ ବିପୁଳ ଲୋକ ସଂସ୍କୃତି ଯୋଗୁଁ ଅତ୍ୟନ୍ତ ସମୃଦ୍ଧ । ଏହି ସାଂସ୍କୃତିକ ମଣ୍ଡଳର ଲୋକ ସାହିତ୍ୟ ଅତ୍ୟନ୍ତ ଚିତ୍ତଉଲ୍ଲାସକ ମଧ ।

ପରିବର୍ତ୍ତିତ ସମୟ ଖଣ୍ଡର ଦ୍ରୁତ ନଗରୀକରଣ ପ୍ରକ୍ରିୟା ପଲ୍ଲୀ ଜୀବନର ନିବିଡ଼ ଓ ନିରାମୟ ଜୀବନଭୋଗକୁ ଆଜି ପଳେ ପଳେ ବିପନ୍ନ କରୁଛି । ନଗରର ଆବର୍ଜ୍ଜନା ଆଜି ପୃଥିବୀକୁ ଯେପରି ପ୍ରଦୂଷିତ କରୁଛି ସହର ସଭ୍ୟତାର କୋଳାହଳ ମୟ ଆଡମ୍ବରତା ସେହିପରି ସହଜ ସୁନ୍ଦର ଲୋକଜୀବନର ପ୍ରବାହକୁ ତ ପ୍ରଭାବିତ କରୁଛି । ଲୋକକଥା ଓ ଲୋକଗୀତ କ୍ରମଶଃ କେମିତି ଲୋକମୁଖରୁ ନିଶ୍ଚିହ୍ନ ହେବାକୁ ବସିଲାଣି । ତାହାକୁ ଏହି ଦାରୁଣ ଅବକ୍ଷୟ କବଳରୁ ରକ୍ଷା କରିବାର ଗୁରୁତମ ଦାୟିତ୍ୱ ଆଜି ଆମ ମାନଙ୍କର ।

ଯେ କୌଣସି ପ୍ରକାଶନର ମୂଳ ଲାଭ ହେଉଛି ସାମାଜିକ ବିବର୍ତ୍ତନ ପ୍ରକିୟାର ଐତିହାସିକତାକୁ ଚିହ୍ନଟ କରିବା । କାଳ ପ୍ରବାହର ସଭ୍ୟତା ସଂସ୍କୃତିର ରୂପରେଖ ବଦଳି

ଯାଏ । ସେହି ପରିବର୍ତ୍ତନର ସ୍ୱରୂପକୁ ନାନା ଦୃଷ୍ଟିରୁ ଅନୁଶୀଳନ କରିବାର ଯେଉଁ ଆବଶ୍ୟକତା ରହିଛି ସେହି ଦୃଷ୍ଟିରୁ ଏହି ଗ୍ରନ୍ଥଟି ସବୁମତେ ପ୍ରାମାଣିକ ହୋଇ ପାରିବ ବୋଲି ଆଶା କରାଯାଇ ପାର ।

ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରକାଶନ ବିଭାଗ ୧୯୮୨ ମସିହାରେ ପ୍ରକାଶିତ ସପ୍ତର୍ଷିର ସମ୍ବଲପୁରୀ ଭାଷା ସାହିତ୍ୟ ବିଶେଷାଙ୍କକୁ ସାଂପ୍ରତିକ ପ୍ରୟୋଜନୀୟତା ଦୃଷ୍ଟିରୁ ପୁସ୍ତକ ରୂପ ଦେଉଥିବାରୁ ଏହା ସମସ୍ତଙ୍କ ପାଇଁ ଏକ ଉତ୍ସାହ ଜନକ ବିଷୟ ନିଶ୍ଚୟ । ପୁଣି ସପ୍ତର୍ଷି ପତ୍ରିକାର ପ୍ରାଣ ପ୍ରତିଷ୍ଠାତା ଓ ପ୍ରଥମ ମୁଖ୍ୟ ସଂଯୋଜକ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ସ୍ୱର୍ଗତ ପ୍ରଫେସର ଭୁବନେଶ୍ୱର ବେହେରାଙ୍କ ଉଦ୍ଦେଶ୍ୟରେ ଏହି ଭାଷା ସାହିତ୍ୟ ସଂସ୍କୃତି ସଂପର୍କିତ ଗ୍ରନ୍ଥଟି ଉତ୍ସର୍ଗୀକୃତ ହୋଇଥିବାରୁ ଗ୍ରନ୍ଥ ପ୍ରକାଶନଟି ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଛି ।

ଗ୍ରନ୍ଥଟି ସଂସ୍କୃତି ପ୍ରେମୀ ଗବେଷକ ଗବେଷିକା ତଥା ପାଠକ ପାଠିକାଙ୍କ ନିକଟରେ ଆଦୃତ ହୋଇ ପାରିଲେ ପ୍ରକାଶନର ଉଦ୍ଦେଶ୍ୟ ସାର୍ଥକ ହେଲା ବୋଲି ବୁଝିବାକୁ ପଡିବ ।

ବିଶ୍ୱବିଦ୍ୟାଳୟର ଏ ପ୍ରକାର ସାରସ୍ୱତ ଉଦ୍ୟମରେ ସମସ୍ତେ ଆନ୍ତରିକ ସହଯୋଗ କରିବେ ବୋଲି ମୁଁ କାମନା କରୁଛି ।

ଜ୍ୟୋତି ବିହାର
ସରସ୍ୱତୀ ପୂଜା
ତା. ୬.୨.୨୦୦୩

ମାଧବ ଚନ୍ଦ୍ର ଦାଶ
(ମାଧବ ଚନ୍ଦ୍ର ଦାଶ)
କୁଳପତି

# ପୂର୍ବରୁ କିଛିଅଦ...........

ଜଣକର ସଂସ୍କୃତି ସଂପନ୍ନତା ତା ମଣିଷ ପଣିଆର ବଡ ପରିଚୟ । ମଣିଷର ଜନ୍ମଜାତକ ସହିତ ତା'ର ବଂଶପରିଚୟ ତା'ର କୌଳିନ୍ୟ ତା'ର ପରମ୍ପରା ଯୋଡା ହୋଇଥାଏ ।

ଜୀବନ ବଞ୍ଚିବା ସହିତ ଜଣକର ସଂସ୍କୃତି ଓ ସାମାଜିକତାର ସମ୍ବନ୍ଧ ଅତ୍ୟନ୍ତ ନିବିଡ଼ । ଭାଷା ସାହିତ୍ୟକୁ ଯେପରି ଜଡିଧରେ ସାହିତ୍ୟ ସେହିପରି ସେ ଅଞ୍ଚଳର ସଂସ୍କୃତି ସହିତ ଯୋଡି ହୋଇଥାଏ ।

ସଂସ୍କୃତି ଆଗ, ସାହିତ୍ୟ ପଛ । ଚଳଣି ସହିତ ସଂସ୍କୃତି ମିଶି ରହିଥାଏ । ପର୍ବପର୍ବାଣି ସବୁ ଆମ ଲୌକିକତା, ଆମ ଚଳଣିର ଏକ ଏକ ପ୍ରତିରୂପ । ପୁଣି ଗୋଟେ ଅଞ୍ଚଳର ଭୂଗୋଳ ସହିତ ତା'ର ଇତିହାସର ଆତ୍ମିକ ସମ୍ବନ୍ଧ ରହିଛି । ଯେ ବଣ ପାହାଡ଼, ଆକାଶ ଓ ବିସ୍ତୀର୍ଣ୍ଣ ଦିଗ୍‌ବଳୟକୁ ସବୁଦିନେ ଦେଖେ ତା'ର ଚେତନା ଅଲଗା ପ୍ରକାରର ହୋଇଥାଏ ନିଶ୍ଚୟ ।

ସବୁଦିନେ ପକ୍ଷୀର ଗୀତ ଶୁଣୁଥିବା ମଣିଷମାନେ କେତେ ଭାଗ୍ୟବାନ ସତରେ । ସେମାନେ ଆକାଶରେ ଉଡି ଯାଉଥିବା ଚଢ଼େଇ ସବୁକୁ, ସେମାନଙ୍କ ନାନାବିଧ ଶ୍ରବଣସୁଖ ଦାୟକ କାକଳିକୁ ନିଜ ମନ ଓ ଚେତନାକୁ ନେଇ ଆସି ପାରନ୍ତି । ଖୋଲା ପଡିଆ, ଅସରନ୍ତି ଧାନବିଲ, ଅସୁମାରୀ ଆକାଶରୁ ଜଣେ ଯେତେ ଭାବ ସଂପତ୍ତି ଗୋଟାଇପାରେ ତାହା ଅତୁଳନୀୟ ସତରେ । ଜଣେ ଦୂରପ୍ରାନ୍ତୀୟ ପଲ୍ଲୀବାସୀ ପାଇଁ ସର୍ବଦା ଏହି ସୁଯୋଗ ରହିଛି ।

ଏମିତି ଅନ୍ତରୀଣ ଉପଲବ୍ଧିର ସଶବ୍ଦ ଉଚ୍ଚାରଣ ହେଉଛି ଆମର ଛନ୍ଦବଦ୍ଧ, ସ୍ୱରବଦ୍ଧ ସଙ୍ଗୀତ ସବୁ । ସମ୍ବଲପୁରୀ ଗୀତସବୁ କେତେ ମନ ମତାଣିଆ ଲାଗେ ସେ ଦୃଷ୍ଟିରୁ । ଭାବ ଭାବନାର ଅନ୍ତରକୁ ସିକ୍ତ କରିଦିଏ । ପ୍ରାଣକୁ ଆତ୍ମୀୟତାରେ ଭରିଦିଏ । ମନ ଓ ଆତ୍ମାରେ ଫୁଲ ଫୁଟେଇ ଦିଏ ।

ସମ୍ବଲପୁରର ଭାଷାଟି କେମିତି ଭାରି ଆପଣାର ଲାଗେ । ଶ୍ରଦ୍ଧାରେ ସଂପର୍କିତ ହେବାର ଇଚ୍ଛା ଜଗାଏ ।

ରସରକେଲି, ଡାଲଖାଇର ତାଳେ ତାଳେ ମହାପାର୍ବଣୀ ଗୀତ ହୁଏ । ଚତୁର୍ବ୍ବର୍ଗ ପ୍ରାଣବନ୍ତ ଲାଗେ । ଅବସାଦ ଠାରୁ ଘୁଞ୍ଚି ଆସିବା ପାଇଁ ମନ ଡାକେ । ଆନନ୍ଦ ଟିକକ ପାଇଁ ତ ମଣିଷର ଏ ଅସରନ୍ତି ଆୟୋଜନ । କେଡ଼େ ଆନନ୍ଦ ଉଲ୍ଲାସର ଏ ଗୀତ ସତରେ । ଆବିଷ୍ଟ କରିଦିଏ ।

ସେ ଗୀତର ତାଳମାନ ସବୁ ଆହୁରି ଚିତ୍ତ ପ୍ରବୋଧକ । ଏ ମଣ୍ଡଳରେ ନାଚିବା ଗାଇବା ତେଣୁ ଆନନ୍ଦମୟ ଜୀବନର ଅନ୍ତସ୍ଥଳରୁ ଉତ୍ସାନ୍ତରିତ ହୋଇ ଆସିଛି ।

ତୁମୋ ବଉଲୀର ସମ୍ବୋଧନ କୋଟି ଯୁଗର ଆତ୍ମୀୟତା ଜଗାଏ । ସ୍ନେହରେ, ସମ୍ବେଦନଶୀଳତାରେ ଶ୍ରୋତାର ମନ ଭରିଯାଏ । କେତେ ମମତା, କେତେ କାରୁଣ୍ୟ, କେତେ ହୃଦୟବତ୍ତାର ଏ ଗୀତ । ଶ୍ରୋତାର ପ୍ରାଣକୁ ବିଗଳିତ କରିଦିଏ । ଢ଼ାବର ତାଳେ ତାଳେ ରାତି କେମିତି ମାଦକ ଭରା ଲାଗେ । ବିରହ ମିଳନର ପାର୍ବଣୀ ଗୀତ ହୁଏ । ପୃଥିବୀର ଏ ନିତ୍ୟ ଲୀଳା । ମାଦଳର ସୁର କେତେ ବଣ ପାହାଡ ନଈ ଡେଇଁ ଦୂର ଦିଗ୍‌ବଳୟକୁ ପ୍ରସରି ଯାଏ ।

ନାରୀ ପୁରୁଷର ନିତ୍ୟ ରାସ । ପର୍ବତ ଖୋଲରେ ପଥୁରିଆ ସମୟକୁ ଯେପରି ଚଳ ଚଞ୍ଚଳ କରିଦିଏ । ଏତେ ରସ, ଏତେ ଶୃଙ୍ଗାର, ଏତେ ସାଙ୍ଗୀତିକତା ଏ ସମ୍ବଲପୁରୀ ଲୋକଗୀତରେ ଯେ ତାହା ଅନ୍ୟତ୍ର ଦୁର୍ଲଭ ।

କେତେ ରକମର ଗୀତ ଏଠି । ସେମିତି ନାଚିବା, ସେମିତି ବଜାଇବା ଏଠି ଗୀତର ନାଚର ଯେମିତି ଗୋଟେ ଅଲଗା ପ୍ରାଣ ଅଛି ବାଜାର ବି ସେମିତି ଅଲଗା ପ୍ରଭାବ ଅଛି ।

ସମ୍ବଲପୁରୀ ଅଧିକାଂଶ ଗୀତ ନାରୀ ପୁରୁଷର ଯୁଗ୍ମ ସଙ୍ଗୀତ । ତା'ର ଆତ୍ମା ସ୍ପଷ୍ଟତଃ ଅଲଗା ବାରି ହୋଇପଡେ । ଗୋଟେ ଏକାନ୍ତ ଅପରିବର୍ତ୍ତନୀୟ ମହା ବିବର୍ତ୍ତନର ଛିନ୍ନ ଚିତ୍ରସବୁ ସମ୍ବଲପୁରୀ ଲୋକଗୀତକୁ ଅଧିକ ଅର୍ଥପୂର୍ଣ୍ଣ କରିଛି ।

ଧାଡି ଧାଡି ହୋଇ ମଣିଷର ଘର । ମାଟିରେ ଧୂଳି, ମାଟିର ଦାଣ୍ଡ । ତା'ପରେ ବାଡି ବଗିଚାର ଫୁଲ ଫଳଗଛ । ଦୂରସ୍ଥ ନଈ, ବଣ ଓ ପାହାଡ଼ । ଚାରି ଆଡକୁ ଆବୋରି ବସିଥାଏ ଅସରନ୍ତି ଧାନ ବିଲ । ଘରୁ ବାହାରନ୍ତି ଗାଈ ଗୋରୁ ଆଉ ଛେଳି କୁକୁଡା ।

ଭୋର୍ ହୁଏ । ଚାଳରୁ ଧୂଆଁ ଉଠେ । ଘର ଭିତର ଖଞ୍ଜାରେ ଚମ ଧୁଡୁ ଧୁଡୁ ବୁଢ଼ୀଟିଏ ହୁଏତ ମରିବାକୁ ଅପେକ୍ଷା କରିଥାଏ; ଆଉ ଟିକଏ ଆରପାଖକୁ ହୁଏତ ନବଜାତକଟିଏ ଜନ୍ମ ହେଉଥାଏ ।

କେତେ ସୁନ୍ଦର ଆମ ଗାଁ ମାନଙ୍କର ଘର ଆଉ ତା'ର ଭିତର ବାହାର । ସଞ୍ଜ ସକାଳରେ ଦାଣ୍ଡ ପିଣ୍ଡାରେ ବାଜେ ଏକତାରା, ଖଞ୍ଜଣୀ । ବାଜେ ମୃଦଙ୍ଗ, ମାଦଳ, ବାଜେ ତୁଙ୍ଗତୁଙ୍ଗା ଆଉ ବଇଁଶୀ ।

ଗାଁରୁ ପର୍ବତ ଖୋଲକୁ ଗୀତ ମେଲିଯାଏ । ଚଇତ ମାସରୁ ବାଜାଗୀତ କୁରେଇ ଫୁଲର

ବାସ୍ନାରେ ଚଉଦିଗ ସୁରଭିତ ହୋଇଯାଏ । ପଲାସର ବର୍ଣ୍ଣ ବିଭାରେ ଦିଗ୍‌ବଳୟ ସବୁ କେମିତି ଶୋଭାବନ୍ତ ଦିଶେ ।

ରୂପର ଅମରାବତୀ ଭଳି ଲାଗେ ଏ ପୃଥିବୀ । ତା'ରି ଭିତରେ ନିତ୍ୟକାଳକୁ ଜୀବନ ମୃତ୍ୟୁର ଲୀଳା । ପୁଣି ତା'ର ଭିତରେ ନାଚଗୀତର ମହୋତ୍ସବ ।

ଶୃଙ୍ଗାରର ଗୀତ ସବୁ ଯେମିତି ମନମୋହି ଦିଏ । ସବୁ ଋତୁ କେମିତି ସେପାଇଁ ଭାରି ବାସନ୍ତିକ ଲାଗେ । ଆତ୍ମା କେମିତି ଶୋକଜର୍ଜ୍ଜରିତ ହୋଇଉଠେ ।

ଦୁଃଖ ବ୍ୟଞ୍ଜନା ଭିତରେ ବି ଜୀବନ କେମିତି ମିଠା ଗୀତ ପଦେ ପରି ଲାଗେ ।

ସାହିତ୍ୟ ସଂସ୍କୃତିର ଏ ନିବିଡ଼ ସ୍ପର୍ଶ ରହିଛି ବୋଲି ତ ପାର୍ଥିବତା ଆମକୁବେଢ଼ି ଦେଇ ପାରିନି । ସ୍ଥୁଳଭାବେ ଜୀବନ ବଞ୍ଚିବାର ପ୍ରବୃତ୍ତି ଆମକୁ ଗୋଟାପଣେ କବଳିତ କରି ଦେଇପାରିନି ।

ଜୀବନ ଆମକୁ ସବୁମତେ ସୁନ୍ଦର ଲାଗୁ ବୋଲି ଆମେ କାମନା କରିଛୁ । ହସି ଖେଳି ଜୀବନକୁ ଉତ୍ସବୀୟ କରିଦେବାପାଇଁ ସଭିଏଁ ଯେପରି ସଂକଳ୍ପ କରିଛୁଁ । ଆମର ମୂରୁଜପକା, ମନ୍ଦିର ତୋଳା, ଆମର ମାଙ୍ଗଳିକ, ଆମର ଶଙ୍ଖଧ୍ୱନି ସେଇଥି ପାଇଁ ।

ଆମର ପର୍ବପର୍ବାଣୀ, ଆମର ଯାତରା, ଆମର ଲୀଳା ଆମ ଗୋଷ୍ଠୀ ଜୀବନର ସୁଖ ଭୋଗ ପାଇଁ ଯେପରି । ଆମର ସ୍ୱପ୍ନ, ଆମର ସୃଜନଶୀଳତା ଠାରୁ ଜମା ଦୂରକୁ ଘୁଞ୍ଚି ଯାଇନି ।

ଆମ ପୂଜା ଆମ ଶ୍ରଦ୍ଧାର ସ୍ୱାକ୍ଷର । ଆମେ ଏଠି ଭାଇର ମଙ୍ଗଳ ମନାସିଛୁଁ ତ ପୁଅର ମଙ୍ଗଳ ମନାସିଛୁଁ । ବସୁଧା ଅନ୍ନ ଦେଉଛି ବୋଲି କୃତଜ୍ଞତା ଜ୍ଞାପନ କରିଛୁଁ । ମାଟିକୁ ପୂଜା କରିଛୁଁ । ନୂଆ ଅନ୍ନକୁ ପୂଜା କରିଛୁଁ । ଭାଇ ସହିତ ସଙ୍ଗାତ ବସିଛୁଁ ।

କେତେଯୁଗର ଏ ଧାରା । ଠିକ୍ ଋତୁଚକ୍ର ପରି । ବର୍ଷର ଠିକ୍ ସମୟ ବ୍ୟବଧାନରେ ଆସେ । ଆବାଳ ବୃଦ୍ଧ ବନିତା ସମସ୍ତଙ୍କୁ ଉଚ୍ଚାଟିତ କରିଦିଏ । ସମସ୍ତଙ୍କ ମନରେ ରଙ୍ଗ ଲଗାଇ ଦିଏ ।

ଋତୁ ବଦଳିଯାଏ । ବର୍ଷା, ଶୀତ, ବସନ୍ତ ପରେ ପୁଣି ଗ୍ରୀଷ୍ମ ଆସେ । ଧୂ ଧୂ ଖରାରେ ହଳିଆ ବିଲକୁ ଯାଏ । ହଳ ଯୋଡେ । ଆପଣା ସୁଖ ଦୁଃଖର ଗୀତ ବୋଲେ । ବଳଦକୁ ସାକ୍ଷୀ କରି ହଳିଆ ଗାଏ -

*'ବଏଲାରେ, କାଲିର ଖରା ଠାରୁ ଜେ*
*ଆଜିର ଖରା ଟାନ*

*ଭୁଟି ଟାମିକିଆ ଗୁଡ଼ି ଜୀବନ*
*ଜୀବନ, ଘିଚଇ ପରାନ ହୋ..... ।"*

ଯେଉଁଠି ଦୁଃଖର ଗୀତ ପଦେ ଫିଟି ପଡେ ସେଇଠି ବି ତଥାପି ସ୍ୱପ୍ନଥାଏ । ବଞ୍ଚିବାର ସ୍ୱପ୍ନ । ସେଇଠି ଆଶା, ସେଇଠି ନୈରାଶ୍ୟ, ସେଇଠି ଶୃଙ୍ଗାର । ଜୀବନ ତ ସେମିତି । ଟିକିଏକୁ ଉଦାସ ସନ୍ୟାସ ତ ଆଉ ଟିକିଏକୁ ଆସକ୍ତି ।

ନାଚଗୀତର ମୂଳକ ଏ । ନାଚିବାନି, ଗାଇବାନି । ଜୀବନକାହିଁ ? ନାଚଗୀତର ମୂଳ ମୁଦ୍ରାତ ପ୍ରବୋଧିତ ହେବା । ବିମର୍ଷ ହୋଇ ଥକାମନ ନେଇ ବସିଯିବାର ନାହିଁ । ଜୀବନ ସୁନ୍ଦର । ଫୁଲ ପରି ଜୀବନ କୁସୁମିତ ହୋଇଯାଉ, ପତ୍ର ପରି ପଲ୍ଲବିତ ହୋଇଯାଉ । ରସମୟ ହୋଇଯାଉ ଜୀବନ ।

ନାଚଗୀତର ସଂସ୍କୃତି ସେହି ପରମ ଉଲ୍ଲାସର ରସମୟ ଜୀବନକୁ ହିଁ ଆମନ୍ତ୍ରଣ କରିଛି । ଆନନ୍ଦର ଗୀତ ଗାଇବା ପାଇଁ ପ୍ରାର୍ଥନା କରିଛି । ତଦ୍‌ଗତ ହୋଇ ଯାଇଛି ପ୍ରକୃତି ସହିତ ।

ଏ ଆମ ମଣିଷ ଜୀବନ । ବଞ୍ଚିବାର ଧାରା ଏହାର ଅସରନ୍ତି । ଏହାର ବିନାଶ ନାହିଁ । ସେହି ଜୀବନର ବ୍ୟଥା ଅଛି, ବେପଥୁ ବି ଅଛି । ମଣିଷ କାଳ କାଳ ଧରି ସେହି ଅନନ୍ତ ଅପରିସୀମ ପ୍ରକୃତି ଭିତରେ ମୁଗ୍ଧ ହୁଏତ ପୁଣି ବିସ୍ମିତ ହୁଏ । ମାଟିର ଜୟଗାନ କରେତ ଆକାଶର ଜୟଗାନ କରେ । ତା'ର ନୃତ୍ୟ, ତା'ର ଗୀତ ସେହି ମହାବିଶ୍ୱର ଜୟଗାନ ମୁଦ୍ରା । ମହାଜୀବନ, ମହାମୁକ୍ତିର ଚାରୁ ସଙ୍ଗୀତ ହେଉଛି ଦୂର ପ୍ରାନ୍ତୀୟ ପଲ୍ଲୀର ମାଳଞ୍ଚ ପୃଥିବୀର ମଣିଷର ଆପଣା ସ୍ୱର, ଆପଣା ଛନ୍ଦରେ ଗାଉଥିବା ଅସଂଖ୍ୟ ଆମ ପଲ୍ଲୀଗୀତ ।

କେଉଁ ସର୍ପିଳ ନଈ ଆର କତେ ହଳିଆଟିଏ, ଶଗଡିଆଟିଏ, ନିଜ ସନ୍ତାପିତ ଜୀବନର ବ୍ୟଥାତୁର ଗୀତ ପଦେ ଧରିଛି ତ କେଉଁଠି ନାଗରଟିଏ ତାର କେଉଁ ପ୍ରାଣର ମିତଣୀ ପାଇଁ ଶୃଙ୍ଗାରିକ ଗୀତ ଦିପଦ ଗାଇଛି ।

କେଉଁ ମନନ୍ତର ବର୍ଷରୁ ନିତ୍ୟକାଳର ଲୀଳା ଏ ଜୀବନର ଅସରନ୍ତି ଧାରା ।

ସଂସାର କଷଣରେ ଜୁଡୁବୁଡୁ ହୋଇଯାଉଥିବା ନାରୀ ବି ବ୍ୟଥା ବିଷାଦର ଗୀତ ଗାଇଛି ତ ପୁରୁଷଟିଏ ବି ଗାଉଛି । ବୋହୁର ଦୁଃଖ ପ୍ରକାରେ ତ ଶାଶୁର ଦୁଃଖ ଆଉ ପ୍ରକାରେ । ନଣନ୍ଦର ଦୁଃଖ ପ୍ରକାରେ ତ ଦିଅରର ଦୁଃଖ ପ୍ରକାରେ । ସଭିଏଁ ଲୁଚେଇ ଲୁଚେଇ କାନ୍ଦନ୍ତି ।

ଯେଉଁଠି ଏତେ ବିଷାଦ ସେଇଠି ବି ଗୋପନ ପୀରତି ଜନିତ ପରକୀୟା ଶୃଙ୍ଗାର । କେଉଁଠି

ଶାଳି ଭିଣୋଇର ତ ପୁଣି କେଉଁଠି ଦିଅର ଭାଉଜର । ପୁଣି କେଉଁ ସୁଦର୍ଶନର କେଉଁ ଛଇଳୀ ରୂପାଜହ୍ନ ସହିତ ତ କଳାଜହ୍ନ ସହିତ ।

ଏ ସବୁ ପ୍ରୀତିର ଗୀତ ନୁହେଁ ତ ରସର ଗୋଟେ ଗୋଟେ ଝରଣା ଯେମିତି । ଯୁଗ ଯୁଗ ଧରି ବହୁଛି । ସବୁ ଜନପଦରେ ବହୁଛି । ଆମ ଲୋକକବି ତା'ର ଇନ୍ଦ୍ରିୟ ଦେଇ ଏ ମିଳନର ଉତ୍ସୁକତାକୁ ଦେଖିଛି ତ, ତା'କୁ ସରସ କରି ଗାଇଛି ।

ନାମ ହୀନ ଲୋକକବି ରୋମାଞ୍ଚକୁ ଲେଖିଛି ତ ରମଣକୁ ଲେଖିଛି । ସ୍ୱପ୍ନକୁ ଲେଖିଛି ଓ ଶୃଙ୍ଗାରକୁ ଲେଖିଛି । କେଉଁଠି ସମ୍ଭୋଗର ତ କେଉଁଠି ବିପ୍ରଲମ୍ଭର । ନଦୀ ପୋଖରୀ ଘାଟ କୁଞ୍ଜବନ ପାଲଟି ଯାଇଛି । କଦମ୍ବିତ ଲାଗିଛି ବର୍ଷାକାଳ ତ ଯୁବାବୟସ । ଗୁରୁ ଗୁରୁ ମେଘ ଗର୍ଜନ, କୁଲୁ କୁଲୁ ଝରଣା, ରାଉ ରାଉ ତୋଫାନ, ସହିତ ଆଖୁ ପତରିଆ ଜହ୍ନ, ମେଘ ମହଲ ରାତି, ମହୁଲିଆ ଦିନ, ମେଘ ଦୁଲ୍ ଦୁଲ୍ ବଘେଇଁ ପାଗର ଦୃଶ୍ୟପଟ୍ଟ ଆମ ଲୋକଗୀତକୁ ଏତେ ଛବିଳ କରିଛି । ଆମ ଡାଲଖାଇ, ରସରକେଲି, ଜାଇଫୁଲ, ସଜନୀ, ଭମରା, ବାଙ୍ଗରୀ, ସୁନାଶାରୀ, ସାରୁଧନ ତ ଅଧିକାଂଶରେ ଆମରି ସେଇ ଶୃଙ୍ଗାରିକ ସ୍ୱପ୍ନର ଶ୍ରବଣ ସୁଖଦାୟକ, ମାଦକଭରା ସଙ୍ଗୀତ । ଆମ ନୃତ୍ୟ ତ ସେମିତି ଆମ ପ୍ରାଣୋଚ୍ଛ୍ୱାସର ମୁଦ୍ରା ।

ବାତରୋ, ଉଦିଆଁ, ହୁମୋ ବଉଲି, ଘୁମୁରା, ବନାବାଡି, ଭତରା, ଠିଙ୍ଗିରି, ଖୁଶକିନ୍ଦିରୀ,ବଲେନ, କୁଟୁ ବୁଢ଼ା, ଦୁଲଦୁଲି, ବଜାଶାଲ, ଶାରୁବାରୁ, ଧାଙ୍ଗିରୀ, ଜର୍ଗାଖାଡି, କେନ୍, କୁଲେଚି ଆଦି ନୃତ୍ୟ ଆମ ଜୀବନ ଛନ୍ଦର ଏକ ଏକ ମୁଦ୍ରା । ଆମ ପ୍ରବୃତ୍ତି, ଆମ ପ୍ରବଣତାର ଏକ ଏକ ପ୍ରତିରୂପ ।

ଅଗଣିତ ସାହିତ୍ୟ ଆମ ସଂସ୍କୃତିର ଗତିପଥ । ସମସ୍ତଙ୍କ ବିଚାର ବିଶ୍ଳେଷଣକୁ, ପର୍ବତ ପ୍ରମାଣେ ହେଉ ପଛେ ଏକତ୍ର ଦେଖିବାର ଗୋଟେ ଅନନ୍ୟ କୌତୁହଳ ମନରେ ଜମାଟ ବାନ୍ଧୁଥିଲା

ଆକାଂକ୍ଷା ସବୁ ହୁଏତ ସବୁବେଳେ ପୂରଣ ହୁଏନି । ଅନୁସନ୍ଧିତ୍ସୁ ଅନେକ ତରୁଣ ଇତି ମଧ୍ୟରେ ବହୁ ଅନ୍ତର୍ଦୃଷ୍ଟି ସଂପନ୍ନ ବିଶ୍ଳେଷଣ ମାନ ପ୍ରସ୍ତୁତ କରିଛନ୍ତି । ଏହି ଗ୍ରନ୍ଥରେ ସେ ସବୁକୁ ସ୍ଥାନିତ କରିବା ଅନେକ କାରଣରୁ ହୁଏତ ସମ୍ଭବ ହୋଇନି । ସେ ସବୁ ଅନୁଶୀଳନର ମାନ କଦାପି ନ୍ୟୁନ ନୁହେଁ ।

ଏଇ କେତେ ବର୍ଷ ହେଲା । ସପ୍ତର୍ଷିରେ ଓଡ଼ିଶା ପ୍ରଦେଶର ପଶ୍ଚିମ ପ୍ରାନ୍ତ ସାହିତ୍ୟ ସଂସ୍କୃତି ସଂପର୍କରେ ସୁନ୍ଦର ସୁନ୍ଦର ଲେଖାମାନ ପ୍ରକାଶିତ ହୋଇଛି ।

ପରିଶେଷରେ ଏତିକି କୁହାଯାଇ ପାରେ ଯେ, ଯେ କୌଣସି ଜନପଦତର ସାଂସ୍କୃତିକ ବିକାଶ

ତା'ର ମହତ୍ତ୍ୱର କଳାବୋଧ ଓ ସଂସ୍କୃତି ସଂପନ୍ନତା ଦ୍ୱାରା ସମାହିତ ହୋଇଥାଏ ।

ଉତ୍କଳ ପ୍ରଦେଶର ବୃହତ୍ତର ପଶ୍ଚିମ ପ୍ରାନ୍ତ ତା'ର ସରସ ସାହିତ୍ୟ ଓ ସଂସ୍କୃତି ପାଇଁ ବିଖ୍ୟାତ । ଆମର ଏହି ଲୋକସଂସ୍କୃତି ଅନୁଧ୍ୟାନ ପାଇଁ ଉଚ୍ଚତର ଗବେଷଣା ହୋଇ ପାରିଲେ ଏହି ବିରାଟ ଜନପଦର ସାଂସ୍କୃତିକତ ପଖ୍ୟାତିକୁ ହୁଏତ ଆହୁରି ଅନେକଙ୍କ ପାଖରେ ପହୁଞ୍ଚାଇ ହୁଅନ୍ତା ।

ସପ୍ତର୍ଷିର ମୁଖ୍ୟ ସଂପାଦକ ତଥା କୁଳପତି ପ୍ର. ମାଧବ ଚନ୍ଦ୍ର ଦାଶଙ୍କ ଆନ୍ତରିକ ଆଗ୍ରହ ଯୋଗୁଁ 'ସମ୍ବଲପୁର ଭାଷା ସାହିତ୍ୟ ସଂସ୍କୃତି' ଶୀର୍ଷକ ଗ୍ରନ୍ଥ ପ୍ରକାଶନ ସମ୍ଭବ ହୋଇ ପାରିଛି । ଏହି ପରିପ୍ରେକ୍ଷୀରେ ସପ୍ତର୍ଷିର ସମ୍ପାଦନା ମଣ୍ଡଳି ତଥା ପ୍ରକାଶନ ଦାୟୀତ୍ୱରେ ଥିବା 'ପ୍ର. ଭୁବନେଶ୍ୱର ବେହେରା କେନ୍ଦ୍ରୀୟ ପାଠାଗାର'ର ଗ୍ରନ୍ଥପାଳଙ୍କ ଆନ୍ତରିକ ସହଯୋଗକୁ ସ୍ମରଣ କରାଯାଇ ପାରେ ।

ଜ୍ୟୋତି ବିହାର
ତା.୧୪.୧.୦୩
ମକର ସଂକ୍ରାନ୍ତି

*ଆଦିକନ୍ଦ ସାହୁ*



# ସୂଚୀପତ୍ର

# କୋଶଳୀ ଭାଷା

## କବିରାଜ ଶ୍ରୀ ପ୍ରୟାଗଦତ୍ତ ଯୋଷି

ଅତି ପ୍ରାଚୀନ କାଳରୁ ଗୋଟିଏ ବିଶାଳ ପ୍ରାନ୍ତ କୋଶଲ ବା କୋସଲ ନାମରେ ବିଖ୍ୟାତ ଥିଲା । ଏହା ଉତ୍ତରରେ ବିନ୍ଧ୍ୟାଚଳ ଠାରୁ ଦକ୍ଷିଣରେ ଦଣ୍ଡକାରଣ୍ୟ ପର୍ଯ୍ୟନ୍ତ ଓ ପୂର୍ବରେ ମହାନଦୀର ଉତ୍ତର ଅବବାହିକା ଠାରୁ ପଶ୍ଚିମରେ ନାଗପୁର ଚା ବେଣୁଗଙ୍ଗା ଯାଏ ବିସ୍ତୃତ ଥିଲା । ଏହି ରାଜ୍ୟରେ ଭାନୁମନ୍ତ ନାମରେ ଜଣେ ଅତି ପ୍ରତାପୀ ରାଜା ଥିଲେ । ଏହାଙ୍କ କନ୍ୟା ଅଯୋଧାର ରାଜା ଦଶରଥଙ୍କୁ ବିବାହରେ ପ୍ରଦତ୍ତ ହୋଇଥିଲେ । ଦେଶ ଅନୁସାରେ ସେ କୌଶଲ୍ୟା ନାମରେ ବିଶ୍ରୁତ ହୋଇ ପଟ୍ଟମହିଷୀ ହୋଇଥିଲେ । ରାଜା ଭାନୁମନ୍ତଙ୍କ କୌଣସି ପୁତ୍ର ସନ୍ତାନ ନ ହେବାରୁ ସେ ରାଜା ଦଶରଥଙ୍କୁ ତାଙ୍କ ଶୌର୍ଯ୍ୟ ବୀର୍ଯ୍ୟରେ ମୁଗ୍ଧ ହୋଇ ଉତ୍ତରାଧିକାରୀ କଲେ । ତାଙ୍କ ପରେ ଓ ସମଗ୍ର ଭୂମି ଦଶରଥଙ୍କ ଅଧୀନ ହେଲା । ସେ ଦିନ ଠାରୁ ବିନ୍ଧ୍ୟର ଉତ୍ତରକୁ ଉତ୍ତର କୋଶଲ ଓ ଦକ୍ଷିଣକୁ ଦକ୍ଷିଣ କୋଶଲ ନାମରେ ପ୍ରସିଦ୍ଧ ହୋଇଗଲା । ଏ ସମ୍ବନ୍ଧରେ ନିମ୍ନ ଉଦ୍ଧୃତି ପ୍ରଣିଧାନ ଯୋଗ୍ୟ :-

'कोसल खण्ड नामक ग्रन्थमें कोसल देशव का निवारण इस तरह है कि, विन्ध्याचल से दक्षिण प्रदेश में एक राजधानी थी, जिसका नाम नागपत्तन था (जिसे आज कल नागपुर कहते हैं)। वहां कोसल नामक एक प्रतापी राजा हुआ, जिससे उस देस का नाम 'कोसल पडा। तब से वहां के जो राजा होते ते, उनकी एक कोसल संज्ञा भी होती, जैसे तिरहुति के राजाओं को जनक, काश्मीर के राजाओं को केकय, पजाब के राजाओं को पान्चाल होती थी। इत्यादि। उसी देश में एक भानुमन्त राजा हुए, जिनकी पुत्री श्री कौशल्या जी थीं। श्री कौशल्या जी के विवाह के समय तक उनके कोई भाई न था। इसलिये भानुमन्त जी ने कोसल देश का भी अधिकारी श्री दशरथ जी महाराज को ही बनाया। उसी समय से अयोध्या उत्तर कोसल और नागपत्तन दक्षिण कोसल नाम से विख्यात हुआ। महाभारत मे स्पष्ट उल्लेख है कि कौरव पाण्डव युद्ध में कौरवों की ओर से उत्तर कोसल का राजा

बृहद्बल और पाण्डवों की ओर से नग्नजित् दक्षिण कोसल का राजा गया था।

(मानस पीयुष, बाल काण्ड (खण्ड २), संपादक श्री अजंनी नन्दन शरण, भाग २। गीता प्रेस गोरखपुर। चतुर्थ संस्करण, संबत् २०१८। दोहा १०८ का शब्दार्थ।)

ଅନ୍ୟାନ୍ୟ ପୁରାଣ ଆଦି ଗ୍ରନ୍ଥ ମାନଙ୍କରେ ମଧ୍ୟ ପ୍ରାୟଃ ଏହିପରି ବର୍ଣ୍ଣନା ଅଛି । ସମୟର ଗତି ଅନୁସାରେ ନାନା ରାଜନୈତିକ ପରିବର୍ତ୍ତନ, ବିଭିନ୍ନ ରାଜା ମାନଙ୍କ ଅଧିକୃତି ଓ ବାରମ୍ବାର ରାଜ୍ୟସୀମାର ଚଳାଚଳ ହେଉଥିଲେ ମଧ୍ୟ ଦେଶରେ ନାମର କୌଣସି ପରିବର୍ତ୍ତନ ହୋଇନାହିଁ । ବର୍ତ୍ତମାନ ଏହା ପଶ୍ଚିମ ଓଡ଼ିଶାର କଳାହାଣ୍ଡି, ବଲାଙ୍ଗିର, ସମ୍ବଲପୁର, ବଉଦ, ସୁନ୍ଦରଗଡ଼ ଜିଲ୍ଲାମାନ ଓ କୋରାପୁଟର ଉତ୍ତର ଅଂଶ ତଥା ମଧ୍ୟପ୍ରଦେଶର ରାୟପୁର, ବିଲାସପୁର, ଦୁର୍ଗ୍, ରାୟଗଡ଼ ଜିଲ୍ଲାମାନ, ଉତ୍ତରରେ ଜସପୁର ଓ ଦକ୍ଷିଣରେ ବସ୍ତର ଜିଲ୍ଲାର ଭତରୀ ଅଞ୍ଚଳର ସମଷ୍ଟି ଅଟେ । ଏହି ବିସ୍ତୃତ ରାଜ୍ୟର ଶାସନ ସୁବିଧା ଦୃଷ୍ଟିରୁ ବୋଧହୁଏ କୁଶ କୁଳ ରାଜଧାନୀ ଅଯୋଧ୍ୟାକୁ ଛାଡ଼ି ବିନ୍ଧ୍ୟର ଦକ୍ଷିଣ ପାଦରେ କୁଶାବତୀ ରାଜଧାନୀ ବସାଇଥିଲେ; କିନ୍ତୁ ପରେ ଅଯୋଧ୍ୟାର ଅଧିଷ୍ଠାତ୍ରୀ ଦେବୀଙ୍କ (ଜନତାର) ଅନୁରୋଧରେ ପୁନଃ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କଲେ ।

ଏ ବିସ୍ତୃତ ପ୍ରାନ୍ତ ସୂର୍ଯ୍ୟ ବଂଶୀୟ ରାଜା ମାନଙ୍କ ଅଧୀନରେ ବହୁକାଳ ଥିବା ପରେ ବୀରଭୋଗ୍ୟା ବସୁନ୍ଧରା ନୀତି ଅନୁସାରେ ଅନେକ ରାଜାଙ୍କ ଶାସନରେ ଥିବା ଅନୁମେୟ । ଐତିହାସିକ କାଳରେ ଷଷ୍ଠ ଶତାବ୍ଦୀରେ ଶରଭ ପୁରିଆଙ୍କ ଓ ପରେ ସୋମବଂଶୀ ତଥା ଅଷ୍ଟମ ଶତାବ୍ଦୀ ବେଳକୁ ଇନ୍ଦ୍ରଭୁତିଙ୍କ ଅଧିକାର ଭୁକ୍ତ ହୋଇଥିବା ଜଣାଯାଏ । ତତ୍ପରେ କାଳଚୁରୀ ଆଦିଙ୍କ ଅଧିକାରକୁ ଆସି ପରିଶେଷରେ ୧୦ଶ ଶତାବ୍ଦୀ ବେଳକୁ ଚୌହାନ ମାନଙ୍କ ଅଧୀନ ହୋଇ ରହିଲା (ମୁଖ୍ୟତଃ ପୂର୍ବ ଅଂଶ) । ପରେ ମରହଟ୍ଟା ମାନଙ୍କ ନାମମାତ୍ର ଅଧୀନ ହୋଇ ଏମାନେ ଇଂରେଜ ରାଜତ୍ୱରେ ମଧ୍ୟ କରଦ ଭାବେ ତିଷ୍ଠି ରହି, ସ୍ୱାଧୀନତା ପ୍ରାପ୍ତି ପରେ ଗଡ଼ଜାତ ଲୋପ ଯାଏ ରହିଥିଲେ ।

ପୂର୍ବର ରାଜାମାନେ ରାଜ୍ୟାଧିକାର ଓ ମନ୍ଦିର ଆଦି ନିର୍ମାଣ, ବ୍ରାହ୍ମଣ ମାନଙ୍କୁ ରାଜ୍ୟର ବିଭିନ୍ନ ସ୍ଥାନରେ ଗ୍ରାମ ଦାନ ଓ ବସତି ସ୍ଥାପନ ଆଦି ଦ୍ୱାରା ପରୋକ୍ଷ ଭାବେ ଧର୍ମ ଓ ସଂସ୍କୃତିର ପ୍ରଚାର କରୁଥିଲେ । ମାତ୍ର ଇଂରେଜ ମାନଙ୍କ ନୀତି ସର୍ବଗ୍ରାସୀ ଥିଲା । ପ୍ରକାର ଜୀବନର ସବୁ କ୍ଷେତ୍ରରେ ସେମାନେ ପ୍ରଭାବ ବିସ୍ତାର କରୁଥିଲେ । ସମଗ୍ର ଓଡ଼ିଶା (କୋସଳ ସହ) ମଧ୍ୟ ଏକାଥରକେ ଅଧିକାର କରି ନଥିଲେ । ଯେଉଁ ଆଡ଼ରୁ ଅଧିକାର ସେହି ଖଣ୍ଡ ମାନଙ୍କୁ ସେହି ସେହି ପ୍ରାନ୍ତ ମାନଙ୍କ ସହ ଯୋଗ କରି ଦେଉଥିଲେ । ଏହି ପ୍ରାନ୍ତ ପ୍ରଥମେ ବଙ୍ଗାଳ ସହ ଓ ପରେ

ମଧ୍ୟପ୍ରଦେଶ ସହ ଯୋଗ କରାହେଲା ଓ ହିନ୍ଦୀକୁ ଶାସନ ଓ ଶିକ୍ଷା କ୍ଷେତ୍ରରେ ବଲତ୍ ଲଦି ଦିଆଗଲା । ବହୁ ଆନ୍ଦୋଳନ ପରେ ସମ୍ବଲପୁର ସନ ୧୯୦୫ ମସିହାରେ ପୁନଃ ଓଡ଼ିଶାକୁ ଫେରାଇ ଦିଆଗଲା । ଖଡ଼ିଆଳ ଅଞ୍ଚଳ ସନ୍ ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ପର୍ଯ୍ୟନ୍ତ ମଧ୍ୟ ପ୍ରଦେଶରେ ରହିଥିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପରେ ମଧ୍ୟ ଏହି (କୋସଲୀ) ଭାଷା ଭାଷୀ ବହୁ ଅଞ୍ଚଳ ମଧ୍ୟପ୍ରଦେଶରେ ରହିଗଲା । ନେତୃତ୍ୱ ଦୌର୍ବଲ୍ୟରୁ ସ୍ୱାଧୀନତା ପର ରାଜ୍ୟ ପୁନର୍ଗଠନ ବେଳେ ମଧ୍ୟ ସେ ସବୁ ଅଞ୍ଚଳ ଓଡ଼ିଶାକୁ ଆସି ପାରିଲା ନାହିଁ । ଅପ୍ରାପ୍ତର ପ୍ରାପ୍ତିତ ଦୂରର କଥା ହସ୍ତଗତ ହୋଇଥିବା ଷଢ଼େଇକଳା ଖରସୁଆଁକୁ ସୁଦ୍ଧା ରଖି ପାରିଲେ ନାହିଁ ।

ଏହି କୋଶଳ ପ୍ରଦେଶର ସିଧାସଳଖ ସମ୍ପର୍କ ଓଡ଼ିଶା ବା ଉପକୂଳ ପ୍ରଦେଶ ସହ କେବେ ନଥିଲା ଓ ଦୀର୍ଘକାଳିକ ରାଜନୈତିକ ଅଧୀନତା ମଧ୍ୟ ଇଂରେଜ ଶାସନ ପୂର୍ବ ପର୍ଯ୍ୟନ୍ତ ନଥିଲା । ଭୌଗୋଳିକ ପରିସ୍ଥିତି ମଧ୍ୟ ବିଶେଷ ଅନୁକୂଳ ନୁହେଁ । ଏଠାକାର ରାଜାମାନେ ମଧ୍ୟ ମୁଖ୍ୟତଃ ଉତ୍ତର ଓ ପଶ୍ଚିମ ପଟରୁ ଆସିଥିଲେ । ଆର୍ଯ୍ୟ ଓ ଆର୍ଯ୍ୟାନୁଗତ ଜାତିମାନେ, ବିଶେଷ କରି ବ୍ରାହ୍ମଣ ମାନେ ଉତ୍ତର କୋଶଳରୁ ହିଁ ଆସିଥିବା ସୁନିଶ୍ଚିତ । ମଥୁରା ଅଞ୍ଚଳ ବା ଶୁରସେନରୁ ମଧ୍ୟ ଆସି ବୁନ୍ଦେଲଖଣ୍ଡ କ୍ଷେତ୍ରରେ ବସବାସ କରିଥିବା ଜଣାଯାଏ । ଲେହେଁଡ଼ା, ଗାଗର, ଓସ ଆଦି କେତେ ପଶ୍ଚିମୀ ହିନ୍ଦୀ ଶବ୍ଦର ଅବସ୍ଥିତିରୁ ମଧ୍ୟ ଏହା ଅନୁମେୟ, ଯଥା :-

सिंहों के लेंहड़े नहीं, नहीं हंसन की पौत।
लालो की नहीं बोरियाँ, साधु न चले जमात।।
हिन्दु अपनी करे बड़ाई, गागर छूय न देई।
वेश्या के पायन तर सोवे, यह देखो हिन्दु आई।।

(कबीर)

पानी का घोड़ा पबन असवरवा ढरकि परे जस ओस को बूंदा। (नानक)

ପୂର୍ବେ ଛତିଶଗଡ଼ୀକୁ 'ଲରିଆ' ବୋଲା ଯାଉଥିଲା । ବର୍ତ୍ତମାନ ସୁଦ୍ଧା ପଶ୍ଚିମ ଓଡ଼ିଶାରେ ଏହି ନାମ ହିଁ କହନ୍ତି । ହେଲେ ସେମାନେ ନିଜେ ସେ ନାମ ପରିତ୍ୟାଗ କରି ଏବେ ଛତିଶଗଡ଼ୀ କହୁଛନ୍ତି । ପୂର୍ବ ପଟର ଭାଷାକୁ 'ଝରିଆ' (ଝାରଖଣ୍ଡ ନାମାନୁସାରେ) କହୁଥିବା ଅନୁମେୟ । ଏହା ଏବେ ସଂପୂର୍ଣ୍ଣ ବିସ୍ମୃତ । କେବଳ ଭାଷାକୋଷରେ ଏ ନାମର ଉଲ୍ଲେଖ କରି, ଏହାକୁ

'ମଧ୍ୟପ୍ରଦେଶର କଥିତ ଏକ ପ୍ରକାର ଓଡ଼ିଆ ଭାଷା' ଏତିକି ମାତ୍ର ବିବରଣୀ ଦେଇଛନ୍ତି । ଏ ବୃତ୍ତାନ୍ତରେ ମଧ୍ୟ ପ୍ରଦେଶର ପୂର୍ବ ଅଂଶ ଓ ଓଡ଼ିଶାର ସମଗ୍ର ପଶ୍ଚିମ ଅଂଶରେ ଏ ଭାଷା କୁହାଯାଏ । ଏ ଭାଗରେ ଝାଡୁଆ (ଆରଣ୍ୟକ) ବ୍ରାହ୍ମଣ, କରଣ, ଝରିଆ, ଗଉଡ଼ ଆଦି ଥିବାରୁ ଓ ବୌହାନ ମାନଙ୍କ ବିରୁଦରେ ମଧ୍ୟ 'ଝାରଖଣ୍ଡକେ ନୃପତି' ପଦ ଥିବାରୁ ଏହାକୁ ଅବିଶ୍ୱାସ କରିବା କାରଣ ନାହିଁ । ପୂର୍ବେ ଏ ପ୍ରାନ୍ତର ଅଧିବାସୀ ନିଜ ଦେଶକୁ ଓଡ଼ିଶା ବୋଲି ଓ ନିଜ ଭାଷାକୁ ଓଡ଼ିଆ ବୋଲି ଭାବୁ ନଥିଲେ । ଲୁଣ ପାଇଁ ପାର୍ବତୀପୁର ଗଲେ କଳିଙ୍ଗ ଯାଉଛୁ ବୋଲି କହୁଥିଲେ ଓ ଶ୍ରୀକ୍ଷେତ୍ର ଗଲେ ଓଡ଼ିଶାକୁ ଯାଉଛୁଁ ବୋଲି କହୁଥିଲେ । ବର୍ତ୍ତମାନ ସୁଦ୍ଧା କେହି ଅଯଥା ବକାବକି କରୁଥିଲେ 'ଓଡ଼ିଆ ଲରିଆ ମାରୁଛୁ' ବୋଲି କହନ୍ତି । ଏଥିରୁ ଓଡ଼ିଆକୁ ସାହିତ୍ୟ ଓ ସଂସ୍କୃତିର ମାଧ୍ୟମ ରୂପେ ଗ୍ରହଣ କରି ନେଇଥିଲେ ହେଁ ନିଜ ମାତୃଭାଷାର ପୃଥକତ୍ୱରେ ସମ୍ୟକ ଅବହିତ ଥିବାର ସୁନିଶ୍ଚିତ ।

ସମଗ୍ର କୋଶଲ ପ୍ରଦେଶର ଭାଷା ଗୋଟିଏ ଗୋଷ୍ଠୀର । ଏହା ମାଗଧୀ ପ୍ରାକୃତରୁ ଜାତ ଓ ଶୌରସେନୀର ମଧ୍ୟ ପ୍ରଭାବ ରହିଛି । ଏହାକୁ ପୂର୍ବୀ ହିନ୍ଦୀ ବା କୋଶଲୀ କୁହାଯାଏ । ଏହାର ଚାରି ଗୋଟି ଶାଖା ରହିଛି । ଉତ୍ତରରେ ଅୱାଧୀ, ଉତ୍ତର ପଶ୍ଚିମକୁ ବଘେଲଖଣ୍ଡୀ, ଦକ୍ଷିଣକୁ ଛତିଶଗଡ଼ୀ ଓ ପୂର୍ବକୁ ପୂର୍ବକୋଶଲୀ ସାମାନ୍ୟ ଭାବେ ଏହାକୁ କୋଶଲୀ କହିବା ଉଚିତ, ଏହା ଲେଖକର ବିନମ୍ର ମତ, ଯାହା ପରବର୍ତ୍ତୀ ଆଲୋଚନାରୁ ବୁଝା ଯାଇ ପାରିବ । ଏଥି ମଧ୍ୟରୁ କେବଳ ଅୱଧି ଭାଷା ହିଁ ସନ୍ଥ ତୁଳସୀ ଦାସଙ୍କ ରାମଚରିତ ମାନସ, ଜାୟସୀଙ୍କ ପଦାବତୀ ଆଦି ବିଶ୍ୱପ୍ରସିଦ୍ଧ କାବ୍ୟ ମାନଙ୍କ ରଚନା ଦ୍ୱାରା ନିଜର ପ୍ରତିଷ୍ଠା ଦୃଢ଼ କରି ପାରିଛି । ଭାଷା ସର୍ବବିଧ ସମ୍ପଦରେ ସମର୍ଥ ଥାଇ ମଧ୍ୟ ବଘେଲଖଣ୍ଡୀ ଓ ଛତିଶଗଡ଼ୀ ହିନ୍ଦୀକୁ ଓ ପୂର୍ବ କୋଶଲୀ ଓଡ଼ିଆକୁ ଲିପି ସହ ନିଜର ସାହିତ୍ୟିକ ଓ ସାଂସ୍କୃତିକ ମାଧ୍ୟମ ରୂପେ ଗ୍ରହଣ କରି ନେଇଛନ୍ତି । ଏହା ଅବଶ୍ୟ ଅତ୍ୟନ୍ତ ଶୋଚନୀୟ । ଏ ସଂକ୍ରାନ୍ତରେ ନିମ୍ନ ଉଦ୍ଧୃତିମାନ ପ୍ରଣିଧାନ ଯୋଗ୍ୟ ।

Adjoing Hindi towards east is the mediate branch represented by a single language 'Kosali'. It covers the natural regions of coudh, BughelKhand and Chhatisgarh. It is be noted that lioath Hindi and Kosali have spread from the north India plains south wards to the adjoining regions of the central belt, as in the conception of the middle country and Kosali has further decended to Chhatisgarh or Dakshina Kosala. This indicates an early contact with the central belt which is

confirmed again by Puranic tradition where in Chedi or Bundel Khand is one of the early settlementsof emigrants from Mathura region. And a leading authority on the aboriginals of central India, Dr. Hiralal saw in the story of the Ramayana an account of Kosala Aryans expanding towards Dakshina Kosala.'

ଏହି 'କୋଶଲୀ' ଶବ୍ଦର ବିଷୟରେ ସେ ପାଦ ଟିପ୍ପଣୀ ରେ ଲେଖିଛନ୍ତି ।

This language was formerly known as Eastern Hindi, but linguists took pains to clarify that Eastern and Western Hindi were separate languages. To remove this confusion, I proposed in my first article in the first edition of this work that they should be called Hindi and Kosali representively. The suggestion was adopted by India's leading linguist Dr. Suniti Kumar Chattergi.' ପରବର୍ତ୍ତୀ ଉଦ୍ଧୃତିରେ ଏହା ସମର୍ଥୀତ ।

(Jaya chandra Narang, Vidyalankar in 'Regional structure of India in relation to language and History.' Cultural Heritage of India, Vol-I, Calcutta, 1958, PP 47-48,)

ପୁନଶ୍ଚ ତତ୍ରୈବ-

East of the Western Hindi area we have the tract of Eastern Hindi dialects for which a better name is 'Kosali' These include Awadhi or Baiswari, the language of Awadhi.(or Kosala to give its encient name), Bughli or Bughel Khandi, and Chhatisgarhi of eastern Madhya Pradesh (the encient Dakshina Kosala or Maha Kosala)

(Linguist survey of India-Language and script, Page-60. Suniti Kumar Chatterji M.A.D. Lit.)

ଉପର ପ୍ରଦତ୍ତ ଉଦ୍ଧୃତିରୁ ଉତ୍ତର କୋଶଳରୁ ଦକ୍ଷିଣ କୋଶଳକୁ, ଆର୍ଯ୍ୟମାନେ, ବିଶେଷ କରି ବ୍ରାହ୍ମଣ ମାନେ ଆସିଥିବା ସୁସ୍ପଷ୍ଟ । ଏ ବିସ୍ତୀର୍ଣ୍ଣ ପ୍ରାନ୍ତରେ ସୁଦୂର ଗ୍ରମାଞ୍ଚଳରେ ତଥା ଅନ୍ତର୍ଗତ

ପ୍ରଦେଶରେ ମଧ୍ୟ ଭାଷା ଓ ସଂସ୍କୃତି ଆର୍ଯ୍ୟାନୁଗତ । ସମଗ୍ର ପ୍ରାନ୍ତରେ ଗ୍ରାମ, ବନ, ପାହାଡ ପର୍ବତ ବ୍ୟାପି ବିଛୁରିତ ହୋଇ ପଡିଥିବା ସ୍ୱର୍ଣ୍ଣ ରୌପ୍ୟାଦି ମୁଦ୍ରା, ମାଟି ମୋହର, ମୂର୍ତ୍ତି, ଅଭିଲେଖ, ମନ୍ଦିର ଓ ଅନ୍ୟାନ୍ୟ ବାସ୍ତୁଜାତ ଉପଲବ୍ଧ ହୁଏ; ଏହା ଏ ପ୍ରଦେଶର ଉନ୍ନତ ଐତିହ୍ୟର ମୂକ ସାକ୍ଷୀ । ଅଷ୍ଟମ ଶତାବ୍ଦୀରେ ଅତ୍ରତ୍ୟ ରାଜା ଇନ୍ଦ୍ରଭୂତିଙ୍କ ଭଗିନୀ ଲକ୍ଷ୍ମୀଙ୍କରାଙ୍କ ଦ୍ୱାରା ସହଜ ଯାନର ଉଦ୍ଭାବନ ଓ ପ୍ରବର୍ତ୍ତନ ହୋଇଥିଲା । ଦ୍ୱିତୀୟ ଶତାବ୍ଦୀର ଭୂଗୋଲ ବେତ୍ତା ଟଲେମି ଏ ପ୍ରାନ୍ତକୁ ସବରାଇ ଓ ମହାନଦୀକୁ ମନଦ କହି ବର୍ଣ୍ଣନା କରିଛନ୍ତି । ଚର୍ଯ୍ୟାପଦ ମାନଙ୍କ ଅନ୍ୟତମ ରଚୟିତା ଶବରପାଦ ଏଠାକାର ଲୋକ ହୋଇଥିବା ସମ୍ଭାବନା ଅଯୌକ୍ତିକ ହେବନାହିଁ । ତାଙ୍କ ପ୍ରଯୁକ୍ତ ଜାଆସି, ଆଏସି, ଯାଉସୁ, ଆଉସୁ, ଆଦି ଅଦ୍ୟାପି, ସୁଦୂର ଗ୍ରାମ ଗହଳରେ ବ୍ୟବହୃତ ହେଉଛି । ଅତ୍ରତ୍ୟ ରାଜନ୍ୟବର୍ଗର ଉଦାରତା ପୂର୍ଣ୍ଣ ପ୍ରଦୀପ୍ତ ପ୍ରଭାବ ଓ ବ୍ରାହ୍ମଣ ମାନଙ୍କ ଆଧୁନିକ କାଳର ମିସ୍‌ନାରୀ ମାନଙ୍କ ତୁଲ୍ୟ ଧୈର୍ଯ୍ୟ ଓ ସାହସର ସହିତ ମୈତ୍ରୀପୂର୍ଣ୍ଣ ସହାବସ୍ଥାନ ନୀତିର ହିଁ ଏ ପରିଣାମ । 'ସର୍ବଂଖଲ୍ୱିଦଂ ବ୍ରହ୍ମ', 'ସର୍ବ ଶକ୍ତିମୟଂଯ ଜଗତ୍' ଆଦି ବ୍ୟାପକ ଦୃଷ୍ଟିକୋଣରୁ ସ୍ଥାନୀୟ ଦେବଦେବୀ ଆଦିଙ୍କ ଯାତ୍ରା ପର୍ବ ମାନଙ୍କରେ ବ୍ରାହ୍ମଣ ମାନଙ୍କ ଅଂଶଗ୍ରହଣ, ଅନେକ ସ୍ଥାନୀୟ ଦେବଦେବୀ ଆଦିଙ୍କୁ ବର୍ଣ୍ଣ ଜାତି ମାନେ ସ୍ୱ ଇଷ୍ଟଦେବୀ ଭାବେ ଗ୍ରହଣ (ବୁଢ଼ାରଜା, ମାଉଲି ଆଦି) ଓ ଆଦିବାସୀ ମାନେ ମଧ ଚଣ୍ଡୀ, ଦୁର୍ଗା, ମହାଦେବ, ଜଗନ୍ନାଥ ଆଦିଙ୍କ ଉପାସନା କରୁଥିବା ଏଥିର ନିଦର୍ଶନ । ପରବର୍ତ୍ତୀ କାଳରେ ଚୌହାନ ଇଷ୍ଟଦେବୀ ସମ୍ଲେଶ୍ୱରୀ (ସାମ୍ଭରେଶ୍ୱରୀ) ସାମ୍ଭର ହ୍ରଦ ତୀରସ୍ଥ ତାଙ୍କ ମୂଳସ୍ଥାନ ସାମ୍ଭରଗଡ଼ର ଅଧିଷ୍ଠାତ୍ରୀଙ୍କୁ ଆଦିବାସୀ ମାନେ ସ୍ଥାପନ କରି ଅନେକ ଦୁର୍ଗମ ପାହାଡ଼ ଡ଼ଙ୍ଗର ଭିତରେ ମଧ ପୂଜା କରୁଛନ୍ତି । ଖଡ଼ିଆଳର ଗଡ଼ ଦେବୀ 'ରକ୍ତାମ୍ବରୀ' ମଧ ଆଦିବାସୀ ଦେବତା 'ରକତ୍ ମାଉଲୀ' ତାନ୍ତ୍ରିକ ବିଧିରେ ପ୍ରତିଷ୍ଠିତ ହୋଇ, ତାନ୍ତ୍ରିକ ରୀତିରେ ପୂଜିତ ହେଉଛନ୍ତି ।

ପ୍ରାରମ୍ଭିକ କାଳରେ ବ୍ରାହ୍ମଣ ମାନଙ୍କୁ ଅତ୍ରତ୍ୟ ଆଦିବାସୀ ମାନେ ଅବାଞ୍ଛିତ ଅନୁପ୍ରବେଶକାରୀ ଭାବେ ଗ୍ରହଣ କରୁଥିଲେ ଓ କେହି କେହି ଧରିନେଇ ତାଙ୍କ ଦେବଦେବୀ ପାଖରେ ବଳିଦାନ ମଧ କରି ଦେଉଥିଲେ । ଏପରି ଜନଶ୍ରୁତି ଅଛି । (ଅବଶ୍ୟ ଜ୍ଞାତବ୍ୟ ବା ଶ୍ରୋତବ୍ୟ କାଳ ମଧରେ ଏପରି ଘଟଣା ହୋଇଥିବାର ଜଣାନାହିଁ) । ଆଧୁନିକ କାଳର ମିସନାରୀ ଓ ପରିଭ୍ରମଣକାରୀ ବା Explorer ମାନଙ୍କ ବୃତ୍ତାନ୍ତ ଓ ଗଳ୍ପ ଆଦିରେ ମଧ ଏପରି ଅନେକ ବର୍ଣ୍ଣନା ଦେଖିବାକୁ ମିଳେ । ବ୍ରାହ୍ମଣ ମାନଙ୍କୁ 'ପଣ୍ଡରା ବୋକା' (ଧଳା ବୋଦା) ବୋଲି କହୁଥିଲେ । ବର୍ତ୍ତମାନ ସୁଦ୍ଧା କେହି କେହି ବ୍ୟଙ୍ଗରେ ଏପରି କହିଥାନ୍ତି । ବ୍ରାହ୍ମଣ ମାନେ ସାଧାରଣତଃ ବୁଦ୍ଧିଆ ଓ ଧର୍ମ ଭାବ ଓ ବିବେକ ବିଚାର ସମ୍ପନ୍ନ ଥିବାରୁ ସେମାନଙ୍କ କ୍ରୁର ବର୍ବରୋଚିତ ଉପାସନା ଆଦିରୁ ବିରୋଧ - ସମାଲୋଚନା

ଆଦି କରୁଥିବାରୁ ବୋଧହୁଏ ଏମାନଙ୍କୁ ଅବାଞ୍ଛିତ ଓ ଅହିତକାରୀ ମନେ କରୁଥିଲେ । ଅଦ୍ୟାବଧି ପ୍ରଚଳିତ 'ଗାଏଁ ବହ୍ମନା, ଖେତେ ସମ୍ନା' (ଗୋଟିଏ ପ୍ରବଳ କୃଷିଯୁକ୍ତ ଶସ୍ୟ ନଷ୍ଟକାରୀ ଦୁର୍ଦ୍ଦମନୀୟ ଘାସ) ଲୋକ ବଚନଟାର ନିଦର୍ଶନ ।

ଏ ବିଦ୍ୱେଷ ଭାବ ଯୋଗୁଁ ଗଣ୍ଡଭୁଞ୍ଜିଆ ଆଦି ଜଳ ଗ୍ରହଣ କରୁନଥିଲେ । ବ୍ରାହ୍ମଣ ମାନେ ତ ଏମାନଙ୍କୁ ଜଳାସ୍ପୃଶ୍ୟ ଭାବିବା ସ୍ୱାଭାବିକ । ନିଜର ସମାନତା ପ୍ରଖ୍ୟାପନ ପାଇଁ ଗଣ୍ଡ, ଭୁଞ୍ଜିଆ ଓ ଶବର ମାନେ ସୁତ୍ରୋପବୀତ ମଧ ଧାରଣ କରୁଥିଲେ; ବିଶେଷତଃ ମାଝୀ, ପୂଜାରୀ ଓ ଅନ୍ୟ ସଂଭ୍ରାନ୍ତ ଆଦିବାସୀ ମାନେ । ବର୍ତ୍ତମାନ ତ କୌଣସି କଟକଣା ନାହିଁ, ଯେ କେହି ଇଛା ଧାରଣ କରୁଛନ୍ତି ।

ବିଶ୍ୱାବସୁ ଉପାଖ୍ୟାନ ଶବର ମାନଙ୍କୁ ବ୍ରାହ୍ମଣ ସମାଜର ନିକଟବର୍ତ୍ତୀ ଓ ଅନୁକୂଳ କରିବାରେ ବିଶେଷ ସାହାଯ୍ୟ କରିଥିବା ଅନୁମାନ କରାଯାଏ । ଏମାନେ ବ୍ରାହ୍ମଣ ମାନଙ୍କ ଠାରୁ ଅନ୍ନ ଗ୍ରହଣ କରୁଥିଲେ । ପ୍ରାୟଃ ଷାଠିଏ ବର୍ଷ ପୂର୍ବେ ଖଡ଼ିଆଳରେ ଶବର ମାନଙ୍କ ଠାରୁ ଜଳ ଗ୍ରହଣ ଆରମ୍ଭ ହୋଇଥିଲା । ବର୍ତ୍ତମାନ ସାମାଜିକ ରୃତ୍ତି ମାନଙ୍କ ଶିଥିଳତା ଯୋଗୁଁ ଏସବୁ କଟକଣାର ଆଉ ଗୁରୁତ୍ୱ ନାହିଁ । ଶିକ୍ଷିତ, ଚାକିରିଆ ଓ ସହର ବଜାର ଯାଇ ହୋଟେଲ ଖିଆଙ୍କ ତଥୈବ ଆଚରଣ ଯୋଗୁଁ ଆଦିବାସୀ ସମାଜରେ ମଧ ଏହାର ଗୁରୁତ୍ତ୍ୱ ଆଉ ନାହିଁ । ଶାସନ ନୀତିର ଆନୁକୂଲ୍ୟ ମଧ ଏଥିର ପ୍ରଧାନ ପ୍ରବର୍ତ୍ତକ ।

ବ୍ରାହ୍ମଣ ମାନଙ୍କୁ ଆଦିବାସୀଙ୍କ ନିକଟତମ କରିବାରେ ଲୁଣ କମ ସାହାଯ୍ୟ କରିନାହିଁ । ବେଙ୍ଗଲ-ନାଗପୁର ରେଳ ଲାଇନ ପଡ଼ିବା ଓ ପଞ୍ଜାବ ହରିୟାଣା ବାସୀ ବଣିଆଙ୍କ ଆଗମନ ପୂର୍ବ ପର୍ଯ୍ୟନ୍ତ ଏ ଅଞ୍ଚଳରେ ଲୁଣ ବ୍ରାହ୍ମଣ ମାନଙ୍କ ଏକଚାଟିଆ ବ୍ୟାପାର ଥିଲା । ଘୋର ଜଙ୍ଗଲ ଓ ଘାଟି ପାର କରି ପାର୍ବତୀପୁରରୁ ଲୁଣ ବଳଦରେ ଲଦି ଆଣୁଥିଲେ ଓ ଏ ଅଞ୍ଚଳ ବ୍ୟତିରେକେ ସମଗ୍ର ଛତିଶଗଡ଼କୁ ଯୋଗାଉଥିଲେ । ସେଠାରୁ ଚାଉଳ ବଦଳ କରି ପୁଣି ପାର୍ବତୀପୁରକୁ ଯାଉଥିଲେ । 'କଳିଙ୍ଗକୁ ଲୁଣ ଆଣିବାକୁ ଯାଉଛୁଁ' ବୋଲି କହୁଥିଲେ । ଗୋଟିଏ ଲୁଣ ବଦଳରେ କୋଡ଼ିଏ ଗୁଣ ଚାଉଳ ଆଣୁଥିଲେ । ଏଣୁ ବହୁ ସଂପନ୍ନ ଥିଲେ । ଓ ମହାଜନି କାରବାର ମଧ କରୁଥିଲେ । ଏ ବିପଦ ସଙ୍କୁଳ ମାର୍ଗରେ ପ୍ରାଣ ମଧ ହରାଉଥିଲେ । ଏଣୁ କା'ର ବାପା ବା ଅଜା ମରିଗଲେ ଏ "ନୁନ ଲଦି ଯାଇଛେଁ ବୋଲି ବୁଝାଉଥିଲେ । ଅନେକ ପୁରୁଣା ଘରେ ବର୍ତ୍ତମାନ ସୁଦ୍ଧା ସେ ସମୟର ଚକମକି, ପଲାଣ, ସିଇଁବାର ତାମ୍ପଣ ଓ କଳଙ୍କିଆ ଖୁରି, ଗିନା, ଶର ଆଦି ସ୍ମାରକୀ ରୂପେ ରହିଅଛି । ଏ ସାହାସୀ ଲୋକମାନେ ପକ୍କା ରାସ୍ତା ଓ ରେଳ ଲାଇନ ପଡ଼ିଲା

ଉତ୍ତାରେ କାହିଁକି ବାଣିଜ୍ୟ ଛାଡ଼ିଦେଲେ ଆଶ୍ଚର୍ଯ୍ୟର କଥା !

ସାନ୍ନିଧ ଯୋଗୁ କ୍ରମେ ବିରୋଧ ଭାବ ଶିଥିଳ ହେଲା ଓ ବ୍ରାହ୍ମଣ ମାନେ ମଧ ସେମାନଙ୍କ ମିତ, ମହାପ୍ରସାଦ, ଗଙ୍ଗାଜୁଗ ଆଦି ମୈତ୍ରୀନିବନ୍ଧନ ଦ୍ୱାରା ଆତ୍ମୀୟତା ବୃଦ୍ଧିକଲେ । ସେମାନେ ମଧ ଆମେ ବ୍ରାହ୍ମଣମାନଙ୍କୁ ଟାଗ (ସୂତ୍ର) ଦେଇଛୁଁ, ଅର୍ଥ ଦାନୀୟ ପାତ୍ରଠାରୁ ଜଳ ଗ୍ରହଣ କରୁନାହୁଁ ବୋଲି ପ୍ରଖ୍ୟାପନ କଲେ । ଅଥଚ ସୁଖା ସମାନ ସବୁ ଗ୍ରହଣ କରୁଥିଲେ । ବର୍ତ୍ତମାନ ସମୟରେ ଅବଶ୍ୟ ଏସବୁ ହାସ୍ୟାସ୍ପଦ ।

ଉପର ବର୍ଣ୍ଣିତ ପରିସ୍ଥିତି ଓ ଘଟଣା ପ୍ରବାହରୁ ଏହା ସ୍ପଷ୍ଟ ଭାବେ ବୁଝାଯାଏ ଯେ ଏହି ବ୍ରାହ୍ମଣମାନଙ୍କ ସାହସ, ଧୈର୍ଯ୍ୟ ଓ କଷ୍ଟ ସହିଷ୍ଣୁତା ବା ଅନ୍ୟ ଭାଷାରେ ତ୍ୟାଗ ଓ ତପସ୍ୟାର ଏ ପରିଣାମ ଅଟେ । ବର୍ତ୍ତମାନ ଆର୍ଯ୍ୟାନୁଗତ ସମାଜକୁ ଛାଡ଼ି ଗଣ୍ଡ, ଭୁଞ୍ଜିଆ, ଶବର, ବିଞ୍ଝାଲ ଆଦି ବୃହତ୍ ଗୋଷ୍ଠୀମାନେ ଘରେ ବାହାରେ ଏହି ଭାଷାହିଁ କହନ୍ତି । ଡଙ୍ଗରଲିଆ କନ୍ଧ, ମୁଣ୍ଡା ଓ ଖାରିଆ, କୋଲ ଆଦି କ୍ଷୁଦ୍ର ଗୋଷ୍ଠୀମାନେ ନିଜ ଭିତରେ ତାଙ୍କ ଭାଷା କହୁଥିଲେ ହେଁ ଶବାଭାବରୁ ଆଧୁନିକ ଭାବ ଆଦି ପ୍ରକାଶ କରିବାକୁ ପ୍ରଚଳିତ ଭାଷାର ସଂମିଶ୍ରଣ କରିବାକୁ ପଡ଼ିଥାଏ । କୁରମି, ଅଗରିଆ ଆଦି ମଧ୍ୟଯୁଗୀୟ ଆଗତିମାନେ ନିଜଭାଷା, କିଛି ପ୍ରଚଳିତ ଭାଷାର ବିକୃତୋଚାରିତ ଶବ୍ଦ, ବହୁଳାଂଶ ସର୍ବସାଧାରଣ ଭାଷା କହିଥାନ୍ତି । ହେଲେ ସର୍ବବିଧ ବ୍ୟବହାରରେ ଏହି କୋଶଲୀ ଭାଷା କହିଥାନ୍ତି । ଏ ପ୍ରଦେଶର ସମସ୍ତ ଗାଁ ଗଣ୍ଡା, ନଦୀନାଳ, ପାହାଡ଼ ପର୍ବତ, ବୃକ୍ଷଲତା, ଭୈଷଜିକ ଚେରମୂଳ, ପଶୁପକ୍ଷୀ, କୀଟପତଙ୍ଗ, ସରୀସୃପ, କି ଆଦିବାସୀ କି ଆର୍ଯ୍ୟ ଦେବଦେବୀ ଓ ସ୍ତ୍ରୀ ପୁରୁଷ (ନଗଣ୍ୟ ସଂଖ୍ୟକ ମୁସଲମାନ ସଂପ୍ରଦାୟ ଛଡ଼ା) ସମସ୍ତଙ୍କ ନାମ ସଂସ୍କୃତମୂଳକ ଏହି କୋଶଲୀ ଭାଷାର । ଅତଏବ ଏ ସମଗ୍ର ପ୍ରାନ୍ତର ଭାଷା ଏକମାତ୍ର କୋଶଲୀ କହିଲେ ଅତ୍ୟୁକ୍ତି ହେବନାହିଁ । ରାଜାମାନେ -

'ଯସ୍ମିନ୍ ଦେଶେ ଯେ ଆଚାରେ ବ୍ୟବହାରଃ କୁଳସ୍ଥିତଃ ।
ତଥୈବ ପରିପାଲ୍ୟୋସୌ ଯଦା ବଶମୁପାଗତଃ ।।

(ଯାଜ୍ଞ ଜୀବଂ ୧୩-୩୪୩)

ତଥା ବ୍ରାହ୍ମଣମାନେ 'ସ୍ୱଏବ ଧର୍ମେ ନ କ୍ଷିପେତ ପରଂସ୍ଥିତଃ' (ଭାଗବତ) ନୀତିକୁ ନିଷ୍ଠାର ସହିତ ପାଳନ କରୁଥିଲେ । ଏଣୁ ଭାଷା ଓ ସଂସ୍କୃତି ଏତେ ଦୂର ପ୍ରଭାବିତ ହୋଇ ସଂପୂର୍ଣ୍ଣ ଏକୀଭୂତ ହେବାକୁ ବହୁ ଶତାବ୍ଦୀ ସମୟ ନିଶ୍ଚୟ ଲାଗିଥିବ । ରାଜାମାନଙ୍କ ଉଦାର ନୀତି ଓ ବ୍ରାହ୍ମଣମାନଙ୍କ ସ୍ୱକୀୟ ଧର୍ମନିଷ୍ଠା, ମୈତ୍ରୀପୂର୍ଣ୍ଣ ଉଦାର ମନୋଭାବ, ଆଦର୍ଶ ବ୍ୟବହାର, ଧୈର୍ଯ୍ୟ ଓ ସହିଷ୍ଣୁତା

ସର୍ବବିଧ ବ୍ୟବଧାନ ଦୂର କରି ଏ ପରିବର୍ତ୍ତନ ଆନୟନର ମୂଳ କାରଣ ଅଟେ । ଏଥିରେ ଉପକୂଳ ଅଞ୍ଚଳର କୌଣସି ଅବଦାନ ଥିବାର ପ୍ରତୀୟମାନ ହୁଏନାହିଁ ।

୨

ଏସବୁ ସତ୍ତ୍ୱେ ବର୍ତ୍ତମାନ ଏ ଭାଷାର କେହି 'ନାମ ନେବା ପାନୀ ଦେବା ଥିଲା ପରି ମନେ ହେଉନାହିଁ । ବର୍ତ୍ତମାନ ପ୍ରଚଳିତ ଆର୍ଯ୍ୟଭାଷା ମାନଙ୍କ କାଳ ଦଶମ ଶତାବ୍ଦୀ ଧରାଯାଏ । ମୂଳ ସଂସ୍କୃତିରୁ ପାଲୀ ପ୍ରକୃତ ଓ ପରେ ଶୌରସେନୀ, ମାଗଧୀ, ଅର୍ଦ୍ଧ ମାଗଧୀ ଆଦି, ପୁନଃ ଏମାନଙ୍କ ଅପଭ୍ରଂଶ ଓ ସେଠାରୁ ଆଧୁନିକ ଭାଷାମାନଙ୍କ ଉଦ୍‌ଭବ କ୍ରମ ବିଦ୍ୱାନମାନେ ନିଶ୍ଚିତ କରିଛନ୍ତି । ସମୟ ଓ ଦେଶର ବ୍ୟବଧାନ, ସ୍ଥାନୀୟ ଭୌଗଳିକ ପରିସ୍ଥିତି ଜଳବାୟୁର ପ୍ରଭାବ ଓ ପୂର୍ବସ୍ଥିତ ଲୋକଙ୍କ ଭାଷାର ପ୍ରଭାବ ଯୋଗୁ ଏ ଭାଷାମାନେ ପରସ୍ପର୍ ଠାରୁ ଯେତେ ଭିନ୍ନ ଓ ପରସ୍ପରକୁ ଅବୋଧ ହେଲେ ହେଁ, ମୂଳତଃ ଏକ, ଏହା ଅବିସଂବାଦିତ । ପ୍ରକୃତୀ କରଣର ସମାନ ପ୍ରକ୍ରିୟା ଯୋଗୁ ଦୁଇଟି ଅଲଗା ଅଲଗା ଭାଷାରେ ଅମାନ ସମାନ ଶବ୍ଦର ଉଦ୍‌ଭବ ମଧ ସାଧାରଣ କଥା । ଏଥିରେ ଅନୁକରଣ, ଅନୁସରଣ, ବା ଅନୁପ୍ରବେଶର ବିଚାର ବହୁ ସାବଧାନତା ସହ କରିବାକୁ ହେବ । ଭାଷାର ବିକାଶର ସ୍ତର, କାଳ, ବାଣିଜ୍ୟକ ସମାଗମ, ରାଜନୈତିକ ଅଧୀନତା, ଗୋଷ୍ଠୀ ବା ସମାଜମାନଙ୍କ ସ୍ଥାନାନ୍ତରଣ, ଭିନ୍ନ ଭାଷାଭାଷୀ ଦେଶରେ ସ୍ଥାୟୀ ବସବାସ ଆଦି ବହୁବିଧ କାରଣର ବିଚାର କରି ଅନୁସରଣ ପ୍ରଭାବ ଆଦି ସ୍ଥିର କରିବା ଦୁରୁହ ବ୍ୟାପାର । 'କଲେହେଁ ତାକୁ ଚରମ ନିର୍ଣ୍ଣୟ ବୋଲି ଧରିନେବା ବିଜ୍ଞତା ହେବନାହିଁ । ବିଶେଷତଃ ପାର୍ଶ୍ୱସ୍ଥ ସମାନ୍ତରାଳ ଭାବେ ବିକାଶ ଲାଭ କରୁଥିବ । ଦୁଇ ଭାଷାରେ ବିଭିନ୍ନ ଦିଗରୁ ବହୁ ସମାନତା ରହିବା ସ୍ୱାଭାବିକ । ଆପାତ ଦୃଷ୍ଟିରୁ ଏକ ପ୍ରରି ମଧ ଦିଶି ପାରନ୍ତି । ଏଥି ମଧରୁ ବିଭିନ୍ନ କାରଣ ଯୋଗୁ ଗୋଟିଏ ଭାଷା ଯଦି ବିକଶିତ ହୁଏ ଓ ଅନ୍ୟଟି ପଛେଇ ରହେ ହେଲେ ଅବିକଶିତ ଭାଷା ବହୁ ସାମ୍ୟ ଦୃଷ୍ଟିରୁ ଏକ ବିକଶିତ ପଡୋଶୀ ଭାଷାକୁ ନିଜର ସାହିତ୍ୟିକ ଓ ସାଂସ୍କୃତିକ ମାଧମ ରୂପେ ଗ୍ରହଣ କରିନିଏ ଓ ଅବିକଶିତ ଭାଷାଟି ନିଜର ମୌଳିକତା ନହୋଇ କଥିତ ଭାଷାରୂପେ ରହିଥାଏ । ବିକଶିତ ଭାଷାରେ ବିଲୀନ ହେବା କିମ୍ବା ସ୍ୱତନ୍ତ୍ର ଭାବେ ବଞ୍ଚି ରହିବା ଉକ୍ତ ଭାଷାର ପ୍ରାଣବତ୍ତା ଓ ବିକଶିତ ଭାଷାଭାଷୀଙ୍କ ଗୁଣ ଗ୍ରାହକତା, ଉଦାରପୂର୍ଣ୍ଣ ସହୃଦୟତା ତଥା ସମତାର ଭାବନା ଉପରେ ନିର୍ଭର କରେ । ହୁଏତ ଏ ଅବିକଶିତ ଭାଷା କାଳକ୍ରମେ ପୁନଃ ସଚେତନ ହୋଇ ବିକାଶ ଲାଭ କରି ପୂର୍ଣ୍ଣ ବିକଶିତ ଭାଷାମାନଙ୍କ ସମକୋଟିର ହୋଇପାରେ ବା ବିକଶିତ ଭାଷାରୁ କୌଣସି ଗୋଷ୍ଠୀ ଅଲଗା ସ୍ୱତନ୍ତ୍ର ଭାଷା ରୂପେ ମୂଳ ଭାଷାରୁ ମଧ ଅଧିକ ଉଚ୍ଚ କୋଟିକୁ ଯାଇପାରେ । ଗୁଜରାଟୀ, ଅସମିଆ ଆଦି ଭାଷା ଏହାର ନିଦର୍ଶନ ସ୍ୱରୂପ ଧରାଯାଇପାରେ । ଏପରି ପାର୍ଶ୍ୱସ୍ଥ ଭାଷାକୁ ନିଜର ସାଂସ୍କୃତିକ

ଓ ସାହିତ୍ୟିକ ମାଧ୍ୟମ ରୂପେ ଗ୍ରହଣ କରିନେଇ ଥିଲେ ହେଁ ନିଜର ମୌଳିକତା ସହ କଥିତ ରୂପେ ହିଁ ରହି ଯାଇଥିବା ଗୋଟିଏ ଭାଷା ହେଉଛି 'କୋଶଲୀ' ଭାଷା, ଯାହାକୁ ଅବଜ୍ଞାଭାବେ ବର୍ତ୍ତମାନ ଓଡ଼ିଆ ଭାଷାର ଉପଭାଷା ଆଖ୍ୟା ଦିଆ ଯାଉଛି ।

ଏ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିପାଦନ ପରେ କରିବାକୁ ଥିଲେ ହେଁ, ବିଚାର ଉଦ୍ରେକ ନିମିତ୍ତ ଏଠାରେ ଗୋଟିଏ ମାତ୍ର ଶବ୍ଦର ଉପନ୍ୟାସ ଆସ୍ଥାନିକ ହେବନାହିଁ । ପୁତ୍ତିକା ବା ଧଳା ପିମ୍ପୁଡ଼ି (White Ant) କୁ ହିନ୍ଦିରେ ଡ଼ିମକ, କୋଶଲୀରେ ଡ଼ିଆଁ ଓ ଓଡ଼ିଆରେ ଉଇ କହନ୍ତି । ଏହା ଏକମାତ୍ର ଡୀଙ୍ ବିହାୟସା ଗତୌ ଧାତୁରୁ ଦ୍ୟୁତ୍ପନ୍ନ ହେଲେହେଁ ଭିନ୍ନ ଭିନ୍ନ ରୂପ ନେଇଛି । ଶେଷ କାଳରେ ପକ୍ଷଯୁକ୍ତ ହୋଇ ବଡୁଥିବାରୁ ଏ ଧାତୁରୁ ଦ୍ୟୁତ୍ପନ୍ନ ହୋଇଛି ।

ହିନ୍ଦି :- ଡୀଙ୍ - ଡୀମ + ଅକ = ଡୀମକ ।

କୋଶଲୀ :- ଡୀଙ୍ - ଡୀଅ = ଡ଼ିଆଁ ।

ଓଡ଼ିଆ:- ଉତ୍+ଡୀଙ୍ - ଉ + ଡୀ = ଉଇ

ପୁନଶ୍ଚ ସେମାନଙ୍କ ବସାର ବିଚାର କରାଯାଉ -

ହିନ୍ଦି - ବମୀଠା, କୋଶଲୀ - ବିନେ, ଓଡ଼ିଆ - (ଉଇ) ହୁଙ୍କା ।

ବକୀଠା - ବମ୍ ଉଦ୍‌ଗୀରଣେ + ଈଠା (ଇଷ୍ଟନ୍) = ବମୀଠା ।

ବିନୋ - ବୃଣ (ବ୍ରୀଣ୍) ସଂଗ୍ରହେ (ହଲି - ବୀନନା) - ବିନ୍ + ଓ = ବିନୋ ।

ହୁଙ୍କା - ହୁଙ୍କ୍ - କୁଦିବା ବା ଉପରକୁ ଲଂଫ ଦେବା + ଆ = ହୁଙ୍କା ।

ଏଥିରୁ ଦେଖାଯିବ ଯେ ଉଇର ନାମକରଣରେ ଏକା ଧାତୁର ପ୍ରୟୋଗ ହୋଇଥିଲେ ହେଁ, ତଥା ବସା ପାଇଁ ହିନ୍ଦି ଓ ଓଡ଼ିଆରେ ଉପରକୁ ଉଠିବା ଭାବନା ହୋଇଥିଲେ ହେଁ ଭିନ୍ନଧାତୁ ପ୍ରଯୁକ୍ତ । କୋଶଲୀରେ ଯେଉଁ ଧାତୁ ପ୍ରୟୋଗ କରାଯାଇଛି, ତାର ମଦ୍‌ଭବ 'ବୀନନା' ଓଡ଼ିଆ ଭାଷାରେ ପ୍ରଯୁକ୍ତ ହୁଏନାହିଁ । ଏତଦ୍‌ଦ୍ୱାରା କୋଶଲୀ ଓଡ଼ିଆ ଅପେକ୍ଷା ହିନ୍ଦିର ହିଁ ପାଖ - ମଧ୍ୟ ଭାରତୀୟ୍ - ପୂର୍ବ ହିନ୍ଦି ବା କୋଶଲୀ ଗୋଷ୍ଠୀର ପ୍ରତିପନ୍ନ ହୁଏ । ଏ ଧର୍ମଂ ଶନୈ ସଂଶଇୟାଦ୍ ବଲୀକମିବ ପୁତ୍ତିକା' ଏହି ସ୍ମୃତ ବାକ୍ୟ ଅନୁସାରେ ସଂଚର ଧର୍ମିତାର ଅନୁସରଣ କରିଥିବାରୁ ଭାଷାର ପ୍ରାଚୀନତା ଓ ସଂସ୍କୃତର ସାନ୍ନିକଟ୍ୟ ପ୍ରକଟ ହୁଏ ।

ଏହି କୋଶଲ ପ୍ରଦେଶର ଲୋକେ ଓଡ଼ିଆ ଭାଷାର ବିକାଶର ଯେଉଁ ସ୍ତର ଠାରୁ ବା କେଉଁ ଶତାବ୍ଦୀରୁ ଲିପିସହ ଗ୍ରହଣ କଲେ ତାହା କହିବା ଦୁଷ୍କର । ଏହା ଐତିହାସିକ ମାନଙ୍କ ପରିସର

ଭୁକ୍ତ । ତେବେ ଏହା ପ୍ରତ୍ୟକ୍ଷ ଯେ, କ୍ରମଶ ଏ ପ୍ରଦେଶର ଲୋକେ ନିଜ ନାମ ଓ ଭାଷାକୁ ସରସ୍ୱତୀ ସ୍ରୋତ ତୁଲ୍ୟ ଗୁପ୍ତ ରଖି ସମୟ ବାହ୍ୟ କାର୍ଯ୍ୟାବଳିରେ ପ୍ରୟୋଗ ହେତୁ ଦ୍ୱାରାଗତଠାରୁ ନିଜ ପଡୋଶୀ ଲରିଆ ରାଜ୍ୟରେ ମଧ 'ଉଡ଼ିଆ' ନାମରେ ହିଁ ଆଖ୍ୟତ ହେଲା । ଏ ପ୍ରଦେଶର ଭାଷା ତାର ଦୁଇଗୋଟି ଉପଭାଷା ଜସପୁରୀ ଓ ଭତରୀ ସହ ଓଡ଼ିଆର ଉପଭାଷାରେ ଗଣ୍ୟ ହୋଇ, ଗୌରବର ସର୍ବ ନିମ୍ନସ୍ତରରେ ଉପସ୍ଥିତ ହେଲା ।

जाई मिजाजी उदधि में गंग नाम भो धीम।

काकी महिमा ना घटी पर धर गये 'रहीम।।

ଫଳତଃ ପ୍ରାଚୀନ ଦେଶପ୍ରଦର୍ଶକ ମାନଚିତ୍ର ମାନଙ୍କରେ ଏ ପ୍ରଦେଶରେ ଦକ୍ଷିଣ ବା ମହା କୋଶଳ ରୂପେ ପ୍ରଦର୍ଶିତ ହେଉଥିଲେ ହେଁ, ଭାଷା ପ୍ରଦର୍ଶକ ମାନଚିତ୍ରରେ ଏହାକୁ ଓଡ଼ିଆ କ୍ଷେତ୍ରରୂପେ ଦେଖା ହେଉଛି ।

ଇଂରେଜ ସରକାର ଯେତେବେଳେ ଯେଉଁ ଅଂଶକୁ ଅଧୀନ କରୁଥିଲେ, ସେତେବେଳେ ତାକୁ ପଡୋଶୀ ପ୍ରଦେଶ ସହ ଯୋଗ କରିଦେଉଥିଲେ । ସମ୍ବଲପୁର ଅଞ୍ଚଳ ପ୍ରଥମ ବଙ୍ଗଲ ଅଧୀନରେ ଓଡ଼ିଶା ଡ଼ିଭିଜନରେ ଥାଇ ପରେ ମଧ୍ୟପ୍ରଦେଶ ଅଧୀନକୁ ହସ୍ତାନ୍ତରିତ ହେଲା । ଏହି ସମୟରେ ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳକୁ ଏକତ୍ର କରିବା ପାଇଁ ଓଡ଼ିଶାରେ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଖଡିଆଳ ଅଞ୍ଚଳରେ ଜମିଦାରୀ ଅଞ୍ଚଳ ହୋଇଥିବାରୁ ସେପରି ଜନ ଜାଗରଣ ନଥିଲା । କିନ୍ତୁ ଯୁବରାଜ ବୀରବିକ୍ରମ ଦେବ 'ଉତ୍କଳ ଦୁର୍ଦ୍ଦଶା' ନାଟକ ଲେଖି, ତା'ର ପ୍ରାୟଃ ଦୁଇହଜାର ପ୍ରତି ଉତ୍କଳ ସମ୍ମିଳନୀ ଅଧିବେଶନ ଓ ବାମଣ୍ଡାର ବ୍ରତୋପନୟନ ଉତ୍ସବ କାଳରେ ବଣ୍ଟନ କରିଥିଲେ । ସବିବିଧ (ମୌଖିକ) ସମର୍ଥନ ଜଣାଉଥିଲେ ହେଁ, ଏଥିପାଇଁ ଭାଇସରାୟ ପାଖକୁ ସମ୍ବଲପୁରରୁ ଯେଉଁ ପ୍ରତିନିଧି ମଣ୍ଡଳ ଯାଇଥିଲେ ସେଥିରେ କେହି ଓଡ଼ିଆ ନେତା ଯୋଗ ଦେଇନଥିଲେ । ପରେ ଅବଶ୍ୟ ନାନା ଆଳ ଦେଖାଇ ଥିଲେ । ଖଡ଼ିଆଳର ତ କୌଣସି ପ୍ରଶ୍ନ ହିଁ ନଥିଲା । ଯାହା ହେଉ ସ୍ୱୀୟ ଆନ୍ଦୋଳନ ଫଳରେ ସନ୍ ୧୯୦୫ରେ ସମ୍ବଲପୁର ଓଡ଼ିଶାକୁ ଫେରି ଆସିଲା । ଖଡ଼ିଆଳ ସନ୍ ୧୯୩୬ ପର୍ଯ୍ୟନ୍ତ ରହିଲା ଓ ନୂତନ ଓଡ଼ିଶା ପ୍ରଦେଶ ଗଠନ ବେଳେ ଓଡ଼ିଶାକୁ ଆସିଲା । ଏ ସମୟରେ ମଧ କେହି ବିଶିଷ୍ଟ ନେତା ଆସି ଜନ ଜାଗରଣ କରାଇ ନଥିଲେ । ଏ ବିନମ୍ର ଲେଖଖ ସହ ମୋଟରେ ଆଠଜଣ ବିଦ୍ୟାର୍ଥୀ ରାୟପୁର ସରକାରୀ ହାଇସ୍କୁଲରେ ଅଧ୍ୟୟନ କରୁଥିଲେ ଓ ସେଠାରେ ପ୍ରୋବେଶନରେ ଥିବା ଡ଼ା. ପରେ କେପ୍‌ଟେନ୍ ଦୀନବନ୍ଧୁ ପଟ୍ଟନାୟକ ଓ ଓକିଲାତି କରୁଥିବା ବଉଦରାଜର ଭୁତପୂର୍ବ ଦେଓ୍ୱାନ (ବର୍ତ୍ତମାନ I.A.S.

Retired) ଶ୍ରୀ ବଙ୍କିମ ଚନ୍ଦ୍ର ପଟ୍ଟନାୟକଙ୍କ ନେତୃତ୍ୱରେ ରାୟପୁର ଷ୍ଟେସନରେ କମିଟିକୁ ସ୍ୱାଗତ କରି ଧ୍ୱନିମାନ ଦେଇଥିଲୁଁ। ଉକ୍ତ ଦୁଇଜଣ ସାକ୍ଷ୍ୟ ମଧ ଦେଇଥିଲେ। ମଧ୍ୟପ୍ରଦେଶ ସରକାର ତୀବ୍ର ବିରୋଧ କରୁଥିଲେ। ଖଡ଼ିଆଳରେ ମଧ ଅଣଓଡ଼ିଆ ଗୋଷ୍ଠୀ କେତେଜଣ ସ୍ଥାନୀୟ ଗୋତାଣିଆଙ୍କୁ ନେଇ ମିଶ୍ରଣ ବିରୋଧୀ ଆନ୍ଦୋଳନ କରୁଥିଲେ। 'ଲାଙ୍ଗେ ଓଡ଼ିଶା' ଏ ଦୁର୍ନାମ ସେ ସମୟରେ ଏ ଅଞ୍ଚଳରେ ବହୁ ପ୍ରଚଳିତ ଥିଲା। ଏ ସମୟରେ ଏହାର ବ୍ୟାପକ ପ୍ରଚାର କରି, ଲୋକଙ୍କୁ ଭୀତତ୍ରସ୍ତ କରି ମିଶ୍ରଣ ବିରୁଦ୍ଧରେ ମତାଇବାକୁ ଚେଷ୍ଟା କରା ଯାଇଥିଲା। ଏ ସବୁ ସତ୍ତ୍ୱେ ଖଡିଆଳର ସାହିତ୍ୟିକ ପରମ୍ପରା, ରାଜା ଆର୍ତ୍ତତ୍ରାଣ ଦେବଙ୍କ ସମ୍ମତି ଓ ଜନତାର ମୂକ ସମର୍ଥନ ହିଁ ଖଡ଼ିଆଳର ମିଶ୍ରଣର ମୂଳ କାରଣ। ଏଥିରେ କୌଣସି ଓଡ଼ିଆ ନେତାଙ୍କ, କାଗଜ କଲମରେ ଆବେଦନ-ପ୍ରବେଦନ ସ୍ମାରକୀ ଆଦିରେ ଅନ୍ୟାନ୍ୟ ଓଡ଼ିଶା ବାହାର ଅଞ୍ଚଳ ମାନଙ୍କ ତାଲିକାରେ ଖଡ଼ିଆଳର ନାମ ଦେବା ଛଡ଼ା ଆଉ କୌଣସି କର୍ତ୍ତୃତ୍ୱ ବା ପ୍ରଭାବ ନଥିଲା। ଥିଲେ ସେ ସମୟରେ ନହେଲେ ମଧ ସ୍ୱାଧୀନତାର ରାଜ୍ୟପୁନର୍ଗଠନ ସମୟରେ ଦେବଭୋଗ ଆଦି ବର୍ତ୍ତମାନ ସୁଦ୍ଧା ମଧ୍ୟପ୍ରଦେଶରେ ରହି ଯାଇଥିବା ଅଞ୍ଚଳ ମାନ ଆସି ଯାଇଥାନ୍ତା।

ସେ ସମୟରେ ଗଡ଼ଜାତ ମାନଙ୍କୁ ଅନ୍ଧାରି ମୁଲକ ବା ତତ୍ରତ୍ୟ ଲୋକମାନଙ୍କୁ ନିତାନ୍ତ ଜଙ୍ଗଲୀ ଓ ଭାଷାକୁ କିମ୍ଭୁତ କିମ୍ଭାକାର ଭାବେ ଚିତ୍ରିତ କରା ଯାଉଥିଲା। ସମ୍ବଲପୁର, ବାମଣ୍ଡା, ଖଡ଼ିଆଳ ଆଦିର ସାହିତ୍ୟିକ ଅବଦାନକୁ ଦରବାରୀ କିମ୍ବା କାଦାଚିକ ଧରା ଯାଉଥିଲା। ଲୋକ ବା ଲୋକଭାଷା ପ୍ରତି କୌଣସି ଉଚ୍ଚଭାବନା ନଥିଲା। ହିନ୍ଦି ଭାଷା ମଧ ଏ ପ୍ରାନ୍ତର ଲୋକଙ୍କୁ ବିଶେଷ ଅବୋଧ ବା ଅବ୍ୟବହାର୍ଯ୍ୟ ନଥିଲା। ତଥାପି ଓଡ଼ିଆ ଆନ୍ଦୋଳନ ହେଲା। ତା'ର କାରଣ ଅନ୍ତର୍ମନରେ ଯାହା ଥାଉନା କାହିଁକି ବହୁ ଶତାବ୍ଦୀ ଆତ୍ମ ସମର୍ପଣ ଓ ଆନୁଗତ୍ୟ ସାହିତ୍ୟିକ ପରମ୍ପରାର ମୋହ ଓ ଅଭ୍ୟସ୍ତ ବ୍ୟାବହାରିକ ସୌକର୍ଯ୍ୟ, ସର୍ବୋପପରି ହିନ୍ଦି ଭାଷୀ କର୍ମଚାରୀଙ୍କ ସିର ଚଢ଼ା ନୀତି ହିଁ ଅଟେ। ସେ ସମୟରେ ଛତିଶଗଡ଼ ଅଞ୍ଚଳ ଅତ୍ୟନ୍ତ ଅନୁନ୍ନତ ଥିଲା ଓ ଛୋଟ ଠାରୁ ବଡ଼ ପିଅନ ଠାରୁ ଅଫିସର ପର୍ଯ୍ୟନ୍ତ ପ୍ରାୟଃ ଉତ୍ତରପ୍ରଦେଶରୁ ଆସୁଥିଲେ ଓ ସେମାନଙ୍କର ହମ୍ ବଡ଼ା ଭାବନା ଓ ଅଜାଡୁଆ ବ୍ୟବହାର ଅତ୍ୟନ୍ତ ଉଦ୍‌ବେଗ ଜନକ ହେଉଥିଲା। ଉତ୍କଳୀୟଙ୍କ Big Brotherly ବ୍ୟବହାର ମଧ ଦେହସୁହା ହୋଇ ଯାଇଥିଲାଣି। ଆତ୍ମାପହ୍ନୁତି ତ ଥିଲା ହିଁ। ଏଥିପାଇଁ ପ୍ରମାଣ ସାକ୍ଷ୍ୟର ପ୍ରୟୋଜନ ନାହିଁ। ଏହା ଅଙ୍ଗେ ଲିଭାଇ ଥିବା କଥା। ସମ୍ବଲପୁର ଅଞ୍ଚଳରେ ହୁଏତ ୧୯୦୫ରେ ଯଥେଷ୍ଟ ସଜ୍ଞାନ ରହିଥିବା ଲୋକେ ବର୍ତ୍ତମାନ ନ ରହିପାରନ୍ତି; କିନ୍ତୁ ଖଡ଼ିଆଳ ଅଞ୍ଚଳରେ ସେ ସମୟରେ ସମ୍ପୂର୍ଣ୍ଣ ସଜ୍ଞାନ ଥିବା ଅନେକ ବର୍ଷୀୟାନ ବର୍ତ୍ତମାନ ବଞ୍ଚିଛନ୍ତି।

ବର୍ତ୍ତମାନ ଇଂରେଜ ମାନେ ଚାଲିଗଲା ପରେ ମଧ୍ୟ ଇଂରାଜୀ ସର୍ବଭାରତୀୟ ସ୍ତରରେ ସାହିତ୍ୟ ଓ ସଂସ୍କୃତି ପ୍ରକାଶନର ମାଧ୍ୟମ ରୂପେ ବ୍ୟବହୃତ ହେଉଛି ଓ ହିନ୍ଦିକୁ ରାଷ୍ଟ୍ରଭାଷା କରିବାରେ ଅହିନ୍ଦି ଭାଷୀ ରାଜ୍ୟମାନେ ଯେଉଁ କାରଣରୁ ବିରୋଧ କରି ଇଂରେଜୀକୁ ସର୍ବଭାରତୀୟ ଭାଷା ରୂପେ ଚାଲୁ ରଖିବାକୁ ଚାହୁଁଛନ୍ତି, ଏ ଆନ୍ଦୋଳନ ଠିକ୍ ସେହିପରି ଥିଲା । ତଳାଇ କରି ଦେଖିଲେ ଏଥିରେ ଯେ କେହି ବି ଅସମ୍ମତ ହେବାର ସମ୍ଭାବନା ନାହିଁ ।

ଉପକୂଳ ଭାଗର ଲୋକେ ଛୋଟ ବଡ଼ ଚାକିରୀରେ ଏ ଭାଗକୁ ଆସନ୍ତି । କିଛି ବର୍ଷ ରହନ୍ତି । ଏ ଭାଗରେ ବଦଲା ବଦଲୀ ହୋଇ ଅନେକ ବର୍ଷ ମଧ୍ୟ ରହନ୍ତି । ହେଲେ କଚେରୀ ଠାରୁ ବଜାର ପର୍ଯ୍ୟନ୍ତ ର କାମତ ଓଡ଼ିଆରେ ଚଳୁଛି । ଏ ଗ୍ରାମୀଣ, ଆଞ୍ଚଳିକ, ଉପଭାଷା ଶିଖିବା ଆବଶ୍ୟକ କ'ଣ ? ଗଞ୍ଜାମ କୋରାପୁଟ ଗଲେ ତେଲୁଗୁ ଶିଖିଯା'ନ୍ତି । ତା'ର ବିଶାଳ ସାହିତ୍ୟ ଅଛି । ତା ପ୍ରତି ସମ୍ମାନ ଅଛି । ଗୃହିଣୀ ମାନଙ୍କ କାମ ବାକର ଚାକରାଣୀ ସହ । ସେମାନେ ଏ ଭାଷା ଶୁଣନ୍ତି, କ୍ରମେ ବୁଝନ୍ତି, କିଛି ଶିଖନ୍ତି, ଏ ଭାଷାରେ ବରଗା ବରଗୀ ମଧ୍ୟ କରନ୍ତି । କିନ୍ତୁ ହାସ୍ୟ ବ୍ୟଙ୍ଗ ବିନୋଦଦର ଭାବ ରହିଥାଏ । 'ପୁଙ୍ଗାଲ୍ ନେ ଛିଙ୍ଗଲି ଗଲା', ଆରେ ବାବା ଏ କି ଭାଷା ? ଏ କାନ୍ତାରକ ଭାଷା, ଆରଣ୍ୟକା ଭାଷା । କିଏ ବୁଝିବ । ଏ ଯେ ସିଧାସଳଖ ସଂସ୍କୃତିଆ ଏ ଧାରଣା ହିଁ ନାହିଁ । ଗଲ ହରଣେ ଧାତୁ ଅଛି । ଛତ ଗଳୁଛି କହନ୍ତି । ଗମନାନୁକୂଳ ଅର୍ଥଦ୍ୟୋତକ ଗଳିବାଟେ ଗଳିଗଲି, ଲୁଲା ଭାଉଜର ବଳା ଦେଖଇଲି, ଗୋଡାଇ କଳା ବୋଲିଲି' ଦାସକାଠିଆ ଗୀତ ବି ଶୁଣିଥାନ୍ତି । କିମ୍ବା ରାଧାନାଥଙ୍କ 'ଚିତ୍ରପ୍ରୋଳା ତହିଁ ବିସ୍ତାରି ପୟର ଗଳାଇ ତାକୁ ମଝିରେ' ପଢ଼ି ବି ଥାଇପାରନ୍ତି । କିନ୍ତୁ ଏ ଯେ ଗ୍ରାମୀଣ ଉପଭାଷା ଏଥିରେ ଶୁଦ୍ଧ ଶବ୍ଦ ଆସିବାର ପରିକଳ୍ପନା ଆସିବ କିପରି ?

ଫୁଟ୍-ଫୁ+ଗଳ+ = ଫୁଙ୍ଗଲ - ଫୁଟ୍‌କାର ଗଳି ଯିବାଭଳି ଅତି ସଂକୀର୍ଣ୍ଣ ବ୍ୟବଧାନ । ପାପ୍ଲାର୍ନ ତଛତି, ନଦୀଂ ତରତି ପରିଛିଦ୍ରଂ ଗଳତି । ବା ଭୟଙ୍କର, ନକ୍ତଂଚର, ବାଚଂଯମ, ଅଙ୍ଗଗତ ପରିଛିଦ୍ର ଗଳ କ୍ରିୟାର୍ଥକ ଚା - ଇଚା ଯୋଗରେ ଭାଗାରେ ଛିଙ୍ଗଳିବା ହୋଇଛି । ଏତେ ଭିତରକୁ ପଶୁଛି କିଏ ? ସଂସ୍କୃତ ଜ୍ଞାନ ଥିଲେ ମଧ୍ୟ ଶିଖିବା ଆଭିମୁଖ୍ୟ ଥିଲେ ତ ।

ଓଡ଼ିଆ ଗୋଟିଏ ଅତି ପ୍ରାଚୀନ ଭାଷା । ଚର୍ଯ୍ୟାଦିମାନଙ୍କ ଠାରୁ ତା'ର ଇତିହାସ ରହିଛି । ଏହା ପୂର୍ବୀଭାଷା ଗୋଷ୍ଠୀରା ଦିନେ ଏହାକୁ ଗୋଟିଏ ଉପଭାଷାରେ ପରିଣତ କରିବାକୁ ଅପଚେଷ୍ଟା ହୋଇଥିଲା । କିନ୍ତୁ କୃତୀ ସନ୍ତାନମାନଙ୍କ ପ୍ରବଳ ଚେଷ୍ଟା ଫଳରେ ତାହା ବିଫଳ ହେଲା । ଏହାକୁ ବଙ୍ଗଳା ଭାଷାର ଜ୍ୟେଷ୍ଠ ଭଗିନୀ ଭାବେ ଭାଷାବିତ୍‌ମାନେ ମତବ୍ୟକ୍ତ କରନ୍ତି; ହେଲେ ଅତି

ସଂପନ୍ନ ସାନ ଭଉଣୀକୁ ବଡ଼ଭଉଣୀ ଅନୁଗତ ରହିଲା ପରି ଅବସ୍ଥା ଥିଲେ ହେଁ, ତା'ର ସ୍ୱାତନ୍ତ୍ର୍ୟ ଅଛି ଏହା ଗୋଟିଏ ସଂପନ୍ନ ଭାଷା । ଏଥିରେ ଭାରତୀୟ ପରମ୍ପରାର ସାହିତ୍ୟ ବିଭବ ପୁରିରହିଛି । ପ୍ରାଣମୟ ଲୋକଗୀତ ସରଳ ପ୍ରାଞ୍ଜଳ ଭାବପ୍ରକାଶ, କୋଇଲି-କମଳଲୋଚନ-ଗୋପୀ ଭାଷା ଅଳଙ୍କାର ବୋଲି ଠାରୁ ରୀତିଯୁଗର ଆଳଙ୍କାରିତାର ଚରମ ବିକାଶ, ଅଭାବନୀୟ କଳ୍ପନାର ଉତ୍‌ତୟନ, ବୃଦ୍ଧି ବିମୋହିନୀ ଅର୍ଥବିବେଶ, ଜିହ୍ୱାଦମୋଟିନୀ ଶବ୍ଦ ଯୋଜନା, ଚକ୍ରକାବ୍ୟର ଗୋରଖଧନ୍ଦା, ପୁରାଣ ସାହିତ୍ୟ, ସନ୍ଥ ସାହିତ୍ୟ, ଭକ୍ତି ସାହିତ୍ୟ, ଶରୀର ଭେଦ, ବଚନିକା, ମାଳିକା, ବୈଦ୍ୟକ, ଜ୍ୟୋତିଷ, ଶିଳ୍ପଶାସ୍ତ୍ର ଠାରୁ ଗୁଣି ଗାରେଡୀ ଯାଏ । ପରିସ୍ଥିତି ଅନୁସାରେ ଆଗ ହେଉ ପଛ ହେଉ ସମୟର ଗତି ସହ ତାଳଦେଇ ମଧ ଚାଲିଛି । ନୁଆ ଯୁଗର ଭାବନା ସର୍ବ ଭାରତୀୟତା ସହିତ ଆଞ୍ଚଳିକତାର ମଧ ବିକାଶ ଘଟିଛି । ଏକତ୍ୱରେ ବହୁତ୍ୱ ଓ ବହୁତ୍ୱରେ ଏକତ୍ୱର ସମାବେଶ ସବୁ ଭାରତୀୟ ସାହିତ୍ୟରେ ଅନ୍ତର୍ନିହିତ ରହୁଛି । ନୂତନ ରାଷ୍ଟ୍ରୀୟ ଓ ସାମାଜିକ ଚେତନା ତଥା ଆଶା ଆକାଂକ୍ଷାର ପ୍ରତିଫଳନ ରହୁଛି । ଏ ସବୁ ସତ୍ତ୍ୱେ ତଥା କଥିତ ପଶ୍ଚିମ ଓଡ଼ିଶାର ସ୍ଥାନ ଓଡ଼ିଆ ସାହିତ୍ୟରେ କେତେ ଅଛି । ଗଙ୍ଗାଠାରୁ ଗୋଦାବରୀ ଯାଏ ବ୍ୟାପିଥିବା ଉତ୍କଳ ସାମ୍ରାଜ୍ୟର ମହନୀୟ ସ୍ମୃତି ତ କେବଳ ଉପକୂଳ ଅଞ୍ଚଳ ପାଇଁ । ଏହି ପଟରେ ବି ବନ, ପର୍ବତ, ନଦୀ, ନାଳ, ଝରଣାର ପ୍ରାକୃତିକ ଶୋଭା ଭଣ୍ଡାର ରହିଛି । ରାଜା ମହାରାଜା ମାନେ, ଜମିଦାର ମାନେ, ପ୍ରଚୁର ଭୂମ୍ୟଧିକାରୀ ଗୌନ୍ତିଆମାନେ ଥିଲେ । ବ୍ରାହ୍ମଣ କରଣ ଆଦି ଜାତି, ନାନା ପାଟକୀ ଜାତି, ବିଶିଷ୍ଟ ଅନୁସୂଚିତ ତପ୍ସ ଆଦି ଜାତି, ଶବର, ଗଣ୍ଡ, ଭୁଞ୍ଜିଆ, କିଂଝାଲ ଆଦି ବିଶିଷ୍ଟ ଜାତି ଅଛନ୍ତି । ଏ ପ୍ରଦେଶର ରୀତି, ନୀତି, ପ୍ରଥା, ଯାନିଯାତ୍ରା, ପର୍ବପର୍ବାଣି - ବିଶେଷତଃ ନୂଆଖାଇ, ପୁଷପୁନି, ବିଭିନ୍ନ ସାମାଜିକ କୌଟିମ୍ବିକ ସମସ୍ୟା କୁସଂସ୍କାର, ଧର୍ମମାନ୍ୟତା, ଲୋକଗୀତ, ଲୋକନାଟ୍ୟ, ପୁଆଙ୍ଗ, ଲୀଳା ଆଦି ସାହିତ୍ୟ ବିଭବ ପାଇଁ କୌଣସି ବିଷୟ ବସ୍ତୁର ଅଭାବ ନାହିଁ । ଏ ସବୁର ପ୍ରତିଫଳନର ଅଭାବ ସମତା ଓ ଆତ୍ମୀୟତାର ଅଭାବର ହିଁ ଦ୍ୟୋତକ ନୁହେଁ କି ? କବି, ଔପନ୍ୟାସିକ, ଗାଳ୍ପିକ, ପ୍ରାବନ୍ଧିକ ଆଦି ସବୁ ଶ୍ରେଣୀୟ ସାହିତ୍ୟିକଙ୍କ ଦୃଷ୍ଟି ଏ ଦିଗକୁ କାହିଁକି ପଡ଼ିନାହିଁ ? ସ୍ୱୟଂ ସୋନପୁରରେ ଜନ୍ମିଥିବା ଗୋପୀନାଥ ମଧ କୋଇଲି ଗୋତ୍ର ସୁମରି ଉଡ଼ିଗଲା ପରି ଏହାକୁ ପାଶୋରି ଗଲେ କି ? ସ୍ୱୟଂ ଏ ପ୍ରଦେଶର କବିମାନେ ବ୍ରଜରାଜ, ବୀର ବିକ୍ରମ, ମେହେର ଆଦି ମଧ ଦୁଇ ତଟରର ଶୋଭା ଦେଖିଛନ୍ତି ପାଦ ତଳର ହରିତ ଶାଦ୍‌ବଳ ପ୍ରତି ଦୃଷ୍ଟି ଦେଇ ନାହାନ୍ତି । ସେମାନଙ୍କ ପ୍ରଶଂସା ଉତ୍କଳ ସାହିତ୍ୟକୁ ଅବଦାନ ଯୋଗୁ । କେବଳ ମେହେର 'ଉତ୍କଳ ଲକ୍ଷ୍ମୀ'ରେ ଭାବମୟ ସ୍ମରଣ କରିଛନ୍ତି ମାତ୍ର । କବି ଗଙ୍ଗାଧର ମାତ୍ର ଦୁଇଟି କ୍ରିୟ 'ନିଛିବା' (ତପସ୍ୱିନୀ) ଓ 'ଛିନିବା' (କୀଚକ) ପ୍ରୟୋଗ କରି ବହୁ ସମାଲୋଚନାର ସମ୍ମୁଖୀନ ହୋଇଥିବାର

ଶୁଣାଯାଏ । ଫଳତଃ ସେ ଆଉ ପ୍ରୟୋଗ କଲେ ନାହିଁ । ଯେଉଁ ଗଙ୍ଗାଧର 'ମାତୃଭୂମି ମାତୃଭାଷାର ମମତା ଯାହୃଦେ ଜନମି ନାହିଁ, ତାକୁ ଯଦି ଜ୍ଞାନୀ ଗଣରେ ଗଣିବା ଅଜ୍ଞାନୀ ରହିବେ କାହିଁ ?' ତଥା, 'ଉଚ୍ଚ ହେବା ପାଇଁ ଯଦି କର ଆଶା, ଉଚ୍ଚ କର ଆଗ ନିଜ ମାତୃଭାଷା' ଉର୍ଦ୍ଧ୍ୱବାହୁ ହୋଇ ଉଦ୍‌ଘୋଷିତ କରିଥିଲେ, ସେ ନିଜ ମାତୃଭାଷା (ନିଜ ମାତୃ ଗର୍ଭରୁ ଶିଖି ଆସିଥିବା ଭାଷା) କୁ କେତେ ଉଚ୍ଚ କଲେ ? ସେ ଜନ୍ମୋତ୍ତର ସର୍ବ ସାଧାରଣ ସଙ୍ଗେ ଓଡ଼ିଆକୁ ହିଁ ନିଜ ମାତୃଭାଷା ଓ ଏ ଭାଷାକୁ ଅଶୁଦ୍ଧ, ଗ୍ରାମୀଣ, ଅପଭ୍ରଷ୍ଟ ଓ ହେୟ ବୋଲି ଧରି ନେଇଥିଲେ, ଏଣୁ ଅନ୍ତର୍ଗତେ ବାସ୍ତବତା ଜାଣି ସୁଦ୍ଧା ବାହ୍ୟ ଚାପରେ ନିବୃତ୍ତ ହୋଇ ରହିଲେ । ଉକ୍ତ ଦୁଇ ଗୋଟି ଶବ୍ଦର ଅର୍ଥ ଅନେକ ଦିନଯାଏ ଓଡ଼ିଆ ବିଦ୍ୱାନ୍‌ମାନେ ବୁଝି ପାରିନଥିଲେ । ବର୍ତ୍ତମାନ ବହୁ ଚର୍ଚ୍ଚିତ ହେବାରୁ ତାର ଶବ୍ଦାର୍ଥତ ବୁଝୁଛନ୍ତି, ତାର ବ୍ୟୁତ୍ପତ୍ତିକ ଅର୍ଥ ଜାଣିଥିବାର ଅନୁମିତ ହୁଏନାହିଁ । ଏହାକୁ ଆଞ୍ଚଳିକ ପ୍ରୟୋଗ କହି କ୍ଷମ୍ୟ ମନେ କରୁଛନ୍ତି । ଏ ଦୁଇ ଶବ୍ଦ ଯେ ଓଡ଼ିଆ ଭାଷାର ଅନ୍ୟାନ୍ୟ ଶବ୍ଦ ପରି ତଦ୍‌ଭବ ତା ସେମାନଙ୍କ କଳ୍ପନା ବାହାରେ । ଉର୍ଦ୍ଧ୍ୱରୁ ତଳକୁ ବା ତୀର୍ଯ୍ୟକ ଦିଗରୁ ଆସୁଥିବା କୌଣସି ବସ୍ତୁର ଗତିକୁ ଛିନ୍ନ କରିବା (ଛିଦ୍+କ୍ତ ଆତ୍ୱର୍ଥକ ଇବା) = ଛିନିବା ତଥା (ନିଃ +ତ୍ୱକ = ନିସ୍ତ୍ୱକ = ନିଶ୍ଚ+ଇବା) = ନିଛିବା ହୋଇଛି । ଏ ହେୟ ଭାଷାର ଅନୁସନ୍ଧାନର ଆବଶ୍ୟକତା କ'ଣ ? ଛେର୍‌ଛେରା ସ୍ୱଭାବୋକ୍ତି ହୋଇଥିବାରୁ ରମ୍ୟରଚନା ମାତ୍ର ଏ ଚାଷଗୀତ ଆଦିକୁ କୌଣସି ସାହିତ୍ୟରେ ଧରାଯାଇ ନପାରେ । ଏହାର ସାହିତ୍ୟିକ ମୂଲ୍ୟାୟନ ଅନାବଶ୍ୟକ ।

ବର୍ତ୍ତମାନର ବୃଦ୍ଧ କବି ଖଗେଶ୍ୱର ସେଠ 'ପରଛାସତୀ' କବିତା କୋଶଲୀ ଭାଷାରେ ଲେଖିଛନ୍ତି, ମାତ୍ର ତାଙ୍କୁ ତାର ଗୋଟିଏ ଓଡ଼ିଆ ପ୍ରତିରୂପ ଦେବାକୁ ପଡିଛି । ଏ ଭାଷା ଯଦି ଓଡ଼ିଆ, ତାର ପ୍ରତିରୂପର ଆବଶ୍ୟକତା କ'ଣ ? ସମ୍ବଲପୁର ଆକାଶବାଣୀ କେନ୍ଦ୍ରରୁ ଯେଉଁ ସମ୍ବଲପୁରୀ ନାମରେ ଏ ପ୍ରାନ୍ତର ଗୀତ ଆଦି ପ୍ରଚାରିତ ହେଉଛି, ତାର ଲୋକପ୍ରିୟତା ସୁଶ୍ରାବ୍ୟତା ଓ ଆପାତ ରମଣୀୟତା ପାଇଁ, ଉଚ୍ଚ ସାହିତ୍ୟିକ ସାରବତ୍ତା ପାଇଁ ନୁହେଁ । ଜଣେ ଦିଗମ୍ବର ସିଦ୍ଧ ସନ୍ୟାସୀ କିମ୍ୱା ଜଣେ ଉଲ୍ଲଗ୍ନ ଆଦିବାସୀକୁ ଦେଖିବାକୁ ଅନେକ ଲୋକ ରୁଣ୍ଡ ହୁଅନ୍ତି, କିନ୍ତୁ ମନୋଭାବ ଭିନ୍ନ ଥାଏ । ଏହା ସେହିପରି ଏକା ।

ଯେଉଁ ମହନୀୟ ଆତ୍ମାମାନେ ଦେଶ ଜାତି ଧର୍ମ ପାଇଁ ଆତ୍ମବଳି ଦିଅନ୍ତି ସେମାନେ ଚିର ସ୍ମରଣୀୟ । ଚିରକାଳ ଯାଏ ମାନବ ସମାଜକୁ ପ୍ରେରଣା ଦେଇଥାନ୍ତି । ଓଡ଼ିଶାର ଲକ୍ଷ୍ମଣ ମଲିକ, ବାଜୀ ରାଉତ ଆଦି ବଳିଦାନୀ ଚିରକାଳ ଓଡ଼ିଆ ହୃଦୟରେ ବିରାଜମାନ ରହିଥିବେ । ଏମାନଙ୍କ ନାମ ଓଡ଼ିଶାର ଗଗନ ପବନକୁ ମୁଖରିତ କରୁଛି । ବହୁ ପ୍ରବନ୍ଧ କବିତା ଆଦି ଓଜସ୍ୱିନୀ ଭାଷାରେ ଲେଖା ହୋଇଛି । ମାତ୍ର ଓଡ଼ିଶାର ବୀରତ୍ୱର ଅନ୍ତିମ ସ୍ଫୁଲିଙ୍ଗ ସୁରେନ୍ଦ୍ର ସାଏ ଭାରତର ପ୍ରଥମ

ସ୍ୱାଧୀନତା ସଂଗ୍ରାମର ଜଣେ ଆତ୍ମାହୁତିକାରୀ ବୋଲି ସ୍ୱୀକୃତ ହେଲେ ହେଁ ଅବହେଳିତ । ଇଂରେଜ ସରକାର ବିପୁଳ ଶକ୍ତି ବିରୁଦ୍ଧରେ, ମାତ୍ର କେଇଜଣ ସାଥୀଙ୍କୁ ଧରି ଯେଉଁ ସଂଗ୍ରାମ ଚଳାଇଥିଲେ ତାକୁ ଅସମ୍ଭବ ପରିକଳ୍ପନା ବା ଅବିମୃଶ୍ୟ-କାରିତା ଆଖ୍ୟା ଦିଆଯାଇ ପାରେ । କିନ୍ତୁ ଗଭୀର ଦେଶପ୍ରୀତି, ଉତ୍ତୁଙ୍ଗ ଆତ୍ମାଭିମାନ, ଅଟଳ ପ୍ରତିଜ୍ଞା, ଅଦମ୍ୟ ଉତ୍ସାହ, ଅସୀମ ସାହସ, ଅନମନୀୟ ଦୃଢ଼ତା, ଅନିବୃତ୍ତିକ ବୀରତ୍ୱ, ଅତୁଳନୀୟ ଶୌର୍ଯ୍ୟବୀର୍ଯ୍ୟ ଆଦିର କେତେ ଚିତ୍ରଣ ଓଡ଼ିଆ ସାହିତ୍ୟରେ ଅଛି ? ଶେଷରେ ତାଙ୍କର ଉଦାର ଉଜ୍ଜ୍ୱଳ ଚରିତ୍ର ଓ ଶୋଚନୀୟ ପରିଣତିର ଇତିହାସ ଜଣେ ସମ୍ବଲପୁରୀ ହିଁ ଲେଖିଲେ ।

ଓଡ଼ିଆ ଭାଷା ଉଦ୍‌ଭବ ଓ ବିକାଶ ତଥା ଓଡ଼ିଆ ସାହିତ୍ୟର ଇତିହାସକୁ ନେଇ ଯେଉଁ ବିଦ୍ୱାନମାନେ ଗ୍ରନ୍ଥ ଆଦି ରଚନା କରିଛନ୍ତି ସେମାନେ ଓଡ଼ିଆ ଭାଷାକୁ ହିଁ ନେଇ କରିଛନ୍ତି । ଏ ଭାଷା ପ୍ରତି ଦୃଷ୍ଟି ଦେଇନାହାନ୍ତି ବା ଉଲ୍ଲେଖ ମାତ୍ର କରିଦେବା ଯଥେଷ୍ଟ ମନେ କରିଛନ୍ତି । ମୂଳରୁତ ଏହାକୁ ଉପଭାଷା ବୋଲି ଧରି ନିଆ ଯାଉଛି, ଏହାର ଅଲଗା ବିଚାର କରିବା ପ୍ରୟୋଜନ କ'ଣ ? 'ଗୋଶୃଙ୍ଗ ଗାହିକା', ନ୍ୟାୟରେ ସିଂଘ ଧରି ଟାଣିଲେ ଗାଈ ସହ ଲାଙ୍ଗୁଳତ ଯିବ ହିଁ ଯିବ, ଲାଙ୍ଗୁଳ ଧରି ଲାତ ଖାଇବା (ଗଭୀର ଅନୁସନ୍ଧାନର କଷ୍ଟ ପାଇବା)ର ଆବଶ୍ୟକତା କାହିଁ ?

ଆଜିକାଲି ଅନେକ ଯୁବକ ଓଡ଼ିଆ ଆଦି ଭାଷାରେ ଏମ୍.ଏ କରି ସନ୍ଦର୍ଭମାନ ଲେଖି ପି.ଏଚ୍.ଡ଼ି. ଡ଼ି.ଲିଟ୍ ଆଦି ଡିଗ୍ରୀପ୍ରାପ୍ତ କରୁଛନ୍ତି, କିନ୍ତୁ ଏ କୋଶଲୀ ଭାଷା ଉପରେ ଗବେଷଣା କରିବାକୁ କେହି ପ୍ରବର୍ତ୍ତୁ ନାହାନ୍ତି । ଏତ ପଡ଼ିଆ ଭୂମି, ଏଠାରେ ଡ଼ିଗ୍ରୀ ବାଷର ସମ୍ଭାବନା ନାହିଁ । ଚକରିଆ ପଣ୍ଡାର ଡାକ 'ପଡ଼ିଆ ଭୂମିରେ ଗୋଧନ ଚରଇ' । ଏ ପଡ଼ିଆଭୂମି ଡାକୁଛି ପଡ଼ି - କଷ୍ଟପଡ଼ି ସୁଧା-ଅ, ମୋର ଗବେଷଣା କର । କିନ୍ତୁ କେହି ଗୋଧନ (ଗୋ-ବାଣୀ ଅଟେ ଧନ ଯାହାର) ଏଠାକୁ ଚରିବାକୁ - ବିବରଣ ବା ଗବେଷଣା କରିବାକୁ ଆସୁ ନାହାନ୍ତି ।

କେବଳ ଡ଼ା. କୁଞ୍ଜବିହାରି ତ୍ରିପାଠୀ ତାଙ୍କ 'The Evolution of Oriya Language and Script' ଗ୍ରନ୍ଥରେ 'Western Oriya' ଶୀର୍ଷକରେ ଏ ଭାଷାର କିଛି ବିଚାର କରିଛନ୍ତି । କିନ୍ତୁ ତାହା କେବଳ ବାହ୍ୟରୂପ ମାତ୍ର, ଭିତରକୁ ପଶି ପର୍ଯ୍ୟବେକ୍ଷଣ କରି ନାହାନ୍ତି । ଅବଶ୍ୟ କେତେଗୋଟି ଶବ୍ଦକୁ 'ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନମ୍' ନୀତିରେ ଦେଖି 'Unintelligible to Oriya speakers Living out side Western Orissa' କହିଛନ୍ତି । ଯଦି ଓଡ଼ିଆ ଲୋକ ବୁଝି ନପାରିଲେ ତ ଓଡ଼ିଆ ହେଲା କିପରି ? ବାସ୍ତବରେ ଏହା ଗୋଟିଏ ସଂପୂର୍ଣ୍ଣ ଭିନ୍ନ ଭାଷା । ସେ ପ୍ରାୟଃ ୩୫୦ ଶବ୍ଦ ସଂଗ୍ରହ କରିଥିବା ଓ ଆହୁରି ସଂଗ୍ରହ କରୁଥିବା ଲେଖିଥିଲେ ହେଁ,

ଏ ୨୦ ବର୍ଷରେ କ'ଣ କରିଛନ୍ତି ଜଣା ନାହିଁ। ସେ ବାହ୍ୟ ବୟାକରଣିକ ରୂପକୁ ଭଲଭାବେ ପର୍ଯ୍ୟବେକ୍ଷଣ କରିଛନ୍ତି ଓ ଉତ୍ତମ ଭାବେ ଉପନ୍ୟସ୍ତ କରିଛନ୍ତି। ଯେତିକି ପ୍ରଭେଦ ଓଡ଼ିଆ ଭାଷା ସହ ଦେଖାଇଛନ୍ତି, ସେତିକି କଣ ଗୋଟିଏ ଭିନ୍ନ ଭାଷା ହେବା ପାଇଁ ଯଥେଷ୍ଟ ନୁହେଁ ? ପଡୋଶୀ ବଙ୍ଗ ଭାଷା ସହ ତୁଳନା କଲେ ସ୍ପଷ୍ଟ ହେବ। ପୁନଃ ଅପର ପଡୋଶୀ ଭାଷା ସ୍ୱଗୋଷ୍ଠିକ ଅଓ୍ୱଧୀ ସହ ମଧ ତୁଳନା କରିଥିଲେ ଏ ଭାଷାର ନୈକଟ୍ୟକାର ସଙ୍ଗେ ଅଛି ତା ଜଣା ପଡିଯାଇଥାନ୍ତା। କିନ୍ତୁ ମୂଳରୁ ଏହାକୁ ଓଡ଼ିଆର ଉପଭାଷା ରୂପେ ଧରିନେଇ ବିଚାର କରିବାରୁ ପ୍ରଭେଦ ପ୍ରଦର୍ଶନ ଛଡା ଆଉ କିଛି କରିବାର ନଥିଲା। ଏହାକୁ କାହାରି ସଙ୍ଗେ ସମ୍ବୋଧନ ନକରି ସ୍ୱତନ୍ତ୍ର ଭାବେ ଉଭୟ ପାର୍ଶ୍ୱର ଭାଷା ସହ ତୁଳନାତ୍ମକ ଅଧୟନ କରିଥିଲେ ଉପଯୁକ୍ତ ନିର୍ଣ୍ଣୟ ହୋଇ ପାରିଥାନ୍ତା। ଏ ସବୁର ବିଚାର ଉପଯୁକ୍ତ ସ୍ଥାନରେ କରିବାକୁ ଥିଲେ ମଧ ଏଠାରେ ତାଙ୍କ ଉପନ୍ୟସ୍ତ କେତୋଟି ଶବ୍ଦର ଚର୍ଚ୍ଚା କରିନେବା ଅପ୍ରାସଙ୍ଗିକ ହେବନାହିଁ।

୧. ଇହାଦେ :-

ସଂ ହିଂ କୋ° ଓଂ ବଂ ଇହ + ଅଦ୍ୟ + ଏବ ଯହାଂ ଅଭ୍ର ହୀ ଇହାଦେ ଏଠି ଏବେ ଏଖାନେ ଏଖନ୍।

୨. ହାଦେ - ଏହା ଉହାଦେର ସଂକ୍ଷିପ୍ତ ରୂପ, ହେଲେ ହା କୁ ଟିକିଏ ଲମ୍ୱାଇ କୁହାଯାଏ। ଓଡ଼ିଆରେ ହାଦେ ଠାରୁ ଏ ଭିନ୍ନ।

ସଂ ହିଂ କୋଶଲୀ ଓଂ ବଂ ଉହ + ଅଦ୍ୟ+ ଏବ ଯହାଂ ଅଭ୍ର ହୀ ଉ ହାଦେ ସେଇଠି ଏବେ ସେଖାନେ ଏଖନ୍।

୩. ଗା, ଗେ, ଗୋ - ଏହା ସଂସ୍କୃତର ସମ୍ବୋଧନ ଭଗୋସ୍‌ର ଅ ଭାଷା ରୂପ ଅଟେ। ଗୋ ଶବ୍ଦର ବ୍ୟାପକ ବ୍ୟବହାର କୋଶଲୀ ଓଡ଼ିଆ ଓ ବଙ୍ଗଳାରେ ହୁଏ। ଗା ଓ ଗେର ବ୍ୟବହାର ଓଡ଼ିଆରେ ନାହିଁ। ଗା ଓ ଗେ ବଙ୍ଗଳାରେ ଓ ଗେ ମୈଥିଲୀରେ 'ଏ ଗେ ମାଇ' ଆଦିରେ ବ୍ୟବହୃତ ହୁଅନ୍ତି। କୋଶଳୀରେ ଅତି ଅନ୍ତରଙ୍ଗ କିମ୍ୱା ନିକୃଷ୍ଟଙ୍କୁ ସମ୍ବୋଧନରେ ଗା ପ୍ରଯୁକ୍ତ ହୁଏ। ଖଡ଼ିଆଳ, କଳାହାଣ୍ଡି ଓ ବଲାଙ୍ଗିର ଜିଲ୍ଲାର ଡ଼ମ (ଡମ୍ବ) ମାନେ ଗେର ମଧ ବ୍ୟବହାର କରନ୍ତି। ଆସ ଗେ (ଆ ଗୋ), ଜାସ୍ ଗେ (ଯାଅ ଗୋ) ଆଦି। ମୂଳ ଉତ୍ସରୁ ପରସ୍ପର ନିରପେକ୍ଷ ଭାବେ ଏ ଭାଷାମାନେ ଅନୁହରଣ କରିଥିବା ସ୍ପଷ୍ଟ।

୪. ଖୋ, ଖୁ, କୋଖ୍ା, ଖ୍ୱୋ ଆଦି ମନୋଭାବ ଅଭିବ୍ୟକ୍ତି ଓ ମୁଖଭଙ୍ଗୀ ଅନୁଯାୟୀ ଉଚ୍ଚରିତ। ଏହା ସଂସ୍କୃତ ଖଲୁ, ପ୍ରାକୃତ କକ୍‌ଖୁ ଅଟେ। ଅସମ୍ମତି, ଆଶ୍ଚର୍ଯ୍ୟ, ତୁଚ୍ଛତା ପ୍ରଦର୍ଶନ ଆଦିରେ ବ୍ୟବହୃତ ହୁଏ। ଖଲୁ - ନିଷେଧ ବାକ୍ୟଳଙ୍କାର ନିଷେଧେଷୁ -

୫. ହଁତା (ହନ୍ତା) - ଏହା ସଂସ୍କୃତର 'ହନ୍ତ' ର ଭାଷା ରୂପ । ବିଷାଦ, ଖେଦ, ଆଶ୍ଚର୍ଯ୍ୟ ପ୍ରକାଶ, ବାକ୍ୟାରମ୍ଭ ଆଦିରେ ବ୍ୟବହୃତ ହୁଏ । କହୁଁ କହୁଁ ବାକ୍ୟ ମଝିରେ ଉପଯୁକ୍ତ ଶବ୍ଦ ସ୍ମରଣ ନହେଲେ (ପାଶୋରି ଯିବାର ଖେଦ ପ୍ରକାଶ ସ୍ୱରୂପ) ହଁତା ଶବ୍ଦ ଭରି ଦିଆଯାଏ ଓ ସ୍ମରଣ ହେଲେ ବାକ୍ୟ ଶେଷରେ କହି ଦିଆଯାଏ । ସେ ହଁତା କେ ତାକ ତ ବୋରାମ କେ । ସ୍ମରଣ ହେଲେ ତତ୍କାଳ ମଧ କହି ଦିଆଯାଏ - ମୋର ହଁତା କଲମ କେନ ଠାନେ ଅଛେ ? ହଁତା କାଏଁଟା କରୁଛୁ ବୋ ! ଆଦି । 'ହନ୍ତ ହର୍ଶେ ବିଷାଦେଽନୁକମ୍ପାୟାଂ ବାକ୍ୟାରମ୍ଭେଚ' (ଅମର)।

୬. ଅନେକ ଶବ୍ଦର ମୂଳ ଖୋଜି ନ ପାଇଲେ ପ୍ରାୟଃ ଏ ସବୁକୁ ଦେଶଜ (ପ୍ରକୃତି ପ୍ରତ୍ୟୟ ମୂଳକ ବ୍ୟୁତ୍ପତ୍ତି ନଥିବା ଶବ୍ଦ), ବହିରାଗତ ଆଦି କହି ଦିଆଯାଏ । ଅଥଚ ସେ ସବୁକୁ ସଂସ୍କୃତ ମୂଳରୁ ମଧ ବ୍ୟୁତ୍ପନ୍ନ କରାଯାଇ ପାରେ । ଯଥା -

(କ) କାନ୍ଦୁଲ - କନ୍ଦଇବ ସ୍ୱଦତେ ଇତି + ଭାବେ ଅ + ଭାଲଚ୍ (ଅସ୍ତ୍ୟର୍ଥକ) = କାନ୍ଦୁଲ ।

(ଖ) ଗୁଜି - ଗୁଡ + ଇ = ଗୁଡ଼ୀ - ଗୁଡ଼ି । ମନ୍ଦିର ଆଦିର ଗର୍ଭ ଗୃହ ଅତି ନିଭୃତ ଥିବାରୁ ଗୁଡ଼ି କହନ୍ତି । ଗୁଡ଼ ସ୍ଥାନ - ଘନ ବନାବୃତ ବା ଡଙ୍ଗର ଭିତର ସ୍ଥାନ ମାନଙ୍କରେ ଥିବା ଗାଁ ମାନଙ୍କ ନାମରେ ପ୍ରାୟଃ ଗୁଜା ଶବ୍ଦ ଯୋଗ କରାଯାଇ ଥାଏ - ମୁନି ଗୁଡ଼ା, ମାରା-ଗୁଡ଼ା ଆଦି ।

(ଗ) ଗର୍‌ରା ବା ଗଡ଼ରା - ସଂସ୍କୃତ ଗଡ୍‌ଡର ଶବ୍ଦ ଅଟେ । ହିନ୍ଦିରେ ମେଷକୁ ମେଣ୍ଢା ବା ଭେଡ଼ କହୁଥିଲେ ହେଁ ମେଷପାଳକୁ ଗଡ଼ରିଆ କହନ୍ତି ।

(ଘ) କୋ° - ଅଙ୍ଗ୍‌ଛି, ହି° - ଅଙ୍ଗୋଛା । ଅଙ୍ଗମ୍ (ପ୍ର) ଉଞ୍ଛ୍ୟତେ । ଅନେନ ଇତି ଅଙ୍ଗ+ଉଞ୍ଛ+ଆ = ଅଙ୍ଗୋଛା, ଊନାର୍ଥେ ସ୍ତ୍ରୀଲିଙ୍ଗ ଅଙ୍ଗୋଛି - ଅଙ୍ଗ୍‌ଛି ।

(ଙ) ଅଁଠି, ଉଠି ବା ଓଠି - ପ୍ରାନତ ବାଚୀ ଓଷ୍ଠ ଶବ୍ଦର ଭାଗାରୂପ । ବସ୍ତ୍ରପ୍ରାନ୍ତ - ଧଡ଼ି ପାଇଁ ପ୍ରଯୁକ୍ତ ।

(ଚ) କୀଖ୍ - କୀଟ । ଅନେକ ଶବ୍ଦର ଟ-ଡ ସ୍ଥାନରେ ର ହୁଏ । ଉଚ୍ଚାରଣାର୍ଥକ ଆ ଯୋଗରେ କୀଖ୍ କୋଶଲୀ ରୂପ ଅଟେ । ହିନ୍ଦି ଓ ଓଡ଼ିଆରେ କଂଡ଼ା । गर्गी न जीह मुहँ परी न कोरा (ରା° ଚ° ମା°) ଭରତ କୈକେୟୀ ସଂବାଦ ।

(ଛ) ଚାଁଟି - ହି° - ଚିଉଁଟୀ । ମୁଖ ଚିମୁଟା ଆକାରର ହୋଇଥିବାରୁ ପରିଚୟାତ୍ମକ ନାମ । (ପିମ୍ପୁଡ଼ି - ପିପୀଲିକା)

(ଜ) ଥିର - ଭାତରୁ ପେଜ ନ ଗାଳି ରଖିଦେଲେ ଉପର ଭାଗରେ 'ସ୍ଥିର' ହୋଇ ରହିଥିବା ଦ୍ରବ୍ୟ (ମଣ୍ଡ)ର ବିଶେଷଣ ଦ୍ୱାରା ବିଶେଷ୍ୟର ବୋଧ କାରକ । ଭାଷା ବା ସ୍ଥାନ ଭେଦରେ ଉଚ୍ଚାରଣରେ ଭେଦ, ଯଥା - ଅମୃତ - ଅମରତ୍ - ଇମରତ୍ ଆଦି । ଓଡ଼ିଆରେ ମଣ୍ଡ ପାଇଁ ଥିରର ପ୍ରୟୋଗ ନାହିଁ ।

(ଝ) ପଖାନ - ପାଗାଣ, ଏଷୁ - ଏଷମ୍, ପରୁ - ପରୁତ୍ - ପରିଏର - ପରାରି ଆଦି ସବୁ ସଂସ୍କୃତରୁ ସିଧାସଳଖ ଆସିଥିବା ସ୍ପଷ୍ଟ । ଓଡ଼ିଆରେ ଏ ସବୁର ବ୍ୟବହାର ନାହିଁ ।

ଏହି ଅଳ୍ପ ଆଲୋଚନାରୁ ମଧ ଏ ଭାଷା ସ୍ୱତନ୍ତ୍ର, ସଂସ୍କୃତର ଅତି ନିକଟ ଓ ପୂର୍ବ୍ୟ ଗୋଷ୍ଠୀର ନ ହୋଇ ମଧ୍ୟପ୍ରଦେଶୀୟ ଗୋଷ୍ଠୀ ପୂର୍ବ୍ୟହିନ୍ଦି ବା କୋଶଲୀ ଗୋଷ୍ଠୀର ଅନ୍ତର୍ଗତ ଏହା ଲକ୍ଷ୍ୟ କରାଯାଇ ପାରେ ।

୩

ଉପରି ପ୍ରଦତ୍ତ ଅଳ୍ପ ଆଲୋଚନାରୁ ଏ ଭାଷାର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହେଉଥିଲେ ହେଁ, ଏହାର ନାମ ସୁଦ୍ଧା ବିଲୁପ୍ତ ହୋଇ ଓଡ଼ିଆରେ ହିଁ ଉଦରାନ୍ତର୍ଗତ ଅଜୀର୍ଣ୍ଣ ଅନ୍ନ ତୁଲ୍ୟ ଅସାତ୍ମ୍ୟୀକୃତ ଭାବେ ଅନ୍ତର୍ଭୁକ୍ତ ହୋଇ ରହିଲା । ବାହାର ଲୋକେ ଏହା ସ୍ୱାତନ୍ତ୍ର୍ୟ ଓ ଅସ୍ତିତ୍ୱ ଜାଣିପାରିଲେ ନାହିଁ । ଗ୍ରିଅରସନଙ୍କ, 'Oriya is remarkably free from dialectic variations' ଏହି ମନ୍ତବ୍ୟରୁ ସ୍ପଷ୍ଟ । ସେ ବସ୍ତର ଜିଲ୍ଲାର ଉତ୍ତର-ପୂର୍ବ ଅଞ୍ଚଳର ଭତରୀ ଭାଷାକୁ ହିଁ ଏକମାତ୍ର ବାସ୍ତବ ଉପଭାଷା ରୂପେ ସ୍ୱୀକାର କରିଛନ୍ତି । ଉତ୍ତର ଓ ଦକ୍ଷିଣ ଓଡ଼ିଶାର ଭାଷାକୁ ପରସ୍ପର ଅବୁଝା ହେବାର କାରଣ ଦର୍ଶାଇ କହିଛନ୍ତି, 'According to Babu Manmohan Chakravarti, the mutual unintelligibility, is due, not so much to actual change in the Language as to differance in pronounciation'. ଜସପୁରର କଥିତ ଭାଷା ବିଷୟରେ ମଧ ସେ ଲେଖିଛନ୍ତି 'In the Native state of Jaspur, where the Oriya Language is spoken, it is mined with the Bihari Spoken in the same, state, much as it is mixed with Bengali in Midnapur' ଭତରୀ ଭାଷାକୁ ଓଡ଼ିଆର ବାସ୍ତବ ଉପଭାଷା ରୂପେ ଗଣ୍ୟ କରି ସେ ଲେଖିଛନ୍ତି, 'Finally we come upon a ginuine dialect of Oriya in the northeast of the Native state of Bastar... but in the Northeast of the state the Bhatri dialect, which is a true dialect of Oriya, forms the connacting link between the language and the Marathi Halbi'.

ଓଡ଼ିଶାର ପଶ୍ଚିମ ପ୍ରଦେଶର ଭାଷା ବିଷୟରେ ସେ ଲେଖିଛନ୍ତି In the west in Sambalpur and the Chhatis Garh fuedatory States there are also slisht chyanges of pronauunciation but not to the same extent in Midnapur ଆକାରର ଟାଣୁଆ ଉଚ୍ଚାରଣକୁ ଛତିଶଗଡ଼ୀ ସଙ୍ଗେ ସମାନ କହି, ଶେଷରେ 'On this point I have, however no certain information.' କହିଛନ୍ତି । ଏପରି ସ୍ୱଳ୍ପ ସୂଚନା ପାଇଥିବା ଯୋଗୁ ଏହି ପଶ୍ଚିମ ଭାଷା (କୋଶଲୀ)କୁ ସେ ମାନକ ଓଡ଼ିଆ ଭାବେ ହିଁ ଗ୍ରହଣ କରିଛନ୍ତି ଓ ଶେଷରେ ଲେଖିଛନ୍ତି, 'Standard Oriya is also the torm of the language which is spoken in the districts and the native states of the central provinces in which Oriya is the Vernacular. From Raigarh is the north to Kalahandi in the South and from Raipur in the west to Bamra in the east the language is exactly the same in grammer. There is only a sight difference in pronounciation which we may notice, though it is not necessary to give specimens to illustrate the peculiarity'. ପରିଶେଷରେ ସେ ଏ ପ୍ରାନ୍ତର ଭାଷାକୁ ମାନକ ଓଡ଼ିଆ ବୋଲି ପୂର୍ଣ୍ଣ ବିଶ୍ୱସ୍ତ ହୋଇ ଲେଖିଛନ୍ତି : It is hence hardly necessary to give specimens of the form of speech spoken in this area. I shall contend myself with giving the Version of the parable of the parable son which has been received trom the Native state of Kalahandi which is nearly the extreme south of west of Oriya speaking area. Here it will be observed a final 'a' is pronounced' (Linguistic Survey of India, Vol. V, Part (II), Pages 369, 370, 399)

ବାସ୍ତବରେ ସେ ସମୟରେ କଳାହାଣ୍ଡି ଦେଶୀୟ ରାଜ୍ୟ ବନପର୍ବତ ଘେରା ଏକ ଅତ୍ୟନ୍ତ ଅନୁନ୍ନତ ଅଞ୍ଚଳ ଥିଲା । ସେଠାକାର ଭାଷାର ପ୍ରତିରୂପ ବା ନିଦର୍ଶନ ପାଇଲା ଉଭାନିର ସମ୍ବଲପୁର ଆଦି ଅପେକ୍ଷାକୃତ ସହରିଆ ଅଞ୍ଚଳର ଭାଷାର ସ୍ୱରୂପ ଦେଖିବାର ଆଉ ଆବଶ୍ୟକତା କ'ଣ ? ଯେଉଁ ମହାପୁରୁଷ ( ? ) ଏ ପ୍ରତିରୂପ ପଠାଇଲେ, ତାହା କେଉଁ ମନୋଭାବ ନେଇ ପଠାଇଲେ ତାହା ସ୍ପଷ୍ଟ । ନିଜ ଅଞ୍ଚଳର ଭାଷାକୁ ଜଙ୍ଗଲୀ ନ କୁହେଇବାକୁ ସେ ଏପରି କରିଛନ୍ତି । ଏଥି ପ୍ରଦତ୍ତ ତା'ର ମାତ୍ର ଦୁଇଟି ବାକ୍ୟର ଉଚ୍ଚାରଣରୁ ଜଣାଯିବ ଯେ ଏହା ଶୁଦ୍ଧ ମାନିକି ଭାଷା । ଯଥା - ଜଣକର ଦୁଇ ପୁଅ ଥିଲେ । ସେମାନଙ୍କ ମଧ୍ୟରୁ ସାପନୁଅ ପିତାକୁ କହିଲା, ହେ ପିତା, ତୁମ୍ଭ

ସମ୍ପତ୍ତିର ଯେଉଁ ଭାଗ ଆମ୍ଭେ ପାଇବୁଁ, ତାହା ଦିଅ।' (ପୃଷ୍ଠା ୪୦୦) ଉକ୍ତ ବ୍ୟକ୍ତି ମୂଳ ଗ୍ରନ୍ଥରେ ଏହାର ସଂପୂର୍ଣ୍ଣ ଭାଗ ଦେଖିପାରନ୍ତି। ଆଜି ୮୦ ବର୍ଷ ପରେ ଗଡ଼ଜାତ ଲୋପ ଓ ବହୁଶିକ୍ଷା ବିସ୍ତାର ସତ୍ତ୍ୱେ କଳାହାଣ୍ଡି କାହିଁକି ସମ୍ବଲପୁରର ଉଚ୍ଚତମ ଶିକ୍ଷିତ ମଧ୍ୟ ନିଜ ପରିବାର ବା ସ୍ଥାନୀୟ ଲୋକ ସଙ୍ଗେ ଏ ଭାଷାରେ କଥାବାର୍ତ୍ତା କରନ୍ତି କି ?

ସେ ସମୟରେ ଓଡ଼ିଶାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମାନଙ୍କ ଏକତ୍ରୀକରଣ ପାଇଁ ଆନ୍ଦୋଳନ ଚାଲିଥିଲା। ଏଥିରେ ନିଜର ପ୍ରଶ୍ନ ଜଡ଼ିତ ଥିବାରୁ ସମ୍ବଲପୁର ଅଞ୍ଚଳ, ବିଶେଷ କରି ସମ୍ବଲପୁର ସହର ଯଥେଷ୍ଟ ସଚେତନ ଥିଲା। ଏ ଭାଷା ପୁରା ହିନ୍ଦି ଗୋଷ୍ଠୀର, ନ ହେଲେ ମାତ୍ର ଗୋଟିଏ Dialect ବୋଲି ଜଣାଗଲେ ଆଉ ଓଡ଼ିଶାକୁ ଫେରିଆସିବା ସମ୍ଭବ ହେବନାହିଁ ଭାବି ହୁଏତ ଅତି ଉନ୍ନତ ମାନିକି ଭାଷାର - ନମୁନା ପଠା ହୋଇଥିବ। ନଚେତ୍ ସରକାରୀ ରିପୋର୍ଟ ଉପରେ ନିର୍ଭର କରି ନିର୍ଣ୍ଣୟ ନେଇଥିବା ସମ୍ଭାବନା। ଉପଯୁକ୍ତ ସୂଚନା ପାଇଥିଲେ ସେ ଅନ୍ତତଃ ଏହାକୁ ଗୋଟିଏ Dialect ତ ନିଶ୍ଚୟ କହିଥା'ନ୍ତେ। ଭତରୀ ଓ ଜସପୁରୀର ତଥ୍ୟ ପାଇ ପାରିଲେ, ମାତ୍ରକ ସମ୍ବଲପୁରୀର ତଥ୍ୟ ପାଇପାରିଲେ ନାହିଁ। 'I have no certain information' ଉକ୍ତିରୁ କେତେ ସ୍ୱଳ୍ପ ତଥ୍ୟ ଉପରେ ସେ ନିର୍ଣ୍ଣୟ ନେଇଛନ୍ତି, ଏହା ସ୍ପଷ୍ଟ। ବାସ୍ତବରେ ଏଠାକାର ଭାଷା କେବଳ ଉଚ୍ଚାରଣରେ ନୁହେଁ, କଥନ ଭଙ୍ଗୀ, ଅର୍ଥପ୍ରକାଶ ରୀତି ଓ ଶବ୍ଦ ସମ୍ଭାରରେ ମଧ୍ୟ ଗୋଟିଏ ଭିନ୍ନ ଭାଷା ତଥା ଭତରୀ ଓ ଜସପୁରୀ ଏହାରହିଁ ଉପଭାଷା, ତାହା ଆଉ କାହାରି ଗୋଚର ହୋଇପାରିଲା ନାହିଁ। ଶୋଇଲା ପୁଅର ତ ଭାଗ ନାହିଁ, ଆମକୁ ମିଳନ୍ତା କିପରି ?

ଏବେ ଭାବିବାର କଥା ଏ ଦୋଷ କାହାର ?

बुरा जो ढूँढ़न मैं चला बुरा न मिलिया कोय।
जो दिल ढूँढ़ा आपना मुझसा बुरा न कोय॥
(कबीर)

ପୂର୍ବେ ଲୋକେ ଅତି ସରଳ ଥିଲେ। ସରଳ ଜୀବନ ଯାପନ କରୁଥିଲେ। ସରଳ ବିଶ୍ୱାସ ତାଙ୍କ ଜୀବନର ଧାରାଥିଲା। ବାହ୍ୟ ସଂସାର କି ନିଜର ସମାଜ ପ୍ରତି ସଚେତନ ନଥିଲେ। ଯେ ରାଜା ହେଲେ ଆମେ ପରଜା, ଏହି ଧାରଣା ହିଁ ମୂଳ ଥିଲା। ଆଧୁନିକ ଭାବଧାରା ନଥିଲା। ଜୀବନର ସାମାନ୍ୟତମ ଆବଶ୍ୟକତା ପୂରଣ ହେଲେ ସନ୍ତୁଷ୍ଟ ଥିଲେ। ସବୁ ଦୈବାଧୀନର ଧାରଣା ଥିଲା। ରାଜାମାନେ ମଧ୍ୟ କୌଣସି ଗୋଷ୍ଠୀ ବା ସମାଜର ରୀତି ନୀତି ଆଚାର ବ୍ୟବହାରରେ ହସ୍ତକ୍ଷେପ କରୁନଥିଲେ। ଯୋର୍ ଯା'ର ମୂଲକ ତା'ର ଥିଲା। ଉତ୍ତର ଭାରତରୁ ଆସି ସମଗ୍ର ଦକ୍ଷିଣ କୋଶଳକୁ ଆର୍ଯ୍ୟୀକୃତ କରି ସତେ କି ଅବସନ୍ନ ଓ ଆତ୍ମବିସ୍ମୃତ ହୋଇ ଏ ଲୋକେ ପଡ଼ୋଶୀ

ପାଖରେ ଆତ୍ମସମର୍ପଣ କଲେ । ସେ ନିରୀହ ପୂର୍ବ ପୁରୁଷଙ୍କୁ ଦୋଷ ଦେଇ କିଛି ଲାଭ ନାହିଁ । ରାଷ୍ଟ୍ରୀୟତାର ମହା ଭାବଧାରା ଭିତରେ ମଧ ଆଞ୍ଚଳିକତା ଓ ଭାଷା ଚେତନାର ଅନ୍ତଃସ୍ରୋତ ଚାଲିଛି । ବେଳେ ବେଳେ ପ୍ରବଳ ହୋଇ ପରିବର୍ତ୍ତନ ମଧ୍ୟ ସଂଘଟିତ ହେଉଛି । ଆନ୍ଧ୍ରରାଜ୍ୟ ଓ ବାଙ୍ଗଲା ଦେଶର ନୂତନ ଗଠନ ତାର ଜ୍ୱଳନ୍ତ ପ୍ରମାଣ । ତେଲଙ୍ଗାନା,କୋଙ୍କଣ,ବିଦର୍ଭଠାରୁ ନେଇ, ପାଖତୁନିସ୍ଥାନ,ଉତ୍ତର ପ୍ରଦେଶର ଉର୍ଦ୍ଦୁ ଆନ୍ଦୋଳନ ଓ ଆସାମ ଭାଷା ଆନ୍ଦୋଳନ କାହାର ବା ଦୃଷ୍ଟିକୁ ଆସୁନାହିଁ ? ଛତିଶ ଗଡରେ ମଧ୍ୟ କିଛି ଜାଗରଣ ଦେଖା ଦେଇଛି । ସୁକ୍ଷ୍ମଦର୍ଶୀ ଡ: ସୁନୀତି କୁମାର ଚାଟର୍ଜୀଙ୍କ ମନ୍ତବ୍ୟ 'With the new renaissance of our time this situation is changing and there are signs that people of these lingwstie regions too are legining to assert themselves in their own mother toungues.' ଅନୁଧ୍ୟାନର ଯୋଗ୍ୟ ।

(Cultural Heritage of India, Page52. Vol(I) 1958. Ramkrishna Institute of cultural Publication.)

ରାଷ୍ଟ୍ରୀୟତା ମହାଭାବରେ ନିଜତ୍ତ୍ୱକୁ ବିଲୀନ କରିଦେବା କେତେଦୂର ଯୁକ୍ତିସଂଗତ, ତାହା ଗଭୀର ଅନୁଧାନର ବିଷୟ । 'ବିଭିନ୍ନତାରେ ଏକତା' ସିଦ୍ଧାନ୍ତରେ ବିଭିନ୍ନତାର ଗୁରୁତ୍ତ୍ୱ ଊଣା ନୁହେଁ । ବିଭିନ୍ନ ଏକକର ବଳବତ୍ତା ଉପରେ ଏକତ୍ତ୍ୱର ବଳବତ୍ତା ନିର୍ଭର କରେ । ଶାବଳକୁ ଦେଖି ଛୁଅଁକୁ ଫିଙ୍ଗିଦେଲେ ଛୁଅଁର ଆବଶ୍ୟକ ସମୟରେ ନିରୁପାୟ ହେବାକୁ ପଡିବ । ସଂସାରରେ ଦୁର୍ବଳର ସ୍ଥାନ ନାହିଁ । 'ଅଜାପୁତ୍ରଂ ବଳିଂ ଦଦ୍ୟାତ୍, ଦେବୋ ଦୁର୍ବଳଘତକଃ' ଏହା ପ୍ରତ୍ୟକ୍ଷ । 'Survival of the fittest' ପ୍ରକୃତିର ନିୟମ । ଅନ୍ୟମାନେ ନିଜ ସ୍ୱାର୍ଥ ସିଦ୍ଧ କରୁଥିବା ସମୟରେ,ଜଳକା ହୋଇ ଚାହିଁ ରହିଥିବା କୌଣସି ଜୀବନ୍ତ ଗୋଷ୍ଠୀର ଲକ୍ଷଣ ନୁହେଁ । ନ୍ୟାର୍ଯ୍ୟ ସ୍ୱାର୍ଥ ପାଇଁ ସଂଘର୍ଷ କରିବାକୁ ହେବ । ପୂର୍ବ ପୁରୁଷ କାହିଁକି, ଅବ୍ୟବହୃତ ପତୃପିତାମହଙ୍କୁ ମଧ ଦୋଷ ଦେବା ଉଚିତ ହେବନାହିଁ । ସେମାନେ ପରିସ୍ଥିତି ପ୍ରବାହର ଘୂର୍ଣ୍ଣିରେ ଭ୍ରମିତ ହୋଇ ନିଜତ୍ତବର ଚିନ୍ତା ପାଇଁ ଅବସର ପାଇ ନ ଥିବା ସମ୍ଭବ । ଏଣୁ ଏ ଦୋଷକୁ ନିଜ ମୁଣ୍ଡରେ ନେଇ ବର୍ତ୍ତମାନର ଶିକ୍ଷିତ ଗୋଷ୍ଠୀ ଏହାର ପ୍ରତିକାରରେ ତତ୍ପର ହେବା ବିଧେୟ । ଚେତନାର ଜାଗରଣ ଯେ ନ ହୋଇଛି, ତା ନୁହେଁ, ତେବେ ଅଧିକ ନିଷ୍ଠା ଓ ତତ୍ପରତା ସହ କାର୍ଯ୍ୟ କରିବାକୁ ହେବ । ଲେଖକ ସ୍ୱର୍ଗତ ସତ୍ୟନାରାୟଣ ବହିଦାର ଓ ଅନ୍ୟ କେତେଜଣଙ୍କ ନାମ ଶୁଣିଛି, ମାତ୍ର ସମାଗମର ସୁ ଅବସର ମିଳିନାହିଁ । ସହସ୍ର ବର୍ଷର ଅବହେଳାର ପ୍ରତିକାର ଅଳ୍ପ ସମୟ ବା ଅଳ୍ପ ଶ୍ରମରେ ହେବାର ନୁହେଁ । ଏଥିପାଇଁ ଗୋଟିଏ ଦୃଢ କେନ୍ଦ୍ର ସଂଗଠନ ସବୁ ଅଞ୍ଚଳର-ରାଜ୍ୟ ବାହାରର ମଧ-ଉତ୍ସାହୀ ଭାଷା ପ୍ରେମୀଙ୍କୁ ନେଇ

କରିବାକୁ ହେବ । ଶବ୍ଦ ସଂଗ୍ରହ, ବର୍ଗୀକରଣ,ଅର୍ଥ ପ୍ରକାଶ,ବିଭିନ୍ନ ପ୍ରୟୋଗ, ବାକ୍ୟାଂଶ, ବାକ୍ୟଖଣ୍ଡ ଆଦିକୁ ନେଇ ବ୍ୟାକରଣ ପ୍ରଣୟନ, ଲୋକବାଣୀ, ଲୋକଗୀତ ଆଦିର ସଂକଳନ,ସମ୍ପାଦନ ଓ ପ୍ରକାଶ କରିବାକୁ ହେବ । କାବ୍ୟ,କବିତା,ଗଳ୍ପ,ଉପନ୍ୟାସ,ପ୍ରବନ୍ଧ,ଆଲୋଚନା ଆଦି ସାହିତ୍ୟର ପ୍ରତି କ୍ଷେତ୍ରରେ କାର୍ଯ୍ୟ କରି, ଭାଷାକୁ,ମାର୍ଜିତ ଓ ଉନ୍ନତ କରି ଭାରତର ଅନ୍ୟାନ୍ୟ ଆଞ୍ଚଳିକ ସାହିତ୍ୟ ଅପେକ୍ଷା ଉନ୍ନତ ନ ହେଲେ ମଧ୍ୟ ସମକୋଟିକ କରିବାକୁ ହେବ । ଧୀରସ୍ଥିର ଅଥଚ ଦ୍ରୁତ ଓ ପ୍ରଗତିଶୀଳ ପରକ୍ଷେପ ନେବାକୁ ହେବ । ସମର୍ପିତ ପ୍ରାଣ ହେବାକୁ ହେବ । ହେଳୟା କାର୍ଯ୍ୟ ନାଶଃ । ସ୍ୱଭାବ କବି ଗଙ୍ଗାଧରଙ୍କ 'ଉଚ୍ଚ ହେବାପାଇଁ ଯଦି କର ଆଶା, ଉଚ୍ଚ କର ଆଗେ ନିଜ ମାତୃଭାଷା ।' ର ପ୍ରେରଣା ମର୍ମେ ମର୍ମେ ଅନୁଭବ କରିବାକୁ ହେବ । ଆପୋଳଦୟ କର୍ମୀ ହେବାକୁ ହେବ । ନ ନିଶ୍ଚିତାର୍ଥାତ୍ ବିରମନ୍ତି ଧୀରାଃ ।

ଡା: ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କ ନୂତନ ପ୍ରକାଶିତ History of Oriya, 1981, ପୃଷ୍ଠା ୨୮୪ ରେ ଲେଖିଛନ୍ତି- 'The people of Kosala treat originally spoke a language which was a kin to Bjojpuri Prakrit, while the language of the coastal strip had family affinity with Magadhi These two branches of Prachya Prakrit, met and mingled in Orissa and formed a new language, which come to be known as Oriya. The nominclature seems to have deviged from the fact that the elements of the language of the costal strip, the land of the Odras, predominated in it. Another reasons seems to be that the Kosala tract at no time could produce a literature of its own.' ଅବିସମ୍ବାଦିତ ବିଦ୍ୱାନ ଡାକ୍ତର ମହାଶୟ mingled ବୋଲି ଲେଖିଥିଲେ ହେଁ, ବାସ୍ତବରେ କୋଶଲୀ ଭାଷା ପୃଥକ୍ ଭାବେ କଥିତ ରୂପେ ବର୍ତ୍ତମାନ ସୁଦ୍ଧା ବଞ୍ଚିଛି । ଉପରେ ଉଦ୍ଧୃତିରେ ରେଖାଙ୍କିତ ଅଂଶର (ରେଖାଙ୍କନ ଲେଖକର) ପ୍ରତି ଉତ୍ତର ବର୍ତ୍ତମାନ ଆମ ପାଖରେ ନାହିଁ । ଉଦୀୟମାନ ବିଦ୍ୱାନ ଯୁବକ ମାନେ ଏହାର ଉତ୍ତର ଦେବେ କି ?

କୋଶଳ ପ୍ରଦେଶର ସମସ୍ତ ସଚେତ, ସମର୍ଥ ଓ ଶିକ୍ଷିତ ସମାଜ ମାତୃଭାଷାର ଏ ଆହ୍ୱାନକୁ ଗ୍ରହଣ କରିବେ କି ? ସମସ୍ତ ସାହିତ୍ୟିକ, ଯୁବ ଲେଖକ, ଭାଷାତତ୍ତ୍ୱବିଦ, ଧ୍ୱନିବିଜ୍ଞାନୀ ଆଦିଙ୍କ ସାମୁହିକ ସହଯୋଗାତ୍ମକ କାର୍ଯ୍ୟରେ ପରିଣାମ ମୁଖାବହ ହେବ ।

ହୁଏତ ଏ ପରିଚ୍ଛେଦ କେତେକ ଭାବୁକ ସଜ୍ଜନଙ୍କ କ୍ଷୋଭର ବିଷୟ ହୋଇପାରେ । 'ଅପ୍ରୟସ୍ୟ ଚ ସତ୍ୟସ୍ୟ ବକ୍ତା ଶ୍ରୋତା ଚ ଦୁର୍ଲ୍ଲଭଃ' । କିନ୍ତୁ 'ସତ୍ୟେ ନାସ୍ତି ଭୟଂ କ୍ୱଚିତ୍' । ସତ୍ୟକୁ ଏଡାଇବା ବା ଚାପି ରଖିବା ଭୀରୁତା । ସତ୍ୟର ଉଦ୍‌ଘାଟନ କରିବାକୁ ହେବ, ସାହସର ସହିତ ସମ୍ମୁଖୀନ

ହେବାକୁ ହେବ । ଦୋଷତ୍ରୁଟିର ମାର୍ଜନା ଓ ସମାଧାନର ଉଦ୍ଭାବନ ହିଁ ନୀତି ମନ୍ତ୍ର । ଯଦି କେହି କ୍ଷୁବ୍ଧ ହୁଅନ୍ତି, ହେଲେ ଏ ବିନମ୍ରଜନ କୃତାଞ୍ଜଳି ପୁଟରେ କ୍ଷମାପ୍ରାର୍ଥୀ । ଆର୍ତ୍ତ ହୃଦୟରେ କରୁଣ ବିଳାପ ଅପ୍ରିୟ ହେଲେହେଁ କ୍ଷମ୍ୟ ।

ଏଥିରେ କୌଣସି ପ୍ରକାରର ଆଞ୍ଚଳିକ ବା ଭେଦଭାବର ଗନ୍ଧ ବାରିବା କ୍ଷୁଦ୍ରତା ହେବ । ନିତାନ୍ତ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀମାନଙ୍କ ଭାଷା ଉପରେ ଗୁରୁତ୍ତ୍ୱ ଦିଆଯାଇଥିବା ବେଳେ କୋଟିଏ ସରି ଜନତାର ଭାଷା ହେୟ କି ? ବେଲଜିୟମ, ସ୍ୱିଟ୍‌ଜରଲେଣ୍ଡ ପ୍ରଭୃତି ଛୋଟ ଛୋଟ ରାଷ୍ଟ୍ର ଓ ରୁଷିଆପରି ବୃହତ୍ ରାଷ୍ଟ୍ରମାନଙ୍କରେ ଏକାଧିକ ରାଷ୍ଟ୍ରଭାଷା ରହିଛି । ଉତ୍ତର ପ୍ରଦେଶରେ ଉର୍ଦ୍ଦୁ ଓ ହିନ୍ଦି ଯଦି ସମସ୍କନ୍ଧ ଏକତ୍ର ଭାବେ ରହିପାରନ୍ତି ହେଲେ ଓଡିଆ ଓ କୋଶଲୀ ଏକତ୍ର ରହିବାରେ ଆପତ୍ତିର କାରଣ ରହି ନ ପାରେ ।

ଏହି ସାମାନ୍ୟ ବିନମ୍ର ବ୍ୟକ୍ତି ବୃଦ୍ଧ (୭୦) ହେଲେହେଁ ଜୀବନର ଅବଶିଷ୍ଟ କାର୍ଯ୍ୟକ୍ଷମ କାଳ ମାତୃଭାଷା କୋଶଲ ଭାରତୀଙ୍କ ସେବାରେ ସମର୍ପଣର କୃତ ସଂକଳ୍ପ ।

କୋଶଲବାସୀ ନିମ୍ନ ବାଣୀରେ ଉଦ୍‌ବୁଦ୍ଧ ହୁଅନ୍ତି-

କରୋତି ଯୋଽଶେଷଜନାତିରିକ୍ତାଂ ସମ୍ଭାବନାମର୍ଥବତୀ କ୍ରିୟାଭିଃ ।

ସଂସତ୍ସୁ ଯାତେ ପୁରୁଷାଧିକାରେ ନ ପୂରଣୀଂ ତଂ ସମୁପୈତି ସଂଖ୍ୟା ।(ଭାରବୀ)

ଏଥିପୂର୍ବେ 'ଖଡିଆଳର ଲୋକଭାଷା' ଶୀର୍ଷକରେ ଏ ଭାଷାର କିଞ୍ଚିତ ଆଲୋଚନା କରାଯାଇଥିଲା ଲୋକ ସାହିତ୍ୟରେ ସମୃଦ୍ଧ ହୋଇଥିବା ସତ୍ତ୍ୱେ ବର୍ତ୍ତମାନ ସୁଦ୍ଧା ଏ ଭାଷା କଥିତ ରୂପେ ରହିଛି । କ୍ଷେତ୍ରରେ ବ୍ୟାପକତା ଓ କହୁଥିବା ଲୋକସଂଖ୍ୟା (ପ୍ରାୟ ଏକ କୋଟି ) ଦୃଷ୍ଟିରୁ ଏହାର ନାମ କ୍ଷେତ୍ର ନାମାନୁସାରେ 'କୋଶଲୀ' ହେବା ଉଚିତ । ଏ ଲେଖା ଓ ଭବିଷ୍ୟତ ଏ ସମ୍ବନ୍ଧୀୟ ଲେଖା ମାନଙ୍କରେ ଏହି ନାମ ବ୍ୟବହାର କରାଯିବ ।

ବୃକ୍ଷର ଗୋଟିଏ ଗଣ୍ଡିରୁ ବାହାରି ଥିବା ଶାଖା ଉପଶାଖା ମାନ ମୂଳତଃ ଏକ ହେଲେ ମଧ ନିଜର ବୈଶିଷ୍ଟ୍ୟ ସହ ପ୍ରତ୍ୟେକ ଶାଖା ଉପଶାଖାର ସ୍ୱାଧୀନ ଅସ୍ତିତ୍ତ୍ୱ ସ୍ୱୀକାର୍ଯ୍ୟ । ସେହିପରି ଭାଷାମାନ ମଧ ଗୋଟିଏ ଗୋଟିଏ ମୂଳ ଉତ୍ସରୁ ବାହାରି ଥିଲେ ମଧ ଦେଶ ଓ କାଳର ପ୍ରଭାବରେ ସ୍ୱୀୟ ବୈଶିଷ୍ଟ୍ୟାବଳିର ବିକାଶ କରି ସ୍ୱାଧୀନ ଭାବରେ ଅବସ୍ଥାନ କରନ୍ତି ଓ ପରସ୍ପରକୁ ଅବୁଝା ମଧ ହୋଇଯାନ୍ତି ।

ଗୃହର ବାସ୍ତୁ ବିଭାଗ, ସାଜସଜ୍ଜା, ବାହ୍ୟଆକୃତି ଓ ବ୍ୟବହାରୋପଯୋଗ ଯାହା ହେଲେ

ମଧ କାନ୍ଥ ହିଁ ଘରର ମୂଳ ଅବୟବ ଓ ଏଥିରେ ପ୍ରଯୁକ୍ତ ଉପକରଣ ଅନୁଯାୟୀ ଘରର ନାମ ପଡି ଥାଏ, ଯଥା ଝାଟିମାଟି-ମାଟିକାନ୍ଥ-କଞ୍ଚା ଇଟା-ପୋଡା ଇଟା-ପଥର ଘର । ଏହାହିଁ ଘରକୁ ପରସ୍ପର ଠାରୁ ଭିନ୍ନ କରିଥାଏ । ତଦ୍‌ବତ ବ୍ୟାକରଣିକ ରୂପ, କଥନଭଙ୍ଗୀ ଆଦି ଭାଷାର ବିଭିନ୍ନ ବିଭାବରେ ଯେତେ ସାମ୍ୟ ଥିଲେ ମଧ (ଯାହା ଏକ ମୂଳିକ ଭଗିନୀ ଭାଷାମାନଙ୍କରେ ହେବା ସ୍ୱାଭାବିକ) ଭାଷାର ମୂଳ ପିଣ୍ଡ ଶବ୍ଦ ସମ୍ଭାର ହୋଇଥିବାରୁ ଭାଷାର ଭିନ୍ନତା ଓ ସ୍ୱତନ୍ତତାର ଏହା ମୁଖ୍ୟ ପ୍ରତିପାଦକ ଲେଖନ ରୀତି ବା ଲିପି ଏକ ହେଲେ ସୁଦ୍ଧା ବାଧକ ହୋଇ ନପାରେ । ଏହି ଦୃଷ୍ଟିରୁ ବିଚାର କଲେ କୋଶଳୀ ଭାଷା ନିଜର ଲିଖିତ ଉନ୍ନତ ସାହିତ୍ୟ ସୃଷ୍ଟି କରି ନଥିଲେ ହେଁ ଗୋଟିଏ ଶବ୍ଦସମୃଦ୍ଧ, ପଡୋଶୀ ଭାଷାମାନଙ୍କ ଠାରୁ ଭିନ୍ନ ଓ ସ୍ୱତନ୍ତ, ଏହା ପ୍ରତିପନ୍ନ ହୁଏ । ଏଠାରେ ଏହି ଶବ୍ଦ ସମ୍ଭାରର ପ୍ରତ୍ୟକ୍ଷ ପରିଚୟ ପାଇଁ କେତେଗୋଟି ସଂସ୍କାର ସୂଚକ ଉପସ୍ଥାପନା ସହ ଏ ଭାଷାରେ ପ୍ରଯୁକ୍ତ କେତେ ଗାଳି, ପ୍ରଶଂସା ସୂଚକ ଶବ୍ଦର ମଧ ବିଚାର କରାଯିବ । ଏହା ଅବଶ୍ୟ ଗୋଟିଏ ମଜ୍ଜାକଥା ଯେ ଏ ପ୍ରାନ୍ତରେ ବଳିଦେବା ଅର୍ଥରେ 'ପୂଜିବା' କ୍ରିୟା ପ୍ରଯୁକ୍ତ ହୋଇଥାଏ । ତାନ୍ତ୍ରିକ କାଳରେ ବ୍ରାହ୍ମଣମାନଙ୍କ ଦୀର୍ଘ ପ୍ରୋକ୍ଷଣାଦୀ ପ୍ରକ୍ରିୟା ପୂଜା ନାମରେ ହିଁ କୁହାଯାଉଥିଲା । କ୍ରିୟା ସାମାନ୍ୟ ହେତୁରୁ ଏହି ବଳିଦାନ କ୍ରିୟା ପୂଜା ନାମରେ ସର୍ବସାଧାରଣରେ ପ୍ରଚଳିତ ହୋଇଗଲା ଓ କାଳକ୍ରମେ ରୂଢ଼ହୋଇ 'ହାଣିବା' ଅର୍ଥରେ ଲୋକଭାଷାରେ ସ୍ଥିର ହୋଇଗଲା ।

ଆଦିବାସୀ ଓ ଶୂଦ୍ରାଦି ଜାତିମାନେ ତାଙ୍କ ଦେବା ଦେବୀ ଆଗରେ ଯେଉଁ ମଦ ଢାଳନ୍ତି ତାକୁ 'ତର୍‌ପବା' କୁହାଯାଏ । ଅତି ପ୍ରାଚୀନ କାଳରେ କେଉଁ ନାମରେ କହୁଥିଲେ ତାହା କାହାରିକୁ ଜଣାନାହିଁ । ବ୍ରାହ୍ମଣମାନଙ୍କ ତର୍ପଣ କର୍ମ ସହ ସମକ୍ରିୟାତ୍ମକ ହେବାରୁ ଏ ନାମ ଗୃହୀତ ହୋଇଯାଇଛି ।

ଦେବା ଦେବୀ ଆଗରେ ବଳି ଦେବା ପୂର୍ବରୁ ବଳି ପଶୁପକ୍ଷୀଙ୍କୁ ପୂଜା କରାହୋଇଥିବା ଚାଉଳ ଖାଇବାକୁ ଦିଆଯାଏ । ବଳି ପ୍ରାଣୀ ତାହା ଖାଇଲେ ଦେବତାର ସ୍ୱୀକୃତି ଅଛି ବୋଲି ଧରାଯାଏ ଓ ବଳି କର୍ମ ସମ୍ପାଦନ କରାଯାଏ (ପୂଜାଯାଏ) । ନ ଖାଇଲା ପର୍ଯ୍ୟନ୍ତ ଯେତେ ଡେରି ହେଉନା କାହିଁକି ଅପେକ୍ଷା କରାଯାଏ । ଏହାକୁ 'ଅକତ୍' ଖୁଆଇବା କହନ୍ତି । ଏହା ଶବ୍ଦତଃ ଓ ଅର୍ଥତଃ(ଦ୍ରବ୍ୟତଃ) ବୈଦିକ 'ଅକ୍ଷତ' ଅଟେ ।

କେହି ଦୋଷ କଲେ ତାକୁ ପଚରା ପଚରି କରିବା କାର୍ଯ୍ୟାନୁଷ୍ଠାନକୁ 'ବକ୍‌ଟେଇବା' କହନ୍ତି । ଯଦି ଦୋଷୀ ତୁନି ରହିଯାଏ ବା ଧୃଷ୍ଟତା ଦେଖାଏ ଓ ଶପଥ କରିବାକୁ କହିଲେ ମୌନ ରହିଯାଏ, ତାହାହେଲେ 'ବକତ୍ ବାନ୍ଧି ହୋଇଗଲା' (ନିଶ୍ଚିତ ଦୋଷୀ ହୋଇଥିବାରୁ) ବୋଲି କହନ୍ତି । ଏହା

ସ୍ପଷ୍ଟ ରୂପେ ବଚ୍‌ଧାତୁ ବା ତନ୍ନିଷ୍ପିନ୍ନ ବକ୍ତ ଶବ୍ଦର ପ୍ରୟୋଗ ଅଟେ ।

କୌଣସି ଦେବଦେବୀ ବା ବହୁ ସମ୍ମାନାସ୍ପଦ ବ୍ୟକ୍ତିଙ୍କୁ ଗାଁ' ମୁଣ୍ଡରୁ ବା କିଛିଦୂର ଆଗରୁ ପୂଜା ସମ୍ମାନାଦି ପ୍ରଦାନ ପୂର୍ବକ ବାଜା ଆଦି ଆନନ୍ଦୋତ୍ସବ ସହ ସଂଭ୍ରମରେ କଡାଇ ଆଣିବୁ 'ପର୍‌ଘାବା-ପରଘେଇବା' କୁହାଯାଏ । ଏହା ସର୍ବ ସାଧାରଣରେ ଗୃହୀତ ଶୁଦ୍ଧ ବୌଦିକ ଆଚାର ଅଟେ ଓ ଅତି ପୂଜ୍ୟ ବା ସମ୍ମାନାସ୍ପଦ ପାଇଁ ପ୍ରୟୋଗ କରାଯାଏ । ଯଥା - ଦେବ୍‌ତା ପର୍‌ଘାବା, ରଜା ପର୍‌ଘାବା, ବର ପର୍‌ଘାବା ଆଦି ।

ପୁରଃ + ଅର୍ଘ୍ୟ = ପୁରୋଽର୍ଘ୍ୟ, କ୍ରିୟାର୍ଥକ ଆବା-ଇବା ଯୋଗରେ ନିଷ୍ପନ୍ନ । ପୁରଃ+ଅର୍ଘ୍ୟ+ଆବା = ପୁରୋଽର୍ଘ୍ୟବା । ସରଳୀକୃତ ପର୍‌ଘାବା ।

ଏତାଦୃଶ ଆଉ ଗୋଟିଏ ଶବ୍ଦ ହେଉଛି 'ଆଡ଼େ' । ଏହା ସମ୍ବୋଧନ ପଦ; ଅର୍ଥରେ ଅନଭିଜ୍ଞ ଜନକୁ ଅଡୁଆ ଶୁଭେ । ଏହା ଆର୍ଯ୍ୟ ଶବ୍ଦତ ନିଷ୍ପନ୍ନ । ଆର୍ଯ୍ୟ ହେ - ଆର୍ଯ୍ୟେ (ର = ଡ) - ଆଡ଼େ୍ୟ - ଆଡ଼େ । ପୂର୍ବେ ଏହା ସମ୍ମାନସ୍ପଦଙ୍କ ପ୍ରତି ପ୍ରଯୁକ୍ତ ହେଉଥିଲା । କ୍ରମଶଃ ପ୍ରାକୃତକରଣ ଓ ଅର୍ଥ ବିସ୍ମରଣ ଯୋଗୁଁ ନିମ୍ନକୁ ଆସି ସର୍ବସାଧାରଣରେ, ବିଶେଷତଃ ଗ୍ରାମୀଣ କ୍ଷେତ୍ରରେ ସମସ୍କନ୍ଧ ବା କନିଷ୍ଠଙ୍କୁ ସମ୍ବୋଧନରେ ପ୍ରଯୁକ୍ତ କରାଯାଏ । ଆନୁ ଆଡେ, ଯାନୁ ଆଡେ, କବାର ଗୁଟେ କର୍‌ତୁ କାଏଁ ଆଡେ ଆଦି । ଏହା ଖଡ଼ିଆଳ, କଳାହାଣ୍ଡି ଓ ତତ୍ ସଂଲଗ୍ନ ଅଞ୍ଚଳରେ ପ୍ରଚଳିତ । ଠିକ୍ ଏହି ଅର୍ଥରେ ରୀତିରେ ବଲାଙ୍ଗୀର ଆଦି ଅଞ୍ଚଳରେ 'ବୋ' (ଅନ୍ତଃସ୍ଥ ଭାବେ ଉଚ୍ଚାରିତ)ର ପ୍ରୟୋଗ କରାଯାଏ । ଏହା 'ଓସ୍' ଶବ୍ଦର ରୂପ ଅଟେ ।

(ଭୋସ୍‌ଭଗୋସ ଅଘୋସ ଏସ୍ ସଂବୁଦ୍ଧୌ) ।

ଏହି ଅଳ୍ପ କେତେ ଗୋଟି ଶବ୍ଦର ନିଦର୍ଶନରୁ ଏହି କୋଶଳ ପ୍ରଦେଶର ଭାଷା ଓ ସଂସ୍କୃତିର ମୂଳ, ତାର ଗଭୀରତା ଓ ବ୍ୟାପକତାର ଯଥେଷ୍ଟ ପରିଚୟ ମିଳି ପାରୁଛି । ଏହି ଉଦ୍ଦେଶ୍ୟରେ ଅବାଞ୍ଛିତ ହେଲେ ମଧ ଭାଷାର ଗୋଟିଏ ଅବିଚ୍ଛେଦ୍ୟ ଅଙ୍ଗର ଏଠାରେ ବିଚାର କରାଯାଉଛି । ତାହା ହେଉଛି ଗାଳି ।

ଭାଷାର ଜଘନ୍ୟ ତମ ଅପବ୍ୟବହାର ହେଉଛି ଏହି 'ଗାଳି' । ଏହା ସବୁ ଦେଶ, ସବୁ କାଳରେ ପ୍ରଚଳିତ । ସଭ୍ୟ - ଅସଭ୍ୟ, ଶିକ୍ଷିତ-ମୂର୍ଖ, ସଂଭ୍ରାନ୍ତ-ଇତର ଜନ ସମସ୍ତଙ୍କ ମୁଖରେ ଏହା ବିରାଜମାନ । ଏହା ମନୋବୈଜ୍ଞାନିକ କାରଣ ଯାହା ହେଉନା କାହିଁକି ବ୍ୟବହାରିକ ଜଗତରେ ଯେ ଏହାର ଆବଶ୍ୟକତା ଅନିବାର୍ଯ୍ୟ, ଏହା କେହି ଅସ୍ୱୀକାର କରିପାରିବେ ନାହିଁ । ଭାଷାରେ ଏହା ଶାଶ୍ୱତ ଉପସ୍ଥିତି ହିଁ ଏହାର ଜ୍ୱଳନ୍ତ ପ୍ରମାଣ । ତେବେ ଭାଷାର ଏହା କୁତ୍ସିତତମ ରୂପ ଅଟେ ।

ଏପରିକି ନିତାନ୍ତ ଇତରଜନ ଶଳା, ଶ୍ୱଶୁର, ଭଣଜା, ନାତୀ, ପୋ(ପୁଅ) ପରି ଅତ୍ୟନ୍ତ ପବିତ୍ର ସମ୍ବନ୍ଧ ସୂଚକ ପଦମାନଙ୍କୁ ମଧ୍ୟ ବ୍ୟଙ୍ଗାର୍ଥରେ ଅଶ୍ଳୀଳ ଇଙ୍ଗିତର ସୂଚନା ଦେଇ ଗାଳିରେ ପରିଣତ କରି ଦେଇଥାନ୍ତି । ଏତଦ୍ୱାରା ଧିକ୍କାର, ଉପାଲମ୍ଭ, ବ୍ୟଙ୍ଗ, ଘୃଣା, କୁତ୍ସା, ହୀନତା, ଅଯୋଗ୍ୟତା, ଦୋଷାରୋପଣ ଆଦି ପ୍ରକାଶ କରାଯାଇଥାଏ । ବ୍ୟକ୍ତିର ସମ୍ଭ୍ରାନ୍ତ୍ୟ, ଶିକ୍ଷା, ସଭ୍ୟତା, ନୈତିକତା, ସମାଜ ଆଦି ତତ୍ ପ୍ରଯୁକ୍ତ ଗାଳିରୁ ସ୍ପଷ୍ଟ ପ୍ରତୀୟମାନ ହୋଇଥାଏ । ସାମାନ୍ୟ ପୁରପଥଚାରୀ (Man on street) ବା ନିମ୍ନସ୍ତରର ଇତର ଜନ ଯେଉଁ ଗାଳିଗୁଳଜ ଦେଶ କାଳ ପାତ୍ର ନିର୍ବିଶେଷରେ ଉଦ୍‌ଗାରି ଥାନ୍ତି, ତାହା ଭାଷାର ନିତାନ୍ତ ଆବର୍ଜନା ସ୍ୱରୂପ (Velgur) ହୋଇଥିବାରୁ ହେୟ । ତଦ୍ୱାରା କଥିତ ଭାଷାର ବା ସଂସ୍କୃତିର କୌଣସି ଅନୁମାନ କରାଯାଇ ନ ପାରେ । ଅପରଞ୍ଚ ଅତି ଶୁଦ୍ଧ ସାଧୁ ଭାଷାରେ ଗାଳିଦେବା କେବଳ ରଙ୍ଗମଞ୍ଚରେ ହିଁ ଶୋଭନୀୟ । ସାଧାରଣ ବ୍ୟବହାରରେ ତାହା ହାସ୍ୟୋପଦୀକ ହୁଏ । ଘର ବାହାରର ବା କର୍ମ କ୍ଷେତ୍ରର ଭାଷା ମଧ୍ୟ ନାନା ଦିଗରୁ ପ୍ରଭାବିତ ହୋଇଥାଏ । ଭାଷାର ଅନାବୃତ ରୂପ ଦେଖିବାକୁ ହେଲେ ଆମକୁ ଘର ଭିତରକୁ ପଶିବାକୁ ହେବ । ପତି-ପତ୍ନୀ, ମାତାପିତା-ସନ୍ତାନସନ୍ତତି, ବା କୌଣସି ଘରୋଇ ବିଷୟ ବିଚାର କରୁଥିବା ଆତ୍ମୀୟ ଗୋଷ୍ଠୀର ଭାଷାକୁ ଅନୁଧ୍ୟାନ କରିବାକୁ ହେବ । ଗାଳି ସେଥିରେ ଗୋଟିଏ ଦିଗ ।

କ୍ଷମତାପନ୍ନ ବା ବଳବତ୍ ଗୋଷ୍ଠୀ ଯେଉଁ ଗାଳିଗୁଳଜ ନିମ୍ନଙ୍କ ପ୍ରତି ପ୍ରୟୋଗ କରିଥାନ୍ତି, ନିତାନ୍ତ ଘୃଣାବୋଧକ ହେଲେହେଁ, ତାହା ପ୍ରଭାବଶାଳୀ ବା ଅଧିକ ମର୍ମଭେଦୀ ଭାବି ଲୋକେ ଅନୁକରଣ କରିଥାନ୍ତି । ଏଣୁ ବଦ୍‌ମାସ, ହାରାମ୍‌ଜାଦା, ହାରାମ୍‌ଖୋର୍, ବେଓ୍ୱକୁଫ୍, ନାଲାୟାକ୍, କମୀନା, ଆଦି ସହ ଅନେକ ଉର୍ଦ୍ଦୁ ପାରସି ଦେଶୀ ଭାଷା ମିଶା ଅତ୍ୟନ୍ତ ଅଶ୍ଳୀଳ ଓ ଅନୈତିକତା ସୂଚକ ଗାଳି ଆଜିକାଲିର Bloody, Fool, Rascal, Idiot, Scoundrel ଆଦି ପରି ପ୍ରଚଳିତ ହୋଇଯାଇଛି । କିନ୍ତୁ ଏ ସବୁର ପରମୁଖା ପେକ୍ଷିତା ବା ଦୁର୍ଗୁଣର ଆଶୁ ଅନୁକରଣଶୀଳ ମନୋ ଦୌର୍ବଲ୍ୟ ମାତ୍ର ଅନୁମେୟ । ଏଣୁ ଏ ସବୁକୁ ଏଡ଼େଇ ଦେଇ ଏ ପ୍ରସଙ୍ଗରେ ନିତାନ୍ତ ଘରୋଇ କେତେଗୋଟି କୁତ୍ସା-ପ୍ରଶଂସାର୍ଥ ପ୍ରଯୁକ୍ତ ଶବ୍ଦର ବିଚାର କରାଯାଉଛି । -

୧ .ନିମନ୍ ମୁହାଁ - (ନିମ୍ନମୁଖୀ) ଆଦେଶ ନିର୍ଦ୍ଦେଶ ନ ମାନି ବିମର୍ଷ ଭାବେ ତଳମୁହାଁ ହୋଇ ରହୁଥିବା ଝିଅ ପ୍ରତି ପ୍ରଯୁର୍ଯ୍ୟ । (ଓଲମୁହାଁ, ତଳମୁହାଁ, ମାଈମୁହାଁ, ଗାଈମୁହାଁ, - ଏ ନୁହନ୍ତି କାହାଁ କାହାଁ)

୨ . ଉଦୁର୍‌ଛିଆ/ଉଦ୍ଦୁର୍‌ଛେନ୍ - (ଉପଦ୍ରବଛନ୍ନ) ନାନା ଉପଦ୍ରବ କରି ଘରର ଜିନିଷ ପତ୍ରକୁ ଫିଙ୍ଗାଫିଙ୍ଗି କରି କିମ୍ବା ଅବହେଳା - ଅସଂଖୋଳା-ଅପବ୍ୟବହାର ଦ୍ୱାରା ନଷ୍ଟଭଷ୍ଟ

କରୁଥିବା ପୁଅ/ଝିଅ।

୩. ଉଦୁର୍‌ମାତ୍ -ଘରେ କିମ୍ବା ବାହାରେ ନାନା ଉପଦ୍ରବ କରୁଥିବା ଉଦ୍ଧତ ଅମାନିଆଁ ପିଲା।

୪. ଅଗୋଷ୍ଠିଆ - ଭାଇ ଭଉଣୀ କିମ୍ବା ସାଙ୍ଗସାଥୀ ସହ ନ ମିଶି କଳହ ଭିଆଇ ଗୋଷ୍ଠୀ ଭାଙ୍ଗି ଦେଉଥିବା ପିଲା।

୫. ଅପରଛନିଆଁ - (ଅପରିଚ୍ଛନ୍ନ ବା ଅପ୍ରଛନ୍ନିଆ) ନିଜର, ଘରର ବା ସାଙ୍ଗସାଥୀଙ୍କ ଚେଷ୍ଟା ଚରିତ୍ର ଆଦି ଯାହା ଗୁରୁଜନଙ୍କ ଆଗରେ ପ୍ରକାଶ ନ କରିବା କଥା ତାକୁ ଦେଶ କାଳ ପାତ୍ର ନିର୍ବିଶେଷରେ ନିର୍ବିଚାର ଭାବେ ଔଦ୍ଧତ୍ୟ ପୂର୍ବକ ପ୍ରକାଶ କରୁଥିବା ପିଲା କିମ୍ବା ଆଚାର ବ୍ୟବହାର ବସ୍ତ୍ରାଦିରେ ଅପରିଚ୍ଛନ୍ନ ବା ଅପରିଷ୍କାର ରହୁଥିବା ପିଲା।

୬. ଅରନ୍‌ସଏଲ୍ - (ଅନ୍ନଶଲ୍ୟ) କେବଳ ଖାଇବା ବେଳକୁ ଆଗ, ଅନ୍ୟ ବିଷୟରେ ଅକାମୀ। ଆଳସ୍ୟ ପରାୟଣ ମାତ୍ର ଅନ୍ନ ଧ୍ୱଂସକାରୀ।

୭. ଘୋରମୁହାଁ - (ଘୋଡ଼ାମୁହାଁ) କିଛି କାମ କିମ୍ବା ପଢ଼ା ଶୁଣା ନକରି ଘୋଡ଼ା ପରି ମୁହଁ ହଲାଇ ହିଁ ହିଁ ହାଁ ହାଁ ହେଉଥିବା ବିରକ୍ତିକର ଉଦ୍ଧତ ଅମାନିଆଁ ପିଲା। (ବଁସ ବୁଡ଼ା ବେଲକେ ଘୋରମୁହାଁ ପୋ - ଲୋକବଚନ)।

୮. ସରବ୍‌ନାସିଆ - ଅଳ୍ପକେ ବିଗଡ଼ି, ଯାହା ପାଇଲା ଭଲମନ୍ଦ ଦରକାରୀ ଅଦରକାରୀ ବା ମୂଲ୍ୟ ଆଦିର ନିର୍ବିଚାରରେ ଭଙ୍ଗାରୁଜା କରୁଥିବା ଆଶୁକୋପୀ ଅବ୍ୟବସ୍ଥିତ ଚିତ୍ତର ପିଲା।

୯. ଅସ୍‌କଟ୍ - (ଅସୁଘଟ) ନିଜ ଶରୀର ଓ ବସ୍ତ୍ର ଆଦିର ଯତ୍ନ ନ ନେବା ବା ବ୍ୟବହାରିକ ସୌଷ୍ଠବ ପ୍ରତି ଅମନସ୍କ, ମଳିନ, ଅଭଦ୍ର ବେଶଭୂଷାରେ ରହୁଥିବା ପିଲା।

୧୦. ଉଦରୀ - (ଅଭଦରୀ-ଅଭଦ୍ର ଅଲୋପ) ଶରୀର ବା ବେଶଭୂଷାର ପରିପାଟୀ ନରଖି ଅଭଦ୍ର ବ୍ୟବହାରକାରିଣୀ। ଧାନ ଓଳିଆକୁ ମଧ ଭଦରୀ କୁହାଯାଏ। ତଦ୍‌ବତ୍ ବେଢ଼ଉଳ ସ୍ଥୁଳ ଆକୃତି ବିଶିଷ୍ଟ, କିମ୍ବା କୌଣସି ବୋଲ ବରଗିଲେ ତାହା ପାଳନ ନକରି ମୁହଁକୁ ଓଳିଆ ପରି ଫୁଲାଉଥିବା ଝିଅଙ୍କୁ ବିରକ୍ତି ସୂଚକ ଭାବେ ବ୍ୟଙ୍ଗରେ କୁହାଯାଏ। ଏହି ୯ ଓ ୧୦ କୁ ମିଶାଇ 'ଅସକ୍‌ଭଦରୀ' ବୋଲି ମଧ କହିଥାନ୍ତି। (ପରିତ୍ୟାଜା ସୂଚକ ଢ଼ଗ - ଅସକ୍‌ଭଦରୀ ଫାଲ୍‌କସନା, ଢ଼ୋକା ମାରିଦେଲେ ଜା ପଟନା)

୧୧. ନିର୍ଘିନିଆ - (ନିର୍ଘୃଣ) ମଳିନ ବେଶଭୂଷାରେ ରହୁଥିବା ଓ ଭାଇ ଭଉଣୀ ବା ସାଙ୍ଗସାଥୀଙ୍କ ପ୍ରତି ନିଷ୍ଠୁର ବ୍ୟବହାରକାରୀ ପିଲା।

୧୨. ଦପା - (ଦୃପ୍ତା) କାହାକୁ ଖାତିର କରୁ ନଥିବା ଉଦ୍ଧତ ଅଣ୍ଡିରାଚଣ୍ଡୀ ଝିଅ ପ୍ରତି ପ୍ରଯୁଜ୍ୟ।

୧୩. ଛଖଁଡ଼ି - (ଣ୍ଡି) ଏ ଗାଳି ମନବୋଧ ଚଉତିଶା ପ୍ରଚାର ପୂର୍ବେ ବା ପରେ ପ୍ରଚଳିତ ହେଲା କହିବା କଠିନ। ଏହାର ଦୁଇଗୋଟି ଅର୍ଥ କରାଯାଇପାରେ। ଛଖଣ୍ଡୀ ଅର୍ଥାତ୍ ଛଅଖଣ୍ଡ ବା ଅଙ୍ଗ (ଚାରି ହାତ ଗୋଡ଼, ଅନ୍ତରାଧି ଓ ଶିରଃ)ର ସମଷ୍ଟି ମାତ୍ର - କାଣ୍ଡଜ୍ଞାନ ହୀନ ଜଡ଼ପିଣ୍ଡ ମାତ୍ର - ଅପଦାର୍ଥ। ଦ୍ୱିତୀୟରେ - ମରଣଯୋଗ୍ୟ 'ଛଖଣ୍ଡ କାଠ ହେବ ତୋ ପାଇଁ ଲୋଡ଼ା'। (ମନବୋଧ ଚଉତିଶା)ର ଇଙ୍ଗିତରେ ଏ ଗାଳି ଦିଆଯାଏ।

୧୪. କୁଠା - (କୂଟ+ନ୍ଧ) ଶୀଳ, ଅସ୍ତି ବା ତଦ୍ ରୂପତା ସୂଚକ ହା ପ୍ରତ୍ୟଶା ମର୍‌ହା, ସର୍‌ହା, ତର୍‌ହା ଆଦି ପରି। ଗୋଷ୍ଠୀ ବା ସମାଜ ଭିତରେ କୂଟ ବୁଦ୍ଧି ବା ଚକ୍ରାନ୍ତ ଦ୍ୱାରା ଗଣ୍ଡଗୋଳ ସୃଷ୍ଟିକାରୀ।

୧୫. ଖୋଡ଼ିଆ - (କ୍ଷେଡ୍ - ଗଜିନ ବା ଶବ୍ଦ କରିବା) ବିବାହାଦି ଜନ ସମାଗମରେ କୌଣସି ନା କୌଣସି ନିମିତ୍ତ ବାହାର କରି, ଯେ କନ୍ଦଳ ସୃଷ୍ଟିକରି ପାଟି ତୁଣ୍ଡ କରେ। ଖୋଳି ତାଡ଼ି କୌଣସି ପୁରୁଣା କଥାକୁ ବାହାର କରି, ତାକୁ ନିମିତ୍ତ କରି ବନ୍ଧୁ ବାନ୍ଧବ ବା ପ୍ରିୟାପ୍ରୀତି ଗୋଷ୍ଠୀରେ ବୈମନସ୍ୟ ଆଣେ। କ୍ଷେଲ୍ - ଥଟ୍ଟା କରିବା। ବହୁ ଦୁରଭିସନ୍ଧି ପୂର୍ବକ ଯେ ଏପରି ଥଟ୍ଟା ଭିଆଏ ଯାହା ବୈମନସ୍ୟ କଳିଗୋଳ ବା କ୍ଷୟ କ୍ଷତର ପର୍ଯ୍ୟାବସିତ ହୁଏ।

୧୬. ବୋକା - ବୋଦା ପରି ନିରୀହ ଓ ନିର୍ବୁଦ୍ଧିଆ ବା ବଳିଦାନର ଯୋଗ୍ୟ - ତ୍ୟାଜ୍ୟ ବା ଅପଦାର୍ଥ।

୧୭. ପୂଜାଯିଆ - ପୂଜା ବା ବଳିଦାନର ଯୋଗ୍ୟ। ଅତି ଦୁଷ୍ଟ ହେବାରୁ ଦଣ୍ଡ ସ୍ୱରୂପ।

୧୮. ବାଗ୍‌ଧରା - (ବ୍ୟାଘ୍ରଧାର୍ଯ୍ୟ) ଅବୋଲକରା, ଉଦ୍ଦଣ୍ଡ, ଉପଦ୍ରବୀ ପ୍ରତି, ତୁ ନଷ୍ଟ ହୋ ବା ତୋତେ ବାଘ ଖାଉ - ଏହି ଅର୍ଥରେ ପ୍ରଯୁକ୍ତ। ପୂର୍ବେ ଘନ ବନାନୀ ଯୋଗୁ ବ୍ୟାଘ୍ରର ମଧ୍ୟ ପ୍ରାଚୁର୍ଯ୍ୟ ଥିଲା। ବୋଲି ନମାନି ଉଦ୍ଦଣ୍ଡ ଭାବେ ପଦାକୁ ପଳାଇ ଗଲେ ବାଘ ହାବୁଡରେ ପଡ଼ିବା ସମ୍ଭାବନା ଗ୍ରାମ ପ୍ରାନ୍ତରେ ମଧ୍ୟ ଥିଲା - ଅନେକ ପଡ଼ି ଯାଉଥିଲେ ମଧ୍ୟ। ରାତ୍ରରେ ଗ୍ରାମ ଦାଣ୍ଡରେ ବାଘ ବୁଲୁଥିଲେ। ଏଣୁ ଏପରି ଅଭିଶାପାତ୍ମକ ଗାଳି ପ୍ରଚଳିତ ହୋଇ ଯାଇଅଛି।

୧୯. ଉଦ୍ଦଣ୍ଡୀ -ଶାଶନାତିଶା ଉଗ୍ରସ୍ୱଭାବଃ ପ୍ରତି ପ୍ରଯୁଜ୍ୟ ।

୨୦. ରୋଘା - (ରୋଗ ହା), ଖୋ଼ର୍ ହା, ନିଲିଜ, ଗାଡଶୁଆ, ଖଲିହଗରା (କୃତଘ୍ନ), ଲବାର (ମୁହଁଜୋର), ଲବର୍‌ଗାଲୀ (ବାଚାଟ ସ୍ତ୍ରୀ), ଏମନ୍‌ମୁଡ଼ିଆ (ନିତାନ୍ତ ସ୍ୱାର୍ଥ, କୁମଡ଼ା କୁହା (ପେଟ କପଟୀ) ଆଦି ଅନେକ ଲକ୍ଷଣା ବ୍ୟଞ୍ଜନା ଯୁକ୍ତ ଶବ୍ଦ ଗାଳି ଭାବେ ପ୍ରୟୋଗ କରାଯାଏ ।

ଏବେ କେତେଗୋଟି ପ୍ରଶଂସା ସୂଚକ ଶବ୍ଦକୁ ମଧ ବିଚାରକୁ ନିଆଯାଉ -

୧. ରୀସୁଗୁତ - (ରୀତିଯୁକ୍ତ) ପରିଷ୍କାର ପରିଛନ୍ନ, ଅନୁଦବେଜକ ବେଶଭୁଷା ସହ ଶୀଳବତୀ ସୁଷ୍ଟୁ ବ୍ୟବହାରକାରିଣୀ ଝିଅଙ୍କ ପ୍ରତି ବିଶେଷ ଭାବେ ପ୍ରଯୋଜ୍ୟ ।

୨.ଅତଣ୍ଡେଲ୍ - (ଅଦଣ୍ଡିଲ) ଭଦ୍ରପିଲା । ଖେଳାକୁଦା, ଆଚାର- ବ୍ୟବହାରରେ ଯେ କେବେ ଦଣ୍ଡ ଯୋଗ୍ୟ ହୁଏନାହିଁ । ଏପରି ପିଲା ମାନଙ୍କୁ 'ଅତଣ୍ଡେଲ୍ ଖେଳୁଛେ ବୁଲୁଛେ' ଏପରି ପ୍ରଶଂସା ଭାବେ କୁହା ଯାଇଥାଏ ।

୩. ସୁସାର - ଗମ୍ଭୀର ପ୍ରକୃତିର (ଅନ୍ତଃସାରବାନ) ଭଦ୍ର ବ୍ୟବହାର କାରୀ ପିଲା ।

୪. ସୁଧାର - ନିରୀହ ପ୍ରକୃତିର ଶାନ୍ତଶିଷ୍ଟ, ବିବେକ ସଂପନ୍ନ ପିଲା ।

୫. ଗୁନ୍‌ମତ୍ - ସଦ୍‌ଗୁଣ ଯୁକ୍ତ ।

୬. ରଙ୍କରଙ୍କ - କନିଷ୍ଠ ପ୍ରତି ବାତ୍ସଲ୍ୟ ଛଳଛଳ ସ୍ନେହ ପ୍ରବଣ ବ୍ୟକ୍ତି ପ୍ରତି ବିଶେଷଣ ରୂପେ ପ୍ରଯୁକ୍ତ ।

ଏଠାରେ ଅଳ୍ପ କେତେ ଶବ୍ଦ ନିଦର୍ଶନ ସ୍ୱରୂପ ଦିଆ ହେଲା । ଏତଦ୍ ବ୍ୟତୀତ ଅନେକ ଗାଳି ପ୍ରଶଂସାତ୍ମକ ଶବ୍ଦ ତାହା ସଂସ୍କୃତ ମୂଳକ ହୋଇ ଥିବାରୁ ସାଧାରଣ ଭାବେ ଅନେକ ଭାଷାରେ ପ୍ରଚଳିତ ଅଛି । ଏଣୁ ଏ ସବୁର ବିଚାରର ଆବଶ୍ୟକତା ନାହିଁ । ଉପଯୁକ୍ତ ଗାଳି ପ୍ରଶଂସାତ୍ମକ ଶବ୍ଦମାନେ ବିଶେଷଭାବେ ପୁଅ ଝିଅଙ୍କ ପ୍ରତି ପ୍ରଯୁଜ୍ୟ ହେଲେ ହେଁ ପରିସ୍ଥିତି ଅନୁଯାୟୀ ବୟୋଲିଙ୍ଗ ନିର୍ବିଶେଷରେ ଉପଯୁକ୍ତ ପରିବର୍ତ୍ତନ ସହ ପ୍ରୟୋଗ କରାଯାଏ ।

କୋଶଲୀ ଭାଷା ଗାଳି ପ୍ରଶଂସାରେ ଯୋଗ କରିବାକୁ

୨୦. ଚୁଲ ଚୁଲିଆ - ସ୍ପନ୍ଦେଃ ଚୁଲ୍‌ଚୁଲ । ଅପଭ୍ରଂଶରେ ସ୍ପନ୍ଦ ଧାତୁର ଚୁଲ୍‌ଚୁଳ ଆଦେଶ ହୁଏ । ଅତି ଚଞ୍ଚଳ, ଜିଜ୍ଞାସୁ ଭାବରେ ସବୁ ସ୍ଥାନରେ ସବୁ ଜିନିଷରେ ହାତ ଲଗାଉ ଥିବା, ଧାଁ

ଧପଡ଼, ଡ଼ିଆଁ ଡ଼େଇଁ କରୁଥିବା ଫଳତଃ ନାନା ଦୁର୍ଘଟଣାରେ ପଡ଼ିବା - ଝୁଣ୍ଟି ହାବୋଡ଼ି ହେବା, କଣ୍ଟା ଛୁରୀ କାଚ ଆଦିରେ କାଟି ହେବା, ପୋଡ଼ି ହେବା, କବାଡ଼ି ହୋଇ ପୀଡ଼ିତ ହେବା ଆଦି ଓ କେଉଁଟି ଓଲଟିଯିବା, କେଉଁଟି ଭାଙ୍ଗିଯିବା, କେଉଁଟି ତାଳି ହୋଇଯିବା, କେଉଁଟି ନଷ୍ଟ ହୋଇଯିବା ଆଦି - ଏପରି ପିଲାକୁ ଏ ଆଖ୍ୟା ଦିଆଯାଏ ଓ କୌଣସି ଦୁର୍ଘଟଣା (ଆଘାତ ଆଦି) ହେଲେ ବିରକ୍ତିରେ ସ୍ତ୍ରୀ ଲୋକମାନେ 'ଭେଲ୍ ହେଲା - ଚୁଲ୍‌ଚୁଲଆର ଦୁଇଭାଗ' (ଆଘାତ ଆଦି) ବୋଲି ମନ୍ତବ୍ୟ କରିଥାନ୍ତି। ହେଲେ ହେଁ ନିସ୍ତେଜ, ଅଳସୁଆ ଅକର୍ମା ପିଲାଙ୍କ ସହ ତୁଳନା ମଧ ପ୍ରଶଂସାତ୍ମକ ଭାବେ କରିଥାନ୍ତି। ଏଣୁ ଏହା ଗାଳି ହେଲେ ହେଁ ପ୍ରଶଂସା ଗର୍ଭିତ।

୨୧. ଅପେଟ୍/ଅପଟ୍ - ଏ ଦୁଇଟା ଏକ ଶବ୍ଦ। ଅପ+ଇଣ୍+କ୍ତ = ଅପେତ। କୌଣସି ବିଧିନିର୍ଦ୍ଦେଶକୁ ନ ମାନି ନିର୍ଲଜ୍ଜ ଭାବେ ଅଭଦ୍ର କାର୍ଯ୍ୟ ଓ ବ୍ୟବହାର କରୁଥିବା ଅତ୍ୟନ୍ତ କଦର୍ଯ୍ୟ ବ୍ୟକ୍ତିକୁ ଏ ବିଶେଷଣ ବିଶେଷିତ କରାଯାଏ। ଶ୍ରୀମଦ୍ ଭାଗବତରେ 'ବ୍ୟପେତଃ ନିରପତ୍ରପଃ' ଓ ଓଁ ଶ୍ରୀରାମଚରିତ ମାନସରେ ଅପତ ଭାବେ ପ୍ରୟୋଗ କରାଯାଇଛି -

ଅପତୁ ଅଜାମିଲୁ ଗଜୁ ଗନିକାଉ।
ମୁକୁତୁ ଭୟେ ହରିନାମ ପ୍ରଭାଉ।
(ବାଂ କାଂ)

ଏଥିରୁ ପୌରାଣିକ ସଂସ୍କୃତର ଗଭୀର ପ୍ରବେଶ ଅନୁମେୟ। 'ତୁଇ ବଡ଼େ ଅପେଟ୍ ଲୋକ ଗୁଟେ'। ଚେ଼ର୍‌ଗୁ (ନାମ) ତ ଅପେଟ୍ ହେଲାନେ' ଆଦି ରୂପରେ ପ୍ରୟୋଗ କରାଯାଏ।

୫

ପ୍ରାଚୀନ (ପ୍ରାକୃତିକ ଓ ଅପଭ୍ରଂଶ) କାଳରେ ଏ ଭାଷାର ନାମ କ'ଣ ଥିଲା, ତାହା ଆଉ କାହାକୁ ଜଣା ନାହିଁ। ହୁଏତ ପରେ ଏହା ଝରିଅ-୧ ନାମରେ ପରିଚିତ ରହି ଥିବାର ସମ୍ଭାବନା। ପରବର୍ତ୍ତୀ କାଳରେ ପରିସ୍ଥିତିର ପରିପୀଡ଼ନରେ ଏହାର ନାମ ସଂପୂର୍ଣ୍ଣ ଲୁପ୍ତ ହୋଇ, ବାହ୍ୟ ଦୃଷ୍ଟିରୁ ଆପାତ ଶ୍ରୁତିସାମ୍ୟ ଯୋଗୁ ଏହାକୁ ଓଡ଼ିଆ ବୋଲି ଧରି ନିଆଗଲା। ଏ ପ୍ରାନ୍ତର ଲୋକେ ମଧ ଓଡ଼ିଆ ଭାଷାକୁ ନିଜର ସାହିତ୍ୟ ଓ ସଂସ୍କୃତିର ମାଧମ ରୂପେ ଗ୍ରହଣ କରି ନେଲେ ଓ ଆତ୍ମବିସ୍ମୃତ ହୋଇ ନିଜକୁ ଓ ନିଜ ଭାଷାକୁ 'ଓଡ଼ିଆ' ବୋଲି ଧରି ନେଲେ। ପରିଣାମତଃ ଗୋଟିଏ ସ୍ୱତନ୍ତ୍ର

ଭାଷା ହେବା ସତ୍ତ୍ୱେ ଏଥିରେ ଆଉ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି ହୋଇପାରିଲା ନାହିଁ । ଏହା ଅବଶ୍ୟ ଶୋଚନୀୟ ଯେ ଦକ୍ଷିଣ କୋଶଳର କୌଣସି ଭାଷାରେ (ଛତିଶଗଡ଼ୀ, ବଘେଲ ଖଣ୍ଡୀ ସହ) ଲିଖିତ ଉଚ୍ଚାଙ୍ଗ ସାହିତ୍ୟ ବିକାଶ ହୋଇ ପାରିନାହିଁ । କ୍ରମେ ସ୍ୱଶ୍ରେଷ୍ଠତାବାଦୀ ଉପକୂଳ ଅଞ୍ଚଳର ଲୋକେ ଏ ଭାଷାକୁ ଓଡ଼ିଆ ଭାଷାର ଅପଭ୍ରଷ୍ଟ, ବକ୍ରୁତୋଚ୍ଚାରିତ, ଗ୍ରାମୀଣ, ଆଞ୍ଚଳିକ ଦେଶଜ ଭାଷା ବୋଲି ପ୍ରଖ୍ୟାପନ କଲେ ଓ ଏ ଭାଷାଭାଷୀମାନେ ନିଜେ ଅପକୃଷ୍ଟ ଭାବନାରେ ଆକ୍ରାନ୍ତ ହୋଇ ବର୍ତ୍ତମାନ ସୁଦ୍ଧା ବିମୁକ୍ତ ହୋଇ ପାରି ନାହାନ୍ତି । ମହାମତି ଗ୍ରିଅର୍‌ସନ ମଧ ଉପଯୁକ୍ତ ତଥ୍ୟ ପ୍ରାପ୍ତିର ଅଭାବରେ ଭ୍ରାନ୍ତିରେ ପଡ଼ିଗଲେ ।

ବର୍ତ୍ତମାନ ସଂପର୍କ ଘନିଷ୍ଠ ହେବାରୁ, ଏ ପ୍ରାନ୍ତରେ ମଧ କିଞ୍ଚିତ ଜାଗରଣ ହେବାରୁ, ମେହେର ବ୍ରଜରାଜ ଆଦି କୃତି ସନ୍ତାନମାନଙ୍କ ପ୍ରତିଭାର ପରିପ୍ରକାଶ ଓ ଉପକୂଳ ଅଞ୍ଚଳର ସବୁ ମହାକବି ମାନଙ୍କ କୃତିର ଗବେଷଣା ଓ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା ପ୍ରାୟତଃ ହୋଇ ସାରିଥିବାରୁ, ଗବେଷକ ଓ ଡ଼ିଗ୍ରୀ ପାଇଁ ସନ୍ଦର୍ଭ ଲେଖକମାନଙ୍କ ଦୃଷ୍ଟି ନୂତନ ବିଷୟବସ୍ତୁର ଅନ୍ୱେଷଣରେ କୋଶଲ ପ୍ରାନ୍ତ ପ୍ରତି ଆକୃଷ୍ଟ ହୋଇଛି । ଡ଼. କୁଞ୍ଜବିହାରୀ ତ୍ରିପାଠୀ ତାଙ୍କ ସନ୍ଦର୍ଭରେ କିଞ୍ଚିତ ଆଲୋଚନା କରି ଏ ଭାଷାର ଅଧିକାଂଶ ଶବ୍ଦକୁ 'uninteligible to Oriya speakers living outside Western Orissa' କହି ପ୍ରକାରନ୍ତରେ ଏହାର ଭିନ୍ନତା ପ୍ରତି ଅବହିତ ହୋଇଛନ୍ତି । ଡ଼. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମଧ ମୂଳତଃ ଏ ଭାଷା ଭିନ୍ନଥିବା ସ୍ୱୀକାର କରିଛନ୍ତି । ଅବଶ୍ୟ ପରେ ଓଡ଼ିଆ ଓ କୋଶଲୀ ମିଶି ଯାଇଥିବା କହିଛନ୍ତି ।

ଉକ୍ତ ଦୁଇ ବିଦ୍ୱାନଙ୍କ ମତକୁ ମିଶାଇ ଦେଖିଲେ ଏ ଭାଷା ଯେ ମୂଳରୁ ଅଦ୍ୟାବଧି ଓଡ଼ିଆଠାରୁ ଭିନ୍ନ ଏହା ପ୍ରତିପନ୍ନ ହେଉନାହିଁ କି ? ପୁନଶ୍ଚ ତତ୍‌କାଳୀନ ଏ ଉଭୟ ଭାଷାର ମିଳନରେ ସାଂପ୍ରତିକ ଓଡ଼ିଆ ଭାଷାର ବିକାଶ ବୋଲି ଧରା ଗଲେ କୋଶଲୀ ଭାଷାକୁ ଓଡ଼ିଆ ଭାଷାର ଉପଭାଷା ବୋଲିବାରେ କି ଯଥାର୍ଥତା ଅଛି ?

ସଂପ୍ରତି ଓଡ଼ିଆ ଭାଷାରେ ପ୍ରଚଳିତ କେଉଁ କେଉଁ ଶବ୍ଦ କୋଶଲୀ ଭାଷାର ତାହା ମଧ ଗବେଷଣାର ଗୋଟିଏ ଭିନ୍ନ ବିଷୟ ହେବ । କୋଶଲବାସୀ ଏହି ମିଳିତ ଭାଷାକୁ ସମାନ ଅଧିକାରୀ ଭାବେ ନିଜର ସାଂସ୍କୃତିକ ଓ ସାହିତ୍ୟିକ ମାଧ୍ୟମ ରୂପେ ଗ୍ରହଣ କରିଥିବା ଓ ତହିଁରେ ଯେତେ ପରିମାଣରେ ହେଉ ନା କାହିଁକି ସାଧନା କରିଥିବା (ବର୍ତ୍ତମାନର ଇଂଲିଶ୍ ପରି) ମଧ କୌଣସି ଅପକର୍ଷର ବିଷୟ ହେବ ନାହିଁ, ତଥା ଉପକୂଳବାସୀଙ୍କ ଶ୍ରେଷ୍ଠଦାବୀ ମଧ ନିରାଧାର ହେବ । କୋଶଲବାସୀ ନିଜର କଥିତ ଭାଷାକୁ ଏହି ମିଳିତ ଭାଷାଠାରୁ ପୃଥକ୍ ରଖିଥିବାରୁ ତାହା ପ୍ରାୟତଃ

ଅପ୍ରଭାବିତ ଥିବା ଜଣାଯାଏ । ଏ ଭାଷାର ପ୍ରାଚୀନତା, କୌଳିକ ସ୍ୱାତନ୍ତ୍ର୍ୟ, ଶାବ୍ଦିକ ସଂପନ୍ନତା ଦୃଷ୍ଟିରୁ ଓ ପ୍ରାୟତଃ ଏକ କୋଟି ଜନତାର ନିଜସ୍ୱ ହୋଇଥିବାରୁ ଏହାର ସ୍ୱାଧୀନ ବିକାଶ ଅବଶ୍ୟ କର୍ତ୍ତବ୍ୟ ।

ବର୍ତ୍ତମାନ ଭାରତରେ ସମସ୍ତ ଉଚ୍ଚଶିକ୍ଷା ଓ ଶାସନକାର୍ଯ୍ୟ ଇଂରେଜୀରେ ଚଳୁଥିବାରୁ ଯେପରି ସମସ୍ତ ଉଚ୍ଚଶିକ୍ଷିତ ବ୍ୟକ୍ତି ଦ୍ୱିଭାଷୀ ହୋଇ ଯାଇଛନ୍ତି, ସେପରି ଘରେ ଓ ବାହାରେ ଭିନ୍ନ ଭାଷା କହୁଥିବାରୁ କୋଶଲ ପ୍ରାନ୍ତବାସୀଙ୍କୁ ଦ୍ୱିଭାଷୀ କହିବା ଅବାସ୍ତବ ହେବନାହିଁ । ଯାହା ହେଉ ବର୍ତ୍ତମାନ ଉଭୟ ପ୍ରାନ୍ତର ବିଦ୍ୱାନ ଏ ଭାଷା ପ୍ରତି ଆକୃଷ୍ଟ ହୋଇଥିବା ଲକ୍ଷ କରାଯାଏ ।

ସଂପୂର୍ଣ୍ଣ ରୂପେ ବିସ୍ମୃତ ନାମ ଓ ଅବହେଳିତ ଏ ଭାଷାକୁ ପୁନରୁଜ୍ଜୀବିତ କରିବାକୁ ହେଲେ, ତାର ଗୋଟିଏ ନାମର ମଧ ଉଦ୍‌ଭାବନ ଓ ପ୍ରତିଷ୍ଠା କରିବାକୁ ହେବ । ସାଧାରଣତଃ ଦେଶ ନାମାନୁସାରେ ଭାଷାର ମଧ ନାମ କରଣ ହୋଇଥାଏ । ଏହି ଦୃଷ୍ଟିରୁ ଏ ଭାଷାର ନାମ ମଧ 'କୋଶଲୀ' ହେବା ସ୍ୱାଭାବିକ ଅଟେ । ପରବର୍ତ୍ତୀ ଆଲୋଚନାରୁ ଏହା ସ୍ପଷ୍ଟ ହେବ ।

ଭାରତରେ ସ୍ୱାଧୀନ ସଭାମାନଙ୍କ ଲୋପ କାଳରେ ପଶ୍ଚିମ ଓଡ଼ିଶାର ( ? ) ସମ୍ବଲପୁର ରାଜ୍ୟହିଁ ସର୍ବପ୍ରଥମେ ସିଧାସଳଖ ଇଂରେଜ ଶାସନାଧୀନ ହେଲା । ଅନ୍ୟ ଅଞ୍ଚଳମାନ - ତତ୍ ସଂଲଗ୍ନ ବଲାଙ୍ଗିର, କଳାହାଣ୍ଡି, ସୋନପୁର, ବଉଦ, ସୁନ୍ଦରଗଡ଼ ଆଦି ଦେଶୀୟ ରାଜ୍ୟ ଥିବାରୁ, ବାହାର ଲୋକଙ୍କ ପକ୍ଷେ ଅପ୍ରବେଶ୍ୟ ଓ ଅଧିକାଂଶ ଅଗୋଚର ମଧ ଥିଲା । ଏଣୁ ଇଂରେଜ ସରକାର ଓ ଉପକୂଳବାସୀଙ୍କ ନିକଟତମ ସଂପର୍କ ନୂତନ ଭାବେ ପ୍ରଥମେ ସମ୍ବଲପୁର ସହ ହେଲା ଓ ଏ ପ୍ରଦେଶର ଭାଷାକୁ ସେମାନେ 'ସମ୍ବଲପୁରୀ' ବୋଲି ଡାକିଲେ । କାଳକ୍ରମେ ସଂପର୍କ ଓ ସମାଗମ ବ୍ୟାପକ ହେଲେ ମଧ ଗତାନୁଗତିକ ଭାବେ ସମଗ୍ର ପଶ୍ଚିମ ପ୍ରାନ୍ତର ଭାଷା ହିଁ ସମ୍ବଲପୁରୀ ନାମରେ ପ୍ରଯୁକ୍ତ ହୋଇ ଆସୁଅଛି । ଏହା ନିତାନ୍ତ ଭ୍ରମାତ୍ମକ । ଉପର କଥିତ ବଲାଙ୍ଗିର ଆଦି ପରି ସମ୍ବଲପୁର ମଧ ଗୋଟିଏ ଅଞ୍ଚଳ । ପ୍ରତି ଅଞ୍ଚଳରେ ଉଚ୍ଚାରଣ, କଥନଭଙ୍ଗୀ ଆଦିର ଆଞ୍ଚଳିକ ବିଶିଷ୍ଟତାମାନ ଥିଲେ ହେଁ, ଏ ସମଗ୍ର ପ୍ରାନ୍ତର ଭାଷା ଏକ । ଗୋଟିଏ ଅଞ୍ଚଳର ଲୋକେ ଅନ୍ୟ ଅଞ୍ଚଳର ଭାଷାକୁ ବୁଝିବାରେ କୌଣସି ଆୟାସ ଅନୁଭବ କରନ୍ତି ନାହିଁ, କିମ୍ବା ତାକୁ ଅନ୍ୟ ଭାଷା ବୋଲି ଭାବନ୍ତି ନାହିଁ । ଆଞ୍ଚଳିକ ଦୃଷ୍ଟିକୋଣରୁ ବିଭିନ୍ନ ଅଞ୍ଚଳ ନିଜ ଭାଷାକୁ ନିଜ ଅଞ୍ଚଳ ସହ ସଂପୃକ୍ତ ସିନା, ନିଜ ଭାଷାକୁ କେବେ ସମ୍ବଲପୁରୀ ଭାବନ୍ତି ନାହିଁ କି କହନ୍ତି ନାହିଁ ।

କାଳକ୍ରମେ ଦେଶୀୟ ରାଜ୍ୟ ବିଲୋପ ଓ ଯାତାୟାତର ସୁବିଧା ଯୋଗୁ ପରିସର ବ୍ୟାପକ ହେଲେ ହେଁ, ଏ ସମସ୍ତ ପ୍ରାନ୍ତର ଭାଷାକୁ ଉସ୍ୱାସ ଭାବେ ସମ୍ବଲପୁରୀ କହି ଦିଆଯାଉଛି । ବର୍ତ୍ତମାନ

ବାସ୍ତବ ଦୃଷ୍ଟିକୋଣରୁ ଏ ନାମର ପରିବର୍ତ୍ତନ ଆବଶ୍ୟକ। ଯେହେତୁ ଏ ନାମ ମାତ୍ର ଗୋଟିଏ ଅଞ୍ଚଳକୁ ବୁଝାଉଅଛି। ସମ୍ବଲପୁର ବ୍ୟତିରେକେ ଅନ୍ୟାନ୍ୟ ଅଞ୍ଚଳ ସହ ରାଜ୍ୟ ବାହାରେ ଥିବା ଏ ଭାଷାଭାଷୀ ଅଞ୍ଚଳ ମାନଙ୍କୁ (ଜସପୁର ଓ ଭତରୀ ସହ) ଅନ୍ତର୍ଭୁକ୍ତ କରିବାକୁ ହେଲେ ଦେଶ ନାମାନୁସାରେ ଏ ଭାଷାର 'କୋଶଲୀ' ନାମ ଦେବା ହିଁ ଯଥାର୍ଥ ହେବ।

ବୃଦ୍ଧ ବାଗ୍‌ଭଟ୍ଟଙ୍କ ବଚନ -

'ଅପଭ୍ରଂଶସ୍ତୁ ଯଚ୍ଛୁଦ୍ଧଂ ତତ୍ତଦ୍ଦେଶେଷୁ ଭାଷିତମ' ଭାମହ ମଧ୍ୟ ପ୍ରାକୃତ ପ୍ରକାଶ ୪-୩୩ ସୁତ୍ରର ବ୍ୟାଖ୍ୟାରେ, ତେନେ ସର୍ବ ଏକ ଦେଶସଙ୍କେତ ପ୍ରବୃତ୍ତାଃ ଭାଷାଶବ୍ଦାଃ ପରିଗୃହୀତାଃ' କହିଛନ୍ତି। ପୃଥିବୀର ସର୍ବତ୍ର ମଧ୍ୟ ଦେଶ ନାମାନୁସାରେ ଭାଷା ନାମ ହୋଇଛି। କୌଣସି ନଗର ବା ଅଞ୍ଚଳ ନାମରେ କୌଣସି ଦେଶର ଭାଷା ନାମିତ ହୋଇଥିବା ଦେଖାଯାଏ ନାହିଁ। କଟକୀ କହିଲେ ଓଡ଼ିଆକୁ କିମ୍ବା କଲକତୀ କହିଲେ ବଙ୍ଗଭାଷାକୁ ବୁଝାଇବ ନାହିଁ। ବିଶେଷତଃ ଆଜିକାଲି ଯାତାୟାତର ସୁବିଧା, ବାଣିଜ୍ୟ ବ୍ୟାପାରର ପ୍ରସାର, ବୃହତ୍ ଶିଳ୍ପ ଆଦି ସ୍ଥାପନ ଓ ଶାସକୀୟ ଚାକିରୀ ଆଦିରେ ସାର୍ବଦେଶୀ ବ୍ୟବସ୍ଥା ଯୋଗୁ ସହରୀ ଭାଷା ଗୋଟିଏ ଅଭାବନୀୟ ମିଶ୍ରଣ। ଏହାକୁ ରାବଣୀ ଭାଷା କୁହାଯାଇ ପାରେ। କଥିତ ଅଛି ଶ୍ରୀରାମଚନ୍ଦ୍ର ସେତୁ ବାନ୍ଧିସାରିଥିବା ସମ୍ବାଦ ପାଇ ରାବଣ ଆଶ୍ଚର୍ଯ୍ୟଚକିତ ହୋଇ 'ସମୁଦ୍ର ବାନ୍ଧିଦେଲା !' କହିବା ସମୟରେ ଏକାଥରେକ ତା'ର ଦଶମୁଖରୁ ସମୁଦ୍ରବାଚୀ ଦଶଗୋଟି ଶବ୍ଦ ବାହାରିଥିଲା। ବର୍ତ୍ତମାନର ସହରୀ ଭାଷାକୁ ଦଶଶିରା ରାବଣର ଭାଷା ନକହି ବରଂ ସହସ୍ରଶିରା ରାବଣର ଭାଷା କହିବା ଅନୁପଯୁକ୍ତ ହେବନାହିଁ।

ଏହି କୋଶଲ ନାମର ଅବିଚ୍ଛିନ୍ନ ପରମ୍ପରାର କେତୋଟି ଯୁକ୍ତି ବିଚାରାର୍ଥ ନିମ୍ନରେ ଦିଆ ହେଉଛି :-

୧. ରାଜା ବଳରାମ ଦେବ ମହାନଦୀ ବାମପଟକୁ ରାଜ୍ୟ ବିସ୍ତାର ହେବାରୁ ଶାସନ ଓ ରାଜ୍ୟ ରକ୍ଷାର ସୁବିଧା ଦୃଷ୍ଟିରୁ ନୂତନ ରାଜଧାନୀ ବସାଇ ନିଜ ଇଷ୍ଟ କୁଳଦେବୀ ସମ୍ବଲେଶ୍ୱରୀ (ସାମ୍ଳରେଶ୍ୱରୀ) ନାମରେ ନାମିତ କରିଥିଲେ। ତତ୍ ପୂର୍ବରୁ ଏ ଭାଷାର ନାମ ସମ୍ବଲପୁରୀ ହେବାର ସମ୍ଭାବନା ନାହିଁ।

୨. କୋଷକାର ମାନେ ମଧ୍ୟ ଭ୍ରାନ୍ତିରେ ନ ପଡ଼ି ତାଙ୍କ ସଂଗୃହୀତ ଏ ପ୍ରାନ୍ତର ଶବ୍ଦାବଳୀକୁ (ସ୍ୱଳ୍ପସଂଖ୍ୟକ ହେଲେ ମଧ୍ୟ) ଆଞ୍ଚଳିକ କହି ବିଭିନ୍ନ ଅଞ୍ଚଳର ନାମ ନିର୍ଦ୍ଦେଶ କରିଛନ୍ତି।

୩. ଆକାଶବାଣୀ କେନ୍ଦ୍ର, ସମ୍ବଲପୁର ମଧ୍ୟ ସ୍ପଷ୍ଟ ଘୋଷଣା କରନ୍ତି, 'ସମ୍ବଲପୁର ଅଞ୍ଚଳର

ଗୀତ ଶୁଣିଲେ'। ସମୟ ସମୟରେ, 'ପଶ୍ଚିମ ଓଡ଼ିଶାର ସମ୍ବଲପୁର ଅଞ୍ଚଳର ଗୀତ' ବୋଲି ମଧ କହିଥାନ୍ତି। ବାସ୍ତବରେ ମଧ ଅନ୍ୟାନ୍ୟ ଅଞ୍ଚଳ ପ୍ରତି ଅତ୍ୟନ୍ତ ଅବହେଳା କରାଯାଉଛି। ଏହା କ୍ଷୋଭର ବିଷୟ।

୪. ଏ ପ୍ରାନ୍ତର ପ୍ରାଚୀନ ନାମ 'ମହାକୋଶଳ' କୋଶଲୀ ଉଙ୍ଗା, କୋଶଲିଆ ଶାଗ ଓ କୋଶଲୀ ଗଉଡ଼ ମାନେ ବର୍ତ୍ତମାନ ସୁଦ୍ଧା ଅଛନ୍ତି।

୫. ଶପ୍ତଦଶ ଶତାବ୍ଦୀର ଶେଷଭାଗରେ ରାଜା ବଳିଆର ସିଂହଙ୍କ (୧୬୬୦-୯୦) ସମୟରେ ଲିଖିତ ଚୌହାନ ପ୍ରଶସ୍ତିମୂଳକ ତାଙ୍କ କାବ୍ୟକୁ ଶ୍ରୀ ଗଙ୍ଗାଧର ମିଶ୍ର 'କୋଶଳାନନ୍ଦ କାବ୍ୟ' ବୋଲି ନାମ ଦେଇଛନ୍ତି।

୬. ଅଷ୍ଟାଦଶ ଶତାବ୍ଦୀରେ ଜୟନ୍ତ ସିଂହଙ୍କ ରାଜତ୍ୱ କାଳରେ, ଶାରଙ୍ଗଗଡ଼ର ପଣ୍ଡିତ ପ୍ରହ୍ଲାଦ ଦୁବେ ତାଙ୍କର 'ଜୟଚନ୍ଦ୍ରିକା' କାବ୍ୟରେ 'କୋଶଳେଶ୍ୱର ଚୌହାନ' କହିବା ଦ୍ୱାରା ଚୌହାନ ଅଧିକୃତ ସମଗ୍ର ପ୍ରାନ୍ତକୁ 'କୋଶଲ' ବୋଲି ଅଭିହିତ କରିଛନ୍ତି।

୭. ସ୍ୱର୍ଗତ ଶ୍ରୀ ରାମଚନ୍ଦ୍ର ମଲ୍ଲିକ ଅଠରଗଡ଼ ଯୁକ୍ତ ପାଟଣା ରାଜ୍ୟର ଇତିହାସକୁ (ନିଜ ଲିଖିତ) 'କୋଶଲ ଇତିହାସ' ନାମ ଦେଇଛନ୍ତି।

୮. ଦିବଙ୍ଗତ ଶ୍ରୀ ପୂର୍ଣ୍ଣଚନ୍ଦ୍ର ରଥ ମଧ ତାଙ୍କ ଲିଖିତ ଇତିହାସକୁ 'କୋଶଲ ଇତିହାସ' ନାମ ଦେଇଛନ୍ତି।

୯. ସ୍ୱର୍ଗତ ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଏ ସମଗ୍ର ଅଞ୍ଚଳ ମାନଙ୍କୁ ନେଇ ଗୋଟିଏ ଅଲଗା 'କୋଶଲ ରାଜ୍ୟ' ଗଠନର ଆନ୍ଦୋଳନ ଆରମ୍ଭ କରିଥିଲେ। ମାତ୍ର ସେ ସମୟରେ ରାଜୁତ୍ୱା ବିରୋଧୀ ମନୋଭାବ ପ୍ରବଳ ଥିବାରୁ ତାହା ଉଧେଇ ପାରିଲା ନାହିଁ।

୧୦. ରାଜପୁତ ଆଦି ବିଭିନ୍ନ ସାମରିକ ଗୋଷ୍ଠୀମାନେ ନିଜ ପ୍ରତିଷ୍ଠିତ ରାଜ୍ୟମାନଙ୍କୁ ନିଜ ଗୋଷ୍ଠୀର ନାମ ଅନୁସାରେ ବୁନ୍ଦେଲଖଣ୍ଡ, ବଘେଲ ଖଣ୍ଡ, ରୁହେଲଖଣ୍ଡ (ରୁହେଲା ପଠାନ) ଖାନ୍ ଦେଶ ଆଦି ନାମ ଦେଇଥିଲେ ହେଁ, ଚୌହାନ ରାଜାମାନେ 'କୋଶଲ' ନାମ ହିଁ ସ୍ୱୀକାର କରିଥିଲେ ଓ ନିଜକୁ 'କୋଶଲେଶ୍ୱର' ଭାବେ ପରିଚିତ କରାଇ ଗୌରବ ଅନୁଭବ କରୁଥିଲେ। ଏଥିରୁ କୋଶଲ ନାମର ସୁପ୍ରତିଷ୍ଠା ଓ ଚୌହାନ ମାନଙ୍କ ପରମ୍ପରା ପ୍ରତି ସମ୍ମାନ ସ୍ପଷ୍ଟ ହୁଏ।

୧୧. ମହାକୋଶଳର ପଶ୍ଚିମ ଭାଗରେ ଛତିଶଗୋଟି ଗଡ଼ ଥିବାରୁ କାଳକ୍ରମେ ତାହା ଛତିଶଗଡ଼ ନାମରେ ରୁଢ଼ ହୋଇ ଏପରି ଦୃଢ଼ପ୍ରତିଷ୍ଠ ହେଲା ଯେ, ସେଠାରେ ଭାଷା ପୂର୍ବେ 'ଲରିଆ' କୁହା ଯାଉଥିଲେ ହେଁ, ବର୍ତ୍ତମାନ ତାହା ଛତିଶଗଡ଼ୀ ନାମରେ ସୁ ପ୍ରତିଷ୍ଠିତ ହୋଇଛି। (ପଶ୍ଚିମ ଓଡ଼ିଶାରେ ଲରିଆ ନାମ ହିଁ ପ୍ରଚଳିତ ଅଛି।) ଉତ୍ତର ପଶ୍ଚିମ ଅଂଶ ବଘେଲ ରାଜପୁତ ମାନଙ୍କ ଦ୍ୱାରା ଅଧିକୃତ ହୋଇ ବଘେଲାଖଣ୍ଡ ନାମ ଧରିଛି ଓ ଭାଷା ମଧ ବଘେଲଖଣ୍ଡୀ ବୋଲାଉଛି। ଏ ଉଭୟ ଭାଷା ବର୍ତ୍ତମାନ ହିନ୍ଦିର ଉପଭାଷା ? ବୋଲାଉଛନ୍ତି।

୧୨. ଉତ୍ତର କୋଶଳ ବର୍ତ୍ତମାନ 'ଅଓ୍ୱଧ' ପଦାବତ ଆଦି ବିଶ୍ୱ ପ୍ରସିଦ୍ଧ କାବ୍ୟମାନ ତହିଁରେ ରଚିତ ହୋଇସାରିଛି। ଏହା ପୂର୍ବୀ ହିନ୍ଦି ନାମରେ ସ୍ୱତନ୍ତ୍ର ଭାବେ ପରିଚିତ ହେଉଛି।

୧୩. କେବଳ ଏହି ଖଣ୍ଡ ପରମ୍ପରା କ୍ରମେ ନିଜର କୋଶଲ ନାମ ନିର୍ଦ୍ଧାରିତ ରଖିଆସିଛି। କୋଶଲ ନାମାଙ୍କିତ ବିଭିନ୍ନ ପତ୍ର ପତ୍ରିକା ଓ ଅନୁଷ୍ଠାନ ମାନ ଏଥିର ନିଦର୍ଶନ। ଛତିଶଗଡ଼ର ମହାକୋଶଲ ସୋସାଇଟି ଆଦି କେବଳ ଐତିହାସିକ ସଂସ୍କରଣ ମାତ୍ର। ଆମ ଭୁବନେଶ୍ୱରର ଖାରବେଳ ନଗର, ଯଯାତି ନଗର ଆଦି ପରି। ଅତଏବ 'ଅବଶେଷାଦ୍ ବ୍ୟପଦେଶଃ' ନ୍ୟାୟରେ ମଧ ଏ ଭାଷାର ନାମ 'କୋଶଲୀ' ହେବା ଉଚିତ।

ଅତଏବ ଏସବୁ କାରଣରୁ ଏ ସମଗ୍ର କୋଶଲ ପ୍ରାନ୍ତର ଭାଷାକୁ ବୁଝାଇବାକୁ ହେଲେ କ୍ଷୁଦ୍ରତା ବୋଧକ ଓ ଅବ୍ୟାପ୍ତି ମୂଳକ ନାମକୁ ପରିହାର କରି, ବୃହତ୍ତର ପରିସର ସୂଚକ ଭାବେ ଏହାକୁ 'କୋଶଲୀ' କହିବା ସଂପୂର୍ଣ୍ଣ ଯୁକ୍ତିସଙ୍ଗତ।

ପୂର୍ବୀ ହିନ୍ଦି, ପଶ୍ଚିମୀ ହିନ୍ଦି ପରି ଏହାକୁ 'ପଶ୍ଚିମୀ ଓଡ଼ିଆ' କହିଲେ ରାଜ୍ୟ ବାହାରେ ଥିବା ଏ ଭାଷାଭାଷୀ ଅଞ୍ଚଳ ମାନଙ୍କୁ ଅନ୍ତର୍ଭୁକ୍ତ କରାଯାଇ ପାରିବ ନାହିଁ। ବିଶେଷତଃ ଏ ଭାଷା ଓଡ଼ିଆ ଭାଷାଠାରୁ ସ୍ୱତନ୍ତ୍ର ହୋଇଥିବାରୁ ଓ ଏ ପ୍ରାନ୍ତ ଶାସନ ପାଇଁ ଓଡ଼ିଶା ରାଜ୍ୟାନ୍ତର୍ଗତ ଥିଲେ ହେଁ ଏହା ବାସ୍ତବ ଉତ୍କଳ ଠାରୁ ଭିନ୍ନ 'କୋଶଲପ୍ରାନ୍ତ' ହୋଇଥିବାରୁ, ଅନୁପଯୁକ୍ତ ହେବ। ଦେଶ ନାମାନୁସାରେ ଏହାର 'କୋଶଲୀ' ନାମ ହିଁ ଯଥାର୍ଥ ଓ ସିଦ୍ଧ।

ଏଥିରେ ସଂକୀର୍ଣ୍ଣତା ବଶତଃ କୌଣସି ଅଞ୍ଚଳ ବିଶେଷର ଶ୍ରେଷ୍ଠତାର ପରିକଳ୍ପନାରେ ଭେଦଭାବର ଭାବନା ନିତାନ୍ତ ଅନୁଚିତ। ନାମ ବିଶେଷର ପ୍ରତି ରୁଢ଼ ହୋଇଥିବା ମିଥ୍ୟା ଅଭିମାନ, ଆସକ୍ତି କିମ୍ବା ଦୁରାଗ୍ରହ ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ନିତାନ୍ତ ହେୟ।

# ସମ୍ବଲପୁରୀ ଭାଷା ଓ ସାହିତ୍ୟ

ଡ଼. ଶ୍ରଦ୍ଧାକର ସୂପକାର

ନିକଟ ଅତୀତରେ ଗୋଟିଏ ସାହିତ୍ୟ ସଭାରେ ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ ମତ ଦେଲେ ଯେ ଶହେ ବର୍ଷ ପୂର୍ବେ ସମ୍ବଲପୁରୀ ଭାଷା ଓ ସାହିତ୍ୟ ଥିବାର ପ୍ରମାଣ ନାହିଁ । ମତଟିରେ ମୁଁ ହତବାକ୍ ହେଲି । ପରେ ନିଜକୁ ପଚାରିଲି ମୋର ଜେଜେମା (ଯାହାଙ୍କ ଜନ୍ମ ୧୮୫୫ ରୁ ୧୮୬୦ ମସିହାରେ) ଯେଉଁ ଭାଷାରେ ମୋର ପିଲାଦିନେ ମୋ ସହିତ ବ୍ୟବହାର କରୁଥିଲେ, ତାହା ତାଙ୍କର ନିଜର ଉଦ୍‌ଭାବନା ନା ସେ ତାଙ୍କ ମାଆଙ୍କଠାରୁ ଶିଖିଥିଲେ ? ମୋ ଜେଜେମା ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ମୋ ସହିତ ଖାଣ୍ଟି ସମ୍ବଲପୁରୀ ଭାଷାରେ କଥାବାର୍ତ୍ତା ହେଉଥିଲେ ଓ ତାଙ୍କର ଗପମାନ ଶୁଣାଉଥିଲେ । ସେଥିରେ ଶୁଦ୍ଧ ଓଡ଼ିଆ ଭାଷାର ନାମଗନ୍ଧ ନଥିଲା । ଗୋଟିଏ ନୂତନ ଭାଷା ସୃଷ୍ଟି କରିବାର କ୍ଷମତା ମୋର ଜେଜେମାଙ୍କର ନଥିଲା, ମୋର ମଧ ନାହିଁ ।

କଥିତ ଭାଷା, ଲିଖିତ ଭାଷା ଓ ସାହିତ୍ୟ ବିଷୟରେ ଆଲୋଚନା କଲାବେଳେ ଟିକିଏ ସାବଧାନତା ଅବଲମ୍ବନ କରିବା ଦରକାର । ସାରଳା ଦାସଙ୍କୁ ଓଡ଼ିଶାର ଆଦିକବି କୁହାଯାଏ । ତଥାପି ସାରଳା ଦାସଙ୍କର ଜେଜେବାପା ନିଶ୍ଚୟ ଓଡ଼ିଆ ବୋଲି କହିବା । ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ ରଚନା ପୂର୍ବରୁ ପଣ୍ଡିତ ଓ ବ୍ରାହ୍ମଣମାନେ କୁଆଡ଼େ କେବଳ ସଂସ୍କୃତରେ ଲେଖୁଥିଲେ । ଓଡ଼ିଆରେ ଲେଖିବାକୁ ପସନ୍ଦ କରୁନଥିଲେ । ଏବେ ତ ଆମେ ଇଂରେଜିରେ କଥା କହୁଁ ପୁଅ ଓ ସ୍ତ୍ରୀ ପାଖକୁ ଇଂରେଜିରେ ଚିଠି ଲେଖୁଁ । ଇଂରେଜିରେ ଭଲ ଗପ ଓ ପ୍ରବନ୍ଧ ଲେଖିପାରୁଁ । ଓଡ଼ିଆରେ ଲେଖିବାକୁ ପସନ୍ଦ କରୁଁ ନା । ତଥାପି ଲୋକେ ଆମକୁ ଓଡ଼ିଆ ବୋଲି କହନ୍ତି । ଇଂଲଣ୍ଡରେ ଚଷର୍ ଓ ଲାଙ୍ଗ୍‌ଲାଣ୍ଡଙ୍କ ପୂର୍ବରୁ ଇଂରେଜି ଲୋକ ଇଂରେଜି ବା ଅଙ୍ଗ୍ଲୋସେକସନ ଭାଷାକୁ ମଫସଲି ଭାଷା ବୋଲି କହୁଥିଲେ । ଭଦ୍ର ସମାଜରେ କୁଆଡ଼େ ଲାଟିନ୍‌ରେ କଥାଭାଷା ଓ ଲେଖାପଢ଼ା ହେଉଥିଲା ।

ମୋର ଜେଜେବାପାଙ୍କର ମାତୃଭାଷା କ'ଣ ଥିଲା ? ସେ ଯଦି ଆଜି ପୁନର୍ଜୀବିତ ହୁଅନ୍ତେ, ତେବେ ହୁଏତ ତାଙ୍କର କଥିତ ଭାଷା ଓ ମୋର କଥିତ ଭାଷାରେ ବିଶେଷ ପାର୍ଥକ୍ୟ ରହନ୍ତା ନାହିଁ

ବୋଲି ମୋର ବିଶ୍ୱାସ । ବରଂ ରାଧାନାଥଙ୍କର ବିବେକୀ ଓ ଗୋବିନ୍ଦ ତ୍ରିପାଠୀଙ୍କର ଲିଖିତ ଓଡ଼ିଆ ପ୍ରବନ୍ଧର ଭାଷା ଓ ଶୈଳୀରେ ପାର୍ଥକ୍ୟ ଅଧିକ ବୋଲି ମୋର ଧାରଣା । କଥିତ ଭାଷାରେ ମଧ ବିବର୍ତ୍ତନ ହେଉଛି, ମାତ୍ର ମୂଳ ଗଠନରେ ବିଶେଷ ପରିବର୍ତ୍ତନ ଲକ୍ଷ୍ୟ କରାଯାଉ ନାହିଁ, ଅନ୍ତତଃ ଗତ ଷାଠିଏ ବର୍ଷର ବ୍ୟକ୍ତିଗତ ଅଭିଜ୍ଞତାରୁ ମୁଁ ଏହା କହିପାରେ ।

ସମ୍ବଲପୁରୀ ଭାଷା ଉପକୂଳ ଅଞ୍ଚଳର କଥିତ ଭାଷା ଓ ଲିଖିତ ଓଡ଼ିଆ ଭାଷାରୁ ଯେଉଁ କେତୋଟି ବିଷୟରେ ପୃଥକ୍ ତାହା ସୁସ୍ପଷ୍ଟ । ସମ୍ବଲପୁରୀ ଭାଷାରେ ନିଷେଧାର୍ଥକ ଅବ୍ୟୟ କ୍ରିୟା ପୂର୍ବରୁ ବସେ । ସମ୍ବଲପୁରୀ ଭାଷାରେ ପ୍ରାୟ ସବୁ ଶବ୍ଦ ବ୍ୟଞ୍ଜନାନ୍ତ । ହିନ୍ଦୀ ଭାଷାର ପ୍ରଭାବରେ ଏହା ହୋଇଥାଇ ପାରେ ବୋଲି କୁହାଯାଇପାରେ । ସମ୍ବଲପୁରୀ ଭାଷାରେ ଲ ଓ ଳ ମଧ୍ୟରେ ପ୍ରଭେଦ ନାହିଁ । ଅନ୍ୟାନ୍ୟ ଅନେକ ପ୍ରଭେଦ ଅଛି ।

ମୁଁ ଋଷୀୟ ଭାଷାର ପ୍ରାଥମିକ ସ୍ତରରେ କେତେ ପୁସ୍ତକ ପଢୁଥିଲି । ସେଥିରେ ହଠାତ୍ ଦେଖିଲି ଗୋଟିଏ ଶବ୍ଦ 'ସ୍ନୋଖା' ଏହି ଶବ୍ଦଟି ସଂସ୍କୃତ 'ସ୍ନୁଷା' ଶବ୍ଦର ସମାର୍ଥକ । ଭାରତୀୟ କୌଣସି ଭାଷାରେ ସ୍ନୁଷା ଶବ୍ଦର ବ୍ୟବହାର ନାହିଁ । 'ବୋହୂ' ବା 'ବହୁ' ଶବ୍ଦ ସବୁଠାରେ ଚଳୁଚି । 'ବୋହୂ' ଶବ୍ଦର ଅନେକ ଅର୍ଥ ହୋଇପାରେ । ଏହା 'ବଧୂ' ଶବ୍ଦରୁ ଆସିଛି । 'ବଧୂ' ଶବ୍ଦ 'ଭୁଆସୁଣୀ' ଅର୍ଥରେ ବା 'ବର'ର ବିପରୀତ ଲିଙ୍ଗ ହୋଇପାରେ । ପୁଅର ସ୍ତ୍ରୀ କହିବାକୁ ଗଲେ 'ପୁତ୍ରବଧୂ' ଶବ୍ଦ ବ୍ୟବହାର କରାଯାଇପାରେ । 'ସ୍ନୁଷା' ଶବ୍ଦର କେବଳ ଗୋଟିଏ ଅର୍ଥ ହୋଇପାରେ, ପୁଅର ଭାର୍ଯ୍ୟା । ମାତ୍ର ଶବ୍ଦ କେହି ବ୍ୟବହାର କରନ୍ତି ନାହିଁ । ସେହିପରି ଆମେ କହୁଁ 'ଦମକଳ' ଇଂରେଜିରେ 'ଫାୟାର୍ ଇଞ୍ଜିନ୍' - ଅର୍ଥାତ୍ ଫାୟାର ଲିଭାଇବା ପାଇଁ ଇଞ୍ଜିନ୍ ଫାୟାର୍ ଜଳାଇବା ପାଇଁ ନୁହେଁ । ରୁଷୀୟ ଭାଷାରେ ଏହାକୁ କୁହାଯାଏ 'ଓଗ୍ନିଓ ନାସ୍ନୋ' ଅର୍ଥାତ୍ 'ଅଗ୍ନିନାଶନ' । ସଂସ୍କୃତ ଓ ରୁଷୀୟ ଭାଷାରେ ଏହିପରି ଅନେକ ସାଧାରଣ ଓ ଅସାଧାରଣ ଶବ୍ଦର ଅଦ୍ଭୁତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ସେହିପରି ସମ୍ବଲପୁରୀ ଭାଷାରେ କେତେକ ସଂସ୍କୃତ (ଏପରିକି ବୈଦିକ) ଶବ୍ଦ ମଧ ଦେଖି ଆଚମ୍ବିତ ହେବାକୁ ପଡେ । ସେ ଶବ୍ଦମାନ, ଓଡ଼ିଆ ଭାଷାରେ ନାହିଁ । ଉଦାହରଣ ସ୍ୱରୂପ 'ଖରସି' ଅର୍ଥାତ୍ 'ଗୋବର' । ବେଦରେ କରୀଷ ଶବ୍ଦର ବ୍ୟବହାର ଅଛି ଓ 'କରୀଷିଣୀ' ଶବ୍ଦର ବ୍ୟବହାର ପ୍ରସିଦ୍ଧ । ବ୍ରତ ବିବାହରେ ମନ୍ତ୍ରରେ ଏ ଶବ୍ଦର ବ୍ୟବହାର ଅଛି । ସଂସ୍କୃତର 'ଐଷମ' ସମ୍ବଲପୁରୀ ଭାଷାରେ 'ଏସୁର୍', ସଂସ୍କୃତର 'ପରୁତ୍' ସମ୍ବଲପୁରୀରେ 'ପରହୁର୍' ଓ ସଂସ୍କୃତର 'ପରାରି' ସମ୍ବଲପୁରୀରେ 'ପରହିଆରି' ହୋଇଛି । ଓଡ଼ିଆରେ ଏହା ହେବ ଏ ବର୍ଷ, ଗତବର୍ଷ ଓ ତହିଁ ପୂର୍ବବର୍ଷ । ଏହିପରି ବହୁ ଶବ୍ଦର ଉଦାହରଣ ଦିଆଯାଇପାରେ ।

ସ୍ୱର୍ଗତ ସତ୍ୟନାରାୟଣ ବହିଦାର ସମ୍ବଲପୁରୀ ଭାଷାର ବିଶିଷ୍ଟତା ବିଷୟରେ ଅନେକ ପ୍ରବନ୍ଧ ଲେଖିଛନ୍ତି । ସମ୍ବଲପୁରୀ ଭାଷାର ବ୍ୟାକରଣ ବିଷୟରେ ଏକ ପୁସ୍ତିକା ପ୍ରକାଶ କରିଛନ୍ତି । ସମ୍ବଲପୁରୀ ଭାଷାର ଏକ ଅଭିଧାନ ପ୍ରଣୟନ ଏବଂ ପ୍ରକାଶନ ପାଇଁ ମଧ୍ୟ ଅନେକ ଚେଷ୍ଟା କରିଛନ୍ତି । ମାତ୍ର ଏ ପର୍ଯ୍ୟନ୍ତ ଏ ଦିଗରେ ସନ୍ତୋଷଜନକ କାର୍ଯ୍ୟ ହୋଇପାରି ନାହିଁ ।

ସମ୍ବଲପୁରୀ କଥିତ ଭାଷାରେ ମଧ୍ୟ ଆଞ୍ଚଳିକ ପ୍ରଭେଦ ରହିଛି - ଏହା ରହିବା ସ୍ୱାଭାବିକ । ଉଦାହରଣ ସ୍ୱରୂପ ବାମଣ୍ଡା ଅଞ୍ଚଳରେ 'କାଣା' ଶବ୍ଦ ପରିବର୍ତ୍ତେ 'କିରା' ଶବ୍ଦର ବ୍ୟବହାର । ବଲାଙ୍ଗୀର ଅଞ୍ଚଳରେ ସେହିପରି 'ବାହାର' ଅର୍ଥରେ 'ଭଟା' ଶବ୍ଦର ବ୍ୟବହାର । ଯଥା ଯଦି ଭିକାରୀଟିଏ ଘର ଭିତରକୁ ପଶି ଆସିଲା, ତେବେ ଘର ମାଲିକ କହିବେ - "ଆରେ ଭିତରକୁ କାହିଁକି ଆସିଲୁ, ଭଟାକୁ ଯା ।" ସମ୍ବଲପୁର ଅଞ୍ଚଳରେ 'ଭଟା' ପାଣି ଭିତରର ବିପରୀତ ଶବ୍ଦ ରୂପେ ବ୍ୟବହୃତ ହୁଏ । ସେହିପରି କେତେ ଅଞ୍ଚଳରେ 'ପାରା ବଦଳରେ 'ପରୁଆ' ଶବ୍ଦର ବ୍ୟବହାର ପ୍ରଚଳିତ ଅଛି ।

ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ପ୍ରଚଳିତ କଥିତ ଭାଷା ତୁଳନାରେ ସମ୍ବଲପୁରୀ ଭାଷା ସୁଶ୍ରାବ୍ୟତା ବା ମାର୍ଜିତତା ଦୃଷ୍ଟିରୁ କୌଣସି ଗୁଣରେ ଊଣା ନୁହେଁ । ତଥାପି ସାହିତ୍ୟରେ ଏହାର ବହୁଳ ପ୍ରଚାର ହୋଇନାହିଁ ବା ହେଉନାହିଁ । ଅନେକ ସମ୍ବଲପୁରୀ ଲେଖକ ମନେ କରି ପାରନ୍ତି ଯେ ସମ୍ବଲପୁରୀ ଭାଷା ସାହିତ୍ୟରେ ପ୍ରୟୋଗ କଲେ ସୁଧୀବର୍ଗ ନାସିକା କୁଞ୍ଚନ କରିବେ । ମାତ୍ର ସାହିତ୍ୟରେ ଏହାର ପ୍ରୟୋଗ ଦରିଦ୍ର ଓଡ଼ିଆ ସାହିତ୍ୟକୁ ଓ ଶବ୍ଦ ସମ୍ଭାରକୁ ସମୃଦ୍ଧ କରିବ । ବିଶେଷତଃ ଯେଉଁ ଭାବ ପ୍ରକାଶ ପାଇଁ ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷାରେ ଉପଯୁକ୍ତ ଶବ୍ଦ ନାହିଁ ଅଥଚ ସମ୍ବଲପୁରୀ ଭାଷାରେ ଉପଯୁକ୍ତ ବ୍ୟଞ୍ଜନା ବିଶିଷ୍ଟ ଶବ୍ଦ ଅଛି, ସେହି ଭାବର ପରିପ୍ରକାଶ ପାଇଁ ସମ୍ବଲପୁରୀ ଶବ୍ଦ ପ୍ରଯୁକ୍ତ ହେବା ଉଚିତ୍ ।

ସମ୍ବଲପୁରୀ ଭାଷାରେ ସାହିତ୍ୟ ବିଶେଷ ନାହିଁ । ତହିଁର ପ୍ରଧାନ କାରଣ - ଏହା ଏକ କଥିତ ଭାଷା । ସେଥିପାଇଁ ସମ୍ବଲପୁର ଅଞ୍ଚଳର ବିଶିଷ୍ଟ କବି ଓ ସାହିତ୍ୟିକ ମାନେ ଯଥା ଭୀମଭୋଇ, ଗଙ୍ଗାଧର ମେହେର, ପ୍ରାଚୀନ କବି କୃଷ୍ଣଚନ୍ଦ୍ର ଆଦି ବିଶୁଦ୍ଧ ସଂସ୍କୃତ ଜାତ ଓଡ଼ିଆ ଭାଷାର ବ୍ୟବହାର କରିଛନ୍ତି । ତଥାପି ଏବେ କେତେ ଜଣ ସମ୍ବଲପୁରୀ କବିଙ୍କ ଦ୍ୱାରା ସମ୍ବଲପୁରୀ ଭାଷାରେ ଲିଖିତ କବିତା ପୁସ୍ତକ ଲୋକଲୋଚନ ଗୋଚରକୁ ଆସୁଛି ।

ଲକ୍ଷ୍ମଣ ପତି ନାମକ ଜଣେ ପ୍ରାଚୀନ ସମ୍ବଲପୁରୀ କବିଙ୍କର ଶବରୀଲୀଳା ନାମକ ଏକ କ୍ଷୁଦ୍ର କାବ୍ୟ ଏ ମଧ୍ୟରେ ଅଧାପକ ଦୁର୍ଗା ପ୍ରସାଦ ନାୟକ ପ୍ରକାଶ କରିଛନ୍ତି । ତାଙ୍କ କବିତାର ଭାବ

ଓ ଭାଷାର ସାବଲୀଳତାର ଏକ ଉଦାହରଣ ତଳେ ଦିଆଗଲା -

'ତେନ୍ତୁଲି କୟାଁ ଜିରା ଧନିଆଁ
ବାଟିଦେବ ତହିଁ ହେବ ନୁନିଆଁ
ଖରାରେ ଅଳପ ଶୁଖିବ,
ମୁହଁ ତରଲି ପଡ଼ିବ ଗଲି
ଖାଇଲା ବେଳକୁ ଜାଣିବ ।
ଏହି ଚଡ଼ାଇ ପଇସା ଦୁଇ
ଏହାକୁ ରାନ୍ଧିବ ମସଲା ଦେଇ
ଧନିଆଁ ମରିଚ ଜିରା ଗୋ,
ଘିଅରେ ଭଜା ଉଲି ପରଖା
ଭୁରା ଲାଗିଥିବ ଚୁରା ଗୋ ।

ଆଧୁନିକ ଯୁଗରେ କବିମାନଙ୍କ ମଧ୍ୟରେ ପ୍ରସିଦ୍ଧ ଲାଭ କରିଥିବା ଶ୍ରୀ ଖଗେଶ୍ୱର ସେଠ ସମ୍ବଲପୁରୀ ଭାଷାକୁ କବିତାରେ ନିପୁଣତାର ସହିତ ପ୍ରୟୋଗ କରିଛନ୍ତି । ତାଙ୍କର ଲେଖା 'ପଏର୍ଛା ସତୀ' ଓ 'ଚଷା ମୁରକି ହସା' କବିତାରେ ସେ ସମ୍ବଲପୁରୀ ଭାଷାର ଲଳିତ ପ୍ରୟୋଗ କରିଛନ୍ତି ।

ମୋର ପ୍ରିୟବନ୍ଧୁ ସ୍ୱର୍ଗତ ସତ୍ୟନାରାୟଣ ବହିଦାର ବରାବର ସମ୍ବଲପୁରୀ ଭାଷାରେ କବିତା ଲେଖୁଥିଲେ ଓ ସେଥିରେ ଯଥେଷ୍ଟ କୃତିତ୍ୱ ଅର୍ଜନ କରିଥିଲେ । ତାଙ୍କର କବିତାମାନ ଖାଣ୍ଟି ସମ୍ବଲପୁରୀ - ତେଣୁ ଅନେକ ସମୟରେ ପଦମାନଙ୍କ ପାଇଁ ପାଦଟୀକା ଦରକାର ହୁଏ ।

ସମ୍ବଲପୁରୀ ଅଞ୍ଚଳର ଲୋକଗୀତ ବିଷୟରେ ଏ ପର୍ଯ୍ୟନ୍ତ ବିଶେଷ ଆଲୋଚନା ହୋଇନାହିଁ । ଏ ଅଞ୍ଚଳର ଲୋକଗୀତ ମଧ୍ୟରୁ ଡ଼ାଲଖାଇ, ରସର୍କେଲି, ହୁମୋ ଗୀତ ଆଦି ପଶ୍ଚିମ ଓଡ଼ିଶାର ଗ୍ରାମ୍ୟ ଜୀବନର ଏକ ସୁସ୍ଥ ଚିତ୍ର ଦିଏ । ଭଦ୍ର ସମାଜରେ ପଦ୍ୟାନ୍ତ ବା ଶ୍ଳୋକାନ୍ତ ପ୍ରତିଯୋଗିତା ପରି ହୁମୋଗୀତ ଗ୍ରାମାଞ୍ଚଳର କୁମାରୀମାନଙ୍କର ସମୂହଗୀତ ପ୍ରତିଯୋଗୀତାର ଏକ ଉଦାହରଣ । ସାଧାରଣତଃ ସନ୍ଧ୍ୟାବେଳେ ଗାଆଁ ଝିଅମାନେ ଦୁଇଦଳରେ ବିଭକ୍ତ ହୋଇ ମୁହାଁମୁହିଁ ଛିଡା ହୁଅନ୍ତି ଓ ଗୋଟିଏ ଦଳ ସମବେତ ଭାବରେ ହୁମୋଗୀତ ଗାଇ ଅନ୍ୟଦଳ ଆଡକୁ ଯାଆନ୍ତି ଓ ଘୁଞ୍ଚନ୍ତି । ଏ ଦଳର ଗୀତ ସରିବା ପରେ ଅନ୍ୟଦଳ ଆଉ ଏକ ଗୀତ ଗାଆନ୍ତି । ଏହିପରି ଭାବରେ ପ୍ରତିଯୋଗିତା ଚାଲେ । ସାଧାରଣତଃ ଦଶରା ମାସରେ ସମ୍ବଲପୁର, ବଲାଙ୍ଗୀର, ସୁନ୍ଦରଗଡ଼ ଆଦି ଅଞ୍ଚଳରେ ଡାଲଖାଇ ଗୀତ ଖୁବ୍ ଚଳେ । ପଶ୍ଚିମ ଓଡ଼ିଶାର ପ୍ରଧାନ ପ୍ରଧାନ

ରାଜପଥରେ ମୋଟର୍ ବା ବସ୍‌ରେ ଦଶହରା ମାସରେ ଗଲାବେଳେ ମଝି ସଡ଼କରେ ବା ସଡ଼କ ପାଖରେ କୁମାରୀ ଝିଅମାନଙ୍କର ଡ଼ାଲଖାଇ ଗୀତ ଶୁଣାଯାଏ ଓ ନାଚ ଦେଖାଯାଏ । ମାତ୍ର ସମାଜରେ ଆଧୁନିକତାର ପ୍ରସାର ସଙ୍ଗେ ସଙ୍ଗେ ଗ୍ରାମ୍ୟ ଜୀବମନର ସ୍ୱତଃସ୍ଫୁର୍ତ୍ତ କଳା ଧୀରେ ଧୀରେ ସଙ୍କୁଚିତ ଓ ଲୁପ୍ତପ୍ରାୟ ହେଉଛି । ତହିଁ ବଦଳରେ ରେଡ଼ିଓ, ମାଧ୍ୟମରେ ରସରକେଲି, ଡାଲ୍‌ଖାଇ ଆଦି ସମ୍ବଲପୁରୀ ଲୋକଗୀତର ପ୍ରଚାର ହେଉଛି । ଏବେ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାରୁ ଅନେକ ସମ୍ବଲପୁରୀ ସଙ୍ଗୀତକାର ଏ ସମ୍ବଲପୁରୀ ଗୀତକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ମଧୁର ସଙ୍ଗୀତ ରଚନା କରୁଛନ୍ତି । ଏମାନଙ୍କ ମଧ୍ୟରେ ସମ୍ବଲପୁରରୁ ସର୍ବଶ୍ରୀ ଲାଲ ରତ୍ନାକର ସିଂହ, ମିତ୍ରଭାନୁ ଗୌନ୍ତିଆ, ବିନୋଦ ପଶାଏତ ଆଦି ଓ ବଲାଙ୍ଗୀରର ସର୍ବଶ୍ରୀ ନରସିଂହ ପ୍ରସାଦ ଗୁରୁ, ଶ୍ରୀପତି ପାଣିଗ୍ରାହୀ ଆଦିଙ୍କର ନାମ ଉଲ୍ଲେଖଯୋଗ୍ୟ । ଆନନ୍ଦର କଥା ଏହି ସଙ୍ଗୀତମାନଙ୍କ ମଧ୍ୟରୁ କେତେ ପୁସ୍ତିକା ଆକାରରେ ଛପା ଯାଇଛି ।

ଡକ୍ଟର କୁଞ୍ଜବିହାରୀ ଦାଶଙ୍କର ଲୋକଗୀତ ସଞ୍ଚୟନରେ ଡାଲଖାଇ ଆଦି ଅନେକ ଲୋକଗୀତ ସ୍ଥାନ ପାଇଛି । ପାରମ୍ପରିକ ଲୋକଗୀତ ମାନଙ୍କର ରଚୟିତା ପ୍ରାୟ ଅଜଣା ।

ଊନବିଂଶ ଶତାବ୍ଦୀ ପୂର୍ବରୁ ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, ଦୀନକୃଷ୍ଣ, ଭକ୍ତଚରଣଙ୍କ ଭଳି ବିଖ୍ୟାତ କବି ପଶ୍ଚିମ ଓଡ଼ିଶାରେ ଜନ୍ମଗ୍ରହଣ କରି ନଥିଲେ । ତଥାପି ଏ ଅଞ୍ଚଳର କବି କୃଷ୍ଣଚନ୍ଦ୍ର କରଙ୍କ 'ରଘୁନାଥ ବିଳାସ' ଓ 'କୁଞ୍ଜବିହାର' କାବ୍ୟରେ ଦୀନକୃଷ୍ଣ ଆଦି କବିଙ୍କର କାବ୍ୟ ପ୍ରତିଭାର ପରିଚୟ ମିଳେ । ଦୁଃଖର ବିଷୟ ଏ କାବ୍ୟମାନଙ୍କର ବହୁଳ ପ୍ରଚାର ହୋଇନାହିଁ । କବି ଲକ୍ଷ୍ମଣ ପତିଙ୍କ 'ଶବରୀ ଲୀଳା' ବିଷୟରେ ପୂର୍ବରୁ ଉଲ୍ଲେଖ କରାଯାଇଛି । ଏ ଲେଖା ଉଣା ଅଧିକେ ସାରା ଓଡ଼ିଶାରେ ଅଜଣା କହିଲେ ଚଳେ ।

ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପ୍ରତି ପଶ୍ଚିମ ଓଡ଼ିଶାର ଶ୍ରେଷ୍ଠ ଅବଦାନ ଭୀମଭୋଇ ଓ ଗଙ୍ଗାଧର ମେହେର । ଏମାନେ ଅବଶ୍ୟ ସମ୍ବଲପୁରୀ ଭାଷାରେ କିଛି ଲେଖି ଯାଇ ନାହାନ୍ତି ।

ଭୀମଭୋଇ ରେଢ଼ାଖୋଲ ଠାରେ କନ୍ଧ କୁଳରେ ଜନ୍ମ ଗ୍ରହଣ କରିଥିଲେ । ସେ ବୋଧହୁଏ ୧୮୮୫ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ଜନ୍ମରୁ ଅନ୍ଧଥାଇ ଶିକ୍ଷାର ଆଲୋକ ନପାଇ କେବଳ ନୈସର୍ଗିକ ପ୍ରତିଭା ବଳରେ ଯେଉଁ ଗ୍ରନ୍ଥମାନ ରଚନା କରିଛନ୍ତି, ତାହା ପଣ୍ଡିତମାନଙ୍କୁ ମଧ୍ୟ ମୁଗ୍ଧ ଓ ଚକିତ କରିଛି । ଭୀମଭୋଇଙ୍କ ଗ୍ରନ୍ଥାବଳୀରେ 'ସ୍ତୁତି ଚିନ୍ତାମଣି', 'ଭଜନମାଳା', 'ବ୍ରହ୍ମ ନିରୂପଣ ଗୀତା', 'ଆଦି ଅନ୍ତ ଗୀତା', 'ଚଉତିଶା', 'ଗ୍ରନ୍ଥମାଳା', 'ନିର୍ବେଦ ସାଧନା',

'ଶ୍ରୁତି ନିଷେଧ ଗୀତା', 'ବଙ୍ଗଳା ଭଜନ' ଆଦି ପ୍ରଧାନ । ତାଙ୍କର ପ୍ରଣୀତ ସ୍ତୁତି ଚିନ୍ତାମଣିର ସପ୍ତବିଂଶ ବୋଲିର ଏ ପଦ୍ୟ :-

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ
ଏ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।"

ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ରତ୍ନ ।

ଭୀମଭୋଇଙ୍କ ବିଷୟରେ 'ଶାମୁକା ଓ ମୁକ୍ତା' ପ୍ରବନ୍ଧରେ ଶ୍ରୀ ଭୁବନେଶ୍ୱର ବେହେରା ଲେଖିଛନ୍ତି :-

"ଓଡ଼ିଆ ଜାତି ଓ ଓଡ଼ିଆ ଭାଷାର ସନ୍ଧିକ୍ଷଣରେ ଏହି ଜାତି ଓ ଭାଷାର ସ୍ଥିତିକୁ ଭୀମଭୋଇଙ୍କ ଅବଦାନ କେହି ଏବେ କଳନା କରିପାରିବେନି । ବୀରଭୂମି, ସିଂହଭୂମି ଓ ଅନ୍ୟାନ୍ୟ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ଆଜି ଲୁପ୍ତ ପ୍ରାୟ ଭୀମଭୋଇ ଯଦି ସମ୍ବଲପୁର ଅଞ୍ଚଳର ଗାଁ ଗାଁରେ ମହିମା ଧର୍ମ ପ୍ରଚାର କରିବାକୁ ଯାଇ ଓଡ଼ିଆ ଭାଷାକୁ ଏ ଅଞ୍ଚଳରେ ଜନତାର ଭାଷା ବୋଲି ପ୍ରମାଣିତ କରି ନଥାନ୍ତେ, ତେବେ ଏ ଅଞ୍ଚଳ ଓଡ଼ିଶାକୁ ଆସି ଥାଆନ୍ତା କି ନାହିଁ ଓ ଏ ଅଞ୍ଚଳ ବିନା ଓଡ଼ିଶା ପ୍ରଦେଶ ଗଠନ କେତେଦୂର ସମ୍ଭବପର ହୋଇ ଥାଆନ୍ତା, ସେ କଥା ଆଜି କିଏ କହିବ ?"

କବି ଗଙ୍ଗାଧର ମେହେର ଭୀମଭୋଇଙ୍କର ପରବର୍ତ୍ତୀ କବି, ଓଡ଼ିଆ ଭାଷା ସାହିତ୍ୟ ପ୍ରତି ଗଙ୍ଗାଧରଙ୍କ ଅବଦାନ ଅତୁଳନୀୟ । ତାଙ୍କର କାବ୍ୟ ପ୍ରତିଭା ବିଷୟରେ ବହୁ ଆଲୋଚନା ହୋଇଛି, ବହୁ ପୁସ୍ତକ ଲିଖିତ ହୋଇଛି । ଏଠାରେ ମୁଁ ତାଙ୍କର ଦୁଇଟି ମାତ୍ର ବିଶେଷତ୍ୱ ଉଲ୍ଲେଖ କରୁଛି । ସମ-ସାମୟିକ କବିମାନଙ୍କ ତୁଳନାରେ ଆମେ ଦେଖିବାକୁ ପାଉଁ ଗଙ୍ଗାଧରଙ୍କ ସାହିତ୍ୟରେ ପଶ୍ଚିମ ଓଡ଼ିଶା ଜୀବନର ବିଶେଷତ୍ୱ ତାଙ୍କରି କାବ୍ୟେ କବିତାରେ ବିକଶିତ ହୋଇଛି । କବିଙ୍କର ସରଳ ନିରାଡମ୍ବର ଜୀବନ ତାଙ୍କର ଭାଷା ଓ ଶୈଳୀରେ ପ୍ରତିଫଳିତ ହୋଇଛି । ପ୍ରାକୃତିକ ପରିବେଶରେ ପାଳିତ ଗଙ୍ଗାଧର ପ୍ରକୃତିର ରୂପ-ରସ-ଗନ୍ଧଭରା ମୂର୍ତ୍ତି ଭିତରେ ପାଳିକା ପ୍ରାଣଶକ୍ତିର ପ୍ରାଚୁର୍ଯ୍ୟ ଓ ସ୍ୱାସ୍ଥ୍ୟ ଭରା ଆଶାବାଦକୁ ବିଶ୍ୱଦେଖ ମଧୁମୟ ଆଦି କବିତାରେ ଜୀବନ୍ତ କରିଛନ୍ତି ।

ଦେଶ ମିଶ୍ରଣର ପ୍ରଥମ ପ୍ରକାଶ ହୁଏ ସମ୍ବଲପୁରରେ । ଗଙ୍ଗାଧର ଏହାରି ମନ୍ତ୍ରଦାତା କହିଲେ ଅତ୍ୟୁକ୍ତି ହେବନାହିଁ । 'ଉତ୍କଳ ଲକ୍ଷ୍ମୀ' ତତ୍କାଳୀନ ଓଡ଼ିଆଙ୍କର ଆଶା ଆକାଂକ୍ଷାର ମୂର୍ତ୍ତିମନ୍ତ ପ୍ରତୀକ । ଏହି ସମୟରେ ସମ୍ବଲପୁରର କେତେ ବିଶିଷ୍ଟ ବ୍ୟକ୍ତି ପ୍ରଗାଢ଼ ପରିଶ୍ରମ କରି ସମ୍ବଲପୁରକୁ ମଧ୍ୟପ୍ରଦେଶରୁ ଓଡ଼ିଶାକୁ ଫେରାଇ ଆଣି ଓଡ଼ିଶା ସହିତ ମିଶାଇ ଥିଲେ । ଶ୍ରୀପତି ମିଶ୍ରଙ୍କ ପ୍ରଣୀତ

'ଶିମଳା ଯାତ୍ରା' ଐତିହାସିକ ସାହିତ୍ୟ ଓ ସୁନ୍ଦର ଭ୍ରମଣ ବୃତ୍ତାନ୍ତ ।

୧୯୧୭-୧୮ ମସିହାରେ ସ୍ୱପ୍ନେଶ୍ୱର ଦାଶ କବି ଭୂଷଣଙ୍କ ସମ୍ପାଦନାରେ 'ହୀରାଖଣ୍ଡ' ନାମକ ମାସିକ ସାହିତ୍ୟ ପତ୍ର ଫ୍ରେଜର ପ୍ରେସରୁ ପ୍ରକାଶିତ ହେଲା । ଏହା ୩/୪ ବର୍ଷ ଧରି ଚାଲିଲା । ଏହି ମାସିକ ପତ୍ରରେ କବି ଗଙ୍ଗାଧରଙ୍କ ନେତା କବିତା ପ୍ରକାଶିତ ହୋଇଛି । ଏହି ମାସିକ ପତ୍ରରେ ସମସାମୟିକ ଯୁବ ସମାଜ ମଧ୍ୟରୁ ଡାକ୍ତର ଜନାର୍ଦ୍ଦନ ପୂଜାରି, ଶଙ୍କର ପ୍ରସାଦ ମିଶ୍ର, ବୋଧରାମ ଦୁବେ ଆଦିଙ୍କର ଗଳ୍ପ ଓ ପ୍ରବନ୍ଧମାନ ପ୍ରକାଶିତ ହୋଇଥିଲା । ଏମାନଙ୍କ ଭିତରୁ ଡ଼ା. ଜନାର୍ଦ୍ଦନ ପୂଜାରୀ ଜଣେ ସିଦ୍ଧହସ୍ତ ଲେଖକ, ଗଳ୍ପକାର ଓ ନାଟ୍ୟକାର ଥିଲେ । ତାଙ୍କର ପ୍ରଥମ ଯୌବନରୁ ସେ ସାମାଜିକ ଉପନ୍ୟାସ, ଗଳ୍ପ ଓ କବିତା ପ୍ରକାଶ ଆରମ୍ଭ କଲେ । ତାଙ୍କର 'ନାନୀ ଭଉଣୀ', 'ସୁନାବୋହୂ' ଆଦି ମର୍ମସ୍ପର୍ଶୀ ଓ ଲୋକପ୍ରିୟ ହୋଇଥିଲେ । ପରେ ତାଙ୍କର ସତ୍‌ପ୍ରସଙ୍ଗ (ପ୍ରବନ୍ଧ) 'ଆଦର୍ଶ ବ୍ରାହ୍ମଣ' (ନାଟକ) ପ୍ରକାଶିତ ହୋଇଛି । ତାଙ୍କର 'ଚରିତ୍ର ଦର୍ପଣ', 'ଗୀତାର ଟୀକା' ଆଦି ବହୁ ଲେଖା ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଛି ।

ସ୍ୱପ୍ନେଶ୍ୱର ଦାଶ କବିଭୂଷଣ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ପର୍ଯ୍ୟନ୍ତ ସାହିତ୍ୟ ସାଧନା କରିଥିଲେ । ୧୮୭୫ ମସିହାରେ ତାଙ୍କର ପରଲୋକ ହେଲା । ସେ 'କାମାୟନୀ' ପ୍ରବଚନ ତରଙ୍ଗ 'କବିତା ଝଟିକା' ଆଦି କେତେ, ପୁସ୍ତକ ପ୍ରକାଶ କରିଛନ୍ତି ମାତ୍ର ତାଙ୍କ ରଚିତ 'ବୈଦକଳ୍ପଦ୍ରୁମ' ଆଦି ଅନେକ ଗ୍ରନ୍ଥ ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଛି । ବୃଦ୍ଧ କବିତର ଅନୁଚିନ୍ତାରେ ସେ ଲେଖିଛନ୍ତି -

ହେଲାଣିତ ଆସି ବୟସ ଏକାଶୀ
ବରଷ ତେବେ ବାସନା
ହେଉନାହିଁ କ୍ଷାନ୍ତ କରୁଛି ଅଶାନ୍ତ
ଭାରତୀର ଉପାସନା ।।
ପନ୍ଦର ବରଷ ବୟ ମୁଁ ଅଭ୍ୟାସ
ହୋଇ ଯାଇଛି ମୋହର
ଲେଖା ମାଦକତା ଏବେ ଜିବ କିତା
ହେଲାଣି ନିଶା ଜହର
ମୁଁ ଯେ ଛଅଶଠି ବର୍ଷ ଉଗ୍ରୁଠି
କଟୀଗ୍ରୀବା ହୋଇଯାଇ ।
ଗୋଟିଏ ଗାଡ଼ିର ମୋ ପାଣ୍ଡୁଲିପିର
ବୋଝ ଦେଲି ଆଉଜାଇ ।।

ଲେଖି ଲେଖାବଳି ବୃଥା ନଷ୍ଟକଲି
ଆୟୁ ବଳ କି ନିମନ୍ତେ ?
ବୁଝି ପରିଣାମ ନେବ କି ବିଶ୍ରାମ
ତେବେ ଦୁର୍ବାର ଲେଖନୀ ?
ଅନୁଚିନ୍ତା ବିନା କିଛି ନାହିଁ ସିନା
ବୋହିବାକୁ ଦୁଃଖ ଖଣି ।।

ସମ୍ବଲପୁରର ଅନ୍ୟାନ୍ୟ ସାହିତ୍ୟିକ ମାନଙ୍କ ମଧ୍ୟରୁ ଦୟାନିଧି ମିଶ୍ର ସୁପରିଚିତ । ତାଙ୍କର 'କନକ ଲତା', 'ସଂଯୁକ୍ତା' ଆଦି ବହୁ ଉପନ୍ୟାସ, ଗଳ୍ପ, କବିତା ତାଙ୍କର ଯୌବନ କାଳରେ ପ୍ରକାଶିତ ହୋଇଥିଲା । ସେ 'ମୁକୁର' ସମ୍ପାଦନା ସହିତ ସମ୍ପୃକ୍ତ ଥିଲେ ଓ ପରବର୍ତ୍ତୀ କାଳରେ ୧୯୨୮-୩୦ (?) ମସିହାରେ ସମ୍ବଲପୁରରୁ ପ୍ରକାଶିତ ନବଯୁଗର ସମ୍ପାଦକ ଥିଲେ । ବ୍ରଜମୋହନ ପଣ୍ଡାଙ୍କର 'ଯୌବନ ଗାଥା' ଓ ପାଣିମୋରାର ଦିବ୍ୟକିଶୋର ସାହୁଙ୍କର 'ଐର କାବ୍ୟ' ଓଡ଼ିଆ ସାହିତ୍ୟ ପ୍ରତି ମୂଲ୍ୟବାନ ଅବଦାନ ।

ଓଡ଼ିଆ ସାହିତ୍ୟ ପ୍ରତି ପରୀକ୍ଷିତ ଖଣ୍ଡୁଆଳ ଓ ନିତ୍ୟାନନ୍ଦ ବହିଦାରଙ୍କ ଅବଦାନ ମଧ୍ୟ ବିଶେଷ ଉଲ୍ଲେଖଯୋଗ୍ୟ । ଉଭୟେ ପୂର୍ବେ ସମ୍ବଲପୁର ସହରରେ ରହୁଥିଲେ ଓ ପରେ ବଲାଙ୍ଗୀରକୁ ଗଲେ । ଉଭୟ ଦୁଃସ୍ଥ ସାହିତ୍ୟିକ, କିଛିକାଳ ପୂର୍ବେ ଇହଧାମକୁ ବିଦାୟ ନେଇଛନ୍ତି ।

ସମ୍ବଲପୁରର ଶିବପ୍ରସାଦ ଦାଶ ଓ ବଲାଙ୍ଗୀରର ପୂର୍ଣ୍ଣଚନ୍ଦ୍ର ରଥଙ୍କର ଐତିହାସିକ ସାହିତ୍ୟ ପ୍ରତି ଅବଦାନ ଉଲ୍ଲେଖନୀୟ । ଶିବ ପ୍ରସାଦଙ୍କର 'ଗଙ୍ଗାଧର ପତ୍ରାବଳୀ' ଓ 'ଶ୍ରୀମଦ୍ ଭଗବଦ୍ ଗୀତା' ମୌଳିକ ରଚନା ନହେଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ଅତି ମୂଲ୍ୟବାନ ରତ୍ନ ।

ମୁଁ ଏ ପ୍ରବନ୍ଧରେ କୌଣସି ଜୀବିତ ସାହିତ୍ୟ ସାଧକଙ୍କର ନାମ ଉଲ୍ଲେଖ କରିନାହିଁ । କାରଣ ସେମାନଙ୍କ ବିଷୟରେ ଆଲୋଚନା କଲେ ଅନେକ ନାମ ନିଜର ଅଜ୍ଞାତସାରରେ ଛାଡ଼ିଯିବାର ଆଶଙ୍କା ରହିଛି । ତେଣୁ ସେ ବିଷୟରେ ଆଲୋଚନା ନିରାପଦ ନୁହେଁ ।

ମୋଟାମୋଟି କହିବାକୁ ଗଲେ, ପଶ୍ଚିମ ଓଡ଼ିଶାର ବହୁ ସାହିତ୍ୟ ସାଧକ ବଣର ମାଳତୀ ପରି ବଣରେ ଝରି ଯାଉଛନ୍ତି । ଆଜିକାଲି ବିଜ୍ଞାପନର ଯୁଗ, ପ୍ରତିଯୋଗିତାର ଯୁଗ । ସାହିତ୍ୟ ସାଧକ ଯଦି ଆତ୍ମବଡ଼ିମାକୁ ପ୍ରଚାର ନ କରନ୍ତି, ଓ ସ୍ୱସାହିତ୍ୟର ପ୍ରକାଶନ ପରେ ତହିଁର ପ୍ରଚାର ଓ ପ୍ରସାର ପାଇଁ ଗଳଦ୍‌ଘର୍ମ ନ ହୁଅନ୍ତି, ତେବେ ଆଜିର ଯୁଗରେ ସେ ପଛରେ ପଡ଼ିଯିବାର, ବିସ୍ମୃତ ହେବାର ଭୟ ରହିଛି । ବହୁ ପ୍ରକୃତ ପ୍ରତିଭାଶାଳୀ ଲେଖକଙ୍କର ବହୁ ମୂଲ୍ୟବାନ ଲେଖା ଅପ୍ରକାଶିତ

ହୋଇ ରହିଛି । କାରଣ ଏ ପାଠ୍ୟ ପୁସ୍ତକ ଯୁଗରେ, ଶସ୍ତା ସାହିତ୍ୟ ଯୁଗରେ ସାହିତ୍ୟର ମୂଲ୍ୟାୟନ ବ୍ୟବସାୟୀଙ୍କ ହାତରେ ରହୁଛି ।

ତଥାପି ସାହିତ୍ୟ ବଞ୍ଚିଛି । ଏହି ପରିପ୍ରେକ୍ଷୀରେ ପଶ୍ଚିମ ଓଡ଼ିଶାର ସାହିତ୍ୟ ସାଧକମନରେ ନୈରାଶ୍ୟର ଘନାନ୍ଧକାର ମଧ୍ୟରେ ସମୟ ସମୟରେ କ୍ଷୀଣ ଦ୍ୱୀପ ରଶ୍ମୀ ସାମାନ୍ୟ ସାନ୍ତ୍ୱନା ଦେଇଥାଏ ।

ପଶ୍ଚିମ ଓଡ଼ିଶାରେ ବହୁ ସାହିତ୍ୟିକ ଅଛନ୍ତି । ସେମାନେ ଅଜଣା ଅଶୁଣା । ସେମାନେ ସାଧକ ଅର୍ଥ ଆତ୍ମାଭିମାନ ବର୍ଜ୍ଜିତ । କେତେ ବର୍ଷ ପୂର୍ବେ ସମ୍ବଲପୁରରେ ଏକ ସାହିତ୍ୟିକ ସମ୍ମିଳନୀ ହୋଇଥିଲା । ସେଠାକୁ ବହୁ ସାହିତ୍ୟିକଙ୍କୁ ନିମନ୍ତ୍ରଣ କରାଯାଇଥିଲା । ନିମନ୍ତ୍ରିତ ସାହିତ୍ୟିକ ମାନଙ୍କ ମଧ୍ୟରୁ କେତେଜଣଙ୍କର ମୁଦ୍ରି କାବ୍ୟ ଓ ପୁସ୍ତକମାନ ପଢ଼ି ମୁଁ ବିସ୍ମୟାଭୂତ ହେଲି । ଉଦାହରଣ ସ୍ୱରୂପ ଯୁଖିପାଲିର ଶ୍ରୀବଂଶ ଦାଶ ଓ ବରଗଡର କପିଳେଶ୍ୱର ଶତପଥୀଙ୍କ ସହିତ ମୋର ପୂର୍ବ ବହୁ ବର୍ଷର ପରିଚୟ ଥିଲା । କିନ୍ତୁ ସେମାନଙ୍କର କାବ୍ୟ ପ୍ରତିଭାର ସହିତ ସେଦିନ ମୋର ସତେ ଯେପରି ପ୍ରଥମ ପରିଚୟ ହେଲା ।

ଓଡ଼ିଆରେ ପ୍ରବାଦ ଅଛି ବଣର ମାଳତୀ ବଣରେ ଫୁଟି ବଣରେ ଝରିପଡ଼େ । ସମୁଦ୍ର ଶଯ୍ୟାରେ କେତେ ଯେ ମୁକ୍ତା ଅଛି ତହିଁର୍ ଗ୍ରାହକ ନାହାନ୍ତି । ଆଜି ପଶ୍ଚିମ ଓଡ଼ିଶାର ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗୀର, କଳାହାଣ୍ଡୀ ଆଦି ଜିଲ୍ଲାମାନଙ୍କରେ ବହୁ ଲେଖକ ଲେଖିକା ସ୍ୱରସ୍ୱତୀଙ୍କର ଆରଧନା କରୁଛନ୍ତି । କିନ୍ତୁ ସେମାନଙ୍କର ଆତ୍ମ ପ୍ରଶଂସା ନାହିଁ, କିମ୍ବା ସେମାନଙ୍କର ଲେଖାର ବିଜ୍ଞାପନ ହେଉନାହିଁ ।



# ପଶ୍ଚିମ ଓଡ଼ିଶାର ଢ଼ଗ-ଢମାଳି : ଏକ ପରିକ୍ରମା

ଡ଼. ମନୀନ୍ଦ୍ର ମହାନ୍ତି

ମନ ରାଜ୍ୟରେ ଉଦ୍ରିକ ଭାବର ବାଙ୍‌ମୟ ପ୍ରକାଶ ହିଁ ଭାଷା । କିନ୍ତୁ ସ୍ୱ ଭାବନାକୁ ପ୍ରକାଶ କରିବା ପାଇଁ ଏହି ଭାଷା କେବଳ ଯଥେଷ୍ଟ ନୁହେଁ । ଏହି ଭାଷାକୁ ଯେଉଁ ରୀତି ବା ଶୃଙ୍ଖଳାକ୍ରମରେ ପ୍ରକାଶ କଲେ ଶ୍ରୋତା ମନରେ କଥନର ଅନ୍ତର୍ଗତ ଭାବନା ଅବିକଳ ଅଙ୍କିତ ହେବ ଏବଂ ଅନୁରୂପ ଭାବସ୍ରୋତ ସୃଷ୍ଟି କରିବାକୁ ସମର୍ଥ ହେବ, ତାହା ମଧ୍ୟ ଅତୀବ ଗୁରୁତ୍ୱପୂର୍ଣ୍ଣ । ପ୍ରାଞ୍ଜଳ ବା ବିଶ୍ଳେଷଣଧର୍ମୀ ଭାଷା କୌଣସି କଥାର ଗୁରୁତ୍ୱ ଓ ମହତ୍ୱକୁ ପରିସ୍ଫୁଟ କରିବା ପାଇଁ ସହାୟକ ହୋଇଥାଏ । ମାତ୍ର ପ୍ରାଞ୍ଜଳ ହୋଇ ନଥିଲେ ମଧ୍ୟ ଦେଖାଯାଏ ଯେ ଏକ ବିଶିଷ୍ଟ ରୀତି ବା ଶୃଙ୍ଖଳା କ୍ରମରେ ସନ୍ନିତ ତଥା ସଂକ୍ଷିପ୍ତ, ଏପରି ଶବ୍ଦ କେତେପୁଞ୍ଜା ରହିଛି, ଯାହାକି ଯୁଗ ଯୁଗ ଧରି ନିର୍ଦ୍ଦିଷ୍ଟ କଥକ ପ୍ରକାଶକ ନଥିଲେ ମଧ୍ୟ ଶ୍ରୋତା ମନରେ କଥାଟିର ଗୁରୁତ୍ୱ ଓ ମହତ୍ତ୍ୱକୁ ସ୍ପଷ୍ଟ ତଥା ରୋଚକ ଭାବେ ଅଙ୍କିତ କରିଦେଇପାରେ । ଅତଏବ ସ୍ୱଳ୍ପ ସମୟ ଓ ସଂକ୍ଷିପ୍ତ ଭାଷା ମଧ୍ୟରେ ଯଦି ସୂଚନାତ୍ମକ ଭାବରେ ଏହି କାର୍ଯ୍ୟ ସିଦ୍ଧ ହୋଇପାରୁ ଥିବାରୁ ସେହି ଧରଣର ସୁନିର୍ଦ୍ଦିଷ୍ଟ ସଂକ୍ଷିପ୍ତ ଶବ୍ଦ କେତେପୁଞ୍ଜା କୌଣସି ଜାତିର ଭାଷା ପ୍ରୟୋଗ କ୍ଷେତ୍ରରେ କଥନର ଅତୀବ ପ୍ରିୟ ହୋଇଉଠେ । ଏହି ସମସ୍ତ ଶବ୍ଦ କେତେବେଳେ ପଦ୍ୟ ତ କେତେବେଳେ ଗଦ୍ୟରେ ମଧ୍ୟ ପ୍ରକାଶ ପାଇଥାଏ । ଓଡ଼ିଆ ଲୋକ ସାହିତ୍ୟରେ ଏହାକୁ 'ଢଗ-ଢମାଳି'ର ନାମ ଦିଆଯାଇଛି ।

'ଢଗ-ଢମାଳି' ଏକ ଯୋଗଭୂତ ଶବ୍ଦ । ମୂଳ ଶବ୍ଦ ହେଲା - 'ଢଗ' । 'ଢଗ' ଶବ୍ଦଟି କେଉଁ ଶବ୍ଦରୁ ଆସିଛି ତାହା ଯଦିଓ ସୁନିର୍ଦ୍ଦିଷ୍ଟ ନୁହେଁ, ତଥାପି ଓଡ଼ିଆ ଲୋକସାହିତ୍ୟର ସଚେତନ ପାଠକ ଭାବରେ ବିଶ୍ଳେଷଣ କରାଯାଇପାରେ । ଅନୁମାନ ହୁଏ - 'ଢଙ୍ଗ' ଶବ୍ଦରୁ ଏହା ସୃଷ୍ଟି । ଲୋକଶବ୍ଦ 'ଢଙ୍ଗ'ର ଅର୍ଥ - 'ବ୍ୟବହାର', 'ରୀତି - ନୀତି', 'ଚାଲିଚଳଣ' । ଗୋଟିଏ ଦୃଷ୍ଟାନ୍ତ - "ତା'ର ଢଙ୍ଗ ଢାଙ୍ଗ କିଛି ଭଲନୁହେଁ" । ଏଇସବୁ ପଦ ଓ କଥାରେ ମଣିଷର ବ୍ୟବହାର, ରୀତିନୀତି ତଥା ଚାଲିଚଳଣ କିପରି କରିବାକୁ ହେବ, ତାହାର ପରାମର୍ଶ ପ୍ରଦାନ କରାଯାଇଥିବା ହୁଏତ ଏହାକୁ 'ଢଗ' (ଢଙ୍ଗ) କୁହାଯାଉଛି ।

'ଡଙ୍ଗ' ଶବ୍ଦଟିର ଅନ୍ୟଏକ ଅର୍ଥ ହେଲା - 'ଶୈଳୀ' (Style)। କଥୋପକଥନର ଏହା ଏକ ବିଶେଷ ଶୈଳୀ ହୋଇଥିବାରୁ ଏବଂ ଏହି ବିଶେଷ ଶୈଳୀ ଦ୍ୱାରା ଦୀର୍ଘକଥା ସ୍ୱଳ୍ପ ସମୟରେ ସଂକ୍ଷିପ୍ତ କଳେବରରେ ପ୍ରକାଶ କରାଯାଇ ଥିବାରୁ ଏପରି ଶୈଳୀର ନାମ 'ଡଗ' ହୋଇଛି।

ଆମ ଓଡ଼ିଆରେ ଏବେ କଥିତ ଶବ୍ଦ ରହିଛି - 'ଡେଗା'। ଏହି ଶବ୍ଦଟିର ଅର୍ଥ - ଆକାରରେ ବଡ଼। ଦୃଷ୍ଟାନ୍ତ - ଗଛ କୋଳିଗୁଡ଼ିକ ବେଶ୍ 'ଡେଗା ଡେଗା' ହୋଇଗଲାଣି ଅନୁମାନ କରାଯାଏ ଏହି 'ଡେଗା' ଶବ୍ଦରୁ 'ଡଗ' ଶବ୍ଦ ନିଷ୍ପନ୍ନ। କ୍ଷୁଦ୍ର ପଦ ବା ବାକ୍ୟାଂଶ ମଧ୍ୟରୁ ବିସ୍ତୃତ ଅର୍ଥ ପ୍ରକାଶ ପାଉଥିବାରୁ ହୁଏତ ଏହାହର ଏପରି ନାମକରଣ ହୋଇଛି। ଏହି ପ୍ରସଙ୍ଗରେ ଲକ୍ଷ୍ୟ କରିବାର କଥା - 'ଡଗ'କୁ ମଧ ଓଡ଼ିଶାର କେତେକ ଅଞ୍ଚଳରେ 'ଡେଗ' ବୋଲି କୁହାଯାଏ। ତେଣୁ 'ଡେଗା' ଶବ୍ଦରୁ 'ଡେଗ' ଶବ୍ଦଟି ନିଷ୍ପନ୍ନ ହେବା କଥାଟା ଅପ୍ରାସଙ୍ଗିକ ବୋଲି ମନେ ହେବନାହିଁ। ଓଡ଼ିଶାର ପଶ୍ଚିମ ଅଞ୍ଚଳରେ ଏହାକୁ 'ଡଁଗ୍' ବୋଲି ଉଚ୍ଚାରଣ କରିଥାନ୍ତି।

'ଡମାଳି' ଶବ୍ଦଟି 'ଡଗ' ଶବ୍ଦର ଲଥା। ମାତ୍ର ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ 'ଡମାଳି'କୁ 'ଡଗ' ଠାରୁ ଭିନ୍ନ ରୂପରେ ଉଲ୍ଲେଖ କରିଛନ୍ତି। 'ଡଗ' ଓ 'ଡମାଳି' ମଧ୍ୟରେ ପାର୍ଥକ୍ୟ ଦର୍ଶାଇବାକୁ ଯାଇ ସେ ତାଙ୍କର 'ଡଗ-ଡମାଳୀ - ବଚନ' ପୁସ୍ତକରେ ଲେଖିଛନ୍ତି - "ଦେଖାଯାଏ 'ଡଗ' ମାନଙ୍କରେ ଯତିପାତ ଓ ଉପଧା ମିଳିବାର ଚେଷ୍ଟା କରାଯାଇଥାଏ, ଏମନ୍ତ କି ଶେଷ ପଦର ଯତି ଓ ଉପଧା ମିଳାଇବା ନିମନ୍ତେ ଗୋଟିଏ ନିରର୍ଥକ ପ୍ରଥମପାଦ ମଧ 'ଡଗ'ରେ ବୋଲା ଯାଈଥାଏ। X X X 'ଡମାଳୀ'ରେ ଯତି ବା ଶେଷବର୍ଣ୍ଣ ମେଳ ନ ହୋଇ ବାକ୍ୟ ବ୍ୟବହାର କରାଯାଇଥାଏ" (୧)। କିନ୍ତୁ, ଏହା ଯଥାର୍ଥ ନୁହେଁ ବୋଲି ଲୋକ-ସାହିତ୍ୟର ଗବେଷକ ଡକ୍ଟର କୁଞ୍ଜବିହାରୀ ଦାଶ ମତ ପ୍ରଦାନ କରିଅଛନ୍ତି। ସେ ଲେଖିଛନ୍ତି - "କିନ୍ତୁ ଶ୍ରୀ ପ୍ରହରାଜ ଉଭୟ୍ ମଧ୍ୟରେ ତାରତମ୍ୟ ଦର୍ଶାଇଛନ୍ତି, ଏହା ଯଥାର୍ଥ ବୋଧ ହୁଏନାହିଁ। X X X ଅଧିକାଂଶ ଲୋକୋକ୍ତିରେ ଏକା ଶେଷ ଅକ୍ଷରର ମେଳ କାହିଁକି, ଉପଧାର ମେଳ ରହିଅଛି। ଏକା ଏହି ଲକ୍ଷଣ ଯୋଗୁଁ ଏହା ଡଗ ପଦବାଚ୍ୟ ହୋଇନପାରେ" (୨)। ଅତଏବ, କଥାର 'ଲଥା' ପରି 'ଡଗ' ଶବ୍ଦଟି ସହିତ 'ଡମାଳି' ଶବ୍ଦଟି ଆପେ ଆପେ ଲୋକ ସମାଜରେ ଉଚ୍ଚାରିତ ହୋଇଛି। 'କଥା' ର 'ଲଥା' ସୃଷ୍ଟି ହୋଇଥାଏ ମୂଳ ଶବ୍ଦଟିକୁ ଶ୍ରୋତାର ମନରାଜ୍ୟରେ ଅଧିକ ପ୍ରଭାବ ପକାଇ ପ୍ରତିଷ୍ଠିତ କରିବାକୁ। ଏହା ମୂଳବସ୍ତୁର ଏକ ପ୍ରତିଫଳନ ସ୍ୱରୂପ ବୋଲି କବି ରବୀନ୍ଦ୍ରନାଥ ଠାକୁର ତାଙ୍କର ଛେଲେ ଭୁଲାନୋର୍ ଛଡା

---

୧. ଡଗ-ଡମାଳୀ-ବଚନ -(୧ମ ଭାଗ, - ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ - ୧୯୨୬-ପୃ:୨୦-୨୧)

୨. ଓଡ଼ିଆ ଡଗ ଡମାଳି : ଏକ ଅଧ୍ୟୟନ -ଲୋକବାଣୀ ସଂଚୟନ -(୧ମ ଭାଗ)-୧୯୭୩ - ପୃ:୧୭।

ପୁସ୍ତକରେ ଉଲ୍ଲେଖ କରିଛନ୍ତି । ପ୍ରତିଫଳନ ଯେପରି ମୂଳବସ୍ତୁ ଠାରୁ ଅଭିନ୍ନ, ଅର୍ଥାତ୍ ମୂଳ ବସ୍ତୁକୁ ବାଦ୍ ଦେଲେ ତାହାର ସ୍ଥିତି ନାହିଁ, ଠିକ୍ ସେହିପରି 'ତମାଳି' ଶବ୍ଦଟି 'ତଗ' ଶବ୍ଦ ସହିତ ସଂଯୁକ୍ତ ।

'ପ୍ରବଚନ' ଶବ୍ଦଟି ଏହି ପ୍ରସଙ୍ଗରେ ସ୍ମରଣକୁ ଆସେ । ଏହାର ଅର୍ଥ 'ପ୍ରକୃଷ୍ଟ ବଚନ' ବା 'ପ୍ରଧାନ ବଚନ' । ଯେଉଁ ବଚନ ବା କଥା ମଣିଷକୁ ଉତ୍ତମ ପଥରେ ପଥିକ ସଜାଏ, ଯାହା ଉତ୍କୃଷ୍ଟ ତାହାକୁ ଚିହ୍ନାଇ ଦିଏ ତାହାହିଁ ହୁଏ ଶ୍ରେଷ୍ଠ ବା ପ୍ରଧାନ ବଚନ । ଅର୍ଥାତ୍, ଏଠାରେ କେବଳ ନୀତିପୂର୍ଣ୍ଣ ବଚନ ବା ପରାମର୍ଶ ଯୁକ୍ତ ବଚନ କଥା କୁହାଗଲା । ଅତଏବ ଏହାକୁ ମଧ୍ୟ ତଗର ପରିସର ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇପାରେ, କାରଣ 'ତଗ'ର ପରିସର ଅଧିକ ବ୍ୟାପକ ।

'ପ୍ରବାଦ' ଅର୍ଥ 'ପ୍ରକୃଷ୍ଟ ବାଦ' । ଅର୍ଥାତ୍ ଯାହା ପ୍ରକୃତ ପ୍ରଧାନ କଥା । ମାତ୍ର ଲୋକସାହିତ୍ୟରେ ଏହାର ଏକ ବିଶେଷ ଧରଣର ମୂଲ୍ୟ ରହିଛି । "ଏହାର ଅର୍ଥ ଜନଶ୍ରୁତି, କିମ୍ବଦନ୍ତୀ ବା କଥା ସମ୍ବଳିତ ଉକ୍ତି" (୩) ସାଧାରଣତଃ ଅତୀତର କୌଣସି ଏକ ଘଟଣା ସହିତ ଏହି କଥାଟି ସଂପୃକ୍ତଥାଏ । ଅତଏବ ଏଥିରେ ଏକ ଗଳ୍ପଭାଗ ? (Story Element) ସଂବନ୍ଧ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବେ ରହିଥାଏ ।

ଏହି 'ତଗ' ମେଲେଇବାକୁ ମଧ୍ୟ 'ଛଟା' ନାମ ଦିଆଯାଇଥାଏ । ବଙ୍ଗଳାରେ 'ଛଡ଼ା' ଶବ୍ଦରୁ ଏହା ଆନୀତ । ବଙ୍ଗଳାରେ ଛଡ଼ାର ଅର୍ଥ - 'ଗୀତ' (୪) ଓଡ଼ିଶାର କଳାହାଣ୍ଡି ଜିଲ୍ଲାରେ କଥପୋକଥନ ଭଙ୍ଗୀରେ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ପ୍ରଚଳିତ ଏକ ଗୀତ ରହିଅଛି । ପୁରୁଷ ଓ ସ୍ତ୍ରୀ ମଧ୍ୟରେ ଗୋଟିଏ ଗୋଟିଏ ପଦ ବୋଲିଥାନ୍ତି । ଏହାକୁ 'ଛଟକ' ବୋଲଯାଏ । ଏହି 'ଛଟାର' ବଙ୍ଗଳାର 'ଛଡ଼ା' (ଗୀତ)ର ସମଧର୍ମୀ । ଅର୍ଥାତ୍ 'ଛଡ଼ା' 'ଛଟକ' ରୂପରେ ମଧ୍ୟ (ଗୀତ) ଅର୍ଥକୁ ବୁଝାଉଥିବା ପଦାବଳୀକୁ ବୁଝାଇଥାଏ ।

'ଛଟା' କହିଲେ ସାଧାରଣତଃ ବ୍ୟଙ୍ଗ ବିଦ୍ରୁପପୂର୍ଣ୍ଣ ପଦ ବା ବାକ୍ୟାଂଶକୁ ବୁଝାଇଥାଏ । ଗାଁର ସ୍ତ୍ରୀଲୋକମାନେ ଛଟାମେଲାଇ ମୁହଁଛାଟି ଦେଇ ଟା ମୋଡିଦେଇ ମୁହଁ ବିକୃତ କରିଦେଇ ଅଥବା ପିଚ୍‌କରି ମେଞ୍ଚେ ଛେପ ପକାଇ ଦେଇ ସ୍ଥାନାନ୍ତର ହୁଅନ୍ତି । ସେମାନେ ଯେପରି କଥାର 'ଛାଟ' ମାରିଦିଅନ୍ତି । ଏହି କଥା ପଦରେ ଶ୍ରୋତାକୁ ବା ଉଦ୍ଦେଶ୍ୟରେ କୁହାଯାଇଥାଏ, ତାକୁ ଆଘାତ ଦିଆଯାଇଥାଏ ଅଥବା କଥା ପଦକ 'ଛାଟି' ଦେଇ ପଲ୍ଲୀନାରୀ ସ୍ଥାନାନ୍ତରିତ ହୋଇଥିବାରୁ

---

୩. ଓଡ଼ିଆ ତଗ ତମାଳି : ଏକ ଅଧ୍ୟୟନ -ଲୋକବାଣୀ ସଂଚୟନ -(୧ମ ଭାଗ)-୧୯୭୩ - ପୃ:୧୮ ।

୪. କବି ରବୀନ୍ଦ୍ରନାଥ ଠାକୁର ପିଲାଙ୍କର କେତୋଟି ଗୀତକୁ ସଂଗ୍ରହ କରିଛନ୍ତି - 'ଛେଲେଭୁଲାନର ଛଡା'ରେ । ସେ ନିଜେ ମଧ୍ୟ ପୁସ୍ତକ ରଚନା କରିଛନ୍ତି, ତାହାର ନାମ - 'ଛଡା' ।

ବୋଧହୁଏ ଏହାକୁ ଏପରି ନାମକରଣ କରାଯାଇଥିବାର ସାର୍ଥକତା ରହିଅଛି । ତେବେ ସେ ଯାହାହେଉ, ଏହି ବ୍ୟଙ୍ଗ ବିଦ୍ରୂପ ପୂର୍ଣ୍ଣ ପଦ ବା ବାକ୍ୟାଂଶ ଯେ 'ଡଗ' ର ବିସ୍ତୃତ ପରିସର ମଧ୍ୟରେ ଏକ ଅଂଶ, ଏହାକୁ ଅସ୍ୱୀକାର କରିହେବ ନାହିଁ ।

ଏହି ପରିପ୍ରେକ୍ଷୀରେ ରୂଢ଼ି ପ୍ରୟୋଗ (Idiom) କଥାଟି ମଧ୍ୟ ଆସିଥାଏ । 'ଡଗ-ଡମାଳି' ଓ ରୂଢ଼ି ପ୍ରୟୋଗ' ମଧ୍ୟରେ ପାର୍ଥକ୍ୟ ଯେ ରହିଛି ଏହା ନିଶ୍ଚିତ । 'ରୂଢ଼ି' ପରିସର 'ଡଗ' ଅପେକ୍ଷା କ୍ଷୁଦ୍ର । ପୁଣି ଏହା ବାକ୍ୟର ଏକ ଅଂଶ । ଏହାକୁ ସ୍ୱତନ୍ତ୍ର ରୂପରେ ବ୍ୟବହାର କରାଯାଇପାରେ ନାହିଁ । ମାତ୍ର ଡଗ-ଡମାଳି ସ୍ୱତନ୍ତ୍ର ଭାବରେ ପ୍ରୟୋଗ କରାଯାଇପାରେ । 'ରୂଢ଼ି' କେବଳ ଗଦ୍ୟାତ୍ମକ । ମାତ୍ର ଡଗ- ଡମାଳି ଉଭୟ ଗଦ୍ୟ ଓ ଗଦ୍ୟ ରୂପରେ ମିଳିଥାଏ । ଦୁହିଙ୍କର ଆକାରଗତ କ୍ଷୁଦ୍ରତା ରହିଛି । ତଥାପି 'ରୂଢ଼ି, ଅଧିକତର କ୍ଷୁଦ୍ର(୫) ।

ଇଂରାଜୀରେ ଏହି 'ଡଗ-ଡମାଳିକୁ' 'Proverb' ଅଥବା 'Adage' ବୋଲାଯାଏ । ଲାଟିନ୍ ଶବ୍ଦ 'Proverbium' ରୁ 'Proverb' ଏବଂ ଗ୍ରୀକ୍ ଶବ୍ଦ (Adagium) ରୁ (Adage) ଶବ୍ଦର ସୃଷ୍ଟି । ଉକ୍ତ ଦୁଇ ଉଦ୍ଧୃତ ଶବ୍ଦର ଅର୍ଥ ହେଲା-ଯାହା ଲୋକମାନଙ୍କ ମତରେ ବ୍ୟବହୃତ ବା ଯେଉଁ ନୀତିବାକ୍ୟ ଲୋକମାନଙ୍କ ମଧ୍ୟରେ ସୁପ୍ରଚଳିତ ହିନ୍ଦୀରେ ଏହାକୁ 'କହାବତେଁ' ବା 'ଲୋକୋକ୍ତି' ବୋଲାଯାଇଥାଏ ।

'ଡଗ-ଡମାଳି' ର ପ୍ରାଣ ସ୍ପନ୍ଦନ ହେଲା- ବ୍ୟବହାରିକ ମୂଲ୍ୟ । ଏହାର ସୃଷ୍ଟି କଥପୋକଥନ ମଧ୍ୟରେ ବ୍ୟବହାର ହେବାପାଇଁ । ଅତଏବ, ଏହିସବୁ 'ଡଗ-ଡମାଳି' 'ସଂଳାପ' ଶ୍ରେଣୀରେ ଗର୍ଭିତ । କେତେକ କ୍ଷେତ୍ରରେ ଏହା ଏକ 'ପ୍ରାସଙ୍ଗିକ ବିଷୟ' ପ୍ରସଙ୍ଗରେ ବ୍ୟବହୃତ ହୋଇଥାଏ । ଅର୍ଥାତ୍ କୌଣସି କଥା କହୁଁ କହୁଁ ପ୍ରସଙ୍ଗକ୍ରମେ କଥକ ଏହାର ସାହାଯ୍ୟ ନେଇଥାଏ । ଏହାର ସାହାଯ୍ୟ ନେବାର ଏକ ପ୍ରଧାନ ଲକ୍ଷ୍ୟଥାଏ-ସ୍ୱମତର ପ୍ରମାଣିକତା (Authenticity) ପାଇଁ ଏହି ଡଗ ଲୋକ ସମାଜରେ ସୁପ୍ରତିଷ୍ଠିତ ଲୋକପ୍ରିୟତା ଲାଭ କରିଥାଏ । ଅର୍ଥାତ୍ ଜନସାଧାରଣଙ୍କର ଏକ ସମର୍ଥନ ଏହାର ପଶ୍ଚାଦ୍ ଦେଶରେ ରହିଥାଏ । ତେଣୁ ନିଜ ମତକୁ ଅନ୍ୟମାନଙ୍କଠାରେ ସମର୍ଥନ କରାଇବା ପାଇଁ 'ଡଗ' ପରି ଏକ ମାଧ୍ୟମ କଥକକୁ ବେଶ୍ ସାହାଯ୍ୟ କରିଥାଏ, ଅତଏବ୍, ଏହାକୁ 'ଲୋକମତ' 'ଲୋକସିଦ୍ଧାନ୍ତ' ବା 'ଲୋକସତ୍ୟ' ନାମରେ ମଧ୍ୟରେ ନାମିତ କରାଯାଇପାରେ ।

ବାର୍କଲେରେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ପ୍ରଫେସର Archer tayeer ଏହି ପ୍ରବଚନ ପ୍ରସଙ୍ଗରେ ଜନୈକ ସୁପ୍ରତିଷ୍ଠିତ ସମୀକ୍ଷକ । ସେ B.J. Whiting ଙ୍କ ସହିତ ଏକମତ ହୋଇ

୫. ଲୋକ ସାହିତ୍ୟକ ଭୂମିକା - ଡ଼. କୃଷ୍ଣଦେବ ଉପାଧ୍ୟାୟ - ଲୋକଛୁଭାଷିତ - ପୃ. ୨୦୧

କହିଥିଲେ ଯେ- "ଏହାର ଯେତେ ସାଧାରଣ ସଂଜ୍ଞା ଦିଆଯିବ, ସେତେଭଲ" (୬) ଏହାର ଲକ୍ଷଣ ପ୍ରସଙ୍ଗରେ ସେମାନେ ମତ ଦିଅନ୍ତି- "ଏହା ଏକ ପରିସ୍ଥିତିର ସଂକ୍ଷିପ୍ତ ରୂପ । ଏଥିରେ ଏକ ସିଦ୍ଧାନ୍ତ ଅନୁପମ ଭାବରେ ପ୍ରଦାନ କରାଯାଇଥାଏ । କିମ୍ୱା ଏହାର ଲକ୍ଷଣରେ ଏହାର ମର୍ମ ରକ୍ଷିତ ହୋଇଥିବ" (୭) ଯେଉଁ ପ୍ରସଙ୍ଗରେ ଏହି ଢଗଟି ବୋଲାଯାଇଥିବ ଠିକ୍ ସେହିପରି ଏକ ପରିସ୍ଥିତି ଅତୀତରେ ଘଟିଥିଲା ଏବଂ ସେତେବେଳେ ତାହାର ପରିସ୍ଥିତି ଓ ସିଦ୍ଧାନ୍ତ କି ରୂପରେଖ ଗ୍ରହଣ କରିଥିଲା, ତାହାର ସୂଚନା ମିଳେ । ବର୍ତ୍ତମାନ ସେହିପରି ଏକ ପରିସ୍ଥିତି ସୃଷ୍ଟି ହୋଇଥିବାରୁ ଏପରି କୁହାଗଲା ।

ଦୃଷ୍ଟାନ୍ତ ସ୍ୱରୂପ-

"ଅଲେଖ୍ ଅବଧୁତ୍,<br>ମାରେ ଠେଁଗା ଭାଗେଭୁତ୍ ।(ସମ୍ବଲପୁର)

ଏହାର ଅର୍ଥହେଲା ମାଡକୁ ସମସ୍ତେ ଭୟ କରନ୍ତି । ଏପରିକି ଅଲେଖ୍ ଠାକୁର ମଧ୍ୟ ଭୟକରନ୍ତି । ମାଡକୁ ସମସ୍ତେ ଭୟ କରୁଥିବା ଏହିପରି ଏକ ପରିସ୍ଥିତି ଅତୀତରେ ଘଟିଥିଲା ଏବଂ ତାହାକୁ ଏଠାରେ କୁହାଯାଇ ସେହି କଥାକୁ ଗୁରୁତ୍ୱ ଦିଆଯାଉଛି । ଏହି ପ୍ରାମାଣିକତା (Authenticity) ଥିବାରୁ ସ୍ୱମତଟି ଯେ ଯଥାର୍ଥ ତାହା ପ୍ରମାଣିତ ହୋଇଅଛି । ଅର୍ଥାତ୍ ଅତୀତର ଏକ ପରିସ୍ଥିତିର ସଂକ୍ଷିପ୍ତରୂପେ ଏଥିରେ ମୂର୍ତ୍ତିମନ୍ତ ହୋଇଛି ବୋଲି ନିର୍ବିଘ୍ନରେ ପ୍ରକାଶ କରାଯାଇପାରେ ।

ଅତୀତରେ ଏକ ବିଶେଷ ପରିସ୍ଥିତିରେ ସଂକ୍ଷିପ୍ତ ରୂପ କେତୋଟି ଢଗ ଢମାଳିରେ ସ୍ଥାନ ପାଇଥାଏ । ଅର୍ଥାତ୍ ବର୍ତ୍ତମାନ ପାଇଁ ତାହା ଏକ ଅନୁଭୂତ । ତେଣୁ ଅତୀତର ସେହି ଏକ ବିଶେଷ ପରିସ୍ଥିତିର ପରିଣାମ କଅଣ ତାହା ଅନୁଭୂତ ହୋଇଥାଏ । ଅତଏବ, ଏହି କଥାଟି ସେହି ଅତୀତର ଅନୁଭୂତ ଜ୍ଞାନକୁ ବହନ କରିବାରେ ଭୁଲଥାଇ ନପାରେ । ତେଣୁ ଢଗ ଢମାଳି ହେଲା- ଅନୁଭୂତ ଜ୍ଞାନର ଏକ ବାଙ୍ମୟ ପ୍ରକାଶ ।

---

୬. "X X X as good as my formal definition" - American Folklore - Edited by - Tristran Caffin -III - The wisdom of many provarbs and proverbial Expressing - By - Ray B. Browne - P- 218.

୭. "X X X summarizes a situation and in its own inimitable way passes some sort of judgment on its characterizes its essence" - Ibid - P - 218.

ଦୃଷ୍ଟାନ୍ତ ସ୍ୱରୂପ-

"କୁସେର ଜଗାସି ଚିକର୍ ପୋ
କପା ଜଗାସି ବାପର ପୋ ।"

ଏହାର ଅର୍ଥ, ଆଖୁଚାଷୀଙ୍କୁ ବହୁତ କ୍ଷତି ସହିବାକୁ ହୁଏ । ମାତ୍ର କପାଚାଷୀର ସେତେ କ୍ଷତି ହୁଏ ନାହିଁ । କାରଣ କପାକୁ କେହି ମାଗନ୍ତି ନାହିଁ । କିନ୍ତୁ ଆଖୁ ଖଣ୍ଡେ ପାଇଁ କିଏ ନମାଗେ ?

କେତେକ ଡଗ ଡମାଳିରେ ସତର୍କ କରି ଦିଆଯାଇଥାଏ । ଏହି ପରାମର୍ଶ ପାଇ ଯଦି ସତର୍କତା ଅବଲମ୍ବନ କରା ନ ଯାଏ, ତେବେ ନିଶ୍ଚିତ ଭାବରେ ବିପଦ ପଡିବାର ଆଶଙ୍କା ରହିଛି । ଗୋଟିଏ ଉଦାହରଣ "ଚଡେନ୍ ମାଛର ମୁଡେ ଠେଁଗା" । ଅର୍ଥାତ୍ ଯିଏ ଆଗଭର ହେବ ବା ନେତୃତ୍ୱ ନେବ, ସେ ନିଶ୍ଚୟ ବିପଦରେ ପଡିବ ।

କେତେକ 'ଡଗ' ରହିଛି, ଯେଉଁଥିରେ ଏକ ତଥ୍ୟ (Information) ମିଳିଥାଏ ଯାହାକି ଲୋକମାନଙ୍କୁ ସାହାଯ୍ୟ କରିଥାଏ । ବଳଦ କିଣିବା ପାଇଁ ଯେତେଗୋଟି ତଥ୍ୟମୂଳକ ଡଗ ଏବଂ କୃଷିକାର୍ଯ୍ୟ ପାଇଁ ଯେଉଁ କେତୋଟି ଡଗ ରହିଛି, ସେଗୁଡିକ ଏହାର ଦୃଷ୍ଟାନ୍ତ-

"ଆଷାଢେ ରୂଏଁ ବଲ୍‌କେ
ଶ୍ରାବନେ ରୂଏଁ ଫଲ୍‌କେ
ଭାଦ୍ରବେ ରୂଏଁ ତୁଷ୍‌କେ
ଆଶ୍ୱିନେ ରୂଏଁ କସ୍‌କେ ।" (ସମ୍ବଲପୁର)

ଅର୍ଥାତ୍ ଆଷାଢରେ ରୋଇଲେ ଧାନର ବଳବଢେ । ରୋଗ ତା'ର କ୍ଷତି କରିପାରେ ନାହିଁ । ଶ୍ରାବଣରେ ରୋଇଲେ ଭଲଫଳ ଓ ଭାଦ୍ରବରେ ରୋଇଲେ ଚଷୁ ବଢେ । ଆଶ୍ୱିନରେ ରୋଇବା ନିଷ୍ଫଳ ହୁଏ ।

କେତେକ 'ଡଗ'ରେ ଦୃଷ୍ଟାନ୍ତ ପ୍ରଦାନ କରାଯାଇ ଡଗଟିକୁ ଶ୍ରୋତାକୁ ବୁଝାଇ ଦିଆଯାଇଥାଏ । ଅର୍ଥାତ୍ ବ୍ୟାଖ୍ୟାତ୍ମକ ଶୈଳୀ ଏଥିରେ ଅବଲମ୍ବନ ହୋଇଥାଏ । ଗୋଟିଏ କଥାକୁ ହୃଦୟଙ୍ଗମ କରାଇବା ପାଇଁ ଏଥିରେ ଯେ ଉଦାହରଣ ପ୍ରଦାନ କରାଯାଉଥାଏ, ତାହା କେତେକ କ୍ଷେତ୍ରରେ ବେଶ୍ କାବ୍ୟାତ୍ମକ ହୋଇଛି । ଯଥା-

"ଜାଲ୍ ମଲିଆ କାଏଁ କୁଟୁମ୍ ପୁଷେ
କଲାମେଘେ କାଏଁ ପାଏନ୍ ବରଷେ ।"

ଅର୍ଥାତ୍ ବାଚାଲ ପ୍ରକୃତିର ଲୋକ ଦାୟିତ୍ୱ ଶୂନ୍ୟ ହୋଇଥାଏ । ତେଣୁ ସେ ପରିବାରର ଭରଣପୋଷଣ କରିବାର ଦାୟିତ୍ୱ ବହନ କରିପାରେ ନାହିଁ । ଯେପରି କଳାହାଣ୍ଡିଆ ମେଘ ଘୋଟି ଆସିଲେ ମଧ ଟୋପାଏ ବରଷେ ନାହିଁ ।

ଏପରି କେତେକ ତଗ ଅଛି, ଯାହାର ଆକ୍ଷରିକ ଅର୍ଥ କିଛି ଗୋଟାଏ ହେଲେ ମଧ ପ୍ରତିପାଦିତ ଅର୍ଥ ଅନ୍ୟକିଛି । ଅର୍ଥାତ୍, ବାଚ୍ୟାର୍ଥ ଏଠାରେ ଗ୍ରହଣୀୟ ନୁହେଁ, ଏଠାରେ ଯେଉଁ ଅର୍ଥ ବ୍ୟଞ୍ଜିତ ହେଉଅଛି, ତାହାହିଁ ଏଠାରେ ପ୍ରକୃତ ଅର୍ଥ । ଯଥା-

"ଭୂରସି-ମୁଡ଼ି କୁଆଘର।
ପାଏନ୍ ପାଏଲେଁ ଟରାବୁରା ।"

ଏହାର ବାଚ୍ୟାର୍ଥ ହେଲା- ଯେଉଁ ନାରୀ କେଶର ଯତ୍ନ ନ ନିଏ ତେବେ ତାହାର ଅପରିଷ୍କାର ହେତୁ ଉକୁଣୀ ବସାବାନ୍ଧେ । କୁଆ ଯଥା ସମୟରେ ତା'ର ବସା ତିଆରି କରି ନଥିବାରୁ ବର୍ଷା ସମୟରେ ସେ ଅପଦସ୍ତ ହୁଏ । ମାତ୍ର ତାହାର ବ୍ୟଙ୍ଗାତ୍ମକ ଅର୍ଥ ହେଲା-ଯେ କୌଣସି ଜିନିଷର ଉପଯୁକ୍ତ ରକ୍ଷଣାବେକ୍ଷଣ ପାଇଁ ଯତ୍ନ ଆବଶ୍ୟକ । ସେହିପରି ଯଥେଷ୍ଟ ସମୟ ପୂର୍ବରୁ ସତର୍କ ଥିଲେ ଆଉ ବିପଦର ଆଶଙ୍କା ରହେ ନାହିଁ । ଏହିପରି କଥା ପ୍ରସଙ୍ଗରେ ଏହି ତଗଟି ଦ୍ୱାରା କଥକ ସ୍ୱମତର ଗୁରୁତ୍ୱକୁ ଦ୍ୱିଗୁଣିତ କରିଥାଏ । ସ୍ଥୂଳତଃ "ଏଥିରୁ ଲୋକସାଧାରଣଙ୍କ ଚିନ୍ତା, ଚରିତ୍ର, ପ୍ରତ୍ୟୁତ୍ପନ୍ନ ମତିତ୍ୱ, ଜ୍ଞାନ ବୁଦ୍ଧି, ଆଚାର ବିଚାର, ସୌନ୍ଦର୍ଯ୍ୟ ସାଧନା, ବ୍ୟଙ୍ଗ ବିଳାସ, ରୁଚି ଓ ଶୁଚିତାର ଖାଣ୍ଟି ପରିଚୟ ମିଳେ ।"(୮)

୧୮୭୬ ମସିହାରେ ଓଡିଶାର ତତ୍କାଳୀନ କମିଶନର ରେଭେନ୍‌ସା ସାହେବଙ୍କ ଆନୁକୂଲ୍ୟରେ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ କେତେକ ତଗ-ତମାଳିର ସଂଗ୍ରହ ପ୍ରଥମେ ଆରମ୍ଭ କରିଥିବାର ପ୍ରମାଣ ମିଳେ ଏବଂ ଏହାର ଦ୍ୱିତୀୟ ସଂସ୍କରଣ ୧୯୦୮ ମସିହାରେ ପ୍ରକାଶ ପାଇଥିଲା । ଏହାପରେ ୧୮୯୩ ମସିହାରେ ଶ୍ରୀ ଗୋବିନ୍ଦ ରଥ 'ତଗ ତମାଳି'(୧ମ ଭାଗ) ନାମରେ ଏକ ପୁସ୍ତକ ପ୍ରକାଶ କରିଥିଲେ । ଶ୍ରୀ ଜଗନ୍ନାଥ ସିଂହ ମଧ 'ବୃହତ୍ ତଗ ରତ୍ନମାଳା' ବା 'ତଗ ମାଳିକା' ନାମରେ ପୁସ୍ତକ ପ୍ରକାଶ କରିଥିଲେ । ୧୯୦୩ ମସିହାରେ ଶ୍ରୀ ନୀଳମଣି ବିଦ୍ୟାରତ୍ନ ମଧ କେତେକ ତଗ ସଂଗ୍ରହ କରି ପ୍ରକାଶ କରିଥିଲେ । ଶେଖ ଅବଦୁଲ, ମଜିଦ୍ 'ତଗ ମାଳିକା', ତଗ ରତ୍ନାକର', ଚନ୍ଦ୍ରଶେଖର ବାହିନୀପତି 'ପରିହାସ ଦର୍ପଣ' ନାମରେ ତଗ ସଂଗ୍ରହ କରି ପୁସ୍ତକମାନ ପ୍ରକାଶ କରିଥିଲେ । ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତଙ୍କ 'ତଗ ମାଳିକା' ମଧ ଏକ

୮. ଓଡ଼ିଆ ଲୋକଗୀତ ଓ କାହାଣୀ - ଡ଼. କୁଞ୍ଜବିହାରୀ ଦାଶ - ପୃ : ୨୫୩

ଦୃଷ୍ଟାନ୍ତଯୋଗ୍ୟ ପୁସ୍ତକ । ୧୯୨୩ ମସିହାରେ ଶ୍ରୀ ଆପନ୍ନା ପଣ୍ଡା 'ଡଗ ମାଳିକା ସଂଗ୍ରହ ଓ ତତ୍ତ୍ୱବୋଧିନୀ' ଶୀର୍ଷକରେ ଡଗଗୁଡ଼ିକୁ ସଂଗ୍ରହ କରିଥିଲେ । ପଣ୍ଡିତ ଶ୍ରୀ ଭଗବାନ ହୋତାଙ୍କ ୧୯୧୪ ମସିହାରେ 'ଓଡ଼ିଆ ପ୍ରବାଦମାଳା', ସେହିବର୍ଷ ଶ୍ରୀ ରାଘବାନନ୍ଦ ଦାସଙ୍କ 'କୃଷିବଚନ ସଂଗ୍ରହ' (୭ଟି ଭାଗ-କୃଷିଜୀବିକା ଉପାୟ, କାଳକ ଓ ଫଳର ଗଣନା, କୃଷିର ସମୟ, ବଳଦ ଓ ଯନ୍ତ୍ରର ବିବରଣ, ବେଉଷଣ ବିଧି, ବର୍ଷଣ, ଫସଲ) । ୧୯୨୪ ମସିହାରେ ଶ୍ରୀ ନିତ୍ୟାନନ୍ଦ ସାହୁ 'ଡଗ-ଡମାଳି' ମଧ୍ୟ ପ୍ରକାଶ କରିଥିବାର ସମ୍ବାଦ ମିଳେ । ୧୯୨୬ ମସିହାରେ ଶ୍ରୀମତୀ ପୀତାମ୍ବରୀ ଦେବୀ 'ଡଗ-ଡମାଳି-ବଚନ' ନାମରେ ଦୁଇଗୋଟି ଭାଗ ପ୍ରକାଶ କରିଥିଲେ । ୧୯୫୬ରେ ସ୍ୱପ୍ନେଶ୍ୱର କବିଭୂଷଣଙ୍କ 'ପ୍ରବଚନ ତରଂଗ' ପୁସ୍ତକର ପ୍ରକାଶନ ଏ ଦିଗରେ ଅନ୍ୟ ଏକ ସଫଳ ପଦକ୍ଷେପ । ୧୯୬୧ ମସିହାରେ ଅଧ୍ୟାପକ ଶ୍ରୀ ସର୍ବେଶ୍ୱର ଦାଶ 'ପ୍ରବଚନ ଓ ପ୍ରବାଦ ସଂଗ୍ରହ' ନାମରେ ଏକ ପୁସ୍ତକ ପ୍ରକାଶ କରିଛନ୍ତି । ୧୯୬୩ ମସିହାରେ ଶ୍ରୀ ବଟକୃଷ୍ଣ ପ୍ରହରାଜଙ୍କ 'ଓଡ଼ିଆ ପ୍ରହେଳିକା ସଂଗ୍ରହ, ମଧ୍ୟ ଏକ ଉଦାହରଣ ଯୋଗ୍ୟ ଡଗଡମାଳି ସଂଗ୍ରହ ପୁସ୍ତକ । ଓଡ଼ିଆ ଲୋକ ସାହିତ୍ୟର ଗବେଷକ ଡ: କୁଞ୍ଜବିହାରୀ ଦାଶ ଟାଙ୍କ ' ପଲ୍ଲୀଗୀତ ସଂଚୟନ' ର ୩ ଗୋଟି ଭାଗରେ (୧ମ ଭାଗ-୧୯୫୪, ୨ୟ ଭାଗ-୧୯୫୯, ୩ୟ ଭାଗ-୧୯୭୪), ଲୋକ ସାହିତ୍ୟର ଅନ୍ୟତମ ସଂକଳକ ଶ୍ରୀ ଚକ୍ରଧର ମହାପାତ୍ର 'ଉତ୍କଳ ଗାଉଁଲି ଗୀତ' ରେ ୧୯୫୯ ରେ କେତୋଟି ପ୍ରବଚନକୁ ସ୍ଥାନ ଦେଇଛନ୍ତି । ୧୯୬୯ ମସିହାରେ ପଣ୍ଡିତ ନାରାୟଣ ମହାପାତ୍ର ଓ ଅଧ୍ୟାପକ ଶ୍ରୀଧର ଦାସଙ୍କ ଦ୍ୱୈତ ଉଦ୍ୟମରେ ଯେଉଁ 'ବିବିଧ କୋପ' ସଂକଳନ କରିଛନ୍ତି, ସେଥିରେ କେତୋଟି ଡଗ ମଧ୍ୟ ପତ୍ରସ୍ଥ ହୋଇଛି । ସେହିପରି ୧୯୫୯ ରେ ଶ୍ରୀ ରଘୁନାଥ ମଧ୍ୟ 'ଆମ ଭାଷା ବିଭବ' ପୁସ୍ତକରେ ଡଗମାଳିମାନ ସଂଗ୍ରହରେ ପ୍ରଦାନ କରିଅଛନ୍ତି । ଓଡ଼ିଆ ଲୋକ ସାହିତ୍ୟର ଅନ୍ୟତମ ଉତ୍ସାହଦାତା ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର ଏହିସବୁ ଡଗ ଡମାଳିର ଏକ ଅଭିଧାନ ପ୍ରଣୟନ ଦିଗରେ ମନୋନିବେଶ କରିଛନ୍ତି । ଓଡ଼ିଆ ଲୋକ ସାହିତ୍ୟ ଏଥିରେ ସନ୍ଦେହ ନାହିଁ ।

ଓଡ଼ିଆ ଡଗ ଡମାଳି ସଂଗୃହୀତ ହୋଇ ପ୍ରଥମେ ପୁସ୍ତକ ଆକାରରେ ପ୍ରକାଶ ଲାଭକଲା-୧୮୭୬ ମସିହାରେ । ଆଉ ତାହାର ଠିକ୍ ଏକଶତ ବର୍ଷ ପରେ ଅର୍ଥାତ୍ ୧୯୭୬ ମସିହାରେ (ଏପ୍ରିଲ୍ ମାସ ୧୦ ତାରିଖ) ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପଶ୍ଚିମ ଓଡ଼ିଶାର ଯେଉଁ ବିଶେଷ ଧରଣର ଡଗ-ଡମାଳି ପ୍ରଚଳିତ ତାହାକୁ ସଂଗ୍ରହ କରିବା ପାଇଁ ଏକ ଗବେଷଣାତ୍ମକ ଯୋଜନା ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନଙ୍କ ସ୍ୱତନ୍ତ୍ର ଅର୍ଥ ମଞ୍ଜୁରୀ ପାଇଁ କାର୍ଯ୍ୟ ଆରମ୍ଭ କରାଯାଇଛି । ଅବଶ୍ୟ, ଏହା ପୂର୍ବରୁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ମାସିକ ଓଡ଼ିଆ ପତ୍ରିକା 'ସପ୍ତର୍ଷି'

ର କେତୋଟି ସଂଖ୍ୟାରେ ମଧ୍ୟ କେତେକ ସଂଗୃହୀତ ପ୍ରବାଦ ପ୍ରବଚନ ପ୍ରକାଶ ପାଇଥିଲା ।

ଓଡିଶାର ପଶ୍ଚିମାଞ୍ଚଳରେ ଯେଉଁ ଧରଣର ଢଗ ଢମାଳି ମାନ ଲୋକମୁଖରେ ପ୍ରଚଳିତ ହୋଇଥିବାର ଲକ୍ଷ୍ୟ କରାଯାଏ, ସେଥିମଧ୍ୟରେ ଯେଉଁ ବୈଚିତ୍ର୍ୟ ଓ ବିବିଧତା ମାନ ରହିଅଛି, ସେହିସବୁ ଉପାଦାନ ପ୍ରତି ଦୃଷ୍ଟି ଆକର୍ଷଣ କରିବା ପାଇଁ ଏହି ସବୁକୁ ବିଭିନ୍ନ ବିଭାଗରେ ବିଭକ୍ତ କରି ପ୍ରତ୍ୟେକ ବିଭାଗର ବିଶ୍ଳେଷଣ କରାଯିବା ଆବଶ୍ୟକ । ଏହି ପ୍ରକାର ଭେଦକୁ ମୁଖ୍ୟତଃ ଚାରିଗୋଟି ଦୃଷ୍ଟିକୋଣରୁ ବିଚାର କରାଯାଇପାରେ ।

ଏହି ଅଞ୍ଚଳରୁ ଯେତେଗୁଡିଏ ଢଗ ଢମାଳି ସଂଗୃହୀତ ହୋଇଅଛି, ସେସବୁ କେତେକ ପଦାବଦ୍ଧ ଓ ଅନ୍ୟ କେତେକ ଗଦ୍ୟାକାର ।

ପଦ୍ୟରୂପ- ଅନ୍ତ୍ୟବର୍ଣ୍ଣର କେବଳ ମିଳନ ନୁହେଁ, ଅକ୍ଷର ସଂଖ୍ୟା ସମାନଥିବା ପଦାବଦ୍ଧ ଢଗ ଢମାଳି ଲୋକ ମୁଖରେ ପ୍ରଚଳିତ-

"ଉପରେଁ ଉପରେଁ ଫୁଲ୍‌ଗୁଭା,
ଭିତ୍‌ରେ ଭିତ୍‌ରେ ରୁବ୍‌କୁବା ।"

ଅର୍ଥ- ବାହାରେ ମଧୁର ଭାଷା କରିବା ଏବଂ ଭିତରେ ଭିତରେ ଅନିଷ୍ଟ କରିବା ।

କେତେକ ଢଗରେ ଅନ୍ତବର୍ଣ୍ଣର ମିଳନ ହୋଇଥିଲେ ମଧ୍ୟ ଅକ୍ଷର ସଂଖ୍ୟା ସମାନ ନଥାଏ । ଯଥା-

"ମାର୍ ଦମ୍‌କେ,
କାହାକେ କହଲେ କିଏ ଟମ୍‌କେ ।"

ଗଦ୍ୟରୂପ -

"ଠାନ୍ ଜାନି ଧାନ୍ ପାଚ୍‌ସି ।"

ଅର୍ଥ- ସୁବିଧା ସୁଯୋଗ ଥିଲେ। କାର୍ଯ୍ୟ ସଫଳ ହେବା ।

ନୀତିମୂଳକ ଢଗ- ନୀତିପୂର୍ଣ୍ଣ କଥା ପ୍ରାୟ ପ୍ରତ୍ୟେକ ଢଗର ମର୍ମକଥା । ଏହି ନୀତି ପାଳନ କଲେ ପରିବାର ମଧ୍ୟରେ ତଥା ସମାଜରେ କିପରି ବିପଦଶୂନ୍ୟ ଭାବରେ ସତର୍କତାର ସହିତ ବ୍ୟକ୍ତି ଚଳିବ, ତାହାର ସୂଚନା ଏଥିରୁ ମିଳିଥାଏ ।

"ଗାଡ୍ ଭାଲୁକେ ବିଶ୍ୱାସ ନାଇଁ,
ଗୁମୁନ୍ଦୁ ମୁହୁଁକେ ବିଶ୍ୱାସ ନାଇଁ ।"

ଅର୍ଥାତ୍- ଗାତ ଭିତରେ ଥିବା ଭାଲୁକୁ ଯେପରି ବିଶ୍ୱାସ କରିହେବ ନାହିଁ, ସେହିପରି ଯିଏ ପୋଟାମୁହାଁ (କଥା ନ କହି ଯିଏ ମୁହଁ ତଳକୁ କରିଦିଏ) ତାକୁ ବିଶ୍ୱାସ କରିବା ଉଚିତ୍ ନୁହେଁ)

ବ୍ୟଙ୍ଗ ବିଦ୍ରୁପ ମଧ୍ୟରେ ନୀତିଶିକ୍ଷା ଦେବା ମଧ୍ୟ ଏହାର ଏକ ବିଶିଷ୍ଟ ଲକ୍ଷଣ। ବ୍ୟକ୍ତିର ବଡିମାପ୍ରତି ବ୍ୟଙ୍ଗ କରି ତାହାର ବିଲୋପ ସାଧନ ପାଇଁ ଢଗମାନ ମଧ୍ୟ ରହିଛି। ଉଦାହରଣଟିଏ-

" ଘରେଁ ନେଇଁନ ଟିରନ୍ ତସୁ,
ଗିଜ୍ ବଲୁଛେ ମେଚେଁ ବସୁ।"

ଅର୍ଥାତ- ଚନ୍ଦ୍ରକୁ ହାତ ବଢାଇବା।

ତଥ୍ୟ ମୂଳକ ଢଗ- ଢଗ-ଢମାଳି ବିଭିନ୍ନ ତଥ୍ୟ ଶୁଣାଇଥାଏ।

"ଶଏ କାପେଁ ବତର୍ ମୂଲ୍।"

ଭଲ ଭାବରେ କର୍ଷଣ କରିଥିଲେ ମଧ୍ୟ ଯଦି ଅନୁକୂଳ ପାଗ ନହୁଏ, ତେବେ ବିହନରେ ଭଲ ଅଙ୍କୁର ଉଠିପାରେ ନାହିଁ। ତେଣୁ ଅନୁକୂଳ ପାଗହିଁ ମୁଖ୍ୟ। ବଳଦ କ୍ରୟ କରିବା ଓ କୃଷି ସଂପର୍କୀୟ ଢଗଗୁଡିକ ଏହି ଶ୍ରେଣୀୟ।

ସାଳଂକାର ଢଗ- କେତେକ ଢଗ ଢମାଳି ଅଳଙ୍କାରରେ ଭୂଷିତ। ବିଶେଷତଃ, ଉପମାଆଦି ଦ୍ୱାରା କଥାଟିକୁ ଦୃଷ୍ଟାନ୍ତ ଦିଆଯାଇ ବୁଝାଇ ଦିଆଯାଏ, ଯଥା-

"ହାଁଏଡ୍ ଭାଙ୍ଗଲେ ଖପରା,
ମନ୍ ଭାଙ୍ଗଲେ ଚୁପୁରା।"

ଏହିପରି ଢଗ-ଢମାଳିରେ କେବଳ କଥ୍ୟ ବସ୍ତୁଟି ସିଧାସଳଖ ଭାବରେ ରହିଥାଏ। ତେଣୁ ହୃଦୟଙ୍ଗମ କରିବାକୁ ବିଶେଷ ଉପୁଜେନାହିଁ।

ଏପରି କେତେକ ଢଗ ରହିଛି, ଯେଉଁଥିରେ ପ୍ରାସଙ୍ଗିକ ବିଷୟ ଭାବରେ ଏକ ଗଳ୍ପ ବା କାହାଣୀ ରହିଥାଏ। ଏହିପରି ଢଗ ଢମାଳି ଗୁଡିକ ଶ୍ରୋତା ପକ୍ଷରେ ବେଶ୍ ରୋଚକ ହୋଇଥାଏ। ଶିଶୁମାନଙ୍କ ପକ୍ଷରେ ଏହିପରି ଢଗମାନ ଖୁବ୍ ଆଦର ଲାଭ କରିଥାଏ। ସେଥିପାଇଁ Children's Encyuopedia ର ସଂକଳନ Arthur Mee ଶିଶୁଗଳ୍ପ ସ୍ତରରେ Proverb Stories' କେତେଗୁଡିଏ ଗଳ୍ପ ସଂଗ୍ରହ କମି ପ୍ରଦାନ କରିଅଛନ୍ତି। ଏହି ସ୍ତମ୍ଭର ପ୍ରାରମ୍ଭରେ ସେ ସଂକ୍ଷିପ୍ତ ଟିପ୍ପଣୀରେ ଉଲ୍ଲେଖ କରିଛନ୍ତି- "Every nation has its proverbs-short. pithy saying in which are contained much wisdom-the stories on this page

illustrate same of these proverbs." (୯) ଏହିସବୁ ଡଗ-ଡମାଳି ମଧ୍ୟରେ କୋମଳମତି ଶିଶୁମାନଙ୍କର ଶିଶୁ-ସାହିତ୍ୟିକ ଉପାଦାନ ଗଳ୍ପାଂଶ ଓ ସାଙ୍ଗୀତିକତା ଦ୍ୱାରା କିପରି ସେମାନଙ୍କର ମାନସିକ ବିକାଶ ଘଟୁଛି, ତାହା ଶିଶୁ-ସାହିତ୍ୟର ଗବେଷକମାନେ ବିଶ୍ଳେଷଣ କରି ସ୍ୱମତ ପ୍ରଦାନ କରିଛନ୍ତି (୧୦)। ଗଳ୍ପାଂଶଯୁକ୍ତ ଡଗର ଦୃଷ୍ଟାନ୍ତ-

"ଆରନାଇଁ ଠାର୍‌ନାଇଁ
କେଉଁ ଜାଏଡର ବାସା,
ଶୁନ୍ ଶୁନ୍ ପଣ୍ଡିତ୍ ଭାଇ,
ବାର୍‌କେ ନେଲାମୂଷା"(କୋରାପୁଟ)

ଲୋକସାହିତ୍ୟର କେତେକ ସମୀକ୍ଷକ ଡଗ-ଡମାଳିକୁ ଦୁଇଗୋଟି ପର୍ଯ୍ୟାୟରେ ବିଭକ୍ତ କରିଥାଆନ୍ତି। ଯଥା-(କ) ସାହିତ୍ୟିକ (Literary) ଏବଂ (ଖ) ଅସାହିତ୍ୟିକ ବା ପାରଂପରିକ (Non-Letarary or traditional) (୧୧) ପ୍ରଥମ ଶ୍ରେଣୀୟ ଡଗ ଡମାଳି ଗୁଡିକ ବୁଦ୍ଧିଦ୍ୟୋତକ, ଶୁଦ୍ଧ, ଏବଂ ଅଶ୍ଳୀଳ ନୁହେଁ। ଅପର ପକ୍ଷରେ ଦ୍ୱିତୀୟ ଶ୍ରେଣୀୟ ଡଗଡମାଳିଗୁଡିକ ଏହାର ବିପରୀତ ଲକ୍ଷଣଯୁକ୍ତ।

ଉଭୟ ଗଦ୍ୟ ଓ ପଦ୍ୟ ରୂପରେ ପଶ୍ଚିମ ଓଡ଼ିଶାର ଡଗ-ଡମାଳି ସଂଗ୍ରହରେ ପରିଲକ୍ଷିତ ହୁଏ। କେତେକ ଡଗ ଗଦ୍ୟ ରୂପରେ ଲୋକମୁଖରେ ପ୍ରଚଳିତ ହେଲେ ମଧ୍ୟ ଲୋକେ ଏହାକୁ ସ୍ୱତନ୍ତ୍ର ଛନ୍ଦରେ ପ୍ରକାଶ କରିଥାନ୍ତି। ସେମାନଙ୍କର ଉଚ୍ଚାରଣ ଯେଉଁ ଏକ ପ୍ରବାହମାନତା ରହିଛି, ତାହାହିଁ ତାହାର ଛାନ୍ଦସିକ ସୁଷମାକୁ ପରିବର୍ଦ୍ଧିତ କରେ।

"କଏଁରି କଁଟିଆର ମହାନ୍ ବିଷ୍"।

ଅର୍ଥାତ୍ - ଛୋଟ ଜୀବଟିଏ ହେଲେ ମଧ୍ୟ ତାହାର ଶକ୍ତି କିଛି କମ୍ ନୁହେଁ।

ଗଦ୍ୟ ରୂପରେ ଯେତେସବୁ ଡଗ-ଡମାଳି ମିଳିଛି ସେଗୁଡ଼ିକୁ ବିଭିନ୍ନ ଚରଣରେ ଲକ୍ଷ୍ୟ କରାଯାଏ।

---

୯. Vol-one- The Educational Book Company Limited - London - P. 289.

୧୦.ବିଶେଷ ଦ୍ରଷ୍ଟବ୍ୟ - ଏହି ଲେଖକର ଅନ୍ୟଏକ ପ୍ରବନ୍ଧ - ପ୍ରବଚନ : ଓଡ଼ିଆ ମୌଖିକ ଶିଶୁ ସାହିତ୍ୟର ବାଇଶ୍ ପାହାଚ - ସପ୍ତର୍ଷି।

୧୧. American Folklore - P. 219.

ଦୁଇଚରଣ - "ଅର୍‌ସଲାକେ ଅର୍‌ସଲୀ,
ଦଇବ ଦେଇଛେ ଭେଟ୍‌କରି ।"

ସ୍ତ୍ରୀ ଓ ପୁରୁଷ ଉଭୟଙ୍କ ଅଯୋଗ୍ୟତାକୁ ଲକ୍ଷକରି ଏପରି ବ୍ୟଙ୍ଗ କରାଯାଇଥାଏ ।

ତିନିଚରଣ - "କଡ଼ା କେ ଟରି
କଡ଼ାକେ ମରି
କଡ଼ାକେ କଉଡ଼ି ବେଉସିପାର୍‌ଲେଁ ସୁନାଖୁଧେ ସୁନା କଲସ୍ ଢ଼େରି ।"

ଅର୍ଥାତ୍ - ସାମାନ୍ୟ ପଦାର୍ଥ ମଧ୍ୟ ଯତ୍ନକଲେ ଭବିଷ୍ୟତରେ ତହିଁରୁ ଲାଭ ମିଳିଥାଏ ।

ଚାରିଚରଣ- "ଶହେକେ ସୁପାରୀ
ହଜାର୍‌କେ ପାନ୍
ଲକ୍ଷେଟଙ୍କା ହେଲେ
ଆଫୁଟିକେ ଆନ୍ ।"
(ଝାଙ୍କର୍ ପାଲି - ବଲାଙ୍ଗିର)

ଅର୍ଥାତ୍ - ରୋଜଗାର ଦେଖି ଖର୍ଚ୍ଚ ହୋଇଥାଏ ।

ଛଅଚରଣ - "ଛଅତୁନ୍ ନଅଭଜା,
ଲେଥାତୁନ୍ ଡାକବଜା,
ମୁଗତୁନ୍ ଚୁପ୍‌କୁ ଚୁପ,
ଭାଜି ଶାଗ୍ ହେରାଟେକା,
ମାଗ୍‌ତୁନ୍ ଦୁଇ ଡପ୍‌କା
ଝୁରୀତୁନ୍ ପଏସା ପକା ।"
(କୁନ୍ଦେଇପାଲି - କଳାହାଣ୍ଡି)

ଅର୍ଥାତ୍ - ପ୍ରତ୍ୟେକ ବସ୍ତୁର ଗୁଣ ଉପରେ ତାହାର ମୂଲ୍ୟାୟନ ନିରୂପଣ କରାଯାଇଥାଏ ।

ପ୍ରତ୍ୟେକ ଢଗର ଚରଣରେ ମଧ୍ୟ ସମାନ ଅକ୍ଷର ନଥାଏ । ପ୍ରଥମ ଚରଣ ସ୍ୱଳ୍ପ ଅକ୍ଷର ବିଶିଷ୍ଟ ହେଲେ ମଧ୍ୟ ଦ୍ୱିତୀୟ ଚରଣ ବହୁ ଅକ୍ଷର ଯୁକ୍ତଥାଏ । ଯଥା -

"କେନ୍ତ କଥା
ଧରମ୍‌କଲେ ମେକାଖୁଟା ।"

ଅର୍ଥାତ୍ - ଜଣେ ଅନ୍ୟର ଉପକାର କରୁଥିବା ବେଳେ ଉପକୃତ ବ୍ୟକ୍ତି ଉପକାରୀର ଅନିଷ୍ଟ କରିବା ।

ସ୍ୱର୍ଗତ ଶ୍ୟାମସୁନ୍ଦର ରାଜଗୁରୁ ଓଡ଼ିଆ ଛନ୍ଦର ବିକାଶରେ ଡଗ-ଡମାଳିତର ଯୋଗଦାନକୁ ତାଙ୍କ 'ପ୍ରବନ୍ଧାବଳୀ' ପୁସ୍ତକରେ 'ଓଡ଼ିଆ ଛନ୍ଦ' ଶୀର୍ଷକରେ ଉଲ୍ଲେଖ କରି ସ୍ୱୀକାର କରିଛନ୍ତି । ପଶ୍ଚିମ ଓଡ଼ିଶାର ଡଗ-ଡମାଳିର ଅବଦାନକୁ ମଧ ଏହି ପରିପ୍ରେକ୍ଷୀରେ ସ୍ମରଣ କରାଯାଇ ପାରେ ।

ଚତୁରକ୍ଷର ଛନ୍ଦ ପ୍ରାକୃତରୁ ଆସିଲାପରି ବୋଧହୁଏ ବୋଲି ସ୍ୱର୍ଗତ ଶ୍ୟାମସୁନ୍ଦର ରାଜଗୁରୁ ମନେ କରିଛନ୍ତି । ଯଥା -

"ଦେଲୁଁ ନାରୀ
ହେଲୁଁ ପାରୀ ।"

ପଞ୍ଚାକ୍ଷର ଛନ୍ଦ ପ୍ରାକୃତର ହଂସ ଛନ୍ଦ ସଦୃଶ ଏହିପରି ଛନ୍ଦର ଦୃଷ୍ଟାନ୍ତ ଏହି ସଂଗୃହୀତ ଡଗ-ଡମାଳି ଗୁଡ଼ିକରୁ ପରିଲକ୍ଷିତ ହୁଏ ।

ଯେପରି - "କମେ ଶଶୁର
ଉଡ଼େ ଜୁଉଇଁ ।"

ଅର୍ଥାତ୍ ଶ୍ୱଶୁର ଯାହାକିଛି ରୋଜଗାର କରିଥାଏ, ଜ୍ୱାଇଁ ତାହାକୁ ବିବାହବେଳେ ଯୌତୁକରେ ନେଇ ଉପଭୋଗ କରିଥାଏ । ଅର୍ଥାତ୍ ଜଣେ ରୋଜଗାର କରୁଥିଲାବେଳେ ଓ ଅନ୍ୟଜଣେ ତାହାକୁ ଭୋଗ କରୁଥିବା ବେଳେ ଏପରି କୁହାଯାଏ ।

ପ୍ରାକୃତରେ 'ମାଳତୀ' ଛନ୍ଦାନୁଯାୟୀ ଓଡ଼ିଆର ଷଡ଼କ୍ଷର ଛନ୍ଦର ଦୃଷ୍ଟାନ୍ତ ଡଗ-ଡମାଳିରେ ଦେଖନ୍ତୁ -

"ଯତ୍ ଖରଖସ୍
ତତ୍ ବରକସ୍ ।"

ଅର୍ଥାତ୍ - ଶକ୍ତିଶାଳୀ ବ୍ୟକ୍ତିର ଦେହରେ କର୍କଶ ଲକ୍ଷଣ ଦେଖାଯାଏ ।

ଓଡ଼ିଆ ସପ୍ତାକ୍ଷର ଛନ୍ଦ ସଂସ୍କୃତର 'କୁମାର ଲଳିତ' ଛନ୍ଦର ଅନୁରୂପ ।

"ବାହ୍ମନର୍ ପଏତା
ମାଏଝିର୍ ଘଏତା ।"

ଅର୍ଥାତ୍ ବ୍ରାହ୍ମଣର ପଇତା ଯେପରି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଓ ଶ୍ରେଷ୍ଠ ଜିନିଷ । ସେହିପରି, ନାରୀର ସର୍ବସ୍ୱ ହେଲା - ତା'ର ସ୍ୱାମୀ ।

ଅଷ୍ଟାକ୍ଷରୀ ଭଣିଆରୀ ଛନ୍ଦ ମଧ୍ୟ ନିମ୍ନୋକ୍ତ ପଦ ସଦୃଶ । (ଏହାର ୪ର୍ଥ ଓ ଶେଷ ଅକ୍ଷରରେ ଯତିପାତ ହୁଏ ।)

"ଗୁର୍ ଲେଡା ହେଲେଁ ଗଲା,
ପୁଓ ବେଡ଼ା ହେଲେଁ ଗଲା ।"

ଅର୍ଥାତ୍ - ଗୁଡ଼ ମୁଣ୍ଡା ମୁଣ୍ଡା ହେଲେ, ନଷ୍ଟ ହୋଇଯାଏ, ପୁଓ ବୋକା ହେଲେ ଗଲା ।

ଭାଗବତର ନବାକ୍ଷରୀ ବୃତ୍ତ (ଗୁଜ୍ଜରୀ) ପରି ଏହି ସବୁ ଡଗମାନଙ୍କର ନବାକ୍ଷରୀ ବୃତ୍ତର ଉଦାହରଣ ମିଳିଥାଏ (ପଞ୍ଚମ ଓ ଶେଷ ଅକ୍ଷରରେ ଯତିପାତ୍ ହୋଇଥାଏ ।)

"ପରର୍ ପୁଏ ବୁଡ଼ିମଲା
ମୁଇଁ ଦେଖ୍‌ଲିଁ ଟୁପ୍‌କଲା ।"

ଅର୍ଥ - ଜଣଙ୍କର ସର୍ବନାଶ ବେଳେ ଯେଉଁବ୍ୟକ୍ତି 'ପର' ବୋଲି ଭାବି ନିର୍ଣ୍ଣୟ୍ ଦ୍ରଷ୍ଟାହୁଏ ତାକୁ ଆକ୍ଷେପ କରି ଏପରି କୁହାଯାଏ ।

ଓଡ଼ିଆରେ ଦଶାକ୍ଷର ଛନ୍ଦ 'ମୁଖାରୀ' ନାମରେ ପରିଚିତ (ଏହାର ପଞ୍ଚମ ଓ ଷଷ୍ଠ ଏବଂ ଶେଷ ଅକ୍ଷରରେ ଯତିପାତ୍ ହୋଇଥାଏ ।) ଏହି ଛନ୍ଦର ଏକ ଡଗ ଦେଖନ୍ତୁ -

"ଯିଏ ଗୁର୍‌ସେ ପୁଡ଼ି ମର୍‌ସି,
ସିଏ ମହି ଦେଖ୍‌ଲେ ଡର୍‌ସି ।"

ଅର୍ଥାତ୍ - ଯାହାକୁ ସର୍ପ ଦଂଶନ କରିଥାଏ, ତାହାର ମା ପାଳ ଦଉଡ଼ିକୁ ଦେଖି ମଧ୍ୟ ଭୟ୍ କରିଥାଏ । ଅର୍ଥାତ୍, ଅନୁଭବୀ ସାମାନ୍ୟ ପଦାର୍ଥରେ ମଧ୍ୟ ଭୟ୍ କରିଥାଏ ।

ଓଡ଼ିଆରେ ଏକାଦଶାକ୍ଷର ଛନ୍ଦ 'ଚକ୍ରକେଳି' ନାମରେ ନାମିତ । ଏହିପରି ଛନ୍ଦ ଡଗରେ ବହୁଳ ବ୍ୟବହୃତ ହୋଇ ଥିବାରୁ ଏହାକୁ 'ବୋଲୀ' କୁହାଯାଏ । (୧୨) ଏହି ଛନ୍ଦର ଏକ ଦୃଷ୍ଟାନ୍ତ ପଶ୍ଚିମ ଓଡ଼ିଶାର ଏକ ଡଗର ଦୃଷ୍ଟାନ୍ତ ନିଅନ୍ତୁ -

"କେତେବେଳେଁ ଗଁଡ଼୍ ଛତର୍ ଟେକେ,
କେତେବେଳେଁ ଗଁଡ଼୍ ପତର୍ ବିକେ ।"

---

୧୨. ପ୍ରବନ୍ଧାବଳୀ - ଓଡ଼ିଆ ସାହତ୍ୟ ଏକାଡ଼େମୀ - ପୃ - ୬/୭

ଅନୁରୂପ ଲୋକକ୍ତି - "ଏହି ହାତ ପୁଣି ଏମନ୍ତ
ଥୋଇଲେ ହାତୀକୁ ପାରଇ ବାନ୍ଧି,
ଏହି ହାତ ପୁଣି ଏମନ୍ତ ହୋଇଲେ
କେଶକୁ ନପାରେ ବାନ୍ଧି ।"

ଓଡ଼ିଆ ଦ୍ୱାଦଶାକ୍ଷର ଛନ୍ଦରେ ଆହରୀ, ବିଭାଷଗୁଜ୍ଜରୀ, ଦକ୍ଷିଣକାମୋଦୀ ଓ ନୀଳସାଗର ବାଣୀ ବୋଲାଯାଏ । (ଏହାର ଷଷ୍ଠ ଓ ଶେଷ ଅକ୍ଷରରେ ଯତିପାତ୍ ହୋଇଥାଏ ।) ଠିକ୍ ସେହି ଛନ୍ଦର ଡଗ ଏହି ଡଗ ଡମାଳି ଭଣ୍ଡାରରେ ସ୍ଥାନ ମଧ ପାଇଛି । ଯଥା -

"ଧୁବା ଭଁଡ଼ାରୀର କୁସେର୍ ବାଏର୍,
ହିଁସା ଅହଁକାରେ ମଲା ଯେ କୁସେର୍ ।"

ପରସ୍ପର ବିବାଦ୍ୟମାନ ଦୁଇ ବ୍ୟକ୍ତିଙ୍କର ମିଶ୍ରିତ କାର୍ଯ୍ୟ ଏହିପରି ଦର୍ଶାଯାଇଥାଏ ।

ଡଗ-ଡମାଳି ଲୋକମୁଖରେ ପ୍ରଚଳିତ । ଏହା ଲିଖିତ ନୁହେଁ, ତେଣୁ ପଦର ପ୍ରତ୍ୟେକ ଚରଣର ଅକ୍ଷର ସଂଖ୍ୟା ଯେ ସମାନ ହେବ, ସେପରି କିଛି ବିଦ୍ଧିବଦ୍ଧ ନିୟମ ନାହିଁ । ଯଥା -

"ଘୁଚୁକୁଡୁ ଟାଁଗ୍ ଟାଁଗ୍,
ପଏସା ଟାକେ ପତ୍‌ରେ ଭାଁଗ୍ ।"

ଅର୍ଥାତ୍ - ଅଳ୍ପଦେଇ ବେଶୀ ଆଶା କରିବା ଅର୍ଥରେ ଏହା ବ୍ୟବହୃତ ହୋଇଥାଏ ।

ଲୋକ ସାହିତ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନ ହେଲା ରସ ପରିବେଷଣ, ବିଶେଷତଃ ହାସ୍ୟ ଏବଂ କରୁଣରସ ଲୋକମନକୁ ସ୍ପର୍ଶ କରିଥାଏ । ରସବିନ୍ୟାସ ଦିଗରୁ ନିରୀକ୍ଷଣ କଲେ ଡଗ-ଡମାଳି ଗୁଡ଼ିକରେ ଅଧିକ ପରିମାଣରେ ବ୍ୟଙ୍ଗ ଓ ବିଦ୍ରୁପାତ୍ମକ କଥା ରହିଥିବାରୁ ସେହିଗୁଡ଼ିକ ଅଧିକାଂଶ ହାସ୍ୟରସାତ୍ମକ ହୋଇଅଛି । ଯଥା -

"ନାଁ ଲଛମନ୍, ଗିଜଭର୍ ଖସୁ ।"

ଅଥବା - "ଲାଁଡ୍‌ମୁଁଡ୍ ଗାଧିବାର ସୁଖ୍,
ଲୁଁଗି ପିଁଧିବା ହଗ୍‌ବାର୍ ସୁଖ୍ ।"

ନୀତିବାଣୀ ଅଧିକାଂଶ ଡଗ-ଡମାଳି ଶୁଣାଇଥାଏ । ତେଣୁ ଶ୍ରୋତାକୁ ଆତ୍ମସ୍ଥ କରି ବୁଝିବିଚାରି କାର୍ଯ୍ୟ କରିବା ପାଇଁ ତାହାର ମନରେ ଏକ ବୈରାଗ୍ୟଭାବ ଉଦ୍ରେକ କରି ବାଦାରା ଶାନ୍ତରସ ପରିବେଷଣ କରିଥାଏ । ଏହାର ଉଦାହରଣ -

"ଆଜିର୍ କଥା୍ କାଲ୍‌କେ ନାଇଁ।"

ପୁଣି - "କର୍‌ମେଁ ନାଇଁନ ଟଟୋ

ଛୁଛାଥିଁ ଫଟୋ ଫାଟୋ।"

ଭାଷା ବିଭବ -

ଏହି ଡଗ-ଡମାଳି ପଲ୍ଲୀ ଅଞ୍ଚଳର ଲୋକମୁଖରେ ପ୍ରଚଳିତ। ତେଣୁ ଏହାର ଭାଷା ପୁରପଲ୍ଲୀର ଦାଣ୍ଡର ଭାଷା। ଆଞ୍ଚଳିକ ଶବ୍ଦଗୁଡ଼ିକ ଏହିସବୁ ଡଗ-ଡମାଳିରେ ଆପେ ଆପେ ସ୍ଥାନ ପାଇଥାଏ। ଯଥା -

"ମୁଲିଆ ଚାପକ୍ ମାନ୍‌କଲା
ତା'ର ମାନ୍‌କ ହାଏନ୍ କଲା।"

(ଚାପକ - ବିଚରା, ମାନକଲା - ଅଭିମାନ କଲା, ମାନ୍‌କ - ମାଣକ, ହାଁଏନ୍ - କ୍ଷତି) ଅର୍ଥାତ୍ ନିଜେ ଜାଣି ଜାଣି ଗର୍ବରେ ଯିଏ ନିଜର କ୍ଷତିକରେ ତା'ପ୍ରତି ଏହା ପ୍ରଯୋଜ୍ୟ। ଏଠାରେ ଯେଉଁ 'ଚାପକ୍' ଓ 'ହାଁଏନ୍' ଶବ୍ଦ ଦୁଇଟି ସ୍ଥାନ ପାଇଛି। ତାହା କିପରି ଆଞ୍ଚଳିକତାର ରଙ୍ଗରେ ରଞ୍ଜିତ ତାହା ସୁସ୍ପଷ୍ଟ।

ଅନର୍ଥକ ଶବ୍ଦ (Nonsense) ଲୋକସାହିତ୍ୟରେ ଅନ୍ୟଏକ ବିଶିଷ୍ଟ ଉପାଦାନ। ଏହି ଅନର୍ଥକଶବ୍ଦ ଏହି ଅଞ୍ଚଳରୁ ସଂଗୃହୀତ ଡଗ-ଡମାଳିରେ ମଧ ମିଳିଥାଏ। ମାତ୍ର ଏହି ଶବ୍ଦ ପଦ ମଧରେ ରହିଗଲାପରେ ତାହା ସାମଗ୍ରିକ ଅର୍ଥ ଗ୍ରହଣରେ ସହାୟକ ହୋଇଥାଏ।

ଦୃଷ୍ଟାନ୍ତ ସ୍ୱରୂପ -

'ମଲ୍‌ମଲ୍' - "ଝାର୍ ମଲ୍ ମଲ୍ ପିପଲ୍ ପତର
ପାଏନ୍ ମଲ୍ ମଲ୍ କେରାଲି,
ଗାଁ ମଲ୍ ମଲ୍ ରାଆଁଡ଼ଇ ଛାର୍‌ରୀ
ସଭା ମଲ୍ ମଲ୍ ଭଁଡ଼ାରୀ।"

'ଉଚ୍‌କିଲା' - "ଯାଚ୍‌ଲା ନାଇଁ ଖାଉଁ
ଉଚ୍‌କିଲା ଖାଉଁ
ଶିକା ଟଲ୍ ଟଲ୍ ଗୁଡଉଥାଉଁ।"

'ଉଝ୍‌ଗନ୍'- "ହଗରୀକେ ବାଟ ଉଝଟନ୍।"

(ସାମାନ୍ୟ କଥାକୁ ଆଳଙ୍କରି ନିନ୍ଦନୀୟ କାର୍ଯ୍ୟକରିବା)

ଲୋକସାହିତ୍ୟ ଯେତେ ସରଳ ହେଲେ ବି ସେଥିରେ ମଧ୍ୟ ଅଳଙ୍କାରର ସ୍ଥିତି ରହିଛି। ଅଳଙ୍କାର ଯେପରି ଶରୀରର ସୌନ୍ଦର୍ଯ୍ୟ ବର୍ଦ୍ଧକ। ସେହିପରି ଏହି ଅଳଙ୍କାର ଢଗ-ଢମାଳିକୁ ଅଧିକ ଋଚିପୂର୍ଣ୍ଣ କରି ତୋଳିଥାଏ। ମୁଖ୍ୟତଃ ଉପମା ଅଳଙ୍କାର ଏଥିରେ ଏକ ବିଶେଷ ସ୍ଥାନ ଅଧିକାର କରିଥିବାର ଲକ୍ଷକରାଯାଏ। ଗୋଟିଏ କଥାକୁ ଉଦାହରଣ ଦେବା ଛଳରେ ଏହାର ଅବତାରଣା କରାଯାଇଥାଏ। ଯଥା -

"ଛେଇଁ ହଲ୍‌ଦୀର ରଙ୍ଗ୍
ପରଦେଶୀର ସଙ୍ଗ୍।"

ଅଥବା - "ହଲଦୀର କାଏଁ ରଙ୍ଗ୍
ପରଦେଶୀର କାଏଁ ସଙ୍ଗ୍?"

(ଛେଇଁ ହଲ୍‌ଦି - ଏକପ୍ରକାର ହଳଦୀ କିଛି ସମୟ ପରେ ଏହାର ରଙ୍ଗ ଫିକା ପଡ଼ିଯାଏ।)

ଅର୍ଥାତ୍ - ବିଦେଶୀଙ୍କ ସହିତ ବନ୍ଧୁତ୍ୱ କ୍ଷଣସ୍ଥାୟୀ। ଯେପରି ଛେଇଁ ହଳଦୀର ରଙ୍ଗ କ୍ଷଣସ୍ଥାୟୀ।

ଅଥବା - "କଥାର ଲଥା।"

ଅର୍ଥାତ୍ - କଥାରେ ଲଥା ଥିଲେ ତାହାର ଅର୍ଥ ପ୍ରାଞ୍ଜଳ ଭାବରେ ହୃଦୟଙ୍ଗମ କରିହୁଏ। ସେହିପରି ବାଡ଼ ଦେହରେ ବତା ଦେଲେ ତାହା ସେହି ବାଡ଼କୁ ଶକ୍ତକରେ।

କେତେକ କ୍ଷେତ୍ରରେ କେବଳ ଉପମାନ ସ୍ଥାନୀୟ ଘଟଣା ବା ବସ୍ତୁର ବର୍ଣ୍ଣନା ଦିଆଯାଇଥାଏ। ସେଥିରୁ ମୂଳକଥାଟି ବାହାରକରି ବୁଝିବାକୁ ହୋଇଥାଏ। ଯଥା -

"ତପ୍‌ଲା ପାନିଥି ଘର୍ ନିପୁଡ଼େ।"

ଅର୍ଥାତ୍ - ତତଲା ବା ଗରମ ପାଣିରେ ଘର ପୋଡ଼ି ଯାଏନାହିଁ। ଏହା ମୂଳକଥାର ଉପମା। କିନ୍ତୁ ମୂଳକଥାଟି ହେଲା କେବଳ ଉତ୍ତେଜନାପୂର୍ଣ୍ଣ କଥା କହିଲେ କାର୍ଯ୍ୟ ସଂପନ୍ନ ହୋଇନଥାଏ। ଅର୍ଥାତ୍ କେବଳ ବଡ଼ ବଡ଼ କଥା କହିଲେ ହେବନାହିଁ। ସେଥିପାଇଁ କାର୍ଯ୍ୟ କରିବାକୁହିଁ ପଡ଼ିବ।

ସେହିପରି - "ମାକର୍ ହାତେଁ ଶାଲେଗ୍ରାମ୍।"

(ମାଙ୍କଡ଼ ହାତରେ ଶାଳଗ୍ରାମ)

ପୁଣି -      "ଯା'ର୍ ମାକର, ସେ ନଚାସି ।" (ନିଜ ହାତେରେ ନିଜ ମାଙ୍କଡ଼ ନାଚେ)

ଆଉ ଗୋଟିଏ -      "ଯେତେବେଲର୍ ଆମକେ
ସେତେବେଲ୍ର ଲେଦା ।"

ଅର୍ଥାତ୍ - ଯେଉଁ ସମୟରେ କାମ ସେହି ସମୟରେ ସଂପନ୍ନ କରିବା ଉଚିତ୍ । ସେପରି ଯେତେବେଳର ଆମ୍ବ, ସେତେବେଳେ ଲାଠିଦ୍ୱାରା ତାକୁ ତୋଳାଯିବା ଆବଶ୍ୟକ ।

"ଢଗ ସାହିତ୍ୟ ଏକ ବଡ଼ଦାଣ୍ଡ । ସମସ୍ତଙ୍କ ଚଲାବୁଲା ଓ ଚଳଣି ପାଇଁ ସେଠି ଖୋଲାମେଲା ଅଛି X X (୧୩) । ତେଣୁ, ଏଥିରେ ସମାଜର ପ୍ରାୟ ଅଧିକାଂଶ ଚିତ୍ର ଓ ଚରିତ୍ରର ରୂପ ପ୍ରତିଫଳିତ ହେବା ଖୁବ୍ ସ୍ୱାଭାବିକ । ତେଣୁ ଏହାକୁ ଲୋକଜୀବନର ମୁକୁର ବୋଲି କୁହାଯାଏ । (୧୪)

ବ୍ୟକ୍ତି ଏବଂ ସମାଜର ଚିତ୍ର ଏହିସବୁ ଢଗ-ଢମାଳିରେ କିପରି ପ୍ରତିଫଳିତ ହୋଇ ଲୋକସଂସ୍କୃତିକ ଜୀବନର ସୂଚନା ମିଳୁଛି ତାହା ନିମ୍ନରେ ପ୍ରଦତ୍ତ ହେଲା ।

ସାଧାରଣତଃ ଦରିଦ୍ରବ୍ୟକ୍ତି ସମୟକ୍ରମେ ଧନୀ ହେଲେ, ସେ ତାହାର ମାନସିକ ଲୋକଙ୍କ ସହିତ ସଂପର୍କ ରଖେନାହିଁ । କାରଣ, ସେ ଜାଣେ ସେହିମାନଙ୍କଠାରୁ ସେ ବେଶ୍ ଉଚ୍ଚରେ ।

"ଏନ୍ତା ଲୁକ କେନ୍ତା,
ଖଲିଖିଆ ଲୁକ ଥାଲିଥିଁ ଖାଏଲେଁ,
ଲୁକ ଚିନ୍‌ଭା କେନ୍ତା ?"

ନିଜର ଅନେକ ଦୋଷଥିଲେ ମଧ ବ୍ୟକ୍ତି ଅନ୍ୟର ଦୋଷକୁ ଦେଖାଇଦେବା ତାହାର ଏକ ସାଧାରଣ ଲକ୍ଷଣ -

"ଇଲୁକର ଦିହେଁ ଟୁପେ ମାଛି,
ସେ ଯାଉଛେ ପର୍‌କେ ବାଛି ।"

ଅଥବା - "ଆପ୍ ଛିଦ୍ ନଜାନ୍‌ତି, ପରଛିଦ୍ ଭୁଗାଟୁପା ।"

ଜଣକର ସମ୍ମୁଖରେ ବେଶ୍ ପ୍ରଶଂସାକଲେ ମଧ ବହୁବ୍ୟକ୍ତି ଅନ୍ତରାଳରେ ତା' ବିରୁଦ୍ଧରେ କାର୍ଯ୍ୟ କରିଥାନ୍ତି । ଆଜିର ମୁଖାପିନ୍ଧା ମଣିଷର ଜୀବନ ଏଥିରେ ଚିତ୍ରିତ ହୋଇଛି -

---

୧୩. ଓଡ଼ିଆ ଢଗଢମାଳି : ଏକ ଅଧ୍ୟୟନ - ଲୋକବାଣୀ ସଂଚୟନ (୧ମ) ପୃ:୧

୧୪. 'ଢଗଢମାଳିରେ ଲୋକ ଚରିତ୍ର ଚିତ୍ରଣ - ଡ. କୁଞ୍ଜବିହାରୀ ଦାଶ - ଧରିତ୍ରୀ - ଜନ୍ମବାର୍ଷିକୀ ବିଶେଷାଙ୍କ - ତା. ୨୪.୧୧.୭୫, ପୃ: ୨୫ ।

"ଆଗେଁ ମନ୍‌ଧରା
ପଛେଁ ଚୁପ୍‌ରା ।"

ମଣିଷର ସବୁଠାରୁ ଏକ ଲକ୍ଷଣୀୟ ସ୍ୱଭାବ ହେଲା - ସେ (ପ୍ରଶଂସା ବା ଭଲକଥା) ଯେଉଁ କଥା କହେ ତାହାକୁ ଅତିରଞ୍ଜିତ କରି ନିଜର ବଡ଼ିମା ଦର୍ଶାଇଥାଏ ।

"ଖଁଡ଼େ ଧାନ୍ ଅନେଇଶ୍ ଟାଁବି ପୋଲ ।"

ମଣିଷର ସ୍ୱଭାବ ହେଲା ପ୍ରଥମେ ସେ ନିଜେ ବଞ୍ଚିବ । ନିଜର ସ୍ଥିତି ସୁଦୃଢ଼ କଲାପରେ ଯାଇ ସେ ଅନ୍ୟ ବିଷୟରେ ଚିନ୍ତା କରିବ । ଆଜିର 'ସ୍ଥିତିବାଦ୍ ଦର୍ଶନ' (Existencialism) ମଧ୍ୟ ଠିକ୍ ଏହିବାଣୀ ଶୁଣାଇଥାଏ ।

"ଆପୁଁ ବଅଁଚିଲେଁ ବାପର୍ ନାଁ-"

ଅନ୍ୟର ମନ ରକ୍ଷା କରିବାପାଇଁ ତାହାକୁ ଖୁସି କରିବା ପାଇଁ ମିଥ୍ୟାରେ ଅନେକକିଛି କୁହାଯାଇଥାଏ । ଏହା ଫଳରେ ଶ୍ରୋତା ଆନନ୍ଦିତ ତଥା ଆଶ୍ୱସ୍ତ ହୋଇଥାଏ ।

"ଟୁଁଡେ୍କେ କାଏଁ ହଉଲହୁଲି ଦୁକାଲ୍"
(ତୁଣ୍ଡକୁ କଅଣ ହୁଳହୁଳି ଅଭାବ ବା ଦୁର୍ଲଭ ପକାଇବାକୁ କଷ୍ଟ ଲାଗିବ ।)

ଏହିପରି ଅନେକ ଢଗ-ଢମାଳି ପଶ୍ଚିମ ଓଡ଼ିଶାରୁ ସଂଗ୍ରହ କରାଯାଇଛି ଯେଉଁଥିରେ କି ବ୍ୟକ୍ତିର ସ୍ୱଭାବର ନିକଛ କଥା ସ୍ଥାନ ପାଇଛି ।

ପଶ୍ଚିମ ଓଡ଼ିଶାରେ ଯେତେସବୁ ଢଗ-ଢମାଳି ସଂଗୃହୀତ ସେହି ସବୁଗୁଡ଼ିକରେ ବହୁଳାଂଶରେ ସମାଜର ବାସ୍ତବଚିତ୍ର ପ୍ରତିଫଳିତ ହୋଇଛି । ଏଣୁ, ଏହି ସବୁର ବ୍ୟାବହାରିକ ମୂଲ୍ୟ ଯେ ଏବେବି ବହୁ ପରିମାଣରେ ରହିଛି, ଅନ୍ୟ ଭାଷାରେ ଏହାର ଉପାଦେୟତା ରହିଛି, ତାହା ସୁସ୍ପଷ୍ଟ ହୁଏ ।

ଟଙ୍କା ବା ଅର୍ଥ ହିଁ ସମସ୍ତ କାର୍ଯ୍ୟର ମୂଳ । ଏହାଦ୍ୱାରା ଯାହା ଅସମ୍ଭବ ତାହା ମଧ୍ୟ ସମ୍ଭବ ହୋଇପାରେ ।

"ଚାହେଲେଁ ଚକେଲ ଗଡ୍‌ଲେଁ ମଡ଼ା ।"
(ଧନି ବ୍ୟକ୍ତି କ'ଣ କରିନପାରେ ?)

"ଆବେ ପରଶୁ ଯା'ବେ ପରଶୁ
ବାବୁ ପରଶୁରାମ୍
ରୁପିୟା କାଏଁ ନାଇଁ କରସି କାମ୍ ?"

ସମାଜରେ ଦାନ୍ତୁଡ଼ିନାରୀର ସ୍ଥାନ ଖୁବ୍ ନିମ୍ନରେ । ଦେହର ରଙ୍ଗ ଗୋରା ଅଥବା କଳା

ହେଲେ ମଧ ଚଳିବ । ମାତ୍ର ଦାନ୍ତୁଡ଼ି ନାରୀ ଅଶୁଭ ବୋଲି ସମ୍ପ୍ରଜରେ ଏକ ପ୍ରଥା ରହିଛି -

"କାଲି ଗୁରୀ ସଂସାର
ଦାଁତ୍‌ରି ମାଏଝି ଅସାର୍ ।"

ସମାଜରେ କିପରି ଯୌତୁକ ପ୍ରଥା ପ୍ରଚଳିତ ଥିଲା, ତାହାର ଏକ ଉଦାହରଣ ଦେଖନ୍ତୁ -

"କମେ ଶଶୁର୍
ଉଡ଼େ ଜୁଏଁ ।"

ପୁରପଲ୍ଲୀରେ ବ୍ରାହ୍ମଣମାନେ କିପରି ଧର୍ମର ଭୟ ଦର୍ଶାଇ ନିଜର ସ୍ୱାର୍ଥସାଧନ କରି ଗରୀବ ତଥା ସାଧାରଣ ଲୋକମାନଙ୍କୁ ପ୍ରତାରଣା କରିଥାନ୍ତି, ଏହାର ଚିତ୍ର ନିମ୍ନୋକ୍ତ ଢଗଟିରେ ରହିଅଛି-

"ଗାଁ ଖାଏ ବାହ୍ମନା
ଖେତ୍ ଖାଏ ସମ୍‌ନା ।"

ଅର୍ଥାତ୍ - ଗାଁ'କୁ ଯେପରି ବ୍ରାହ୍ମଣ ନଷ୍ଟ କରିଥାଏ, ସେହିପରି ସମନା (ଏକଜାତୀୟ ତୃଣ) ଖେତକୁ ନଷ୍ଟ କରିପକାଏ । ଏହି ବ୍ରାହ୍ମଣମାନଙ୍କର ଚାଲିଚଳନ ସମ୍ପର୍କରେ ଅନ୍ୟ ଏକ ଢଗରୁ ସୂଚନା ମିଳେ -

"କାଉ କୁଲ୍‌ଟା ନିଠୁର ତେଲି
ବାହ୍ମନର୍ ସାଁଗେ ବାଟ୍ ନାଇଁଚାଲି ।"

ମହାନ୍ତି ଜାତି ସ୍ୱବଂଶର ଗାରିମା ପ୍ରଦର୍ଶନ କରାଇବାରେ ବେଶ୍ ସିଦ୍ଧହସ୍ତ -

"ମହାନ୍ତି ଜାତି
ଉଧାର୍ ପାଏଲେଁ ହାତୀ ଘିନତି ।"

ସମାଜରେ ଜଣେ ଅକ୍ଳାନ୍ତ ପରିଶ୍ରମ କରି ଅଳ୍ପ ଲାଭବାନ ହୋଇଥାଏ । ପୁଣି ଧୂର୍ତ୍ତବ୍ୟକ୍ତି ଅଳ୍ପ ପରିଶ୍ରମ କରି ମଧ ବହୁତ ଲାଭବାନ ହୋଇଥାଏ । ଏପରି ଦୁଇଗୋଷ୍ଠୀର ସ୍ଥାନ ସମାଜରେ ରହିଅଛି ।

"ଧାଇଁ ଧୁପି ବାର
ବସି ବସି ତେର ।"

ପୁରପଲ୍ଲୀରେ କୁମ୍ଭାର ଘରର ସ୍ତ୍ରୀ ଲୋକମାନେ ନିକଟସ୍ଥ ଜଙ୍ଗଲରୁ କାଠ କାଟି ମୁଣ୍ଡେଇ

ଆଣନ୍ତି ଏବଂ ମାଟି ଚକଟି ହାଣ୍ଡି ଗଢ଼ିବାର ଉପଯୋଗ କରନ୍ତି ।

"କୁଁଭାର୍ ଘରର୍ ବହ
ଝାର୍‌କେ ନୁହିଲେଁ ମାଏଟ୍‌କେ ଯା ।"

ଅର୍ଥାତ୍ - ସର୍ବଦା ଯେ କିଛି ନା କିଛି କାର୍ଯ୍ୟରେ ବ୍ୟସ୍ତ ରହିବା ପ୍ରସଙ୍ଗରେ ଏପରି କୁହାଯାଏ ।

ପୁରପଲ୍ଲୀରେ ଏପରି କେତେକ ସ୍ତ୍ରୀ ଲୋକ ଥାଆନ୍ତି ଯିଏକି ଭାରି କଳିହୁଡ଼ି । ତାହାର ପାଟିକୁ ସମସ୍ତେ ପ୍ରାୟ୍ ଭୟ୍ କରିଥାନ୍ତି ।

"ଗାଁ ବାହାରର ଚଁଡିକେ ଡରି ।"

ବିଭିନ୍ନ ପୂନେଇଁ ପର୍ବରେ ପିଠାପଣା ହୁଏ ଏବଂ ତାହାକୁ ଖାଇ ଲୋକେ ହରଷ ହୁଅନ୍ତି ।

"ବାର୍ ପୁଁନିର ପିଠା ଖାଇ
କେଭେଁ ମନ୍ ହରସ୍ ନାଇଁ ।"

ଅର୍ଥାତ୍ - ଯେତେ ସନ୍ତୁଷ୍ଟ କଲେ ମଧ ଯିଏ ସବୁବେଳେ ଅସନ୍ତୁଷ୍ଟ ରହିଥାଏ ।

ଗାଁ'ର ଭଣ୍ଡାରୀମାନେ ସମସ୍ତଙ୍କର କାର୍ଯ୍ୟ କରିଥାନ୍ତି । ତେଣୁ ତାକୁ ଦେଖିଲାକ୍ଷଣି ତାକୁ ସ୍ୱ କାର୍ଯ୍ୟରେ ଲୋକ ବିନିଯୋଗ କରିଥାନ୍ତି -

"ଭଁଡାରୀ ଦେଖିଲେ ଆଁଠୁ ଆଡୁ ନଖ"

ଗାଁ ଗହଳିରେ ପୋଲିସ୍‌ମାନଙ୍କର ସ୍ୱତନ୍ତ୍ର ସମ୍ମାନ ତଥା ଭୟ୍ ରହିଛି । ତେଣୁ ସେମାନଙ୍କୁ ହୀନବୋଲି ମନେକରିବା ଅନୁଚିତ୍ ।

"ଝାର୍‌କେ ନାଇଁ ବଲ୍‌ବ ପଦା
ପୁଲିସ୍‌କେ ନାଇଁ ବଲ୍‌ବ ଦଦା ।"

ସମାଜରେ ଯେ ବେଶ୍ୟାବୃତ୍ତି ପ୍ରଚଳିତ, ଏହା ନିମ୍ନୋକ୍ତ ଢଗ-ଢମାଳିରୁ ପ୍ରମାଣ ମିଳେ -

"ଦାରିର୍ ଘର ପୁତ୍‌ଲା ବେଲ୍‌କେ ନାଗର ବଏଲା ଖଟ୍‌ପକା ।"

କନ୍ୟାର ବିବାହ କରିଦେଲା ପରେ ତା' ଉପରେ ତାଙ୍କର ପିତାମାତାଙ୍କର ଆଉ କୌଣସି ଦାୟିତ୍ୱ ରହେନାହିଁ । ସମାଜର ଏହି ଚଳଣି "ଦେଲୁଁ ନାରୀ ହେଲୁଁ ପାରି" ଢଗରୁ ପ୍ରତିପାଦିତ ହୁଏ ।

ବୟୋଜ୍ୟେଷ୍ଠ ପୁରୁଷ ପରିବାରର ଅଭିଭାବକ ହେବା ସମାଜରେ ଏହି ଯେଉଁ ଚଳଣି ରହିଛି,

ତାହା ନିମ୍ନୋକ୍ତ ଢଗରୁ ପ୍ରମାଣ ମିଳେ -

"ଖେତ୍ ଉପରେ ମୁଡା,
ଘର୍‌କେ ଗୁଟେ ବୁଢ଼ା ।"

ଅର୍ଥାତ୍ - ଚାଷ ଜମିର ଉପର ଭାଗରେ ଗୋଟିଏ ପୋଖରୀ ଥିଲେ ଯେମିତି ଫଳପ୍ରଦ, ସେହିପରି ଘରେ ଗୋଟିଏ ବୃଦ୍ଧ ବ୍ୟକ୍ତି ଥିବା ଭଲ ।

ଏହିପରି ଖୋଜିବସିଲେ ଓଡ଼ିଶାର ପଶ୍ଚିମାଞ୍ଚଳରେ ପ୍ରଚଳିତ ଢଗ-ଢମାଳି ଗୁଡ଼ିକରୁ ସମାଜର ବିଭିନ୍ନ ସ୍ତରୀୟ ଜୀବନର ଚିତ୍ର ମିଳିଥାଏ ।

ସମାଜର ଅର୍ଥନୀତିକ ଚିତ୍ରର ଆଭାସ ମଧ୍ୟ କେତେକାଂଶରେ ଉକ୍ତ ଢଗ-ଢମାଳିରୁ ପ୍ରାପ୍ତ ହୋଇଥାଏ । ଅର୍ଥ ଯେ ପ୍ରତ୍ୟେକ କାର୍ଯ୍ୟର ମୂଳ, ଏହା ପୂର୍ବ ଉଦ୍ଧୃତ ଦୃଷ୍ଟାନ୍ତରୁ ସୂଚନା ମିଳେ ।

ନିଜର ରୋଜଗାର ଉପରେ ଖର୍ଚ୍ଚର ଅଟକଳ ବହୁ ପରିମାଣରେ ନିର୍ଭର କରେ । ଯିଏ ଶହେଟଙ୍କା ରୋଜଗାର କରେ ସେ ସୁପାରୀ ଅଭ୍ୟାସ କରିଥାଏ । ଯିଏ ହଜାରେ ରୋଜଗାର କରେ ସେ ପାନ ଖାଇବାକୁ ଆରମ୍ଭ କରିଥାଏ । କିନ୍ତୁ ଲକ୍ଷେଟଙ୍କା ରୋଜଗାର କରିପାରୁଥିବା ବ୍ୟକ୍ତି ଆପୁ ଅଭ୍ୟାସ କରିଥାଏ ।

କୁଲ୍‌ତାଜାତି ଧନୀ ଜାତି । ତାଙ୍କର ପ୍ରାଚୁର୍ଯ୍ୟପୂର୍ଣ୍ଣ ଜୀବନହିଁ ସମାଜର ଅର୍ଥନୀତିର ଏକ ଉଦାହରଣ । ଏହି ଜାତି ବ୍ୟବସାୟୀ ଜାତି । ତେଣୁ ବ୍ୟବସାୟୀ ମାନେ କିପରି ଲାଭବାନ ହୋଇ ସମାଜରେ ଧନୀବ୍ୟକ୍ତି ଭାବରେ ପରିଚିତ ହେଉଥିଲେ ଏଥିରୁ ତାହାର ଚିତ୍ର ମିଳେ ।

ଗୀତା ପାଠକରି ମନକୁ ଶାନ୍ତ, ପୂତ ରକ୍ଷାକରି କିପରି ଧାର୍ମିକ ଜୀବନ ଯାପନ କରିବାକୁ ହୋଇଥାଏ, ତାହାର ଉଦାହରଣ ପୂର୍ବରୁ ପ୍ରଦତ୍ତ ହୋଇଅଛି ।

"ଖାଏବୁ ପିତା
ଗାଏବୁ ଗୀତା
ତେଭେଁ ହେବୁ ଜଗତ୍ ଜିତା ।"

ଗୋହତ୍ୟା ଯେ ମହାପାପ ଏବଂ ଏକ ଅଧର୍ମ କାର୍ଯ୍ୟ, ଏହା ଆମର ପୁରାଣ ତଥା ଧାର୍ମିକ ବିଶ୍ୱାସ ଦ୍ୱାରା ସିଦ୍ଧ ହୋଇଅଛି । ଏହି କଥାଟି ନିମ୍ନୋକ୍ତ ଢଗଟିରୁ ସୂଚନା ମିଳିଥାଏ -

"ଗାଏ ମାଏଲେଁ ମଲି,
ଗାଏକେ ମାଏଲେଁ ମଲିଁ ।"

ମହାଭାରତର ଚରିତ୍ର ପାଣ୍ଡବମାନଙ୍କ କଥା ମଧ୍ୟ ଏହି ଢଗ-ଢମାଳିରେ ସ୍ଥାନ ପାଇଅଛି । ଅବଶ୍ୟ ଏହାର ଅର୍ଥର ପ୍ରସଙ୍ଗ ଭିନ୍ନ ।

"ପାଁଡବର୍ କାଏଁ ହଲ୍ ଧାନ୍
ପାଁଡବ ବୁଲେ ଗାଁ ଗାଁ ।"

ଅର୍ଥାତ୍ - ଯାହାର କିଛି ନାହିଁ, ତାହାର କୌଣସିଥିରେ ଚିନ୍ତା ନଥାଏ, ଏହି ଢଗଟି ଆବୃତ୍ତି କଲାବେଳେ ମହାଭାରତର ପଞ୍ଚୁପାଣ୍ଡବଙ୍କର ଅଜ୍ଞାତବାସ କଥା ଶ୍ରୋତାର ସ୍ମୃତିକୁ ମନ୍ଥିତ କରିଥାଏ ।

କପାକୁ ସାଇତି କରି ରଖି ପାରିଲେ ତାହା ଯେ ଏକ ଲାଭଜନକ ଫସଲ, ଏହା ଏକ ଢଗରୁ ଜଣାଯାଏ -

"କପା ଗଁଠେଇ ଥିଲେଁ କଉଡ଼ି ।"

ଏହି ଚାଷ ଯେ ଆଖୁଚାଷ ଠାରୁ ଲାଭଜନକ ତାହାର ସୂଚନା ଅନ୍ୟଏକ ଢଗରୁ ମିଳିଥାଏ-

"କୁସେର ଜଗାସି ଚିକିରି ପୋ
କପା ଜଗାସି ବାପର ପୋ ।"

ଭୋଦୁଅ ମାସରେ ଅନେକ ଚାଷୀ ଦରିଦ୍ର ହୋଇଯାଇଥାନ୍ତି । କାରଣ ସେତେବେଳେ ଅମଳ କରିବା ପାଇଁ ଧାନକୁ ଜମା ନଥାଏ । ଅର୍ଥାତ୍ ଭୋଦୁଅ ମାସରେ ଲୋକମାନେ ଅମଳ କରି ନଥାନ୍ତି ।

"ଭୁଦୋଁ ମାସେଁ କୁଦୋଲିଆ,
ଫଟୋ ଘରେଁ ତାଲା ଦିଆ ।"

ଏକପ୍ରକାର ତୃଣ 'ସମଁନା' କୃଷିକ୍ଷେତ୍ରକୁ ନଷ୍ଟ କରି ଦେଇ ତାହାର ଉତ୍ପାଦିକା ଶକ୍ତି ନଷ୍ଟ କରିଦିଏ । ଏହା ଅନ୍ୟ ଏକ ଢଗରେ ପ୍ରତିଫଳିତ ହୋଇଅଛି ।

"ଗାଁ ବାମ୍ହନାଁ
ଖେଁତ୍ ସମଁନା
ଘର୍ ଧମ୍ନା ହେଲେ ନାଶ୍ ଯାଏସି ।"

ଢଗ-ଢମାଳି ଲୋକମୁଖରେ ସୁପ୍ରଚଳିତ ତଥା ସୁପ୍ରତିଷ୍ଠିତ ହୋଇଥିବାରୁ ଏହାର ପ୍ରଭାବ ସାଧାରଣଙ୍କ ମନରେ ଖୁବ୍ ପ୍ରଭାବ ପକାଇ ପାରିବାର ଦକ୍ଷତା ଅର୍ଜନ କରିଥାଏ । ତେଣୁ, ଏହି

ପ୍ରଭାବଶାଳୀ ମାଧ୍ୟମକୁ ଗ୍ରହଣ କରି ପାଠକର ଅତି ନିକଟକୁ ଘୁଞ୍ଚି ଆସିବା ପାଇଁ କେତେକ ଲେଖକ ଉଦ୍ୟମ କରିଥାନ୍ତି । ଏହି ଢଗକୁ ପ୍ରୟୋଗ କରିବା ଦ୍ୱାରା ତାଙ୍କର ପରିବେଷଣ ଭଙ୍ଗୀ କେବଳ ପ୍ରଭାବଶାଳୀ ହୁଏନାହିଁ, ଅଧିକନ୍ତୁ ସେହି ଦେଶର ପରଂପରା, ଚାଲିଚଳଣି ଏବଂ ସାଂସ୍କୃତିକ ପଦ୍ଧତି ମଧ ପାଠକ ନିକଟରେ ଉପସ୍ଥାପିତ ହୋଇଯାଏ । ସୁତରାଂ ଗଳ୍ପ, ଉପନ୍ୟାସ, ନାଟକ, ଜୀବନୀ, ଭ୍ରମଣକାହାଣୀ ମାନଙ୍କରେ ଏହାର ପ୍ରୟୋଗ ଆଦୃତ ହୁଏ ।

ବିଶେଷତଃ, 'ଗୀତି କବିତା' ଗୁଡ଼ିକରେ (ପଲ୍ଲୀଗୀତ ବା ଆଞ୍ଚଳିକ ଗୀତ) ଗୀତିକାରମାନେ ଏହି ଢଗ-ଢମାଳିର ବହୁ ପରିମାଣରେ ସାହାଯ୍ୟ ଗ୍ରହଣ କରିଥାନ୍ତି ।

ସମ୍ବାଦପତ୍ରର 'ସଂପାଦକୀୟ'ର ଶୀର୍ଷକରେ ବା ମଧ୍ୟଭାଗରେ ଢଗ-ଢମାଳି ମାନ ବ୍ୟବହାର ହେଉଥିବାର ଲକ୍ଷ୍ୟ କରାଯାଏ । କାରଣ ଯେଉଁ କଥା ପ୍ରକାଶ କରିବା ପାଇଁ ଦୀର୍ଘ ସ୍ଥାନ କାବ୍ୟାଖ୍ୟାନ ଆବଶ୍ୟକ କରେ ତାହା କେତୋଟି ମାତ୍ର ସ୍ୱଳ୍ପ ଶବ୍ଦରେ ପ୍ରକାଶ ପାଇଥାଏ । ଏହା ମନର ଚିନ୍ତାକୁ ପ୍ରକାଶ କରିବା ପାଇଁ କେବଳ ସଂକ୍ଷିପ୍ତତମ ମାଧ୍ୟମ ନୁହେଁ । ଏହି କଥାର ଯେଉଁ ପକ୍ଷାନ୍ତରରେ ଇଂଗିତ ଥାଏ, ତାହା ମଧ ଏଥିରେ ପ୍ରକାଶିତ ହୋଇଥାଏ । ଅତଏବ୍, ଶିକ୍ଷାର ସୁପ୍ରସାର ହେଲେ ମଧ ସହର ପରେ ସହର ସୃଷ୍ଟି ହୋଇ ସଦୃଶ୍ୟ ଅଟ୍ଟାଳିକାମାନ ସୃଷ୍ଟି ହେଲେ ମଧ ପୁରପଲ୍ଲୀର ଲୋକମାନଙ୍କ ମୁଖରେ ପ୍ରଚଳିତ ଢଗ-ଢମାଳିର ବିଲୟ ନାହିଁ । ଏହା କ୍ରମେ କ୍ରମେ ଲିଖିତ ସାହିତ୍ୟରେ ଯେପରି ଆସ୍ଥା ଜମାଇ ବସିଲାଣି, ଏଥିରୁ ଏହା ଯେ ଏକ ଶକ୍ତିଶାଳୀ ମାଧ୍ୟମ ତାହାର ପ୍ରମାଣ ମିଳେ । ଏଣୁ ପୁରପଲ୍ଲୀର ଏହି ଗୁପ୍ତ ସଂପଦକୁ ସଂଗ୍ରହ କରିବା ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଯେଉଁ ଗବେଷଣାତ୍ମକ ଯୋଜନା ଆରମ୍ଭ ହୋଇଛି, ତାହା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ।



ମହାଭାରତର ଚରିତ୍ର ପାଣ୍ଡବମାନଙ୍କ କଥା ମଧ୍ୟ ଏହି ଡଗ-ଡମାଳିରେ ସ୍ଥାନ ପାଇଅଛି । ଅବଶ୍ୟ ଏହାର ଅର୍ଥର ପ୍ରସଙ୍ଗ ଭିନ୍ନ ।

"ପାଁଡବର୍ କାଏଁ ହଲ୍ ଧାନ୍
ପାଁଡବ ବୁଲେ ଗାଁ ଗାଁ ।"

ଅର୍ଥାତ୍ - ଯାହାର କିଛି ନାହିଁ, ତାହାର କୌଣସିଥିରେ ଚିନ୍ତା ନଥାଏ, ଏହି ଡଗଟି ଆବୃତ୍ତି କଲାବେଳେ ମହାଭାରତର ପଞ୍ଚୁପାଣ୍ଡବଙ୍କର ଅଜ୍ଞାତବାସ କଥା ଶ୍ରୋତାର ସ୍ମୃତିକୁ ମନ୍ଥିତ କରିଥାଏ ।

କପାକୁ ସାଇତି କରି ରଖି ପାରିଲେ ତାହା ଯେ ଏକ ଲାଭଜନକ ଫସଲ, ଏହା ଏକ ଡଗରୁ ଜଣାଯାଏ -

"କପା ଗଁଠେଇ ଥିଲେଁ କଉଡ଼ି ।"

ଏହି ଚାଷ ଯେ ଆଖୁଚାଷ ଠାରୁ ଲାଭଜନକ ତାହାର ସୂଚନା ଅନ୍ୟଏକ ଡଗରୁ ମିଳିଥାଏ-

"କୁସେର ଜଗାସି ଚିକିରି ପୋ
କପା ଜଗାସି ବାପର ପୋ ।"

ଭୋଦୁଅ ମାସରେ ଅନେକ ଚାଷୀ ଦରିଦ୍ର ହୋଇଯାଇଥାନ୍ତି । କାରଣ ସେତେବେଳେ ଅମଳ କରିବା ପାଇଁ ଧାନକୁ ଜମା ନଥାଏ । ଅର୍ଥାତ୍ ଭୋଦୁଅ ମାସରେ ଲୋକମାନେ ଅମଳ କରି ନଥାନ୍ତି ।

"ଭୁଦୋଁ ମାସେଁ କୁଦୋଲିଆ,
ଫଟୋ ଘରେଁ ତାଲା ଦିଆ ।"

ଏକପ୍ରକାର ତୃଣ 'ସମଁନା' କୃଷିକ୍ଷେତ୍ରକୁ ନଷ୍ଟ କରି ଦେଇ ତାହାର ଉତ୍ପାଦିକା ଶକ୍ତି ନଷ୍ଟ କରିଦିଏ । ଏହା ଅନ୍ୟ ଏକ ଡଗରେ ପ୍ରତିଫଳିତ ହୋଇଅଛି ।

"ଗାଁ ବାମ୍ହନାଁ
ଖେଁତ୍ ସମଁନା
ଘର୍ ଧମ୍ନା ହେଲେ ନାଶ୍ ଯାଏସି ।"

ଡଗ-ଡମାଳି ଲୋକମୁଖରେ ସୁପ୍ରଚଳିତ ତଥା ସୁପ୍ରତିଷ୍ଠିତ ହୋଇଥିବାରୁ ଏହାର ପ୍ରଭାବ ସାଧାରଣଙ୍କ ମନରେ ଖୁବ୍ ପ୍ରଭାବ ପକାଇ ପାରିବାର ଦକ୍ଷତା ଅର୍ଜନ କରିଥାଏ । ତେଣୁ, ଏହି

ପ୍ରଭାବଶାଳୀ ମାଧ୍ୟମକୁ ଗ୍ରହଣ କରି ପାଠକର ଅତି ନିକଟକୁ ଘୁଞ୍ଚି ଆସିବା ପାଇଁ କେତେକ ଲେଖକ ଉଦ୍ୟମ କରିଥାନ୍ତି । ଏହି ଢଗକୁ ପ୍ରୟୋଗ କରିବା ଦ୍ୱାରା ତାଙ୍କର ପରିବେଷଣ ଭଙ୍ଗୀ କେବଳ ପ୍ରଭାବଶାଳୀ ହୁଏନାହିଁ, ଅଧିକନ୍ତୁ ସେହି ଦେଶର ପରଂପରା, ଚାଲିଚଳଣି ଏବଂ ସାଂସ୍କୃତିକ ପକ୍ଷଟି ମଧ୍ୟ ପାଠକ ନିକଟରେ ଉପସ୍ଥାପିତ ହୋଇଯାଏ । ସୁତରାଂ ଗଳ୍ପ, ଉପନ୍ୟାସ, ନାଟକ, ଜୀବନୀ, ଭ୍ରମଣକାହାଣୀ ମାନଙ୍କରେ ଏହାର ପ୍ରୟୋଗ ଆଦୃତ ହୁଏ ।

ବିଶେଷତଃ, 'ଗୀତି କବିତା' ଗୁଡ଼ିକରେ (ପଲ୍ଲୀଗୀତ ବା ଆଞ୍ଚଳିକ ଗୀତ) ଗୀତିକାରମାନେ ଏହି ଢଗ-ଢମାଳିର ବହୁ ପରିମାଣରେ ସାହାଯ୍ୟ ଗ୍ରହଣ କରିଥାନ୍ତି ।

ସମ୍ବାଦପତ୍ରର 'ସଂପାଦକୀୟ'ର ଶୀର୍ଷକରେ ବା ମଧ୍ୟଭାଗରେ ଢଗ-ଢମାଳି ମାନ ବ୍ୟବହାର ହେଉଥିବାର ଲକ୍ଷ୍ୟ କରାଯାଏ । କାରଣ ଯେଉଁ କଥା ପ୍ରକାଶ କରିବା ପାଇଁ ଦୀର୍ଘ ସ୍ଥାନ କାବ୍ୟାଖ୍ୟାନ ଆବଶ୍ୟକ କରେ ତାହା କେତୋଟି ମାତ୍ର ସ୍ୱଳ୍ପ ଶବ୍ଦରେ ପ୍ରକାଶ ପାଇଥାଏ । ଏହା ମନର ଚିନ୍ତାକୁ ପ୍ରକାଶ କରିବା ପାଇଁ କେବଳ ସଂକ୍ଷିପ୍ତତମ ମାଧ୍ୟମ ନୁହେଁ । ଏହି କଥାର ଯେଉଁ ପକ୍ଷାନ୍ତରରେ ଇଂଗିତ ଥାଏ, ତାହା ମଧ୍ୟ ଏଥିରେ ପ୍ରକାଶିତ ହୋଇଥାଏ । ଅତଏବ୍, ଶିକ୍ଷାର ସୁପ୍ରସାର ହେଲେ ମଧ୍ୟ ସହର ପରେ ସହର ସୃଷ୍ଟି ହୋଇ ସଦୃଶ୍ୟ ଅଟ୍ଟାଳିକାମାନ ସୃଷ୍ଟି ହେଲେ ମଧ୍ୟ ପୁରପଲ୍ଲୀର ଲୋକମାନଙ୍କ ମୁଖରେ ପ୍ରଚଳିତ ଢଗ-ଢମାଳିର ବିଲୟ ନାହିଁ । ଏହା କ୍ରମେ କ୍ରମେ ଲିଖିତ ସାହିତ୍ୟରେ ଯେପରି ଆସ୍ଥା ଜମାଇ ବସିଲାଣି, ଏଥିରୁ ଏହା ଯେ ଏକ ଶକ୍ତିଶାଳୀ ମାଧ୍ୟମ ତାହାର ପ୍ରମାଣ ମିଳେ । ଏଣୁ ପୁରପଲ୍ଲୀର ଏହି ଗୁପ୍ତ ସଂପଦକୁ ସଂଗ୍ରହ କରିବା ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଯେଉଁ ଗବେଷଣାତ୍ମକ ଯୋଜନା ଆରମ୍ଭ ହୋଇଛି, ତାହା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ।



# ଲୋକନାଟ୍ୟର ବୈଶିଷ୍ଟ୍ୟ

ନିମାଇଁ ଚରଣ ପଣ୍ଡା

ଲୋକଗୀତ, ଲୋକକଥା, ଡଗ-ଡମାଳି ବା ପ୍ରବାଦ -ପ୍ରବଚନ, ନାଁ ଦିଆ, ଧନ୍ଦା ବା ବଖାନି କିମ୍ବା ପ୍ରହେଳିକା, ଗାଥା - ଗୀତିକା ପ୍ରଭୃତି ଲୋକସାହିତ୍ୟର ବିଭିନ୍ନ ବିଭାଗ ଗୁଡ଼ିକ ମଧ୍ୟରେ ଲୋକନାଟ୍ୟର ସ୍ଥାନ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଲୋକନାଟ୍ୟ କହିଲେ ଓଡ଼ିଶାରେ ସାଧାରଣତଃ ଯାତ୍ରା, ଲୀଳା, ସୁଆଙ୍ଗ, ଦଣ୍ଡ ନାଟ, ପାଲା, ଦାସକାଠିଆ ପ୍ରଭୃତି ଲୋକଜୀବନର ସୁସ୍ଥ ମନୋରଞ୍ଜନକାରୀ ଲୋକକଳାକୁ ହିଁ ବୁଝାଇଥାଏ । ପୃଥିବୀର ପ୍ରତ୍ୟେକ ଅଞ୍ଚଳର ଧର୍ମ ଚେତନା ସହିତ ଏହି ଲୋକକଳା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ପଶ୍ଚିମ ଓଡ଼ିଶାର ଧର୍ମଚେତନା ତଥା ଲୋକଜୀବନ ସହିତ ଏହି ଅଞ୍ଚଳର ପାରଂପରିକ ଲୋକନାଟ୍ୟ କଳା ମଧ୍ୟ ଜଡ଼ିତ ଥିବା ସ୍ୱାଭାବିକ । ତେବେ ଉକ୍ତ ଲୋକକଳାର ବିଶେଷତ୍ୱ ଉପରେ କିଞ୍ଚିତ ଆଲୋକପାତ କରିବା ହେଉଛି ଏହି ପ୍ରବନ୍ଧର ଉଦ୍ଦେଶ୍ୟ । ଯେଉଁଥିରୁ କି ଏହା ପଶ୍ଚିମ ଓଡ଼ିଶାର ଲୋକଧର୍ମ ବା ଜୀବନ ସହିତ କିପରି ଓତଃପ୍ରୋତ ଭାବରେ ସଂପୃକ୍ତ ତାହା ସ୍ପଷ୍ଟ ହୋଇଯିବ ।

ଲୋକ ସାହିତ୍ୟର ସଂଜ୍ଞାନୁଯାୟୀ ନିର୍ଦ୍ଦିଷ୍ଟ କୌଣସି ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଲିଖିତ ସାହିତ୍ୟକୁ (ବିଶେଷତଃ ନାଟକକୁ) ଲୋକ-ସାହିତ୍ୟ-ପରିସର ଭୁକ୍ତ କରାଯାଇ ନପାରେ ବୋଲି କେତେକ ଲୋକ ସାହିତ୍ୟିକ ଯୁକ୍ତି କରନ୍ତି ଏବଂ ଆଉ କେତେକ ଏହି ଯୁକ୍ତିର ବିରୋଧ ମଧ୍ୟ କରନ୍ତି । କିନ୍ତୁ ଖ୍ରୀ:ପୂ: ତୃତୀୟ ଶତାବ୍ଦୀରୁ ଭରତ ମୁନି ଲୋକନାଟ୍ୟର ସଂଜ୍ଞା ନିରୂପଣ କରି ସାରିଛନ୍ତି (୧) ଏବଂ ତଦନୁଯାୟୀ ଲୋକନାଟ୍ୟର ଅସ୍ତିତ୍ୱ ଉପରେ କୌଣସି ବାଦାନୁବାଦ ରହିବା ଅନୁଚିତ । ଲିଖିତ ହେଲେହେଁ କେତେକ ଦୃଷ୍ଟିରୁ ଏହା ଶିଷ୍ଟ ନାଟକଠାରୁ ସଂପୂର୍ଣ୍ଣ ଭିନ୍ନ ।

ଲୋକନାଟ୍ୟ ଓ ଶିଷ୍ଟନାଟ୍ୟର ପାର୍ଥକ୍ୟ ସୂଚାଇ ଶ୍ରୀଯୁକ୍ତ ଜଗଦିଶ ଚନ୍ଦ୍ର ମାଥୁର ଏ ସଂପର୍କରେ କହନ୍ତି ଯେ, ଲୋକମଞ୍ଚ ଲୋକସମାଜ ରୂପକ ଶରୀରର ଅଂଶ ବିଶେଷ । ନାଗରିକ

---

୧. ନାଟ୍ୟ ଶାସ୍ତ୍ରମ୍, ଭରତ ମୁନି; ୨୬ ଅଧ୍ୟାୟ, ୧୧୭ ଶ୍ଳୋକ ଦ୍ରଷ୍ଟବ୍ୟ ।

ବା ସାହିତ୍ୟିକ ରଙ୍ଗମଞ୍ଚ ଏହାର ବହିରାବଣର ପୋଷାକ ମାତ୍ର । ଲୋକନାଟକରେ ଜୀବନର ସ୍ୱାଭାବିକ ତଥା ଅନାୟାସ ଅଭିବ୍ୟକ୍ତିର ପରିପ୍ରକାଶ ହୋଇଥାଏ, କିନ୍ତୁ ସାହିତ୍ୟିକ ନାଟକରେ କଳାତ୍ମକ : ତଥା ଚେଷ୍ଟାକୃତ ଅଭିବ୍ୟକ୍ତି ପ୍ରକାଶ ପାଇଥାଏ । (୨) ତେବେ ସମସ୍ତଙ୍କ ମତାମତର ନିର୍ଯ୍ୟାସ ସ୍ୱରୂପ ଏତିକି କୁହାଯାଇପାରେ ଯେ, ସମାଜର ଚଳଣି, ପରଂପରା, ଲୋକବିଶ୍ୱାସ, ସାଂସ୍କୃତିକ ପୂଜାପାର୍ବଣର ଚିତ୍ର, ଲୋକମାନଙ୍କର ଦୈନନ୍ଦିନ ଜୀବନର ଅଭିବ୍ୟକ୍ତି, ଲୋକଜୀବନ ସହିତ ସଂପୃକ୍ତ ଉପାସ୍ୟ ଦେବାଦେବୀଙ୍କ ସମାବେଶ ପ୍ରଭୃତି ଲୋକଧର୍ମୀ ଚିନ୍ତାଧାରାକୁ ଗୀତ-ନୃତ୍ୟ ଓ ଅଭିନୟର ତ୍ରିବେଣୀ ସମାହାରରେ ଲୋକ ଭାଷାରେ ଯାହା ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଏବଂ ନିର୍ଦ୍ଦିଷ୍ଟ ଅବସରରେ ଲୋକାନୁରଞ୍ଜନ ନିମିତ୍ତ ପରିବେଶିତ ହୁଏ ତାହାହିଁ ଲୋକନାଟ୍ୟ ପଦବାଚ୍ୟ ।

ଭାରତୀୟ ନାଟ୍ୟ ସାହିତ୍ୟ ଜଗତରେ ଲୋକନାଟ୍ୟ ପରଂପରା ଖୁବ୍ ପ୍ରାଚୀନ । ଅନ୍ତତଃ ଖ୍ରୀ:ପୂ. ତୃତୀୟ ଶତାବ୍ଦୀ ଠାରୁ ଏହାର ଐତିହାସିକ କାଳ ନିରୂପଣ କରାଯାଇପାରେ । ପରବର୍ତ୍ତୀ କାଳରେ ପୁରାଣ ସାହିତ୍ୟରୁ ବିଷୟବସ୍ତୁ ଗ୍ରହଣ କରି ବିଭିନ୍ନ ସମୟରେ ପର୍ଯ୍ୟାୟକ୍ରମେ ଭାରତର ପ୍ରତ୍ୟେକ ଅଞ୍ଚଳରେ ଆଞ୍ଚଳିକ ବୈଶିଷ୍ଟ୍ୟକୁ ନେଇ ଊଣା ଅଧିକେ ଏହି ଲୋକକଳାର ପରଂପରା ଗଢ଼ି ଆସିଛି । ପଶ୍ଚିମ ଓଡିଶାରେ ପ୍ରଚଳିତ ଯାତ୍ରା, ଲୀଳା, ସୁଆଙ୍ଗ (୩) ପ୍ରଭୃତି ହେଉଛି ଲୋକନାଟ୍ୟର ପ୍ରାଚୀନ ରୂପ ଏବଂ ଏଗୁଡିକୁହିଁ ଉପଜୀବ୍ୟ କରି ନିମ୍ନରେ ଲୋକନାଟ୍ୟର କଥାବସ୍ତୁ, ଭାଷା, ଲୋକଧର୍ମିତା, ଚରିତ୍ର ଓ ଦର୍ଶକ ସମ୍ବନ୍ଧ, ରଙ୍ଗମଞ୍ଚ ପରିକଳ୍ପନା, ପ୍ରସାଧନ ପ୍ରକ୍ରିୟା, ସଂଗୀତ ବା ବାଦ୍ୟଯନ୍ତ୍ର ବ୍ୟବସ୍ଥା, ନେପଥ୍ୟ ବ୍ୟବସ୍ଥା, ପ୍ରାରମ୍ଭ ଓ ପରିସମାପ୍ତିରୀତି ପ୍ରଭୃତି ବିଶେଷତ୍ୱ ଉପରେ କିଞ୍ଚିତ୍ ଆଲୋକପାତ କରାଯିବ ।

ପଶ୍ଚିମ ଓଡିଶାର ଲୋକନାଟ୍ୟଗୁଡିକର ମୁଖ୍ୟ କଥାବସ୍ତୁ ସାଧାରଣତଃ ରାମାୟଣ, ମହାଭାରତ, ଶ୍ରୀମଦ୍‌ଭାଗବତ, ହରିବଂଶ ପ୍ରଭୃତି ପୁରାଣରୁ ଗୃହୀତ ହେଉଥିଲେହେଁ ଭୌଗୋଳିକ ଚରିତ୍ରଗୁଡିକ ମାଧ୍ୟମରେ ଦୈନନ୍ଦିନ ଲୋକଜୀବନର ଘଟଣା ଗୁଡିକୁ ମଧ୍ୟ ଉକ୍ତ କଥାବସ୍ତୁରେ ସଂଯୋଜିତ କରାଯାଇଥାଏ । ଉଦାହରଣ ସ୍ୱରୂପ 'ଷୋହଳ ସୁଆଙ୍ଗ' ବା 'ଦଣ୍ଡନାଟ' ର ଚଡେୟା ଚଡେୟାଣୀ, ବୀଣାକାର-ବୀଣାକାରେଣୀ, ଦିଅର-ଭାଉଜ, ଆଈ-ନାତି ପ୍ରଭୃତି ଚରିତ୍ରଗୁଡିକ

---

୨. ସମ୍ମେଳନ ପତ୍ରିକା - ଲୋକସଂସ୍କୃତି ବିଶେଷାଙ୍କ, ପୃ. ୨୫୦ଷ୍ଠା, ସାହିତ୍ୟ ସମ୍ମେଳନ, ପ୍ରୟାଗ, ସମ୍ବତ୍ ୨୦୧୦ ।

୩. ପଶ୍ଚିମ ଓଡ଼ିଶାର ଲୋକଧର୍ମୀ ନାଟ୍ୟ ପରଂପରାର ବିକାଶଧାରା : ସଂକ୍ଷିପ୍ତ ବିବେଚନା; (ନିମାଇଁ ଚରଣ ପଣ୍ଡା); ବସୁନ୍ଧରା, ଜୁଲାଇ ୧୯୮୨ ।

ବାସ୍ତବ ଜୀବନର କଥାହିଁ ଅଭିବ୍ୟକ୍ତ କରିଥାନ୍ତି ଯାହା ଭିତରେ ଦର୍ଶକ ନିଜ ଚିତ୍ରକୁ ସ୍ପଷ୍ଟ ଦେଖିପାରେ । ସେହିପରି 'ଶବରୀଲୀଳା'ରେ କୃଷ୍ଣଲୀଳାର ପ୍ରସଙ୍ଗକୁ ଧରି ଶବର-ଶବରୀ ତାଙ୍କ ସମାଜର ବାସ୍ତବ ଦାମ୍ପତ୍ୟ ଜୀବନର ସୁଖ-ଦୁଃଖ, ହସ-କାନ୍ଦ, ଆଶା-ନିରାଶାର କଥାହିଁ ଦର୍ଶକ ସମ୍ମୁଖରେ ଉପସ୍ଥାପନ କରନ୍ତି । ଫଳରେ ଉଭୟ ପୌରାଣିକ ଓ ଲୌକିକ କଥାବସ୍ତୁ ବା ଘଟଣାର ଅପୂର୍ବ ସମନ୍ୱୟରେ ଲୋକନାଟ୍ୟ ହୁଏ ରସସିକ୍ତ, ଉପଭୋଗ୍ୟ; ଦର୍ଶକ ପାଏ ଅମାପ ଆନନ୍ଦ ଓ ପରମ ତୃପ୍ତି । ଲୋକନାଟ୍ୟର କଥାବସ୍ତୁର ଏକ ବିଶେଷତ୍ୱ ହେଉଛି ଏହାର ପ୍ରଥମାର୍ଦ୍ଧ ଯେତିକି ମନ୍ଥର, ଶେଷାର୍ଦ୍ଧ ସେତିକି ଦ୍ରୁତ, ଯେତିକି ସରଳ ତଦପେକ୍ଷା ଅଧିକ ସୁଖବୋଧ । ମାତ୍ର ଦର୍ଶକ କଥାବସ୍ତୁରେ ଚମତ୍କାର ପୂର୍ଣ୍ଣ ଅଂଶ ବା ଘଟଣାର କୌତୂହଳ ଉଦ୍‌ଘାଟନ ପ୍ରତି ଆଶା ନ ରଖି ପୂର୍ବ ପରିଚିତ କଥାବସ୍ତୁ ପ୍ରତି ଅଧିକ ଆଗ୍ରହୀ ଯୋଗୁଁ ମନୋରଞ୍ଜନ ରସାନୁଭୂତି ଦ୍ୱାରା ହୋଇଥାଏ ।(୪)

ଲୋକନାଟ୍ୟର ଭାଷା-ଶୈଳୀ ସାଧାରଣତଃ ପଦ୍ୟାତ୍ମକ । ଏହାର କାରଣ ନିର୍ଦ୍ଦେଶ କରିବାକୁ ଯାଇ ଜନୈକ ବିଦ୍ୱାନ୍ କହନ୍ତି; ସାମୂହିକ ଅଭିବ୍ୟକ୍ତିର ସାଧନ ହେଉଛି ଲୋକନାଟ୍ୟ । ପଦ୍ୟାତ୍ମକ ସଂଳାପଗୁଡ଼ିକ ଦ୍ୱାରା ସମଷ୍ଟିର କଳ୍ପନା-ଶକ୍ତି ପ୍ରସୂତ ଭାବଗୁଡ଼ିକୁ ଗ୍ରହଣ କରିବାରେ ଲୋକନାଟ୍ୟର ସାମର୍ଥ୍ୟ ରହିଥାଏ । ତେଣୁ ଲୋକନାଟ୍ୟରେ ଗଦ୍ୟମୟୀ ଭାଷାର କ୍ଷୀଣ ପ୍ରଭାବ ପଡ଼ିବା ସ୍ୱାଭାବିକ । କେବଳ ଦ୍ୱାରୀ, ବିଦୂଷକ, ଭାଟ ଶ୍ରେଣୀର ଚରିତ୍ରମାନଙ୍କ ଦ୍ୱାରା ନିଜଇଚ୍ଛା ମୁତାବକ ସପ୍ରସଙ୍ଗ କିଛି କିଛି ଗଦ୍ୟାତ୍ମକ ସଂଳାପ ବ୍ୟବହୃତ ହୋଇଥାଏ । (୫) ଲୋକନାଟ୍ୟର ଭାଷା କାବ୍ୟମୟୀ ହେବାର ଆଉ ଏକ କାରଣ ହେଉଛି ଯନ୍ତ୍ର ସଙ୍ଗୀତର ମୂର୍ଚ୍ଛନା, ଗୀତର ଲାଳିତ୍ୟ ସୁକଣ୍ଠ ଗାୟକ ବା ଅଭିନେତାର ସ୍ୱର ଲହରୀ ଦର୍ଶକ ପ୍ରାଣରେ ରସ ସଞ୍ଚାର ପୂର୍ବକ ତାକୁ ସହୃଦୟ କରିବା । ପୁନଶ୍ଚ ସ୍ଥାନୀୟ କଥିତ ଭାଷା ବା ଲୋକଭାଷା ଦ୍ୱାରା ଯଥେଷ୍ଟ ଭାବରେ ପ୍ରଭାବିତ ଶ୍ରୁତି ସୁଖକର ଏହି ପଦ୍ୟାତ୍ମକ 'ବାଚକ' । ଦର୍ଶକର ସ୍ମୃତିରେ ଲିପିବଦ୍ଧ ହୋଇ ରହିଯାଏ । ସ୍ଥାନୀୟ ଭାଷାର ଶବ୍ଦ, 'ଢଗ-ଢମାଳି' 'ଛଟା' ରୂଢ଼ିପ୍ରୟୋଗ ଗୁଡ଼ିକ ବ୍ୟବହୃତ ହେବାଦ୍ୱାରା ଏ ଧରଣର ସଂଳାପ ଦର୍ଶକର ମନ-ପ୍ରାଣକୁ ଆକୃଷ୍ଟ କରିବା ସହଜ ହୋଇଥାଏ । ଲକ୍ଷ୍ମୀପୁରାଣ ସୁଆଙ୍ଗ, ବା ଷୋହଳସୁଆଙ୍ଗ ବା ଦଣ୍ଡନାଟ କିମ୍ବା ରାମଲୀଳା, କୃଷ୍ଣଲୀଳା, ଭାରତଲୀଳା ପ୍ରଭୃତି ଲୋକନାଟ୍ୟରେ ଉଚ୍ଚଶ୍ରେଣୀୟ ଚରିତ୍ର ଗୁଡ଼ିକର ସଂଳାପର ଭାଷା ଅପେକ୍ଷାକୃତ ମାର୍ଜିତ ହୋଇଥିଲେହେଁ ସଂପୂର୍ଣ୍ଣ ଭାବରେ କଥିତ ଭାଷା ବର୍ଜିତ ନୁହେଁ । ମାତ୍ର ନିମ୍ନଶ୍ରେଣୀୟ ଚରିତ୍ର

୪ . ଲୋକ ରଙ୍ଗମଞ୍ଚକା ରୂପ ଔର ସଙ୍ଗଠନ; ଶ୍ରୀ ଜଗଦିଶ ଚନ୍ଦ୍ର ମାଥୁର; ସମ୍ମେଳନ ପତ୍ରିକା - ଲୋକସଂସ୍କୃତି ଅଙ୍କ; ପୃ ୩୫୭ଷ୍ଠା ।

୫ . ଲୋକଧର୍ମୀ ନାଟ୍ୟ ପରମ୍ପରା, ଶ୍ୟାମ ପରମାର୍, ପୃ ୭ ଷ୍ଠା

ଯେପରିକି ଶ୍ରୀୟା ଚାଣ୍ଡାଲୁଣୀ, ଚଢେୟା-ଚଢେୟାଣୀ, ସାଧାରଣ ପ୍ରଜା ଏବଂ ସର୍ବୋପରି ଦ୍ୱାରୀ ଦରୁଆନ, ଚୌକିଦାର ପ୍ରଭୃତି ଚରିତ୍ରଗୁଡିକର ଭାଷା ପ୍ରାୟତଃ କଥିତ ଭାଷା ।

ଲୋକଧର୍ମିତା ହେଉଛି ଲୋକନାଟ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ । ଲୋକନାଟ୍ୟର କଥାବସ୍ତୁ ଊଣା ଅଧିକେ ଜଣାଥିଲେ ସୁଦ୍ଧା ଲୋକଧର୍ମୀ ଉପାଦାନଗୁଡ଼ିକ ଯୋଗୁଁ ଏହା ପ୍ରତିବର୍ଷ ମାସାଧିକ କାଳ ଅଭିନୀତ ହୋଇ ସୁଦ୍ଧା ଲୋକପ୍ରିୟତା ହରାଇ ନଥାଏ । ପଶ୍ଚିମ ଓଡିଶାରେ ପ୍ରଚଳିତ ଲୋକପ୍ରିୟ ଯାତ୍ରା, ସୁଆଙ୍ଗ, ଲୀଳା ପ୍ରଭୃତି ଲୋକନାଟ୍ୟ ଗୁଡ଼ିକରୁ ଉକ୍ତ ଲୋକଧର୍ମିତା ବିଚାର କରାଯାଇପାରେ । ସମ୍ବଲପୁର ଜିଲ୍ଲାର ବରଗଡରେ ପ୍ରତିବର୍ଷ ବିଖ୍ୟାତ ଧନୁଯାତ୍ରା ପୌଷ ଶୁକ୍ଳ ଶେଷ ନଅଦିନ ଧରି ଆଡମ୍ବର ପୂର୍ଣ୍ଣ ପରିବେଶ ତଥା ଲକ୍ଷାଧିକ ଦର୍ଶକଙ୍କ ସମାବେଶରେ ସଂପନ୍ନ ହୁଏ । ବରଗଡ ସହର 'ମଥୁରା', ଅମ୍ବାପାଲି ଗ୍ରାମ 'ଗୋପ' ଏବଂ ଉଭୟ ସ୍ଥାନର ମଝିରେ ପ୍ରବାହିତା ଜୀରାନଦୀ ହୁଏ 'ଯମୁନା', ଆଗନ୍ତୁକ ଦର୍ଶକମାନେ ଯାତ୍ରା ସମୟ ଭିତରେ ନିଜ ନିଜର ଅସ୍ତିତ୍ୱ ଭୁଲିଯାଆନ୍ତି । ନିଜ ନିଜକୁ ଯେପରି ମଥୁରାର ପ୍ରଜା ମନେକରି କଂସରାଜାଙ୍କ ସମ୍ମୁଖରେ ସୁଖ-ଦୁଃଖ କଥା ଗୁହାରୀ କରନ୍ତି । ରାଜା ଆଦେଶରେ ଦୋଷୀହୁଏ ଦଣ୍ଡିତ । ରୋଗୀ, ଦୁଃଖୀ, ନିରାଶ୍ରୟୀ କଂସରାଜାଙ୍କ ଅଭୟାଶ୍ରିତ ହୁଅନ୍ତି । କୁଶଳୀ କଳାକାର, ପଣ୍ଡିତ ତଥା ସୁଯୋଗ ବିବେଚିତ ବରଗଡ ବା ମଥୁରାର ପ୍ରଜାମାନେ ହୁଅନ୍ତି ପୁରସ୍କୃତ । ପକ୍ଷାନ୍ତରରେ ଲାଭଖୋରୀ ବ୍ୟବସାୟୀ, ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀ ହୁଅନ୍ତି ଦଣ୍ଡିତ । ପୂର୍ବରୁ 'ରାଜାଜ୍ଞା ପାଇବା ପରେହିଁ କେହି ବହିରାଗତ ଆଗନ୍ତୁକ ମଥୁରାକୁ ପ୍ରବେଶ କରନ୍ତି । ସତେ ଯେପରିକି ସେ ଦିନାକେତେ ବରଗଡ ବା ମଥୁରା କଂସରାଜାର ଶାସନାଧୀନ, ଯଦିଓ ପ୍ରତ୍ୟକ୍ଷ ଶାସନାଧିକାରୀ ଥାଆନ୍ତି ସ୍ଥାନୀୟ, ସରକାର ବା ପ୍ରଶାସକ । ପୁନଶ୍ଚ ଚିର ପରିଚିତ ଜୀରାନଦୀ ଯମୁନାରେ ପରିଣତ ହେବା ପରେ ପ୍ରତ୍ୟେହ ଭକ୍ତିପ୍ରାଣ ନରନାରୀ ଜୀରାନଦୀ ଜଳରେ ଆପଣା ଗାତ୍ରକୁ କରନ୍ତି ପବିତ୍ର । ଜୀବନକୁ କରନ୍ତି ଧନ୍ୟ । ରାମ-କୃଷ୍ଣ ବେଶରେ ଭୂଷିତ ସ୍ଥାନୀୟ ଦୁଇଜଣ ବାଳକଙ୍କ ଅକ୍ରୁର ସହିତ ଅମ୍ବାପାଲିରୁ ବରଗଡ ବା ଗୋପରୁ ମଥୁରାକୁ ଆଗମନ ଦର୍ଶକ ପ୍ରାଣରେ ଆଣିଦିଏ ବାସ୍ତବ ଅକ୍ରୁର ଗମନର ଭାବନା । ଘରେ ଘରେ ରାମକୃଷ୍ଣଙ୍କ ପୂଜାର୍ଚ୍ଚନା ଚାଲେ । ଭକ୍ତିପୁତ ଚିତ୍ତରେ ପୁରନାରୀମାନେ ଆପଣା ଆପଣା ଦୁଆର ସମ୍ମୁଖରେ ପୂର୍ଣ୍ଣକୁମ୍ଭ, ଆଳତି ସଜାଡି ତଥା ହୁଳହୁଳି ଦେଇ ରାମକୃଷ୍ଣଙ୍କୁ ସ୍ୱାଗତ କରନ୍ତି । କିନ୍ତୁ କୌତୂହଳର ବିଷୟ ଯେ ଏତେବଡ ଯାତ୍ରା' ସଂପୂର୍ଣ୍ଣ ଭାବରେ ନାଟକୀୟ ରୀତିରେ ସଂପୂର୍ଣ୍ଣ ହେଉଥିଲେହେଁ ଯାତ୍ରା'ର କୌଣସି ଲିଖିତ ସ୍ୱରୂପ ନାହିଁ । ଚରିତ୍ର ବା ଦର୍ଶକ ଇଛାନୁଯାୟୀ ସପ୍ରସଙ୍ଗ ବାକ୍ୟାଳାପ କରିଥାନ୍ତି । ସୁତରାଂ ଲୋକନାଟ୍ୟର ସାର୍ଥକତା ବା ଲୋକନାଟ୍ୟରେ ଲୋକଧର୍ମିତା ଦୃଷ୍ଟିରୁ ବିଚାରକଲେ 'ଧନୁଯାତ୍ରା' ହେଉଛି ଏକ ପ୍ରକୃଷ୍ଟ ଉଦାହରଣ ।

ସେହିପରି କୃଷ୍ଣଲୀଳା ଓ ରାମଲୀଳା ସହିତ ଦର୍ଶକ ବା ଗ୍ରାମବାସୀଙ୍କ ଏକାତ୍ମତା ଏକାନ୍ତ ଭାବରେ ପ୍ରଣିଧାନଯୋଗ୍ୟ । ଉକ୍ତଲୀଳା ତଥା ସୁଆଙ୍ଗାଦିରେ ଗ୍ରାମର କୁଶଳୀ ଶିଳ୍ପୀ ଆବଶ୍ୟକୀୟ ସାଜସଜ୍ଜା କରେ । ଗ୍ରାମ୍ୟ ପୁରୋହିତ, ନାପିତ, ବଢ଼େଇ, କମାର, କଣ୍ଡରା, ଡମ ବା ପାଣ- ନିଜ ନିଜ କୌଳିକ ବୃତ୍ତି ଅନୁସାରେ ନାଟକର କାମ ତୁଲାଇବା ପାଇଁ କାହାରି ଆଦେଶ ବା ନିର୍ଦ୍ଦେଶକୁ ଅପେକ୍ଷା କରନ୍ତିନାହିଁ ।

କୃଷ୍ଣଲୀଳା, ରାମଲୀଳା ବା ଦଣ୍ଡନାଟ ଅନୁଷ୍ଠିତ ହେଉଥିବା ପର୍ଯ୍ୟନ୍ତ ଏଥିରେ ଅଂଶଗ୍ରହଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି କେତେକ କଠୋର ନିୟମ-ନିଷ୍ଠାରେ ଚଳିଥାଆନ୍ତି । ଲୀଳା ହେଉ ବା ଦଣ୍ଡନାଟ ହେଉ ଅଭିନୟ ପ୍ରଦର୍ଶନ ହେଉଥିବାଯାକ ପ୍ରତିଦିନ ଏମାନେ ଓଳିଏ ଖାଇ ହବିଷାର୍ଣ୍ଣ ପାଳନ କରନ୍ତି । କେବଳ ସେତିକି ନୁହେଁ, ଏହି ସମୟ ଭିତରେ ସେମାନଙ୍କୁ ସ୍ତ୍ରୀ ସହବାସ, ନିଶାଦ୍ରବ୍ୟ ସେବନ, ଏପରିକି ପାରିବାରିକ ଜୀବନ ଠାରୁ ଦୂରେଇ ରହିବା ପାଇଁ ହୋଇଥାଏ । ସାଧାରଣ ଜନତା ଏକଥା ବୁଝନ୍ତି ଏବଂ ସେ ଦିନାକେତେ ସେମାନଙ୍କୁ ସ୍ୱତନ୍ତ୍ର ଦୃଷ୍ଟିରେ ଦେଖନ୍ତି ।

ପଶ୍ଚିମ ଓଡିଶାର ଗ୍ରମାଞ୍ଚଳରେ ଉପରୋକ୍ତ ଲୋକନାଟ୍ୟ ଗୁଡିକ କେବଳ ମନୋରଞ୍ଜନ ସକାଶେ ଅନୁଷ୍ଠିତ ହୁଏ ସେପରି ନୁହେଁ, ଏହା ଲୋକଧର୍ମର ଏକ ଦିଗ ଭାବରେ ପବିତ୍ର ବାତାବରଣରେ ତଥା ଶୁଦ୍ଧପୂତ ଚିତ୍ତରେ ସମସ୍ତଙ୍କ ସକ୍ରିୟ ସହଯୋଗରେ ପାଳିତ ହୁଏ । କାରଣ ଲୀଳାଭିନୟ ହେଉଥିବା ସମୟ ଭିତରେ ପ୍ରତ୍ୟେକ ବ୍ୟକ୍ତି ନିଜ ନିଜର ବାସ୍ତବସତ୍ତାକୁ ଭୁଲିଯାଇ ଲୀଳା ବା ସୁଆଙ୍ଗ ସହିତ ନିଜ ନିଜକୁ ହଜାଇ ଦେଇଥାଆନ୍ତି । ଦୈନନ୍ଦିନ ଜୀବନ ଯାତ୍ରା ସହିତ ଲୀଳାଭିନୟର ଯାତ୍ରା ସମତାଳରେ ଚାଲିଥାଏ । ଲୀଳା ବା ସୁଆଙ୍ଗ ବର୍ଣ୍ଣିତ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ଉତ୍ସାହ ଓ ଉଦ୍ଦୀପନାର ସହିତ ମହା ଆଡମ୍ବରରେ ପାଳିତ ହୁଏ । 'ରାମଲୀଳା' ପ୍ରସଙ୍ଗରେ ପାଳିତ ହେଉଥିବା ସେହିପରି ଗୋଟିଏ ଦୁଇଟି ସାଂସ୍କୃତିକ ଅନୁଷ୍ଠାନ ସଂପର୍କରେ ଏଠାରେ ସୂଚନା ଦିଆଯାଇପାରେ । 'ସୀତା ବିବାହ' ଦିନ ଗ୍ରାମବାସୀଙ୍କ ଭିତରେ ଦୁଇଦଳ ହୋଇ 'ଦଶରଥ' ଓ 'ଜନକ' ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ବ୍ୟକ୍ତିଙ୍କୁ ସାହାଯ୍ୟ କରନ୍ତି । ସାମାଜିକ ଚଳଣି ଅନୁସାରେ 'ଜନକ' ହୋଇଥିବା ବ୍ୟକ୍ତି ନିଜର ବନ୍ଧୁ ବାନ୍ଧବଙ୍କୁ ନିମନ୍ତ୍ରଣ କରିଥାଏ । ଏପରିକି ବିବାହ ରୀତି ଅନୁସାରେ 'ଜନକ' ସାଜିଥିବା ବ୍ୟକ୍ତିର ଶ୍ୱଶୁର ଘରୁ ଝିଅ ବାହାଘରକୁ 'ମଉଳା ଭାର' ଆସେ । ବାହାଘର ଭୋଜିଭାତର ଅଧିକାଂଶ ଖର୍ଚ୍ଚ ଏହି 'ମଉଳା ଭାର' ତୁଲାଇଥାଏ । ସାମାଜିକ ରୀତିରେ ଗ୍ରାମବାସୀ ତଥା ଆଖପାଖର ଲୋକେ ଆଡମ୍ବର ସହକାରେ ବରଯାତ୍ରୀ ଭାବରେ 'ରାମଚନ୍ଦ୍ର' ଙ୍କ ସହିତ ଜନକ ଘରକୁ ଯାଆନ୍ତି । ଗାଁ ବାହାର ମେଳଣ ପଡିଆରେ ହିଁ ସ୍ୱୟମ୍ବର ଅନୁଷ୍ଠିତ ହୁଏ । ତତ୍କାଳୀନ ଉତ୍ସାହ, ଉଦ୍ଦୀପନା ତଥା ଆନନ୍ଦ ବାସ୍ତବରେ ଅବର୍ଣ୍ଣନୀୟ ।

ସତେ ଯେପରି ସେମାନେ ଅଯୋଧ୍ୟା ବା ମିଥିଳାର ପ୍ରଜା । କେବଳ ଏତିକି ନୁହେଁ, 'ସୀତା ବିବାହ' ରେ ଜନକ ଅଭିନୟ କରୁଥିବା ବ୍ୟକ୍ତି ଯୌତୁକ ସ୍ୱରୂପ ସୀତାଙ୍କୁ କିଛି ଭୂମି ଓ ଆମ୍ବଗଛ ଦାନ କରିଥିବା ପରି ଘଟଣା ମଧ ପଶ୍ଚିମ ଓଡିଶାରେ ବିରଳ ନୁହେଁ । (୬) ଲୋକ-ନାଟ୍ୟରେ ଲୋକ-ଜୀବନର ଏ ପ୍ରକାର ଏକାତ୍ମତା ଓଡିଶାର ଅନ୍ୟ କେଉଁଠି ଏପରିକି ଭାରତୀୟ ଲୋକନାଟ୍ୟ ପରଂପରାରେ ଘଟିଥିବା ବୋଧହୁଏ ସମ୍ଭବ ନୁହେଁ । ସମ୍ବଲପୁରରେ ଅନୁଷ୍ଠିତ ହେଉଥିବା 'ଶୀତଳଷଷ୍ଠୀ ଯାତ୍ରା' ରେ ମଧ୍ୟ ଏହି ପରଂପରା ରହିଛି । କନ୍ୟା ପିତା ହୋଇଥିବା ବ୍ୟକ୍ତି ଯୌତୁକ ସ୍ୱରୂପ 'ଝିଅ-ପଠିଆଣି'ରେ ଯାହାସବୁ ଜିନିଷ ଦେବା କଥା ଦେଇଥାଆନ୍ତି । ରାମଲୀଳା ବର୍ଣ୍ଣିତ ରାମ ବନବାସ, ଲକ୍ଷ୍ମଣ ଶକ୍ତିଭେଦ, ସୀତାଚୋରୀ ପ୍ରସଙ୍ଗ ଗୁଡିକ ଅଭିନୀତ ହେବାଦିନ ଗ୍ରାମବାସୀ ଉପବାସ ରହି ସମବେଦନା ଜ୍ଞାପନ କରିବା, କିମ୍ବା ରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଦିନ ପ୍ରତ୍ୟେକ ଘର ସମ୍ମୁଖରେ ପୂର୍ଣ୍ଣକୁମ୍ଭ ସ୍ଥାପନ ତଥା ରାମ-ଲକ୍ଷ୍ମଣ-ସୀତାଙ୍କୁ ଆଳତି-ବନ୍ଦାପନା ସହିତ ସ୍ୱାଗତ କରିବା କିମ୍ବା କୃଷ୍ଣଲୀଳା ବର୍ଣ୍ଣିତ କୃଷ୍ଣ ଜନ୍ମାଷ୍ଟମୀ, ଗୋବର୍ଦ୍ଧନ ପୂଜା, ଇନ୍ଦ୍ର ପୂଜା କରିବା; ଷଣ୍ଢା, ବକା, ଶକଟା, ଅଘା, ପୂତନା ଏବଂ ସର୍ବୋପରି କଂସ ନିଧନ ଦିନ ମହୋତ୍ସବ ପାଳନ କରିବା ପ୍ରଭୃତି କେବଳ ଲୋକନାଟ୍ୟରେ ହିଁ ସମ୍ଭବ । ସେହିପରି ଦଣ୍ଡନାଟରେ ଶିବ ପାର୍ବତୀଙ୍କୁ କୃଷିର ଦେବତା ଭାବରେ ପୂଜାକରି ତଥା ଦିନ ଦ୍ୱିପ୍ରହରଠାରୁ 'ଧୂଳିଦଣ୍ଡ' ବା 'ପାଣିଦଣ୍ଡ' ପ୍ରଭୃତି ପ୍ରଦର୍ଶନ ପୂର୍ବକ ରାତିରେ ଦଣ୍ଡନାଟ ଅନୁଷ୍ଠିତ ହୁଏ । 'ଧୂଳିଦଣ୍ଡ' ବା ପାଣିଦଣ୍ଡରେ ଧୂଳିର ଧାନ, ମୁଗ, ବିରି, କୋଳଥ ଧୂଳିର କିଆରୀ କରି ତଥା ଦୁଇଜଣ ଲୋକଙ୍କୁ ବଳଦ ହିସାବରେ ଗ୍ରହଣ କରି କୃଷିକାରୀ ଶିବଙ୍କ କର୍ତ୍ତୃକ ଚାଷ କରିବା, ଜମିରେ ପାଣିମଡାଇବା ପ୍ରଭୃତିରୁ 'ଦଣ୍ଡନାଟ' କୁ ଏକ କୃଷିଭିତ୍ତିକ ଲୋକ ସଂସ୍କୃତି କହିବାରେ ବୋଧହୁଏ କେହି ଆପତ୍ତି କରିବେ ନାହିଁ । ଏତଦ୍‌ବ୍ୟତୀତ 'ଦଣ୍ଡନାଟ' ପଛରେ ଏକ ପ୍ରତିଷ୍ଠିତ ଲୋକବିଶ୍ୱାସ ବା ଲୋକଧର୍ମର ପ୍ରଛନ୍ନଧାରା ମଧ ରହିଥାଏ । ରୋଗ-ଦୁଃଖରୁ ମୁକ୍ତି ବା ସନ୍ତାନ ସନ୍ତତି ପାଇଁ ଲୋକେ ସତ୍ୟନାରାୟଣ ପାଲା କିମ୍ବା 'କରମସାନୀ' ବସାଇବା ପରି 'ଦଣ୍ଡନାଟ' ମାନସିକ କରିଥାଆନ୍ତି ।

'ଲକ୍ଷ୍ମୀପୁରାଣ ସୁଆଙ୍ଗ' ନିର୍ଦ୍ଦିଷ୍ଟ ଭାବରେ ମାର୍ଗଶୀର ମାସର ଚାରିପାଳି ଗୁରୁବାର ଦିନ ମାନଙ୍କରେ କେତେକ ଗ୍ରାମରେ ଅନୁଷ୍ଠିତ ହୋଇଥାଏ । ସେହିଦିନ ସଂଧ୍ୟା ପୂର୍ବରୁ ଅଭିନୟସ୍ଥଳୀ

---

୬. ଏହି ଘଟଣା ସମ୍ଭବ ହୋଇଛି ପ୍ରାବନ୍ଧିକର ଜନ୍ମସ୍ଥାନ ସମ୍ବଲପୁର ଜିଲ୍ଲାର ଅତାବିରା ଥାନାନ୍ତର୍ଗତ ମନାପଡ଼ା ଗ୍ରାମରେ । ପ୍ରାୟ ୫୦/୬୦ ବର୍ଷ ତଳେ 'ଜନକ' ସାଜିଥିବା 'ଚେରୁକାଲୋ' (ବର୍ତ୍ତମାନ ମୃତ) ନାମକ ଜଣେ କେଉଟ 'ସୀତା'ଙ୍କୁ ଖଣ୍ଡିଏ ଜମି ଓ କେତୋଟି ଆମ୍ବଗଛ ଯୌତୁକ ସ୍ୱରୂପ ଦେଇଥିଲେ । ସୀତା ଅଭିନୟ କରୁଥିବା ବ୍ୟକ୍ତି ଶ୍ରୀଯୁକ୍ତ ରଙ୍ଗମଣି ପାଣିଗ୍ରାହୀ ଅଦ୍ୟାବଧି ତାହା ଭୋଗ ଦଖଲ କରି ଆସୁଛନ୍ତି ।

ଓ ପୂଜା ଆସ୍ଥାନ ଲିପାପୋଛା ହୋଇ ଚାରିଆଡେ ତୋରଣ ପବିତ୍ର ପରିବେଶ ସୃଷ୍ଟି କରାଯାଇଥାଏ। ପ୍ରାୟ ପ୍ରତ୍ୟେକ ଘରୁ ପୂଜା ସାମଗ୍ରୀ, ଫଳମୂଳ, ଆସି ମହାଲକ୍ଷ୍ମୀଙ୍କ ପୂଜାମଣ୍ଡପ ନିକଟରେ ଠୁଳ ହୁଏ। କେବେ କେବେ ସାଧାରଣ ପାଣ୍ଠିରୁ ପୋଡପିଠାର ଆୟୋଜନ ମଧ୍ୟ ହୋଇଥାଏ। ସୁଆଙ୍ଗ ଶେଷରେ ଲକ୍ଷ୍ମୀପୂଜା ହୋଇ ସମସ୍ତଙ୍କ ଭିତରେ ପ୍ରସାଦ ବିତରଣ ହୁଏ। ଦିନସାରା ଲକ୍ଷ୍ମୀଙ୍କ ପୂଜା-ବ୍ରତରେ ମନୋନିବେଶ କରି ରାତିରେ ପୁଣି 'ଲକ୍ଷ୍ମୀପୁରାଣ ସୁଆଙ୍ଗ' ପ୍ରଦର୍ଶନରେ ଭକ୍ତିପ୍ରାଣା ପୁରନାରୀଗଣ ଯେପରି ତାଙ୍କ ଆରାଧ୍ୟ ଠାକୁରାଣୀଙ୍କୁ ସଶରୀରେ ଦର୍ଶନ କରିବାର ସୁଯୋଗ ପାଆନ୍ତି। ମାତ୍ର ଜଗନ୍ନାଥ ବଳଭଦ୍ର କର୍ତ୍ତୃକ ବିତାଡିତା ଲକ୍ଷ୍ମୀଠାକୁରାଣୀଙ୍କ ଦୁଃଖରେ ସାରା ଦର୍ଶକମଣ୍ଡଳୀ ଲୋତକାପ୍ଳୁତ ହୁଅନ୍ତି। ସତେ ଯେପରି ଜଣେ ଅବଳା, ସରଳା, ନିର୍ଦୋଷ ସ୍ତ୍ରୀ ଛାଡପତ୍ର ପାଉଛି। ଏପରି ପରିସ୍ଥିତିରେ କି ସ୍ତ୍ରୀ କି ପୁରୁଷ ପ୍ରତ୍ୟେକେ ଭୁଲିଯାଆନ୍ତି ଯେ ସେମାନେ ଅଭିନୟ ଦେଖୁଛନ୍ତି, ଛାଡପତ୍ର ପାଉଥିବା ଲକ୍ଷ୍ମୀ ସତେ ଯେପରି ତାଙ୍କ ସମାଜର ଜଣେ ସାଧାରଣ ଗ୍ରାମ୍ୟବଧୂ। ସବୁଠାରୁ କୌତୂହଳର ବିଷୟ ହେଉଛି ଜାତି-ଭେଦ-ହୀନ ସମାଜ ପ୍ରତିଷ୍ଠା ପାଇଁ ଉଦ୍ଦିଷ୍ଟ 'ଲକ୍ଷ୍ମୀପୁରାଣ ସୁଆଙ୍ଗ' ରେ ଲକ୍ଷ୍ମୀ ଭୂମିକାରେ ଅଭିନୟ କରୁଥିବା ପିଲା ଅବ୍ରାହ୍ମଣ ହୋଇଥିଲେ ଜଣେ ବ୍ରାହ୍ମଣ ପିଲା ଲକ୍ଷ୍ମୀ ବେଶରେ ମଞ୍ଚ ପାଖରେ ବସି ପୂଜିତ ହେବ। ଏପରି ବ୍ୟବସ୍ଥା ଯେ କୌଣସି ସମାଜତତ୍ତ୍ୱବିଦଙ୍କୁ ଦ୍ୱନ୍ଦ୍ୱରେ ପକାଇବ ନିଶ୍ଚୟ। କିନ୍ତୁ ସାମାଜିକ ବ୍ୟବସ୍ଥାକୁ ନେଇ ଅବସ୍ଥା ବା ପରିବେଶ ସୃଷ୍ଟି କରିବା ହେଉଛି ସମାଜର ନିୟମ। ଏ ସବୁ ଦୃଷ୍ଟିକୋଣରୁ ବିଚାର କରି ଦେଖିଲେ ପଶ୍ଚିମ ଓଡିଶାର ଲୋକନାଟ୍ୟ ଗୁଡିକରେ ଲୋକଧର୍ମର ନିବିଡତା ସ୍ପଷ୍ଟ ପ୍ରତୀୟମାନ ହୁଏ ନାହିଁ କି ?

ଲୋକନାଟ୍ୟର ଚରିତ୍ରଗୁଡିକ ସାଧାରଣତଃ ଦର୍ଶକ ମାନଙ୍କର ଚିର ପରିଚିତ। କାରଣ ପରିଚିତ ପୌରାଣିକ କଥାବସ୍ତୁ ଆଧାରିତ ଏହି ଲୋକନାଟ୍ୟଗୁଡିକର ପ୍ରତ୍ୟେକ ଚରିତ୍ରକୁ ଲୋକନାଟ୍ୟର ଦର୍ଶକ ପୁରାଣର ଶ୍ରୋତା ଭାବରେ ଚିହ୍ନି ସାରିଥାଏ। ତଫାତ୍ ଏତିକି ଯେଉଁ ଚରିତ୍ରମାନଙ୍କୁ ସେ ଶ୍ରୁତି ପଥରେ ଶୁଣି ମାନସ ଚକ୍ଷୁରେ ଦେଖିଥାଏ, ଲୋକମଞ୍ଚରେ ସେହି ଚରିତ୍ରମାନଙ୍କୁ 'ସୁଆଙ୍ଗ' ରୂପରେ ବାସ୍ତବତାର ରୂପ ଦିଏ। ତଥାପି ଚତୁର ଲୋକକବି ବା ଲୋକନାଟ୍ୟକାର ନିଜର ଦୋଷ ଛଡାଇବାକୁ ହେଉ ବା ପୁରାଣ ଅନଭିଜ୍ଞ ଦର୍ଶକମାନଙ୍କ ସୁବିଧା ପାଇଁ ହେଉ ଦର୍ଶକମାନଙ୍କ ସହିତ ଚରିତ୍ରମାନଙ୍କୁ ପରିଚିତ କରାଇବା ପାଇଁ କେତେକ କୌଶଳର ଆଶ୍ରୟ ନେଇଥାଏ। ଲୀଳା ବା ସୁଆଙ୍ଗରେ ଲୋକକବି ଯଥାକ୍ରମେ 'ପୋଥିଗାୟକ' ବା 'ସଭାଜନ' ର ସାହାଯ୍ୟରେ ଏବଂ ଚରିତ୍ରମାନଙ୍କ ଦ୍ୱାରା ସ୍ୱ ପରିଚୟ ପ୍ରଦାନର ବ୍ୟବସ୍ଥା କରିଥାଏ। ଉଦାହରଣ ସ୍ୱରୂପ 'ଶବର-ଶବରୀ ଲୀଳା' ଓ 'ଲକ୍ଷ୍ମୀପୁରାଣ ସୁଆଙ୍ଗ' ତଥା ଷୋହଳ ସୁଆଙ୍ଗ

ବା ଦଣ୍ଡନାଟ୍ୟର ଏ ଦୁଇଟି ବିଷୟକୁ ଏଠାରେ ଆଲୋଚନାର ପରିସର ଭିତରକୁ ନିଆଯାଇପାରେ । କବି ବିନାୟକ, କବି ଲକ୍ଷ୍ମଣ ପତି ଓ ମାହାର କବିଙ୍କ ଶବରୀ-ଲୀଳାରେ ଶବର ଓ ଶବରୀ ମାତ୍ର ଦୁଇଟି ଚରିତ୍ର ଏବଂ ତୃତୀୟ ବ୍ୟକ୍ତି 'ସଭାଜନ' ଯେ କି ଚରିତ୍ର ନୁହେଁ ଅଥଚ ଏହି ଲୀଳାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । କୃଷ୍ଣଲୀଳାର ଶବରୀ କୋଳିବିକା ପ୍ରସଙ୍ଗଟି ଶବରୀଲୀଳାର ବିଷୟବସ୍ତୁ । ଶବରୀ କିଏ ? ପୂର୍ବ ଜନ୍ମରେ ତାର ସ୍ୱରୂପ କଣ ? ବାପା, ମା, ସ୍ୱାମୀ, ଘର, ଜୀବିକା-ଏ ସବୁ ବିଷୟରେ ସଭାଜନ ପ୍ରଶ୍ନକରେ ଏବଂ ଶବରୀ ତା'ର ଉତ୍ତର ଦିଏ । ସେହିପରି ଶବରକୁ ମଧ ଦର୍ଶକ ପାଖରେ ସଭାଜନ ପରିଚିତ କରାଏ । ଯେପରି;

* ସଭାଜନ - ଅଗୋଷ୍ଠିରୀ ରତନ ।
ଶବରୀ - କ'ଣ କି ସାଆନ୍ତେ ।
ସଭାଜନ - ତୁ କେଉଁଠାରୁ ଅଇଲୁ ?
ଶବରୀ - ସାଆନ୍ତେ କହୁଛି ଶୁଣ ତ କହଇ ଶବରୀ ଧୀର କରିଣ/ ସାବଧାନେ ଶୁଣ ଗୋପର ଜନ/ଶବର ଅଟଇ ମୋହର ପିତା/ ମୁହିଁ ତାହାର କନେଷ୍ଟ ଦୁହିତା ।

x x x

ସଭାଜନ- ଆଛା, ଆଛା, ତୋର ନାଁଟି କହ ତ ?
ଶବରୀ- ସାଆନ୍ତେ କହୁଛି ଶୁଣ ତ ।
ମୋ ନାଁଟି ଗେରସ୍ତ ଦେଲେ,
ଶୋଇଲାବେଳେ, ଶେଯ୍ୟା ଉପରେ,
ରାତି ଅଧରେ, ନାମ ମରୁଆ, କୁନ୍ଦ
ଫଗୁଆ, ଯାଇଯୁଇ ଚମ୍ପା କେତକୀକିଆ
ମୋ ନାଁ କେତକି, କିଆ କୁନ୍ଦ, ମରୁଆ । ୭

କିମ୍ବା; * "ସଭାଜନ- କିଲୋ ଶବରୁଣୀ ତୋର ଶବରର ନାମ କହିଲୁ ?
ଶବରୀ- ଛତବାର ସଙ୍ଗେ ପ୍ରଥମ ରାଶି, ଆଦ୍ୟ ଅକ୍ଷରକୁ ଲିହିବ ବସି,
ଶବର ନକ୍ଷତ୍ର ତେର ବର୍ଣ୍ଣରେ, ବିଚାରି ଜାଣିବ ସୁଜନେ ହେଜି,

---

*. ସୁଆଙ୍ଗ - ଲୋକନାଟ୍ୟ ଗୁଡ଼ିକରେ ଅଭିନୟ କରୁଥିବା ପ୍ରତ୍ୟେକ ଚରିତ୍ରକୁ ପଶ୍ଚିମ ଓଡ଼ିଶାରେ ସୁଆଙ୍ଗ କହନ୍ତି । 'ଶୋଭାଙ୍ଗ' ଶବ୍ଦରୁ ସୁଆଙ୍ଗ ହୋଇଥିବା ଦୃଷ୍ଟିରୁ ଏହା ସ୍ୱାଭାବିକ ।

୭. ଶବର-ଶବରୀ ଲୀଳା । (ପାଣ୍ଡୁଲିପି)- କବି ବିନାୟକ । ନିଜ ସଂଗ୍ରହ ତାଡ଼ପତ୍ର ।

ରାହୁ ଚଖା ରସ ବଲି, କହିଦେଲି ନନା, କହିଦେଲି ନନା
ବିଚାରିବ ଜ୍ୟୋତିର୍ବେଦ ଥିଲେ ଜଣା ।" (୮)

ସ୍ୱାମୀର ନାମ ସିଧାସଳଖ କହିବାରେ କୁଣ୍ଠାବୋଧ କରି ଶବରୀ ଏହିପରି ବୁଲେଇ କହିଛି । ସମାଜରେ ସ୍ତ୍ରୀମାନେ ସ୍ୱାମୀଙ୍କର ନାମ ଉଚ୍ଚାରଣ କରିବା ଏକ ଗର୍ହିତ ବିଷୟ । ତେଣୁ ବହୁ ଶାସ୍ତ୍ରଦର୍ଶୀ କବି ଚତୁରତାର ସହିତ ଶବରର ନାମ ଶବରୀ ଦ୍ୱାରା ପ୍ରକାଶ କରାଇଛନ୍ତି । ଶବରୀ ଲୀଳାରେ ଉଭୟ ଶବରୀ ଶବର ପରସ୍ପର ପରସ୍ପରକୁ ଭୁଲ୍ ବୁଝି କଳି କରନ୍ତି ଏବଂ ସଭାଜନର ମଧ୍ୟସ୍ଥତାରେ ସେମାନେ ପୁଣି ଭୁଲ ବୁଝିପାରି ଆନନ୍ଦରେ ଘରକୁ ଫେରନ୍ତି । ତେବେ ଏଥିରୁ ଲକ୍ଷ କରିବା କଥା ଯେ, ସଭାଜନ କିପରି ଶବର-ଶବରୀ ମଧ୍ୟରେ ତଥା ଶବର-ଶବରୀ ଓ ଦର୍ଶକମାନଙ୍କ ମଧ୍ୟରେ ଯୋଗସୂତ୍ରକାରୀ ଭାବରେ ପରିଚୟ କରାଇବାରେ ସମର୍ଥ ହୋଇଛି ।

'ଲକ୍ଷ୍ମୀପୁରାଣ ସୁଆଙ୍ଗ' ବା ଚନ୍ଦ୍ରାବତୀ ହରଣ ସୁଆଙ୍ଗାଦିରେ ଚରିତ୍ରଗୁଡିକ ନିଜେ ନିଜର ପରିଚୟ ଦେଇ ରଙ୍ଗମଞ୍ଚକୁ ଆସିଥାଆନ୍ତି । ଫଳରେ ଲୀଳାର ସଭାଜନ ବା ପୋରୋଗାୟକ ପରି ମଧ୍ୟସ୍ଥିର ଆଉ ଆବଶ୍ୟକ ହୁଏନାହିଁ । ପକ୍ଷାନ୍ତରରେ ଦର୍ଶକ ମାନଙ୍କୁ ମଧ୍ୟ 'ସୁଆଙ୍ଗ' ମାନଙ୍କୁ ଚିହ୍ନିବାରେ ବେଶୀ ସମୟ ଲାଗେନାହିଁ । ଏକେତ ପରିଚିତ ବିଷୟବସ୍ତୁ ପୁଣି ଚରିତ୍ର ମାନଙ୍କ ସ୍ୱ ଶରୀରରେ ମଞ୍ଚକୁ ଆସି ପରିଚୟ ପ୍ରଦାନ ଦର୍ଶକମାନଙ୍କ ବୁଝିବାରେ ସରଳ ହୋଇଯାଏ । ଲକ୍ଷ୍ମୀପୁରାଣ ସୁଆଙ୍ଗ ଓ ଚନ୍ଦ୍ରାବତୀ ହରଣ ସୁଆଙ୍ଗରୁ ଚରିତ୍ର ପରିଚୟୋକ୍ତି ସଂପର୍କିତ କେତୋଟି ପଦ ନିମ୍ନରେ ଉଦାହୃତ ହୋଇପାରେ ।

ଜଗନ୍ନାଥ ବାହାରିବା ଗୀତରେ ନିଜେ ଜଗନ୍ନାଥ କହୁଛନ୍ତି-

* "ଦେଖ ଦେଖ ବାହାରିଲେ ନନ୍ଦନନ୍ଦନ ହୋ
ଦେଖ ଦେଖ ବାହାରିଲେ........
କି ବର୍ଣ୍ଣିବି ସେ ଅପୂର୍ବ ରୂପଲାବଣ୍ୟ ହୋ.....
ଦେଖ ଦେଖ...........
ବୃନ୍ଦାବନର ବିହାରୀ, ଶଙ୍ଖଚକ୍ର ଗଦାଧାରୀ
ଦ୍ୱାରକା ମଣ୍ଡନକାରୀ, ବଂଶୀ ବଦନ ହେ......ଦେଖ
ଦେଖ ବାହାରିଲେ..........।(୮)

*. ନିଜ ସଂଗ୍ରହ ପାଣ୍ଡୁଲିପି । ୮. ଶବରୀ ଲୀଲା ; କବି ଲକ୍ଷ୍ମଣପତିଙ୍କ ପାଣ୍ଡୁଲିପି ।

କିମ୍ବା, ଲକ୍ଷ୍ମୀ ଠାକୁରାଣୀ ନିଜେ ନିଜର ପରିଚୟ ଦିଅନ୍ତି-

"ବିଜେ ଲକ୍ଷ୍ମୀ ଠାକୁରାଣୀ ସେ ସୁଲକ୍ଷଣୀ,
ବରୁଣରାଜାସୁତା, ଶ୍ୱେତବରଣୀ ଯୁକ୍ତା
ମସ୍ତକରେ ଶୋଭାମଣି ସେ ସୁଲକ୍ଷଣୀ।" (୯)

ସେହିପରି ଚନ୍ଦ୍ରାବତୀ ହରଣପରେ ରାଜା ଦୁର୍ଯ୍ୟୋଧନ ମଧ ନିଜେ ନିଜର ପରିଚୟ ପ୍ରଦାନ କରିବା ପରେ ଅଭିନୟ ପ୍ରଦର୍ଶନ କରନ୍ତି।

* "ଦେଖ ଅଇଲେ କୁରୁପତ ନୃପତି
ସଙ୍ଗତରେ ଶକୁନୀ ମନ୍ତ୍ରୀ ଅଛନ୍ତି।
ଜମ୍ବୁଦ୍ୱୀପରେ ଭାରତ-ଖଣ୍ଡରେ ସେ ନରନାଥ
ଲକ୍ଷେ ରାଜାରେ ବନ୍ଦିତ ଅଟନ୍ତି, ଦେଖ.........।"(୧୦)

ଉପରୋକ୍ତ ଚରିତ୍ରଗୁଡିକ ବ୍ୟତୀତ ଅନ୍ୟାନ୍ୟ ଚରିତ୍ର ଏହି ରୀତିରେ ସ୍ୱପରିଚୟ ପ୍ରଦାନ ପୂର୍ବକ ମଞ୍ଚରେ ଅବତୀର୍ଣ୍ଣ ହୁଅନ୍ତି।

"ଷୋହଳ ସୁଆଙ୍ଗ' ବା ଦଣ୍ଡନାଟରେ ମଧ ଏହିରୀତି ପ୍ରଚଳିତ। ଯେପରି;

* "ଆମ୍ଭେ ଅଇଲୁଁ ହର ସଭାମଧର ହୋ
ଆମ୍ଭେ ଅଇଲୁଁ ହର,
ନିର୍ଭୟେ ମାଗବର, କହେ ପାର୍ବତୀ ବର
ଜଟାପୁଟ ଲଟପଟ ନିଶାରେ ମତି ଭୋଳ,,
ଶିବା ଆସିବେ ପଛାନ୍ତର, ଅଇଲୁଁ ହର.....।(୧୧)

ଏତ ଗଲା ଦର୍ଶକ ଓ ଚରିତ୍ରଙ୍କ ଭିତରେ ପରିଚୟ ପ୍ରଦାନ ସମ୍ବନ୍ଧ। ଏତଦ୍ ବ୍ୟତୀତ ନାଟକର ଚରିତ୍ରଗୁଡିକ ଦର୍ଶକମାନଙ୍କ ସହିତ ମିଶି, ସେମାନଙ୍କୁ ବ୍ୟତିବ୍ୟସ୍ତ କରିପକାନ୍ତି। ଉଦାହରଣ ସ୍ୱରୂପ ରାମଲୀଳାର 'ହନୁମାନ' ଦର୍ଶକମଣ୍ଡଳୀ ଭିତରେ ଲଙ୍କାକାଣ୍ଡ ଭିଆଇ ବିଧା ଗୋଇଠା ଦେଲେ

---

*. ନିଜ ସଂଗ୍ରହ (ପାଣ୍ଡୁଲିପି)।

୮. ଲକ୍ଷ୍ମୀପୁରାଣ ସୁଆଙ୍ଗ, କବି ଉମର ବିରଚିତ। ୯. ଲକ୍ଷ୍ମୀ ପୁରାଣ ସୁଆଙ୍ଗ, କବି ମାଗୁଣି ବିରଚିତ।

୧୦. ଚନ୍ଦ୍ରାବତୀ ହରଣ ସୁଆଙ୍ଗ। କବି ଉମର ବିରଚିତ।

୧୧. ଦଣ୍ଡନାଚ ; କବି ଦୂତୀୟା ବିରଚିତ।

କିମ୍ବା କଂସ ମହାରାଜ ମନଇଛା ଜୋରିମାନା କଲେ କାହାରି ଆପତ୍ତି କରିବାର ନଥାଏ । ପୁଣି ଆପଣା ଗ୍ରାମବାସୀ ରାମ, ଦାମ, ପିଛାଲୁ, ଦୁଖୁ, ଚେରୁ, ନଟିଆ, ଖାତିଆ ପ୍ରଭୃତିଙ୍କୁ ଭୁଲିଯାଇ ନାଟକରେ ସେମାନଙ୍କର ରାମ, କୃଷ୍ଣ, ଜଗନ୍ନାଥ, ଲକ୍ଷ୍ମୀ, ଦ୍ରୌପଦୀ, ଭୂମିକାକୁ ବାସ୍ତବ ମନେକରି ସେମାନଙ୍କୁ ହାତଯୋଡେ, ହରିବୋଲ ହୁଳହୁଳିରେ ସେମାନଙ୍କୁ ସ୍ୱାଗତ କରେ । ଏପରିକି ଯେଉଁ ଅଭିନେତା ବା କଳାକାର ନିଜର ଅଭିନୟ ଦ୍ୱାରା ଦର୍ଶକକୁ ଯେତିକି ଅନୁପ୍ରାଣିତ କରେ ସେ ଅନ୍ୟ ସମୟରେ ମଧ ତାର ଜିନ ନାମରେ ଯେତିକି ପରିଚିତ ହୁଏନାହିଁ ସେଥିରୁ ବେଶୀ ଜଣାଶୁଣା ହୁଏ ଅଭିନୟର ଚରିତ୍ର ନାଁ ରେ । ଚରିତ୍ର ସହିତ ଦର୍ଶକର ଏ ପ୍ରକାର ସିଧାସଳଖ ଓ ଅଭେଦ ସମ୍ବନ୍ଧ ରହୁଥିବାରୁ ଏବଂ ଗୁଣ ଅବିଗୁଣ ସବୁ ବାସ୍ତବ ଜୀବନରେ ଜାଣିଥିବାରୁ ଚରିତ୍ର ଅଭିନୟକୁ କଳା ଦୃଷ୍ଟିରୁ ବିଚାର କରିବା ଅପେକ୍ଷା ଦର୍ଶକ ମଧରେ ସହୃଦୟତା ଭାବ ପ୍ରକାଶିତ ହୁଏ । ଉଭୟ ସ୍ତ୍ରୀ ଓ ପୁରୁଷର ଅଭିନୟ କରେ ପୁରୁଷ, ଯେହେତୁ ଗ୍ରାମ୍ୟ-ଜୀବନରେ ନାରୀମାନଙ୍କୁ ଏହି ସୁଯୋଗରୁ ବଞ୍ଚିତ କରାଯାଇଥାଏ । ତେଣୁ କେତେକ କ୍ଷେତ୍ରରେ ସ୍ତ୍ରୀ ଚରିତ୍ର ଚିତ୍ରଣରେ ଲାଳିତ୍ୟ ବା ନାରୀ ସୁଲଭ ହାବଭାବର ଅଭାବ ଦେଖାଯାଉଥିଲେହେଁ ଦର୍ଶକ ସେ ସବୁ ପ୍ରତି ଗୁରୁତ୍ୱ ନଦେଇ ତା'ର ଉଦ୍ଦେଶ୍ୟ ଚରିତାର୍ଥ କରିଯାଏ । ହାସ୍ୟରସ ସୃଷ୍ଟି କରିବାପାଇଁ ଦ୍ୱାରୀ, ବିଦୁଷକ, ଦରୁଆନ, ଚୌକିଦାର ପ୍ରଭୃତି ଚରିତ୍ର ଗାମ୍ଭୀର୍ଯ୍ୟପୂର୍ଣ୍ଣ ତଥା ସମସ୍ୟା ବିଜଡ଼ିତ ବିଷୟବସ୍ତୁ ମଝିରେ ମଝିରେ ସରଳକରି ଦୀର୍ଘ ସମୟ ଧରି ବିରକ୍ତିଭାବ ପ୍ରକାଶ କରିବା ପୂର୍ବରୁ ଦର୍ଶକମନକୁ ସାମୟିକ ଭାବରେ ଲଘୁ କରିବା ସଙ୍ଗେ ସଙ୍ଗେ ଉତ୍ସାହିତ କରିଥାଆନ୍ତି । ଏ ଧରଣର ଚରିତ୍ର ପରବର୍ତ୍ତୀ କାଳରେ ଶିଷ୍ଟ ନାଟକ ଗୁଡ଼ିକରେ ମଧ ବହୁଦିନ ଧରି ସ୍ଥାନପାଇ ଆସୁଥିଲେ । ଯେତେବଡ଼ ସମସ୍ୟା ହେଉ ବିଦୂଷକ ବା ଦ୍ୱାରୀ ତାକୁ ହସରେ ଉଡାଇ ଦିଅନ୍ତି । ରାବଣ, କଂସ, ହିରଣ୍ୟ, ମହିଷାସୁର ପ୍ରଭୃତି ପ୍ରବଳ ପ୍ରତାପୀ ରାଜାମାନଙ୍କୁ ଆକ୍ଷେପ କରିବାରେ ଏମାନେ ଭୟ କରନ୍ତି ନାହିଁ କି ଦଶରଥ, ଯୁଧିଷ୍ଠିର, ବସୁଦେବ ବିଭୀଷଣ ପ୍ରଭୃତି ଚିନ୍ତାଶୀଳ ଆଦର୍ଶ ଚରିତ୍ରମାନଙ୍କୁ ଉପଦେଶ ଦେବାପାଇଁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ଏପରି କରିବା ଦ୍ୱାରା ପରୋକ୍ଷରେ ସେମାନେ ଦର୍ଶକର ଅନ୍ତର୍ନିହିତ ଅଭିଳାଷ ପୂରଣ କରନ୍ତି ସିନା, ବିରକ୍ତି ଭାଜନ ହୁଅନ୍ତି ନାହିଁ । ଏହିପରି ଭାବରେ ଚରିତ୍ର ସହିତ ଦର୍ଶକର ବରାବର ଯୋଗସୂତ୍ର ରହିଥାଏ ।

ପଶ୍ଚିମ ଓଡ଼ିଶାର ଯାତ୍ରା, ଲୀଳା, ସୁଆଙ୍ଗ ପ୍ରଭୃତି ଲୋକନାଟ୍ୟଗୁଡ଼ିକର ରଙ୍ଗମଞ୍ଚ ବ୍ୟବସ୍ଥାରେ ଏକ କ୍ରମ ବିକାଶ ଲକ୍ଷ୍ୟ କରାଯାଏ । ବରଗଡ଼ରେ ଅନୁଷ୍ଠିତ ହେଉଥିବା ପ୍ରସିଦ୍ଧ ଧନୁଯାତ୍ରାରେ ସମଗ୍ର ବରଗଡ଼ ସହର 'ମଥୁରା', ନିକଟସ୍ଥ ଅମ୍ବାପାଲି ଗ୍ରାମ 'ଗୋପ', ଉଭୟ ସ୍ଥାନର ମଝିରେ ପ୍ରବାହିତା ଜୀରାନଦୀ 'ଯମୁନା' ଏବଂ କଂସରାଜା ଗ୍ରାମ୍ୟ ପରିଦର୍ଶନରେ ଯାଉଥିବା ବରଗଡ଼ ମଥୁରା ନିକଟବର୍ତ୍ତୀ କେତେକ ଗ୍ରାମ - ଏ ସମଗ୍ର ଅଞ୍ଚଳକୁ ଏକ ବିରାଟ ରଙ୍ଗମଞ୍ଚର

ପରିକଳ୍ପନା କରାଯାଇପାରେ । ଉକ୍ତ ରଙ୍ଗମଞ୍ଚରେ ବେଶପୋଷାକ ପରିହିତ ଚରିତ୍ରମାନଙ୍କ ସହିତ ଦର୍ଶକ ଭାବରେ ଆସିଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ଗୋଟିଏ ଗୋଟିଏ ଚରିତ୍ର ହିସାବରେ ଗ୍ରହଣ କରାଯାଇପାରେ । କାରଣ ପ୍ରଥମତଃ ସମସ୍ତେ ଗୋପ ବା ମଥୁରାର ପ୍ରଜା ଭାବରେ ଆପଣାର ସୁଖ-ଦୁଃଖ, ଅଭାବ-ଅସୁବିଧା କଂସ ରାଜାଙ୍କୁ ଜଣାନ୍ତି ଏବଂ ରାଜା ମଧ୍ୟ ତହିଁର ଉପଯୁକ୍ତ ବିଚାର କରନ୍ତି । କଂସରାଜା ପାଇଁ ଗୋଟିଏ ସ୍ଥାନରେ ଏକ ସୁଉଚ୍ଚ ତଥା ସୁସଜ୍ଜିତ ମଞ୍ଚଟିଏ ନିର୍ମାଣ କରି ତା ଉପରେ ସିଂହାସନର ବ୍ୟବସ୍ଥା କରିଥିଲେ ମଧ୍ୟ ତାହା ରାଜଦରବାର ଭାବରେ ପରିଗଣିତ ହୋଇଥାଏ । କାରଣ ସେଠାରେ କେବଳ ଦେଶର ତଥା ନଗରର ହାନିଲାଭ, ଶାସନ ବ୍ୟବସ୍ଥା, ଶିକ୍ଷା-ସ୍ୱାସ୍ଥ୍ୟ ସଂପର୍କୀୟ ଆଲୋଚନା ତଥା 'ରଙ୍ଗସଭା' ମାଧ୍ୟମରେ ସାମନ୍ତରାଜାମାନଙ୍କ ଭଲମନ୍ଦ କଥା ବିଚାର ହୁଏ । ଅଥଚ କଂସରାଜା ପାଇଁ ରାଜଅନ୍ତଃପୁର ଭାବରେ ସହରର ଗୋଟିଏ ସ୍ଥାନ ନିରୂପିତ ହୋଇଥାଏ ଯେଉଁଠାରୁ ରାଜା ପାତ୍ରମନ୍ତ୍ରୀଙ୍କ ସହିତ ହାତୀ ପିଠିରେ ବସି ନଗର ପରିକ୍ରମା ପୂର୍ବକ ଦରବାର ଅଭିମୁଖେ ଯାତ୍ରା କରନ୍ତି ।

ଲୀଳାରେ କିନ୍ତୁ ରଙ୍ଗମଞ୍ଚର ଏହି ବିଶାଳତା ଆଉ ରହେନାହିଁ । ବରଂ ଏହା ସାମାନ୍ୟ ସୀମିତ ହୋଇଯାଏ । ରାମଲୀଳା, କୃଷ୍ଣଲୀଳା, ଭରତଲୀଳା ଗୁଡ଼ିକର ବିଷୟବସ୍ତୁ ଅନୁସାରେ ଗାଁର ଏକ ନିର୍ଦ୍ଦିଷ୍ଟ ଖୋଲାସ୍ଥାନ ବିଶେଷତଃ ମନ୍ଦିର ପ୍ରାଙ୍ଗଣ ଅଭିନୟ ପ୍ରଦର୍ଶନ ପାଇଁ ଯଥେଷ୍ଟ ହେଉଥିଲେ ହେଁ ସୀତା ବିବାହ, ରାବଣ ବଧ, ଅକ୍ରୁର ଗମନ, ଦ୍ରୌପଦୀ ସ୍ୱୟମ୍ବର, ମହାଭାରତ ଯୁଦ୍ଧ ପ୍ରଭୃତି ପ୍ରସଙ୍ଗଗୁଡ଼ିକ ପ୍ରଦର୍ଶନ ନିମିତ୍ତ ଗାଁବାହାର ମେଳଣ ପଡ଼ିଆ ବା ଯାତ୍ରା ପଡ଼ିଆ ପର୍ଯ୍ୟନ୍ତ ରଙ୍ଗମଞ୍ଚ ସଂପ୍ରସାରିତ ହୋଇଯାଏ । ଏପରିକି ସାରା ଗାଁ ମଧ୍ୟ ସେହି ସମୟରେ ରଙ୍ଗମଞ୍ଚ ଅନ୍ତର୍ଭୁକ୍ତ ହୋଇଯାଏ । ମାତ୍ର ସୁଆଙ୍ଗରେ ରଙ୍ଗମଞ୍ଚ ସଂପୂର୍ଣ୍ଣ ଭାବରେ ସଙ୍କୁଚିତ ହୋଇଯାଏ । ଗ୍ରାମ୍ୟ ମନ୍ଦିର ପ୍ରାଙ୍ଗଣ କିମ୍ବା ଗାଁ ମଝିରେ କୌଣସି ବିସ୍ତାର ସ୍ଥାନ ରଙ୍ଗମଞ୍ଚ ପାଇଁ ଯଥେଷ୍ଟ । ସୁଆଙ୍ଗ ନିମିତ୍ତ ବିଶାଳ ରଙ୍ଗମଞ୍ଚର ସୁଯୋଗ ରହିଥିଲେହେଁ ସମ୍ଭବତଃ ସମୟର ପରିବର୍ତ୍ତନ, ସମାଜର ନୂତନ ବ୍ୟବସ୍ଥା ଏବଂ ସର୍ବୋପରି ନାଟ୍ୟକଳାର ଉନ୍ନତ ରୁଚି ଲୋକଙ୍କ ମନରେ ଜାଗ୍ରତ ହେବା ଫଳରେ ଏହାର ପରିସର ସୀମିତ ହୋଇଅଛି ।

ଲୋକନାଟ୍ୟ ରଙ୍ଗମଞ୍ଚ ବା ଅଭିନୟ ସ୍ଥଳୀର ଚାରିଆଡ଼େ ଦର୍ଶକ ବସନ୍ତି । ନିକଟସ୍ଥ ଗୋଟିଏ ଘର ପ୍ରସାଧନ କକ୍ଷ ବା 'ବେଶଘର' ଭାବରେ ବ୍ୟବହୃତ ହୁଏ ଏବଂ ସେଠାରୁ ରଙ୍ଗମଞ୍ଚ ପର୍ଯ୍ୟନ୍ତ 'ପୁଷ୍ପପଥ'ରେ ପାତ୍ରପାତ୍ରୀଗଣ ରଙ୍ଗମଞ୍ଚକୁ ଆସିଥାଆନ୍ତି । ପ୍ରାଚୀନ ଭାରତୀୟ ନାଟ୍ୟପରଂପରାରେ ପ୍ରସାଧନ କକ୍ଷ ପାଇଁ 'ନେପଥ୍ୟ' ଓ 'ସଜ୍ଜାଗୃହ' - ଏହିପରି ଦୁଇଟି ଶବ୍ଦର ବ୍ୟବହାର ଥିବା କଥା ଜନୈକ ଲୋକନାଟ୍ୟ ତତ୍ତ୍ୱବିଦ୍ କହନ୍ତି । (୧୨) ତଦନୁଯାୟୀ ପଶ୍ଚିମ ଓଡ଼ିଶାର 'ବେଶଘର' ପ୍ରାଚୀନ ଭାରତୀୟ ନାଟ୍ୟପରମ୍ପରାର ସଜ୍ଜାଗୃହ ବ୍ୟତୀତ ଅନ୍ୟ କିଛି

ନୁହେଁ ବୋଲି କୁହାଯାଇପାରେ ।

ସାଂପ୍ରତିକ କାଳରେ ଲୋକନାଟ୍ୟଗୁଡ଼ିକ ପାଇଁ ଆଉ ବିଶାଳ ରଙ୍ଗମଞ୍ଚ ଆବଶ୍ୟକ ହେଉନାହିଁ । କୁଶଳୀ କଳାକାର ଚତୁର ଦର୍ଶକ ସମ୍ମୁଖରେ ସେହି ଗୋଟିଏ ସ୍ଥାନରେହିଁ ମାୟାମୃଗର ସନ୍ଧାନ କରେ । ସେଇ ସ୍ଥାନ ହୁଏ ପର୍ଣ୍ଣକୁଟୀର, ପୁଣି ହୁଏ ପଞ୍ଚବଟୀ । ପୁଣି ସେହି ମଞ୍ଚ କେତେବେଳେ ହୁଏ 'ହସ୍ତିନା' ଓ ପରବର୍ତ୍ତୀ ସମୟରେ ହୁଏ 'ବିରାଟ ନଗର' । ଏକ ସମୟରେ ଲୋକନାଟ୍ୟର ରଙ୍ଗମଞ୍ଚରେ ମଶାଲ ଥିଲା ଏକମାତ୍ର ଆଲୋକସଜ୍ଜା । ପରବର୍ତ୍ତୀ କାଳରେ ଗ୍ୟାସ୍‌ଲାଇଟ୍ ଏବଂ ସାଂପ୍ରତିକ କାଳକୁ ବୈଦ୍ୟୁତିକ ଆଲୋକସଜ୍ଜା ମଶାଲର ସ୍ଥାନ ପୂରଣ କରିଛି । ରଙ୍ଗମଞ୍ଚ ବ୍ୟତୀତ ଲୋକନାଟ୍ୟର ଗଠନ ବିଧି ଅଭିନୟ, ନୃତ୍ୟ ଓ ଗୀତର ତ୍ରିବେଣୀ ସମାହାରରେ ଥିଲା ଗୁମ୍ଫିତ । 'ଆହାର୍ଯ୍ୟ', 'ସାତ୍ତ୍ୱିକ', 'ଆଙ୍ଗିକ' ଓ 'ବାଚିକ' ପ୍ରଭୃତି ଅଭିନୟର ଶାସ୍ତ୍ର ସମ୍ମତ ଏହି ଚାରୋଟି ଅଙ୍ଗରୁ ଲୋକନାଟ୍ୟରେ 'ଆଙ୍ଗିକ' ଓ 'ବାଚିକ'ର ପ୍ରାଧାନ୍ୟ ରହିଥାଏ ।

ଲୋକନାଟ୍ୟର ପାତ୍ରପାତ୍ରୀଗଣ ସାଧାରଣତଃ ନିଜେ ନିଜର ପ୍ରସାଧନ ସାମଗ୍ରୀ ସଂଗ୍ରହ ପୂର୍ବକ ନିଜ ନିଜକୁ ସଜାଇ ଥାଆନ୍ତି । ପଶ୍ଚିମ ଓଡ଼ିଶାରେ ବ୍ୟବହୃତ ହେଉଥିବା ପ୍ରସାଧନ ସାମଗ୍ରୀ ଗୁଡ଼ିକରୁ ଗଁଠିଆ-ଶିଙ୍କଲା, ଝଲକା-ବେଁଟ୍‌ଲା, ନଥ-ଦଁତୀ, ଗୁଣା, ଟାଡ଼-ବାହାସୁତା, କତରିଆ-ବନ୍ଦରିଆ, ଗୁନ୍‌ଚି, ଚାଉଁରମୁଡି ପ୍ରଭୃତି ଅଳଙ୍କାର, ସିନ୍ଦୂର, କଜଳ, ଗୋରଚନା, ଚନ୍ଦନ, ଟିକିଲି, ମୟୁରଝାଲ ବା ମୟୁର ଚନ୍ଦ୍ରିକା, କଲ୍‌ଗିଁ, କଉଡ଼ି, ଘଣ୍ଟି-ଘାଘୁଡ଼ି ପ୍ରଭୃତି ପ୍ରସାଧନ ବସ୍ତୁ, ପାଟ, ମଠା, କପଟା (ଶାଢ଼ୀ), ଧୋତି, ଗାମୁଛା ପ୍ରଭୃତି ବିଶେଷ ଭାବରେ ଆଦୃତ । ଗାଁର ବାରିକ ବା କେହି କୁଶଳୀ କାରିଗର ଟୋପି, ମୁକୁଟ, ଜରିଲଗା କୋଟ୍ ତିଆରି କରେ । କେତେକ ପୋଷାକ ସାଧାରଣ ପାଣ୍ଠିରୁ ମଧ କିଣାଯାଏ । ରାବଣ, ତ୍ରିଶିରା, ବ୍ରହ୍ମା, ଶିବ, କାର୍ତ୍ତିକେୟ, ଗଣେଶ, ଷଣ୍ଢ, ବକା, ଅଘା, ସୂର୍ପଣଖା, ହନୁମାନ, ପୁତନା, ତାଡ଼କୀ ପ୍ରଭୃତି ଚରିତ୍ରଗୁଡ଼ିକ ପାଇଁ ମୁଖା (Mask)ର ପ୍ରଚଳନ ଥିଲା । ଏତଦ୍‌ବ୍ୟତୀତ ଅଭିନୟ ସ୍ଥାନରେ ବା ମଞ୍ଚରେ ବେଶ ବଦଳାଇ ରାକ୍ଷସ ରାବଣ ତପସ୍ୱୀ ହୋଇପାରେ, ସୂର୍ପଣଖା ତାର ପ୍ରକୃତ ରୂପ ପ୍ରକାଶ କରେ, ସ୍ୱର୍ଣ୍ଣମୃଗ ହୁଏ ମାରୀଚ ରାକ୍ଷସ ।

ବାଦ୍ୟଯନ୍ତ୍ର ବା ସଙ୍ଗୀତ ହେଉଛି ଲୋକନାଟ୍ୟର ପ୍ରାଣଶକ୍ତି । ଲୋକନାଟ୍ୟ ମାତ୍ରକେ ଗୀତିନାଟ୍ୟ ଧର୍ମୀ ହୋଇଥିବାରୁ ଗୀତ ଓ ନୃତ୍ୟର ଶୃଙ୍ଖଳା ରକ୍ଷା ତଥା ଜନମାନସ ରଞ୍ଜନ ନିମିତ୍ତ ବାଦ୍ୟ-ଯନ୍ତ୍ରର ଆବଶ୍ୟକତା ଏକାନ୍ତ ଭାବରେ ଅନିବାର୍ଯ୍ୟ ହେବା ସ୍ୱାଭାବିକ । 'ଷୋହଳ ସୁଆଙ୍ଗ'

୧୨. Drama in Rural India, J.C. Mathur, P. 25, Asia Publishing House, 1964 ("In anceient dramaturgy of India, two words are used for the green room, 'Nepathaga' and Sajia griha....")

ବା ଦଣ୍ଡନାଟରେ ଯେପରି ଢୋଲଦ୍ୱାରା 'ଷୋହଲଖାଡ଼ି' ବାଦ୍ୟ ନ ହେଲେ ପ୍ରଭାନୃତ୍ୟ ସମ୍ଭବ ନୁହେଁ, ସେହିପରି 'ଶବରୀଲୀଳା' ବା 'ଲକ୍ଷ୍ମୀପୁରାଣ ସୁଆଙ୍ଗ'ରେ ପଖାଉଜ, ମର୍ଦ୍ଦଳ, ଘୁଡ଼୍‌କା (ଧୁଡ଼୍‌କୀ), ମନ୍ଦିରା ନ ବାଜିଲେ ନୃତ୍ୟ ଗୀତର ଆସର ଆଶା କରିବା ଅସମ୍ଭବ । ପଶ୍ଚିମ ଓଡ଼ିଶାର ଲୋକନାଟ୍ୟରେ ମୁଖ୍ୟତଃ ଢୋଲ, ମହୁରୀ, ପଖାଉଜ, ମର୍ଦ୍ଦଳ, ସାରଙ୍ଗୀ ବା କେନ୍ଦରା, ଏକ୍‌ତାରା, ମନ୍ଦିରା, ଝାଞ୍ଜ,ଶଙ୍ଖ, ଘଣ୍ଟ, ଭେରୀ-ତୁରୀ, ଟଡ଼ୋ, ଟାମକିଡ଼ି, ଶିଙ୍ଘା, ବଂଶୀ ପ୍ରଭୃତି ବାଦ୍ୟଯନ୍ତ ବ୍ୟବହୃତ ହୋଇଯାଏ ।

ଲୋକନାଟ୍ୟର ଖୋଲା ରଙ୍ଗମଞ୍ଚରେ ନେପଥ୍ୟ ରୀତିର ପରିକଳ୍ପନା ନିହାତି ଅବାସ୍ତବ । ତଥାପି କୃଷ୍ଣଲୀଳାରେ ପରିବେଶିତ ହେଉଥିବା ବିଜୁଳି କନ୍ୟାର 'ଆକାଶବାଣୀ' କିମ୍ୱା ରାମଲୀଳାର ମାୟାମୃଗର 'ତ୍ରାହି ଲକ୍ଷ୍ମଣ' ପ୍ରସଙ୍ଗରେ ନେପଥ୍ୟ ବ୍ୟବସ୍ଥାକୁ ଏଡ଼ାଇ ଦିଆ ଯାଇ ପାରେନା । ତେଣୁ ଏପରି କ୍ଷେତ୍ରରେ ରଙ୍ଗମଞ୍ଚ ନିକଟସ୍ଥ ପ୍ରସାଧନ କକ୍ଷ ବା ବେଶଘର ଭିତରୁ କେହି ଜଣେ ମଞ୍ଚରେ ଥିବା କଂସକୁ ଦୈବବାଣୀ ଶୁଣାଇଥାଏ କିମ୍ୱା ଦର୍ଶକମାନଙ୍କ ଭିତରେ ପଶି ମାୟାମୃଗ ରୂପୀ ମାରୀଚ 'ତ୍ରାହିଲକ୍ଷ୍ମଣ' ଡାକି ନେପଥ୍ୟର କାମ ଚଳାଇନିଏ ।

ଲୋକନାଟ୍ୟ ଆରମ୍ଭରୁ ନିର୍ଦ୍ଦେଶକ ବା ନାଟ୍ୟଗୁରୁ ଜଣେ ବା ଦୁଇଜଣ କଳାକାରଙ୍କ ଦ୍ୱାରା ଗୀତ ମାଧ୍ୟମରେ ମଙ୍ଗଳାଚରଣ ଓ ବସ୍ତୁ ନିର୍ଦ୍ଦେଶନାର ସୂଚନା ଦେଇଥାଆନ୍ତି । ସେହିପରି 'ପୂର୍ଣ୍ଣମାସୀ କି ଜୟ୍' କିମ୍ୱା ନାଟକର ମୁଖ୍ୟଚରିତ୍ର ରାମ, କୃଷ୍ଣ, ଲକ୍ଷ୍ମୀ କି ଜୟ୍ କରି ନାଟକର ପରିସମାପ୍ତି ଘୋଷଣା କରନ୍ତି । କେତେକ କ୍ଷେତ୍ରରେ ନାଟକ ସମାପ୍ତିର ଅବ୍ୟବହିତ ପୂର୍ବରୁ ସୁକଣ୍ଠ ଗାୟକ କଳାକାର ଜଣେ ଥାଳଟିଏ ଧରି ଦର୍ଶକମାନଙ୍କ ଭିତରେ ବୁଲି ବୁଲି ମଗ୍‌ନି ଗୀତ ଗାଇ ଗାଇ ଅଳି କରନ୍ତି । ଶକ୍ତି ଅନୁସାରେ କେହି କେହି ଦୁଇ ଚା'ରି ପଇସା ଦିଅନ୍ତି କେହି ଦିଅନ୍ତି ନାହିଁ । ଅଳି କରିବା ଆରମ୍ଭ ହବା ମାତ୍ରେ ନାଟକ ସଂପୂର୍ଣ୍ଣ ହେଲା ବୋଲି ସମସ୍ତେ ଜାଣି ଥାଆନ୍ତି ଯେପରି ;

କମଳା କଂଶଲା ନାରୀ କର ବିଦାକି କସ୍ତୁରୀ,
ଖୀର ନୀର ଯେ କଇରୀ କରାଟରେ ଅଛି ପୁରି ।
ଛାର ପଇସାର ପାଇଁ ମୁହଁ ନାଇଁ ଦିଅ ଲୁକାଇ,
ଆଶା କରିଅଛେଁ ମୁଇଁ ନୁହେ ଗୋ ଯୁଗୀ ଭିଖାରୀ ।
ଯଶୋଦା ଜମୋ-ଯମୁନା କର ହରଷେ କରୁଣା,
ଟଁକେରୁଁ ନାଇଁ କରି ଉନା ଭେଟି ପାଇଛେଁ ତୁମରି ।

X X X X X X

ଉଷୋ, ବୁର୍‌ନ୍ଦାବତୀ ଆଶା ଗୋ ପାରିଛ ତଲିଆ ଖୁଷା,

ନାଇଁ ଭାଙ୍ଗ ମୋର ଆଶା ଯିବାକୁ ବାଟ ଯେ ଭାରି ।
ସୁରୁବାଲି ସୁଲୁବନା ଗୋ ପିନ୍ଧିଛ ଯେ ବକାଗୁନା,
ଦିଶୁଛେ କେଡ଼େ ଘଟନ ଆଶା ରହିଛି ମୋହରି ।

XXXXXX

କାନରେ ଯେ କାନଫୁଲ ଦିଶଇ କେଡ଼େ ସୁନ୍ଦର,
ବିଦାକି ଦିଅ ବଅଁଳ ବେଲ ଯାଉଛି ବାହାରି ।
କଥାଥିବା ଏ ସଂସାରେ ଗୋ ଦାନ ଧର୍ମ କରିଥିଲେ,
ଯାହା ଅଛେ ମୋର୍ କପାଲେଁ ଦିଅ ହସି ହସି କରି ।

XXXXXX ।"

ମୋଟାମୋଟି ଭାବରେ ଏହାହିଁ ହେଲା ପଶ୍ଚିମ ଓଡ଼ିଶାର ଲୋକନାଟ୍ୟ ପରମ୍ପରାର ବୈଶିଷ୍ଟ୍ୟ । କିନ୍ତୁ ଆଶ୍ଚର୍ଯ୍ୟଜନକ ଭାବରେ ଏହି ଲୋକସଂସ୍କୃତିଟି ଅନ୍ୟାନ୍ୟ ପଡ଼ୋଶୀ ସଂସ୍କୃତିର ଚାପାରେ ଜୀବନ୍ମୃତ ପ୍ରାୟ ରହିଛି । ସମୟ ଥିଲା ଯେତେବେଳେ କି ଭାରତର କେତେକ ଅଞ୍ଚଳ ଏପରି କି ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ସହିତ ପଶ୍ଚିମ ଓଡ଼ିଶାର ଯୋଗାଯୋଗ ସେତେ ନିବିଡ଼ ନଥିଲା । ମାତ୍ର ଗମନାଗମନର ସୁବିଧା, ଆଧୁନିକ ଶିକ୍ଷା, ସଭ୍ୟତା, ବିଶେଷତଃ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ 'ଅପେରା' ବା ଯାତ୍ରାଦଳ ତଥା ଥିଏଟର ଦଳଙ୍କ ପ୍ରଭାବ, ସର୍ବୋପରି ଚଳଚ୍ଚିତ୍ର ଓ ଦୂରଦର୍ଶନର ବହୁଳ ପ୍ରଚାର ଏବଂ ପ୍ରସାର ଫଳରେ ପଶ୍ଚିମ ଓଡ଼ିଶାର ଏହି ଲୋକକଳାର ମୌଳିକତା ନଷ୍ଟ ହେବାକୁ ବସିଛି । ତେବେ ସୁଦ୍ଧା ଆଧୁନିକ ଶିକ୍ଷା-ସଭ୍ୟତାର ପ୍ରଭାବରୁ ଦୂରରେ ଥିବା ଗ୍ରାମାଞ୍ଚଳ ମାନଙ୍କରେ ଲୋକନାଟ୍ୟ ବଞ୍ଚାଇ ରଖିଛି ତା'ର ନିଜସ୍ୱତା । ଆଜି ମଧ୍ୟ ବର୍ଷର ନିର୍ଦ୍ଦିଷ୍ଟ ସମୟରେ ବା ପର୍ବପର୍ବାଣି ମାନଙ୍କରେ ଅନୁଷ୍ଠିତ ହେଉଥିବା ଲୋକନାଟ୍ୟ ଗୁଡ଼ିକ ଲୋକ-ଜୀବନ ଉପରେ ଯେଉଁ ପ୍ରଭାବ ପକାଇ ପାରୁଛି କିମ୍ବା ଯେଉଁ ରସାନନ୍ଦ ଦେବାରେ ସମର୍ଥ ହେଉଛି, ତାହା ଉପରୋକ୍ତ ବିଜ୍ଞାନ ସମ୍ମତ ନାଟ୍ୟକଳା ଦ୍ୱାରା ସମ୍ଭବ ହୋଇପାରୁନି । ଏହାର କାରଣ ସ୍ୱରୂପ ଏତିକି କୁହାଯାଇ ପାରେ ଯେ ନିର୍ଦ୍ଦିଷ୍ଟ ଅଞ୍ଚଳର ସଂସ୍କୃତି ସେହି ଅଞ୍ଚଳର ଜନ-ଜୀବନର ଅସ୍ଥି-ମଜ୍ଜାଗତ । ସେହି ସଂସ୍କୃତି ସହିତ ଅନ୍ୟ ସଂସ୍କୃତି ମିଶିଯାଇ ପାରେ ସିନା ମୂଳ ସଂସ୍କୃତି ସଂପୂର୍ଣ୍ଣ ଭାବରେ ବଦଳାଇ ହୁଏନା ।



# ପଶ୍ଚିମ ଓଡ଼ିଶାର ଲୋକକଥା

ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା

"କଥାନି ସୁନ୍‌ବ ଆସରେ ପିଲା ଟୁକ୍‌ଲେ, କଥାନି ସୁନ୍‌ବ ଆସ।" ଆସି ବେଡି କରି ବସିଗଲେ ସାନ ପିଲାମାନେ - ପୁଓ ଆଉ ଝିଅ। ଓଠରେ ତାଙ୍କର ହସ, ଆଖିରେ ଚାହାଣିରେ କୌତୁହଳ; - ଆଜି ପୁଣି ବୁଢ଼ୀମା କି କଥା କହିବ, କେଉଁ ବିଚିତ୍ର ରାଜ୍ୟର ବିଚିତ୍ର କଥା କେଜାଣି। ପ୍ରତ୍ୟେକଟିର ଦାବୀ, ସେ ବୁଢ଼ୀର ଅତି ପାଖରେ ବସିବ, ପୁଣି ସମକ୍ଷରେ। ଠେଲା ପେଲା ଚାଲିଛି। ପୁରି ବୁଢ଼ୀ ପଚାରି ଦେଲା - "କଥାନି କହ୍‌ଏମା ?"; ସମସ୍ତେ ପାଟିକରି କହି ଉଠିଲେ "ହଁ-।" ବୁଢ଼ୀ କିନ୍ତୁ ପ୍ରଥମେ ମନଯୋଗର ପ୍ରତିଶ୍ରୁତି ଚାହେଁ - "ଦେଖ ଏକା, ହୁ କାର୍ ଦେବ।" ପୁଣି ବଡ଼ ପାଟିରେ ଉତ୍ତର ମିଳିଲା - "ହଁ-।" ଜଣେ ପଚାରିଲା - "କାଏଁ କଥା ?" ବୁଢ଼ୀ କହିଲା - "ବେଙ୍ଗ୍ କଥା" "କାଏଁ ବେଙ୍ଗ୍ ?" "ଡୁଡ଼ା ବେଙ୍ଗ୍।" "କାଏଁ ଡୁଡ଼ା ?" ନା - "ବାହ୍ମନ୍ ବୁଢ଼ା।" ଏହିପରି ଚାଲିଲା ଆଗକୁ କଥାର ଲଥା, ପୁଣି ଲଥା। ପଶ୍ଚିମାଞ୍ଚଳର ଲୋକେ ଢୋଲ, ମାଦଳ, ଘୁମୁରା ବଜେଇ ମନପୁରୁଣା କେତେ ଗୀତ ଗାଆନ୍ତି - ଲୋକଗୀତ; - ଡାଲଖାଇ, ରସର୍‌କେଲି, ମାଏଲାଜଡ଼, କର୍‌ମା, ଡାପ୍, ହୁମୋ, ବାଙ୍ଗ୍‌ରି ପ୍ରଭୃତି। ସେହିପରି ସେମାନେ ବି କଥା କହନ୍ତି, କଥା ଶୁଣନ୍ତି - କେତେ ରାଜ୍ୟର କେତେ ବିଚିତ୍ର କାହାଣୀ - ଏ ଅଞ୍ଚଳର ଲୋକକଥା। ଲୋକଗୀତ, ଲୋକକଥା, ପ୍ରବଚନ, କିମ୍ବଦନ୍ତୀ ପ୍ରଭୃତିକୁ ନେଇ ଗଢ଼ା ପଶ୍ଚିମ ଓଡ଼ିଶାର ଲୋକସାହିତ୍ୟ।

ସବୁ ଦେଶର ସବୁ ମା, ଆଈ, ବୁଢ଼ୀମା, ଜେଜେମାଙ୍କ ଠାରୁ ସବୁ ଦେଶର ନାତି ନାତୁଣୀଏ କେତେ ହଜାର ବର୍ଷ ହେଲା ଗପ ଶୁଣି ଆସିଛନ୍ତି। କେଉଁ ଦେଶର କେଉଁ ବୁଢ଼ୀମା ପ୍ରଥମେ କେଉଁ ଗପଟି କହିଥିଲା, କିମ୍ବା ଆମ ଅଞ୍ଚଳର ଅସଂଖ୍ୟ ଗପ ମଧ୍ୟରୁ କେଉଁ ଗପ ସର୍ବପ୍ରଥମେ ସୃଷ୍ଟି ହୋଇଥିଲା, ତାର କିଏ, କିଏ ସ୍ରଷ୍ଟା ପ୍ରଥମେ ସେ ଗପ ବଖାଣିଥିଲା - ଏକ ସବୁର ଇତିହାସ ନାହିଁ। ସବୁ ଦେଶର ସବୁ ଲୋକସାହିତ୍ୟ ପକ୍ଷରେ ଏହି ସିଦ୍ଧାନ୍ତ ହିଁ ସମାନ। ସାତ ଆଠ ହଜାର ବର୍ଷ ବା ତଦୁର୍ଦ୍ଧ୍ୱ ସମୟ ପୂର୍ବେ ଯେତେବେଳେ ମଣିଷ ଜାତିର ଜୀବନରେ ପ୍ରଥମେ ଅର୍ଥପୂର୍ଣ୍ଣ

ଧ୍ୱନିସମ୍ୱଳିତ ଶବ୍ଦର ସହାୟତାରେ ଅନ୍ତର୍ଗତ ଭାବରାଜିର ପ୍ରକାଶ ଓ ପରିବେଷଣ ସମ୍ଭବ ହୋଇଥିବ, ସେହି ଦିନଠାରୁ ଆପଣାର ବିବିଧ ଅଭିଜ୍ଞତାର ବର୍ଣ୍ଣନା ମାଧ୍ୟମରେ ମଣିଷ କହି ଶିଖିଛି ଗପ । ମଣିଷ ଭାଷାର ଇତିହାସ ଯେତିକି ପ୍ରାଚୀନତାର ଗଳ୍ପକଥନ ଇତିହାସ ମଧ୍ୟ ସେତିକି ପ୍ରାଚୀନ । ପୁଣି ଏ ଗପ ସବୁର ନିର୍ଦ୍ଦିଷ୍ଟ କଥାକାର କେହି ନାହିଁ । ଜାତିର ଜୀବନରେ ପ୍ରତି ନିୟତ ଘଟୁଥିବା ଯେଉଁ କ୍ଷୁଦ୍ର ବୃହତ୍ ଘଟଣାବଳୀର ଆବେଦନ ସାର୍ବଜନୀନ, ଯେଉଁଗୁଡ଼ିକ ସାମୂହିକ ଭାବେ ଜନଜୀବନକୁ ପ୍ରଭାବିତ କରେ, ତାହାରି ମଧ୍ୟରୁ ଲୋକକଥାର ବିଷୟ ସଂଗୃହୀତ ହୁଏ । ପରିବେଷଣ କାଳରେ ଅନାମଧେୟ ଚରିତ୍ର ଗୁଡ଼ିକ ରଜା, ମନ୍ତ୍ରୀ, ରଜାପୁଅ, ସାଧବପୁଅ, ବାରିକ, କୁମ୍ଭାର, ତନ୍ତୀ, ରାଣୀ, ଅଳସ କନ୍ୟା, କେଶବତୀ କନ୍ୟା, ଅପସରୀ ଅଥବା ଠେକୁଆ, ବିଲୁଆ, ବାଘ, ସିଂହ ପ୍ରଭୃତି ପଶୁପକ୍ଷୀ ନଚେତ୍ ଅସୁର-ଅସୁରୁଣୀ ଭାବରେ ସାଧାରଣ ପରିଚୟ ମଧ୍ୟରେ ଫୁଟନ୍ତି । ସରଳ କଥନିକା ଭଙ୍ଗୀରେ ଟିକିଏ କଳ୍ପନା, ବ୍ୟଞ୍ଜନା ଓ ରୂପକ ଦେଇ କେହି ଜଣେ ଆରମ୍ଭ କରିଦେଲେ ପରମ୍ପରାକ୍ରମେ ସେ ଗଡ଼ି ଚାଲେ । ଯୁଗ-ଯୁଗର ସୁଖ-ଦୁଃଖ, ଅନୁଭୂତି-ଅଭିଜ୍ଞତାର ଅନୁରଞ୍ଜନରେ ମାର୍ଜିତ, ପରିବର୍ତ୍ତିତ, ପରିପୁଷ୍ଟ ହୋଇ ହୋଇ ସେ ଚାଲିଥାଏ । ଲୋକକଥା ତେଣୁ କାହାରି ଜଣକର ନୁହେଁ - ତାହା ଜାତିର କଥା, ଜାତିର ଭାଷା, ଜାତି ହିଁ କହେ, ଜାତିକି ବି କହେ; କହି ଜାଣିଲେ ସରଳତମ ଲୋକଗଳ୍ପ ଲୋକସାହିତ୍ୟ - ଏସବୁ ଏକାନ୍ତଭାବେ ସମଗ୍ର ଜାତିର ସମ୍ପଦ ଅପୌରୁଷେୟ । କୌଣସି ପ୍ରତିଭାର ବ୍ୟକ୍ତିବିଶେଷର ଏକକ ପ୍ରଚେଷ୍ଟା ସେଗୁଡ଼ିକର ସୃଜନ ପାଇଁ ଦାୟୀ ନୁହେଁ.... କୌଣସି ମହାକବିର ନାମ ଉପରେ ସେଗୁଡ଼ିକର ଜନପ୍ରିୟତା ଆଧାରିତ ନୁହେଁ ।

ଲୋକକଥାର ମୂଳଗଠନ ଏବଂ ବିକାଶ କ୍ଷେତ୍ରରେ ଏହି ସତ୍ୟକୁ ସ୍ୱୀକାର କରିଦେଲେ ଅବଶ୍ୟ ମାନିବାକୁ ହେବ ଯେ ତାହାର ସମସ୍ତ ସାରଲ୍ୟ ସତ୍ତ୍ୱେ ତାହା ମଧ୍ୟରେ ଜାତିର ସାଂସ୍କୃତିକ ସ୍ୱରୂପ ଅଙ୍କିତ ହୋଇଥାଏ । ଉଦାହରଣ ସ୍ୱରୂପ 'ଛେଳିଛୁଆର ଦେଆଲୀ ଦେଖା' କାହାଣୀଟି ଏ ଦୃଷ୍ଟିରୁ ପ୍ରଣିଧାନଯୋଗ୍ୟ । - "ଗୁଲ୍‌ଗୁଲିଆ ଛେଲ୍ ପିଲା ପଟେ ଯେ, ସେ ତାର୍ ମାର୍ ପାସେ ଇଆଡ଼େ ସେ ଆଡ଼େ ଡ଼େଗି ଡ଼େଗି ଖେଲୁଥାଏସି - ତାର୍ ସୁରୁ ସୁରୁ ଗୋଡ଼ମାନେ, କଲା କଲା, ଧୋବ୍ ଧୋବ୍, ଖୋଃ - କେଡ୍‌ହେ ସୁନ୍ଦର୍ ଦିଶୁଥାଏସି । ବଡ୍‌ହେ ହର୍‌ବରିଆ । ଲସ୍‌ଲସିଆ କାନ୍‌ଦୁଇଟା ଆଁଖିର ପାସେ ପାସେ କଅଁଲ୍ ପତର୍ ଯୁଡ଼େ ବାଗିର୍ ଝୁଲି ପଡ଼ିଥାଏସି । ଫୁଟୁକ୍ ଫୁଟୁକ୍ ଡ଼େଗି ଡ଼େଗି ଖେଲୁଥାଏସି । ମାଁର୍ ପାସେ ଆସିକରି ଡାକ୍‌ଲା, -, "ମେଁ- ।" ତାର୍ ମାଁ ଭିଲ୍ ତାହାକେ ଦେଖ୍‌ଲା ଆର୍ କହଏଲା - "ମେଁ- ? କାଣା କହୁଛୁ ପୁତା ?" ଛେଲ୍ ପିଲା ପଚ୍‌ରାଲା - "ମାଁ ଗୋ ମାଁ, ଏସୁର୍ ଦିଆଲୀ କେଭେ ହେବା ଗୋ ?" "ଦିଆଲୀ କହୁଛୁ ? ଖୋଃ କାହିଁ କେତେଧୁର୍

ଅଛେ ପୁତା । କାରତିକ୍ ମାସର୍ ପନ୍ଦର୍ ଦିନ୍ ଯିବା, ଉଆଁସ୍ ହେବା, ହେ ଦିନ୍ ସଭେ ବତୀ ଜାଲ୍‌ବେ, ଫଟ୍‌କା ଫୁଟାବେ ଢୋ ଢା ।" ଛେଲି ପିଲାର କୌତୁହଳ ବୃଦ୍ଧି ପାଇଲା, କେତେ ପ୍ରଶ୍ନ ସେ ପଚାରି ଯାଉଥାଏ, କି ବାଣ ? କିପରି ହୁଏ ? ଫୁଟୁଥିଲେ ଡର ମାଡୁଥିବ, ନିଆଁ ଲାଗି ଯାଉଥିବ ଇତ୍ୟାଦି । ମା' ଉତ୍ତର ଦେଇ ଚାଲିଥାଏ । ଆଉ ସମ୍ଭାଳି ନପାରି ପିଲାଟି କହି ପକେଇଲା - "ମାଁ ଗୋ ମାଁ, ନୂଆଁ କୁର୍‌ତା ଗୁଟେ ବନେଇ ଦେବୁ ଗୋ, ମୁଇଁ ଟିକେ ଦିଆଲୀ ଦେଖିଯିମି । ବତି ଜଲୁଥିବା, ଫଟ୍‌କା ଫୁଟୁଥିବା ଢୋ, ଢା, କେନ୍ତା ମଜା ହେବା, ନାଇଁ ଗୋ ମାଁ ?", ଦୀର୍ଘ ନିଃଶ୍ୱାସ ପକାଇ ମା କହିଲା, - "ହଁଏରେ ପୁତା ଯିବୁ ଁ ପିଲା କି ବୁଝେ । ଅଳିର ଭଙ୍ଗୀରେ ପୁଣି କହିଲା - "କାଲ୍‌କେ ତେନେ କୁର୍‌ତା ସିଲେଇ କରାମାଁ ?" ମା ପୁଣି କହିଲା - "ନାଇଁରେ ବାବୁ । ଆଝିର୍‌ଠାରୁ କାଣା କୁର୍‌ତା ବନାମା । ଆଘୋ ଦସରା ଯାଉ, ଫେର୍ ଦିଆଲିର୍ ବିଚାର୍ କର୍‌ମା ।"

ଶକ୍ତିପୂଜାର ବହୁ ପ୍ରସିଦ୍ଧ ପୀଠରେ ଆଶ୍ୱିନ ମାସରେ ପଶୁବଳି ପଡେ । ଯେଉଁଠାରେ ମହିଷୀବଳି, ନରବଳି ପ୍ରଭୃତିର ପ୍ରସିଦ୍ଧି ମଧ୍ୟଥିଲା ସେଠି ମେଷଛାଗ-ବଳିର ହିସାବ କିଏ ରଖେ ? ଏହାହିଁ ଏ ପର୍ଯ୍ୟନ୍ତ ଅନେକ କ୍ଷେତ୍ରରେ ବାସ୍ତବ ସତ୍ୟ ହୋଇ ରହିଛି । ମା - ଛେଳିର "ଦସ୍‌ରା ଯାଉ" ଉକ୍ତି ମୂଳରେ ଅଶିଣର ଶକ୍ତିପୂଜା ଏବଂ ଛାଗବଳିର ପ୍ରାଚୁର୍ଯ୍ୟ ହିଁ ରହିଛି କାରଣ ରୂପେ । ପକ୍ଷାନ୍ତରେ ଏ ଛେଳି ଏହି ସମାଜର ଅତି ସାଧାରଣ ଅଧିବାସୀଙ୍କର ପ୍ରତୀକ - ଦାରିଦ୍ର୍ୟ ଅଥବା ଦୁଃଖଦୁର୍ଦ୍ଦଶା ମଧ୍ୟରେ ଭବିଷ୍ୟତର ସୁନେଲୀ ସ୍ୱପ୍ନ ଦେଖିବାରେ ଆତ୍ମବିସ୍ମୃତ ହୋଇ ଅତ୍ୟନ୍ତ ଆଗ୍ରହ ଯୋଗୁଁ ଏକ ଅର୍ନ୍ତବର୍ତ୍ତୀ ବିପଦ ପ୍ରତି ସଚେତନତା ହରାଇ ବସିଥିବା ଲୋକଙ୍କ ପ୍ରତିନିଧି । ଆହୁରି ମଧ୍ୟ ଭବିଷ୍ୟତ୍ ସୁଖ-କଳ୍ପନାରେ ଅତ୍ୟନ୍ତ ଉତ୍ସାହୀ ଯେ କୌଣସି ଲୋକ ପକ୍ଷରେ ଏହା ଏକ ସୁନ୍ଦର ନୀତିବାକ୍ୟ - "ଟିକିଏ ଟାକ ବାବୁ, ଦସ୍‌ରା ଯାଉ ।"

ପଶ୍ଚିମ ଓଡ଼ିଶାର ଲୋକ କଥାରେ ପଶ୍ଚିମ ଓଡ଼ିଶାର ପ୍ରାକୃତିକ ଚିତ୍ର ଅତୀବ ମନୋରମ । ଉଣା ଅଧିକେ ସବୁ ଗଳ୍ପରେ ରହିଛି ପାହାଡ଼ ପର୍ବତ, ଅଗନାଅଗନି ବନସ୍ତ, ବନ ପାହାଡ଼ର ଜୀବଜନ୍ତୁ ଠେକୁଆ, ବିଲୁଆ, ବାଘ, ସାପ । ଆଧୁନିକ ଜୀବନର ରଙ୍ଗମଞ୍ଚ ସହର ସବୁ ଆପଣାର ନକଲି ରଙ୍ଗ ଆଉ ବାରମିଶା ଢଙ୍ଗନେଇ ଉନ୍ନତିର ଯେଉଁ କୋଟୀକୁ ପହଞ୍ଚିଛନ୍ତି ତାହା ଆମର ଜନପ୍ରିୟ ଲୋକଗଳ୍ପର ପରିବେଶ ପାଇଁ ଅନୁକୂଳ ନୁହେଁ । ସହରଠାରୁ ଦୂରରେ - ବହୁଦୂରରେ - ଦେଶର ନିଭୃତ ଅଭ୍ୟନ୍ତର - ପାହାଡ଼ ପର୍ବତ ଘେରା, ସବୁଜ ଛାୟା ଶୀତଳ, ନିର୍ଝର ମୁଖରିତ, ଶାନ୍ତସ୍ନିଗ୍ଧ ଜନବସତି, ଯେଉଁଠି ଆଜି ବି ମଣିଷ ରହିଛି ସ୍ୱଚ୍ଛନ୍ଦ ଜୀବନ ନେଇ । ସଭ୍ୟତାର ଅଶାନ୍ତ ଦୃଢ଼ତା ଆଉ ଅବାଞ୍ଛିତ ଜଟିଳତା ସେ ଜୀବନକୁ କଳୁଷିତ କରିନି; ସେହିପରି ସଭ୍ୟ ମାନବର

ସୂକ୍ଷ୍ମ ମାନସିକ ତଥା ଆତ୍ମିକ ବିକାଶର ସମ୍ବାଦ ବି ପହଞ୍ଚିନି ତା' ପାଖରେ । ସେହି ପରିବେଶ ହିଁ ଲୋକକଥାର ଉପଯୋଗୀ, ସେଇ ଶାନ୍ତ ସରଳ ଲୋକ ରଜାମନ୍ତ୍ରୀ କମାର ବଢେଇ ପ୍ରଭୃତି ବିବିଧ ରୂପ ନେଇ ଆତ୍ମପ୍ରକାଶ କଲେ ମଧ୍ୟ, ଲୋକକଥାରେ ଆପଣାର ମୌଳିକ ପ୍ରକୃତି ହରାଇ ନାହାନ୍ତି । ତେଣୁ ଖୋଜିଲା ଦରବ ପାଇବା ଲାଗି ନାୟକଙ୍କୁ ଯିବାକୁ ହୁଏ ପାହାଡ଼ ପରେ ପାହାଡ଼ ଡେଇଁ ଏକ ଅଜଣା ରାଜ୍ୟକୁ; ସେଠାରେ ଥାଏ ହ୍ରଦ : କାଚକେନ୍ଦୁ ପରି ନିର୍ମଳ ତାର ପାଣି; ମଝିରେ ତୁଙ୍ଗା ଉଠି ଯାଇଛି ଆକାଶକୁ ! ରଙ୍ଗବତୀ କନ୍ୟା, ହାତୀକେନା ଫୁଲ, ପାତାଳ କେତକୀର ଗଳ୍ପ, 'ଯା ବାପ ଚଢେ ଘୋଡା ତା' ବେଟା ଥୋଡା ଥୋଡା' ଗପ, 'ଠେକୁଆ' ଗପ ସବୁ ଗପରେ ଉଣାଅଧିକେ ଏହା ଏକ ସତ୍ୟ । କହିବାକୁ ଗଲେ ଏହି ପରିବେଶ ଚିତ୍ରଣରେ କୌଶଳ ଏବଂ ସାବଲୀଳତାକୁ ଅବଲମ୍ବନ କରି ଏ ଅଞ୍ଚଳର ଅସଲ ମୌଳିକ ଲୋକକଥାଗୁଡ଼ିକୁ ଅପର ଅଞ୍ଚଳର ଅନୁକରଣରେ ପ୍ରଚଳିତ କଥା ଗୁଡ଼ିକରୁ ପୃଥକ କରିଦେବା ମଧ୍ୟ ସମ୍ଭବ ହୋଇପାରେ ।

ଜଙ୍ଗଲ ଘେରା ପରିବେଶରେ ମଣିଷର ସହରର ରୂପେ ରହିଥାନ୍ତି ବଣର ଜନ୍ତୁମାନେ - ପଶୁ ଆଉ ପକ୍ଷୀ - ବାଘ, ଗଣ୍ଡାର, ଭାଲୁ, କୁଟ୍ରା, ବିଲୁଆ, ଠେକୁଆ, ମୟୁର ଇତ୍ୟାଦି । ଏମାନେ ଗଳ୍ପର ଗୋଟାଏ ଗୋଟାଏ ଚରିତ୍ର । ଆଶ୍ଚର୍ଯ୍ୟର କଥା, ମଣିଷର ଏମାନେ ଶତ୍ରୁ ନୁହନ୍ତି, ବରଂ ମଣିଷର ସଖା, ସହଚର । ବାଘମାମୁଁ, ବିଲୁଆନନା, ଠେକୁଆ ଭାଇ, ଭାଲୁ ନାନୀ ଏମିତି କେତେ ମାନ୍ୟ ବି ମଣିଷ ଖଞ୍ଜିଛି ସେମାନଙ୍କ ସହିତ । ସେମାନେ ହିଂସ୍ରବୋଲି ମଣିଷ ମୂଳରୁ ସେମାନଙ୍କୁ ଅବିଶ୍ୱାସ କରି ଜଗି ଜଗି ଚଳୁଥାଏ ସିନା; କିନ୍ତୁ ତାଙ୍କ ବିଚାରରେ ମନେହୁଏ ମଣିଷ ମୌଳିକ ଶତ୍ରୁ ନୁହେଁ । ସବୁ ଗପରେ ଯେପରି ଜଙ୍ଗଲ ରହିଛି, ସେହିପରି ବାସ୍ତବତା ରକ୍ଷା ଲାଗି ସେମାନେ ବି ରହିଛନ୍ତି । 'ଯାର୍ ବାପ ଚଢେ ଘୋଡା' ଗପରେ ରଜାପୁଅ ଗେଲରେ ପଚାରିଛି - "କାର୍ ବୁଲେ ପାନି ପିଉଛୁଁ ଝୁଲିଆ ମଜୁର ?" ଅଥବା "କାର୍ ବୁଲେ ପାନି ପିଉଛୁ ସିଂଘାଲ କୁଟ୍‌ରି ?" ଉତ୍ତର ଦେଇଛନ୍ତି ପ୍ରେମରେ ମୟୁର କୁଟ୍ରା, "ତୁମ୍ ବୁଲେ ପାନି ପିଉଛୁଁ ରଜାର କୁମାର ।" କାଉଚିଆ ଚଢେଇ କିନ୍ତୁ ମାନିନାହିଁ, କାରଣ ସେ ଗଣ୍ଡାରର ବଡଭାଇ । ଗଣ୍ଡାର ବଡ ଧାରଣା । ଧାଇଁ ଆସିଛି, ଶେଷରେ ମରି ଶୋଇଛି ରଜାପୁଅର ଅସ୍ତ୍ରରେ । ସେହିପରି ସବୁ ଗପରେ ଘଟିଛି । ଜଙ୍ଗଲୀ ଜନ୍ତୁ ପ୍ରାୟ ସବୁତ ମଣିଷ ସହ ବନ୍ଧୁତା କରିଛି; କେତେ ସାହାଯ୍ୟ କରିଛି. ସାଧବପୁଅ ସୁଜନକୁ । ପାରାରାଜ ଝିଅ ଇଙ୍ଗିତରେ ଲକ୍ଷେ ପାରା ଆସି ତାକୁ ରାଜାଙ୍କ କ୍ରୋଧରୁ ବଞ୍ଚାଇବା ଲାଗି ରାତିକ ମଧ୍ୟରେ ମାଣେ ଜମିର ସୋରିଷ ଗୋଟାଇ ଦେଇଛନ୍ତି । ସେହିପରି ବାର୍‌ହା ରଜା ଝିଅର ଇସାରାରେ ହଜାରେ ବାର୍‌ହା ଆସି ରାତିକ ଭିତରେ ଗୋଟିଏ ପୋଖରୀ ଖୋଳି ଦେଇଛନ୍ତି । କିନ୍ତୁ ବେଳେ ବେଳେ ଭାଲୁ, ଗଣ୍ଡାର, ବାଘ ହୋଇଛନ୍ତି ଶତ୍ରୁ । ଫଳରେ ସେମାନେ ହାରିଛନ୍ତି, ମଣିଷର ବୁଦ୍ଧି ପାଖରେ ସେମାନେ ସେମାନଙ୍କ ଦେହର ବଳ ପରାଜୟ ସ୍ୱୀକାର

କରିଛି ।

ବେଳେ ବେଳେ ଏ ଜନ୍ତୁମାନଙ୍କର ପାରସ୍ପରିକ ସମ୍ପର୍କହିଁ ଗଳ୍ପର ଉପଜୀବ୍ୟ ହୁଏ । ସେଠାରେ ସେମାନେ ଗୋଟିଏ ଗୋଟିଏ ଲୋକଚରିତ୍ରର ପ୍ରତିନିଧିତ୍ୱ କରନ୍ତି, ଗଳ୍ପ ହୋଇଯାଏ ରୂପକଧର୍ମୀ । ପ୍ରାୟ ସବୁଗଳ୍ପରେ ନୀତିଶିକ୍ଷା ରହିଥାଏ । ଏ ଚରିତ୍ରଗୁଡ଼ିକର ସ୍ୱରୂପ ନିର୍ଦ୍ଧାରଣ କଲାବେଳେ ଲୋକମନ ପ୍ରକାଣ୍ଡ ଓ ସ୍ଥୁଳକାୟ ଜନ୍ତୁକୁ ମହାବଳୀ କରିଛି; ଯଥା, ହାତୀ, ବାଘ, ଗଣ୍ଡାର; କିନ୍ତୁ ପ୍ରକୃତ ମନୋହର ଚରିତ୍ରର କଳ୍ପନା ଦେଖାଯାଏ ଠେକୁଆ, ବିଲୁଆ, ମୂଷା ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର ଜୀବଙ୍କ ମଧ୍ୟରେ । ତାଙ୍କ ପାଇଁ ସହାନୁଭୂତିରେ ତାଙ୍କ ସ୍ୱଳ୍ପ ଶାରୀରିକ ବଳର ପରିପୂରକ ରୂପେ ଲୋକଗଳ୍ପ ତାଙ୍କୁ ଦିଏ ଚତୁରତା ଆଉ ମାନସିକ ଉତ୍କର୍ଷ । ନଚେତ୍ ସେମାନେ ଆତ୍ମରକ୍ଷା କରିବେ କିପରି ? ଏ ଦୃଷ୍ଟିରୁ ବିଲୁଆ, ହେଟା, Wolf, କୋକିଶିଆଳିଙ୍କର ବିଭିନ୍ନ ଦେଶରେ ପ୍ରସିଦ୍ଧି ଅଛି । ପଶ୍ଚିମ ଓଡ଼ିଶାର ଲୋକକଥାରେ ଠେକୁଆ ଟା ଖରିଆ ଏ ଗୌରବର ଅଧିକାରୀ ।

ସବୁଦେଶର ଲୋକଗଳ୍ପ ପରି ଏ ଅଞ୍ଚଳର କାହାଣୀରେ କଳ୍ପନାର ପ୍ରାଚୁର୍ଯ୍ୟ ଏବଂ ରୋମାଞ୍ଚକର ଅସାଧ ସାଧନ ପ୍ରସଙ୍ଗର ବିସ୍ତୃତ ଉପସ୍ଥାପନା ଦେଖାଯାଏ । କାହାଣୀର ଭୂତ, ପ୍ରେତ, ରାକ୍ଷସ-ରାକ୍ଷସୀ ସମସ୍ତେ ସରଳ ବିଶ୍ୱାସରୁ ଉଦ୍‌ଭୂତ । କାରଣ ମଣିଷର ଭୟ ସେମାନଙ୍କୁ ସୃଷ୍ଟି କରେ, କିନ୍ତୁ ଜୀବନର ସ୍ୱପ୍ନିଳ କାମନା ଲୋକଗଳ୍ପରେ ସେମାନଙ୍କୁ କେବଳ ପରାଜିତ କରେ ନାହିଁ, ମାରି ସାବାଡ଼ କରିଦିଏ । ଲୋକଗଳ୍ପର ନାୟକ ଆପଣାର ବୀରତ୍ୱ ପ୍ରଦର୍ଶନ କରି ଯାହା ଅସୁନ୍ଦର, ଅବାଞ୍ଛିତ ଅକଲ୍ୟାଣ କର ସେ ସବୁକୁ ଲୋପ କରି ଆଶା, ଆନନ୍ଦ ଓ ପ୍ରାଣପ୍ରାଚୁର୍ଯ୍ୟର ବାଣୀହିଁ ପ୍ରଚାର କରିଯାଏ । ଏଥିଲାଗି, ବୋଧହୁଏ, ଲୋକଗଳ୍ପରେ ବିୟୋଗାନ୍ତ ପରିଣତିର ସ୍ଥାନ ନାହିଁ । ଏ ଅଞ୍ଚଳର ମାଦକତାଭରା ଲୋକଗୀତ ଯେପରି ଜୀବନ ଆଉ ଆନନ୍ଦର ସଂଗୀତ, ଲୋକଗଳ୍ପ ମଧ୍ୟ ସେହିପରି କାବ୍ୟମୟ କଳ୍ପନାବିଳାସର ରଚନା- ମଧୁର, ମୋହକର, ମାଦକତା ଭରା । ସେଠି ଦୁଃଖ ନାହିଁ, ନୈରାଶ୍ୟ ନାହିଁ, ଖାଲି ଅଛି ଉଚ୍ଛଳ ଜୀବନରସ ।

ନାରୀର ସ୍ୱାଚ୍ଛନ୍ଦ୍ୟ ଏ ଅଞ୍ଚଳର ସାମାଜିକ ବୈଶିଷ୍ଟ୍ୟ । ପୁଣି ଏ ସ୍ୱାଚ୍ଛନ୍ଦ୍ୟ ଏ ଅଞ୍ଚଳରେ ନରନାରୀର ସ୍ୱାଭାବିକ ସହଜ ସମ୍ପର୍କର ପ୍ରମାଣ । 'ଯିମିତି କର୍ମ ସିମିତି ଫଳ' ଗଳ୍ପରେ ସବୁ ସାଧବବହୁ କରମା ନାଟ କରିଛନ୍ତି - କରମସାନୀ ପୂଜାର ନରନାରୀର ମିଳିତ ନୃତ୍ୟ ହିଁ ଲୋକସମ୍ମତ । ସାଧବପୁଅ ଆଖିରେ ସରଳା ଗୃହିଣୀମାନେ ଦୋଷୀ ହୋଇଛନ୍ତି । ନିରୀହା ଗୃହିଣୀ ନିର୍ବାସିତା ହୋଇଛି - ଲକ୍ଷ୍ମୀ ଗଲେ, ଫଳରେ ଛାଡିଗଲେ ଲକ୍ଷ୍ମୀ । ବଳଭଦ୍ର ଜଗନ୍ନାଥ ଲକ୍ଷ୍ମୀପୁରାଣରେ ଯେମିତି କଠୋର ଦଣ୍ଡ ଭୋଗକଲେ ତାହାରି ଅନୁରୂପ ଏ ଗଳ୍ପର ବିବରଣୀ । ସେହିପରି କେତେ ଦୃଷ୍ଟାନ୍ତର ଅବତାରଣା ଘଟିଛି । ଶେଷରେ ଲକ୍ଷ୍ମୀ ଫେରିଛନ୍ତି । ଦ୍ୟୁତିବାହନ

ଓଷା କଥାରେ ବଡମାଉସୀ ପୁତୁରାମାନଙ୍କୁ ମାରିବା ଲାଗି ବାର ଉପାୟ କଲାପରି ଠେକୁଆ କଥାରେ ପଡ଼ି ବୁଢ଼ୀ ଅସୁରୁଣୀ ଜୋଇଁକୁ ମାରିବାକୁ କେତେ ଫିକର କରି ଶେଷରେ ନିଜେ ମରିଛି । ଓଷାବ୍ରତର ଜନପ୍ରିୟତା ସହିତ ଇର୍ଷାପରାୟଣ ଲୋକଙ୍କ ପ୍ରବୃତ୍ତି ଉପରେ ଆଲୋକପାତ ଏ ସବୁ ଗଳ୍ପର ଉଦ୍ଦେଶ୍ୟ ।

ଲୋକଗଳ୍ପ ଲୋକଜୀବନର ବାସ୍ତବ ଓ ଆଦର୍ଶ ବିଷୟ ବହୁ ସତ୍ୟ, ବହୁ ତଥ୍ୟର ଗନ୍ତାଘର । ଏ ଅଞ୍ଚଳର ଭାଲୁ କାଲୁକାଣୀ ଗଳ୍ପରେ ଓଡ଼ିଆ ଘରର ପଖାଳ, ଶାଗ ଆଉ ଲଙ୍କା ପିଆଜର ବର୍ଣ୍ଣନା, ବୁଢ଼ା ବୁଢ଼ୀ ଗପର ବିରିବରା, କୃଷକ ଜୀବନ, କୃଷି ଶ୍ରମିକର ମୂଲ ଓ ସହଯୋଗ; ଠେକୁଆ କଥାର ନଡ଼ାକିଣା, ଧାନଚଳି ଓ ରୁଆ, ବଣ ଜନ୍ତୁଙ୍କ ଫସଲ ଉଜାଡ, କୁଅ ଉଝାଳି ମାଛ ମାରିବା, ବାଘ ବିଲୁଆ କଥାରେ ପିତୃ ପିତୃପୁରୁଷଙ୍କ ଶ୍ରାଦ୍ଧ, ଅନ୍ୟତ୍ର ବାହାଘର, ଯଉତୁକ, ଗୋପନପ୍ରେମ, ଧାଈର ସ୍ନେହ ଇତ୍ୟାଦି ବିବିଧ ବିଷୟ ମଧ୍ୟରେ ମାନବିକ ଆବେଗ ଏବଂ ପ୍ରବୃତ୍ତିର ସୁ ଆଉ କୁ ଯାବତୀୟ ଭାବର ମଞ୍ଜୁଳ ପ୍ରକାଶ କଣ୍ଠେ ସରଳ ଅଥଚ ମାର୍ମିକ ଚିତ୍ରଣ ମିଳେ । ନରନାରୀର ସଂପର୍କ ଦୃଷ୍ଟିରୁ ଲୋକଗଳ୍ପ ନିରଳସ ଭାବେ ବର୍ଣ୍ଣନା କରାଯାଇଛି ବୈବାହିକ ସମ୍ବନ୍ଧର କଥା । କେତେ ସରଗସୁନ୍ଦରୀ, ଅପସରୀ, ଅସୁରକନ୍ୟା ରାଜଜେମା, ସାଧବଝିଅଙ୍କ କେତେ କଉତୁକଭରା ଢଙ୍ଗର ମନୋରମ ବର୍ଣ୍ଣନା କରିବାରେ ଲୋକଗଳ୍ପ ଟିକିଏ ବି କ୍ଳାନ୍ତି ଅନୁଭବ କରେ ନାହିଁ । ଆଉ ଅସୁରର ମାୟାପୁରୀରେ ସବୁଠାରୁ ମାୟାବିନୀ ତାର ସେଇ ସୁକୁମାରୀ ଝିଅ । ପ୍ରେମିକ ରଜାପୁଅକୁ ଅଥବା ସାଧବପୁଅକୁ ସେ ମାଛି କରି ଥୋଇ ଦେଇଛି; ଆଉ କୌଶଳରେ ଛଳନାଭରା ସ୍ନେହର ଦାବୀ ଦେଖାଇ ଅସୁରର ଜୀବନନାଟିକାର ରହସ୍ୟ ଆଦାୟ କଲାବେଳେ ସବୁ ଶୁଣି ତାକୁ ଦେଇଛି ସେଇ ମାଛିଟିକି । ତା ପରେ ତହିଁଆର ଦିନ ବେଣ୍ଟପୋଖରୀର ସାତ ତାଳ ପାଣି, ବଉଦ ତାଳ ପଙ୍କ ଭିତରୁ ଆସିଛି ଫରୁଆ । ଆଉ ତା ଭିତରର ସଜନ୍ ପାଳିତ ଭଅଁରଟିର ବେକ ମୋଡ଼ି ଦେଇ ରଜାପୁଅ ମାରିଛି ଅସୁରକୁ । ତା'ପରେ ଅସୁରର ଝିଅକୁ ବିଭା ହୋଇଛି ସେ । ଏ ମାୟାର କାହାଣୀ ସହିତ ତାନ୍ତ୍ରିକତା, ଗୁଣିଗାରଡୀ, ସାତଭଉଣୀଙ୍କ ସଂପର୍କ କଣ ସେ ବିଷୟରେ ଗବେଷଣା ଆରମ୍ଭ ହୋଇନାହିଁ । ଏ ଦିଗରେ ପ୍ରାଥମିକ ବ୍ୟବସ୍ଥା ସ୍ୱରୂପ ଏ ଲୋକକଥା ଗୁଡ଼ିକୁ ସଂଗ୍ରହ କରିବା ପ୍ରଥମେ ଆବଶ୍ୟକ । କଥାକାର ଆପଣାର ସ୍ୱାଭାବିକ ପରିବେଶରେ ଏବଂ ସ୍ୱାଭାବିକ ଭାଷାରେ କହିଗଲା ବେଳେ ସେହିପରି ଭାବେ ଏ ଗୁଡ଼ିକର ସଂରକ୍ଷଣ ଓ ସଂଗ୍ରହ ପାଇଁ ବ୍ୟବସ୍ଥା ନକଲେ ଜାତିର ଏ ମୌଖିକ ସାହିତ୍ୟ - ସଂପଦ ନାନା କୃତ୍ରିମତା ଭିତରେ ତାର ମୌଳିକ ରୂପ ହରାଇବାର ଆଶଙ୍କା ଯଥେଷ୍ଟ ରହିଛି । ଏ ଦିଗରେ ଆଶୁ ଉଦ୍ୟମ ଏକାନ୍ତ କାମ୍ୟ ।

# ପଶ୍ଚିମ ଓଡ଼ିଶାର ଲୋକଗୀତ

ନରସିଂହ ପ୍ରସାଦ ଗୁରୁ

ଲୋକଗୀତ ସାଧାରଣତଃ ଲୋକମୁଖରେ ପ୍ରଚଳିତ ଗୀତକୁ ବୁଝାଏ । ଶରୀର ପୁଷ୍ଟିସାଧନ ପାଇଁ ଖାଦ୍ୟ ଯେପରି ଆବଶ୍ୟକ, ସେହିପରି ମନର ସ୍ଫୁର୍ତ୍ତି ପାଇଁ ସଙ୍ଗୀତର ଆବଶ୍ୟକତା ଅପରିହାର୍ଯ୍ୟ । ମାନସିକ ଶାନ୍ତି ଓ ବେଦନାକ୍ଳିଷ୍ଟ ହୃଦୟରେ ଟିକଏ ଆନନ୍ଦର ପରିବେଷଣ ପାଇଁ ସଙ୍ଗୀତ ଯେ ଏକ ମହୋପକାରୀ ମହୌଷଧି ଏଥିରେ ସନ୍ଦେହର ଅବକାଶ ନାହିଁ ।

ଭାରତର ବିଭିନ୍ନ ଅଞ୍ଚଳରେ ସ୍ଥାନୀୟ ଲୋକଚରିତ୍ରକୁ ନେଇ ବିଭିନ୍ନ ପ୍ରକାର ଲୋକଗୀତ ପ୍ରଚଳିତ । କେତେକ ଅଞ୍ଚଳର ଲୋକଗୀତ ଗୁଡ଼ିକ ଶାସ୍ତ୍ର ପୁରାଣ ଉପରେ ଆଧାରିତ ବିଷୟବସ୍ତୁକୁ ନେଇ ରଚିତ । ଆଉ କେତେକ ଅଞ୍ଚଳର ଲୋକଗୀତ ଗୁଡ଼ିକରେ ଜାତୀୟ ଚେତନାର ପରିପ୍ରକାଶ ହୋଇଥିବା ଦେଖିବାକୁ ମିଳେ । ବିଶେଷତଃ ସ୍ଥାନୀୟ ପ୍ରାକୃତିକ ପରିବେଶ, ସାମାଜିକ ପରିବେଷ୍ଟନୀ, ରୀତିନୀତି, କୌଳିକ ପ୍ରଥା ଓ ସଂସ୍କୃତିର ଶକ୍ତିଶାଳୀ ପ୍ରଭାବରେ ଲୋକଗୀତ ଗୁଡ଼ିକ ପ୍ରଭାବିତ । ତେଣୁ ଲୋକଗୀତରେ ସ୍ଥାନୀୟ ସଂସ୍କୃତି, କୁଳାଚାର ଓ ଜୀବନ ଦର୍ଶନର ସୁସ୍ପଷ୍ଟ ସଙ୍କେତ ପ୍ରତିଫଳିତ ହୋଇଥାଏ ।

ପଶ୍ଚିମ - ଓଡ଼ିଶାର ଲୋକଗୀତ ସମ୍ବନ୍ଧରେ ଅନୁଧ୍ୟାନ କରିବାକୁ ଗଲେ ଏଇ ସତ୍ୟର ସନ୍ଧାନ ମିଳେ । ପଶ୍ଚିମ ଓଡ଼ିଶାର ଲୋକଗୀତ କହିଲେ ସାଧାରଣତଃ ସମ୍ବଲପୁରୀ ଭାଷାଭାଷୀ ପଶ୍ଚିମ ଓଡ଼ିଶାର ସମ୍ବଲପୁର, ବଲାଙ୍ଗିର, ସୁନ୍ଦରଗଡ଼ ଓ କଳାହାଣ୍ଡି ଆଦି ଜିଲ୍ଲାମାନଙ୍କରେ ପ୍ରଚଳିତ ଲୋକଗୀତକୁ ବୁଝାଏ । ଏ ଅଞ୍ଚଳରେ ପ୍ରଚଳିତ । ଲୋକଭାଷା ମୁଖ୍ୟ ଓଡ଼ିଆ ଭାଷାଠାରୁ କିଞ୍ଚିତ ଭିନ୍ନ । ପ୍ରକାଶଭଙ୍ଗୀ, କହିବା ଚାତୁରୀ ଓ ବିଭିନ୍ନ ଆଞ୍ଚଳିକ ଶବ୍ଦବିନ୍ୟାସ ଏହାର ବିଶେଷତ୍ୱ ଏଇ ଭାଷାରେ ଏକ ସମୃଦ୍ଧ ଶବ୍ଦଭଣ୍ଡାର ରହିଛି, ଏହାକୁ ଅସ୍ୱୀକାର କରାଯାଇ ନପାରେ । ବସ୍ତୁତଃ, ପ୍ରାନ୍ତୀୟ ଆଦିବାସୀ ଭାଷା ଓ ହିନ୍ଦିଭାଷାର ପ୍ରଭାବ ଓଡ଼ିଆ ଭାଷାରେ ପ୍ରତିଫଳିତ ହୋଇ ସମ୍ବଲପୁରୀ ଭାଷା ସୃଷ୍ଟି ହୋଇଥିବାର ପ୍ରତୀୟମାନ ହୁଏ । ସମ୍ବଲପୁର ଅଞ୍ଚଳର ଲୋକଗୀତଗୁଡ଼ିକ ସାଧାରଣତଃ ଏଇ ସମ୍ବଲପୁରୀ ଭାଷାରେ ରଚିତ ।

ପଶ୍ଚିମ-ଓଡ଼ିଶାର ଉପରୋକ୍ତ ଜିଲ୍ଲାଗୁଡ଼ିକ ପରସ୍ପର ଏଇ ସାଂସ୍କୃତିକ ରଜ୍ଜୁରେ ଆବଦ୍ଧ । ଏମାନଙ୍କ ରୀତିନୀତି, ଚାଲିଚଳନ, କଥିତ ଭାଷା, ପରମ୍ପରା ଓ ପର୍ବପର୍ବାଣୀ ମଧ୍ୟରେ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏନା । ଏହି ବିରାଟ ଅଞ୍ଚଳର ଅଧିବାସୀ ପରସ୍ପର ବୈବାହିକ ଓ ଅନ୍ୟାନ୍ୟ ପାରିବାରିକ ତଥା ସାମାଜିକ ସୂତ୍ରରେ ଗୁନ୍ଥା ହୋଇଥିବାରୁ ଏକ ପ୍ରାନ୍ତର ସାଂସ୍କୃତିକ ପରମ୍ପରା ଅପର ପ୍ରାନ୍ତକୁ ସମ୍ପ୍ରସାରିତ ହେବା ଅତି ସହଜ ଓ ସୁଗମ ହୋଇପାରିଛି ।

ପାହାଡ଼ ପର୍ବତ ଘେରା ବନରାଜି ଶୋଭିତ ଏହି ସମ୍ବଲପୁରୀ ଭାଷାଭାଷୀ ଜିଲ୍ଲାଗୁଡ଼ିକ, ବିଶେଷତଃ ଆଦିବାସୀ ଅଧୁସିତ ଅଞ୍ଚଳ । ଏଣୁ ଏ ଅଞ୍ଚଳର ସମଗ୍ର ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟଗୁଡ଼ିକ ଆଦିବାସୀ ସଂସ୍କୃତି ଓ ସାମାଜିକ ରୀତିନୀତି ଦ୍ୱାରା ପ୍ରଭାବିତ । ଏଣୁ ଏ ଅଞ୍ଚଳର ଲୋକଗୀତ ଏହି ଆଦିବାସୀମାନଙ୍କ ହୃଦୟର ସ୍ୱତଃସ୍ଫୁର୍ତ୍ତ ଭାବଧାରାର ମୂର୍ତ୍ତିମନ୍ତ ଉଚ୍ଛ୍ୱାସ । ଆଦିବାସୀମାନେ ସାଧାରଣତଃ ଅଶିକ୍ଷିତ ଓ ଆଧୁନିକ ରୁଚି ଓ ସଭ୍ୟତା ବିହୀନ ଏକ ଅନୁନ୍ନତ ତଥା ଚିରଅବହେଳିତ ସଂପ୍ରଦାୟ । ଶିକ୍ଷାସଭ୍ୟତା ବିହୀନ ଏହି ସଂପ୍ରଦାୟର ଅନ୍ତରକାନନ ବସନ୍ତ କୋକିଳର ଅମୀୟ ସଙ୍ଗୀତ ମାଧୁରିରେ ଅହରହ ମୁଖରିତ । ସେ ଏଇ ସଙ୍ଗୀତ ମୂର୍ଚ୍ଛନାରେ ଭାବବିଭୋର ହୋଇ ତନ୍ମୟ ପ୍ରକୃତିର ନିତ୍ୟ ସଙ୍ଗୀତରେ ଆପଣାସତ୍ତା ହରାଇଦିଏ । ଉନ୍ମୁକ୍ତ ପ୍ରକୃତିର କୋଳରେ ପରିବର୍ଦ୍ଧିତ ଏହି ଅଞ୍ଚଳର ପଲ୍ଲୀବାସୀ କର୍ମମୁଖରିତ ଜୀବନର କ୍ଷଣିକ ଅବସର ସମୟକୁ ରସୋତ୍ତୀର୍ଣ୍ଣ କରିବା ପାଇଁ ଆପଣାକୁ ସଙ୍ଗୀତର ସାବଲୀଳ ସ୍ରୋତରେ ଭସାଇ ଦିଅନ୍ତି । ଉତ୍‌ଫୁଲ୍ଲିତ ସଙ୍ଗୀତ ପୀୟୁଷ ଏମାନଙ୍କ ଅନ୍ତରରେ ଯାବତୀୟ ଦୁଃଖ, ଗ୍ଲାନି ଓ ଅବସାଦକୁ ଅପମୋଦନ କରି ତା' ଭିତରେ ଭରିଦିଏ ନୂତନ ସ୍ଫୁର୍ତ୍ତି, ନବୀନ ଚେତନା ଓ କର୍ମ ପ୍ରବଣତାର ଅଫୁରନ୍ତ ଶକ୍ତି ନୀରସ ଜୀବନ ତାଙ୍କର ସରସ ହୋଇଉଠେ । କର୍ମକ୍ଳାନ୍ତ ଜୀବନରେ ଅବସର ବିନୋଦନର ସାମଗ୍ରୀ ଯୋଗାଏ ଏଇ ନିତ୍ୟ ପ୍ରଚଳିତ ଲୋକଗୀତ । ସେଥିପାଇଁ ଏ ଅଞ୍ଚଳର ଲୋକଗୀତ ମଧ୍ୟରେ ଏମାନଙ୍କ ସାମାଜିକ ମୂଲ୍ୟବୋଧ, ଆତ୍ମଚେତନା ଓ ସାଂସ୍କୃତିକ ପରମ୍ପରାର ଏକ ମୂଲ୍ୟାଙ୍କନ କରିବା ସହଜ ମଧ୍ୟ ।

ଲୋକଗୀତ ଗୁଡ଼ିକ ସାଧାରଣତଃ ଲୋକମୁଖରୁ ଲୋକମୁଖକୁ ପ୍ରସାରିତ ହୋଇଥାଏ । ଅଶିକ୍ଷିତ ସଂପ୍ରଦାୟ ମଧ୍ୟରେ ସୀମାବଦ୍ଧ ଏହି ଗୀତଗୁଡ଼ିକ ଲିଖିତାକାରରେ ଲିପିବଦ୍ଧ ହେବା ସୁଯୋଗରୁ ବଞ୍ଚିତ । କାରଣ ଏ ଦିଗରେ ଆଗ୍ରହ ଥିଲେ ସୁଦ୍ଧା ଗବେଷଣା ଓ ସଙ୍କଳନ ପାଇଁ ଏ ପର୍ଯ୍ୟନ୍ତ ବିଧିବଦ୍ଧ ଉଦ୍ୟମ ହୋଇନାହିଁ । ବଂଶ.ପରମ୍ପରାନୁକ୍ରମେ ମେଳ ମଉଛବ, ପର୍ବପର୍ବାଣୀ ଓ ସାମାଜିକ କାର୍ଯ୍ୟାନୁଷ୍ଠାନ ମାନଙ୍କରେ ନିତ୍ୟ ପ୍ରଚଳିତ ଏହି ଲୋକଗୀତ ଗୁଡ଼ିକ ଗ୍ରାମରୁ ଗ୍ରାମାନ୍ତରକୁ ଓ ଏକ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଅତି ସହଜରେ ଓ କ୍ଷୀପ୍ରଗତିରେ ସଂପ୍ରସାରିତ ହୋଇଥାଏ । ଏଇ

ଲୋକଗୀତ ମଧ୍ୟରେ ପଲ୍ଲୀଜୀବନର ସୁଖ, ଦୁଃଖ, ହର୍ଷଃ, ବିଷାଦଃ, ଆଶା-ନିରାଶା ଓ ଜୀବନ ଦର୍ଶନର ଏକ ନିଛକ ପ୍ରତିଛବି ସ୍ପଷ୍ଟରୂପେ ପ୍ରତିଫଳିତ ହୋଇଥାଏ । ଏଥିରୁ ଆମେ ଏମାନଙ୍କ ସାମାଜିକ ଚଳନୀ, ସାହିତ୍ୟିକ ବର୍ଣ୍ଣନାଚାତୁରୀ ଓ କଳ୍ପନାବିଳାସର ସରଳ, ତରଳ ଓ ସାବଲୀଳ ପ୍ରକାଶଭଙ୍ଗୀର ଏକ ନିଖୁଣ ଚିତ୍ରପାଉ । ତେଣୁ ଏ ଗୁଡ଼ିକ ଲୋକଗୀତ ବା ଗଣଗୀତ ନାମରେ ସର୍ବତ୍ର ପରିଚିତ ଓ ଆଦୃତ । ଏଥିରେ ସାଙ୍ଗୀତିକ ନିୟମ ଓ ଶୃଙ୍ଖଳା ତଥା ଅର୍ଥଗାମ୍ଭୀର୍ଯ୍ୟ ମୁଖ୍ୟ ନହେଲେ ମଧ୍ୟ ସ୍ୱାଭାବିକତାର ସ୍ୱଚ୍ଛଳ ଆତ୍ମପ୍ରକାଶ ଓ ସୌନ୍ଦର୍ଯ୍ୟବୋଧର ଜୀବନ୍ତ ରୂପାୟନ ଏହାର ବିଶେଷତ୍ୱ । ଏଣୁ ଏଗୁଡ଼ିକ ମଣିଷ ହୃଦୟକୁ ଅତି ସହଜରେ ପ୍ରଭାବିତ ଓ ଆକୃଷ୍ଟ କରିଥାଏ । ଜୀବନର ଏକ ମଧୁର ସ୍ମୃତି ଅଥବା ସବୁଜ ପ୍ରକୃତିର ଅଭୁଲା ଚିତ୍ରପଟକୁ ଭବୋଚ୍ଛ୍ୱାସରେ ରସାଣିତ କରି ନୃତ୍ୟ ଓ ସଙ୍ଗୀତ ମାଧ୍ୟମରେ ପରିବେଷଣ କରିବାରେ ଏମାନେ ଯଥେଷ୍ଟ ଆନନ୍ଦ ପାଇଥାନ୍ତି ।

ମଣିଷର ପ୍ରକୃତି ଓ ମାନସିକ ପ୍ରବୃତ୍ତି ସର୍ବତ୍ର ସମାନ । ଏଣୁ ଏହି ଲୋକଗୀତ ଗୁଡ଼ିକ ଅଧୁନା କେବଳ ପଲ୍ଲୀର ଅନୁନ୍ନତ ଅଞ୍ଚଳରେ ତଥା ଅଶିକ୍ଷିତ ସଂପ୍ରଦାୟ ମଧ୍ୟରେ ଆବଦ୍ଧ ହୋଇ ନ ରହି ଶିକ୍ଷିତ ଓ ସଭ୍ୟ ସମାଜରେ ମଧ୍ୟ ଆଦୃତ ଓ ଲୋକପ୍ରିୟ ହୋଇଛି ।

ବିଭିନ୍ନ ପରିବେଶ ଓ ସାମାଜିକ କାର୍ଯ୍ୟାନୁଷ୍ଠାନକୁ ନେଇ ସମ୍ବଲପୁରୀ ଲୋକଗୀତ ଗୁଡ଼ିକୁ ବିଭିନ୍ନ ବିଭାଗରେ ବିଭକ୍ତ କରାଯାଇପାରେ । ଯଥା - କୁମାରୀ ଗୀତ, ହଳିଆ ଗୀତ, କାନ୍ଦଣା ଗୀତ, ଶିଶୁଖେଳା ଗୀତ, କୃଷି ସମ୍ବନ୍ଧୀୟ ଗୀତ । ପର୍ବପର୍ବାଣି ଓ ବିବାହ ଉତ୍ସବାଦିରେ ପ୍ରଚଳିତ ବିହାଗୀତ ବା ନାଚୁଣିଆଁ ଗୀତ । ଏଗୁଡ଼ିକ ସାଧାରଣତଃ କର୍ମା, ଡାଲ୍‌ଖାଇ, ରସର୍‌କେଲୀ, ମାଇଲାଜଡ଼, ଝୁମୁକଝୁମା, ଘୁମୁରା, ରୂପନପାଁଜିଆ, ବାଙ୍ଗ୍‌ରୀ, ହୁମୋ, ଛିଲୋଲାଇ, ଗୁର୍ଜିକୁଟା, ଯାଇଫୁଲ ଓ ଡାପ ରୂପେ ସୁପରିଚିତ । ଏହି ଲୋକଗୀତ ଗୁଡ଼ିକ ନୃତ୍ୟ ଓ ବାଦ୍ୟର ସମନ୍ୱୟରେ ଅତି ଚିତ୍ତାକର୍ଷକ ଓ ଉପଭୋଗ୍ୟ ହୋଇଥାଏ । ପର୍ଯ୍ୟାୟକ୍ରମେ ସେ ମଧ୍ୟରୁ କେତୋଟିର ଆଲୋଚନା କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

ହଳିଆ ଗୀତ :-

ଶଗଡ଼ରେ ବସି ଦୂର ଗାଁକୁ ଗଲାବେଳେ ହଳିଆ ବାପୁଡା ତା' ମନଫୁଲାଣିଆ ଗୀତର ଲହରୀ ମେଲିଦିଏ । ଶଗଡ଼ର ମନ୍ଥର ଗତି ସହ ଦୀର୍ଘ ଯାତ୍ରାପଥର କ୍ଲାନ୍ତି ଅପମୋଦନ ପାଇଁ ଏଇ ହଳିଆ ଗୀତଗୁଡ଼ିକ ବେଶ ରୁଚିବନ୍ତ ହୋଇଥାଏ । ଏହାଛଡା ପହିଲି ଅ ଷାଢର ପ୍ରଥମ ବାରିପାତରେ ଯେତେବେଳେ ଧରଣୀର ଶୁଷ୍କବୁକୁ ବର୍ଷାସିକ୍ତ ହୋଇଉଠେ ସେତେବେଳେ କ୍ଷେତରେ ହଳ କଲାବେଳେ ହଳିଆ, ମୂଲିଅ ଓ ଚାଷୀମାନଙ୍କ ମୁଖନିଃସୃତ ହଳିଅ ଗୀତ ବେଶ୍ ଉପଭୋଗ୍ୟ ଓ

ଶ୍ରୁତିମଧୁର ହୋଇଥାଏ । ନବବର୍ଷର ଶୁଭ ସଙ୍କେତ ନେଇ ଯେତେବେଳେ ମେଘରେ ମଦୁର ଆକାଶ ଧରଣୀ ଉପରେ ଅଜାଡିଦିଏ ବର୍ଷାର ମୁଷଳ ଧାରା ତେତେବେଳେ ଚାଷୀର ମନପ୍ରାଣ ପୁଲକିତ ହୋଇଉଠେ । ଓଠକତରୁ ଟା'ର ସ୍ୱତଃ ଝରିପଡ଼େ ବର୍ଷାର ସ୍ୱାଗତ ସଂଗୀତ ମାର୍ଗଶୀର ମାସରେ ଖଳାରେ ବେଙ୍ଗଳା ପକାଇ ସାରା ରାତ୍ରି ଧାନ ଅମଳରେ ମନପ୍ରାଣ ଢାଳି ଦେଲାବେଳେ ଏହି କର୍ମତତ୍ପର ସମୟଗୁଡ଼ିକ ସଂଗୀତ ମୁଖର କରି ତୋଳିବାକୁ ମନପ୍ରାଣ ଟା'ର ବିହ୍ୱଳ ହୋଇଉଠେ । ଟା' ମୁଁହଁରୁ ସ୍ୱତଃ ଝରିଆସେ -

ଏ .... ଦୂରର ବିଚିନା ଗରଜି ଉଠେ ମହୁ
ଆଘର୍ ପାନିତି କା ଘରର ବହୂ
ଫୂଲଦାନେ ଦେମି ଗୋ ପାନତି
ମୋ ଘରେ ଛନେ ରହୁ
ଛନେ ରହୁ ରହୁ ଗୋ ଛମାସ ରହିଲା
ଟା'ର ମାଁ ଘର ଚିଁଡ଼ା ପଦର
କେମତେ ମୁରୁଛିଲାରେ..... ।

କୁମାରୀ ଗୀତ :-

ସଞ୍ଜବେଳେ ଗାଁ ଦାଣ୍ଡରେ ପଲ୍ଲୀର କୁମାରୀ ଝିଅମାନେ ନାନାଜାତିର ଗୀତ ଗାଆନ୍ତି । ସେମାନଙ୍କ ସମବେତ ସ୍ୱର ଲହରୀରେ ଗାଁ ଦାଣ୍ଡ ଉଛୁଳି ଉଠେ । ସାଧାରଣତଃ ବସନ୍ତ ଓ ଶରତ ଋତୁରେ ଉଜ୍ଜ୍ୱଳ ପକ୍ଷ ରାତିରେ ଏହି କୁମାରୀ ଗୀତ ଅବାଳବୃଦ୍ଧବନିତା ସମସ୍ତଙ୍କର ଉପଭୋଗ୍ୟ ହୋଇଥାଏ । ଏହି କୁମାରୀ ଗୀତଗୁଡ଼ିକ ମୁଖ୍ୟତଃ ହୁମୋ, ବାଙ୍ଗ୍ରୀ, କୋକିଳ, ଛିଲୋଲାଇ, ସିପାଇଫୁଲ ନାମରେ ପରିଚିତ ।

(କ) ହୁମୋ -

କୁମାରୀମାନେ ଦୁଇଦଳରେ ବିଭକ୍ତ ହୋଇ ପ୍ରତିଯୋଗିତା ମୂଳକ ରୀତିରେ ଏକସ୍ୱରରେ ଗୀତ ବୋଲନ୍ତି । ବେଳେ ବେଳେ ଏହା ପ୍ରଶ୍ନୋତ୍ତର ଛଳରେ ମଧ ଗୀତ ହୋଇଥାଏ । ଗୋଟାଏ ଦଳ ପ୍ରଥମେ ଗୀତ ଆରମ୍ଭ କରି ବୋଲନ୍ତି -

"ହୁମୋ ନନ ଦେଶ ବୋଇଲିରେ
ହୁମନନ ନନ ଦେଶରେ
ନ ଖାଉଁ ତୁମର ଗୁଆ ପନସ

ନ ଯାଉଁ ତୁମର ଦେଶ ବଇଲିରେ
ନ ଯାଉଁ ତୁମର ଦେଶରେ"

ଦ୍ୱିତୀୟ ଦଳ ଅଣ୍ଟାକୁ ଅଣ୍ଟା ଧରାଧରି ହୋଇ ପ୍ରଥମ ଦଳ ପାଖକୁ ଘୁଞ୍ଚିଆସି ସେମାନେ ଗାଇଥିବା ଗୀତର ଉତ୍ତର ଦିଅନ୍ତି

ତୁମ ଦେଶ ଗଲେ କି କି କରିମୁ
ତୁଛାଏ ଗଞ୍ଜର ଗଞ୍ଜା
ଗଞ୍ଜାର ଗଞ୍ଜାକୁ ଫୁଲ ବିଛଣା
ନାକ ତଳେ ଦଣ୍ଡି ଗୁଣା
କେତେ ହଲାଉଛୁ ନାକର ଗୁଣା
ମୋ ଭାଇ କମାନି ସିନା ବଇଲିରେ
ମୋ ଭାଇ କମାନି ସିନାରେ ।

(ଖ) କୋକିଳ -

କୁମାରୀ ବଙ୍ଗି ଭାସିଲାରେ କୋକିଳ
କୁମାରୀ ବଙ୍ଗି ଭାସିଲା
ନିକୁଞ୍ଜ ବନରେ ଗୁରୀ ଗାଧିଲାରେ ଗୁରୀ ଗାଧିଲା
ସକାଳୁ ବେଳ ଉଦଲା କୋକିଲରେ ।

(ଗ) ଛିଲୋଲାଇ-

ଛିଲୋଲାଇ ଆ ଖେଲ୍ ମା ବାଇ
ବାଇ ଗଲେ ରୁଷି ଆଗୋ ମା ପିଉସୀ
କଳା କଳା ବାଇଙ୍ଗନ ଗୁଛଗଲି ଧାରେ
କଲାମୁଖା ସାନ୍‌ଦିଅର୍ ମାରିଦେଲା ବାରେ
ଘୁଁଚି ଯାରେ ଘୁଁଚି ଯା ମଚା ତଲ୍‌କୁ
ମଚା ତଲର୍ ସିଙ୍ଗ୍‌ପାନିଆ ଭୁର୍‌ସି ମୁଡ଼କୁ ।

ଏଇ ଗୀତ ଓଡ଼ିଶାର କଟକ ଅଞ୍ଚଳରେ ପ୍ରଚଳିତ ପୁଚିଖେଳ ପରି । ଗୀତ ଗାଇ ଗାଇ କୁମାରୀମାନେ ଆଣ୍ଠୁପାତି ବସି ଦୁଇହାତ ହଲାଇ ହଲାଇ ଖେଳନ୍ତି । ଏହା ସେମାନଙ୍କ ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ପକ୍ଷରେ ଏକ ଉତ୍କୃଷ୍ଟ ବ୍ୟାୟାମ ଓ ଚିତ୍ତାକର୍ଷକ ଖେଳ ।

(ଘ) ବାଙ୍ଗ୍ରୀ -

ଉଷୁନା ଧାନ ଗର୍ଭଣୀ ବାଙ୍ଗ୍ରୀରେ
ଚନ୍ଦ୍ରମା ପିଠିରେ ନୀଳ ବଦନୀ ବାଙ୍ଗ୍ରୀରେ
ଦିଶନ୍ତି ଭାଇ ଭଉଣୀ ବାଙ୍ଗ୍ରୀରେ

(ଙ) ସିପାଇଫୁଲ -

ଝାଙ୍କର ଘର ପନକି  ରସ ସିପାଇଫୁଲ
ଦିଅ ଟଟି ମାଡ଼ି  ଯାଉ ପନିକି
ରଜାର ଫୁଲ ବାଡ଼ିକି  ରସ ସିପାଇଫୁଲ ।।
ଆଡ଼ିକୁ ଡ଼େଗିଲା ବଛାରସ ସିପାଇଫୁଲ
ତତେ ଘନି ଦେମି  ଲାଲ ଗାମୁଛା
କରୁଥିବୁ ମୁହଁ ପୁଛା  ରସ ସିପାଇଫୁଲ
ସିପାଇଫୁଲର  ବାଟର ଘର
ନିଆମ ଘାଟିକୁ ଡର, ରସ ସିପାଇଫୁଲ ।।

(ଚ) ବଉଳ -

"ଆହେ ମୋ ବନର ହାତୀ, କା' ଠାରେ ପୀରତି
କଦମ୍ବ ଗଛରେ ଫୁଲ ଫୁଟେ ନାନା ଜାତି
ସେ ଫୁଲ ମାଖିରେ ବିଦେଶୀ,
ବୁଲୁଥାଉ ନିଶାରାତିରେ ବଉଲ
ରାଧିକାର ନାମଧର ଦୂତିକାର ନାମଧର ।।"

ଏହି ଗୀତ ଗୁଡ଼ିକର ମାଧ୍ୟମରେ କୁମାରୀ ହୃଦୟର ସାରଲ୍ୟ, ସାଂସାରିକ, ମାୟାମମତା, ପିତା ମାତା, ଭାଇ ଭଉଣୀ ତଥା ବନ୍ଧୁ ବାନ୍ଧବଙ୍କ ପ୍ରତି ଥିବା ଶ୍ରଦ୍ଧା ଭକ୍ତି ଓ ସୁବିମଳ ଆନ୍ତରିକତା ଜୀବନ୍ତରୂପ ନେଇ ଫୁଟି ଉଠେ । ଛଳଛଳ ପହିଲି ଯଉବନର ଚପଳତା ଓ କୁମାରୀ ସୁଲଭ ମାନସିକ ଚଞ୍ଚଳତାର ଆବେଗ ଏହି କୁମାରୀ ଗୀତ ମାନଙ୍କରେ ସାବଲୀଳ ରୀତିରେ ବିଭିନ୍ନ ଇଙ୍ଗିତ ଧର୍ମୀ ରସାଳ ପଦମାନଙ୍କ ମଧ୍ୟ ଦେଇ ପ୍ରକାଶିତ ହୋଇଥାଏ ।

ଶିଶୁଖେଳା ଗୀତ :-

ପଲ୍ଲୀର ଶିଶୁମାନେ ଖେଳିବା ବେଳେ ମନ ନଥିଲା ବେଳେ ଅବୁଝା ଶିଶୁକୁ ବୁଝାଇବା

ପାଇଁ ଗୀତ ଓ ଖେଳ ପ୍ରତି ତା'ମନକୁ ଆକୃଷ୍ଟ କରା ଯାଇଥାଏ । ମାଁ ମାନେ ଶିଶୁକୁ ଖୋଇବା ବେଳେ ବା ଶୁଆଇବା ଅବ୍ୟବହିତ ପୂର୍ବରୁ ତନ୍ମୟ ହୋଇ ବାତ୍ସଲ୍ୟ ମମତାଭରା ଗୀତ ବୋଲନ୍ତି । ଓଡ଼ିଆରେ ନାନାବାୟା ଗୀତ ଓ ଇଂରାଜୀରେ Nursury Rhyme ପରି ଏ ଗୀତ ଗୁଡ଼ିକ ଏ ଅଞ୍ଚଳରେ ଶିଶୁମାନଙ୍କ ଚିତ୍ତ ବିନୋଦନ ପାଇଁ ଉଦ୍ଦିଷ୍ଟ ।

ଗୀତ -

ଚାଇଁ ଚାଇଁ ମୁଠି
ଚିଡ଼ିଆ ଘରର ଚୁଁଟି
ଆ ଚିଡ଼ିଆ ପାଏନ୍ କେ ଯିମା
ତୋର୍ ମୋର୍ କେନ୍ଦୁ ଖାଏମା
ତୋର୍ କେନ୍ଦୁଟା ପାଚିଲା
ମୋର୍ କେନ୍ଦୁଟା କଁଚା
ଟିକେ ଟିକେ ଭାଗ୍ କର୍ମା
ହାତୀ କି ଘୁଡା ।।

ବିହାଗୀତ ଓ ନାଚୁଣିଆଁ ଗୀତ -

ପଲ୍ଲୀର ବିବାହ ଆଦି ଉତ୍ସବରେ ସାଧାରଣତଃ ଏ ଗୀତ ଗୁଡ଼ିକ ବୋଲାଯାଏ । ନାଚୁଣିଆ ଗୀତ ଓ ନୃତ୍ୟ ସହିତ ବିବିଧ ବାଦ୍ୟର ଐକ୍ୟତାନ ବିବାହ ଉତ୍ସବକୁ ଆନନ୍ଦ ମୁଖର କରି ତୋଳେ । ଏହି ଗୀତ ସହ ଢୋଲ, ମହୁରୀ, ତାସା ଓ ନିଶାଣ ଆଦି ଦେଶୀ ବାଦ୍ୟ ବ୍ୟବହୃତ ହୁଏ । ସମୟେ ସମୟେ ଶାସ୍ତ୍ର ଓ ପୁରାଣର ବିଭିନ୍ନ ଉପାଖ୍ୟାନ ଗୁଡ଼ିକୁ ଗୀତାକାରରେ ମଧ୍ୟ ପରିବେଷଣ କରାଯାଇଥାଏ ।

(କ) ବିହାଗୀତ-

ସାହାଜ ପତର ବେନି ରସବତୀ
ସାହାଜ ପତର ବେନି
କାହିଁଗଲ ତମର ଦୁଇ ବହନୀ
ସତେ ବଉଳରେ ଖୁସାଥି ରଖ ମହନୀ
ତମର ଖୁସା ତଳେ ଭମର ବୁଲେ

ଭମର ବୁଲେ ତ,
ଖଜା ଅଛେ ବଲି ନୁରେ ।

(ଖ) ନାଚୁଣିଆଁ ଗୀତ -

ଟାରେ ନାରେ ନାରେ ନାରେ
ନାରେ ନାରେ
ଟାରେ ନାରେନା ନାରେ ନାନା
ତୁଇ ହେବୁ ସୁନା ଯେ
ମୁଇଁ ହେବି ଟାଙ୍ଗନା
ଆର୍ ହଲଦୀ ପାନିରେ
ଝଲ ଝଲ କରି
ମାଛ ପରାଏ କି ଛଟକି ଦେବି
ଲାଗିଲେ ନ ଛାଡମି ।।
ତୁଇ ହେବୁ ଛଁଚାନ ଯେ
ମୁଇଁ ହେମି ଖଦାନ
ଆରେ ଧନୁଶର ଧରି ଜଗି ବସିମି
ଲାଗିଲେ ନ ଛାଡିମି ।।

ରସର୍‌କେଲୀ, ଡାଲ୍‌ଖାଇ, ମାଇଲାଜଡ଼ -

ଆଦିବାସୀ ଜାତିର ବିବାହ ଆଦି ଉତ୍ସବରେ ବା ଦଶହରା ଯାତ୍ରା ସମୟରେ ଏହି ଗୀତ ଗୁଡ଼ିକ ବୋଲଯାଏ । ଏହା ସାଧାରଣତଃ ଯୁବତୀମାନେ ବୋଲନ୍ତି । ଗୀତଗାଇ ସାରି ଅଣ୍ଟା ନୁଆଇଁ ଯୁବତୀମାନେ ବିଭିନ୍ନ ଭଙ୍ଗୀରେ ନୃତ୍ୟ କରନ୍ତି । ନୃତ୍ୟ ସହିତ ଢୋଲ, ନିଶାଣ, ମହୁରୀ, ଟିମକି (ନାଗରା) ଆଦି ବିଭିନ୍ନ ଜାତିର ବାଦ୍ୟ ବାଜେ । ଗୀତର ରସାଳ ପଦାବଳୀ ଆଦି ରସଦାୟକ ଓ ଭାବବ୍ୟଞ୍ଜକ । ବିଶେଷତଃ ପୂର୍ଣ୍ଣ ଯୌବନା ଧାଙ୍ଗଡୀ ମାନଙ୍କ ବୀଣାଜୀଣା କଣ୍ଠ ନିଃସୃତ ମାଦକଭରା ଏଇ ଗୀତ ଗୁଡ଼ିକ ଦର୍ଶକମାନଙ୍କ ପ୍ରାଣେ ପ୍ରାଣେ ଜଗାଏ ଅପୂର୍ବ ଶିହରଣ । ରସରକେଲୀ ଗୀତ ଦର୍ଶକର ପ୍ରାଣକୁ ରସୋତ୍ତୀର୍ଣ୍ଣ କରି ତୋଳିବା ସଙ୍ଗେ ସଙ୍ଗେ ମାଇଲାଜଡ଼ ଗୀତ ତା' ମାନକୁ ଭାବବିହ୍ୱଳତାରେ ଜଡ଼ କରି ପକାଏ । "ଝୁମ୍‌କୁ ଝୁମା" ଗୀତ ଶୁଣି ଶୁଣି ତା' ଆଖିରୁ ଝୁମୁରା (ତନ୍ଦ୍ରା) ଅପହରି ଯାଏ ।

(କ) ରସର୍କେଲୀ -

ରସର୍କେଲୀରେ
ବାଟେ ବାଟେ ଯାଉଥିଲା ଭେଟିଲି ଧମନା
ପଏସା ଅନେ ଦେତ ବଏଲେ ପିନ୍ଧତି କକନା
କକନାରେ ଦହି ମୁଡ଼ି ବୁହି ପଡୋରସ
ଜିରା ଲଗା ଭାଙ୍ଗ ଦେମି ରଅବତୀ ଭାବ କାଏଁ ପୀରତି
ରନେମି ଆମର ଦେଶ ତଷା ମୁଲକି ହସାରେ
ତୋର ପଏସା ମୋର ପଏସା ବଉଳ -
ଘିନିମା ଖିରିସା - କଷା ମୁଲକି ହସାରେ
ଟମର୍ ଲାଗି ରଖିଥିଲି ପଇସା ବୁହିନେଲା ମୂଷା
ତଷା ମୁଲ୍‌କି ହସାରେ -

(ଖ) ମାଇଲା ଜଡ଼ -

ଜଡ଼ର କଟା ଲଡବଡରେ ମାଇଲା ଜଡ
ଜଡ଼କେ ନେଡି ବରଗଡ଼ରେ ମାଇଲା ଜଡ
ଇ ତୁଲି ସୁରୁଆରେ ସେ ତୁଲି ଅରୁଆ
ପିଲାଦିନର ସାଙ୍ଗ ଯଦି କରୁଛେ
ଅରୁଆରେ ମାଇଲା ଜଡ଼
ଜଡ଼କେ ନେଡି ବରଗଡ଼ରେ ମାଇଲା ଜଡ।

(ଗ) ଡାଲଖାଇ -

ଡାଲଖାଇରେ ....
ବାଟର ଖଜୁର୍ ବୁଟ ଲମ୍ ଲମ୍ କଁଟା
ଶାଶ୍ ଘର୍‌ମେ ଯିମିବଲି ସାଜିଥିଲି ଅଁଟା
ମାଁ ଘର୍‌କେ ଯିମିବଲି ସାଜିଥିଲି କେରି
ପେରରି ଉପରେ ନାଗର
ସୁନା କେରି କେରି କି ......ଡାଲଖାଇରେ।

କର୍ମା :-

ଘାସି, ବିଞ୍ଝାଲ ଆଦିବାସୀମାନେ ଜାତିର ବିବାହ ପ୍ରସଙ୍ଗରେ କରମା ନାଚ ଓ ଗୀତ ବୋଲାଯାଏ । ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାରେ ବିଶେଷତଃ ଭାଦ୍ରବ ଆଶ୍ୱିନ ଏକାଦଶୀ ଦିନ କରମଶାନୀ ଦେବୀଙ୍କ ପୂଜା ଆରାଧନା କରାଯାଏ । ଗ୍ରାମବାସୀଙ୍କ କରମ୍‌ାନୀ ଦେବୀଙ୍କ ମହିମା ପ୍ରତି ଅଗାଧ ବିଶ୍ୱାସ । ଦେବୀର କରୁଣା ହେଲେ ଗାଁର ରୋଗ ବଇରାଗ ଅପାଳକ, ମରୁଡି ଓ ଫସଲରେ କୀଟ ଲାଗିବା ଆଦି ଅନିଷ୍ଟକର ଦୈବ ଦୁର୍ବିପାକ ଅଚିରେ ଖଣ୍ଡନ ହୋଇଯିବ । ଏଇ ବିଶ୍ୱାସର ବଶବର୍ତ୍ତୀ ହୋଇ ଗାଁ ମାନଙ୍କରେ କର୍ମା କରାଯାଏ । 'ମାନ୍ଦଲ' ବଜାଇ ଏଇ ଗୀତ ବୋଲାଯାଏ । ଯୁବତୀମାନେ ଗୋଡରେ ପଇଁରି ଓ ଗଳାରେ ଫୁଲମାଳ ପିନ୍ଧି ତାଳି ମାରି ବୃତ୍ତାକାରରେ ନାଚନ୍ତି । ବୃତ୍ତ ମଧ୍ୟରେ ମାନ୍ଦଲିଆ ମାନ୍ଦଲ ବଜାଇ ନାଚେ ।

ଗୀତ - ଆହାରୀ -

ଏ ରାଧେ ରାଧେ ଗୋ ଦୂତୀ
ରାଧେ ରାଧେ ଗୋ ଛଇଲା
ଲୁଇଁ ଲୁଇଁ ଯାଉଥିଲି
ବଟିଆ ବୁଟାକେ
କାଣି ଟେଁକର ମାରିଦେଲା
ତଲିଆ ଖସାକେ
ଦୁଃଖ କହେମି କାହାକେ
ତଲିଆ ମୁଡରେ ଘର
ଧୁକା ଉଡେ ଫରଫର
ଲଟେଲ ଗିଜି ବୁଡ଼ାଇଲା ଘରରେ
ଟେଙ ଖଜି ଚାଲେ ଟରଟର ।

ଝୁମେର୍ -

ବିପତ୍ତି ମେ କୌନ ନହିଁ ସାଥିରେ ଭାଇ ଲଛମନ୍
ବିପତ୍ତି ମେ କୌନ ନୟାସାଥି
ଇକ ବିପତ୍ତି ମେ ରାମ ଔର ଲଛମନ ଲା

ଲଁକାକେ ରାବନ୍ ଭାଇ ସୀତାଲା ଚୁରାଇ ଭାଇ
ବିପତ୍ତି ମେ କୌନ୍ ନୟା ସାଥ୍

ଡାପ୍ -

ସାଧାରଣତଃ ଆଦିବାସୀ ବିବାହ ଆଦିରେ କିମ୍ବା କୌଣସି ପୁନିଅ ପର୍ବ ଉପଲକ୍ଷେ ଗାଁର ଯୁବକ ଓ ଯୁବତୀ ମାନେ ଉଭୟେ ଦଳବାନ୍ଧି ନାଚନ୍ତି । ବେଳେବେଳେ ଏକାଠି ହାତକୁ ହାତ, ଅଣ୍ଟାକୁ ଅଣ୍ଟା ବା କାନ୍ଧକୁ କାନ୍ଧ ଧରାଧରି ହୋଇ ନଇଁ ନଇଁ ନାଚନ୍ତି । ଚଇତ ପର୍ବ ବେଳେ ଜହ୍ନ ରାତିରେ ଆଦିବାସୀ ଗାଁ ମାନଙ୍କରେ ଡାପ୍ ନାଚ ବେଶ୍ ଜମେ । ନୃତ୍ୟର ସାବଲୀଳ ଭଙ୍ଗୀରେ ଯୁବକ ଓ ଯୁବତୀମାନେ ଭାବୋନ୍ମତ୍ତ ହୋଇ ପରସ୍ପର ପରସ୍ପରକୁ ନେଇ ଗୀତ ଯୋଡି ଆନନ୍ଦ ଉପଭୋଗ କରନ୍ତି । ଏହି ଗୀତ ଓ ନୃତ୍ୟ କଳାହାଣ୍ଡି ଜିଲ୍ଲାର ଆଦିବାସୀ ବହୁଳ ଅଞ୍ଚଳରେ ବିଶେଷ ରୂପେ ପ୍ରଚଳିତ ।

ଗୀତ - ସଭାବର୍ଣ୍ଣନା -

ଠିକ୍ ଶୁଣିଯା ସଭାଜନ ଲୟେ ଲଗା ମନ
ଲୟେ ଲଗାଇଲେ ମନ ପାଇବୁ ସୁଜ୍ଞାନ
ବାର ଅଧା ତେର ପଣ କାହାର ଭାଜନ ।

ଗ୍ରାମଦେବତୀ ବନ୍ଦନା -

ଯୁହାର ଗୋ ମାଁ ଡୁକ୍ରୀ ବୁଢ଼ୀ
ବେଶ୍ ମୁଢ଼େ ତୋର ଗୁଡ଼ି
ତକେ ଅଙ୍ଗର୍ ରକତ୍ କାଢ଼ି ଦେବିସ୍
ମକେ ପଦ ଆସୁ ଜୁଡ଼ି ଜୁଡ଼ି
ଇରିତ ସିରିତ କେରାଣ୍ଡି ମାଛର ପିତ
ଗାଁ ଗରାମ ପତି ନ ବନ୍ଦିଲେ କିଏ ଗାଇଚା
ପାଲିଆ ଗୀତ

ଯୁବକ -

ସିନ୍ଦ ଖଡ଼୍କା ଝିଁ ପାରେ କେନ୍ ପିଠ୍କେ ନିଲ
କହତେ ଦିତ କକତେ ଦିରେ ଶାଲୀ ତକେ
ହିଡ଼ିଆ ବାଡ଼ି ମାର୍ ଦିହିନା ।।

ଯୁବତୀ -

ହିଡ଼ିଆ ବାଡ଼ି ନା ମାରନା ମକେ
କୁଣ୍ଡି ଯୁଖା ରା଼ବ ଦିବିଶ୍ ଟକେ ।।

ଉଭୟେ -

ଟେରା ରେରୋ ରେରୋ ରେରୋ,
ରେରୋ ରେ ମୋର କାରା ପାଏନ୍
କାରାକାଏନ୍ କେ ସିନ୍ଦ୍ଟା ଖେଲ ଖେଲେଇଲ,
ଓହୋ ଅଖିଆ ମଦେ ମନ୍ ଭରିଲ ।

ଆଲୋଚିତ ସମ୍ବଲପୁର ଅଞ୍ଚଳର ଲୋକଗୀତ ଗୁଡ଼ିକ ଅନୁଶୀଳନ କଲେ ଏ ଗୁଡ଼ିକ ମଧ୍ୟରେ ଗୁଢ଼ ଭାବ ଗାମ୍ଭୀର୍ଯ୍ୟ ଓ ପଦଲାଳିତ୍ୟ ତଥା ଅପୂର୍ବ ବର୍ଣ୍ଣନା ଚାତୁରୀର ଜୀବନ ଅଭିବ୍ୟକ୍ତି ସୁସ୍ପଷ୍ଟ ରୂପେ ଦୃଷ୍ଟିଗୋଚର ହୁଏ । ଏହି ଲୋକଗୀତ ଗୁଡ଼ିକ ଅଶିକ୍ଷିତ ଓ ଅବହେଳିତ ପ୍ରକୃତି ବିଳାସୀ ପଲ୍ଲିବାସୀ ମାନଙ୍କର ସଙ୍ଗୀତ ମୁଖର ଜୀବନ ଓ ସରଳ କଳାପ୍ରେମର ଗୋଟିଏ ଗୋଟିଏ ପ୍ରକୃଷ୍ଟ ଦୃଷ୍ଟାନ୍ତ । ଦେଶର ମହାନ୍ ସଂସ୍କୃତି ଓ କଳା ପରମ୍ପରାର ବିକାଶ ପାଇଁ ଏଇ ଲୋକଗୀତ ଗୁଡ଼ିକ ଯେ ପଶ୍ଚିମ ଓଡ଼ିଶାର ଏକ ଅନବଦ୍ୟ ଅବଦାନ ଏଥିରେ ମତଦ୍ୱୈଧର ଅବକାଶ ନାହିଁ । ଦେଶର ସଙ୍ଗୀତ ଓ କଳାପ୍ରେମୀ ଗୁଣଗ୍ରାହୀ ବ୍ୟକ୍ତିମାନଙ୍କ ସଚେତନଶୀଳତା, ଆନ୍ତରିକତା ଓ ଗବେଷଣାତ୍ମକ ମନୋବୃତ୍ତି ନ ହେଲେ ଏଇ ଲୋକଗୀତ ଗୁଡ଼ିକ ଲୋକଲୋଚନର ଅନ୍ତରାଳରେ ବଣମଲ୍ଲୀ ପରି ବଣରେ ଫୁଟି ସେଇ ବଣର ଅପନ୍ତରା ଭୂଇଁରେ ମଉଳିଯିବ, ଏଥିରେ ସନ୍ଦେହ ନାହିଁ ।



# 'ଲୋକନୃତ୍ୟ' : ଏକ ବିଶ୍ଳେଷଣ ଓ ପଶ୍ଚିମ ଓଡ଼ିଶାର ଦଣ୍ଡନାଚ

ଭାଗୀରଥି ନେପାକ

ଓଡ଼ିଶା ଏକ ଆଦିବାସୀ ବହୁଳ ଦେଶ ହେଲେହେଁ ଓଡ଼ିଶାର ପୂର୍ବାଞ୍ଚଳ ଅପେକ୍ଷା ପଶ୍ଚିମାଞ୍ଚଳରେ ଆଦିବାସୀ ମାନଙ୍କ ସଂଖ୍ୟା ଅଧିକ।

ପଶ୍ଚିମ ଓଡ଼ିଶାର ଆଦିବାସୀମାନଙ୍କ ମଧ୍ୟରେ ଶବର, କନ୍ଧ, ଗଣ୍ଡ, ବିଞ୍ଝାଲ, ଭୂୟାଁ, କୋଲ୍ (କୋଲ୍‌ହ), କିଶାନ, ଖଡ଼ିଆ, ଓରାଂ ପ୍ରଭୃତି ପ୍ରଧାନ। ଏମାନେ ଦଣ୍ଡ, କର୍ମା, ଡ଼ାଲଖାଇ, ଘୁମୁରା ପ୍ରଭୃତି ଲୋକନୃତ୍ୟରେ ବିଚକ୍ଷଣ।

ଏହି ଲୋକନୃତ୍ୟ ମାନଙ୍କରେ ଏମାନେ ଢୋଲ ମାଦଳ, ଝିମ୍‌କି, ମହୁରୀ ପ୍ରଭୃତି ବାଦ୍ୟ ବ୍ୟବହାର କରିଥାନ୍ତି। ନିଶାନ୍, ଟିମ୍‌କି, ଘୁଡ୍‌କା, କାଠି ଇତ୍ୟାଦି ବାଦ୍ୟ ବଜାଇ ଏମାନେ ଲୋକନୃତ୍ୟ ଓ ଲୋକସଙ୍ଗୀତର ଆବେଗକୁ ବହୁଗୁଣିତ କରିଥାନ୍ତି। ପାଦରେ ଘୁଙ୍ଗୁର ଅଣ୍ଟାରେ ଘୁଲ୍‌ଘୁଲା, ହାତରେ ବଳା : ବାହୁଟି, କାନରେ ଝୁଲ୍‌କା, ମୁଣ୍ଡରେ ପାଗବାନ୍ଧି ଏମାନେ ନାଚନ୍ତି। ମୁଣ୍ଡ ପାଖରେ ମୟୂର ଝାଲି ଓ ବିଭିନ୍ନ ଫୁଲ ଓ ପତ୍ର ପିନ୍ଧିବାକୁ ଏମାନେ ଆଗଭର ହୋଇଥାନ୍ତି।

ଏମାନଙ୍କ ଗୀତରେ ଋତୁଚିତ୍ର, ଗ୍ରାମ ଦେବଦେବୀଙ୍କ ସ୍ତୁତି। ଗ୍ରାମ ମୁଖ୍ୟଙ୍କ ପ୍ରଶସ୍ତି, ଜନ୍ମ-ମୃତ୍ୟୁ, ସୁଖ, ଦୁଃଖ, ଇନ୍ଦ୍ର ଓ ଧର୍‌ତି ମାତାର ସ୍ତୁତି, ଦୈନନ୍ଦିନ ଜୀବନ ଚିତ୍ର, ସମାଜଚିତ୍ର, ପ୍ରେମ ପ୍ରଣୟ, ବିରହ ଚିତ୍ର ଅତି ସୁନ୍ଦର ଭାବରେ ଫୁଟି ଉଠିଥାଏ।

ଜୀବନର ଦୁଃଖ ଅବସାଦର ଅପନୋଦନ ପାଇଁ ଏହା ଏକାନ୍ତ ସହାୟକ ହୋଇଥାଏ। ଜୀବନର ସ୍ୱାଦ ଚଖାଇବା ସଙ୍ଗେ ସଙ୍ଗେ ବଞ୍ଚିବା ପାଇଁ ନୂତନ ପ୍ରେରଣା ଯୋଗାଇ ଦିଏ।

ଶ୍ରୀ ଶିବ ପ୍ରସାଦ ଦାଶ ତାଙ୍କର ସମ୍ବଲପୁର ଇତିହାସରେ ଉଲ୍ଲେଖ କରି ଅଛନ୍ତି ଯେ, ହୀରାଖଣ୍ଡ ରାଜ୍ୟର ଛତ୍ରପତି ମହାରାଜାମାନେ ଅଠର ଗଡ଼ଜାତର ଶାସକ ଥିଲେ। ସେହି ଅଠର ଗଡ଼ଜାତର ନାମ ହେଲା ୧. ପାଟଣା, ୨. ସୋନପୁର, ୩. ବୋଡ଼ାସମ୍ବର, ୪. ଫୁଲଝର, ୫. ସାରଙ୍ଗଗଡ଼, ୬. ରାୟପୁର, ୭. ବରଗଡ଼, ୮. ଶକ୍ତି, ୯. ବସ୍ତର, ୧୦. ବିନ୍ଦ୍ରା,

୧୧.ନୂଆଗଡ଼, ୧୨. ବାମଣ୍ଡା, ୧୩. ବଣାଇ, ୧୪. ପାଲଲହଡ଼ା, ୧୫. ବୌଦ, ୧୬. ଆଠମଲ୍ଲିକ, ୧୭. ରେଢ଼ାଖୋଲ ଓ ୧୮. ଗାଙ୍ଗପୁର । ଏଥିମଧ୍ୟରୁ ଦଶଟି ରାଜ ଆଦିବାସୀ ଶ୍ରେଣୀର ଗଣ୍ଡଶାସକ ମାନଙ୍କ ଦ୍ୱାରା ଶାସିତ ହେଉଥିଲା । ରାୟଗଡ଼, ସାରଙ୍ଗଗଡ଼ ଓ ଫୁଲଝରର (ଅଧୁନା ମଧ୍ୟପ୍ରଦେଶ ଅନ୍ତର୍ଭୁକ୍ତ) ଶାସକମାନେ ଗଣ୍ଡ ଥିଲେ । ବିଖ୍ୟାତ ବୋଡ଼ାସମ୍ବର ରାଜ୍ୟ ବିଞ୍ଝାଲ ଶାସକଙ୍କ ଦ୍ୱାରା ଶାସିତ ହେଉଥିଲା । ଏହି ରାଜ୍ୟମାନଙ୍କରେ ଆଦିବାସୀ ପ୍ରଭାବ ସୁସ୍ପଷ୍ଟ ।

ଅଧୁନା ସୋନପୁର, ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର, ବାମଣ୍ଡା, ବଉଦ, କଳାହାଣ୍ଡି, ଖରିଆର ପ୍ରଭୃତି ଅଞ୍ଚଳକୁ ଓଡ଼ିଶାର ପଶ୍ଚିମାଞ୍ଚଳ ବା ପଶ୍ଚିମ ଓଡ଼ିଶା କୁହାଯାଉଛି । ଏହି ଅଞ୍ଚଳରେ ସମ୍ବଲପୁରୀ ଭାଷା ବ୍ୟବହୃତ ହୋଇଥାଏ । ଏ ଅଞ୍ଚଳର ଲୋକନୃତ୍ୟ ମଧ୍ୟରେ କର୍ମା, ଦଣ୍ଡ, ଡ଼ାଲଖାଇ, ରସର୍କେଲି, ମାଏଲାଜଡ଼, ଜାଇଫୁଲ, ଜହ୍ନିଫୁଲ, ପଜନିଆଁ, ନଚନିଆଁ, ବାଣ୍ଡିବୁଟଲ, ସଜନୀ, ଭୁସୁକୁଟୁମା, ଡାପ ପ୍ରଭୃତି ପ୍ରଧାନ ।

ଆଶ୍ୱିନ ଦଶହରା, ଅଷ୍ଟମୀ ବା ଭାଇ ଜୀଉଁତିଆ ଦିନ ଡ଼ାଲଖାଇ ନାଚ ହୁଏ । ଭାଦ୍ରବ ଶୁକ୍ଳପକ୍ଷ ଏକାଦଶୀ ଦିନ କର୍ମାନାଚ କରାଯାଏ । ଚୈତ୍ର ମାସରେ ଦଣ୍ଡନାଚ ଅନୁଷ୍ଠିତ ହୁଏ ।

ଦଣ୍ଡନାଚର ଉତ୍ପତ୍ତି ସମ୍ପର୍କରେ କୁହାଯାଏ ଯେ, ବଉଦ ରାଜ୍ୟରେ ଯେତେବେଳେ ବୌଦ୍ଧ ଧର୍ମର ପ୍ରତିପତ୍ତି ବଢ଼ି ଆଖପାଖ ଅଞ୍ଚଳକୁ ପ୍ରଭାବିତ କରିବାକୁ ବସିଲା, ସେତେବେଳେ ବଉଦ ରାଜ୍ୟ ସୀମାକୁ ସ୍ପର୍ଶ କରୁଥିବା ସୋନପୁର ରାଜ୍ୟରେ ଏ ଧର୍ମର ପ୍ରଭାବକୁ ପ୍ରତିହତ କରିବା ନିମନ୍ତେ ନାନା ପ୍ରକାର ଚେଷ୍ଟା କରାଯାଇଥିଲା । ସେ ସମୟରେ ସୋମଗୁପ୍ତ ବଂଶର ରାଜାମାନେ ଶୈବଧର୍ମାବଲମ୍ବୀ ଥିଲେ ଓ ଶିବପୂଜାର ମାହାତ୍ମ୍ୟ ପ୍ରଚାରପାଇଁ ଚେଷ୍ଟିତ ଥିଲେ । ସେମାନଙ୍କ ଉଦ୍ୟମରେ ଓ ପୃଷ୍ଠପୋଷକତାରେ ଦଣ୍ଡନାଚ ଆରମ୍ଭ କରାଯାଇଥିଲା । ଏ ନାଚ କ୍ରମେ ଜନପ୍ରିୟ ହୋଇ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ପ୍ରସାରିତ ହେଲା । ଜନସାଧାରଣ ଆଗ୍ରହ କରି ଶିବ-ପୂଜାର ମହାତ୍ମ୍ୟ ପ୍ରଚାରରେ ବ୍ରତୀ ହେଲେ ।

ଦଣ୍ଡନାଚର ଶିବ ତାଣ୍ଡବ ନୃତ୍ୟ ଏ କିମ୍ବଦନ୍ତୀର ସତ୍ୟତା ପ୍ରତିପାଦନ କରିଥାଏ ।

ସ୍ୱର୍ଗତ ଲକ୍ଷ୍ମୀନାରାଣ ସାହୁ ଙ୍କର 'ଦଣ୍ଡନାଚ' ପୁସ୍ତକରେ ନିମ୍ନଲିଖିତ ବିଷୟ ଉଲ୍ଲେଖ କରିଛନ୍ତି ।

"ଶୈବ ସିଦ୍ଧାନ୍ତ' ଦକ୍ଷିଣୋପସନାରେ ମାଛ ମାଂସ ଖାଇଲେ ସିଦ୍ଧିଲାଭ ହୋଇପାରେ ନାହିଁ । ଦଣ୍ଡନାଟରେ ମାଛମାଂସର ବର୍ଜନ ଏହାକୁ ଦକ୍ଷିଣୋପାସନାର ଅନ୍ତର୍ଭୁକ୍ତ କରୁଅଛି । ବଙ୍ଗଦେଶରେ ସାନ୍ତତନ୍ତ୍ରା ଦଣ୍ଡନାଟଟିର ମୂଳ ଶୈବତନ୍ତ୍ର, ଶାକ୍ତତନ୍ତ୍ର ନୁହେଁ ।

ସେଥିପାଇଁ ଏତେ କଠୋରତା, ଏତେ ନିଷ୍ଠା, ଚୈତନ୍ୟ ଦେବଙ୍କ ସମୟର ତନ୍ତ୍ର ପୂଜାର ଅଧୋଗତି ହୋଇଥିଲା ସୁତରାଂ ନୂତନ ଭାବରେ ଧର୍ମ ପ୍ରଚାର କରାଗଲା ।

X X X

ଦଣ୍ଡନାଟରେ ୧୩ ଶବ୍ଦଟି ବଡ଼ ଅର୍ଥମୂଳକ । ୧୩ଟି ଭୋକ୍ତା ହୁଅନ୍ତି । ଚନ୍ଦନେଶ୍ୱରଠାରେ ୧୩ ଦିନ ଦଣ୍ଡ ନାଟ ହୁଏ । ଭୋକ୍ତାମାନେ ଯେଉଁ ବେତ ବ୍ୟବହାର କରନ୍ତି ସେଥିରେ ୧୨ଟି ପର୍ବ ଥାଏ ।

X X X

ଭାଷାକୋଷ ପ୍ରଣେତା କହନ୍ତି, "ପ୍ରଥମେ କେବଳ ନୀଚ ଜାତିର ଲୋକମାନେ ଦଣ୍ଡନାଟରେ ଅଂଶଗ୍ରହଣ କରୁଥିଲେ କିନ୍ତୁ ଏବେ ସବୁ ଜାତିର ଲୋକେ ଏଥିରେ ଭାଗ ନେଉଛନ୍ତି ଓ ସମାଜର ବିଭିନ୍ନ ଚିତ୍ର ଏଥିରେ ରୂପାୟିତ ହେଉଛି ।

## ଦକ୍ଷିଣ ଓଡ଼ିଶାର ଦଣ୍ଡନାଚ ଓ ଦଣ୍ଡନାଚର ତିନି ପର୍ଯ୍ୟାୟ

"ଦଣ୍ଡନାଚ" ଏକ ଗୋଷ୍ଠୀ ନାଚ । ପ୍ରତି ଗୋଷ୍ଠୀରେ ୧୫/୨୦ ଜଣ ଲୋକଥାନ୍ତି । ଏଥିରେ କେବଳ ପୁରୁଷମାନେ ଯୋଗ ଦେଇଥାନ୍ତି । ସ୍ତ୍ରୀ ଭୂମିକାରେ ମଧ୍ୟ ପୁରୁଷମାନେ ହିଁ ଅଭିନୟ କରିଥାନ୍ତି ।

ଅନ୍ୟାନ୍ୟ କେତେକ ଯାତ୍ରା ଉତ୍ସବ ପରି ଦଣ୍ଡନାଚ କେବଳ ମଉଜ ମଜଲିସ ପାଇଁ ଉଦ୍ଦିଷ୍ଟ ନୁହେଁ । ବିଶ୍ଳେଷଣ କରି ଦେଖିଲେ ଦେଖାଯିବ ଯେ, ଦଣ୍ଡନାଚ ଦଳ ଏକ ଧାର୍ମିକ ଅନୁଷ୍ଠାନ । ଈଶ୍ୱର (ମହାଦେବ) ଓ ପାର୍ବତୀ ଏ ନାଚର ଉପାସ୍ୟ ଦେବଦେବୀ ଅଟନ୍ତି ।

ଦଣ୍ଡନାଚରେ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରୁଥିବା ତେରଜଣ କୁଶଳୀ କଳାକାରଙ୍କୁ 'ତେରଭକ୍ତ' କୁହାଯାଏ । ନାଚ ମଧ୍ୟରେ ଏମାନେ ପରସ୍ପରକୁ 'ଋଷିପୁତ୍ର' ଓ 'ଭଗତେ' ବୋଲି ସମ୍ବୋଧନ କରିଥାନ୍ତି ।

ଦକ୍ଷିଣ ଓଡିଶାରେ ଦଣ୍ଡନାଚର ପ୍ରଥା ଅନୁଯାୟୀ ଦଣ୍ଡ ନାଚରେ ଅଂଶ ଗ୍ରହଣ କରୁଥିବା ତେରଜଣ ଋଷିପୁତ୍ରଙ୍କୁ ଉପବୀତ(ପଇତା) ଧାରଣ କରିବାକୁ ପଡିଥାଏ । ନାଚ ଆରମ୍ଭ ଦିନ ପୁଷ୍କରିଣୀ ବା ନଦୀ ତୁଠରେ ପୁରୋହିତ ହୋମ କରି ଋଷିପୁତ୍ର ମାନଙ୍କୁ ଉପବୀତ ପ୍ରଦାନ କରିଥାନ୍ତି । ସେଠାରେ ଅରଣୀ (ଚକମକି ପଥର) ଦେହରୁ ଅଗ୍ନି ବାହାର କରାଯାଏ ଓ ଏହି ଅଗ୍ନି ଦଣ୍ଡନାଚ ଶେଷ ହେବା ପର୍ଯ୍ୟନ୍ତ, ତେରଦିନ କାଳ ଯତ୍ନର ସହିତ ରଖାଯାଇଥାଏ । ତେର ଭକ୍ତଙ୍କ ମଧ୍ୟରୁ

ଜଣେ ଭକ୍ତ ନିଷ୍ଠାପର ଭାବରେ ଦିନରେ ଓଳିଟିଏ ମାତ୍ର ପାଉଣା କରି ଏହି ପବିତ୍ର ଅଗ୍ନିର ସୁରକ୍ଷା ଦାୟିତ୍ୱ ଗ୍ରହଣ କରିଥାନ୍ତି । ଚାରୋଟି ମାଟିର ବିହୁଡିରେ ଏଥିରୁ ଅଗ୍ନି ସଂଯୋଗ କରି ଝୁଣା ମରାଯାଏ । ପ୍ରତ୍ୟେକ ଭକ୍ତ ଗୋଟିଏ ଗୋଟିଏ ବିଡା ମୟୁର ପୁଚ୍ଛ ଓ ପତାକା ଧାରଣ କରି ଚାଲନ୍ତି । ଗାଁ ଦାଣ୍ଡରେ ମୟୁର ପୁଚ୍ଛ ହଲାଇ ପାଟି କରନ୍ତି । "ଶ୍ରୀ କଳା ରୁଦ୍ରମଣିଙ୍କୁ ଭଜ ହେ ।"

ଅନୁଷ୍ଠାନର ଭକ୍ତବୃନ୍ଦ ତେରଦିନ ପର୍ଯ୍ୟନ୍ତ ନିଜ ଘରକୁ ଫେରନ୍ତି ନାହିଁ । ସେମାନେ ଗ୍ରାମର ଆମ୍ରତୋଟା କିମ୍ବା ଶିବ ମନ୍ଦିରରେ ରହନ୍ତି । ସେଠାରେ ସେମାନେ ରନ୍ଧାବଢା କରି, ଭୋଗ ଲଗାଇ ପ୍ରସାଦ ସେବନ କରିଥାନ୍ତି ।

ସେମାନେ ଦଣ୍ଡନାଚ ପାଇଁ ନିମନ୍ତ୍ରଣ ପାଇଲେ ଦଣ୍ଡନାଚ ପାଇଁ ଯାତ୍ରା କରନ୍ତି । ଯେଉଁ ଗ୍ରାମ ବା ବ୍ୟକ୍ତିଙ୍କ ନିକଟରୁ ନିମନ୍ତ୍ରଣ ପାଇଥାନ୍ତି, ସେହି ଗ୍ରାମ ବା ବ୍ୟକ୍ତି ସେମାନଙ୍କ ଚର୍ଚ୍ଚା କରେ । ପ୍ରାପ୍ୟ ଧନକୁ ସେମାନେ ଭାଗ ବାଣ୍ଟି ନିଜ ନିଜ ଘରକୁ ନେବାର ପରମ୍ପରା ନାହିଁ । ସେହି ଧନ ମନ୍ଦିର, ଧର୍ମଶାଳା, ପୁଷ୍କରିଣୀ-ଖୋଳାଇବାରେ ତଥା ସାଧାରଣ ଜନହିତକର କାର୍ଯ୍ୟରେ ଲଗାଯାଇଥାଏ ।

ଅନୁଷ୍ଠାନର ଅଂଶ ଗ୍ରହଣକାରୀମାନେ ଖାଦ୍ୟ ପେୟରେ କେତେକ ନିର୍ଦ୍ଦିଷ୍ଟ ନୀତିନିୟମ ପାଳନ କରି ଚଳନ୍ତି । ଲିଆ ଖାଇଲାବେଳେ ଖଇଟିଏ ବା ଅନ୍ନ ଖାଇଲାବେଳେ ତହିଁରୁ ମୁଣ୍ଡର ବାଳଟିଏ ବାହାରିଲେ ସେମାନେ ଆଉ ଖାଆନ୍ତି ନାହିଁ । ଖାଇଲାବେଳେ ସେମାନଙ୍କ ଉପରେ କାହାରି ଛାଇ ପଡିବା ମଧ ମନା । ସେହିପରି ଖାଇ ବସିଲାବେଳେ ବାହାର ଲୋକର ପାଟି ଶୁଣାଗଲେ, ଏମାନେ ଆଉ ଖାଦ୍ୟ ଗ୍ରହଣ ନକରି ଉଠିପଡନ୍ତି । ସାରାଦିନ ସେମାନଙ୍କୁ ଉପବାସରେ ରହିବାକୁ ପଡେ । ତେଣୁ କିଛି ଖାଇଲାବେଳେ ଢୋଲ ବଜାଯାଏ ।

ଦଣ୍ଡନାଚ ଆଦିବାସୀ ଓ ଅଣ ଆଦିବାସୀ କଳାକାର ମାନେ ଯୋଗ ଦେଇଥାନ୍ତି । ହରିଜନ ଶ୍ରେଣୀର ଲୋକ ମାଦଳ ବଜାଏ । ସମସ୍ତେ ଏକାଠି ରହନ୍ତି । ଏକାଠି ଖାଆନ୍ତି ଓ ସାଙ୍ଗହୋଇ ନୃତ୍ୟ ପ୍ରଦର୍ଶନ କରିଥାନ୍ତି । ବିଭିନ୍ନ ଜାତି ଓ ସମାଜର ଲୋକମାନଙ୍କ ମଧରେ ସଂହତି ସ୍ଥାପନ ପାଇଁ ଏହା ସହାୟକ ହୋଇଥାଏ ।

ଦଣ୍ଡନାଚ କଳାକାରମାନେ ଯେପରି କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଜାତି ବା ସମାଜରୁ ଆସି ନଥାନ୍ତି, ସେହିପରି ସେମାନେ ଗୋଟିଏ ଗାଁର ଲୋକ ନୁହନ୍ତି । ବିଭିନ୍ନ ଗ୍ରାମର କୁଶଳୀ କଳାକାର ମାନେ ଏକାଠି ହୋଇ ଦଣ୍ଡନାଚ ଦଳ ଗଠନ କରିଥାନ୍ତି । ଦଣ୍ଡଯାତ୍ର ବା ଦଣ୍ଡନାଚ ସାଧାରଣତଃ ରାତ୍ରିରେ ଆୟୋଜନ ହୋଇଥାଏ ।

.ଏ ନାଚ ପଶ୍ଚିମ ଓଡିଶାରେ ଚୈତ୍ର ପୂର୍ଣ୍ଣମୀ ଠାରୁ ପଣାସଂକ୍ରାନ୍ତି ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ । ଦଣ୍ଡଯାତ୍ରାର ତିନୋଟି ପର୍ଯ୍ୟାୟ ରହିଛି

ପ୍ରଥମେ ଏମାନେ ରାତିସାରା ଦଣ୍ଡନାଚ କରିସାରି, ସକାଳେ ଦଳବଦ୍ଧ ଭାବରେ ଗ୍ରାମ ପରିକ୍ରମା କରନ୍ତି । ଯେଉଁ ଗୃହସ୍ଥ ଦଣ୍ଡଯାତ୍ରା ପାଇଁ ମାନସିକ କରିଥାଏ, ସେ ଏହି ଗ୍ରାମ ପରିକ୍ରମାରେ ବାହାରିଥିବା ନାଚଦଳଙ୍କ ସାମନାରେ ପାଣି ଢାଳେ । ଏହା ନିମନ୍ତ୍ରଣ ସୂଚକ ଅଟେ । ଦଣ୍ଡନାଚ ଦଳ ସେଇଠି ଅଟକି ଯାଆନ୍ତି ଓ ନିମନ୍ତ୍ରଣକାରୀ ଗୃହସ୍ଥଙ୍କ ଘରେ ବା ଘର ପିଣ୍ଡାରେ ଦୀପଟିଏ ଜାଳି ବିଶ୍ରାମ-ସ୍ଥାନକୁ ଫେରିଯାଆନ୍ତି ।

(କ) ଧୂଳିଦଣ୍ଡ

ଦିନର ପ୍ରାୟ ବାରଟାବେଳେ ଦଣ୍ଡନାଚର 'ଧୂଳିଦଣ୍ଡ' କାର୍ଯ୍ୟକ୍ରମ ଆରମ୍ଭ ହୁଏ । ଏଥିରେ, କଳାକାରମାନେ ସାମାଜିକ ଜୀବନର କେତେକ ପ୍ରଚଳିତ କାର୍ଯ୍ୟକ୍ରମକୁ ଛଳରେ ପ୍ରଦର୍ଶନ କରିଥାନ୍ତି ।

'ବୀଣାକାର' ଦଣ୍ଡନାଚରେ ମୁଖ୍ୟ ଅଂଶ ଗ୍ରହଣ କରିଥାଏ ସେ ଏଥିରେ ପ୍ରଧାନ ଗାୟକ ରୂପେ ଚିତ୍ରଣ ଶୁଣାଏ ।

ଧୂଳିଦଣ୍ଡରେ କୃଷି ଭିତ୍ତିକ ଚରିତ୍ର ଉପସ୍ଥାପନ କରାଯାଇଥାଏ । ପରେ ପରେ କଳାକାରମାନେ ଗୀତ ଗାଇଗାଇ ଧୂଳିରେ ଗଡିଯାନ୍ତି । ଧୂଳିଦଣ୍ଡରେ ସାଧାରଣତଃ ତୁଷ, ଧାନମୁଣା, ପାଣିବୁହା, ପଥରଖୋଳା, ଫସଲ ଅମଳ ଦୃଶ୍ୟ ଅଭିନୀତ ହୋଇଥାଏ ।

ଚାରି ଚାରି ଜଣ ଅଭିନେତା ଚାରିକୋଣିଆ ଭାବରେ ଗୋଡମୁଣ୍ଡ ଯୋଡିଯୋଡି ହୋଇ ଧାନକିଆରୀ ଦୃଶ୍ୟ ପ୍ରଦର୍ଶନ କରନ୍ତି । ଧୂଳିରେ ଧାନ ବୁଣାଯାଏ । ଦୁଇଜଣ ଅଭିନେତା ଭଳଦ ରୂପରେ ଜମିଚାଷ କରନ୍ତି । ଅନ୍ୟଜଣେ କଳାକାର ବଳଦ ସଙ୍ଗରେ ବୁଲି ଜମିଚାଷ କରିବାର ଅଭିନୟ କରିଥାଏ ।

ଏହିପରି ଭାବରେ ଧୂଳିଦଣ୍ଡ କାର୍ଯ୍ୟକ୍ରମ ସମାପ୍ତ ହୁଏ । ଧୂଳିଦଣ୍ଡ ପରେ ଦିନର ପ୍ରାୟ ଦୁଇଟାବେଳେ ପାଣିଦଣ୍ଡ ପ୍ରଦର୍ଶିତ ହୋଇଥାଏ । ଏହା ଅଳ୍ପ ସମୟ ପାଇଁ ପ୍ରଦର୍ଶନ କରାଯାଏ ଏଥିରେ ମଧ୍ୟ ଗ୍ରାମ୍ୟ ଚରିତ୍ର ଓ ଗ୍ରାମ୍ୟ ଘଟଣାବଳୀର ଉପସ୍ଥାପନ କରାଯାଇଥାଏ ।

ଧୂଳିଦଣ୍ଡ ଓ ପାଣିଦଣ୍ଡ ପରେ ପ୍ରଧାନ ଦଣ୍ଡନାଚ ପରିବେଶିତ ହୁଏ । ଏହା ରାତିରେ ପ୍ରଦର୍ଶନ କରାଯାଇଥାଏ । ଓଡିଶାର ଜନପ୍ରିୟ ଲୋକନୃତ୍ୟ: 'ଦଣ୍ଡନାଚ'' ଓଡିଶାର ଲୋକପ୍ରିୟ ଲୋକନୃତ୍ୟମାନଙ୍କ ମଧ୍ୟରୁ ଦଣ୍ଡନାଚ ଅନ୍ୟତମ । ଓଡିଶାର ସର୍ବତ୍ର ଏଇ ଲୋକନୃତ୍ୟର ପ୍ରଚଳନ

ଥିଲେ ମଧ୍ୟ, ପଶ୍ଚିମ ଓଡିଶାର ଗଡଜାତ ଅଞ୍ଚଳରେ ଏହାର ବିଶେଷ ପ୍ରଚଳନ ଦେଖାଯାଏ । ଫାଲ୍‌ଗୁନ ମାସ ଶେଷସୁଦ୍ଧା ବିଲର ଚାଷକାମ ଶେଷ ହୋଇଯାଇଥାଏ । ଚୈତ୍ର ମାସରେ ଦଣ୍ଡନାଚ ଦଳଛତ୍ର, ବୈରଣ ଓ ଶିବପାର୍ବତୀଙ୍କୁ ଖଟୁଲି ଧରି ଢୋଲ ଓ ଘଣ୍ଟବଜାଇ ନାଚପାଇଁ ବାହାରନ୍ତି ।

ଦଣ୍ଡନାଚ ଜରିଆରେ ମହାଦେବ, ପାର୍ବତୀ (କାଳୀ) ଙ୍କର ଆରାଧନା କରାଯାଇଥାଏ । ଏଥିରେ ଅଂଶ ଗ୍ରହଣକାରୀମାନଙ୍କୁ 'ଭୋକ୍ତା' ବା 'ଭଗତ' କୁହାଯାଏ । ଭିନ୍ନ ଜାତିର ଲୋକମାନେ ଏଥିରେ ଅଂଶ ଗ୍ରହଣ କରିଥାନ୍ତି । ଦେବ ଆରାଧନା ଓ ଦେବ ମହାତ୍ମ୍ୟର ପ୍ରଚାର ଏହି ନାଚର ମୂଖ୍ୟଅଂଶ ହୋଇଥିବାରୁ, ଯେତେଦିନ ପର୍ଯ୍ୟନ୍ତ ଦଣ୍ଡନାଚ ଚାଲେ, ଅଂଶ ଗ୍ରହଣକାରୀମାନେ ସେତେଦିନ ପର୍ଯ୍ୟନ୍ତ ନିୟମନିଷ୍ଠା ମାନି ଚଳିଥାନ୍ତି ।

ଦଣ୍ଡ ଶବ୍ଦର ଅର୍ଥ 'ବାଡି;। ଦଣ୍ଡନାଚ ଶବ୍ଦର ଅର୍ଥ ବାଡିନାଚ ହେବାକଥା । କିନ୍ତୁ ଏହାର ଆକ୍ଷରିକ ଅର୍ଥ ବିଚାରକୁ ନିଆ ନଯାଇ ଗୁଡ ଅର୍ଥ ଉପରେ ଦୃଷ୍ଟି ଦେବାକୁ ହେବ । ଗବେଷକମାନଙ୍କ ମତରେ ସୃଷ୍ଟି, ସ୍ଥିତି ଓ ପ୍ରଳୟର ଦେବତା ହେଉଛନ୍ତି ଯଥାକ୍ରମେ ବ୍ରହ୍ମା; ବିଷ୍ଣୁ ଓ ମହେଶ୍ୱର । ପ୍ରଳୟରୁ ରକ୍ଷା ପାଇବା ନିମନ୍ତେ ଶିବ ବା ମହେଶ୍ୱରଙ୍କ ଆରାଧନା କରାଯାଏ । ଏହି ଅରାଧନା ପାଇଁ ତପସ୍ୟା ଆବଶ୍ୟକ । ଏହି ତପସ୍ୟା ଦଣ୍ଡନାଚରେ ରୂପାୟିତ ବୋଲି କୁହାଯାଏ ।

ପୁଣି ଦଣ୍ଡନାଚ ଶକ୍ତି ପୂଜାର ପ୍ରତୀକ ବୋଲି ତାନ୍ତ୍ରିକମାନେ ପ୍ରକାଶ କରିଥାନ୍ତ । କିନ୍ତୁ ଏଥିରେ ଶିବ ଓ ପାର୍ବତୀ ପୂଜା କରାଯାଏ ଓ ଶିବଙ୍କୁ ପୂଜାକୁ ପ୍ରଧାନ୍ୟ ଦିଆଯାଇଥାଏ । ଦଣ୍ଡନାଚ ଆରମ୍ଭ ହେବା ପୂର୍ବରୁ ନିମ୍ନଲିଖିତ ଶିବବନ୍ଦନା କରାଯାଇଥାଏ ।

କଳ୍ପନା ରୂପେ ପ୍ରଭୁ ଦିଗମ୍ବର-
    କହିବାକୁ ମନ ବଳିଲା ମୋର,
କରୁଅଛି ଦଣ୍ଡ ନୃତ୍ୟ ମୁଁ ଛାର-
    କରୁଛି ଦଣ୍ଡ ନୃତ୍ୟ ନୃତ୍ୟରେ ବିହାର
କରୁଛି ମୁହିଁ ଜୁହାର
କରିବି ଏ ଭବ ସମୁଦ୍ର ପାର
ତ୍ରିଶୂଳ ଡମ୍ବରୁ ଧର । ଇତ୍ୟାଦି-

ଦଣ୍ଡନାଚରେ କେବଳ 'ତ୍ରିଶୂଳଡମ୍ବରୁଧର' ଙ୍କ ଚରିତ୍ର ନୁହେଁ । 'ବୀଣାକାର' 'ପତ୍ର ସଉରା' 'ସଉତୁଣୀ' 'ଭାଇଧନ' 'ରାମକୃଷ୍ଣ' 'ବାଣ୍ଡିବୋତଲ' 'ବଡେୟା' ପ୍ରଭୃତି ଚରିତ୍ରମାନେ ଅଭିନୟ କରି ପାରମ୍ପରିକ ନୃତ୍ୟଗୀତ ଓ କଳାଚାତୁରୀରେ ଦର୍ଶକ ମଣ୍ଡଳୀଙ୍କୁ ବିମୁଗ୍ଧ କରିଥାନ୍ତି । ଏହି

ଦଣ୍ଡନାଚରେ 'ପ୍ରଭାନୃତ୍ୟ' ମୁଖ୍ୟ ହୋଇଥିଲେହେଁ କାଳକ୍ରମେ ଅନ୍ୟାନ୍ୟ ଅଭିନୟମାନ ଦର୍ଶକ ମଣ୍ଡଳୀର ମନୋରଞ୍ଜନ ପାଇଁ ବ୍ୟବହୃତ ହୋଇ ଆସୁଥିବା ଜଣାଯାଏ । କୌଣସି କୌଣସି ଦଣ୍ଡ ନାଚରେ ରାମାୟଣ, ମହାଭାରତ ଓ ପୌରାଣିକ କାହାଣୀର ଅବତାରଣା କରାଯାଏ ଓ ଗୀତ ମାଧ୍ୟମରେ ପ୍ରକାଶ କରାଯାଏ ।

ଦଣ୍ଡନାଚର ଗୀତଗୁଡ଼ିକ ଅତ୍ୟନ୍ତ ଶ୍ରୁତି ମଧୁର । ଏ ସମସ୍ତ ପୁସ୍ତକ ଆକାରରେ ପ୍ରକାଶିତ ହୋଇନଥିଲେ ମଧ୍ୟ, ଏଥିରୁ ଅଧିକାଂଶ ପରମ୍ପରା କ୍ରମେ ମନେରଖି ପ୍ରଚାର କରାଯାଇଥାଏ । ଆଉ କେତେକ ଗୀତ ଘଟଣା ସ୍ଥଳରେ ରଚିତ ହୁଏ ଏବଂ କୁଶଳୀ କଳାକାରମାନେ ଆଶୁ କବିତ୍ୱ ବଳରେ ପଦ ଯୋଡ଼ି ଆବୃତ୍ତି କରିଥାନ୍ତି ।

ଅଧୁନା ଦଣ୍ଡନାଚ ମଧ୍ୟରେ ତାଳଖାଇ, ରସରକେଲି, ମାଇଲା ଜଡ, ଜାଇଫୁଲ ପ୍ରଭୃତି ଗ୍ରାମ୍ୟଲୋକ-ଗୀତମାନ ପରିବେଷଣ କରାଯାଇ ଦର୍ଶକମଣ୍ଡଳୀର ମନୋରଞ୍ଜନ ପାଇଁ ବିଭିନ୍ନ ପ୍ରକାର ଉଦ୍ୟମ କରାଯାଉଛି । ଆବାଳ ବୃଦ୍ଧ ବନିତା ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏହା ଉପଭୋଗ କରି ଉପକୃତ ହୋଇପାରୁଛନ୍ତି ।

ଉଚ୍ଚ ନୀଚ ଉଭୟ ସଂପ୍ରଦାୟର ଲୋକମାନେ ଏଇ ଦଣ୍ଡନାଚରେ ଅଂଶଗ୍ରହଣ କରୁଥିଲେ ମଧ୍ୟ, ଏଥିରେ ଛୁଆଁ ଅଛୁଆଁ ଭାବକୁ ପ୍ରୋତ୍ସାହିତ କରାଯାଉ ନାହିଁ । ଧାର୍ମିକ ଓ ସାମାଜିକ ଚେତନାର ବିକାଶ ଓ ପରିପ୍ରକାଶ ପାଇଁ 'ଦଣ୍ଡନାଚ' ଏକ ଉତ୍କୃଷ୍ଟକ୍ଷେତ୍ର ପ୍ରସ୍ତୁତ କରିପାରିଛି ।

ନୃତ୍ୟ ଗୀତ, ବାଦ୍ୟ ଓ ଅଭିନୟ- ଏଇ ଚାରୋଟି କଳାର ଅପୂର୍ବ ସମନ୍ୱୟରେ ଦଣ୍ଡନାଚ ପରିପୁଷ୍ଟ । ଭାରତର ଅନ୍ୟାନ୍ୟ ଅଞ୍ଚଳରେ ପ୍ରଚଳିତ ପାରମ୍ପରିକ ଲୋକନୃତ୍ୟମାନଙ୍କ ସଙ୍ଗେ ଓଡ଼ିଶାର 'ଦଣ୍ଡନାଚ' ତୁଳନୀୟ ।

ଗଞ୍ଜାମ, ଢେଙ୍କାନାଳ ଓ କେଉଁଝର ଅଞ୍ଚଳରେ ଦଣ୍ଡନାଚକୁ ଆଧୁନିକ କରାଯାଇ ପରିବେଷଣ କରାଯାଇଥିଲେହେଁ, ଏହା ପୂର୍ଣ୍ଣମାତ୍ରାରେ ପରମ୍ପରା ମୁକ୍ତ ନୁହେଁ । ବିଭିନ୍ନ ଅଞ୍ଚଳର ଦଣ୍ଡନାଚରେ ବିଷୟ ବସ୍ତୁର ସମାନ ପ୍ରକାର କ୍ରମରକ୍ଷା କରାଯାଇ ନଥିଲେ ମଧ୍ୟ, ପରିବେଷିତ ବିଷୟବସ୍ତୁରେ ସାମ୍ୟ ପରିଲକ୍ଷିତ ହୋଇଥାଏ ।

ପ୍ରତ୍ୟେକ ଯାତ୍ରା ତଥା ନୃତ୍ୟ ସଙ୍ଗୀତ ସମାରୋହ କୌଣସି ଏକ ଧର୍ମକୁ ଭିତ୍ତିକରି ଗଢ଼ି ଉଠିଥାଏ । ସେହି ଯାତ୍ରା ତଥା ନୃତ୍ୟ ସଙ୍ଗୀତ ଉତ୍ସବରେ ନିର୍ଦ୍ଦିଷ୍ଟ ଆରାଧ୍ୟ ଦେବ-ଦେବୀଙ୍କର ପ୍ରଶସ୍ତି ଗାନ କରାଯାଇ ଥାଏ । ଜନସାଧାରଣଙ୍କୁ ଆରାଧ୍ୟ ଦେବତାଙ୍କ ପ୍ରତି ଆକୃଷ୍ଟ କରିବା ଏହାର ଲକ୍ଷ୍ୟ ।

ଦଣ୍ଡନାଚର ଆରମ୍ଭରେ "ଶିବ ତାଣ୍ଡବ" ନୃତ୍ୟ ପରିବେଷଣ କରାଯାଇଥାଏ । ଏହା ସାଧାରଣତଃ ସନ୍ଧ୍ୟା ସମୟରେ ଅନୁଷ୍ଠିତ ହୁଏ । ଦଳର ଜଣେ ଅଭିଜ୍ଞ କଳାକାର ଅଣ୍ଟାରେ କଳା ଛିଟର ଘାଘରା ଓ ଘୁଙ୍ଗୁର ମାଳ ପିନ୍ଧି, ପାଦରେ ଘୁଙ୍ଗୁର ବାନ୍ଧି ଏହି ଭୂମିକାରେ ଅବତୀର୍ଣ୍ଣ ହୁଅନ୍ତି । ପିଠିରେ ତାଙ୍କର ବାଉଁଶରେ ତିଆରି ଅର୍ଦ୍ଧ ଗୋଲାକାର ଆକୃତିର ଏକ ବିରାଟ 'ପ୍ରଭା' ବନ୍ଧା ହୋଇଥାଏ । ଦୁଇ କାନ୍ଧ ତଳକୁ ଝୁଲି ଆସୁଥିବା ଉତ୍ତରୀୟକୁ ଦୁଇ ହାତରେ ଧରି, ସେ ବିଭିନ୍ନ ଭଙ୍ଗୀରେ ଝୁଲି ଦୋହଲି ନାଚନ୍ତି । ଏହି ନୃତ୍ୟରେ ଢୋଲିଆ (ଢୋଲ ବାଦକ) ର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏ ନୃତ୍ୟ ପ୍ରଥମେ ଧିମାରୁ ଆରମ୍ଭ ହୋଇ ଦ୍ରୁତ ଓ ଶେଷରେ ପ୍ରବଳ ବେଗରେ ପରିବେଷଣ କରାଯାଇଥାଏ । ଏହା 'ପ୍ରଭା ନୃତ୍ୟ' ନାମରେ ପରିଚିତ ।

ପ୍ରଭା ନୃତ୍ୟର ଅନ୍ୟତମ ଆକର୍ଷଣ ହେଲା- 'ଷୋହଳ ଖାତି ବାଜା' । ଷୋହଳଟି ତାଳରେ ବାଜା ବାଜେ ଓ ତାକୁ ଅନୁସରଣ କରି ନର୍ତ୍ତକଙ୍କ ନୃତ୍ୟର ଛନ୍ଦ' ଅଙ୍ଗଭଙ୍ଗୀ ଓ ଶୈଳୀ ଦ୍ରୁତ ଭାବରେ ପରିବର୍ତ୍ତିର ହୋଇଥାଏ । ଏ ନୃତ୍ୟର ଏକ ପରମ୍ପରା ରହିଛି । ନୃତ୍ୟ ପରିବେଷଣ ବେଳେ କୌଣସି ଗୀତ ବାଲାଯାଏ ନାହିଁ । ବାଦକ ଅତି ସତର୍କତାର ସହିତ ଢୋଲ ବଜାଇ ଷୋହଳଖାତି ବାଜା ମଧ୍ୟରେ ନିଜ-ବାଦନ କୁଶଳତା ପ୍ରଦର୍ଶନ କରିଥାଏ । ବାଦ୍ୟର ତାଳେ ତାଳେ ନର୍ତ୍ତକ ପାଦ ମିଳାଇ ନାଚେ । ସେ ବିହ୍ୱଳ ଭାବରେ ଧୀରରୁ ପ୍ରବଳ ବେଗରେ ନାଚିବାକୁ ଲାଗେ । ନୃତ୍ୟର ବେଗ କ୍ରମେ ପ୍ରବଳ, ପ୍ରବଳତର ଓ ପ୍ରବଳତମ ହୁଏ ଅବଶେଷରେ ନର୍ତ୍ତକ କ୍ଳାନ୍ତ ହୋଇପଡେ । ସେତେବେଳେ ତ ଙ୍କୁ ଦଣ୍ଡ ଦଳରୁ କେତେକ କଳାକାର ଆସି ଟେକି ନେଇଯାନ୍ତି ।

ଏହି ପ୍ରଭା ନୃତ୍ୟ ଶିବତାଣ୍ଡବ ନୃତ୍ୟର ପ୍ରତୀକ ।

ପ୍ରଭା ନୃତ୍ୟ ପୂର୍ବରୁ ପ୍ରଥମେ "ଛତ୍ର ପୂଜା, ଓ ଛତ୍ର ବନ୍ଦନା' ର ପରମ୍ପରା ରହିଛି । ଏଇ ଛତ୍ର କଳାରଙ୍ଗର ଲୁଗାରେ ତିଆରି ଗୋଲାକାର ଆକାରର । ଏହା ପୁଷ୍ପ ବିମଣ୍ଡିତ ହୋଇଥାଏ । ଛତ୍ର ତଳେ ପୀଢ ବା କାଠ-ଆସନ ଉପରେ ଦଣ୍ଡ-ଦେବତା ଅଧିଷ୍ଠିତ ଥାନ୍ତି । ଏହା ଶିବ ବା ଈଶ୍ୱରଙ୍କୁ ପ୍ରତୀକ । ଧୂପ ଦୀପ ଓ ନୈବେଦ୍ୟର ଏହାଙ୍କୁ ଆରାଧନା କରାଯାଇଥାଏ ।

ଛତ୍ର-ପୂଜା ପରେହିଁ ଶିବ ତାଣ୍ଡବ ବା ପ୍ରଭା ନୃତ୍ୟ ଅନୁଷ୍ଠିତ ହୋଇଥାଏ । ପର ଚରିତ୍ରମାନେ ନିଜ ନିଜର ପରିଚୟ ପ୍ରଦାନ କରିଥାନ୍ତି ।

ଶିବ ଚରିତ୍ରରେ ଅଭିନୟ କରୁଥିବା ପ୍ରଭାଧାରୀ ମୁକ୍ତ ଅଭିନୟ କ୍ଷେତ୍ରକୁ ଆସି ଗାୟନ କରନ୍ତି ।

"ଅଇଁଲୁ ହର, ତିନି ବ୍ରହ୍ମାଣ୍ଡ ଠାକୁର
ମନ ସନ୍ତୋଷ ମାଗବର,
ଯଦି ମୁଁ ଦେବି, ପାଦେ ଜୁହାର
ତିନି ବ୍ରହ୍ମାଣ୍ଡ ଠାକୁର
ଅଇଁଲୁ ହର ।"

ଆଉ କେତେକ ଅଞ୍ଚଳରେ ପ୍ରଭାଧାରୀ ଶିବଙ୍କ ସଙ୍ଗରେ ପାର୍ବତୀ ମଧ ଅଭିନୟ କ୍ଷେତ୍ରକୁ ପ୍ରବେଶ କରିଥାନ୍ତି । ଶିବ ଓ ପାର୍ବତୀଙ୍କ ମଧରେ ଉକ୍ତି-ପ୍ରତ୍ୟୁକ୍ତି ଚାଲେ । ଶିବ କହନ୍ତି-

"ଶିବ କହନ୍ତି ଗୋ ଶିବା !
ଦଣ୍ଡଯାତ୍ରା ଭିଆଇବା".........ଇତ୍ୟାଦି ।

ପ୍ରଭା ନୃତ୍ୟପରେ 'ବୀଣାକାର' ନୃତ୍ୟ ଅନୁଷ୍ଠିତ ହୋଇଥାଏ । ହାତରେ ବୀଣା ସଦୃଶ ଏକ ଦଣ୍ଡ ବା ବାଡି ଧାରଣ କରି ବୀଣାକାର ଅଭିନୟ କ୍ଷେତ୍ରରେ ପଦାର୍ପଣ କରନ୍ତି । ଏହି ବାଡିର ଦୁଇମୁଣ୍ଡରେ ଘୁଙ୍ଗୁର ବନ୍ଧା ହୋଇଥାଏ ।

'ବୀଣାକାର ବିଭିନ୍ନ ଦେବ ଦେବୀଙ୍କ ସ୍ତୁତିଗାନ କରିଥାନ୍ତି ଗାନ କରି ସାରିବା ପରେ ବାଁ ହାତରେ ଏହାକୁ ହଲାଇ ହଲାଇ ନାଚନ୍ତି । ଏତିକିବେଳେ ଏହି ଘୁଙ୍ଗୁର ଦେହରୁ ତାଳେ ତାଳେ ଏକ ଶ୍ରୁତିମଧୁର ଝମ୍ ଝମ୍ ଶବ୍ଦ ସୃଷ୍ଟି ହୋଇଥାଏ ।

ଗୀତ, ବାଦ୍ୟ ଓ ବୀଣାକାରର ନାଚ ଜନଗଣଙ୍କୁ ଅପୂର୍ବ ଆନନ୍ଦ ଦେଇଥାଏ । ବୀଣାକାର ଧରିଥିବା ବୀଣା ସଦୃଶ ବାଷିରେ କେବଳ ଘୁଙ୍ଗୁର ନୁହେଁ, ମୟୁର ଝାଲ ବିଭିନ୍ନ ରଙ୍ଗର ବାନା ବନ୍ଧା ହୋଇଥାଏ । ବୀଣାକାର ବୀଣାବାଦନ କରନ୍ତି ନାହିଁ, କେବଳ ଏଇ ବାଡିକୁ ବିଚିତ୍ର ପ୍ରକାରେ ହଲାଇ ଲୋଭନୀୟ ଦୃଶ୍ୟ ସୃଷ୍ଟି କରିଥାନ୍ତି ।

ବୀଣାକାରଙ୍କ ବେଶଭୂଷଣ ମଧ ବିଚିତ୍ର ଧରଣର ହୋଇଥାଏ । ସୁଲଳିତ କଣ୍ଠଥିବା ଅଭିନେତା ଏହି ବୀଣାକାର ଚରିତ୍ରରେ ଅଭିନୟ କରିଥାଏ ।

ଭାଇଧନ

ଦଣ୍ଡନାଚରେ ଦର୍ଶକ ମଣ୍ଡଳୀର ମନୋରଞ୍ଜନ ତଥା ଶିକ୍ଷା ଓ ରୀତିନୀତିର ପ୍ରଚାର ପାଇଁ ଯେଉଁ କେତୋଟି ସଂକ୍ଷିପ୍ତ ଅଂଶ ଦେଖିବାକୁ ମିଳିଥାଏ ଭାଇଧନ ସେମାନଙ୍କ ମଧରେ ଅନ୍ୟତମ ।

ଭାଇଧନ ନାଚରେ ଯେଉଁ ଗୀତ ବୋଲାଯାଏ, ତହିଁରେ 'ଭାଇଧନ' ପଦ ଘୋଷା

ପଦରୂପେ ବାରମ୍ବାର ବ୍ୟବହୃତ ହୋଇଥିବାରୁ ଏହାକୁ 'ଭାଇଧନ' ନାଚ ବୋଲି ନାମିତ କରାଯାଇଛି ।

ଏଥିରେ ଗାୟକ ବିଭିନ୍ନ ଶାସ୍ତ୍ର ପୁରାଣଚର୍ଚ୍ଚା କରିଥାଏ ଓ ତହିଁରୁ ବିଭିନ୍ନ କଡା ଓ ଉପକଡା ଆହରଣକରି ସୁମଧୁର ସ୍ୱରରେ ଦର୍ଶକ ମଣ୍ଡଳୀ ଆଗରେ ପରିବେଷଣ କରିଥାଏ । ଗୀତ ଓ ନାଚ ମାଧ୍ୟମରେ ବିଭିନ୍ନ ଆଧ୍ୟାତ୍ମିକ ଓ ଦାର୍ଶନିକ ତଥ୍ୟର ଅବତାରଣା କରି ସେ ଲୋକଶିକ୍ଷା ଦିଗରେ ସହାୟକ ହୋଇଥାଏ । ଦର୍ଶକ ନୃତ୍ୟ ଉପଭୋଗ ସଂଗେ ସଂଗେ ଭାଇଧନରେ ପରିବେଷିତ କାହାଣୀ ଅଂଶରୁ ପ୍ରବୃତ୍ତ ଜ୍ଞାନ ଆହରଣ କରିବାରେ ସମର୍ଥ ହୋଇଥାଏ ।

ଦଣ୍ଡନାଚର ଅନ୍ୟତମ ଆକର୍ଷଣ ରୂପେ ବିବେଚିତ 'ବାଣ୍ଡିବୁଡଲ' ସାମାଜିକ ଅସ୍ଥିରତାକୁ ସୂଚିତ କରିଥାଏ । ଏକ ଅସ୍ଥିର ନାରୀ ଚରିତ୍ର ଭୂମିକାରେ ଜଣେ କୁଶଳୀ ଦଣ୍ଡ ନୃତ୍ୟକାର ଅବତୀର୍ଣ୍ଣ ହୋଇ ବିଭିନ୍ନ ପ୍ରକାର ନୃତ୍ୟ କୁଶଳତା ପ୍ରଦର୍ଶନ କରନ୍ତି । ସେ କିଛି ସମୟ ଏକା ଏକା ଗୀତ ଗାଇ ନାଚିବା ପରେ ଅନ୍ୟ ଚରିତ୍ରମାନେ ଆସି ତାଙ୍କ ସଂଗରେ ସହଯୋଗ କରନ୍ତି । ତାପରେ ସମସ୍ତେ ମିଳିମିଶି ନାଚନ୍ତି । ଗୀତ ଗୁଡିକ ଉକ୍ତି ପ୍ରତ୍ୟୁକ୍ତି ଧରଣର । କେଉଁ ଗୀତରେ ବ୍ୟଙ୍ଗ ତାଏ ତ ଆଉ କେଉଁ ଗୀତରେ ପରିହାସ ଥାଏ । ପରିହାସ ସୂଚକ ଗୀତ ଶୁଣି ଲୋକେ ହସି ହସି ବେଦମ ହୁଅନ୍ତି ।

'ବାଣ୍ଡି-ବୁଡଲ' ଗୀତ ଗୁଡିକ ପ୍ରାୟ ସମ୍ବଲପୁରୀ ଭାଷାରେ ରଚିତ । ଏଥିରୁ ଏକ ଉଦାହରଣ ଦିଆଗଲା-

"ହେଲା ବେଲାରେ ହେଲାବେଲା
ବାଣ୍ଡି ହାତୀ ରଥ୍ ପେଲହା
ଦେଖ ତ ବାଣ୍ଡୀର ଗୁଲ୍ ଗୁଲା
ବାସି ପଖାଲ ନୁନ୍‌ଗୁଲା ।"... ଇତ୍ୟାଦି

'ରାଧାକୃଷ୍ଣ' ନାଚ ଦଣ୍ଡନାଚର ଏକ ପ୍ରକ୍ଷେପ ଅଂଶ । ଏଥିରେ ରାଧାକୃଷ୍ଣ ପୁରାଣ ବର୍ଣ୍ଣିତ ପ୍ରେମରସାତ୍ମକ ଗୀତ ପରିବେଷଣ ହୋଇଥାଏ । ଏ ନାଚରେ ଦୂତୀର ଭୂମିକା ହାସ୍ୟ-ରସର ପରିଚାୟକ । ଏଥିରେ ଗୋପୀମାନେ ଗାଇଥିବା ଏକ ଗୀତର ନମୁନା ଦେଖନ୍ତୁ-

"ଗୁପୁଁ ଗୁପର୍ ବାଲୀ ହେଲେ ବାହାର
ଯେତେଥିଲେ ସାଙ୍ଗ ସହୀ ମକର,
ଗରିଆ ଉପରେ ହଲଦୀ ଦନା
ଯେତେ ଗୁପର୍ ବାଲୀ ଯିବେ ଯମୁନା କାଏଁ

ମଧ୍ୟରେ ରାଧିକା ଗୁରୀ,
ଧୀରେ ଧୀରେ ଆସି ଅଳପ ବୟସୀ
ରାଧିକେ ମୋର ରାଧିକେ
କାଖିରେ ଯୁରା କଲସୀ
ମୋର୍ ରାଧିକେ । ଇତ୍ୟାଦି

'ପ୍ରଭା, 'ବୀଣାକାର', 'ଭାଇଧନ', 'ବାଣ୍ଟିବୁଡଲ', 'ରାଧାକୃଷ୍ଣ' ନାଚମାନଙ୍କ ବ୍ୟତୀତ ଓ ଦଣ୍ଡ ନାଚରେ 'ପତ୍ର ସଉରା', 'ଚଢେୟା', 'ରସରକେଲି' ପ୍ରଭୃତି ମଧ୍ୟ ଦେଖିବାକୁ ମିଳେ ।

'ପତ୍ର ସଉରା' 'ଚଢେୟା' ପ୍ରଭୃତି ଚରିତ୍ର ଓ ଗୀତମାନ ଆଦିବାସୀ ସଂପ୍ରଦାୟର ନିଛକ ଚିତ୍ର ବହନ କରିଥାଏ । ଆଦିବାସୀ ସମାଜର ଜୀବନ ଯାତ୍ରା ସମ୍ପର୍କରେ ଏଥିରୁ ଅନେକ ବିଷୟ ବୁଝିହୁଏ ।

ଭାଷାକୋଷକାରଙ୍କ ବକ୍ତବ୍ୟ ଅନୁସାରେ, ଦଣ୍ଡଯାତ୍ରା ପ୍ରଥମେ ଆଦିବାସୀ ଓ ହରିଜନ ସମାଜର କଳାକାରମାନଙ୍କ ମଧ୍ୟରେ ସୀମିତ ଥିଲା । କ୍ରମେ ଏଥିରେ ସମାଜର ବିଭିନ୍ନ ସ୍ତରର କଳାକାରମାନେ ସହଯୋଗ କଲେ ।

ଚଢେୟା, ପତ୍ର ସଉରା, ସଉରା:ସଉରାଣୀ, ବାଣ୍ଟିବୁଡଲ ଚରିତ୍ରରେ ଅଭିନୟ କରୁଥିବା କଳାକାରମାନେ ସାଧାରଣତଃ ଆଦିବାସୀ ସଂପ୍ରଦାୟର । ତୁଲିଆ ବା ଢୋଲ ବାଦକ ସାଧାରଣତଃ ହାଡ଼ୀ ବାପାଣ ଜାତିର ଲୋକ । ପଶ୍ଚିମ ଓଡ଼ିଶାର 'ଗଣ୍ଡା' ଜାତିର ଲୋକମାନେ ଢୋଲ ବାଦନରେ ଖ୍ୟାତିଲାଭ କରିଅଛନ୍ତି । ଏମାନେ ମୁଣ୍ଡରେ ପଗଡ଼ି ବା ଝୁଲର୍ ବାନ୍ଧି ବାଦ୍ୟ ବଜାଇଲା ବେଳେ ନାଚନ୍ତି ଓ କଳାକାରମାନଙ୍କୁ ନଚାନ୍ତି ।

ଦଣ୍ଡନାଚର ପ୍ରଥମ ଓ ଦ୍ୱିତୀୟ ପର୍ଯ୍ୟାୟରେ ଅଭିନୀତ ହେଉଥିବା ଧୁଳିଦଣ୍ଡ ଓ ପାଣିଦଣ୍ଡରେ କୃଷିଭିତ୍ତୀକ ସାମାଜିକ ଚିତ୍ର ପରିବେଷଣ କରାଯାଇଥାଏ । କିନ୍ତୁ ପ୍ରଧାନ ଦଣ୍ଡନାଚରେ ଶିବତାଣ୍ଡବଠାରୁ ଆରମ୍ଭ କରି ଚଢେୟା, ସଉରା : ସଉରାଣୀ ପର୍ଯ୍ୟନ୍ତ ନାନାପ୍ରକାର ଚିତ୍ର ଓ ଚରିତ୍ରର ଅବତାରଣା କରାଯାଇଥାଏ ।

ମୋଟ ଉପରେ କହିବାକୁ ଗଲେ, ଲୋକନୃତ୍ୟ 'ଦଣ୍ଡନାଚ' ଓଡ଼ିଶାର ପଲ୍ଲୀ ଓ ଜାଙ୍ଗଲିକ ସଭ୍ୟତାର ଏକ ନିଛକ ଓ ସାର୍ଥକ ଚିତ୍ର ବହନ କରିଛି । ତେଣୁ ଏ ନାଚ ପଲ୍ଲୀ - ସଭ୍ୟତାର ଏକ ଜୀବନ୍ତ ପ୍ରତିନିଧି କହିଲେ ଅତ୍ୟୁକ୍ତି ହେବନାହିଁ ।

# 'ବଖାନି', ଏକ ତୁଳନାତ୍ମକ ବିଚାର

ଗୋପବନ୍ଧୁ ରଥ

ପଶ୍ଚିମ ଓଡ଼ିଶାର ଜନସାଧାରଣଙ୍କ ଜୀବନଯାତ୍ରା ପଥରେ 'ବଖାନି' ବା 'ବଖେନ୍' ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରି ରହି ଆସିଅଛି । 'ବଖାନି' ହୁଏତ ଗ୍ରାମ୍ୟ ପରିବେଶରେ ସହଜ ଲଭ୍ୟ, ତଥାପି ଆଧୁନିକ ସଭ୍ୟତାର ଧୂମକୁଣ୍ଡଳୀ ଭେଦକରି ଏବେବି ଏହାର ମନମୁଗ୍ଧକର ଚାହାଣୀ ନଗରର ପ୍ରତିଟି ଗଳି କନ୍ଦିରେ ଆବାଳବୃଦ୍ଧ ବନିତାର ମାନସ ରାଜ୍ୟରେ କ୍ଷଣକାଳ ପାଇଁ ସଞ୍ଚାର କରେ ଏକ-ନୈସର୍ଗିକ ଶିହରଣ ।

'ବଖ୍ନା', 'ବଖାନି'ତ ବା 'ବଖେନ୍' ହୁଏତ 'ବଖାଣ' ଶବ୍ଦରୁ ଆସିଥାଇପାରେ । ପ୍ରହରାଜଙ୍କ ଭାଷାକୋଷରୁ -

ବଖାଣ - ଦେ.ବି. (ସଂ ବକ୍ଷ୍ୟମାଣ, ସଂ ବ୍ୟାଖ୍ୟାନ, ପ୍ରା. ବାକ୍‌ଖାଣ, ତୁଳ, ବୟାନ)
ବର୍ଣ୍ଣନ୍, ବୟାନ୍, ବଖାନ୍ ୧ । କଥନ, କହିବା = Speaking, Statement.
ଆଗକରି ଏବେ କରୁଛି ବଖାଣ । କୃଷ୍ଣ ସିଂହ, ମହାଭାରତ ଆଦି. ପ.
୨ । ମୁଖ ବର୍ଣ୍ଣିତ ବିବରଣ = 5. Narration, oral description.
୩ । ବର୍ଣ୍ଣନ = 3. Describing.
ବିଣ-ଉକ୍ତ, କଥିତ = Spoken
ତାହାଙ୍କ ଯେ ଅବା ଲକ୍ଷଣ

ଛବିଶେ ହୋଇଛି ବଖାଣ । ଜଗନ୍ନାଥ. ଭାଗବତ୍ ।

ଏହିପରି 'ବଖାନି'କୁ ଓଡ଼ିଶାର ଅନ୍ୟତ୍ର 'ପହଳୀ' ବା 'ନାଁ ଦିଆ' ବୋଲି କୁହାଯାଇଥାଏ । ପହଳୀ ଶବ୍ଦ 'ପ୍ରହେଳିକା'ର ଅପଭ୍ରଂଶ ମାତ୍ର । ପ୍ରହରାଜଙ୍କ ଭାଷାରେ = ପ୍ରହେଳିକା - ସଂ.ବି, (ପ୍ର+ହିଲ୍ ଧାତୁ = ଅଭିପ୍ରାୟ ସୂଚନା କରିବା + କରଣ, ଅ+କ+ସ୍ତ୍ରୀ. ଆ) ପହଳୀ, କୂଟପ୍ରଶ୍ନ ନାଁ ଦିଆ - riddle, enigma a puzzle, conundrum.

ପ୍ରହେଳୀ/ ପହେଳି - ଅନ୍ୟରୂପ ଉଦାହରଣ -

ବିରାଡି ନୁହେଁ ସେ କଳା ମୁହାଁଟା,
ସାପ ନୁହେଁ ତାର ଜିଭ ଦୁଇଟା।
ନୁହେଁ ଦ୍ରୌପଦୀ ପାଞ୍ଚ ବର ତାର,
ବୁଝି କହିବ ହେ ପଣ୍ଡିତ ବର।

(ଉତ୍ତର - ଲେଖନୀ ବା କଲମ - କୁଳମଣିତ, ଅଳଙ୍କାର ତରଙ୍ଗିଣୀ)

ଉକ୍ତ ଭାଷାକୋଷର ଅନ୍ୟତ୍ର -

ପହଳି - ଦେ.ବି (ସଂ. ପ୍ରହେଳିକା)

Pahali ହେୟାଁଳୀ ପହେଲୀ

୧ । ଢଗ - 1. Popular saying

୨ । ପ୍ରବଚନ, ପ୍ରବାଦ ବାକ୍ୟ.... 2. Proverb

୩ । ପଦ ମିଳା ଯାଇଥିବା ପ୍ରବଚନ - 3. Rhyming Proverb

୪ । ପ୍ରହେଳିକା, ନାଆଁ ଦିଆ - 4. Riddle

୫ । ପଦ୍ୟରେ କଥିତ ପ୍ରହେଳିକା - 2. Squib or gibe in rhyme.
(ଯଥା - ଦନେଇ ଦାସଙ୍କ ପହଳି)

୬ । ବ୍ୟଙ୍ଗୋକ୍ତି - 6. Irony, inneundo, ironical sentences, convert attracks in rhyme.

ପହଳି ପକା (କେ) ଇବା - ଦେ, କ୍ରି କୌଣସି ବ୍ୟକ୍ତିକୁ ଲକ୍ଷକରି ବ୍ୟଙ୍ଗୋକ୍ତି ସୂଚକ ପ୍ରବଚନ ବା ପହଳିମାନ ବୋଲିବା -

ଛଡ଼ାବାଟା (Beng) To utter innuendoes with reference to a person.

ବ୍ୟଙ୍ଗ କରନା, ପହେଲି ସୁଝାନା

ପ୍ରୋକ୍ତ ଭାଷାକୋଷର ନାମ ଶବ୍ଦ ପ୍ରସଙ୍ଗରେ ଲିଖିତ ନିମ୍ନୋକ୍ତ ବିବରଣୀ ପ୍ରଣିଧାନ ଯୋଗ୍ୟ-

ନାମ X X X" ୫ । ପ୍ରହେଳିକା ବା କୌତୁକ ପ୍ରଶ୍ନ । A riddle

ବୁଝୌବଲ୍, ପହେଲ. ଗାହା

ଟିକି ଟିକି କଣ୍ଟା କପୁରର ବାସ
ଏ ନାଆଁଟି କହିଦେଲେ ବଳରାମ ଦ ଁ ।"

ଅନ୍ୟତ୍ର - ପ୍ରହେଳିକା - ଦୁରୂହ କୂଟ ପ୍ରଶ୍ନ, ଧନ୍ଦା, ପହଳି

Conundrum. Puzzling question esp one asked for fun ; riddle

A short of riddle containing some odd or faneiful resemblence between things quite unlike, any puzzling question.

ପଣ୍ଡିତ ଗୋପୀନାଥ ନନ୍ଦଙ୍କ ମତରେ -

୬୫ - ବଖାଣ କହିବା ଅର୍ଥ

ଅନୁକ୍ଷଣେ ମୋତେ ତୋଷୁଥିଲେ ମୋର ସୁନ୍ଦର ପଣବଖାଣି (ପାର୍ବତୀ)

ବି ଏବଂ ଆ ଉପସର୍ଗ ପୂର୍ବକ ଅନ୍ ପ୍ରତ୍ୟୟଯୁକ୍ତ ଖ୍ୟା ଧାତୁର (ଖ୍ୟାପ୍ରକଥନେ) କୃଦନ୍ତ ପଦରୁ (ବ୍ୟାଖ୍ୟାନରୁ) ବୈକୃତିକ ରୂପେ ବଖାଣ ଧାତୁ ହୋଇ ଅବିକଳ ରୂପେ ଓଡ଼ିଆକୁ ଆସିଅଛି । ଯଥା :-.....

ପ ଅ ପ ଅ ଜମକ ବଖାର ଣାଅ - ରାଅ ପିଙ୍ଗଳ କହଇ =
ପଦେ ପଦେ ଯମକଂ ବ୍ୟାଖ୍ୟାହି ନାଗରାଜଃ ପିଙ୍ଗଳଃ କଥୟତି । ପିଙ୍ଗଳ

(ଓଡ଼ିଆ ଭାଷାତତ୍ତ୍ୱ, ପୃ. ୭୨୫)

Home study Dictionary ରେ ଏହିପରି ଅଛି । Riddle - rid']. n. (A Sex, readels, a riddle, from raedan. to read, discern. guess - D raadsel, G rrathsel a riddle. READ|

A preposition put in obscure or ambiguous terms to puzzl or exercise the ingenuity in discevering its meaning, something to be solved by conjecture, a puzzling question. an enigma, any thing ambiguous or puzzling.

Chamber's Twentieth Century Dictionary ରେ ଅଛି ।

'an obscure description of something which the hearer is asked to name'.

ଡ଼ଃ ମାନସିଂହ History of Oriya Literature ରେ ୦ା୯ ଲେଖିଛନ୍ତି -

'To explain the esoteric truths in there own terms he wrote Kaibarta Gita for the benefit of the fishermen and the scres of Gopalanka Ogala [Riddles for the cowherds] for the cowherds. This short of social sensitiveness in an author was remarkable in that time and we have not really many instances of it, at least in Oriya literature.

ଅଚ୍ୟୁତାନନ୍ଦ ଦାସଙ୍କ ଗୋପାଳମାନଙ୍କୁ ଶିକ୍ଷାଦାନ ପ୍ରସଙ୍ଗର ଅବତାରଣା କରିବାକୁ ଯାଇ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ସ୍ୱୀକୃତ ଓଡ଼ିଆ ସାହିତ୍ୟର ଇତିହାସ - ୧ମ ଖଣ୍ଡରେ ଲେଖିଛନ୍ତି -

"ଗୋପାଳମାନଙ୍କୁ ଶିଷ୍ୟ କରିଥିବାରୁ ସେ ସାଧାରଣରେ ଗୋପାଳ ଗୁରୁ ନାମରେ ପରିଚିତ ହୋଇଥିଲେ ।" (ପୃ ୬୫୩ ଷ୍ଠା)

X X X

(୧ମ) ସୁଦାମ ପଚାରୁଛନ୍ତି - (ଓଗାଳ) ଜହ୍ନମାମୁଁ ତତ୍ତ୍ୱ -

ଜହ୍ନମାମୁଁ ବୋଲି ନନ୍ଦକୃଷ୍ଣଙ୍କୁ ଦେଖାଇ
ଜଗତର ମାମୁଁ କୃଷ୍ଣ କେଉଁପରି ହୋଇ ?

ଦାମଙ୍କ ଉତ୍ତର -

ଜହ୍ନମାମୁଁ ବୋଲି ଲୋକେ ଯହିଁ ଡ଼ାକନ୍ତି,
ଲକ୍ଷ୍ମୀଦେବୀ ଜଗତର ଜନନୀ ଅଟନ୍ତି ।
ଚନ୍ଦ୍ର ଲକ୍ଷ୍ମୀ ଦୁଇଜଣ ସମୁଦ୍ରରୁ ଜାତ,
ଚନ୍ଦ୍ର ତାଙ୍କର ଅଟନ୍ତି ସହୋଦର ଭ୍ରାତ ।
ଚନ୍ଦ୍ର ଭ୍ରାତ ଭଗ୍ନୀ ଲକ୍ଷ୍ମୀ ଜଗତମାତା ହେଲେ,
ତେଣୁ ମାମୁଁ ବୋଲି ଚନ୍ଦ୍ରେ ଜଗତେ ଡ଼ାକିଲେ ।

(୨) ଶରୀର ଭେଦ-

ଓଗାଳ

କାହୁଁ ଆଇଲ ହୋ ଦାସେ କାହୁଁ ଉତ୍ପତି,
କେବଳ ଦେବତା ପୂଜାକର ନିତିପ୍ରତି ।

କେତେ ତୀର୍ଥ ବୁଲି ତୁମ୍ଭେ କରହେ ସାହାନ,
କେତେ ଅକ୍ଷରରେ ତୁମ ଗୋପାଳଙ୍କ ନାମ ।

ଉତ୍ତର - ଅଗ୍ନିରୁ ଦହନ ଆମ୍ଭେ ପବନର ରୀତି,
ଆମ୍ଭ ଠାକୁରଙ୍କୁ ପୂଜାକରୁ ନିତିପ୍ରତି ।
ଷଡ଼ ତୀର୍ଥମାନ କରି କରୁ ହୋ ସ୍ନାହାନ,
ଅଣଷଠି ଅକ୍ଷରଟି ଗୋପାଳଙ୍କ ନାମ ।

The Advanced Learner's Dictionary of Current English ରେ ଏହିପରି ଅଛି -

riddle1/ridl/n [C] 1 puzzling question, statement or description, intended to make a person use his wits; ask sb a~; know the answer to a~. 2 Puzzling person, thing, situation, ectt the ~ of the universe. vt~ me this, slove this ~ (as a challenge),

'Thinking and Reasoning' chapter ରେ Burtଙ୍କ Reasoning Test ରୁ ନିମ୍ନୋକ୍ତ ଉଦାହରଣତ୍ରୟ ଅଣାହୋଇ ଦିଆ ଯାଇଅଛି -

Age 7 - Kate cleverer than May
May is cleverer than Jane
Who is the cleverest -
Jane, Kate or May?

Age 9-

Three boys are sitting in a row
Harry is to the left of Wille
George is to the left of Harry
which boy is in the middle?

Age 12

I started from the church
and worked 100 yards.
I turned to the right and

Learning and Teaching - An introduction to Psychology & Education - A.G. Hughes & E.H. Hughes.

walked 20 yards.
I turned to the right again
and walked 100 yards.
How far am I from the church?

ପଶ୍ଚିମାଞ୍ଚଳର ପ୍ରଚଳିତ 'ବଖାନି' ମାନଙ୍କ ମଧ୍ୟରେ କେତେ ଗୁଣି ଏ ଗାଣିତିକ ଜ୍ଞାନ ପରୀକ୍ଷା ପାଇଁ ରଚିତ, ଯଥା -

ଚଉଦ ଅଠେଇଶ୍ ଶତାବନ୍ ବାଲା,
ଏକଶ ତେୟାଳିଶ୍‌ରେ ସାତ୍ ବଲ୍‌ଲା,
ରଜାଘର ଝିଅ ଅବଲା କାହାଲୀ,
ମଝିରେ ଆଠଟା ଗଣ୍ଠି ଥିବା,
ତେବେ ସେ ଝିଅ ଶାଶ୍ ଘର୍‌କେ ଯିବା ।

ଉତ୍ତର - ୧୪୨୮୫୭୧୪୩ x ୭ = ୧୦୦୦୦୦୦୦୦୧

ନିଜ ସ୍ୱାମୀର ନାମକୁ ପରୋକ୍ଷରେ ପ୍ରକାଶ କରିବାକୁ ଯାଇ ଗଣିତର ସାହାଯ୍ୟ ନିଆଯାଇଥାଏ -

ଚଉଦ ଚାରି କାଟ ଚାରି ନୁଆଁ ଗାଁ,
ସେ କଥା ମୋର ବରର ନାଁ

ଉତ୍ତର - ୧୪ x ୪ - ୪ - ୫୨ (ବାବନ)

ପ୍ରଶ୍ନୋତ୍ତର ଛଳରେ ମଧ୍ୟ 'ବଖାନି'ର ଆଦାନ ପ୍ରଦାନ କରାଯାଇଥାଏ, ଯଥା -

ବୁଢ଼ା - 'କାହିଁ ଯାଇଥିଲୁ ଝୁପୁରୁ ଝାପୁରୁର୍ ମାଁ,
ହାଟ ବସ୍‌ଲା କି ନାଇଁ ?'

ଯୁବତୀ - 'ଚାର୍‌ହି ଆଢ଼େ ହାଟ୍ ବସିଛେ
ମଝା ମୁଝି ନାଇଁ'

ବୁଢ଼ା ଯୁବତୀଟିକୁ ବ୍ୟଙ୍ଗକରି ପଚାରୁଛି ଯେ ତାକୁ ଗ୍ରାହକ ଯୁଟିଲେ କି ନାଇଁ ଅଥଚ ଯୁବତୀଟି ବୁଢ଼ାର ଚନ୍ଦା ମୁଣ୍ଡ ପ୍ରତି ଆକ୍ଷେପ କରି କହୁଛି ଯେ ଚାରିଆଢ଼େ ହାଟ ବସିଛି କିନ୍ତୁ ମଝି ଭାଗଟି ଖାଲି ପଡ଼ିଛି ।

(ଝୁପୁରୁ - ଝାପୁରୁ - ମୁଣ୍ଡର ବାଳରେ ତେଲଫୁଲ ନ ଲଗାଇ ଖିଅର ଭଦର ନହେଲେ

କିମ୍ବା ପାନିଆ ନ ଲଗେଇବା ଦ୍ୱାରା ତାହା 'ଝୁପୁରୁ ଝାପୁରୁ' ହୋଇଥାଏ । ଝୁପୁରୁ ଝାପୁରୁର୍ ମାଁ । - ସେଇ ଯୁବତୀର ନିଜର ମୁଣ୍ଡର ବାଳ ଗୁଡ଼ିକ ଝୁପୁରୁ ଝାପୁରୁ ହୋଇଥିବ କିମ୍ବା ତା' ପୁଅର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ମଧ୍ୟ ଏପରି ପ୍ରହେଳିକା ସବୁ ଭରପୁର ହୋଇ ରହିଛି ।

(୧) "ପତି ପତ୍ନୀ ହୋଇଛନ୍ତି ପେଟ ପଖାକର ।
ନିଜ ମହିମା ଶକତି ବସିଛି ଭିତର ।୬୩ ।
ବେନିଭୁଜ ବଢ଼ିଅଛୁ ଦ୍ୱିଲକ୍ଷ ଯୋଜନ ।
ବେନି ଜାନୁ ଲମ୍ବାଇଛି ଉତ୍ତର ଦକ୍ଷିଣ ।୬୪ ।
ପୂର୍ବର ଦିଗକୁ ମୁଖ ଶକତି ମୁହାଣ ।
ପଦ୍ମ ଓଲଟି ପଦ୍ମରେ ହୋଇଛି ଗୋପ୍ୟାନ ।୬୫ ।
ବିଦ୍ୟୁର ଝଟକ ପ୍ରାୟେ ମୁଖର ସଂଯୋଗ ।
ଯେଣିକି ଚାହିଁଲେ ଦିଶୁଅଛି ଚାରିଦିଗ ।୬୬ ।" ୧

'ବ୍ରହ୍ମ ନିରୂପଣ ଗୀତା'
ଭୀମଭୋଇ ଅଷ୍ଟମ ଅଧ୍ୟାୟ

(୨) "ଅଠର ଉଶିଶି ସରୁ ସରୁ
ଥୋକାଏ ରହିବେ ମରୁ ମରୁ
କୋଡ଼ିଏରେ ଯାଇ ... କରୁ"- ଅଚ୍ୟୁତାନନ୍ଦ ଦାସ

(ଅଷ୍ଟାଙ୍ଗ ଓ ନବଦ୍ୱାରର କ୍ରିୟା ଏକଥିବା ଅବସ୍ଥାରେ ଶରୀର ବୃଦ୍ଧି ଲୋପ ପାଇବାର ଆରମ୍ଭ ହେବ, ମାତ୍ର ଥିବ । ଜୀବ ପରମ ଦୁହେଁ ଶୂନ୍ୟ ହେଲେ ନିର୍ବାଣ ।

ସେତେବେଳେ ସଂସାରର ତରଙ୍ଗ ଉପରେ ଦୋଳାୟମାନ ଓ ଦଣ୍ଡାୟମାନ ହୋଇଥିଲେ ସୁଦ୍ଧା ସେମାନେ ସଂସାରର ନୁହନ୍ତି । ସେମାନେ ସ୍ୱତନ୍ତ୍ର ଏବଂ ବାୟୁ ବିଧୁନିତ ପଦ୍ମପତ୍ର ପ୍ରାୟ ରହିଥାନ୍ତି । 'ଦଣ୍ଡନାଟ' - ଲକ୍ଷ୍ମୀନାରାୟଣ ସାହୁ ।

(୩) "ଚର୍ମ ବେଢ଼ିଛି ସିନା ଚଉରାଶିକି,
ଚିତ୍ତ ତୁ ଦିଅ ନୀଳଗିରି ବାସୀକି ।"

'ମନବୋଧ ଚଉତିଶା'ର ପ୍ରୋକ୍ତ ପ୍ରଖ୍ୟାତ ଅଂଶ ଉପରେ ପଣ୍ଡିତ ନୀଳକଣ୍ଠ ଦାସ ତଦୀୟ 'ଓଡ଼ିଆ ସାହିତ୍ୟର କ୍ରମ ପରିମାଣ' ଗ୍ରନ୍ଥ (୨ୟ ଭାଗ - ଅଷ୍ଟମ ଅଧ୍ୟାୟର ପରିଶିଷ୍ଟ - ୧ )ରେ

୧. ବେନିଭୁଜ - ଦୁଇହାତ, ଗୋପ୍ୟନ - ଗୁପ୍ତ, ବିଦ୍ୟୁ - ବିଜୁଳି, ଝଟକ - ତେଜ, ସଂଯୋଗ- ଏକତ୍ର

ବିଶଦ୍ ଭାବରେ ଆଲୋଚନା କରିଛନ୍ତି । ଉକ୍ତ ଆଲୋଚନାଟିର ପରିସମାପ୍ତି ନିମ୍ନ ପ୍ରକାରେ କରା ହୋଇଅଛି । ୮୪ ଆଙ୍ଗୁଳ ପରିମିତ ଶରୀରକୁ ଚର୍ମ ବେଢିଚି । ଏଇ ଶରୀର ହେଉଛି, ଜୀବରେ ଅଜୀବର ସଂପର୍କ । ଏହାର ୮୪ ନରକ । ନୀଳଗିରିବାସୀ ବା ଜଗନ୍ନାଥ ପୁରୁଷୋତ୍ତମହେର ମନଦେଲେ, ବିଶ୍ୱମୈତ୍ରୀରେ ତନ୍ମୟ ହେଲେ, ଏଇ ଚର୍ମ ବେଢିଥିବା ବା ଚର୍ମବେଢ଼ି ପ୍ରେୟର ଭୂମି ହୋଇଥିବା ଚଉରାଅଶିରୁ ତ୍ରାହି ମିଳିବ । ଏହାଇ ଏ ଲେଖାର ଶିରୋନାମା । ଏହାଇ ଓଡ଼ିଆ ଧର୍ମ ତଥା ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତସାର ।

କବି ସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀରେ ମଧ ପ୍ରହେଳିକା ଧର୍ମ । ବିବିଧ ଉଦାହରଣର ସମ୍ଭାର ପରିଲକ୍ଷିତ ହୁଏ । (୨) 'ଭାବ ସମ୍ବେଗର । ମୌଳିକତାରେ ନୁହେଁ, କିନ୍ତୁ ଆଳଙ୍କାରିକ ରୀତି ଚର୍ଯ୍ୟାର ମହୋତ୍ସବ ମଧରେ ଆମେ ଉପେନ୍ଦ୍ରଙ୍କର ଯେଉଁ ବ୍ୟକ୍ତିତ୍ୱର ସଙ୍କେତ ପାଉଁ, ତାହା ହେଉଛି ଜଣେ ବିଦଗ୍ଧ ଶାବ୍ଦିକ ତଥା ଆଳଂଙ୍କାରିକ ଶିଳ୍ପୀ କବିର ବ୍ୟକ୍ତିତ୍ୱ ।

(୩) 'But Upendra may be taken as the most supreme master in this line of Sapdalankara (a recognised and respected element in literary art in Indian poetries) in the whole of Indian litera turne. He has successfully tried all the tricks of a Chitrakavya of Sanskrit poetics, throwing out poems in labials or dentals alone or ones completely excluding them, and demonstrating all shorts of bandhas or many world puzzles'.

ଭଞ୍ଜଙ୍କର ସମଗ୍ର 'ବଜାର ବୋଲି'ଟି ଏହିପରି ପ୍ରହେଳିକା ଧର୍ମୀ କଳ୍ପନା ବିଳାସର ଏକ ପ୍ରକୃଷ୍ଟ ଦୃଷ୍ଟାନ୍ତ ।

(୪) 'ଏହି ବଜାର ବୋଲିରେ ଦୁଇଗୋଟି ଅର୍ଥ ରହିଅଛି । ଗୋଟିଏ ଅର୍ଥ ସାଧାରଣ ଓ ଅନ୍ୟଟି ବ୍ୟଞ୍ଜନା ଭିତର ଦେଇ ଅଶ୍ଳୀଳ' ।

"କମଳା ପସରା- ବାଳିକି.କେ ବୋଲେ
ତୋ କମଳା ଯୋଡ଼ି କେତେ
ଦେଖାଅ ଦେଖିବା ମୂଲ୍ୟହିଁ କରିବା
କହିଦିଅ ନେବୁ କେତେ ? (୧)"

---

୨. 'ସାହିତ୍ୟ ଜିଜ୍ଞାସା' - ଅଧାପକ ବଳ । ୩. History of Oriya Literature - Dr. Mansinha

୪. ପ୍ରାଚୀନ ଓଡ଼ିଆ ସାହିତ୍ୟ, ଅଧାପକ ଦେବେନ୍ଦ୍ର ମହାନ୍ତି ।

"ବାହ୍ୟ ଅର୍ଥ କମଳା ବିକ୍ରୟ କରୁଥିବା ଯୁବତୀ ନିକଟରେ ଜଣେ ପୁରୁଷ ଉପସ୍ଥିତ ହୋଇ କହିଲା, ତୋ କମଳା ଯୋଡ଼ିର ମୂଲ୍ୟକେତେ ? ନମୁନା ସ୍ୱରୂପ ପ୍ରଥମେ ଯୋଡ଼ିଏ କମଳା ଦେଖାଅ । ମୁଁ ଦେଖିବି ଏବଂ ପରେ ମୂଲ୍ୟ ନିରୂପଣ କରିବି । ସଙ୍ଗେ ସଙ୍ଗେ ପୁଣି କହିଲା, ଆଛା ନମୁନା ଯୋଡ଼ିର ମୂଲ୍ୟ କେତେ କହତ ?

ଗୁଢ଼ ଅର୍ଥ - କୌଣସି ଜାର ପୁରୁଷ ବଜାରରେ କମଳା ବିକ୍ରୟ କରୁଥିବା ଯୁବତୀକୁ ବ୍ୟଞ୍ଜନାପୂର୍ଣ୍ଣ ଭାଷାରେ କହିଲା, ତୋ କମଳାରୂପୀ କୁଚ ଯୁଗଳର ମୂଲ୍ୟ କେତେ ? ବାହାରକୁ ଦେଖା ନଯାଉଥିବା (ଅଦେଖିବା) ସେଇ ସ୍ତନ ଯୁଗଳ ମତେ ପ୍ରଦର୍ଶନ କର (ଦେଖା) । ଆଛା ସେହି ପୀନ ପୟୋଧର ସମ୍ଭୋଗ କଲେ କେତେ ମୂଲ୍ୟ ଦେବାକୁ ପଡ଼ିବ ସେକଥା ସ୍ପଷ୍ଟ ନିର୍ଦ୍ଦେଶ କରି (କହି) ମୋ ଠାରେ ସମର୍ପଣ କର (ଦିଅ) ।"

"ସେ ବେଳଲେ କମଳା ବିନା ମୋ କମଳା
ଅତି ଯତ୍ନେ ବଢ଼ି ଅଛି,
ଅମଳା କମଳା ସଜ ମେଳା ଦେଖ
ବାସ ଫୁଟି ପ୍ରକଶୁଛି ।।୨।। ଇତ୍ୟାଦି

ତଦୀୟ 'ଚିତ୍ରକାବ୍ୟ ବନ୍ଧୋଦୟ' ମଧ୍ୟସ୍ଥ ଅନ୍ତର୍ଲିପି ଓ ବହିର୍ଲିପି ଗୁଡ଼ିକୁ ମଧ ପ୍ରହେଳିକା ଶ୍ରେଣୀଭୁକ୍ତ କରାଯାଇପାରେ ଯଥା -

ରହି ବିଦେଶ ନଯାଇ କୋଳରେ ବସାଇ,
ବକ୍ରକରି ଏମନ୍ତ ପ୍ରିୟାକୁ ପଚାରଇ ।୪୦।
ସୁରଗଣ ଆଦ୍ୟେ ଖ୍ୟାତ ନୁହଇ ଅସୁର । (ସୁ)
ବସୁଧା ପ୍ରାନ୍ତରେ ଅଛି ନୁହେ ପାରାବାର ।୪୧। (ଧା)
ହାରର ମଧ୍ୟସ୍ଥ ସେହୁ ନୁହଇ ତରଳ (ର)
ବାସଅନ୍ତେ ବିରାଜଇ ନୁହଇ ଅଞ୍ଚଳ ।୪୨। (ସ)
ପୂର୍ବଦିଗ ଆଦ୍ୟେ ଅଛି ଉଦୟାଦି ନୋହେ । (ପୂ)
ଅର୍ଣ୍ଣବ ମଧରେ ମଇନାକ ନୋହି ରହେ ।୪୨। (ର୍ଣ୍ଣ)
କିଶୋରୀ ମଧ ମଣ୍ଡନା ନୁହଇ ରସନା । (ଶୋ)
ଭାବ ଆଦ୍ୟରେ ସମ୍ଭଇ ନୁହଇ ଅଞ୍ଜନା ।୪୫। (ଭା)
କଳପ ପ୍ରାନ୍ତରେ ଖ୍ୟାତ ପ୍ରଳୟ ସେ ନୋହି । (ପ)

ପୟୋଦ ମଧ୍ୟରେ ବିଦ୍ୟୁନୋହି ଝଟକଇ ।୪୫ । (ୟୋ)
ଅଧର ମଧ୍ୟରେ ଅଛି ନୁହଇ ଅମୃତ । (ଧ)
ଶରୀର ଶେଷେ ରୁଚିର ଚରଣ ନୋହିତ ।୪୬ । (ର)
ଗାତେ ଯାହା ଅଛି ତାହା ପ୍ରକାଶ ହୋଇବ ।
ବୁଝ ଏ ଅନ୍ତର୍ଲିପିକା ମାନସ ମୋହିବ ।୪୭ ।
ରାମା ବୋଇଲା ଏ ହେଲା ବଡ଼ ଚମତ୍କାର ।
ଖ୍ୟାତ ସୁଧାରସପୂର୍ଣ୍ଣ ଶୋଭା ପୟୋଧର ।

ତତ୍ରୈବ ଅନ୍ୟତ୍ର -

ପ୍ରବାସକୁ ଗମନ କରିବା ବେଳେ ପତି ।
ଅନ୍ତର୍ଲିପିରେ କହୁଛି କେଉଁ ରସବତୀ ।୨୮ ।
ମୀନ ମାନଙ୍କର କେହୁ ସଦନ ଅଟଇ । (ବନ)
କରଟରେ କେହି ପ୍ରତିପାଳିତ ହୁଅଇ ।୨୯ । (ପିକ)
ରଜନୀ ପ୍ରକାଶେ କି କରନ୍ତି ପକ୍ଷ ଆସି । (ରତା)
ଶିବ ନୟନ ଅନଳେ କେହୁ ଗଲା ଜଳି ? ।୩୦ । (ମାରା)
ସର୍ବକାଳେ କେହୁ ବିଷ୍ଣୁ କୋଳେ ମନୋହର । (ରମା)
ସଂସାରେ କେ କରୁଅଛି ପର ଉପକାର ।୩୧ । (ତରୁ)
ଲଙ୍କାପୁରୀ ଧ୍ୱଂସକଲା କେହୁ କୋପ ଚିତ୍ତେ । (କପି)
ଗ୍ରହମାନଙ୍କ ଗଣନା ସଂଖ୍ୟା ପୁଣ କେତେ ।୩୨ । (ନବ)
ସ୍ୱୟମ୍ବରେ ସଖୀ କି କହେ କନ୍ୟାକୁ ଚାହିଁ । (ବର)
ଛପନ କୋଟି ଜୀବରେ ସାରସ୍ୱତ କେହି ।୩୩ । (ନର)
ଇଷ୍ଟ ଦେବତାଙ୍କୁ କିସ କହନ୍ତି ଯବନ । (ପିର)
କି ଘେନନ୍ତି ପ୍ରଜାଗଣଠାବରୁ ରାଜନ ।୩୪ । (କର)
ବାମନ କାହାର ପୁତ୍ର ହୋଇଣ ପ୍ରକାଶ । (ତାର)
ଶିଷ୍ୟକୁ କି ବୋଲି ଗୁରୁ କରନ୍ତି ଆଶିଷ ।୩୫ । (ତର)
ଯୁଦ୍ଧକାଳେ କେଭୃବାଣୀ ହୁଅଇ ପ୍ରଖ୍ୟାତ । (ମାର)
କୋକିଳ କରଇ କିସ ହୋଇଲେ ବସନ୍ତ ।୩୬ । (ରତ)
ବିପ୍ରଲବ୍ଧା ପ୍ରଭାତେ କରଇ କିସ କାନ୍ତେ । (ମାନ)

ଜୀବନ ମୁକ୍ତ କେ ପୁଣ କହ ଏ ଜଗତେ ।୩୭ । (ତପୀ)
ସାମ ଯଜୁ ଅର୍ଥବୁ କେ ଆଉ ବେଦସାର । (ରକ୍)
ଏ ବସନ୍ତି ଋତୁରେ କେ ଶତ୍ରୁ କାମିଙ୍କର ।୩୮ । (ପିକ)
ନାୟକ କହିଲା ବନ ପିକ ରତ ମାର ।
ହା ପଣ୍ଡିତା କଲ ଅଷ୍ଟ ଅକ୍ଷରେ ବିଚାର । ୩୯ ।

ଯଦୁମଣି ମହାପାତ୍ର ଜଣେ ବିଚକ୍ଷଣ ଆଶୁକବି ଭାବରେ ଓଡ଼ିଶାର ଘରେ ଘରେ ପରିଚିତ । ଅଧ୍ୟାପକ ରାଜକିଶୋର ରାୟଙ୍କ ଭାଷାରେ - ଯଦୁମଣି ବୁଦ୍ଧିରେ ଚମତ୍କାରିତା ସହିତ ହାସ୍ୟରସ ପରିବେଷଣ କରିବାରେ ଜଣେ ଅଦ୍ୱିତୀୟ ଶିଳ୍ପୀ । ଯଦୁମଣିଙ୍କର ବ୍ୟଙ୍ଗ ରହସ୍ୟ ଓଡ଼ିଶାର ପୁରପଲ୍ଲୀରେ ପରିଚିତ ଓ ସମାଦୃତ । 'ଯଦୁମଣି ରହସ୍ୟ' ଓଡ଼ିଶାର ଏକ ପ୍ରବାଦ ସୂତ୍ରରେ ଅତି ରୋମାଞ୍ଚକର ସାହିତ୍ୟ ରୂପେ ଗଣ୍ୟ ହୋଇ ଆସିଛି ।"

(ଓଡ଼ିଆ ସାହିତ୍ୟରେ ବ୍ୟଙ୍ଗରସ - ସାହିତ୍ୟ ଓ ସାହିତ୍ୟ ତତ୍ତ୍ୱ)

ଡ଼ଃ ମାନସିଂହଙ୍କ ଭାଷାରେ

Yadumani Mahapatra.

'Book known as a wit in Orissa, like Birbal in northern India. Yadumani Mahapatra is the most entertaining literary legend in the land. In gathering of rural folk in any part of Orissa, the witty sayings and practical jokes of Jadumani are frequently recalled for the innocent laughter and diversion they provide. His witticisms and jokes have been collected in Jadumani-rahasya. Which is a perennial best-seller in rural areas.'

(History of Oriya Literature)

ଯଦୁମଣିଙ୍କର ପ୍ରତ୍ୟୁତ୍ପନ୍ନମତିତାର ପରୀକ୍ଷା ନିମିତ୍ତ ଚକ୍ରପାଣି ପଟ୍ଟନାୟକ ତାଙ୍କୁ ଅନେକ ପ୍ରଶ୍ନ କରିଥିବାର ପ୍ରମାଣ ରହିଅଛି । ଯଦୁମଣି ପ୍ରଶ୍ନଗୁଡ଼ିକର ଯଥାଯଥ ଉତ୍ତର ପ୍ରଦାନ କରିବା ପରେ ଚକ୍ରପାଣିଙ୍କୁ ନିମ୍ନୋକ୍ତ ପ୍ରଶ୍ନଟି ପଚାରି ନିରୁତ୍ତର କରି ଦେଇଥିଲେ -

ଛବିରେ କେ ଜିଣେ ନବ ରବିଙ୍କି ?
କେ ପେଟ ପୋଷେ ଧନୁଶର ବିକି ?
ଜଳଠାରେ ଭୀତି କାହାର ନିତି ?

କାର ଭୟ ନାହିଁ ଉରଗ ପ୍ରତି ?
ବିଚାରି କହିବ
ଚାରି ପଦାର୍ଥ ଏକ ହୋଇଥିବ । (ଅବିର)

୧ମ ପାଦର ଅର୍ଥ ଅବିର ଅର୍ଥାତ୍ ଫଗୁ ।

୨ୟ ପାଦର ଅର୍ଥ ଅବୀର - ଯେ ବୀର ନୁହେଁ ।

୩ୟ ପାଦର ଅର୍ଥ - ଅବି - ଛେଳି ର ଅର୍ଥାତ୍ ଛେଳିର ।

୪ୟ ପାଦର ଅର୍ଥ - ଅ = ବିଷ୍ଣୁ ବି - ପକ୍ଷୀର ଅର୍ଥାତ ଗରୁଡ଼ର

(ଯଦୁମଣି ରହସ୍ୟ କଥା-ମୃତ)

ପଣ୍ଡିତ ନୀଳକଣ୍ଠ ଦାସଙ୍କ ଭାଷାରେ -

(୫) "ଆମ ଯଦୁମଣି ରହସ୍ୟ କଥା ଅନେକ ଜାଣିଥିବେ ସେଇପରା ଦଶପଲା ରାଜାଙ୍କ ଆତିଥ୍ୟରେ ଥିଲାବେଳେ, ସେଇ ଆତିଥ୍ୟକୁ ବର୍ଣ୍ଣନା କରି ରାଜାଙ୍କୁ ଲେଖି ପଠାଇଥିଲେ ।

ଯେଉଁଦିନୁ ଆମେ ଏଠାକୁ ଅଇଲୁଁ
ସେଇଦିନୁ ହେଲା ଖତା
କମଳା ଲେମ୍ବୁରେ ହାତ ନପଡ଼ିଲା
ଭାତଖିଆ ହେଲା ଛଡ଼ା
ଆଳୁ କଦଳୀରୁ କି ସୁଖ ମିଳିବ
ସେତ ଲୋଡୁଥାଏ ସାଥୀ
ବୋଲେ ଯଦୁମଣି କରମଙ୍ଗା ହେଲେ
କିଛି ରୁଚନ୍ତା ବା ପଥି ।
(ଏ କବିତାର ଯୋଡ଼ିକ ଯାକ ଅର୍ଥ ସ୍ପଷ୍ଟ)

ତୁଳସୀ ଦାସଙ୍କ ଦୋହାବଳୀରେ ମଧ ପ୍ରହେଳିକାର ଛଟା ଦେଖିବାକୁ ମିଳିଥାଏ । ନିମ୍ନରେ ତହିଁରୁ ଦୁଇଗୋଟି ଉଦାହରଣ ପରିବେଷଣ କରାଗଲା - (୬)

"ଅଳି, ପତଙ୍ଗ, ମୃଗ, ମୀନ, ଗଜ୍
ଇୟାକୋ ଏକଇ ଆଁଚ୍ ।

---

୫. ଯୌନ ସଙ୍କେତ ଓ ସାହିତ୍ୟ ଓଡ଼ିଆ ସାହିତ୍ୟର କ୍ରମ ପରିଣାମ - ୨ୟ ଭାଗ, ପୃ : ୪୨୯

୬. ତୁଳସୀ ଦୋହାବଳୀ - ରାମକୃଷ୍ଣ ନନ୍ଦ ।

ତୁଲସୀ ଓୟାକୋ କ୍ୟା ଗତ୍
ଯାକୋ ପିଛୋ ପାଁଚ୍ ।"

(ଯେସନ ଚକ୍ଷୁ ପ୍ରଲୋଭନ ନ ଛାଡ଼ି,
ପତଙ୍ଗ ପୋଡ଼ିମରେ ଅନଳେ ପଡ଼ି ।
ପୁଷ୍ପ ସୁବାସେ ଅନ୍ଧ ହୋଇଣ ଅଳି
ବନ୍ଧନେ ପଡ଼ି ଶେଷେ ହୁଅଇ ଭାଳି ।
ମୃଗ ଯେ ଖୋଜି ବୁଲୁଥାଏ କସ୍ତୁରୀ,
ତେଣୁ ଭେଟଇ ଆସି କାଳ ଶିକାରୀ ।
ଖାଦ୍ୟ ଲୋଭରେ ମତ୍ସ୍ୟ ଆସଇ ଗତି,
ସଙ୍ଗ ମୋହରେ ଭୁଲି ଯାଏତ ହାତୀ ।
ଏ ଯେ ପାଞ୍ଚଟି ଜୀବଙ୍କର ମରଣ,
ଏକ ଏକ ଇନ୍ଦ୍ରିୟ ଅଟେ କାରଣ ।
ଯେଉଁ ମାନବ ପଞ୍ଚ ଇନ୍ଦ୍ରିୟ ବଶ,
କି ଦୁର୍ଗତି ତାହାର ପ୍ରତି ଦିବସ ।)

ଅନ୍ୟତ୍ର -

ମାଟି କହେ କୁମ୍ଭାର କୋ
ତୁ କ୍ୟା ରୁଧେ ମୋହିଁ,
ଏକ୍ ଦିନ୍ ଐସା ହୋୟଗା
ମେ ରୁଧୌଗେ ତୋହିଁ ।
(ମାଟି କହେ କୁମ୍ଭାରକୁ ଚାହିଁ,
କେତେ ତାଡ଼ନା ମୋତେ କରୁରେ ଭାଇ,
ଏମନ୍ତ ଦିନ ପୁଣି ଆସିବ ଯେବେ,
ତୋର ଏ ଦେହ ଯିବ ମୋର ଗରଭେ ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଅଦ୍ଭୁତ ଶବ୍ଦ ବିନ୍ୟାସଶୈଳୀ ସାହିତ୍ୟ ରାଜ୍ୟରେ ଅସଂଖ୍ୟ ପ୍ରହେଳିକା ଧର୍ମୀ ସ୍ରୋତସ୍ୱିନୀର ଉଦ୍‌ଗାତା ରୂପେ ଚିରସ୍ମରଣୀୟ ହୋଇ ଉଠିଛି । ତଦୀୟ "ଯମକରାଜ ଚଉତିଶା ତାଙ୍କର ପାଣ୍ଡିତ୍ୟ ଓ ଶବ୍ଦଜ୍ଞାନର ଚରମ ନିଦର୍ଶନ । ଅମର, ଯାଦବ, ତ୍ରିକାଣ୍ଡ ଶାଶ୍ୱତ ଓ ବିଶ୍ୱକୋଷ ପ୍ରଭୃତି କୋଷ ଗ୍ରନ୍ଥରେ କବି ସମ୍ରାଟଙ୍କର ବିଶେଷ ଅଧିକାର ଥିଲା ।"

ଉଦାହରଣ ଛଳରେ ତହିଁରୁ ଖଣ୍ଡିଏ ପରିବେଷଣ କରାଗଲା -

(୭) "ଜୀବନ ଜୀବନ ଜୀବନ ଜୀବନ ଧନୀ ଶଁକୁନ୍ତଳା ତେଜିବ
ଜଗତ ନଳିନୀ ନଳିନୀ ନଳିନୀ ନଳିନୀ ଯେତେ ନିରେଖିବ ।
କୋକିଳ ଜବାଧରା ମନରଞ୍ଜନା
ଜଗତ ସୁରଭି ସୁରଭି ସୁରଭି ସୁରଭି ସୁରଭି ବରାନା । (୮)

ଅନ୍ୱୟ - ମୋ ଶକୁନ୍ତଳା ଧନୀ ଜୀବନ (ବାୟୁ) ଜୀବନ (ଜଳ) ଜୀବନ (ସଦ୍ୟ ଲବଣୀ) ନ ନେଇ ତାର ଜୀବନ (ପ୍ରାଣ) ତେଜିବ; ଜଗତର ନଳିନୀ (ପଦ୍ମିନୀ ନାୟିକା) ନଳିନୀ (ପଦ୍ମବନ) ନଳିନୀ (ପଦ୍ମିନୀ) ଓ ନଳିନୀ (ନଦୀ)କୁ ଦେଖିବାରେ କୋକିଳ, ସେ ଜବାଧରା (ମେ) ମନ ରଞ୍ଜନା; ଜଗତ ସୁରଭୀ (ପଣ୍ଡିତ) ସୁରଭି (ସୁଗନ୍ଧୀ) ସୁରଭି (ଚମ୍ପକ) ସୁରଭି (ଚନ୍ଦନ) ଓ ସୁରଭି (ବନମଲ୍ଲୀ) ବରନା ଅଟେ ।"

।୮ । "କବି ସମ୍ରାଟ ଭଞ୍ଜଙ୍କର 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ସେହିପରି ଗୋଟିଏ ଛନ୍ଦରେ ଚିନ୍ତା, ଦେଶାକ୍ଷ, କାଫିକାମୋଦି ଓ ମାଳବରାଡ଼ି ରାଗର ବର୍ଣ୍ଣନା ରହିଛି । ଏତଦ୍ ବ୍ୟତୀତ ପ୍ରତ୍ୟେକଥର ଗୋଟିଏ ଗୋଟିଏ ଅକ୍ଷର ବାଦ୍‌ଦେଲେ ବିଭିନ୍ନ ରାଗ ଓ ବିଭିନ୍ନ ବ୍ୟଞ୍ଜନାର ପରିଚୟ ଦେଉଛି । ଅବଶ୍ୟ ରତିମାନଙ୍କ କାବ୍ୟରେ ଏତେ ଗୁଡ଼ିଏ ଲକ୍ଷଣ ଏକତ୍ରିତ ହେବା ଦେଖିବାକୁ ମିଳେନା, ତଥାପି ତାଙ୍କର କବି ପ୍ରତିଭା ଭଞ୍ଜଙ୍କର ସମକକ୍ଷ ନହେଲେ ବି କେତେକ କ୍ଷେତ୍ରରେ ସମାନ୍ତରାଳ କହିଲେ ଅତ୍ୟୁକ୍ତି ହେବନାହିଁ ।

"ଅସାର ସଘନ କାଳ ହୋଇ ଉଦୟ.... ଅସିତ ପର ବଳରୁ ଦରଶମୟ"-

ଭଞ୍ଜ କବିଙ୍କର 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ଏଇ ପଦଟିକୁ ଏହିପରି ଭାବେ ପାଠକଲେ ପାଠକ ସେଥିରେ ଶେଷାକ୍ଷ ରାଗରେ ବର୍ଷାକାଳର ବର୍ଣ୍ଣନା ପାଇବେ । କିନ୍ତୁ ପ୍ରଥମ ଅକ୍ଷର 'ଅ' ଟିକୁ କାଟି 'ସାରସ ଘନ କାଳ' ରୂପେ ପାଠ କଲେ ତାହା ଖାପି, କାମୋଦି - ରାଗରେ ଶୀତକାଳର ବର୍ଣ୍ଣନାକୁ ବୁଝାଇବ । ତାପରେ ସେଥିରୁ 'ସା' ଟିକୁ କାଟି 'ରସଘନ କାଳ ରୂପେ' ପାଠ କଲେ ତାହା ମାଳବିରାଡ଼ି ରାଗରେ ଗ୍ରୀଷ୍ମକାଳର ବର୍ଣ୍ଣନା ଭଳି ଲାଗିବ । ଏହିସବୁ ବିସ୍ମୟକର କାବ୍ୟ ପ୍ରତିଭାରେ କବି ସମ୍ରାଟ ଭଞ୍ଜଙ୍କୁ ବଳିଗଲା ଭଳି ସମଗ୍ର ବିଶ୍ୱସାହିତ୍ୟରେ କବି ନାହାନ୍ତି ସତ, ତଥାପି ସେମାନଙ୍କର ପ୍ରତିଭାକୁ ଆମେ ସେଇ ଦୃଷ୍ଟିରୁ ବିଚାର କରି ଦେଖିଲେ ତାହା ଅନେକ

---

୭. ସଟୀକ ଯମକରାଜ ଚଉତିଶା - ଟୀକାକାର ଶ୍ରୀ ବିଶ୍ୱନାଥ କର ।

୬. ତେଲୁଗୁ ରୀତି କାବ୍ୟ - ଅଧାପକ ଶ୍ରୀ ପୀତାମ୍ବର ସ୍ୱାଇଁ - ନବପତ୍ର ଶିଶିର ସଂଖ୍ୟା, ଜାନୁୟାରୀ ୧୯୭୬ ।

ସ୍ଥଳରେ ଆମ ଭଞ୍ଜ କବିଙ୍କ ସମକକ୍ଷ ଭଳି ଜଣା ପଡ଼ିଯାଏ । ସେ ତାଙ୍କ 'ପାରିଜାତ ହରଣମ୍'ରେ ଲେଖିଛନ୍ତି -

"ଧୀର ଶୟନିୟ ଶରଧୀ
ମାରବି ଭାନୁମତ୍ତ ମମତ ମନୁଭା ବିରମା
ସାରସ ବନ ନବ ସରସା
ଦାରଦ ସମତାର ତାର ତାମସଦ ରଜା ।"

ଏହା ଠିକ୍ ଭଞ୍ଜକବିଙ୍କର "ବିଲୋମ ହୋମ ମେଷଯୁଦ୍ଧ" ଶୈଳୀର ଅନୁରୂପ । ଏହି ପଦର ପ୍ରତ୍ୟେକ ପାଦର ମୂଳରୁ ପଢ଼ିଗଲେ ଯାହା ଶେଷରୁ ପଢ଼ି ଆସିଲେ ତାହାହିଁ ହେବ । ଅର୍ଥ କିନ୍ତୁ ଭିନ୍ନ ଭିନ୍ନ ପ୍ରକାର ଜଣା ପଡ଼ିବ । ଭଞ୍ଜ କବିଙ୍କର -

"ବରଦ ବିରସାନନ ସାର ବିଦରକ .... ବଧମାନ ଜରତ ତରଜନ ମାଟବ" - ସେହିପରି ରୀତିରେ ମୂଳରୁ ଓ ଶେଷରୁ ପଢ଼ାଯାଇପାରେ ।

ପୁରାଣ ସାହିତ୍ୟ ମଧ୍ୟରେ ମଧ୍ୟ ପ୍ରହେଳିକାଦ୍ୟୋତକ ବର୍ଣ୍ଣନା ବିଳାସ ପରିଲକ୍ଷିତ ହୋଇଥାଏ । ପିତାମ୍ବର ଦାସଙ୍କ ଲେଖନୀ ନିସୃତ ନୃସିଂହ ପୁରାଣ ସମ୍ପର୍କରେ ଡ଼ଃ ମାନସିଂହ ତାଙ୍କର 'History of Oriya Literature' ରେ ଲେଖିଛନ୍ତି ।

'Of all the Purna creators, Pitambara Dasa, author of only one Puranic - epic, Nrisinha Purana, appears to be the most out-standing. This is entirely an original work. There is nothing like this story in Sanskrit as far has been ascertained by scholars in Orissa.'

(The Age of Puranas and Ornate Poetry - The Great Pitambara Dasa)

ଶେଷ ଖଣ୍ଡରେ ରହସ୍ୟବାଦର କୁହେଳୀ ମଧ୍ୟରେ ପ୍ରହେଳିକାତ୍ମକ ବର୍ଣ୍ଣନାଛଟା ସମ୍ବନ୍ଧରେ ମାନସିଂହ ଲେଖିଛନ୍ତି -

'In his seventh 'sea' the poet introduces a strange mysticism which is difficult to intepret. It is however. only a small portion of a long philosophical literature. Here is a sample -

'The field is being ploughed, but there are neither bullocks nor tiller. The daughter-in-law is not widowed in spite of the son's death.

The husker suffers from pneumonia and the winnowing - fan has feaver the sieve goes to visit her father, leaving the house to be looked after by the broomstick? The stone is having a collapse, water is thirsty and the fire shivers with cold!'

(History of Oriya literature, Page 113-114)

ଉପେନ୍ଦ୍ରଙ୍କ ଚମତ୍କାର ଶବ୍ଦ ବିନ୍ୟାସ ଏକାନ୍ତ ପ୍ରହେଳିକା ଧର୍ମୀ । "ବର୍ଷା କାଳକୁ ବାଘଟାଏ ବୋଲି ବର୍ଣ୍ଣନା କରୁ କରୁ ପୂର୍ଣ୍ଣୋପମାକୁ ପରିପୂର୍ଣ୍ଣ କରିବାକୁ ଯାଇ ସେ କହିବେ -

"ଋକ୍ଷ ପନ୍ତି ଲୀନ । ଆଗକରି ସେ ଗିଳିଦେଲା ଦିନ ।"

ବର୍ଷା ମେଘରେ ଋକ୍ଷପନ୍ତି ବୋଇଲେ, ତାରାମାନେ ଲୀନ ହେଲେ, କି ଲୁଚିଗଲେ । ପୁଣି ବାଘ ଅର୍ଥରେ, ଋକ୍ଷପନ୍ତି କି ଭାଲୁମାନେ ବାଘ ଆସିବାରୁ ଲୁଚିଗଲେ । ବର୍ଷାରେ ଭାଲୁ ବି ବାହାରନ୍ତି ନାହିଁ । ପୁଣି ସେ ବର୍ଷାକାଳ, ଆଗକରି ଦିନ ବୋଇଲେ, ଆଲୋକକୁ ଗିଳିଦେଲା - ସୂର୍ଯ୍ୟଙ୍କୁ ମେଘରେ ଘୋଡ଼ାଇ ଦେଲା । ବାଘ ହୋଇଥିବାରୁ ଦୀନ ବୋଇଲେ, ଦୁର୍ବଳକୁ ଗିଳିଦେଲା । ବର୍ଷା କାଳରେ ଦୀନ ବା ଦୁଃଖୀ ଗରିବମାନେ ମୂଲଲାଗି ବା ଭିଖମାଗି ବାହାରି ପାରନ୍ତି ନାଇ ଏହା ଶବ୍ଦାଳଙ୍କାର, ଅନ୍ତତଃ ଅର୍ଥାଳଙ୍କାରକୁ ପଛକୁ ପକାଇ ଶ୍ଳେଷ ଚାତୁରୀ ଦେଖାଇବାର ଉଦ୍ୟମ ଏଠି ସ୍ପଷ୍ଟ ।

(ଓଡ଼ିଆ ସାହିତ୍ୟର କ୍ରମ ପରିମାଣ, ପୃ : ୪୯ ।)

ବିଖ୍ୟାତ ଇଂରେଜ କବି ମିଲଟନ୍ ତଦୀୟ 'ସ୍ୱର୍ଗର ପତନ' (Paradise Lost) କାବ୍ୟରେ ରହସ୍ୟର ଦ୍ୱାର ଉନ୍ମୋଚନ କରିବାକୁ ଯାଇ ଅନେକ ପ୍ରହେଳିକାଧର୍ମୀ ବିଷୟର ଅବତାରଣା କରିଛନ୍ତି । ଯଥା -

"In five lines of Paradise Lost Milton introduces four such etymologies, namely, those of the four fabled rivers of hell, though this will sometimes escape the notice of the English reader :-

"Abhorrid Styx, the flood of
the deadly hate,
Sad Acheron of sorrow
black and deep,
Cocytus, named of
lamentation loud

Heard on the rueful stream:
fierce phlegethon.
Whose wares of torrent fire
inflame with rage." (୯)

ବେଦର ଅନ୍ୟନାମ ଶ୍ରୁତି, କାରଣ ବେଦକୁ ପୁରୁଷାନୁକ୍ରମେ ଶୁଣି ଶୁଣି ମନେରଖା ଯାଉଥିଲା । ପରେ ହୁଏତ ତାକୁ ଲିପିବଦ୍ଧ କରି ରଖାଗଲା । ଏହିପରି ତୁଣ୍ଡରୁ ତୁଣ୍ଡକୁ ଏବଂ ପୋଥିରୁ ପୋଥିକୁ ଡେଇଁ ଡେଇଁ ସେ ଗଡ଼ି ଚାଲିଲା । ବର୍ତ୍ତମାନର ବେଦ ସ୍ଥାନ କାଳ ପାତ୍ର ଭେଦରେ ଏକ ପରିବର୍ତ୍ତିତ ରୂପରେ ଆମ ଆଗରେ ତିଷ୍ଠି ରହିଛି ମାତ୍ର । ନିମ୍ନୋକ୍ତ ବିଭିନ୍ନ ଶବ୍ଦର ସ୍ଥାନ ପରିବର୍ତ୍ତନ ତନ୍ମଧ୍ୟରେ ଅଜସ୍ର ପ୍ରହେଳିକାର ସୃଷ୍ଟିପାଇଁ ଖାଦ୍ୟ ଯୋଗାଇ ଦେଇଛି । ନିମ୍ନଲିଖିତ ଉଦାହରଣଟି ସେହି ଦୃଷ୍ଟିରୁ ଏକାନ୍ତ ପ୍ରଣିଧାନ ଯୋଗ୍ୟ - (୧୦)

ୟା ଜାମୟୋ ବୃଷ୍ଣ ଇଛନ୍ତି ଶକ୍ତିମ; (ଋ. ୩. ୫୭, ୩) verses like this contain allegories which have been a nuisance for the vedic commentators for thousands of years. They have often the quality of a bad riddle the author of which so manages to construct it, that no body is able to solve it. Ordinarily daily phenomena of nature on of the sacrifice are clothed with imperfect images. It is not poetical mythology but playful art of the poet. This verse is addressed to Agni, not to Indra nor the some as Sayana thinks.

X X X

ପଦା । ଅପ୍ରୁଃ (ଋ. ୧, ୧୨୪, ୭) Thus ପଦାପ୍ରୁଃ has been divided by the Padapatha and flowing it Sayana, Haug and ludwing render it as "cows drink with the fool". But this absurdity is removed when we divide it as ପଦଃ । ଅପ୍ରୁ and connecting ପଦଃ With the preceding ଶୀର୍ଷ୍ଣଃ tender ପଦଃ as from below."

ଏଇଠି Rev. H. Heras, S.J.ଙ୍କ ଋକ୍ ବେଦ ସମ୍ବନ୍ଧରେ ମତାମତଟି ଉଲ୍ଲେଖ କଲେ ଭଲ ହେବ - (୧୧) "While studying Indian philosophy and asceticism,

୯. On the study of words - R.C. Trench, D.D. Page - 57

୧୦. Dr. Roth's studies on the pada-patha by S.R. Sehgal - Annals of the Bhandarkar Oriental Research Institute, Vol. XXXI, 1950.

the first book that is always cited as the basir of all India philosophic and ascetic talk is the Rigveda. And yet there is no book in India so antiphilosophic and so devoid of any ascetical ideals as the Rigveda is.

Philosophy is a science of precision and in the Rgveda every thing is vague and full of doubts. First of all there is no certainty at all as regards the nature of God. The vedic Gods are called paroksapriyah, i.e. "Lovers of mysteries". (୧୨) The vedic Gods are always delighted whit whatever is abscure and hate whatever is clear and obvious`. The Rgvedic poets do not know who is the supreme God. The God whom they actually address is always the supreme deity for them. When they sing a hymn to Indraf, Indra is the supreme God, when they recite a prayer to Surya,. Surya is above all the Gods. When an offering is being made to Varuna, Varuna is the highest and most powerful in heaven"

ପଣ୍ଡିତ ବିନାୟକ ମିଶ୍ରଙ୍କ ଓଡ଼ିଆ ସାହିତ୍ୟ ଇତିହାସ ଗ୍ରନ୍ଥ ପ୍ରକାଶିତ ହେବାପରେ ତହିଁରେ ଥିବା କେତେକ ଅସଙ୍ଗତି ପ୍ରତି ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ପଣ୍ଡିତ କରୁଣାକର କର ଏକ ସମାଲୋଚନା ପୁସ୍ତିକା ପ୍ରକାଶ କରିଥିଲେ । ଉକ୍ତ ପୁସ୍ତିକାର ନିମ୍ନ ବର୍ଣ୍ଣିତ ଅଂଶଟି ଆମ ବିଷୟ ବସ୍ତୁର ପରିସୀମା ମଧ୍ୟରେ ରହିଥିବା ହେତୁ ବେଶ୍ ଉପଭୋଗ୍ୟ ହେବ ବୋଲି ମୋର ଆଶା -

"୧୪୯ ପୃଷ୍ଠାରେ ପଣ୍ଡିତ ମହାଶୟ କନକଲତା ଏବଂ ରସଲହରୀର ଗୋଟିଏ ଗୋଟିଏ ପଦ ଅର୍ଥ କରି ଅଛନ୍ତି । ସମସ୍ତଙ୍କ ଜାଣିବା ସକାଶେ ତାହା ତଳେ ଦିଆଗଲା ।

---

୧୧ .The Origin of Indian philosophy and asceticism - An Historical Introduction - MYSTIC TEACHING OF THE HARIDAS OF KARNATAK - Karmarkar and Kalamdani.

୧୨ .Aitara Brahmana 11 33; VIII, 301 Taittiriya Brahmani, 1'5 IX, 2, Satapatha Brahmana, VI, 1; I,2; XIV, 6; XI, 2;
Olednberrg' La Religion des Vedas, pp. 4-582 (Leipzig 1917)
Oldenberg, Die Lehre der Upanishaden and die Anfange des Buddhismus p. 63 (Gottingen)

"ଅଭ୍ରକାରୀ କାନ୍ତି ଧର ।
ଭୂତେଶ କମଳାବର ।" (କ - ଲ)
"ଅରିଦର କର ପରଶୁଧର ।
କରେ ଶୋଭିତ କମଳ ଯାହାର ।" (ର - ଲ)

"ପ୍ରଥମ ପଦ - (ହରି ଅର୍ଥରେ) ଅଭ୍ର - ମେଘ, ଅଭ୍ରକାରୀ କାନ୍ତିଧର - ଶ୍ରୀକୃଷ୍ଣ (ଶ୍ରୀକୃଷ୍ଣଙ୍କ କାନ୍ତିକି ମେଘର କାନ୍ତି ସଦୃଶ ବୋଲି କୁହାଯାଏ) । ଭୂତେଶ - ପ୍ରାଣୀଙ୍କର ପ୍ରଭୁ, କମଳ - ପଦ୍ମ । (ହର ଅର୍ଥରେ) - ଅଭ୍ର - କର୍ପୂର, କାନ୍ତି ନାରୀ, ଅଭ୍ରକରି କାନ୍ତିଧର - ଅର୍ଦ୍ଧନାରୀଶ୍ୱର (ଶିବ), ଭୂତେଶ - ପିଶାଚମାନଙ୍କ ପ୍ରଭୁ, କମଳ - ସର୍ପ ।" ଇତ୍ୟାଦି ଇତ୍ୟାଦି ।

"ଏଠାରେ 'ଅଭନ୍ରୀ କାନ୍ତିଧର' ପଦଟି ବଡ଼ ସୁନ୍ଦର ଭାବରେ ଅର୍ଥ କରା ହୋଇଅଛି । ପ୍ରଥମରେ କୃଷ୍ଣଙ୍କ ପକ୍ଷରେ ଅର୍ଥ କଲାବେଳେ 'କରୀ' ଶବ୍ଦର ଅର୍ଥ ବୋଧହୁଏ ପଣ୍ଡିତ ମହାଶୟଙ୍କୁ ଜଣାନାହିଁ । ତାହା ହୋଇଥିଲେ, ସେ ପଦଟିର ଅର୍ଥ ମଧ ଦେଇଥାନ୍ତେ । ସେ ଏହି କଥା ଘୋଡ଼ାଇବା ପାଇଁ "କୃଷ୍ଣଙ୍କ କାନ୍ତିକି ମେଘର କାନ୍ତି ସଦୃଶ ବୋଲି କୁହାଯାଏ" ଲେଖି ଅଛନ୍ତି । ଦ୍ୱିତୀୟରେ ଶିବଙ୍କ ପକ୍ଷରେ ଯେଉଁ ଅର୍ଥ ହୋଇଅଛି, ତାହା ପଢ଼ିଲେ ହାସ୍ୟ ସଂବରଣ କରି ରହିହେବ ନାହିଁ । ପଣ୍ଡିତ ମହାଶୟଙ୍କ ମତରେ ଓଡ଼ିଶାରେ ଆଉ ପ୍ରାଚୀନ ସାହିତ୍ୟିକ ନାହାନ୍ତି । ତାହା ହୋଇଥିଲେ ସେ ଏପରି ଅର୍ଥ କରିବାକୁ ସାହସ କରି ନଥାନ୍ତେ । ତଥାପି ଯେଉଁମାନେ ଅଳ୍ପ ସ୍ୱଳ୍ପରେ ପଦେ ଅଧେ ପୁରୁଣା ଗୀତର ଅର୍ଥ ଜାଣନ୍ତି, ସେମାନଙ୍କୁ ଏବଂ ଆଜିକାଲିକାର ସାହିତ୍ୟିକ ମାନଙ୍କୁ ମୁଁ ପଚାରୁ ଅଛି - 'କାନ୍ତି' ଅର୍ଥ 'ନାରୀ' ହେବାର ସେମାନେ ଶୁଣି ଅଛନ୍ତି କି ? 'କାନ୍ତି' ଅର୍ଥ ସ୍ତ୍ରୀ ହେଲେ ମଧ 'ଅଭ୍ରକାରୀ କାନ୍ତିଧର' ଅର୍ଥ 'ଅର୍ଦ୍ଧ ନାରୀଶ୍ୱର' କିପରି ହେଲା, ପାଠକମାନେ ଥରେ ବିଚାର କରି ଦେଖନ୍ତୁ । ବିଦଗ୍ଧ ଚିନ୍ତାମଣିର 'ଶ୍ରୀରାଧା ବାତୁଳୀ ପ୍ରେମ ରସାତୁଳୀ'ରେ ପଣ୍ଡିତ ମହାଶୟ ଯେପରି 'ରସାତୁଳୀ' - ଏହି ଅବିଶୁଦ୍ଧ ପାଠ ଗ୍ରହଣ ପୂର୍ବକ ତାହାର ଅର୍ଥ କରି କହି ଅଛନ୍ତି - 'ରସାତୁରୀ'ରୁ 'ରସାତୁଳୀ' ହୋଇଅଛି । ପ୍ରକୃତରେ ପ୍ରାଚୀନ ସାହିତ୍ୟର ଗବେଷଣା ନକରି ଏହିପରି ଅର୍ଥକଲେ ନିଜର ଯାହାତ ଜଣାପଡେ, କିନ୍ତୁ ପାଠକମାନଙ୍କ ମନରେ ମଧ ଗୋଟିଏ ଭ୍ରାନ୍ତ ଧାରଣା ଜନ୍ମାଇ ଦେବାକୁ ହୁଏ । ଫଳତଃ 'ଅନ୍ଧେନ ନୀୟମାନା ଯଥାନ୍ଧାଃ' ଭଳି ପ୍ରକୃତ କବିର ଅର୍ଥ ଓ ଭାବ ଛାଡ଼ି ମନକୁ ଗୋଟିଏ ଅର୍ଥରାଜ୍ୟ ସୃଷ୍ଟି କରିଚାକୁ ହୁଏ ଏବଂ ଅକାରଣରେ ପ୍ରକୃତ ଗୀତର୍ଥୀମାନଙ୍କୁ ମଧ ପରିଶ୍ରମ କରିବାକୁ ହୁଏ ।"

ତଳେ ମୁଁ ଉକ୍ତ ପଦର ପ୍ରକୃତ ଅର୍ଥଦେଲି । ଅଭ୍ରକାରୀ କାନ୍ତିଧର (କୃଷ୍ଣଙ୍କ ପକ୍ଷରେ) ଅଭ୍ର -ମେଘ, କରୀ - ହସ୍ତୀ । ମେଘ ଓ ହସ୍ତୀର ଶୋଭାକୁ ଧାରଣ କରିଥିବା କୃଷ୍ଣ ।

ଅଭ୍ରକରୀ କାନ୍ତିଧର (ଶିବଙ୍କ ପକ୍ଷରେ) ଅଭ୍ରକରୀ - ଐରାବତ ହସ୍ତୀ (ଐରାବତୋଽଭ୍ରଅମାତଙ୍ଗେ ରାବଣଭ୍ରମୁ ବଲ୍ଲଭାଃ - ଅମର) ତେଣୁ ଅଭ୍ରକରୀ କାନ୍ତିଧର ଅର୍ଥ - ଯେ ଐରାବତ ହସ୍ତୀର ଶୋଭାକୁ ଧାରଣ କରିଅଛନ୍ତି ଅର୍ଥାତ୍ ଯେ ଦେଖିବାକୁ ଶୁକ୍ଳବର୍ଣ୍ଣ । ବର୍ତ୍ତମାନ ପାଠକଗଣ ତୁଳନା କରି ଦେଖନ୍ତୁ ଓ ପ୍ରକୃତ ଅର୍ଥ ସ୍ଥିରକରି ନିଅନ୍ତୁ । ପ୍ରକୃତ ଅର୍ଥ ନ ବୁଝି ମନକୁ ଅର୍ଥ କଲେ କିପରି ବିଫଳ ହୁଏ, ତାହା ପଣ୍ଡିତ ମହାଶୟ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ବିଷୟରେ ୧୫୩/୧୫୪ ପୃଷ୍ଠାରେ ଯାହା ଲେଖି ଅଛନ୍ତି, ତହିଁରୁ ସ୍ପଷ୍ଟ ଜଣାଯାଏ । ନିମ୍ନରେ 'ଓଡ଼ିଆ ସାହିତ୍ୟର ଇତିହାସ'ରୁ ଅବିକଳ ତାହା ଉଦ୍ଧୃତ ହେଲା ।

"କିନ୍ତୁ ସେ (ସଦାନନ୍ଦ) ବୈଷ୍ଣବ ହୋଇ ସୁଦ୍ଧା ବଡ଼ କ୍ରୋଧୀ ଥିଲେ ଓ ବୈଷ୍ଣବମାନଙ୍କୁ ଅଶ୍ଳୀଳ ଭାଷାରେ ଗାଳି ଦେଉଥିଲେ । ଏକଥା ନିମ୍ନୋଦ୍ଧୃତ ପଦ୍ୟାଂଶରୁ ଜଣାପଡ଼େ ।

'କୁ ଗୀର୍ବାଣ କୁଳ କଞ୍ଜ ଆଦିତ୍ୟ । କୋପୀ କବିସୂର୍ଯ୍ୟ ବ୍ରହ୍ମା କଥିତ ।' ଉଦ୍ଧୃତ ପଦ୍ୟାଂଶର ପ୍ରଥମ ଚରଣରୁ ଏକଥା ମଧ୍ୟ ଅନୁମାନ କରାଯାଇପାରେ ଯେ, ସେ ଅଶ୍ଳୀଳ କବିତା ଲେଖିବାରୁ ବୈଷ୍ଣବ ସମାଜତ ତାହାଙ୍କୁ ଘୃଣା କରୁଥିଲେ ।" ଏଠାରେ ପଣ୍ଡିତ ମହାଶୟ ବୋଧହୁଏ - 'କୁ ଗୀର୍ବାଣ -କୁଳକଞ୍ଜ ଆଦିତ୍ୟ' ପଦକୁ ଅର୍ଥ କରିଅଛନ୍ତି ଯେ କୁତ୍ସିତ ବାକ୍ୟବାଣ ସମୂହ ହେଲା ପଦ୍ମ, ତହିଁରେ ସେ ସୂର୍ଯ୍ୟରୂପ କୋପୀ ଅର୍ଥାତ୍ ରାଗୀ । ଏପରି ଅର୍ଥ କରିବାକୁ ହେଲେ ଆଉ କବିମାନଙ୍କର କିଛି ଇୟତ୍ତା ରହିବ ନାହିଁ । ଆମ୍ଭେମାନେ ଇଚ୍ଛା ଅନୁସାରେ ସେମାନଙ୍କ ରୀତିନୀତି ଚରିତ୍ର ଗଢ଼ି ଥୋଇ ଦେବୁ । ଏହିପରି ସୂକ୍ଷ୍ମ ଅର୍ଥପାଇଁ ପଣ୍ଡିତ ମହାଶୟଙ୍କୁ ପ୍ରଶଂସା ନକରି ରହିହେବ ନାହିଁ । ସେ ଯାହାହେଉ, ଏହି ପଦଟିର ସାଧାରଣ ଅର୍ଥ ହେଉଛି - କୁ - ପୃଥିବୀ, ଗୀର୍ବାଣ - ଦେବତା (ବ୍ରାହ୍ମଣମାନଙ୍କୁ ପୃଥିବୀର ଦେବତା କହନ୍ତି, ଯଥା ଭୂସୁର) । ସଦାନନ୍ଦ ଜାତିରେ ବ୍ରାହ୍ମଣ ଥିଲେ । ତେଣୁ କହିଅଛନ୍ତି - ବ୍ରାହ୍ମଣକୁଳ ହେଲା ପଦ୍ମ, ତହିଁର ପ୍ରକାଶ ବିଷୟରେ ସୂର୍ଯ୍ୟପରି (କୋଽପି) କୌଣସି କବିସୂର୍ଯ୍ୟ ବ୍ରହ୍ମ କହିଲେ । ଏଠାରେ କାବ୍ୟିକ ଅକ୍ଷରରେ ଆରମ୍ଭ କରିବାରୁ ଏପରି ଲେଖି ଅଛନ୍ତି । ତେଣୁ ପ୍ରକୃତ ଅର୍ଥ ନଜାଣି ସମାଲୋଚନା କରିବାକୁ ଗଲେ ଏହିପରି ଅଳୀକ ସିଦ୍ଧାନ୍ତମାନ ସ୍ଥିର କରିବାକୁ ହୁଏ । ଫଳତଃ ନିଜର ଭ୍ରମ ଦ୍ୱାରା ସାହିତ୍ୟ ରାଜ୍ୟରେ ଭ୍ରମର ସୃଷ୍ଟି କରିବାକୁ ହୁଏ ।" (୧୩)



୧୩. ଶ୍ରୀ ବିନାୟକ ମିଶ୍ରଙ୍କ ଓଡ଼ିଆ ସାହିତ୍ୟ ଇତିହାସର ସମାଲୋଚନା - ଲେଖକ ଶ୍ରୀ କରୁଣାକର କର, ପୃ: ୫୧-୫୫ ।

# ଶିଶୁର ଭାଷା ପରିପ୍ରେକ୍ଷୀରେ ସମ୍ବଲପୁରୀ

ସହଦେବ ରଥ

ଭାଷା ପ୍ରତ୍ୟେକ ସ୍ତରର ଭାବ ପରିବ୍ୟକ୍ତି ନିମନ୍ତେ ଏକ ଅପରିହାର୍ଯ୍ୟ ମାଧ୍ୟମ । ସେ ଭାଷା ହୋଇପାରେ ଗୋପନ, ହୋଇପାରେ ସ୍ପଷ୍ଟ/ଅସ୍ପଷ୍ଟ ବା ହୋଇପାରେ ବିଭିନ୍ନ ପ୍ରକାରର ଅଙ୍ଗଭଙ୍ଗୀ । ଇତର ପ୍ରାଣୀମାନଙ୍କର ସ୍ପଷ୍ଟ ଭାବରେ ଭାଷା-ପରିବ୍ୟକ୍ତ କ୍ଷମତା ନଥିଲେ ହେଁ ସେଗୁଡ଼ିକ ପ୍ରବୃତ୍ତି ପରିଚାଳିତ ହୋଇ ବିଭିନ୍ନ ପ୍ରକାର ଧ୍ୱନି ମାଧ୍ୟମରେ ତଥା ସ୍ୱଅଙ୍ଗ ସଂଚାଳନ ଦ୍ୱାରା ନିଜ ନିଜର ଭାବକୁ ଅନ୍ୟମାନଙ୍କ ନିକଟରେ ବ୍ୟକ୍ତ କରିଥାନ୍ତି । ଅନ୍ୟ ଦିଗରେ ମଣିଷ ଏ ନିୟମର ଏକ ବ୍ୟତିକ୍ରମ । ସେ ନିୟମକୁ ସଂପୂର୍ଣ୍ଣ ଭାବରେ ଉପେକ୍ଷା ନକରି ସ୍ପଷ୍ଟ ଭାବରେ ଧ୍ୱନ୍ୟାତ୍ମକ ଶବ୍ଦର ପରିପ୍ରକାଶ ଘଟାଇ ସ୍ୱଭାବକୁ ଅନ୍ୟମାନଙ୍କ ନିକଟରେ ବ୍ୟକ୍ତ କରିଥାଏ । ଏଣୁ, ସଂକ୍ଷେପରେ କହିବାକୁ ଗଲେ ମନୁଷ୍ୟ ମାନଙ୍କ ଦ୍ୱାରା ଉଚ୍ଚାରିତ ଅର୍ଥବହ ବହୁଜନ ବୁଦ୍ଧ ଧ୍ୱନି ସମଷ୍ଟି ହିଁ ଭାଷା । (୧) ମାତ୍ର ଶିଶୁ ଭାଷା ଅନୁଧ୍ୟାନ ଓ ଅଧ୍ୟୟନ କ୍ଷେତ୍ରରେ ଏ ଧରଣର ପାରିଭାଷିକ ସଂଜ୍ଞାକୁ ସଂପୂର୍ଣ୍ଣ ଭାବରେ ଗ୍ରହଣ କରାଯାଇ ନପାରେ । କାରଣ, ଶିଶୁ ଭାଷା ପ୍ରୟୋଗ କରିବାକୁ ସଜ୍ଞାନ ଚେଷ୍ଟା କରେ ନାହିଁ । ତାର ଅବଚେତନ ମନ ଭିତରେ ଭାଷାର ବୀଜ ଅଙ୍କୁରିତ ହୁଏ । ଶିଶୁ ତାକୁ ବିଭିନ୍ନ ଅଙ୍ଗଭଙ୍ଗୀ ଓ ଅଙ୍ଗବିକାର ମାଧ୍ୟମରେ ପ୍ରକାଶ କରେ । (୨) ଶିଶୁ ଶୈଶବ ଅବସ୍ଥାରେ କେତେଗୋଟି ନିର୍ଦ୍ଦିଷ୍ଟ ସୋପାନ ଅତିକ୍ରମ କରି ସାରିବା ପରେ ପ୍ରଥମରେ ଅସ୍ପଷ୍ଟ ଓ ପରେ ସାଧାରଣ ଭାବରେ ସ୍ପଷ୍ଟ ଧ୍ୱନି/ଶବ୍ଦ ଉଚ୍ଚାରଣ କରି ମନଶୀଳ ଭାଷାର ପରିପ୍ରକାଶ ଘଟାଇଥାଏ । ଏ ଭାଷା ଯେତିକି ପରିମାଣରେ ଶ୍ରୁତି-ସୁଖକର, ସେତିକି ପରିମାଣରେ ଆହ୍ଲାଦ ଦାୟକ । ପୁଣି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଭାଷା ଆଉ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଭାଷା ସହ ଯେପରି ସାମ୍ୟ ପ୍ରତିଷ୍ଠା କରିପାରେ ନାହିଁ, ସେହିପରି ଭୌଗୋଳିକ ପରିବେଶର ପ୍ରଭାବ ହେତୁ ଗୋଟିଏ ଅଞ୍ଚଳର ଶିଶୁଭାଷା ଆଉ ଏକ ଅଞ୍ଚଳର ଶିଶୁଭାଷା ସହ ସମତା ରକ୍ଷା କରିପାରେ

---

୧. ସୁକୁମାର ସେନ - ଭାଷାର ଇତିବୃତ୍ତି ପୃ. ୨

୨. ବ୍ରଜମୋହନ ମହାନ୍ତି - ଓଡ଼ିଆ ଭାଷା ବିଜ୍ଞାନ ପୃ.୧୪

ନାହିଁ । ଏଣୁ, ପ୍ରବନ୍ଧଟିର କଳେବର ବୃଦ୍ଧି ଦୃଷ୍ଟିରୁ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର (ପଶ୍ଚିମ ଓଡ଼ିଶା) ଶିଶୁ ଭାଷା ଅନୁଧାନ ଓ ଅଧ୍ୟୟନ ଏ ପ୍ରବନ୍ଧଟିର ମୁଖ୍ୟ ଉଦ୍ଦେଶ୍ୟ ।

ଯେଉଁ ଅଞ୍ଚଳର ଶିଶୁ-ଭାଷା ଅପାତତଃ ପ୍ରବନ୍ଧଟିରେ ଆଲୋଚିତ ହେବାକୁ ଯାଉଛି, ସେ ଅଞ୍ଚଳଟି ପ୍ରାଚୀନ ଦକ୍ଷିଣ କୋଶଳ ବା ଆଧୁନିକ ପଶ୍ଚିମ ଓଡ଼ିଶା । ଏ ଅଞ୍ଚଳର ଶିଶୁ-ଭାଷା ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳର ଶିଶୁ-ଭାଷା ଠାରୁ ସାମାନ୍ୟ ଭିନ୍ନ । କାରଣ, ଶିଶୁ-ଭାଷାର ମୌଳିକ ଉପାଦାନ ହେଉଛି ପିତାମାତା ତଥା ଜନସାଧାରଣଙ୍କର କଥିତ ଭାଷା । ପଶ୍ଚିମ ଓଡ଼ିଶାର କଥିତ ଭାଷା ବା ସମ୍ବଲପୁରୀ ଭାଷା ମୌର୍ଯ୍ୟ ଯୁଗରୁ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀ ମଧ୍ୟରେ ସଂସ୍କୃତ, ପ୍ରାକୃତ ଓ ବିଭାଷାର ପରସ୍ପର ମିଶ୍ରଣ ଓ ସଂଘର୍ଷ ଦ୍ୱାରା ସୃଷ୍ଟି ହୋଇଅଛି । (୩) ଉଣାଅଧିକେ ସହସ୍ରାଧିକ ବର୍ଷର ଭାଷା ସଂଘର୍ଷ ଓ ତତ୍‌ଜନିତ ପ୍ରତିକ୍ରିୟାର ପ୍ରଭାବ ହେତୁ ଅଧୁନାତନ ସମ୍ବଲପୁରୀ ଭାଷାର ଉଦ୍‌ଭବ ଘଟିଛି ଏବଂ ଏହା ନିଶ୍ଚିତ ଭାବରେ ଜନସାଧାରଣଙ୍କ କଥିତ ଭାଷାରୂପେ ପରିଗୃହୀତ ହୋଇ ଆସିଅଛି । ଯେହେତୁ ଏହି କଥିତ ଭାଷାରେ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ ଏଣୁ ପଶ୍ଚିମ ଓଡ଼ିଶାର ଶିଶୁ-ଭାଷା ଅନ୍ୟାନ୍ୟ ଅଞ୍ଚଳର ଶିଶୁ-ଭାଷା ଅପେକ୍ଷା ସ୍ୱତନ୍ତ୍ର ଏକଥା ସ୍ୱତଃ ପ୍ରତିପାଦିତ ।

ମଣିଷ ଜୀବନର ପ୍ରତ୍ୟେକ ସୋପାନ, ତାର ସନ୍ନିକଟବର୍ତ୍ତୀ ଅନ୍ୟ ସୋପାନ ଠାରୁ ସଂପୂର୍ଣ୍ଣ ଭାବରେ ଭିନ୍ନ ଏବଂ ସେଗୁଡ଼ିକ କେତେ ଗୁଡ଼ିଏ ନିର୍ଦ୍ଦିଷ୍ଟ ପ୍ରକ୍ରିୟା/ ଲକ୍ଷଣ ଦ୍ୱାରା ନିଜ ନିଜର ରୂପ ପରିପ୍ରକାଶ ଘଟାଇଥାନ୍ତି । ଶୈଶବ ଅବସ୍ଥାରେ ପରିସୀମା ପର୍ଯ୍ୟାଲୋଚନା କ୍ଷେତ୍ରରେ ଏକଥାକୁ ଉପେକ୍ଷା କରାଯାଇ ନପାରେ । ପ୍ରାଚ୍ୟ ପରମ୍ପରାର ଅନୁଗାମୀ ମନିଷୀମାନଙ୍କ ମତରେ ଶିଶୁର ସମୟ-ସୀମା ଅନିର୍ଦ୍ଦିଷ୍ଟ ଓ ଅନିଶ୍ଚିତ ହେଲେ ମଧ୍ୟ ସାଧାରଣ ଭାବରେ ସେମାନେ ଜନ୍ମଠାରୁ ଆଠବର୍ଷ (ମତାନ୍ତର ଷୋହଳବର୍ଷ) ବୟସ ମଧ୍ୟରେ ଶିଶୁକୁ ପରିସୀମିତ କରିଥିବାର ଜଣାଯାଏ । (୪) ମାତ୍ର ଶିଶୁ-ଭାଷା ଅନୁଧାନ ଓ ଅଧ୍ୟୟନ କ୍ଷେତ୍ରରେ ଶୈଶବ ଅବସ୍ଥାକୁ ଶିଶୁର ଜନ୍ମଠାରୁ

---

୩. ୰ ଶିବପ୍ରସାଦ ଦାଶ - ସମ୍ବଲପୁର ଇତିହାସ, ପୃ. ୩୮୯

୪. ପୂର୍ଣ୍ଣଚନ୍ଦ୍ର ଭାଷାକୋଷ - ପୃ ୭୭୦୬ । ଶିଶୁ - (ଶିଶ୍ ଧାତୁ - ଗମନ କରିବା + କର୍ତ୍ତୃ 'ଉ')

୧. ଜୀବଶାବକ - ଜନ୍ତୁଙ୍କର ଛୁଆ, The young of animal ବ୍ରହ୍ମପୁରାଣ ଓ ମନୁସଂହିତା ମତରେ ଜନ୍ମଠାରୁ ୮ ବର୍ଷ ବୟସ୍କ ବାଳକକୁ ଶିଶୁ ବୋଲାଯାଏ । ୨. ଆଠବର୍ଷରୁ (ମତାନ୍ତରରେ ୧୬) ନିମ୍ନ ବୟସ୍କ ବାଳକ/ବାଳିକା Child below 8 years ୩. ଦୁଧଖିଆ ପିଲା, ଯାହାର ଅନ୍ନପ୍ରାସନ୍ନ ହୋଇ ନଥାଏ । ୪. କୁମାର, କାର୍ତ୍ତିକେୟ, ୫. ଡିମ୍ବ,ଅଣ୍ଡା

ଦୁଇବର୍ଷ ମଧ୍ୟରେ ସୀମିତ ରଖି ଆଲୋଚନାର ପରିସରକୁ ସଂକୀର୍ଣ୍ଣ କରାଯାଇପାରେ । ଦୁଇବର୍ଷ ପରେ ଶିଶୁ ସାଧାରଣତଃ ସ୍ପଷ୍ଟଭାବରେ ଶବ୍ଦ ଉଚ୍ଚାରଣ କରି ଆପଣାର ଭାବପ୍ରକାଶ ନିମିତ୍ତ ସମର୍ଥ ହୋଇ ପାରିଥାଏ । ପୁଣି, ଅନ୍ୟ ଦିଗରୁ ବିଚାର କଲେ, ଦୁଇବର୍ଷ ପରେ ଶିଶୁଠାରୁ ଗେହ୍ଲାଲିଆ ମଜାକଥା ପୂର୍ବବତ୍ ଆଶା କରାଯାଇ ନପାରେ । ଏଣୁ, ଦୁଇବର୍ଷ ସମୟ ସୀମା ମଧ୍ୟରେ ଆବଦ୍ଧ ହୋଇ ରହିଥିବା ଶିଶୁର ବିଭିନ୍ନ ସମୟ ଓ ତତ୍କାଳିନ ଭାଷାବିକାଶ ତଥା ବିଚାରାଭିବ୍ୟକ୍ତି ଏ ସ୍ଥଳରେ ଆଲୋଚନା କଲେ ସୁସଂଗତ ବୋଧ ହେବ ।

ଗବେଷଣାରୁ ଜଣାଯାଏ ଯେ ଶୈଶବାବସ୍ଥାର ପ୍ରଥମ ଆଠମାସ ପର୍ଯ୍ୟନ୍ତ ଶିଶୁ ସ୍ପଷ୍ଟ ଭାବରେ ଭାଷା ଅଭିବ୍ୟକ୍ତି ନିମିତ୍ତ ସମର୍ଥ ହୋଇପାରେ ନାହିଁ । ଏଣୁ, କେତେଗୁଡ଼ିଏ ପ୍ରାକୃତିକ ମାଧ୍ୟମ ହିଁ ତା'ର ମନୋଭାବକୁ ଏ ସମୟରେ ବ୍ୟକ୍ତ କରିବାରେ ସହାୟତା କରିଥାଏ । ମଧ୍ୟ ମାଧ୍ୟମ ଗୁଡ଼ିକୁ ଭାଷା ଅଭିବ୍ୟକ୍ତିର ପୂର୍ବାବସ୍ଥା ବା Prespeech Forms ବୋଲି କୁହାଯାଇ ପାରେ ପ୍ରାକୃତିକ ମାଧ୍ୟମ ମାନଙ୍କ ମଧ୍ୟରେ କ୍ରନ୍ଦନ (Crying) ଅସ୍ପଷ୍ଟ ଭାଷା (Babbling) ଏବଂ ବିଭିନ୍ନ ପ୍ରକାର ଅଙ୍ଗଭଙ୍ଗୀ·(Gesturing) ଅନ୍ୟତମ । ଶୈଶବାବସ୍ଥାର ପ୍ରଥମ ତିନିମାସ ପର୍ଯ୍ୟନ୍ତ କେବଳ କ୍ରନ୍ଦନ ମାଧ୍ୟମରେ ଶିଶୁ ଆପଣାର ଭାବାଭିବ୍ୟକ୍ତି ଘଟାଇଥାଏ । ସେଇଥିପାଇଁ ମନୋବୈଜ୍ଞାନିକ Elizabeth B. Hurlock କହନ୍ତି – "Before the baby is three months old, the baby has learned that crying is a sure method of gaining attention." (୫) ତଦନୁରୂପ ସଂସ୍କୃତରେ ମଧ୍ୟ କୁହାଯାଇଛି – "ବାଳାନାଂ ରୋଦନ ବଳମ୍" । ଏଣୁ ଶିଶୁ ଭାଷାର ପ୍ରଥମ ପରିପ୍ରକାଶ ସଂଘଟିତ ହୁଏ ଶିଶୁର କ୍ରନ୍ଦନ ମଧ୍ୟରେ । ଶିଶୁର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତା'ର ସ୍ୱରଯନ୍ତ୍ରୟ ଓ ଶରୀରର ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗର ମଧ୍ୟ ଅଭିବୃଦ୍ଧି ଘଟେ । ଏଣୁ ତିନିମାସ ପରେ ଶିଶୁ ଅସ୍ପଷ୍ଟ-ଭାଷା (Babbling) ପ୍ରକାଶ କରିଥାଏ ଏବଂ ଆମେ ତାକୁ "ଉଗୁଁ, ଉଖୁଁ, ଘିଅ, ବାବୁର୍/ ବୁଇର୍ ପତ୍‌ରେ ଟିକେ ଦିଅ" (୬) ଇତ୍ୟାଦି ଗେହ୍ଲାଳିଆ କଥା କହି ସ୍ପଷ୍ଟ ରୂପ ଦେବାରେ ସହାୟତା କରିଥାଉଁ । ମାତ୍ର ପ୍ରକୃତରେ ଏହି ଅସ୍ପଷ୍ଟ ଭାଷାର ଏହା ହେଉଛି ଏକ କାଳ୍ପନିକ ଚିନ୍ତାଧାରା । କାରଣ, ଶିଶୁପାଇଁ ବାସ୍ତବତା ଓ ତାର କଳ୍ପନା ମଧ୍ୟରେ ଆଦୌ ବ୍ୟବଧାନ ନାହିଁ କହିଲେ ଚଳେ । (୭) ମୋଟାମୋଟି ଭାବରେ ଏହି ଅସ୍ପଷ୍ଟ ଭାଷା ହିଁ ବାସ୍ତବ ଭାଷାର

୫. Elizabeth B. Hurlock - Developmental psychology 4th Editition page 72.

୬. ସମ୍ବଲପୁର ଜିଲ୍ଲାର ବରଗଡ଼ ଅଞ୍ଚଳରେ କଥିତ ହୁଏ । ୭. ଡ଼. ରବୀନ୍ଦ୍ରନାଥ କାନୁନ୍‌ଗୋ ଓ ଶ୍ରୀମତୀ ପ୍ରତିମା ମିଶ୍ର - ଶିଶୁ ମନର ପରିଚୟ, ପୃ. ୧୯

ମୂଳପିଣ୍ଡ । ସେଇଥିପାଇଁ ମନୋବୈଜ୍ଞାନିକ Elizabeth B. Hurlock କହନ୍ତି - Babbling begins during the record or third month of life, reaches its peak by the eighth month and then gradually gives way to real speech" (୮) ଆହୁରି ମଧ ତିନିମାସ ଠାରୁ ଆଠମାସ ସମୟ - ସୀମାରେ ପରିସୀମିତା ହୋଇଥିବା ଶିଶୁ ବିଭିନ୍ନ ପ୍ରକାର ଅଙ୍ଗଭଙ୍ଗୀ ପ୍ରକାଶ କରି ଆପଣାର ମନୋଭାବ ବ୍ୟକ୍ତ କରିଥାଏ ଏବଂ କେତେକ ଶବ୍ଦ ଉଚ୍ଚାରଣ ଶକ୍ତିର ଅଧିକାରୀ ହେବାପରେ ମଧ ଅଙ୍ଗଭଙ୍ଗୀ ମାଧମରେ ବେଳେ ବେଳେ ସ୍ୱମନୋଭାବର ପରିବ୍ୟକ୍ତ ଘଟାଇଥାନ୍ତି । ତେଣୁ ମୋଟ ଉପରେ ସମ୍ବଲପୁରୀ ଶିଶୁ-ଭାଷାର ଅନୁଧାନ ଓ ଅଧୟନ କ୍ଷେତ୍ରରେ କ୍ରନ୍ଦନ, ଅସ୍ପଷ୍ଟ ଭାଷା ପ୍ରୟୋଗ ଏବଂ ଅଙ୍ଗଭଙ୍ଗୀ ପ୍ରୟୋଗର ଉପଯୋଗିତା ଯଥେଷ୍ଟ ବେଶୀ, କଥା ଅସ୍ୱୀକାର କରାଯାଇ ନପାରେ ।

ଶିଶୁ ଆଠମାସ ଠାରୁ ଦଶମାସ ସମୟ-ସୀମା ମଧରେ ପଦାର୍ପଣ କଲେ କ୍ରମେ କ୍ରମେ ସ୍ପଷ୍ଟ ଶବ୍ଦ ଉଚ୍ଚାରଣକ୍ଷମ ହୋଇ ପାରିଥାଏ ଏବଂ ଏହି ସମୟ ସୀମା ମଧରେ ସେ ବହୁ କ୍ଷେତ୍ରରେ ମାତୃ-ଅର୍ଥ ବୋଧକ ଗୋଟିଏ ଶବ୍ଦ ଉଚ୍ଚାରଣ କରିପାରିବାର ଶକ୍ତିଲାଭ କରିଥାଏ । ତଦନୁରୂପ ବର୍ଷେ ସମୟ-ସୀମା ମଧରେ ଶତାଧିକ ଶବ୍ଦ ଉଚ୍ଚାରଣ କ୍ଷମତା ଲାଭ କରିଥାଏ । ଗବେଷକ Smith M.E. ଙ୍କ ଦ୍ୱାରା ପ୍ରଦତ୍ତ ତାଲିକା ମଧ ଏ ମତର ସଂପୂର୍ଣ୍ଣ ସପକ୍ଷରେ (୯) ଏଣୁ, ଦୁଇବର୍ଷ ସମୟ-ସୀମା ମଧରେ ଉପନୀତ ହୋଇଥିବା ଶିଶୁ ବୟସର ବିଭିନ୍ନ ସୋପାନରେ କ'ଣ କ'ଣ ଶବ୍ଦ ଉଚ୍ଚାରଣ କରୁଛି ତାହା ନିମ୍ନରେ ଆଲୋଚନା କରାଗଲା ।

ଶିଶୁ ଏକବର୍ଷ ସମୟ ସୀମା ମଧରେ ଯେଉଁ କେତୋଟି ଶବ୍ଦ ଉଚ୍ଚାରଣ କରିଥାଏ, ସେ

୮. Elizabeth B. Hurlock - Developmental psychology of the child page 72.

୯. Paul Mussen - The Psychological Development of the child Page - 42.

| Age in years and months. | | | Average number of words |
|---|---|---|---|
| 0 | - | 8 | 0 |
| 0 | - | 10 | 1 |
| 1 | - | 0 | 3 |
| 1 | - | 3 | 19 |
| 1 | - | 6 | 22 |
| 1 | - | 9 | 118 |
| 2 | - | 0 | 272 |

ଗୁଡ଼ିକ ସାଧାରଣତଃ ଗୋଟିଏ ଶ୍ୱାସାଘାତର ଅନ୍ତର୍ଗତ । ଯଥା - ମାଁ, ବା (ବାପା), କା (କାକ, ସମ୍ବଲପୁରୀ- କୁଆ) ଇତ୍ୟାଦି । ମନସ୍ତତ୍ତ୍ୱବିଦ୍ ମାନଙ୍କ ମତରେ ଶିଶୁ 'ମା' ଶବ୍ଦଟି କେବଳ ସ୍ୱତଃପ୍ରବୃତ୍ତ ହୋଇ ଉଚ୍ଚାରଣ କରିଥାଏ ଏବଂ ଅନ୍ୟ ଶବ୍ଦ ଗୁଡ଼ିକ ପରେ ଅନ୍ୟମାନଙ୍କ ଦ୍ୱାରା ସୃଷ୍ଟି ଧ୍ୱନିର ଅନୁକରଣ ସାଧାରଣତଃ ନଅମାସ ବୟସ ପରେ ପରେ ସଂଘଟିତ ହୋଇଥାଏ । ସେଇଥିପାଇଁ ସମାଲୋଚକ Paul Mussen କହନ୍ତି - "Imitation of sounds made by others generally begins after approximately nine months. (୧୦) ଏପରିକି ଶିଶୁମାନେ ମାମା (ଆଈ ଅର୍ଥରେ) ବାବା (ଅଜା ଅର୍ଥରେ ଏବଂ କେତେକ ସ୍ଥଳରେ ବଡ଼ବାପା ଅର୍ଥରେ) ଇତ୍ୟାଦି କେତେଗୁଡ଼ିକଏ ପୁନଃଶ୍ୱାସଘାତାନ୍ତର୍ଗତ (Duplicated Syllable) ଶବ୍ଦାବଳୀ ଏହି ସମୟ ମଧ୍ୟରେ ଉଚ୍ଚାରଣ କରିଥାନ୍ତି ଏବଂ ଏହା ଧ୍ୱନି ଅନୁକରଣ ଯୋଗୁଁ ହିଁ ସମ୍ଭବ ହୋଇଥାଏ ।

ସାଧାରଣତଃ ଦ୍ୱୀତୀୟ ବର୍ଷ ସମୟ ସୀମାରେ ଉପନୀତ ହୋଇଥିବା ଶିଶୁ ବୟସର ସଙ୍ଗେ ତାଳଦେଇ ବହୁବିଧ ଶବ୍ଦ ପ୍ରକାଶ କରି ପାରୁଥାଏ । ଏହି ଶବ୍ଦ ଗୁଡ଼ିକ ଖଣ୍ଡିଆଖାବରା ରୂପ ଧାରଣ କରି ଉଚ୍ଚାରିତ ହେଉଥିବା ହେତୁ ଉଚ୍ଚାରଣ ତଥା ଉଚ୍ଚାରଣଗତ ଭଙ୍ଗୀରେ ଲାଳିତ୍ୟ ପରିଲକ୍ଷିତ ହୁଏ । ଉଚ୍ଚାରିତ ଶବ୍ଦାବଳୀ ବହୁ ପରିମାଣରେ ବାସ୍ତବ ଶବ୍ଦାବଳୀର ସନ୍ନିକଟବର୍ତ୍ତୀ ଏବଂ ସମାନ ଅର୍ଥ ବୋଧକ । ନିମ୍ନରେ କେତେଗୁଡ଼ିଏ ଶବ୍ଦର ଉଚ୍ଚାରଣ ଭଙ୍ଗୀ ଏବଂ ସେ ଗୁଡ଼ିକର ବାସ୍ତବ ରୂପ ତଥା ପ୍ରୟୋଗ ପ୍ରଦର୍ଶିତ ହେଲା ।

| ଶିଶୁ କଣ୍ଠୋତ୍‌ଥିତ ଶବ୍ଦ | | ବାସ୍ତବ ରୂପ | ପ୍ରୟୋଗାତ୍ମକ ଅର୍ଥ |
|---|---|---|---|
| ବିଶେଷ୍ୟ ପଦବାଚୀ - | | | |
| ନାନା | - | ଗୀତ (ଗାଇବା ପୂର୍ବରୁ ନାନା ନାନା ବୋଲି ଲହର ଦେଇ ଗାଇବା ଆରମ୍ଭ କରାଯାଏ | ୧. ପାଠ୍ୟ<br>୨. ପାଠ୍ୟ ପୁସ୍ତକ |
| ମାମ୍ | - | ସମସ୍ତ ପ୍ରକାର ଖାଦ୍ୟ ପ୍ରଦାର୍ଥ | ୧. ଖାଦ୍ୟ |
| ମାଁ | - | ମାଆ | ୧. ମାତା |
| ବା | - | ବାଆ (ବାପା) | ୧. ପିତା |
| କା | - | କୁଆ (ସମ୍ବଲ୍‌ପୁରୀ) | ୧. କାକ |
| ପାପା | - | ସମସ୍ତ ପ୍ରକାର ପିଠା | ୧. ପିଠା, ୨. ବିସ୍କୁଟ |

| ଶିଶୁ କଣ୍ଠୋତ୍‌ଥିତ ଶବ୍ଦ | | ବାସ୍ତବ ରୂପ | ପ୍ରୟୋଗାତ୍ମକ ଅର୍ଥ |
|---|---|---|---|
| ତତ | - | ମୁତ (ସମ୍ବଲପୁରୀ) | ୧. ପରିସ୍ରା |
| ଗୁଦୁଗୁଦୁ | - | ପରିସ୍ରା କରିବା ପାଇଁ ସୂଚନାତ୍ମକ ନିର୍ଦ୍ଦେଶ | ୧. ପରିସ୍ରା କରିବା ପାଇଁ ସୂଚନାତ୍ମକ ନିର୍ଦ୍ଦେଶ |
| ଗାଗା | - | ଲୁଗା | ୧. ସମସ୍ତ ପ୍ରକାର ଶିଶୁ ଉପଯୋଗୀ ବସନ |
| ମାନି | - | ପାଣି | ୧. ସମସ୍ତ ପ୍ରକାର ଜଳ |
| ଠାଏ୍ ଠାଏ୍ | - | ମାଡ଼ (ଧ୍ୱନିଗତ ସଙ୍କେତ ବହନକାରୀ ଶବ୍ଦ। | ୧. ମାଡ଼ |
| ତାଉ | - | ନିଦ | ୧. ନିଦ |
| ତାତା | - | ତେଲ | ୧. ତେଲ |
| ଅଛୋ | - | ଉସୋ (ସମ୍ବଲପୁରୀ) | ୧. ଔଷଧ |
| ଆପ୍‌ଅ | - | ସାପ | ୧. ସମସ୍ତ ପ୍ରକାର ସରୀସୃପ |
| ହାଁମା | - | ଗାଇମାନଙ୍କର ଧ୍ୱନି | ୧. ଗାଇ, ୨. ବଳଦ, ୩. ବାଛୁରି |
| ମାଉ (ମାଓ) | - | ମ୍ୟାଉଁ (ବିରାଡିର ଧ୍ୱନି) | ୧. ବିରାଡି |
| କକୋ | - | କୁକୁର୍ | ୧. କୁକୁର |
| ଆପା | - | ଛାପା (ସମ୍ବଲପୁରୀ) | ୧. ଚିତ୍ର |
| ଜେଜେ | - | ଜୁହାର୍ (ସମ୍ବଲପୁରୀ) | ୧. ନମସ୍କାର |
| ଅଲୋଓଲୋ | - | ପୂଜା ସମୟରେ ଦିଆଯାଉଥିବା ହୁଳହୁଳି | ୧. ପୂଜା |
| ଜିଜି | - | ଝୁରି (ସମ୍ବଲପୁରୀ) | ୧. ମାଛ |
| ଗାଗ | - | ଶାଗ | ୧. ଶାଗ |
| ହାଆ | - | ଲଙ୍କାମରିଚର ଗୁଣ | ୧. ଲଙ୍କାମରିଚ |
| ଚାଁତି | - | ଚାଁଟି (ସମ୍ବଲପୁରୀ) | ୧. ପିମ୍ପୁଡ଼ି |
| ଦାଇ | - | ଦାଏଲ୍ (ସମ୍ବଲପୁରୀ) | ୧. ଡାଲି |
| ଭାତ୍ | - | ଭାଆତ୍ (ସମ୍ବଲପୁରୀ) | ୧. ଭାତ |

| ଶିଶୁ କଣ୍ଠୋତ୍‌ଥିତ ଶବ୍ଦ | | ବାସ୍ତବ ରୂପ | ପ୍ରୟୋଗାତ୍ମକ ଅର୍ଥ |
|---|---|---|---|
| ଟକ୍‌ଲି | - | ତର୍‌କାରୀ (ସମ୍ବଲପୁରୀ) | ୧. ତର୍କାରୀ |
| ଲଛ୍‌ଗୁଲା | - | ରସ୍‌ଗୁଲା (ସମ୍ବଲପୁରୀ) | ୧. ରସଗୋଲା |
| ବୁ | - | ବୁ (ସମ୍ବଲପୁରୀ) | ୧. ମାଆକ୍ଷୀର |
| ଘରା | - | ଘୁଡ଼ା (ସମ୍ବଲପୁରୀ) | ୧. ଘୋଡା |
| ଆତି | - | ହାତୀ | ୧. ହାତୀ |
| ବାବୁ | - | ବାବୁ (ସମ୍ବଲପୁରୀ) | ୧. ପୁଅପିଲା |
| ବି | - | ବୁଇ (ସମ୍ବଲପୁରୀ) | ୧. ଝିଅପିଲା |
| ମୁନି/ମିନି | - | ମୁଁର୍‌ହି (ସମ୍ବଲପୁରୀ) | ୧. ମୁଡି |
| ନାନି | - | ନାନୀ (ସମ୍ବଲପୁରୀ) | ୧. ବଡ଼ ଭଉଣୀ |
| ଦା/ଦାଦା | - | ଦାଦା (ସମ୍ବଲପୁରୀ) | ୧. ବଡ଼ଭାଇ |
| ପିଉଛା | - | ପ୍ୟୁସା (ସମ୍ବଲପୁରୀ) | ୧. ପିଉସା |
| ମଉଛା | - | ମୌସା (ସମ୍ବଲପୁରୀ) | ୧. ମଉସା |
| ମାପୁଲୁ | - | ମାହାପୁରୁ (ସମ୍ବଲପୁରୀ) | ୧. ମହାପ୍ରଭୁ |
| ଗୁଁଗୁପଁପ | - | ମୋଟର ଗାଡ଼ିର ଶବ୍ଦ | ୧. ମଟରଗାଡ଼ି |
| ବୁର୍‌ଆ | - | ବୁଢ଼ା | ୧. ବୁଢ଼ା |
| ଦେ | - | ଦେବାପାଇଁ ଅନୁରୋଧ | ୧. ମାଗିବା |
| ଯା | - | ଯିବାପାଇଁ ଅନୁରୋଧ | ୧. ତଡ଼ିବା |
| ହାବୁ | - | ଗାଧୋଇବା | ୧. ଗାଧୋଇବା |
| ବୁଲ୍‌ବୁଲ୍ | - | ବୁଲିଯିବା | ୧. ଭ୍ରମଣ କରିବା |
| ଅଟ୍ | - | ବଟ୍ (ସମ୍ବଲପୁରୀ) | ୧. ତାଡିବା/ଉତ୍ତ୍ୟକ୍ତ |
| ପାଇ | - | ପାଇହେବା (ସମ୍ବଲପୁରୀ) | ୧. କାଖ କରିବା |
| | | | ୧. କାଖ ହେବା |

ସର୍ବନାମ ପଦବାଚୀ :-

| | | | |
|---|---|---|---|
| ଅବୁ | - | ସବୁ (ନିର୍ଣ୍ଣାୟକ ସର୍ବନାମ) | ୧. ସମସ୍ତ |
| ଏ ଟା | - | ଏଟା (ନିର୍ଦ୍ଦେଶକ ସର୍ବନାମ) | ୧. ଏହା |
| ମୋ ଟା | - | ମୋର୍‌ଟା (ବିଭକ୍ତିଯୁକ୍ତ ବ୍ୟକ୍ତି ବାଚକ ସର୍ବନାମ | ୧. ମୋର |

| ଶିଶୁ କଣ୍ଠୋତ୍‌ଥିତ ଶବ୍ଦ | | ବାସ୍ତବ ରୂପ | ପ୍ରୟୋଗାତ୍ମକ ଅର୍ଥ |
|---|---|---|---|
| ଅବ୍ୟୟ ପଦବାଚୀ :- | | | |
| ନାଁ ଉଁ | - | ନାଁଇଁ (ସମ୍ବଲପୁରୀ ବାରଣାର୍ଥକ ଅବ୍ୟୟ | ୧. ନାହିଁ |
| ନାଁଏନ | - | ନାହିଁ (ବାରଣାର୍ଥକ ଅବ୍ୟୟ) | ୧. ଅଦୃଶ୍ୟ |
| ପୁଅ | - | ଏ ପୁଅ (ସମ୍ବୋଧନ ସୂଚକ ଅବ୍ୟୟ) | ୧. ହେ ପୁଅ |
| ଅଃ | - | ବିକାର ଜନିତ କଣ୍ଠ ନିସୃତ ଧ୍ୱନି (ଭାବାବାଚକ ଅବ୍ୟୟ) | ୧. ଘୃଣିତ<br>୧. ଘୃଣ୍ୟ |
| ଉଃ | - | ଘାଆ ଇତ୍ୟାଦି କ୍ଷତସ୍ଥଳୀ ଦର୍ଶନରେ କଣ୍ଠ ନିସୃତ ଧ୍ୱନି, (ଭାବାବାଚକ ଅବ୍ୟୟ) | ୧. ଭୟସଂଚାରୀ ଧ୍ୱନି |
| ଜାଏଁଲେ | - | ଝାଁଏରେ (ସମ୍ବୋଧନ ସୂଚକ ଅବ୍ୟୟ) | ୧. ଲୁକ୍‌କାୟିତ ଅବସ୍ଥାରେ ଉଙ୍କିମାରି ଉଚ୍ଚାରଣ କରିବା ଶବ୍ଦ |
| କାଁ | - | କାଏଁ (ପ୍ରଶ୍ନବାଚକ ଅବ୍ୟୟ) | ୧. କ'ଣ |

ଏହିପରି ଅନୁଧାନ କଲେ ଶତାଧିକ ଶବ୍ଦ ଶିଶୁମାନଙ୍କ ଦ୍ୱାରା ଉଚ୍ଚାରିତ ହେଉଥିବାର ଲକ୍ଷ କରାଯାଇ ପାରିବ। କେବଳ ଯେ ଅନୁକରଣ ପ୍ରକ୍ରିୟା ଅବଲମ୍ବନ କରି ଏ ସମସ୍ତ ଶବ୍ଦାବଳୀ ଶିଶୁମାନଙ୍କ ଦ୍ୱାରା ଉଚ୍ଚାରିତ ହୁଏ। ତାହା ନୁହେଁ, ଶିଶୁମାନେ ଏହି ଶବ୍ଦାବଳୀର ଭାବକୁ ମଧ୍ୟ ହୃଦୟଙ୍ଗମ କରି ପାରିଥାନ୍ତି। ଏଣୁ, ଏହି ଶବ୍ଦାବଳୀ ଉପରେ ଶିଶୁମାନଙ୍କର ପୁରାପୁରୀ ଦଖଲ ରହିଥାଏ। ଦୁଇ ବର୍ଷର ସମୟ ସୀମା ମଧ୍ୟରେ ଶିଶୁ ଯେତେ ଗୁଡ଼ିଏ ଶବ୍ଦର ଅଧିକାରୀ ହେବାର ସୁଯୋଗ ପାଇଥାଏ ସେ ମଧ୍ୟରୁ ସାଧାରଣତଃ ଶତକଡା ଅଶୀ ଭାଗ ଶବ୍ଦ ବିଶେଷ୍ୟ ପଦବାଚୀ ପାଞ୍ଚଭାଗ ଶବ୍ଦ ସର୍ବନାମ ପଦବାଚୀ ଏବଂ ଦଶଭାଗ ଅବ୍ୟୟ ପଦବାଚୀ ଶବ୍ଦ ରୂପରେ ଅନୁମିତ ହୁଏ। ଉଚ୍ଚାରିତ ଶବ୍ଦାବଳୀ ମଧ୍ୟରେ ବିଶେଷଣ ପଦବାଚୀ ଶବ୍ଦ ପ୍ରାୟ ପ୍ରକାଶ ପାଉଥିବାର ଜଣାଯାଏ ନାହିଁ। ପୁଣି ବେଳେ ବେଳେ ଶିଶୁ ଏପରି ଶବ୍ଦ ଉଚ୍ଚାରଣ କରେ ଯେ ତାହା ସ୍ପଷ୍ଟ ହେଲେ ମଧ୍ୟ ତାର କୌଣସି ଅର୍ଥ ରହିଥିଲା ପରି ଜଣାଯାଏ ନାହିଁ। ମୋଟା ମୋଟି ଭାବେ ଏ ଧରଣର ଶବ୍ଦଗୁଡ଼ିକ କୌଣସି ପଦାନ୍ତର୍ଗତ କରାଯାଇ ନପାରେ।

According to paul Mussen Two-years-Olds are typically in the

early sentence stage. (୧୧) ତଦନୁରୂପ ଅନୁଧାନ ଦ୍ୱାରା ଜଣାଯାଉଛି ଯେ ଶିଶୁ ଦୁଇବର୍ଷ ବୟସ ସୀମାରେ ପରିସୀମିତ ହୋଇଥିବା ଅବସ୍ଥାରେ କେତେ ଗୁଡିଏ ଛୋଟ ଛୋଟ ବାକ୍ୟ ପ୍ରକାଶ କରିଥାଏ । ସେ ବାକ୍ୟଗୁଡିକ ଗୋଟିଏ ଦୁଇଟି/ତିନୋଟି ଶବ୍ଦ ମଧ୍ୟରେ ସୀମିତ ହୋଇଥାଏ । ଯଥା -ଆ(ତୁ ଆ/ତୁମେ ଆସ ।) ଯା (ତୁ ଯା/ତୁମେ ଯାଅ) ମାମ୍ ଦେ (ଖାଦ୍ୟ ପଦାର୍ଥ ଦେ/ ଦିଅ ।), ପେମା ପିଟିଲା (ପ୍ରେମା ପିଟିଲା ବା ପ୍ରେମାନନ୍ଦ ବାଡେଇଲା ।), ହା ଦେ (ତା ଦେ/ ଦିଅ ।), ନାଇଁ-ଦେଲା (ଦେଲା ନାହିଁ ।), କାଁ କଲ ଛୁ (କ'ଣ କରୁଛୁ/କରୁଛୁ ।), ଆଉଲ୍ ଗୁଟେ ଦେ (ଆଉ ଗୋଟାଏ ଦେ/ଦିଅ ।), ନାନି ତାଉ (ନାନି ଶୋଇବା ।) ଇତ୍ୟାଦି । ବାକ୍ୟ ଗୁଡିକ ସଂପୂର୍ଣ୍ଣ ଭାବରେ ସରଳ ଏବଂ ବାକ୍ୟାନ୍ତର୍ଗତ ପଦାବଳୀ ପ୍ରଥମା ଓ ଦ୍ୱିତୀୟା ଵିଭକ୍ତି ବ୍ୟତିରେକ ଅନ୍ୟ କୌଣସି ପ୍ରକାର ବିଭକ୍ତ୍ୟାଶ୍ରିତ ନୁହନ୍ତି । ଶିଶୁ ବେଳେ ବେଳେ ସଂବୋଧନ କଲାପରି ଅନେକ ଶବ୍ଦ/ଶବ୍ଦାବଳୀ ଉଚ୍ଚାରଣ କରେ । ଯଥା-ଏ ବା( ଏ ବାପା), ଏ ମାଁ( ଏ ମାଆ), ଏ ବାବୁ (ନିର୍ଦ୍ଦିଷ୍ଟ ଭାବରେ ଏକ ପୁଅକୁ ପିଲାକୁ ଡାକିବା ।, ଏ ବି (ନିର୍ଦ୍ଦିଷ୍ଟ ଭାବରେ ଏକ ଝିଅ ପିଲାକୁ ଡାକିବା ।) ଇତ୍ୟାଦି ମାତ୍ର ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ ଶିଶୁ ଏହି ଶବ୍ଦାବଳୀ ମାଧ୍ୟମରେ ତା ମନର ଭାବଟିକୁ ସଂପୂର୍ଣ୍ଣଭାବରେ ବ୍ୟକ୍ତ କରିପାରେ ନାହିଁ । ଏଣୁ ଏ ଧରଣର ସଂବୋଧନାତ୍ମକ ଶବ୍ଦାବଳୀକୁ ଆମେ ବାକ୍ୟାଂଶ ମଧ୍ୟରେ ଗର୍ଭିତ କରାଇବା ଯଥାର୍ଥ ହେବ ।

ସମ୍ବଲପୁରୀ ଶିଶୁ ଭାଷା ଅନୁଧାନ ଓ ଅଧ୍ୟୟନ କ୍ଷେତ୍ରରେ ଶିଶୁ କଣ୍ଠୋତ୍‌ଥିତ ଭାଷାର ଯେପରି ମୂଲ୍ୟାଙ୍କନ କରାଗଲା, ସେହିପରି ଶିଶୁ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଉଥିବା ଭାଷାର ମଧ୍ୟ ଏ କ୍ଷେତ୍ରରେ ପର୍ଯ୍ୟାଲୋଚନା ଆବଶ୍ୟକ । ଶିଶୁ ଯେତେବେଳେ ଏନ୍ତୁଡ଼ିଶାଳରେ ଜନ୍ମର ଷଷ୍ଠ ଦିବସ ପର୍ଯ୍ୟନ୍ତ ଅତିବାହିତ କରୁଥାଏ, ସେହି ସମୟରେ (ଏପରିକି ତାର ପରେ ମଧ୍ୟ) ଲାଳନକାରୀ ବା ବୟସ୍କ ହିତାକାଂକ୍ଷୀମାନେ ଷଷ୍ଠୀଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ତଥା ଷଷ୍ଠୀଦେବୀଙ୍କର କୁ ଦୃଷ୍ଟି ଏଡ଼ାଇବା ପାଇଁ କହିଥାନ୍ତି - "କାଠି ଭାଙ୍ଗୁ, ପତର୍ ତୁଲୁଁ, ଷଷ୍ଠୀମାଁକେ ଜେଜେ କରୁଁ । (୧୨) ନିଶ୍ଚିତ ଭାବରେ ଏହା ଭୟ ଭକ୍ତି-ଜନିତ ଏକ ପ୍ରତିକ୍ରିୟାରୁ ଉଦ୍‌ଭୁତ । କାରଣ, ଷଷ୍ଠୀଦେବୀ ହେଉଛନ୍ତି ଏକ ଅପଦେବତା ଦେବୀ ଏବଂ ପଶ୍ଚିମ ଓଡ଼ିଶାର ଜାଙ୍ଗଲିକ-ପରିବେଶ ମଧ୍ୟରେ ସୁଲଭ ହେଉଥିବା କାଠି, ପତ୍ର, ଦୁବ ଇତ୍ୟାଦି ସାହାଯ୍ୟରେ ଅପଦେବତାମାନଙ୍କୁ ସନ୍ତୁଷ୍ଟ କରିବା ଏ ଅଞ୍ଚଳର ଏକ ବିଧିସଂଗତ ପରମ୍ପରା । ପୁଣି, ଜନ୍ମର ଷଷ୍ଠ ଦିବସରେ ଶିଶୁକୁ ପରିଷ୍କାର ପରିଚ୍ଛନ୍ନ କରି ଯେଉଁ

୧୧. The Psychological Development of the Child - Page. 43

୧୨. ବଲାଙ୍ଗୀର ଜିଲ୍ଲାର ବିନ୍‌କା ଥାନା 'ମୁଁଡ଼େ ମହୁଲ' ଗ୍ରାମରୁ ସଂଗୃହୀତ ।

ପ୍ରକ୍ରିୟା ଦ୍ୱାରା ଶୌଚ କରାଯାଏ, ତାକୁ 'ଅଁଟ୍‌ରି ଉଠ୍‌ବା' ବୋଲି କୁହାଯାଏ । ଏହି ନାମକରଣର ପଶ୍ଚାତ୍ ଭାଗରେ ମଧ୍ୟ ଏକ ଲୋକାଚାର ଦେଖାଯାଏ । ଏନ୍ତୁଡ଼ିଶାଳରେ ଜଳୁଥିବା ଅଁଟ୍‌ରା (ନିଆଁଗଦାକୁ ପଶ୍ଚିମ ଓଡ଼ିଶାରେ ଅଁଟ୍‌ରା ବୋଲି କୁହାଯାଏ ।) କୁ ଏହି ଦିବସ ଠାରୁ ନିର୍ବାପନ କରାଯାଉଥିବା ଯୋଗୁଁ, ଏପରି ନାମକରଣ କରାଯାଇଥିବାର ମନେହୁଏ । ଶିଶୁ ବର୍ଷେ ପାଖାପାଖି ବୟସରେ ପଦାର୍ପଣ କଲେ ଚାଲିବାକୁ ଅଭ୍ୟାସ କରେ ଏବଂ ଏହି ସମୟରେ ବୟସ୍କ ହିତାକାଂକ୍ଷୀମାନେ କହିଥାନ୍ତି - "ଚାଁନ୍‌ଲି ମଡ଼ା କରଗୋ ମାଏ, ଆମର - (ନାମ) ଚାଲ୍‌ବା ପାହେ ପାହେ" । ଏହା ମୁଖ୍ୟତଃ ଶିଶୁକୁ ଉତ୍ସାହିତ କରିବା ପାଇଁ କୁହାଯାଇଥାଏ । ପ୍ରଥମତଃ ଚାନ୍‌ଲି ମଡ଼ାର ଅର୍ଥ ଛୋଟ ପାଛିଆରେ ମଣ୍ଡା । ଏଣୁ ମାଆଙ୍କୁ ପାଛିଆଏ ମଣ୍ଡା ତିଆରି କରିବାକୁ କୁହାଯାଇଛି । ଯାହା ଦ୍ୱାରାକି ପୁଅ/ଝିଅ ପାଦେ ପାଦେ ଆଗକୁ ଚାଲିବ । ଦ୍ୱିତୀୟତଃ ଚାଁନ୍‌ଲି ମଡ଼ାର ଅର୍ଥ ନୂତନ ଭାବରେ ଚାଲିବା କ୍ରିୟା ସଂପାଦନ ଜନିତ ଆନନ୍ଦ ହେତୁ ତିଆରି କରାଯାଉଥିବା ମଣ୍ଡା । ଏଣୁ ମାଆଙ୍କୁ ଏହିପରି ଆନନ୍ଦ ଜନିତ ମଣ୍ଡା ତିଆରି କରି ପୁତ୍ର/କନ୍ୟାର ଚାଲିବା କ୍ରିୟାକୁ ଉତ୍ସାହିତ କରିବା ପାଇଁ କୁହାଯାଇଛି । ପୁଣି ବୟସର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଶିଶୁ ତାଳି ବା କରତାଳି ବଜାଇବାର ଆରମ୍ଭ କରେ । ଏହି ତାଳି ବଜାଇବାକୁ କ୍ରିୟାର ଅଧିକତର ଭାବରେ ଉତ୍ସାହିତ କରିବା ପାଇଁ ବୟୋଜ୍ୟେଷ୍ଠ ବ୍ୟକ୍ତିବିଶେଷ କହିଥାନ୍ତି - "ତାଲିଶର' ଘିଅ ପାପା କରି ଭାର ବର" ଅଥବା "ତାଲି, ତାଲି, ବନମାଲି" । ଶିଶୁ ଏହାର ଅର୍ଥ ହୃଦୟଙ୍ଗମ କରି ନପାରିଲେ ମଧ୍ୟ ଅଧିକତର ଭାବରେ କରତାଳି ଦେଇଥାଏ । ପୁଣି ଶିଶୁକୁ ଶୟନ ପୂର୍ବରୁ "କାଉ କାଉ ରେ କାଉ କାଉ, ଆମରି - (ନାମ) ନିଦ ତଉ ଯାଉ" କହି ଶୁଆଇ ଦେବା ଏକ ସାଧାରଣ ପ୍ରବୃତ୍ତି । ଶିଶୁ ଉକ୍ତିଟିର ସାଙ୍ଗୀତିକତାରେ ମୁଗ୍ଧ ହୋଇ ଅଜ୍ଞାୟ ଭାବରେ ଶୋଇପଡ଼େ । ଏତଦ୍‌ବ୍ୟତୀତ ଶିଶୁ ଯେତେ ଶବ୍ଦ ତଥା ବାକ୍ୟ କିମ୍ବା ବାକ୍ୟାଂଶ ଉଚ୍ଚାରଣ କରିବାପାଇଁ ସକ୍ଷମ ହୋଇ ପାରିଥାଏ, ବୟସ୍କ ବ୍ୟକ୍ତିମାନେ ସାଧାରଣତଃ ସେହି ଶବ୍ଦବାଳୀ ତଥା ବାକ୍ୟାବଳୀକୁ ସମାନୁପାତିକ ଭଙ୍ଗୀରେ ଉଚ୍ଚାରଣ କରି ପ୍ରକାଶ କରିଥାନ୍ତି । ଉଦାହରଣ ସ୍ୱରୂପ "ଆ ଲେ କା ଉ ଆଃ" "ଆ ଆ ଲେ ହାମାଗାଇ"; "ନେଏଲେ ଅଧାଲୁ ବୁର୍‌ଆ" ଇତ୍ୟାଦି ଆଲୋଚନାର ପରିସରଭୁକ୍ତ କରାଯାଇପାରେ । ଶିଶୁର ବୋଧଗମ୍ୟ ନିମିତ୍ତ ଏ ଧରଣର ସରଳ, ସହଜ ତଥା ସ ବଲୀଳ ଭାଷାର ବ୍ୟବହାର କରାଯାଇ ଥାଏ ।

ସମ୍ବଲପୁରୀ ଶିଶୁ-ଭାଷାର ପ୍ରଧାନ ବିଶେଷତ୍ୱ ହେଉଛି ତା'ର ଉଚ୍ଚାରଣ ଭଙ୍ଗୀର ସ୍ୱାତନ୍ତ୍ର୍ୟ । ଶୈଶବ ଅବସ୍ଥାରେ ଶିଶରୁ ସ୍ୱରଯନ୍ତ୍ର ସଂପୂର୍ଣ୍ଣ ଭାବରେ ବିକାଶ ଲାଭ କରି ପାରି ନ ଥାଏ । ଏଣୁ,

ଶିଶୁ ପ୍ରଥମତଃ ପ୍ରାରମ୍ଭିକ ଅବସ୍ଥାରେ କୌଣସି ପ୍ରକାର ମହାପ୍ରାଣିତ ବର୍ଣ୍ଣ ଉଚ୍ଚାରଣ କରିପାରେ ନାହିଁ । ପରେ ପରେ ସ୍ୱରଯନ୍ତ୍ରର ବିକାଶରେ ଅଭିବୃଦ୍ଧି ଦେଖାଦେଲେ ଘୁରା (ଘ ମହାପ୍ରାଣିତ), ଲଛଗୁଲା (ଛ ମହାପ୍ରାଣିତ), ଠାଏ- ଠାଏ (ଠ ମହାପ୍ରାଣିତ), ଇତ୍ୟାଦି ମହାପ୍ରାଣ ବର୍ଣ୍ଣ - ସଂଘଠିତ ଶବ୍ଦ ଉଚ୍ଚାରଣ କ୍ଷମ ହୋଇ ପାରିଥାଏ । ଦ୍ୱିତୀୟତଃ 'ର' ବର୍ଣ୍ଣ ଉଚ୍ଚାରଣ ପରିବର୍ତ୍ତେ 'ଲ' ବର୍ଣ୍ଣ ଉଚ୍ଚାରଣ ପରିଲକ୍ଷିତ ହୁଏ । ଏ ସ୍ଥଳରେ ଲକ୍ଷ୍ୟ କରାଯାଇ ପାରେ ଯେ ମୁର୍ଦ୍ଧନ୍ୟ ବର୍ଣ୍ଣ ଉଚ୍ଚାରଣ ଅପେକ୍ଷା ଦନ୍ତ୍ୟବର୍ଣ୍ଣ ଉଚ୍ଚାରଣ ଶିଶୁ ପକ୍ଷେ ସହଜ ସାଧ । ଅବଶ୍ୟ ବହୁ ବିଳମ୍ବରେ ଶିଶୁ ମୁର୍ଦ୍ଧନ୍ୟ-ବର୍ଣ୍ଣ ଉଚ୍ଚାରଣକ୍ଷମ ହୋଇ ପାରିଥାଏ । ତୃତୀୟତଃ ଶିଶୁ ପ୍ରାଥମିକ ଅବସ୍ଥାରେ ଗୋଟିଏ ଶ୍ୱାସାଘାତ ଅର୍ନ୍ତଗତ (Single Syllable) ଶବ୍ଦ ଓ ପରେ ପରେ ପୁନଃ ଶ୍ୱାସଘାତ ଅନ୍ତର୍ଗତ (Duplicate Syllable) ଶବ୍ଦ ଉଚ୍ଚାରଣ ମାଧ୍ୟମରେ ପ୍ରକାଶ କରିଥାଏ । ଚତୁର୍ଥତଃ ଶିଶୁ କୌଣସି ପ୍ରକାର ଉଷ୍ମବର୍ଣ୍ଣ ଉଚ୍ଚାରିତ-ଶବ୍ଦାବଳୀ ମଧ୍ୟରେ ପ୍ରକାଶ କରିପାରେ ନାହିଁ । ଯଥା - ସାପ-ଅପ୍ଅ ପଞ୍ଚମତଃ 'କ' ବର୍ଗ, 'ବ' ବର୍ଗ, ତଥା 'ଟ' ବର୍ଗର ପଞ୍ଚମ ବର୍ଣ୍ଣ ଶିଶୁ ଉଚ୍ଚାରଣ କରିବା ନିମିତ୍ତ ଅକ୍ଷମ ହୋଇଥିବା ହେତୁ ଉଚ୍ଚାରିତ ଶବ୍ଦାବଳୀରେ ଏ ଗୁଡ଼ିକ ଦେଖାଯାଏ ନାହିଁ । ଷଷ୍ଠତଃ ଉଚ୍ଚାରଣରେ 'ଳ' ବର୍ଣ୍ଣ ପରିବର୍ତ୍ତେ 'ଲ' ବର୍ଣ୍ଣର ଆଗମ ପରିଲକ୍ଷିତ ହୁଏ । ଏହିପରି ଉଚ୍ଚାରଣ ଭଙ୍ଗୀର ବୈଶିଷ୍ଟ୍ୟ ବିଚାର କ୍ଷେତ୍ରରେ ନାନା ପ୍ରକାରର ଭାଷାତାତ୍ତ୍ୱିକ ସ୍ୱାତନ୍ତ୍ୟ ଆଲୋଚନାର ପରିସରଭୁକ୍ତ କରାଯାଇ ପାରେ ।

ସମ୍ବଲପୁରୀ ଶିଶୁ ଭାଷାର ଅନ୍ୟ ଏକ ବିଶେଷତ୍ୱ ଏହି ଯେ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ଏ ଧରଣର ସ୍ୱାତନ୍ତ୍ୟ ବହନକାରୀ ଭାଷା ମୋଟେ ପରିଲକ୍ଷିତ ହୁଏ ନାହିଁ । ଅନ୍ୟାନ୍ୟ ଅଞ୍ଚଳରେ ଶିଶୁ ଭାଷା ଯେ ନାହିଁ, ଏକଥା କୁହାଯାଇ ପାରିବ ନାହିଁ । ମାତ୍ର ଭାଷାତାତ୍ତ୍ୱିକ ବିଚାରବୋଧ ନିମିତ୍ତ ସମ୍ବଲପୁରୀ ଶିଶୁଭାଷା ଯେ ଅନ୍ୟାନ୍ୟ ଅଞ୍ଚଳର ଶିଶୁ ଭାଷା ଅପେକ୍ଷା ଯଥେଷ୍ଟ ପରିମାଣରେ ଉପାଦେୟ ଉପାଦାନ ଯୋଗାଇ ଦେଇ ପାରିବ ଏବଂ ଏ ଦିଗରେ ଗବେଷଣାର ପଥ ଉନ୍ମୁକ୍ତ କରି ନୂତନ ପ୍ରକାରର ଜ୍ଞାନାଲୋକରେ ଓଡ଼ିଆ ସାହିତ୍ୟ ଜଗତକୁ ଆଲୋକିତ କରି ପାରିବ, ଏଥିରେ ସନ୍ଦେହ ନାହିଁ ।



# ଉପଭାଷା ଅଧ୍ୟୟନ କ୍ଷେତ୍ରରେ ପଶ୍ଚିମାଞ୍ଚଳୀୟ ଓଡ଼ିଆ ଉପଭାଷା

ପ୍ରମୋଦ କୁମାର ଦାସ

ଭାଷା ମଣିଷର ଭାବବିନିମୟର ମୌଳିକ ମାଧ୍ୟମ । ଏହା ମଣିଷର ସହଜାତ ପ୍ରବୃତ୍ତି ନୁହେଁ । ଏହା ଭାବ ଓ ଇଚ୍ଛାଦିର ଏକ ବିନିମୟ ବ୍ୟବସ୍ଥା । କିନ୍ତୁ ଆମେ ଯେତେବେଳେ କୌଣସି ଭାଷାକଥା ଭାବୁ ସେତେବେଳେ ସାଧାରଣତଃ ସେହି ଭାଷାର ପ୍ରାମାଣିକ/ମାନକ (Standard) ରୂପ କଥାକୁ ହିଁ ଚିନ୍ତା କରିଥାଉଁ । ଏହି ପ୍ରାମାଣିକ ଭାଷା ଅନ୍ତର୍ଗତ ଛୋଟ ଛୋଟ ଗୋଷ୍ଠୀ ବା ଅଞ୍ଚଳ ବିଶେଷରେ ପ୍ରଚଳିତ ଭାଷା ରୂପର ନାମ ଉପଭାଷା ବା ବିଭାଷା (dialect) । ଆଞ୍ଚଳିକ ଭାଷା ଗୁଡ଼ିକୁ ସାଧାରଣତଃ ଉପଭାଷା ବୋଲି କୁହାଯାଇଥାଏ । ଲଣ୍ଡନରେ ପ୍ରଚଳିତ ଇଂରାଜୀ ଭାଷା ସ୍କଟଲାଣ୍ଡ, ୱେଲସ ଓ କର୍ଣ୍ଣୱାଲ ପ୍ରଭୃତିରେ କଥିତ ଆଞ୍ଚଳିକ ଭାଷା ମାନଙ୍କ ଠାରୁ ଭିନ୍ନ । ଦିଲ୍ଲୀ, ଆଗ୍ରା ଓ ମିରଟ୍ ପ୍ରଭୃତି ସ୍ଥାନରେ standard ହିନ୍ଦୀଭାଷା ଅନ୍ୟାନ୍ୟ ଆଞ୍ଚଳିକ ହିନ୍ଦୀ ଯଥା ରାଜସ୍ଥାନୀ, ଅବଧୀ, ବୁନ୍ଦେଲଖଣ୍ଡୀ, ଛତିଶଗଡ଼ୀ, ମାଗଧୀ ଓ ଭୋଜପୁରି ପ୍ରଭୃତିଙ୍କ ଠାରୁ ଭିନ୍ନ । standard ବଙ୍ଗଳାଭାଷାର ବାମରୂପୀ, ବରେନ୍ଦ୍ରୀ ଓ ରାଢ଼ୀ ପରି କେତେକ ଉପଭାଷା ଅଛି । କେତେକ ଭାଷାତତ୍ତ୍ୱବିତ୍ ଇଂରାଜୀ dialect ଶବ୍ଦର ପ୍ରତିଶବ୍ଦ ରୂପେ 'ବିଭାଷା, 'ଉପଭାଷା' ଓ 'ବୋଲି' ପ୍ରଭୃତି ଶବ୍ଦକୁ ଗ୍ରହଣ କରିଅଛନ୍ତି ।

ସମୟ ଥିଲା ଯେତେବେଳେ କି ସାହିତ୍ୟରେ Standard ଭାଷା ବ୍ୟତିତ କଥିତ ଭାଷା ବା ଉପଭାଷାକୁ ଗୁରୁତ୍ୱର ସହିତ ବିଚାରକୁ ନେଉଥିଲେ । କିନ୍ତୁ ଭାଷା ବିଜ୍ଞାନର ଆଲୋଚନା କାଳରେ, ଲୋକମୁଖର ଭାଷାହିଁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥାଏ । କାରଣ ଗୋଟିଏ Standard ଭାଷାରୁ ଯେମିତି ଉପଭାଷା (dialect) ସୃଷ୍ଟି ହୁଏ ଓ ସେହିଭଳି ଗୋଟିଏ ଉପଭାଷାରୁ ଗୋଟିଏ ମାନକ standard ଭାଷା ସୃଷ୍ଟି ହୋଇଥାଏ । ଭାଷାର ପରିବର୍ତ୍ତନ ଓ ପରି ପୁଷ୍ଟନରେ ଉପଭାଷାର ଉପଯୋଗୀତାକୁ ଅସ୍ୱୀକାର କରାଯାଇ ନପାରେ । ତେଣୁ ମାକ୍ସମୁଲାର (Maxmuller)ଙ୍କ ମତରେ "Dialects are the feeders of the Language" ସେ ତାଙ୍କର Science of Language ଗ୍ରନ୍ଥରେ ଉପଭାଷା ସମ୍ପର୍କରେ ଆଲୋଚନା କରିବାକୁ ଯାଇ କହିଛନ୍ତି ଯେ,

ଆଞ୍ଚଳିକ ଭାଷା ବା ଉପଭାଷା ମାନଙ୍କରେ ଭାଷାର ଯଥାର୍ଥ ପ୍ରାଣସ୍ପନ୍ଦନ ନିହିତ ଏବଂ ଏହାର ଗବେଷଣାରେ ଆମେ ସେହି ଭାଷାର ପ୍ରକୃତ ସ୍ୱରୂପ ଜାଣିବାକୁ ପାଇଥାଉ ।

ଊନବିଂଶ ଶତାବ୍ଦୀରେ ହିଁ ବିଧିବଦ୍ଧ ଭାବେ ୟୁରୋପୀୟ ଭାଷା ବିଜ୍ଞାନୀମାନେ ଉପଭାଷା ଅଧ୍ୟୟନର ବିଜ୍ଞାନ ସମ୍ମତ ଭିତ୍ତି ସ୍ଥାପନ କଲେ । ଏହି ଶତକର ରୋମାଣ୍ଟିକ କବି ୱାଡ଼ସ୍‌ୱାର୍ଥ, ବର୍ଣ୍ଣସ୍, ହେବେଲ୍ ଇତ୍ୟାଦି ସ୍ଥାନୀୟ ଭାଷାରେ କବିତା ରଚନା କରିବା ଦ୍ୱାରା ଲୋକ ପ୍ରଚଳିତ ଭାଷାର ଆଲୋଚନାକୁ ଖୋରାକ ଯୋଗାଇଲେ ୧୮୨୧ ସାଲରେ J.A. Schmeller ପ୍ରଥମେ ବେଭେରୀୟାନ ଉପଭାଷାରେ ଏକ ବ୍ୟାକରଣ ପୁସ୍ତକ ପ୍ରଣୟନ କରି ଓ ଏହାର କିଛି ବର୍ଷପରେ ୧୮୬୬ ସାଲରେ ସିଭରସ୍‌ଙ୍କ ଉଚ୍ଚାରଣ ମୂଳକ ଧ୍ୱନିତତ୍ତ୍ୱ ଆଲୋଚନାର ପ୍ରକାଶ କାଳରୁ ଉପଭାଷାର ଅଧ୍ୟୟନ କ୍ଷେତ୍ରରେ ନୂତନ ସିଦ୍ଧାନ୍ତମାନ ସୃଷ୍ଟି ହୋଇଛି । ଊନବିଂଶ ଶତାବ୍ଦୀର ଅନ୍ୟମାରମ୍ଭରୁ ଏ ଯାବତ୍ ଭାଷାତତ୍ତ୍ୱବିତ୍‌ମାନେ ଉପଭାଷାର ବିଚାର ଆଲୋଚନାକୁ ଗୁରୁତ୍ୱପୂର୍ଣ୍ଣ ଭାବେ ଗ୍ରହଣ କରି ଆସିଛନ୍ତି ।

ଓଡ଼ିଆ ଭାଷା ମୂଳ ଇଣ୍ଡୋ-ୟୁରୋପୀୟ ଭାଷା ଗୋଷ୍ଠୀର ମୁଖ୍ୟ ଶାଖା ପ୍ରାଚୀନ ଭାରତୀୟ ଆର୍ଯ୍ୟ ଭାଷା ଅନ୍ତର୍ଗତ ଏକ ଭାଷା ବିଶେଷ । ପ୍ରାଚୀନ ଭାରତୀୟ ଆର୍ଯ୍ୟ ବିଭିନ୍ନ ଆଞ୍ଚଳିକ ପ୍ରାକୃତରୂପ ମଧ୍ୟରୁ ପୂର୍ବାଞ୍ଚଳ ମାଗଧୀ ପ୍ରାକୃତ, ଔଡ୍ରୀ ଅପଭ୍ରଂଶ ମଧ୍ୟଦେଇ ଆଜିର ଓଡ଼ିଆ ଭାଷାକୁ ବିବର୍ତ୍ତିତ ହୋଇଅଛି । ପ୍ରାଚୀନ ଭାରତୀୟ ଆର୍ଯ୍ୟ ଭାଷାରୁ ବିଭିନ୍ନ ମାର୍ଗ ଦେଇ ବିକାଶ ଲାଭ କରିବା ଫଳରେ ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷା ଗୁଡ଼ିକ ପରସ୍ପର ମଧ୍ୟରେ ସମ୍ପର୍କ ସ୍ଥାପନ କରି ବିଭିନ୍ନ ପରିବେଶରେ ବହୁ ଉପଭାଷା ସୃଷ୍ଟି କରି ଅଛନ୍ତି । ପୂର୍ବଶାଖାର ଅନ୍ୟତମ ଆଧୁନିକ ଭାରତୀୟ ଭାଷାରେ ମଧ୍ୟ ବହୁ ଉପଭାଷା (dialect) ଦୃଷ୍ଟି ପଥକୁ ଆସେ ।

୧୯୦୩ ସାଲ ମଧ୍ୟରେ ସାର ଜର୍ଜ ଗ୍ରୀୟରସନ୍ ଭାରତରେ ଯେଉଁ ଭାଷା ସର୍ବେକ୍ଷଣ ପରିଚାଳନା କରିଥିଲେ ତାହା ଏହି ଶତକର ସର୍ବବୃହତ ସର୍ଭେ ବୋଲି ଗ୍ରହଣ କରାଯାଇଛି । ଯାହାର ଫଳାଫଳ କୋଡ଼ିଏ ଖଣ୍ଡ ବିଶାଳ ପୁସ୍ତକରେ ଲିପିବଦ୍ଧ ହୋଇରହିଛି । ଭାଷା ବିଜ୍ଞାନ ଓ ଧ୍ୱନି ବିଜ୍ଞାନରେ ଅନଭିଜ୍ଞ ପ୍ରଶାସନିକ ଅଫିସରମାନଙ୍କ ଦ୍ୱାରା ସମାହିତ ହୋଇଥିବାରୁ ଜର୍ମାନ ଓ ଫରାସୀ ସର୍ବେକ୍ଷଣରେ କେଉଁ ପ୍ରକାର ଦୋଷ ଦୁର୍ବଳତା ଥିଲା ଏଥିରେ ମଧ୍ୟ ତାହା ଦେଖାଯାଇଛି, ଓଡ଼ିଆ ଭାଷା ସମ୍ପର୍କରେ ଗ୍ରୀୟରସନ୍ ଯେଉଁ ମନ୍ତବ୍ୟ ପ୍ରଦାନ କରିଥିଲେ - Oriya Language is free from didectic Variation. (Languistic survey of India - Vol. Vpt. II) ଓଡ଼ିଆ ଭାଷାରେ ଉପଭାଷାଗତ ବିଭିନ୍ନତା ନାହିଁ; ତାହା କିନ୍ତୁ

ବର୍ତ୍ତମାନ ଭ୍ରାନ୍ତ ପ୍ରମାଣିତ ହୋଇଅଛି ।

ଭୌଗୋଳିକ ଦୃଷ୍ଟିକୋଣର ଓଡ଼ିଆ ଭାଷାର ଉପକୂଳ ଅଞ୍ଚଳୀୟ, ପଶ୍ଚିମାଞ୍ଚଳୀୟ, ଏବଂ (ଦକ୍ଷିଣ ପଶ୍ଚିମାଞ୍ଚଳୀୟ) ଏଭଳି ତିନିଗୋଟି ଉପଭାଷା ବ୍ୟତିରେକ ସାମାଜିକ ଶ୍ରେଣୀ ବିଭାଗ ସୃଷ୍ଟିରୁ ବ୍ରାହ୍ମଣ, କ୍ଷତ୍ରିୟ, ଶୁଦ୍ର, ଆଦିବାସୀ ଓ ହରିଜନ ମାନଙ୍କର ଭାଷା ଅଧ୍ୟୟନ ପାଇଁ ପ୍ରଶସ୍ତ କ୍ଷେତ୍ର ବିଦ୍ୟମାନ ।

ବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରୁ ଓଡ଼ିଆ ଭାଷାର ଉପଭାଷା ମାନଙ୍କର ବିଚାର ଆଲୋଚନାର ବିକାଶ ଆମ ଦୃଷ୍ଟି ପଥକୁ ଆସିଥାଏ । ପାଶ୍ଚାତ୍ୟ ଭାଷାତତ୍ତ୍ୱବିଦ୍ ମାନଙ୍କ ସହିତ ସମତାଳରେ ଓଡ଼ିଆ ଭାଷାର ବହୁ ସ୍ୱନାମଧନ୍ୟ ଭାଷା ବିଜ୍ଞାନୀ ମାନଙ୍କର ଭୂମିକା ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ । ସେମାନେ ହେଲେ ଶ୍ରୀ ସିଦ୍ଧେଶ୍ୱର ହୋତା, ସ୍ୱର୍ଗତ ଅଧ୍ୟାପକ ଗୋଲକ ବିହାରୀ ଧଳ, ଡ଼ଃ କୁଞ୍ଜବିହାରୀ ତ୍ରିପାଠୀ, ବିଜୟ ପ୍ରସାଦ ମହାପାତ୍ର ଓ ଡ଼ଃ ଖଗେଶ୍ୱର ମହାପାତ୍ର ପ୍ରଭୃତି । ସେମାନଙ୍କ ଦାନକୁ ଅସ୍ୱୀକାର କରାଯାଇ ନପାରେ ।

ପଶ୍ଚିମାଞ୍ଚଳୀୟ ଓଡ଼ିଆ ଭାଷାର କ୍ଷେତ୍ର ଓ ଭାଷାତାତ୍ତ୍ୱିକତା ଅଧ୍ୟୟନ କ୍ଷେତ୍ରରେ ଗୁରୁତ୍ୱ :-

ପଶ୍ଚିମାଞ୍ଚଳୀୟ ଓଡ଼ିଆ ଉପଭାଷାର ଅନ୍ୟାନ୍ୟ ଉପଭାଷା ମାନଙ୍କ ମଧ୍ୟରେ ଏକ ବଳିଷ୍ଠ ଉପଭାଷା, ବିଶେଷତଃ ଏହା ଓଡ଼ିଶାର ୧୩ ଗୋଟି ଜିଲ୍ଲା ମଧ୍ୟରୁ ୬ ଗୋଟି ଜିଲ୍ଲାରେ କଥିତ ଭାଷାରୂପେ ବ୍ୟବହାର ହୁଏ । ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର, ବଉଦ, କନ୍ଧମାଳ ଓ କଳାହାଣ୍ଡୀ ଅନ୍ତର୍ଭୁକ୍ତ ଅଟେ । ମଧ୍ୟ ପ୍ରଦେଶର ରାୟପୁର ଜିଲ୍ଲାର କେତେକ ଅଂଶ ଓ ଭୂତପୂର୍ବ ଦେଶୀୟ ରାଜ୍ୟ ସାରଙ୍ଗଗଡ଼ ଓ ରାୟଗଡ଼ରେ ମଧ୍ୟ ପଶ୍ଚିମ ଓଡ଼ିଆ ଉପଭାଷା ଚଳେ ।

ଗ୍ରୀୟରସନ୍, ମଧ୍ୟପ୍ରଦେଶର ବସ୍ତର ଜିଲ୍ଲାରେ କୃଷକ ସଂପ୍ରଦାୟ ବିଶେଷ ଦ୍ୱାରା ପ୍ରଧାନତଃ କଥିତ 'ଭତ୍ରୀ'କୁ ଓଡ଼ିଆ ଭାଷାରେ ଏକମାତ୍ର ଉପଭାଷା ବୋଲି ଗ୍ରହଣ କରି ପଶ୍ଚିମ ଓଡ଼ିଶାର କଥିତ ଓଡ଼ିଆକୁ ଓ ଉତ୍ତର ଓଡ଼ିଶାର କଥିତ ଓଡ଼ିଆକୁ ପ୍ରାମାଣିକ (Standard) ଓଡ଼ିଆ ଠାରୁ ଅଳ୍ପ ପୃଥକ ଥିବା ମନେକରି 'ଉପଭାଷା' (dialect) ବୋଲି ସ୍ୱୀକାର କରିନାହାନ୍ତି ଏଭଳି ସିଦ୍ଧାନ୍ତ ଭ୍ରମପୂର୍ଣ୍ଣ । ଭାଷାର ବ୍ୟାପକତା ତଥା କେତେକ ବିଶିଷ୍ଟ ପାର୍ଥକ୍ୟ ଥିବା କାରଣରୁ ପଶ୍ଚିମ ଓଡ଼ିଆ ଭାଷାକୁ ଉପଭାଷାର ଆସନ ଦିଆଯାଇ ପାରେ । ଭାଷା ବିଜ୍ଞାନୀ ମାନେ ପଶ୍ଚିମାଞ୍ଚଳୀୟ ଉପଭାଷା ବା ସମ୍ବଲପୁରୀ ଭାଷାକୁ ଅନୁଧ୍ୟାନ କରି ଏହା ଅନେକାଂଶରେ ହିନ୍ଦୀ ଭାଷା ଦ୍ୱାରା ପ୍ରଭାବିତ ବୋଲି ମତ ଦେଲେ ମଧ୍ୟ, ତାର ବାକ୍ୟରୀତି ଏବଂ ଶବ୍ଦ ଭଣ୍ଡାର ବହୁ ପରିମାଣରେ ମୌଳିକ ସମ୍ପଦରେ ସମୃଦ୍ଧ । ଏକ ସୀମାନ୍ତବର୍ତ୍ତୀ ଅଞ୍ଚଳ ଭାବେ ହିନ୍ଦୀ ଭାଷାର ପ୍ରଭାବ କିଞ୍ଚିତ୍

ପରିମାଣରେ ରହିବା ସ୍ୱାଭାବିକ। ତେଣୁ ଭାଷାର ଇତିହାସ ଓ ବିବର୍ତ୍ତନର ଧାରା ଅନୁଧ୍ୟାନ ନିମିତ୍ତ ଉପଭାଷା ଅଧ୍ୟୟନର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି।

ଉତ୍ତରାଞ୍ଚଳୀୟ ଓଡ଼ିଆ ଭଳି ପଶ୍ଚିମାଞ୍ଚଳୀୟ ଉପଭାଷା କ୍ଷେତ୍ରରେ ସ୍ଥାନୀୟ ପାର୍ଥକ୍ୟ ଅଛି ତାହା ନିଃସନ୍ଦେହରେ କୁହାଯାଇପାରେ । ଆମେ ପଶ୍ଚିମାଞ୍ଚଳୀୟ ଉପଭାଷା/ସମ୍ବଲପୁରୀ ଭାଷା ସାଧାରଣତଃ, ସମ୍ବଲପୁର, ସୁନ୍ଦରଗଡ଼, କଳାହାଣ୍ଡି, ବଲାଙ୍ଗୀର ଓ ବଉଦ ଇତ୍ୟାଦି ଅଞ୍ଚଳରେ ବ୍ୟବହୃତ ହୁଏ ବୋଲି କହିଥାଉ ଏବଂ ଏହି ସମସ୍ତ ଅଞ୍ଚଳର ଭାଷା ପାଇଁ 'ସମ୍ବଲପୁରୀ' ଏକ ସାମୁହିକ ନାମ ଦେଇଥାଉଁ। ତଥାପି ସୁନ୍ଦରଗଡ଼ ଅଞ୍ଚଳର ଭାଷା ବଲାଙ୍ଗୀର ଓ ବଉଦ ଅଞ୍ଚଳର ଭାଷା ମଧ୍ୟରେ ସ୍ଥାନୀୟ ପାର୍ଥକ୍ୟ ବେଶ୍ ସ୍ପଷ୍ଟ । ଓଡ଼ିଶାର ଉପକୂଳ ଅଞ୍ଚଳରୁ ଦୂରରେ ଅବସ୍ଥିତ ଏହି ଅଞ୍ଚଳ ବହୁକାଳ ପର୍ଯ୍ୟନ୍ତ ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ରହିବା ଫଳରେ ସେଠିକାର ଭାଷା ହିନ୍ଦୀ ଭାଷା ଦ୍ୱାରା ପ୍ରଭାବିତ ହୋଇ ଏକ ଭିନ୍ନ ରୂପ ଧାରଣ କରିଛି। ତେବେ ଏଭଳି ସାମାନ୍ୟ ପାର୍ଥକ୍ୟ ଥିଲେ ହେଁ, ଏମାନଙ୍କ ମଧ୍ୟରେ ଏକ ଆକର୍ଷଣୀୟ ସାମ୍ୟ ପରିଦୃଷ୍ଟ ହୋଇଥାଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଉତ୍ତରାଞ୍ଚଳୀୟ ଓଡ଼ିଆ ବା ବାଲେଶ୍ୱରୀ ଭାଷା ଉତ୍ତର ବାଲେଶ୍ୱର, ମୟୁରଭଞ୍ଜ, ମେଦିନପୁର, ଷଢେଇକଳା ଓ ଖରସୁଆଁ ପ୍ରଭୃତି ଅଞ୍ଚଳରେ ବ୍ୟବହୃତ ହୁଏ ବୋଲି କୁହାଯାଉଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ସ୍ଥାନୀୟ ପାର୍ଥକ୍ୟ ନିଃସନ୍ଦେହ ଭାବରେ ବିଦ୍ୟମାନ।

ପଶ୍ଚିମାଞ୍ଚଳୀୟ ଓଡ଼ିଆ ଭାଷାର ଲାକ୍ଷଣିକ ବୈଶିଷ୍ଟ୍ୟ - ଧ୍ୱନି -

ପ୍ରକ୍ରିୟାଗତ ବୈଶିଷ୍ଟ୍ୟ :-

(କ) ଶବ୍ଦର ଆଦ୍ୟସ୍ଥିତିରେ ବ୍ୟଞ୍ଜନ ସନ୍ନିହିତ ଅର୍ଦ୍ଧସଂବୃତ୍ତ ସ୍ୱରଧ୍ୱନି ପଶ୍ଚିମାଞ୍ଚଳୀୟ ଓଡ଼ିଆରେ ପ୍ରାୟତଃ ସଂବୃତ୍ତ ସ୍ୱରରେ ପରିଣତ ହୁଏ। ଏହା ଆଲୋଚ୍ୟ ଉପଭାଷାର ଏକ ମୁଖ୍ୟ ଲକ୍ଷଣ। ଯଥା :- ଗୋଟେ = ଗୁଟେ, ଗୋବର=ଗୁବର, ଘୋଡ଼ା = ଘୁଡ଼ା, ଚୋର = ଚୁର, କୋଳି = କୁଳି।

(ଖ) ଓଡ଼ିଆ ଭାଷାର ଉଚ୍ଚାରିତ ସାଧାରଣତଃ ସ୍ୱରାନ୍ତ ମାତ୍ର ପଶ୍ଚିମ ଓଡ଼ିଆ ଉପଭାଷାରେ ଅନେକ ଶବ୍ଦରେ ବ୍ୟଞ୍ଜନାନ୍ତ ଉଚ୍ଚାରଣ ପରିଲକ୍ଷିତ ହୁଏ। ଏହା ହିନ୍ଦୀ ଉଚ୍ଚାରଣ ପ୍ରଭାବ ବୋଲି ଅନୁମିତ ହୁଏ। ଯଥା - ଭାତ୍, ଘର୍, ଯେନ୍, ଇତ୍ୟାଦି।

(ଗ) ପଶ୍ଚିମ ଓଡ଼ିଆ ଉପଭାଷାରେ ଧ୍ୱନି କ୍ଷେତ୍ରରେ 'ଳ', 'ଣ' ଏବଂ 'ଓ' ଧ୍ୱନିର ପରିବର୍ତ୍ତନ ଖୁବ୍ ସ୍ପଷ୍ଟ।

ଣ=ନ - ଯଥା :- ଅଣ=ଅନ, ଶୁଣ = ଶୁନ୍, ଓ = ଉ - ଯଥା :- କୋଇଲି = କୁଇଲି, ଘୋଡ଼ା=ଘୁଡ଼ା ଇତ୍ୟାଦି

(ଘ) ପଶ୍ଚିମାଞ୍ଚଳୀୟ ଓଡ଼ିଆ ଭାଷା ଭବିଷ୍ୟତକାଳିନ ପ୍ରଥମ ପୁରୁଷ କ୍ରିୟା ସୂଚକ 'ଇବି' 'ଇମି' ଓ 'ଏରି'ରେ ପରିଣତ ହୋଇଥାଏ । ଯଥା :-

ଯିବି = ଯିମି, ଲେଖିବି = ଲେଖିମି, ଖାଇବି = ଖାଏମି ଇତ୍ୟାଦି ।

(ଙ) ଅନେକ ସ୍ଥାନରେ ଶବ୍ଦ ମଧ୍ୟସ୍ଥ ବ୍ୟଞ୍ଜନ ସନ୍ନିହିତ ସ୍ୱରଧ୍ୱନିର ଅପସାରଣ ଘଟେ । ଯଥା :-

କରିବ - କର୍‌ବ, ଦେଖିବା = ଦେଖ୍‌ମା, ଅଣ୍ଡିରା = ଅଁଣ୍ଡରା, ଆତୁରି = ଆଉର୍ ।

(ଚ) 'ମାନେ' ଓଡ଼ିଆ ଭାଷାରେ ବଚନ ନିର୍ଦ୍ଦେଶକ ପଦ ଏହାର ପ୍ରଚଳନରେ ପଶ୍ଚିମ ଓଡ଼ିଆ ଉପଭାଷାରେ ବ୍ୟତିକ୍ରମ ଘଟିଥିବାର ଲକ୍ଷ୍ୟ କରାଯାଏ । ଯଥା :-

ଓଡ଼ିଆ ଭାଷାରେ 'ସେମାନେ ଯାଉଅଛନ୍ତି' ପଶ୍ଚିମ ଓଡ଼ିଆ ଉପଭାଷାରେ 'ସେମାନେ ଯାଉଛଁନ୍' ମାତ୍ର ଓଡ଼ିଆ ଭାଷାରେ 'ତୁମେମାନେ ଯାଉଅଛ' କହିଲା ବେଳେ ପଶ୍ଚିମ ଓଡ଼ିଆ ଉପଭାଷାରେ 'ତୁମେଁ ଯାଉଛ' ଉଚ୍ଚାରଣ ହୋଇଥାଏ ।

(ଛ) ସମ୍ବଲପୁରୀ ଭାଷାରେ ବା ପଶ୍ଚିମାଞ୍ଚଳୀୟ ଉପଭାଷାରେ 'ମହାପ୍ରାଣ' ବର୍ଣ୍ଣ ଗୁଡ଼ିକ ପ୍ରାୟେ ବ୍ୟବହାର ନାହିଁ, ବରଂ ସେଗୁଡ଼ିକ ଅଳ୍ପପ୍ରାଣ ବର୍ଣ୍ଣରେ ପରିଣତ ହୋଇଯାଇ ଥାନ୍ତି । ଯଥା :- ପାଣି=ପାଏନ୍, ଆଣ୍ଠୁ = ଆଁଠୁ, ଆଣ୍ଟ = ଆଁଟ୍ ଇତ୍ୟାଦି ।

ରୂପରଚନା ଗତ ବୈଶିଷ୍ଟ୍ୟ :-

(କ) ପଶ୍ଚିମାଞ୍ଚଳୀୟ ଓଡ଼ିଆରେ ସାର୍ବନାମିକ ବ୍ୟୁତ୍ପାଦିତ କେତେକ ପଦରେ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ଯଥା :- ଏଇଟା = ଇଟା, ଏଆଡ଼େ = ଇକୁଡ୍, ଏଥିରୁ = ଇଥୁଁ ଇତ୍ୟାଦି ।

(ଖ) ପଶ୍ଚିମାଞ୍ଚଳୀୟ ଓଡ଼ିଆ ଭାଷାରେ ବିଭକ୍ତିର ଚିହ୍ନ ମଧ୍ୟ ଭିନ୍ନ ଭାବରେ ବ୍ୟବହୃତ ହୁଏ । ଉଦାହରଣ ସ୍ୱରୂପ :-

ଦ୍ୱିତୀୟ ବିଭକ୍ତିର ଚିହ୍ନ 'କୁ' ସ୍ଥାନରେ ପଶ୍ଚିମାଞ୍ଚଳୀୟ ଓଡ଼ିଆରେ 'କେ' ଭାବରେ ବ୍ୟବହୃତ ହୁଏ । ଯଥା :- 'କଲେଜ କେ' ।

ପଞ୍ଚମୀ ବିଭକ୍ତିର ଚିହ୍ନ 'ଠାରୁ' ସ୍ଥାନରେ ପଶ୍ଚିମାଞ୍ଚଳୀୟ ଓଡ଼ିଆରେ 'ଥୁ' ଉ:- ଗଛଥୁ, ସପ୍ତମୀ ବିଭକ୍ତିର ଚିହ୍ନ 'ରେ' ସ୍ଥାନରେ ପଶ୍ଚିମାଞ୍ଚଳୀୟ ଓଡ଼ିଆରେ 'ଥି' ଉ:- ଭାଷାଥି ବ୍ୟବହାର

କରାଯାଏ । ଷଷ୍ଠୀ ବିଭକ୍ତି ଚିହ୍ନ 'ର' ପ୍ରତ୍ୟୟର ବହୁଳ ବ୍ୟବହାର ଦେଖାଯାଏ । ସାଧାରଣତଃ ଓଡ଼ିଆରେ ଯେଉଁଠି 'ର'କୁ ବ୍ୟବହାର କରାଯାଏ ନାହିଁ ପଶ୍ଚିମ ଓଡ଼ିଆ ଉପଭାଷାରେ ତାହା ହୁଏ ।

(ଗ) ପଶ୍ଚିମ ଓଡ଼ିଆ ଉପଭାଷାରେ କେତେକ ବିଶିଷ୍ଟ ପ୍ରକାର୍ଯ୍ୟାତ୍ମକ ଶବ୍ଦର ଚ୍ଛୁକ ବ୍ୟବହାର ପରିଲକ୍ଷିତ ହୁଏ । ବୋ/ ସମ୍ବୋଧନାତ୍ମକ - ବାକ୍ୟର ଶେଷରେ ଏହା ବ୍ୟବହୃତ ହୁଏ । ଉଦାହରଣ :- 'ତୁମ୍‌ହେ ଖାଲି ଟୁକେଲ ଗୁର୍‌ହୁ ଇନେ ଠୁଲ ହୋଇଛ ବୋ ।'

ଯେ/ ପ୍ରଶ୍ନାତ୍ମକ ଉଦାହରଣ :- 'ତୁମ୍‌ହେ କେନ୍ତା ଅଁର୍‌ରା କି ମାଇ ଯେ ?'

ହେ/ସାଦୃଶ୍ୟମୂକ ଉଦାହରଣ :- 'ତୁମ୍‌ହେ ଗଞ୍ଜିଆ କାଏଁ ଭାଗବତ ଅରଥ୍ କର୍‌ବ ।'

ଶବ୍ଦ ସମ୍ଭାରର ବୈଶିଷ୍ଟ୍ୟ :-

ପଶ୍ଚିମାଞ୍ଚଳୀୟ ଓଡ଼ିଆ ଭାଷାର ଶବ୍ଦ ସମ୍ଭାରରେ ବହୁ ବୈଚିତ୍ର୍ୟ ଲକ୍ଷଣୀୟ । ମାତ୍ର ଏହି ଶବ୍ଦଗୁଡ଼ିକର ଉପଯୁକ୍ତ ସଂକଳନ ବା ସଂଗ୍ରହ ଏ ଯାବତ୍ ପରିଲକ୍ଷିତ ହୁଏନାହିଁ । ପଶ୍ଚିମ ଓଡ଼ିଆ ଉପଭାଷାର ଆଭିଧାନିକ ମୂଲ୍ୟ ବ୍ୟତୀତ ଭାଷାର ଧ୍ୱନି ଓ ରୂପ ରଚନାଗତ ପ୍ରକ୍ରିୟାର ବିଶ୍ଳେଷଣ ଦିଗରେ ମଧ ବହୁ ଉପଯୋଗିତା ରହିଅଛି । ପଶ୍ଚିମ ଓଡ଼ିଆ ସାହିତ୍ୟିକଗଣ ସେମାନଙ୍କ ଗ୍ରନ୍ଥ ରଚନା ପ୍ରାମାଣିକ (standard) ଓଡ଼ିଆ ଭାଷାରେ ରଚନା କରିଥିଲେ ମଧ ଅନେକତ୍ର ଆଞ୍ଚଳିକ ଶବ୍ଦ ପ୍ରୟୋଗ କରିବାର ଲକ୍ଷ୍ୟ କରାଯାଏ । ବିଶେଷ ଭାବରେ ପଶ୍ଚିମ ଓଡ଼ିଶାର ବରପୁତ୍ର ଗଙ୍ଗାଧରଙ୍କ ରଚନାବଳୀରେ ପଶ୍ଚିମ ଓଡ଼ିଆ ଶବ୍ଦ ସମୂହର ପରିଚୟ ପାଉଁ । ନିମ୍ନରେ ସ୍ୱପ୍ରଚେଷ୍ଟାରେ ସଂଗୃହିତ କବି ଗଙ୍ଗାଧରଙ୍କ ରଚନାବଳୀରୁ ଗୃହିତ ଓ ବିଭିନ୍ନ ସମୟରେ ଓଡ଼ିଆ ପତ୍ର ପତ୍ରିକାରେ ପ୍ରକାଶିତ କେତେକ ଏକ ତାଲିକା ନମୁନା ସ୍ୱରୂପ ପ୍ରଦତ୍ତ ହେଲା ।

ଅଇରା (ଅଇଁରା, ଅହେଁରା) - ହାଣ୍ଡି, ମାଟିଆଦି ପାତ୍ରକୁ ଭୂମି ଉପରେ ସ୍ଥିର ଭାବରେ ରଖିବା ମଳା ବା ବଇଠି ।

ଅଉଲ (ଅଓ୍ୱଲ) - ପ୍ରଥମ ଶ୍ରେଣୀୟ, ଶ୍ରେଷ୍ଠ, ଖାଣ୍ଟି ।

ଅଏଁଠ - ଉଚ୍ଛିଷ୍ଟ, ଅଇଁଠା

ଅଏନ୍ - ଉତ୍ତମ, ସୁନ୍ଦର

ଅଏରି - ଶତ୍ରୁ ବା ଅଇରି

ଅକଟା - ଖାଲି, ଶୂନ୍ୟ

ଅକରିବା - ବାନ୍ତି କରିବା

ଅକଲ୍ - ବୁଦ୍ଧି

ଅଖଲା - ଧୁଆ ହୋଇଥିବା

ଅଗଲା ଚଟୁ - ଦୁଷ୍ଟ ପିଲା

ଅଗଲିବା - ବଳିପଡ଼ିବା, ଅବଶିଷ୍ଟ ରହିବା

ଅଘାରିଟା - କୌଣସି ପଦାର୍ଥ ଖାଇ ଖାଇ ବା ବ୍ୟବହାର କରି ବିରକ୍ତ ହେବା ।
ଅଙ୍‌ଛି - ଗାମୁଛା (ଛୋଟ)
ଅଙ୍‌ରା - ଜ୍ୱଳନ୍ତ ଅଙ୍ଗାର
ଅଚଲନ୍ - ଅନୀତି, ସମାଜଚ୍ୟୁତ
ଅଁଟାଲି - ଅଟ୍ଟାଳିକା
ଅଁଟକୁରା, ଅଁଠକୁରା ୦- ଅପତ୍ୟ ବିହୀନ, ଆଣ୍ଠୁକୁଡ଼ା
ଅଠିବ (ପ)ର - ଅଷ୍ଟପ୍ରହର
ଅଡେଇ ହେବା - ଅନ୍ୟକୁ ଯିବାପାଇଁ ବାଟ ଛାଡ଼ିଦେବା
ଅଡଙ୍ଗ - ଅନୁଚିତ, ବେଢ଼ଙ୍ଗ
ଅଣା - ପାଣିନାଳ
ଅଥା - କ୍ଲାନ୍ତ
ଅର୍ବଦା - ଭଙ୍ଗା, ବ୍ୟବହାର ପାଇଁ ଅନୁପଯୁକ୍ତ
ଅଦିର୍ଯ୍ୟା - ଅଧୈର୍ଯ୍ୟ, ଆକୁଳ
ଅଁଧୁର - ମୁର୍ଖ
ଅଧୁଁ - ଅଳନ୍ଧୁ
ଅନ୍ତରା - ନିଆଁ କତଡ଼ା
ଅପଟ - ଯାହାସହ ପଟେନାହିଁ
ଅଫଲା - ଉଦାସିନ ବ୍ୟକ୍ତି
ଅବରନି - ଅନିମନ୍ତ୍ରିତ
ଅମରିବା - ପହଁରିବା
ଅମଟା - ଆମ୍ବିଳିଆ
ଅଈଁରା - ଅଣ୍ଡିରା
ଅହେତ - ସଧବା ସ୍ତ୍ରୀ
ଆଇବା - ଆସିବା

ଆଏ - ଅଟେ, ଅଛି
ଆଁଛି - ନାଲିରଙ୍ଗର ମୋଟା ସୂତା
ଆଁଟ - ଶକ୍ତ,ଟାଣ
ଆଁଠି - ବୀଜ, ମଞ୍ଜି
ଆଦତ - ଅଭ୍ୟାସ
ଆଘୋ - ଆଗେ ପ୍ରଥମ
ଆଗୁଆନି - ଅଗ୍ରଗାମୀ
ଆଏଁଷ - ଆଇଁଷ
ଇଥ୍ - ଏଇଠାରେ
ଇତାର - ଏହାର
ଇନ - ଏଠି, ଏହିଠାରେ
ଇନୁ - ଏଠୁ, ଏହିଠାରୁ, ଏଣୁ, ଏଥିଯୋଗୁଁ
ଇଥୁଁ - ଏଥିରୁ
ଇନ୍ଦ୍ରି - ପୁରୁଷର ଯୌନାଙ୍ଗ
ଇନ୍‌କେ - ଏଠାକୁ, ଏହି ସ୍ଥାନକୁ
ଇବଗିର - ଏହିପରି
ଇଲା - ଦାଆ
ଇଝାର - ସାକ୍ଷ୍ୟ
ଏଛେନ୍/ଏଖେନ୍/ଇହାଦେ - ଏହିକ୍ଷଣି
ଲେ - ଓଲୁଅ
କରିୟା - କରିଟା
କପ - ଗଡ଼ିଆରେ ଶୁଖିଥିବା ଖଣ୍ଡ ଖଣ୍ଡ ପଙ୍କ
କୁଇଲି - କୋଇଲି
କୁହୁଲା - ଧୁଆଁ
କଁପର୍ - ମଇ ବା କାଠପଟା
ଖର୍‌ସି - ଗୋବର
ଖାରୀ - ଗାଁର ଅପରିଷ୍କାର ବର୍ଷାପାଣି

ଖାର - ପାଉଁଶ
ଖଡ଼ - ଛଣ
ଖାଡ଼ି - ସରୁବତା
ଗୁଡ଼ି - ଦେଉଳ
ଗାଡ଼ି - ପୋତି
ଗୁଟି - ପରଘରେ ଚୁକ୍ତିବୋଧ ହୋଇ ମୂଳ ଲାଗିବା
ଗୁଆର - ଗୁଆଁର
ଘଣା - ଆଖୁପେଶା କଳ
ଘର - ଚଳିଜମି
ଚାବିବା - ଯାବିଧରିବା
ଚାଣ୍ଡି - ପିମ୍ପୁଡ଼ି
ଚାଞ୍ଚର - ଚାଞ୍ଚଡ଼ା
ଚଉକ - ଚାରି ଅଙ୍ଗୁଳ ବିଶିଷ୍ଟ, ପରିମିତ
ଛେର୍‌ଛେରା - ପୌଷ ପୂର୍ଣ୍ଣିମା
ଛାଦ - ଛାତ
ଛିର - ଚିର
ଛେନା - ଘଷି
ଜାନ୍‌ମିଁ - ଜାଣିବି
ଜୁତା - ଯୋତା
ଝୁନାଙ୍ଗ - ଝୁଡ଼ଙ୍ଗ, ବରଗଡ଼
ଝପାଖି - ଲମ୍ଫଦେଇ
ଟୁପ୍‌ଲି - ଛୋଟ ବାଉଁଶ ଡାଲା
ଟୁକେଲି - ଝିଅ
ଠୁଲ - ଠୁଳ
ଡୁହୁରି - ପଟାଳି, କିଆରି
ଡୁଙ୍ଗୁରି - ପାହାଡ
ଢ଼ୋଲି - ଢ଼ଙ୍ଗାଭୂମି
ତୁମ୍‌ହେ - ତୁମେ
ତୋକେ - ତତେ
ତରା - ତାରା
ତଳା - ତଳି, ଚାରା
ଥୁ - ଠାରୁ
ଥି - ରେ
ଦଉରା - ଦଉଡା, ଦଉଡ଼ି,
ଦାଇବା - କାଟିବା
ଦେଖ୍‌ମା - ଦେଖିବା
ଦଳ - ଗଜାପତ୍ର
ଦାଲି - ଡ଼ାଲି
ଧଣିଚା - ଧନିଚା
ଧସାରୋଗ - ଉଦ୍ଭିଦ ରୋଗ ବିଶେଷ
ନିଛି - ଚୋପା ଛଡ଼ାଇ
ପାଟଲଘଣ୍ଟା - ବିଲାତି ବାଇଗଣ
ପାଲୀ - କୋଦାଳ
ପୁଡୁଗ - ଓଳିଆ
ପୁଆଳ - ନଡ଼ାକୁଟା
ପହ୍ଲା - ତଳି, ମଞ୍ଜି
ପନାସି - ଖଟ ଦଉଡ଼ି
ଫେସି - ଏକ ପ୍ରକା ତୈଳବୀଜ
ବାଗିର - ଭଳି, ପରି
ବଡ଼ିଆଳ - ଆତ
ବରଖୀ - 'ଉତ୍ତରୀୟ' ବିଶେଷ
ବରଛା - କିଆରି
ବନ୍ଧୁଆ - ଘାସରେ ପ୍ରସ୍ତୁତ ହୋଇଥିବା ଦଉଡ଼ି

| | |
|---|---|
| ବାହାଲ - ଜଳଭୂମି | ଯେନ୍ - ଯେଉଁ |
| ବେରଣ - ଅଳ୍ପ ଜଳଭୂମି | ଯୋତି - କର୍ଷଣକରି |
| ମୁଇଁ - ମୁଁ | ରାଏତ୍ - ରାତି |
| ମାକେ - ମତେ | ରସାଞ୍ଜନ - ଏକପ୍ରକାର ଫଳ |
| ମଣ୍ଡୁଆ - ମଞ୍ଚାଭାଡ଼ି, ମଣ୍ଡପ, ଛାମୁଣ୍ଡିଆ | ସଁସାର - ସଂସାର |
| ମାଳ - ପଡ଼ିଆ ଜମି | ସିମୁଳି - ଏକ ପ୍ରକାର କନ୍ଦମୂଳ |
| ମୁଗ୍‌ଫଲି - ଚିନାବାଦାମ | ଶୁନ୍ - ଶୁଣ |
| ମାୟ୍ଯା - ପିଜୁଳି | ହରମେସା - ସର୍ବଦା |
| ମଡ଼ାଇ - ବେଙ୍ଗଳା ପକାଇ | ହାଦେ - ବର୍ତ୍ତମାନ, ସେଠାରେ ଦୁଇ ଅର୍ଥରେ ବ୍ୟବହୃତ ହୁଏ |
| ମୁରୁଖ୍ - ମୁର୍ଖ | ହେଥିର୍ - ଏଥି |
| ମାଖନ୍ - କଖାରୁ | ହେଟା - ତାହା |

ପଶ୍ଚିମାଞ୍ଚଳୀୟ ଓଡ଼ିଆ କଥିତ ଭାଷାର ନିଦର୍ଶନ ପୂର୍ବକ ୧୯୫୭ ସାଲରେ ସମ୍ବଲପୁର ଠାରେ ଅଭିନୀତ ଶିବପ୍ରସାଦ ମିଶ୍ରଙ୍କ 'ଗୌନ୍ତିଆ ବାବୁ' ନାଟକର କିୟଦଂଶ ଉପସ୍ଥାପିତ ହେଲା-

(ଗାଆଁ ଭାଗବତ ଟୁଙ୍ଗୀଘର । ସିନ୍ ଉଠିଲା ବେଳକୁ ୬/୭ ଜଣ ବସି ଭାଗବତ କରୁଛନ୍ତି । ସଙ୍ଗରେ ବାଜୁଛି ଗିନି ମର୍ଦ୍ଦଳ ଇତ୍ୟାଦି । ମଝିରେ ମଝିରେ ଗଞ୍ଜାଇ ଚିଲମଟା ଘୁରି ଆସୁ । ଭେକଲା ମଧ ପାଳି ଧରୁଛି । ଭାଗବତ ଦୁଇ ତିନି ପଦ ହୋଇସାରିବା ପରେ ।)

ପୂଜକ - "ସଂସାରେ ଥିବ ଯେତେଦିନ ଆନନ୍ଦ କରୁଥିବ ମନ"

(ଅନ୍ୟ ପଦକୁ ପଢ଼ିବାକୁ ଯାଉଥିବା ସମୟରେ ଭେକଲା ପଚାରିଲା)

ଭେକଲା- ଏ ପରର ପିଲେ ଖାଲି ହେନ୍ତେଇ ପଢ଼ିଯାଉ ଥିଲେ କି ପାଲିଆ ଧରୁଥିଲେ ଭାଗବତ୍ ହେସି କାଏଁବୋ --- ଟିକେ ଅର୍ଥ ଉର୍ଥାକର୍‌ବ ହେଲେ ହେବା କାଏଁନ - ମତେ କହତ ଗୁଟେ କଥା - କେନ୍ତା ଭାଗବତ୍ କରୁଛ ଯେ ଜାନ୍‌ମିଁ । ହେଁ ଯେନ୍ ଭାଗବତ୍ ଇଛେନ୍ ଇ ସଂସାର ବଏଲା, ହାଏଁ ସଁସାଁର ବଏଲେ କାଏଁ ବୁଝୁଛ ଯେ କହତ ଦେଖିମା କେନ୍ତା ଭାଗବତିଆ ଅ ଯେ ।

ବିଣ୍ଡଲ - (ଟିକିଏ ଭାବି) ନ ପଚାରି ବଡ଼େ ଗହରିଆ କଥାଟେ ପଚାର୍‌ଲ । ଗାଇ ଭେକଲା ନଶୁନ୍, ମୁଇଁ ଯେତ୍‌କି ବୁଝିଛେଁ - ସଂସାର ବଏଲେ ଇ ଆମର ମାଁ ମାଟି ଆଏ ।

ମାଖନୁ - କେନ୍‌ତା ମୁରୁଖ୍ ବାଗିର୍ କଥା କହେସୁଗା - ଇଟା ତୋର୍ ମାଇ ଖେତର ଲଙ୍ଗଲ୍ ଫନ୍ଦା ନୁହଁ ଆଏ ଯେ ବାହାରିକେ 'ଅର' ଆର ଭିତରିକେ 'ଟଟ୍' ବଲିଦେଲେ କାମ୍ ଚଲିଯିବା ଇଟା ଭାଗବତ୍ ଆଏ ଭାଗବତ୍ ବୁଝୁଲୁ ? (ଗଞ୍ଜାଇ ଚିଲମଟା ଅନ୍ୟଠାରୁ ଆଣି ପିଇବାକୁ ଲାଗିଲା)

ଟେକାରୁ - (ଚିଲମ୍‌ଟା ମାଖନୁ ପାଖରୁ ଆଣି ଦୁଇ ଢ଼ୋକ ପିଇଲା - ତା'ପରେ) ତୁମ୍‌ହେ ଯାହା ବଲ୍ ତାହା ବଲ୍ ମାଖ୍‌ନୁ ଇ ସବୁ ଯାକର ତୁଛା କଥା - ମୋର ମନେ ସଁସାଁର୍ ବଏଲେ (ଗଞ୍ଜାଇ ଚିଲମ୍ ଦେଖାଇ) ପେଟ ରୋଲ ପରିଛେ ବଏଲେ ଦିନ ନାଇଁ, ରାଏତ୍ ନାଇଁ ଜର୍ମାନୀ ଇଞ୍ଜିନ୍ ଚଲୁଛେନ - ଆରୁ କୁହୁଲା ବାହାରୁଛେ ଭକ୍ ଭକ୍ ଭକ୍ ମୋର ଲେଖେଁ ଇଟା ଆଏ ସଁସାଁର ।

ଭେକ୍‌ଲା - ତୁମ୍‌ହେ ଖାଲି ଗଞ୍ଜିଆ ଭାଗବତିଆ ଗୁର୍‌ଦୁ ଇନେ ଠୁଲ୍ ହୋଇଛ ବୋ - ତୁମ୍‌ହେ କାଏଁ ଅରଥ କର୍‌ବ - ମୁଇଁ କହିମି ଶୁନ୍‌ବ - ଏ ଦେଖ (ନିଜର ନାମ ଦେଖାଇ) ସଁସାର ବଏଲେ ଯେନ୍ ପବନ ହରମେସା ସଁ ସଁ କରୁଛେ କି ନାଇଁ - ଇଟା ନ ହେଲା ସାର୍ - ଇ ସଁ ସାଁଟା ଖାଲି ସାର୍, ହେଥିର୍ ଲାଗି ହେଲା ସଁ ସାର - ନ ଲେଖିଲା ବାଲା ଭିଲ୍ ବଡ଼େ ବାହାଦୁର୍ ଆଏ । ଦେଖନ୍ ଠକା ଠକ୍ କେନ୍‌ତା ପଦଟେ ପକେଇଛେ ଯେ ।

| | | | |
|---|---|---|---|
| ପାଲିଆ - ପାଳି | କର୍‌ବ - କରିବା | ହରମେସା - ସର୍ବଦା | ଅରଥ୍ - ଅର୍ଥ |
| ଗୁଟେ - ଗୋଟିଏ | ବଏଲେ - କହିଲେ | କେନ୍‌ତା - କ'ଣ | ଜାନ୍‌ମିଁ - ଜାଣିବି |
| ଦେଖ୍‌ମା - ଦେଖିବା | ଆଏ - ଅଟେ | ଯେନ୍ - ଯେଉଁ | ନିଶୁନ୍ - ନିଶୁଣ |
| ଇଟା - ଏଟା | ରାଏତ୍ - ରାତ୍ରି | କୁହୁଲା - ଧୁଆଁ | ଲଙ୍ଗଲ୍ - ଲଙ୍ଗଳ |
| ଗୁର୍‌ଦୁ - ଗୁଡ଼ାଏ | ଇନେ - ଏଠାରେ | ସଁସାଁର - ସଂସାର | ଲେଖେଁ - ବୁଝିବାରେ |

ଉପରୋକ୍ତ ଉଦାହରଣ ବ୍ୟତୀତ ପଶ୍ଚିମ ଓଡ଼ିଶାର ଦୁଇଗୋଟି ଲୋକଗୀତ ଉଦାହରଣ ସ୍ୱରୂପ ନିମ୍ନରେ ଉପସ୍ଥାପିତ କରାଯାଉଛି -

(କ) "ଡ଼ାଲଖାଇରେ.........
ବାଜୁଛେ ନାଗରା ବାଜୁଛେ ବଜା
ଯୁଦ୍ଧକେ ଯିବେ ଗଜପତି ରଜା
କାଁଚିର ରଜା କଲୋ ବଣ୍ଡେ ଖାଡ଼ି
ଶୁନି ଗିସା କାନୁ ଆର ହଲଧାରି

ଭଗତର ଲାଗି ଧାଏଁଲେ
ଘୁଡ଼ାଥୁଁ ଚଢ଼ି, ଘୁଡ଼ାଥି ଚଢ଼ି
କାଏଁ ଡ଼ାଲଖାଇରେ-"
"ଡ଼ାଲଖାଇରେ.....
ବାଟେ ଗଉରେନର୍ ଦହି ଖାଏଲେ
ମୁଦି ବନ୍ଧାକରି, ଯୁଦ୍ଧେ ଜିତିଲେ
ଘିଚି ଆନିଲେ ପଦ୍ମାବତି ଜେମା
ରଜା ବଏଲା ଆଛା ପାନେ ଦେମା
ଘାଁସି ଗୁଟେ ବିହା କରି ଗା,......
କଥା ଗୁଝିମା ଗୁଝିମା କାଏଁ....
ଡ଼ାଲଖାଇରେ....।"

(ବଲାଙ୍ଗିର ଜିଲ୍ଲାର ବିଜେପୁର ଗ୍ରାମରୁ ସଂଗୃହିତ 'ଡ଼ାଲଖାଇ'ରୁ ଏକ ଦୃଷ୍ଟାନ୍ତ)

(ଖ) ପଶ୍ଚିମ ଓଡ଼ିଶାର 'ହଳିଆ ଗୀତ' ବା 'ଚଷା ଗୀତ' ନାମରେ ପ୍ରଚଳିତ ଏକ ଲୋକଗୀତକୁ ଦୃଷ୍ଟାନ୍ତ ସ୍ୱରୂପ ନିଆଯାଇ ପାରେ।

ଏ.......
କଲିଆ ଠାକୁଲରେ କଲୁ ନଟଖୁଟ
ପିଠି ନାଇଁ ମାରୁଲୁରେ ମାରିଦେଲୁ ପେଟ
ମାନେ ଜନ୍ମ ଯେବେ ଆର୍ ଦେଲୁରେ କଲିଆ...
କରୁଛୁ ଛଟପଟ ରେ....
(ଆର) ଥରେ ଟା'ରି ଦେବୁ କାଏଁ ପର୍ଭୁ
ହେ ଭୋ ନାଥ......
ସଂସାରୁ ଝଟ ପଟରେ....ରେ...।"

ଉପରୋକ୍ତ ଉଦାହରଣ ମାନଙ୍କରେ ପଶ୍ଚିମ ଓଡ଼ିଆ ଉପଭାଷାର ଉଚ୍ଚାରଣ ଗତ ଓ ସ୍ୱର ଲହର ଗତ ବୈଶିଷ୍ଟ୍ୟ ପ୍ରଦର୍ଶିତ ହୋଇଅଛି।



# ସମ୍ବଲପୁରୀ ଭାଷାର କେତୋଟି ବୈଶିଷ୍ଟ୍ୟ

ପ୍ରମୋଦ କୁମାର ପାତ୍ରୀ

ସମ୍ବଲପୁର, ବଲାଙ୍ଗିର, ସୁନ୍ଦରଗଡ଼ ତଥା କଳାହାଣ୍ଡି ଜିଲ୍ଲାର କେତେକ ଅଞ୍ଚଳରେ ଲୋକରେ ପ୍ରଚଳିତ ଭାଷା ହେଉଛି ସମ୍ବଲପୁରୀ ଭାଷା। ସମ୍ବଲପୁରୀ ଭାଷା ଏକ ଉପଭାଷା ଓ ଏହି ଭାଷାରେ ଉପଭାଷାର ସମସ୍ତ ଲକ୍ଷଣ ଦୃଷ୍ଟିଗୋଚର ହୁଏ। କେତେକ ଭାଷାତତ୍ତ୍ୱବିଦ୍‌ଙ୍କ ମତରେ ସମ୍ବଲପୁରୀ ଭାଷା ହେଉଛି ଶୁଦ୍ଧ ଓଡ଼ିଆ ଭାଷାର ଉପଭାଷା, ମାତ୍ର ତୁଳନାତ୍ମକ ଭାଷା ବିଜ୍ଞାନ (Comparative Linguistics) ଦୃଷ୍ଟିକୋଣରୁ ବିଚାର କଲେ ଏ ଭାଷାରେ ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ଅଳ୍ପ ପରିମାଣରେ ଦେଖିବାକୁ ମିଳେ। ବରଂ ଅନ୍ୟ ପକ୍ଷରେ ହିନ୍ଦୀ ଓ ଛତିଶଗଡ଼ୀ ଭାଷାର ଯଥେଷ୍ଟ ପ୍ରଭାବ ଏଥିରେ ଲକ୍ଷ୍ୟ କରାଯାଏ। ସମ୍ଭବତଃ କୋଶଳ ବା ସମ୍ବଲପୁର ଅଞ୍ଚଳ ୧୯୦୫ ମସିହା ପୂର୍ବରୁ ମଧ୍ୟପ୍ରଦେଶ ସହିତ ମିଶିକରି ଥିଲା। "୧୯୦୫ ଅକ୍ଟୋବର ଷୋହଳ ତାରିଖରେ ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ ହୋଇ ବଙ୍ଗଳା ପ୍ରଦେଶ ଅନ୍ତର୍ଗତ ଓଡ଼ିଶା ଡ଼ିଭିଜନରେ ମିଳିତ ହେଲା।" (ସମ୍ବଲପୁର ନଗରୀ ଓ ପାଳିକା ସମିତିର ଏକ ସଂକ୍ଷିପ୍ତ ଇତିହାସ ସଂଗ୍ରାମ ସାହାଣୀ - ସ୍ମରଣୀକା - ଜିଲ୍ଲା ଲେଖକ ସମ୍ମିଳନୀ - ୧୯୭୬ ପୃ: ୭୫) ସୁତରାଂ, ମଧ୍ୟପ୍ରଦେଶ ସହିତ ସମ୍ବଲପୁର ମିଶି ରହିଥିବାରୁ ଏହାର ଅନେକ ସ୍ଥାନରେ ମଧ୍ୟପ୍ରଦେଶର ଭାଷା ହିନ୍ଦୀ ତଥା ଛତିଶଗଡ଼ୀ ଭାଷାର ପ୍ରଭାବ ପଡ଼ିବା ସମ୍ଭବ ହୋଇଥାଇ ପାରେ। ସମ୍ବଲପୁରୀ ଭାଷାର ଉଦ୍ଭବ କେବେ ଓ ତା'ର ବିକାଶକ୍ରମ କ'ଣ ତାହା ଏକ ଗଭୀର ଗବେଷଣା ସାପେକ୍ଷ ବିଷୟ। କେବଳ ସମ୍ବଲପୁରୀ ଭାଷାର କେତେକ ବୈଶିଷ୍ଟ୍ୟ ସଂପର୍କରେ ସୂଚନା ଦେବା ଏ ପ୍ରବନ୍ଧର ମୂଳଲକ୍ଷ୍ୟ।

ଭାଷାର ବର୍ଗୀକରଣ ସମୟରେ କେତେକ ନିର୍ଦ୍ଦିଷ୍ଟ ଦିଗ ପ୍ରତି ଧ୍ୟାନ ଦେବା ଉଚିତ ମନେ ହୋଇଥାଏ। ସାମୀପ୍ୟ ଓ ସାଧାରଣ ସାମ୍ୟ, ଶାବ୍ଦିକ ତୁଳନା, ଧ୍ୱନିତତ୍ତ୍ୱ ଓ ଅର୍ଥତତ୍ତ୍ୱ, ଭାଷାଭାଷୀଙ୍କ ଐତିହାସିକ କ୍ରମ ପରିମାଣର ସନ୍ଧାନ ତଥା ବ୍ୟାକରଣଗତ ସାଦୃଶ୍ୟ ପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ। ମାତ୍ର ଉପଭାଷା ଓ ଭାଷା ମଧ୍ୟରେ ପାର୍ଥକ୍ୟର ସ୍ପଷ୍ଟ ସୀମାରେଖା

ଟଣାଯାଇପାରେନି । ଯଦିଓ ସମ୍ବଲପୁରୀ ଭାଷା ଶୁଦ୍ଧ ଓଡ଼ିଆ ଭାଷା ମଧ୍ୟରେ ଏକ ସ୍ପଷ୍ଟ ସୀମାରେଖା ଟଣାଯାଇପାରେ । ଅବଶ୍ୟ ଭାଷାର ବୈଶିଷ୍ଟ୍ୟ ପ୍ରଦାନ କରିବା ସମୟରେ ତୁଳନାତ୍ମକତାର ପ୍ରଶ୍ନ ଉଠୁନାହିଁ... ତଥାପି ପୂର୍ବରୁ ଭାଷାତତ୍ତ୍ୱବିଦ୍‌ମାନଙ୍କ ନିର୍ଣ୍ଣୟାନୁଯାୟୀ ଶୁଦ୍ଧ ଓଡ଼ିଆ ଭଷାରୁ ସମ୍ବଲପୁରୀ ଭାଷାର ବୈଶିଷ୍ଟ୍ୟ ନିର୍ଣ୍ଣୟ କରାଯାଇପାରେ ।

ଭାଷାର ବୈଶିଷ୍ଟ୍ୟ ସମ୍ପର୍କରେ ସୂଚନା ଦେବା ସମୟରେ ପ୍ରତ୍ୟେକ ଶବ୍ଦତତ୍ତ୍ୱ, ଅର୍ଥତତ୍ତ୍ୱ ତଥା ଧ୍ୱନିତତ୍ତ୍ୱ ଓ ବ୍ୟାକରଣ ଗତ ମୂଲ୍ୟକୁ ମୁଖ୍ୟ ଭାବରେ ଦେଖିବା ଆବଶ୍ୟକ । ଅବଶ୍ୟ ଏ କ୍ଷେତ୍ରରେ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା ସମ୍ଭବ ନ ହେଲେ ହେଁ ସେ ଗୁଡ଼ିକର ସ୍ଥୂଳ ପରିଚୟ ଦେବାଲାଗି ଏଠାରେ ଯତ୍ନ କରାଯାଉଅଛି ।

ଭାଷାତତ୍ତ୍ୱ ହେଉଛି ଭାଷା ଅଧ୍ୟୟନର ଏକ ମୁଖ୍ୟ ଦିଗ । ତେଣୁ, ପ୍ରଥମତଃ ସମ୍ବଲପୁରୀ ଭାଷାକୁ ଭାଷାତତ୍ତ୍ୱ ତଥା ଧ୍ୱନିତତ୍ତ୍ୱ ଦୃଷ୍ଟିରୁ ବିଚାର କରାଯାଇ ପାରେ :-

୧. ଅପନିହିତ :- "ଯଦି ଶବ୍ଦ ମଧ୍ୟରେ ସମପ୍ରକୃତିର ସ୍ୱର ବା ଅର୍ଦ୍ଧସ୍ୱର ଯଥାସ୍ଥାନରେ ଥାଇ ସୁଦ୍ଧା ପୂର୍ବରେ ଉଚ୍ଚାରିତ ହୁଏ, ତେବେ ସେହି ସ୍ୱରାଗମକୁ ଅପିନିହିତ କୁହାଯାଏ ।" (ଭାଷା ବିଜ୍ଞାନର ରୂପରେଖ - ଡ଼ଃ ବାସୁଦେବ ସାହୁ - ପୃ. ୧୩୯), ଅପିନିହିତ ହେଉଛି ସମ୍ବଲପୁରୀ ଭାଷାର ମୁଖ୍ୟ ବୈଶିଷ୍ଟ୍ୟ । ଯଥା :- ପାଣି = ପାଏନ୍, ଚାରି = ଚାଏର୍, ରାଶି = ରାଏସ୍ ।

୨. ସମ୍ବଲପୁରୀ ଶବ୍ଦର ପ୍ରତି ଅଯୁକ୍ତ ଅନ୍ତ୍ୟାକ୍ଷରରେ ହଳନ୍ତ ଆଗମ ହୋଇଯାଏ - ଯଥା :- ପଟର = ପଟର୍, ପଥର = ପଥର୍ ।

୩. ପ୍ରାନ୍ତ ସ୍ୱରାନ୍ତରେ ଚନ୍ଦ୍ରବିନ୍ଦୁ (ଁ)ର ଆଗମନ ହୁଏ । ଯଥା :- ମୁଇଁ, ତୁଇଁ , ଦସିଁ ଇତ୍ୟାଦି । ଏହି ବିଶେଷତ୍ୱ ଦକ୍ଷିଣାଞ୍ଚଳୀୟ ଓଡ଼ିଆରେ ମଧ୍ୟ ଲକ୍ଷ କରାଯାଏ ।

୪. ସମ୍ବଲପୁରୀ ଭାଷାର ଏକ ମୁଖ୍ୟ ଲକ୍ଷଣ ହେଉଛି ଯୁକ୍ତାକ୍ଷର ଲୋକ । ଯଥା : ଜ୍ୱାଇଁ=ଜୁଏଁ, ଆମ୍ବ = ଆମ୍, ଚକ୍ର = ଚକା ଇତ୍ୟାଦି । ଯୁକ୍ତାକ୍ଷର ଲୋକ ହେତୁରୁ ସମ୍ବଲପୁରୀ ଭାଷା ମଧୁର ଓ କୋମଳ । ଏହି ଭାଷା କହିବା ସମୟରେ ଏହାରି ଭିତରୁ ସାଙ୍ଗୀତିକତା ଉପଲବ୍ଧ ହୋଇଥାଏ । ପ୍ରକାଶଥାଉକି ଓଡ଼ିଶାରେ ଅନ୍ୟ କେତେକ ଅଞ୍ଚଳରେ ମଧ୍ୟ ଏହି ବିଶେଷତ୍ୱ ଲକ୍ଷ କରାଯାଏ ।

୫. ଶୁଦ୍ଧ ଓଡ଼ିଆ ଭାଷାରେ ସମାପିକା କ୍ରିୟା ପରେ 'ନାହିଁ'ର ପ୍ରୟୋଗ ହୋଇଥାଏ; ମାତ୍ର ସମ୍ବଲପୁରୀ ଭାଷାରେ ସମାପିକା କ୍ରିୟାର ପୂର୍ବରୁ ଏହାର ପ୍ରୟୋଗ ହୁଏ । ହିନ୍ଦୀ ତଥା

ଛତିଶଗଡ଼ୀ ଭାଷାରେ ମଧ୍ୟ ସମ୍ବଲପୁରୀ ଭାଷା ପରି ସମାପିକା କ୍ରିୟା ପୂର୍ବରୁ 'ନାହିଁ'ର ପ୍ରୟୋଗ ହୋଇଥାଏ-ଯଥା :-

| | | |
|---|---|---|
| ଓଡ଼ିଆ | ହିନ୍ଦୀ | ସମ୍ବଲପୁରୀ |
| ଯିବିନି | ନେହିଁ ଜାଉଙ୍ଗା | ନାଇଁ ଯାଏଁ |
| ଖାଇବି·ନାହିଁ | ନେହିଁ ଖାଉଙ୍ଗା | ନାଇଁ ଖାଏଁ |

ସୁତରାଂ, ହିନ୍ଦୀ 'ନେହିଁ'ରୁ ସମ୍ବଲପୁରୀ 'ନାଇଁ' ର ସୃଷ୍ଟି ହୋଇଥିବା ଅନୁମାନ କରାଯାଇପାରେ।

୬. ଷ୍ଟାଣ୍ଡାର୍ଡ ଓଡ଼ିଆ ଶବ୍ଦର ଶେଷ 'ଅ'କାର ସମ୍ବଲପୁରୀ ଶବ୍ଦରେ ଲୋପପାଏ। କାରଣ, 'ଅ'କାରାନ୍ତ ଶବ୍ଦ ଶେଷରେ ହଳନ୍ତ ଆଗମ ହୋଇଥାଏ। ଯଥା :- ଘର=ଘର୍, ଭାତ= ଭାତ୍, ଜିଭ= ଜିଭ୍, କାମ =କାମ୍।

୭. ଶବ୍ଦର ମଧ୍ୟରେ ଥିବା 'ଇ' କେତେକ ସ୍ଥଳରେ ଅତିହ୍ରସ୍ୱ ହୁଏ। ଫଳରେ ସେଠାରେ 'ଇ' ନଥିଲା ଭଳି ଜଣାପଡ଼େ। ଯଥା :- କରିବି = କର୍ମି, ପଢିବୁ = ପଢ୍ମି।

୮. କେତେକ ସ୍ଥଳରେ ଏ = ଇ ହୁଏ। ଏଠାରେ= ଇଠାରେ, ଏସ୍ଥାନେ = ଇଠାନେ। ଅନ୍ୟ କେତେକ ସ୍ଥଳରେ 'ଇ' ମଧ୍ୟ 'ଏ' ହୁଏ। ଭିଣୋଇ = ଭିନେଇ।

୯. କେତେକ ସ୍ଥଳରେ ଓ = ଉ ହୁଏ, ଯଥା :- ଓଦା = ଉଦା, ଶୋଇବା = ଶୁଇବା, ଔଷଧ = ଉଷୋ। ବାଲେଶ୍ୱର ଅଞ୍ଚଳରେ ମଧ୍ୟ କେତେକ କ୍ଷେତ୍ରରେ ଓ = ଉ ହେବାର ଦୃଷ୍ଟାନ୍ତ ଅଛି। ଯଥା :- ଗୋଡ଼ = ଗୁଡ଼।

୧୦. ଶୁଦ୍ଧ ଓଡ଼ିଆ ଭାଷାର 'ଣ' କେତେକ ସ୍ଥାନରେ 'ନ' ହୁଏ। ବଣ=ବନ, ଜଣ=ଜନ, ଇତ୍ୟାଦି।

୧୧. କେତେକ ଶବ୍ଦରେ 'ଡ଼'= ର ହୋଇଯାଏ। ବାପୁଡ଼ା = ବୁପ୍ରା, ଦଉଡ଼ି = ଦଉରି, ମାଙ୍କଡ଼ = ମାଁକର।

୧୨. 'ଳ' ସର୍ବତ୍ର 'ଲ' ଉଚ୍ଚାରିତ ହୋଇଥାଏ। ତଳ = ତଲ, ଯେତେବେଳେ = ଯେତେବେଲେ।

୧୩. କେତେକ ସ୍ଥଳରେ ଦନ୍ତ୍ୟ 'ସ', 'ହ' ହୁଏ। ସେମାନେ = ହେମାନେ, ସେମିତି = ହେନ୍ତା,

୧୪. ଆତ୍ମନେପଦୀ କ୍ରିୟାରେ 'ବ', 'ମ' ହୋଇଯାଏ। କରିବି = କର୍ମି, ଯିବି = ଯିମି।

ସରଳ ବାକ୍ୟ - ୧. କୁଇଲି କୁହୁ କୁହୁ କର୍ସି

୨. ହେ ପୁରୀ ଗଲେ

| କର୍ତ୍ତା | ସମାପିକା କ୍ରିୟା | ଅସମାପିକା କ୍ରିୟା |
|---|---|---|
| ୧. କୁଇଲି | କର୍‌ସି | - |
| ୨. ହେ(ସେ) ଗଲେ | ଗଲେ | - |

ଯୌଗିକ ବାକ୍ୟ - "ଦୁଇ ବା ତତୋଽଧିକ ପରସ୍ପର ନିରପେକ୍ଷ ସରଳ ବାକ୍ୟର ସଂଯୋଗରେ ଯେଉଁ ବାକ୍ୟ ଗଠିତ ହୋଇଥାଏ, ତାହାକୁ ଯୌଗିକ ବାକ୍ୟ କୁହାଯାଏ।"

(ସର୍ବସାର ବ୍ୟାକରଣ ପୃ : ୨୪୨)

ଉଦାହରଣ- 'ସକାଲ୍ ପାହେଲା, ସୁରୁଜ୍ ଉଦ୍‌ଲେ ଆରୁ ଚରେଇମାନେ ଗଗାଲେ।'

୧. ସକାଲ୍ ପାହେଲା

୨. ସୁରୁଜ୍ ଉଦ୍‌ଲେ

୩. ଚରେଇମାନେ ଗଗାଲେ

ଉପରୋକ୍ତ ବାକ୍ୟରେ ତିନୋଟି ନିରପେକ୍ଷ ବାକ୍ୟର ସଂଯୋଗ ହୋଇଛି, ତେଣୁ ଏହା ଯୌଗିକ ବାକ୍ୟ।

ଜଟିଳ ବାକ୍ୟ- ପରସ୍ପର ସଂପେକ୍ଷ ଦୁଇ ବା ତତୋଽଧିକ ଖଣ୍ଡବାକ୍ୟ ମିଳନରେ ଯେଉଁ ବାକ୍ୟ ଗଢା ହୋଇଥାଏ, ତାହାକୁ ଜଟିଳବାକ୍ୟ (complex sentence) କୁହାଯାଏ। ପ୍ରତ୍ୟେକ ଜଟିଳବାକ୍ୟର ଗୋଟିଏ ପ୍ରଧାନ ବାକ୍ୟ (Principal clause) ଥାଏ ଏବଂ ଅନ୍ୟଗୁଡିକ ଅପ୍ରଧାନ ଖଣ୍ଡବାକ୍ୟ (subordinate clause) ରୂପେ ବ୍ୟବହୃତ ହୋଇଥାନ୍ତି।

ଉଦାହରଣ- 'ମୁଇଁ ସପ୍‌ନେ ନାଇଁ ଭାବିଥାଇ ଯେ, ହେଦିନ ହେନ୍ତା ହେବା।'

ବାଚ୍ୟ- ଓଡିଆ ବାଚ୍ୟ ପରି ସମ୍ବଲପୁରୀ ବାଚ୍ୟ ଦୁଇ ପ୍ରକାର।

| ୧. କର୍ତ୍ତୃବାଚ୍ୟ | ୨. କର୍ମବାଚ୍ୟ |
|---|---|
| କର୍ତ୍ତୃବାଚ୍ୟ | କର୍ମବାଚ୍ୟ |
| ରାମ ରାବନ୍ କେ ମାଏଲେ | ରାମର୍ ହାତେଁ ରାବନ୍ ମଲା |

ଲିଙ୍ଗ- ସମ୍ବଲପୁରୀ ଲିଙ୍ଗ ତିନି ପ୍ରକାର। ଯଥା:- ପୁଲିଙ୍ଗ, ସ୍ତ୍ରୀଲିଙ୍ଗ, କ୍ଲୀବଲିଙ୍ଗ।

ସ୍ତ୍ରୀଲିଙ୍ଗ- ମହାରାନୀ, କୁମହାରେନ୍, ଘସିଏଁନ୍, ଗଣେନ

ଓଡିଆ ସ୍ତ୍ରୀ ଲିଙ୍ଗରେ ଶବ୍ଦର ଶେଷରେ 'ଉ' ଲାଗିବା ସମୟରେ ସମ୍ବଲପୁରୀ ସ୍ତ୍ରୀଲିଙ୍ଗରେ 'ନ' ଲାଗେ।

ପୁଲିଙ୍ଗ- . ମହାରାଜା, କୁମ୍ହାର, ଘର୍ଷିଆ, ଗଣ୍ଡା।

କ୍ଲୀବଲିଙ୍ଗ- ଶୁଦ୍ଧ ଓଡିଆରେ ଅପ୍ରାଣୀବାଚକ ଶବ୍ଦ ଗୁଡିକ କ୍ଲୀବଲିଙ୍ଗ ହୋଇଥାଏ। ସେହିପରି ସମ୍ବଲପୁରୀ ଭାଷାରେ ସେ ଗୁଡିକ କ୍ଲୀବଲିଙ୍ଗ। ଯଥା:- ଦିନ୍, ରାଏତ୍ ଗୁନ୍, ହାତ୍ ଇତ୍ୟାଦି।

ବଚନ- 'ଯାହାଦ୍ୱାରା ବସ୍ତୁର ବା ବ୍ୟକ୍ତିର ସଂଖ୍ୟା ଜଣାପଡେ ତାହାକୁ 'ବଚନ' କହନ୍ତି। ବିଶେଷ୍ୟ ପଦର ବଚନ ସଂସର୍ଗ ଅନୁସାରେ କାରକ, ବିଭକ୍ତି ପ୍ରତ୍ୟୟ ଏବଂ କ୍ରିୟାର ପରୁଷ ବଚନ ପ୍ରତ୍ୟୟ ନିର୍ଦ୍ଧାରିତ ହୁଏ।

ଯଥା:- ଗୁଟେ ଛୁଆ ଖାଏଲା।
ଗୁର୍‌ଦୁ ଛୁଆ ଖାଏଲେ।
ସମ୍ବଲପୁରୀ ଦ୍ୱିବଚନରେ 'ଟା' ଲାଗେ।
ଗୁଟେ ହଲିଆ ଯାଉଛେ
ଦୁଇଟା ହଲିଆ ଯାଉଛନ୍।

ଅବ୍ୟୟ- ଆର, ହେଲେଁ, ତବି, କେଥିର୍ ଇତ୍ୟାଦି ହେଉଛନ୍ତି ସମ୍ବଲପୁରୀ ଅବ୍ୟୟ ପଦ।

ଆର୍- ମୁଇଁ ଆର୍ ସୁଧା ସମ୍ବଲପୁର ଗଲୁଁ।
ହେଲେଁ- ହେନ୍ତା ହେଲେଁ ନାଇଁଚଲେ ଇନୁଁ
ତବି-ମୁଇଁ ତତେ ଇତ୍‌କି ବୁଝାଲିଁ ତବି ନାଇଁ ମାନଲୁ ?
ହେଥିର୍- ହେଥିର ଲାଗି ହେ ତୁଲିଆ ଫାରିକରି ପଲାଲା।

ବିଭକ୍ତି:-

ପ୍ରଥମା ବିଭକ୍ତି- 'ଟା', 'ଏ', 'ଇ' ପ୍ରଭୃତି ସମ୍ବଲପୁରୀ ପ୍ରଥମା ବିଭକ୍ତିର ଚିହ୍ନ।

ଛୁଆଟା ଭାତ୍ ଖାଏଲା।

ତୁଇଁ ଆମ୍‌ଟା ଆନ୍‌ଲୁ।

ଦ୍ୱିତୀୟା ବିଭକ୍ତି- 'କେ' ହେଉଛି ଦ୍ୱିତୀୟା ବିଭକ୍ତିର ଚିହ୍ନ ଯ୍

ରାମ୍ ରାବନ କେ ମାଏଲେ।
ପିଲାମାନେ ମାଛ (କେ) ଧରୁଛନ୍।
ମାଏଝୀ କେ ପର୍‌ତେ ନାଇନ।

ତୃତୀୟା ବିଭକ୍ତି- ଥିଁ, ଥିନ୍, ଦିକିରି, ଇତ୍ୟାଦି ତୃତୀୟା ବିଭକ୍ତିର ଚିହ୍ନ।

ମୁଇଁ ଚକୁଥିଁ ଆମ୍ କାଟଲି।

ତୋର ଦିକିଛି କିଛି ନାଇଁ ହୁଏ।

ଚତୁର୍ଥୀ ବିଭକ୍ତି- ସମ୍ବଲପୁରୀ ଚତୁର୍ଥୀ ବିଭକ୍ତିର ଚିହ୍ନ ହେଉଛି 'କେ'।

ତୁଇଁ ଭିକାରୀ କେ ଭିକ୍ ଦେଲୁ।

ପଞ୍ଚମୀ ବିଭକ୍ତି- ନୁଁ, ଥୁଁ, ଠାନୁଁ, ଗଛନୁ, ରାମଠାନୁ ଇତ୍ୟାଦି ପଞ୍ଚମୀ ବିଭକ୍ତିର ଚିହ୍ନ।

ସୀତା ଚୂଆଁନୁଁ ପାଏନ୍ ଘିଚଲା।

ଏ ନୁନି ! ତୋର୍ ଠାନୁ ଆଉର କିଏ ସୁନ୍ଦର ?

ଷଷ୍ଠୀ ବିଭକ୍ତି- ଓଡିଆ ଷଷ୍ଠୀ ବିଭକ୍ତି ପରି ସମ୍ବଲପୁରୀ ଷଷ୍ଠୀ ବିଭକ୍ତିର ଚିହ୍ନ ହେଉଛି 'ର' କିନ୍ତୁ 'ଙ୍କର' ସ୍ଥାନରେ 'କର' ହୋଇଯାଏ। କାରଣ, ସମ୍ବଲପୁରୀ ଭାଷାରେ ଯୁକ୍ତାକ୍ଷର ରହେନାହିଁ। ତେଣୁ, କ+ଙ=ଙ୍କ ରୁ 'ଙ' ବର୍ଣ୍ଣ ଲୋପ ହୋଇ କେବଳ 'କ' ବର୍ଣ୍ଣଟି ରହିଲା।

ସେମାନଙ୍କର= ହେମାନ୍କର୍।

ଦଶରଥର ଚାଏର୍‌ଟା ପୁଓ।

ରାମର୍ କନିଆଁ।

ସପ୍ତମୀ ବିଭକ୍ତି- ଓଡିଆ ସପ୍ତମୀ ବିଭକ୍ତିରେ 'ଏ', 'ରେ', ଇତ୍ୟାଦି ଶବ୍ଦ ବ୍ୟବହୃତ ହୋଇଥାଏ। ମାତ୍ର ସମ୍ବଲପୁରୀ ସପ୍ତମୀ ବିଭକ୍ତିରେ 'ନେ', 'ଠାନେ' ପ୍ରଯୁକ୍ତ ହୁଏ।

ଯଥା:- ଗାଏ ଟା ଆଡିଆନେ ଚରୁଛେ।

କାରକ:-

କର୍ତ୍ତୃ-ରାମ ରାବନ୍‌କେ ମାଏଲେ।

କର୍ମ- ରାବନ୍ ରାମର ହାତେଁ ମର୍‌ଲା।

କରଣ-ମୁଇଁ ଚକୁଥି ଆମ୍ କାଟ୍‌ଲି।

ସଂପ୍ରଦାନ- ମାଁ ଭିକାରୀକେ ଭିକ୍ ଦେଲେ।

ଅପାଦାନ- ଗଛନୁଁ ଶୁଖା ପତର୍ ପଡୁଛେ

ଅଧିକରଣ-ଗାଏଟା ପଡିଆନେ ଚରୁଛେ।

ଯେ କୌଣସି ଭାଷାର ଶବ୍ଦଗତ ବୈଶିଷ୍ଟ୍ୟ ଦେବା ସମୟରେ ସେହି ଅଞ୍ଚଳରେ ପ୍ରଚଳିତ

ଭାଷାର ବିପୁଳାଂଶ ପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ । ମାତ୍ର ସମ୍ବଲପୁରୀ ଭାଷାର ଲିଖିତ ସାହିତ୍ୟ ପ୍ରତି ଏ ପର୍ଯ୍ୟନ୍ତ କୌଣସି ଆଲୋକପାତ ହୋଇନି । ସମ୍ବଲପୁରୀ ମୌଖିକ ସାହିତ୍ୟ ବା ଲୋକସାହିତ୍ୟ ଦୃଷ୍ଟିଗୋଚର ହୁଏ । ଲୋକ ସାହିତ୍ୟ ଗବେଷକମାନେ ଏହା ପ୍ରତି ସଯନ୍ ଥିବାର ଅନୁମାନ କରାଯାଇଛି, ଏବଂ ଏ ବିଷୟରେ ଅନେକେ ଗବେଷଣାରତ । ସେହି ପରପ୍ରେକ୍ଷୀରେ ସମ୍ବଲପୁରୀ ଶବ୍ଦ ସମ୍ଭାରକୁ ପରୀକ୍ଷା କରାଯାଇପାରେ ।

ପ୍ରଥମରୁ କୁହାଯାଇଛି, ଓଡିଆ ଭାଷାତତ୍ତ୍ୱବିଦ୍‌ମାନେ ସମ୍ବଲପୁରୀ ଭାଷାକୁ ଷ୍ଟାଣ୍ଡାର୍ଡ ଓଡିଆ ଭାଷାର ଏକ ଉପଭାଷା ବୋଲି ନିର୍ଣ୍ଣୟ କରିଛନ୍ତି । ସେହି ମତକୁ ଅନୁଧାନ ପୂର୍ବକ ବିଚାରକଲେ, ସମ୍ବଲପୁରୀ ଶବ୍ଦ ସମୁହକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ । ଯଥା ତଦଭବ ଓ ଦେଶଜ ।

ତଦ୍‌ଭବ- ମୂଳ ଭାଷାରୁ ପରିବର୍ତ୍ତିତ ବା କ୍ଷୟପ୍ରାପ୍ତ ଶବ୍ଦ ଗୁଡିକର ନାମ ତଦ୍‌ଭବ । ମୂଳ ଷ୍ଟାଣ୍ଡାର୍ଡ ଓଡିଆ ଭାଷାରେ ତତ୍‌ସମ ନାମକ ଏକ ଶବ୍ଦଗୋଷ୍ଠୀ ଅଛନ୍ତି, ମାତ୍ର ସମ୍ବଲପୁରୀ ଭାଷାରେ ତତ୍‌ସମ ଶବ୍ଦ ମୋଟେ ନାହିଁ କହିଲେ ଅସମୀଚୀନ ହେବନାହିଁ କେତୋଟି ଆବଶ୍ୟକୀୟ ଶବ୍ଦ ଛଡା ତତ୍‌ସମ ଶବ୍ଦ ସମ୍ବଲପୁରୀ ଭାଷାରେ ନାହିଁ । ବରଂ ମୂଳ ଓଡିଆ ଭାଷାରୁ ପରିବର୍ତ୍ତିତ ବା କ୍ଷୟପ୍ରାପ୍ତ ତଦ୍‌ଭବ ଶବ୍ଦସମ୍ଭାର ରହିଛି ।

| ଓଡିଆ | ସମ୍ବଲପୁରୀ | ଓଡିଆ | ସମ୍ବଲପୁରୀ |
|---|---|---|---|
| ଘରଣୀ | ଘରନୀ | ସିମୁଳୀ | ସେମେଲ୍ |
| ଅଳତା | ଅଏଲତା | ଔଷଧ | ଉ୍‌ଷୋ |
| ଅଇରା | ଅଏଁରା | ବାପୁଡା | ବୁପରା |
| ଅଇଠା | ଅଏଁଠା | କୁମ୍ଭାର | କୁମହାର |
| ପୁତ୍ | ପୂତା | ଭଉଣୀ | ବହେନ |
| ଭଅଁର | ଭମର | ଅଅଁଳା | ଅଏଁଲା |
| ବକ | ଚକା | ଆଖି | ଆଏଁଖ |

ଏହିପରି ଅସଂଖ୍ୟ ତଦ୍‌ଭବ ଶବ୍ଦ ରହିଛି । କ୍ଷୁଦ୍ର ପରିସର ମଧ୍ୟରେ ସେ ସବୁର ଉଦାହରଣ ଦେବା ସମ୍ଭବ ନୁହେଁ । କେବଳ ମୂଳରୂପରେ କେତୋଟି ଶବ୍ଦ ଏଠାରେ ଦିଆଗଲା ।

ଦେଶଜ ଶବ୍ଦ:- ମୌଖିକ ଭାବରେ ସମ୍ବଲପୁରୀ ଭାଷା ସୁପ୍ରଚଳିତ । ଅବଶ୍ୟ ଅଜ୍ଞାତ ମୂଳଶବ୍ଦକୁ ଦେଶଜ କହିବା ଭାଷାତତ୍ତ୍ୱରେ ନିରାପଦ ନୁହେଁ, ତଥାପି ଲୋକଙ୍କ ମୁଖରେ ଉଚ୍ଚାରିତ

କେତେକ ଦେଶଜ ଶବ୍ଦ ମଧ୍ୟ ସମ୍ବଲପୁରୀ ଭାଷାରେ ଅଛି । ଅବଶ୍ୟ, ତାହା ଏ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇନାହିଁ । ତେଣୁ, ସେ ଗୁଡିକୁ 'ଦେଶଜ' ନାମ ପ୍ରଦାନ କରି ସେ ଶବ୍ଦ ମଧ୍ୟରୁ କେତୋଟିକୁ ଏହି ବିଭାଗୀକରଣରେ ଦିଆଗଲା:-

ଅଏନ୍, ଅଏରି, ଅଏସୋ, ଅକ୍ତା, ଅଖ୍ଲା, ଅଙ୍ଗେନ୍, ଅଛାଁତ, ଅଟକାବା, ଅଟପଟିଆ, ଅଁଟାଲି, ଅଠପର, ଅଠଁବ ଅତଙ୍ଗ୍, ଅଡକା, ଅଡେଇ, ଅଁତରା, ଆଖରି, ଅଗାଡେ, ଆଘୋ, ଆଁପରି, ଆଁଟବା, ଆଁଠି, ଆତକି, ଆତ୍ କେରିଆ, ଆଦ୍ରି, ଆମଟ, ଇଁଚ୍ରାବା, ଇଛେନ, ଇନର୍, ଉଆଁଲୁ, ଉଇଲ, ଉଓ, ଉଚାବା, ଉଦ୍ଲିଆ, ଉକି, ଉଖଲ, ଉଖି, ଉଖଲା, ଉପତାର, ଉର୍କୁଲା, ଉର୍ଘା, ଉଘାତୁଲା, ଉଚକି, ଉଛନା, ଉକ୍ଲାବା, ଉଦୁର୍ଛା, ଉସ୍ମା, କପସି, କର୍ଚାଡି, କବ୍ନା, କର୍ଡି, କଁଥଲି, କଏଁଟ୍, ଖକସି, ଖକ୍ସୋ, ଖଇଟ୍, ଖଟ୍ମା, ଖକୋ, ଖମାଲୁ, ଖପ୍ସା, ଖଖ୍ରୋ, ଖଗ୍ଲା, ଗିଜ୍ରି, ଗୁନ୍ଦାଲ, ରସେନ୍, ରେଜକି, ମାଖନ, ଗୁଡି, ଥିର୍ ଇତ୍ୟାଦି ।

ଏହିପରି ଶହ ଶହ ଦେଶଜ ଶବ୍ଦ ଅଛି, ସେ ସବୁର ଉଦାହରଣ ଏଠାରେ ଦେଇହେବ ନାହିଁ ।

ଉପଭାଷାର ମୂଳ ବୈଶିଷ୍ଟ୍ୟ ହେଉଛି, ଏହି ଭାଷାରେ ସାହିତ୍ୟ ସୃଷ୍ଟି ହେବାପରେ ଏହା ଏକ ଷ୍ଟାଣ୍ଡାର୍ଡ ବା ଶୁଦ୍ଧ ଭାଷାରେ ପରିଗଣିତ ହୋଇଥାଏ । ସମ୍ବଲପୁରୀ ଭାଷାରେ ସେହିପରି ଅନେକ ସାହିତ୍ୟ ସୃଷ୍ଟି ହୋଇଛି, ଯାହାକୁ ଅଞ୍ଚଳର ତଦ୍‌ବିଦ୍ ମାନେ ସେ ସମ୍ପର୍କରେ ଅଧିକ ଅଧିକତର ଗବେଷଣାର ପ୍ରଚେଷ୍ଟା କରୁଛନ୍ତି । ସମ୍ବଲପୁରୀ ଭାଷାର ମୌଖିକ ସାହିତ୍ୟ ଅଧିକ ବଳିଷ୍ଠ । ଅଯୁକ୍ତାକ୍ଷର ବ୍ୟବହୃତ ହେଉଥିବାରୁ ଏହି ଭାଷାର ସାଙ୍ଗୀତିକତା ଯଥେଷ୍ଟ ରହିଛି । ସମ୍ବଲପୁରୀ ଲୋକ ସାହିତ୍ୟର କାବ୍ୟିକ ଛଟା ଅବର୍ଣ୍ଣନୀୟ । ତେଣୁ, ଏ ଭାଷାରେ ନିଶ୍ଚିତ ଭାବରେ ଲିଖିତ ସାହିତ୍ୟ ରହିଛି ଓ ତାହା ଅଧିକ ଗବେଷଣ ଅପେକ୍ଷା ରଖେ ।

ବର୍ତ୍ତମାନ, ଏ ଅଞ୍ଚଳର କବି ଓ ଲେଖକଗଣ ମଧ୍ୟ ଭାଷାରେ ସାହିତ୍ୟ ସୃଷ୍ଟି କରିବାରେ ଉଦ୍ୟମଶୀଳ । ସୁତରାଂ ସମ୍ବଲପୁରୀ ଭାଷାରେ ସାହିତ୍ୟ ସୃଷ୍ଟି ହେଲେ ଏହା ଯେ ଏକ Standard ବା ବିଶୁଦ୍ଧ ଭାଷାରେ ପରିଗଣିତ ହେବା ଏହା ଅବଶ୍ୟମ୍ଭାବୀ ।



# ସମ୍ବଲପୁରୀ ଲୋକଗୀତ :
# 'ହୁମୋ-ବଉଲୀ'

କୁମାର ସରଦାର ହସନ

-ଉଲି କେ ଡୁହୁରି କେତେ ବଉଲୀରେ
ଉଲି କେ ଡୁହୁରି କେତେ
ଉଲି ଖିଙ୍ଗିଗଲେ କହେବୁ ମୋତେ
ଉଲି ଖିଙ୍ଗିଗଲେ କହେବୁ ମୋତେ
ଜୁଲି ଖଞ୍ଜି ଦେମି ତୋତେ ବଉଲୀରେ
ଜୁଲି ଖଞ୍ଜି ଦେମି ତୋତେରେ....

ଆଉ ପ୍ରକୃତରେ ଏ ସମ୍ବଲପୁରୀ ଲୋକଗୀତ "ହୁମୋ-ବଉଲୀ" ହେଉଛି ଜୁଲୀ ଖଞ୍ଜି ଦେବାର ଗୀତ ଅର୍ଥାତ୍ ପାରସ୍ପରିକ ସ୍ନେହ, ସହାନୁଭୁତି, ସଂଗତିର ଲୋକସଙ୍ଗୀତ, କେବଳ ପାରିବାରିକ ନୁହେଁ, ସାମାଜିକ, ଅର୍ଥନୈତିକ ସଂଗତି, ଜାତିପ୍ରେମ - ଦେଶପ୍ରେମ - ବିଶ୍ୱପ୍ରେମର ଅଫୁରନ୍ତ ଆନନ୍ଦଭରା ରାଗିଣୀ, ମିଳନର ମୂର୍ଚ୍ଛନା; ସେ ମିଳନ କେବଳ ପ୍ରଣାୟଶ୍ରୟୀ ପୁରୁଷ ସ୍ତ୍ରୀ ମିଳନ ନୁହେଁ, ମହାମାନବିକ ହୃଦୟର ଆନ୍ତରିକ ନିବିଡ଼ ଅଶ୍ଳେଷର ବାଙ୍ମୟ ମିଳନ ।

"ସଜନୀ" ପରି ଏହା ମଧ ଅତ୍ୟନ୍ତ ଲୋକପ୍ରିୟ । "ସଜନୀ" ସହିତ ଏହାର ମୂଳ ପାର୍ଥକ୍ୟ କେବଳ ଏତିକି ଯେ "ସଜନୀ" ସ୍ତ୍ରୀ-ପୁରୁଷ ଉଭୟେ ଗାଇ ପାରୁଥିବା ସ୍ଥଳେ "ହୁମୋ ବଉଲୀ" ଉପରେ କିଶୋରୀ, ଯୁବତୀ ଝିଅମାନଙ୍କର ଏକଚାଟିଆ ଅଧିକାର । ଏହା କେବଳ ସ୍ତ୍ରୀ ମାନଙ୍କର ଗୀତ, ଏଣୁ ଏଥିରେ ସ୍ତ୍ରୀ ଜୀବନ-ସଂଘର୍ଷ ସମ୍ଭୁତ ଯେତେକ ତିକ୍ତ କଷାୟ-ମଧୁର ଅନୁଭୂତିର ପ୍ରଚ୍ଛନ୍ନତା ଏଥିରେ ସମାଧିକ ପରିମାଣରେ ବିଦ୍ୟମାନ । ତଥାପି ଏହା ଅପୂର୍ଣ୍ଣ, କାରଣ ଏହାର ଜୀବ ଜଗତର ତଥାକଥିତ ଅର୍ଦ୍ଧେକ ଭାଗକୁ ମାତ୍ର ପ୍ରତିଧ୍ୱନିତ କରେ । ତଥାପି ଏହି ଅପୂର୍ଣ୍ଣତା ମଧ୍ୟରେ ହିଁ ଯେମିତି ଏହା ସ୍ୱୟଂ ସମ୍ପୂର୍ଣ୍ଣ । ଏହି ହୁମୋ-ବଉଲୀରେ ମଧ ଆମ ଆଖି ଆଗରେ ଫୁଟି ଉଠେ ସାମାଜିକ ଜୀବନର ଚଳନ୍ତି ଚିତ୍ର ପ୍ରତିମା ସବୁ ଗୋଟି ଗୋଟି ହୋଇ, ତାର ଅତୀତ, ବର୍ତ୍ତମାନ ଆଉ ସମ୍ଭାବନାମୟ ଭବିଷ୍ୟତର ଆଲେଖ୍ୟ । ସେ ଆଲେଖ୍ୟ ସୁର - ସଙ୍ଗୀତର,

ହୃଦୟର ମାଦକ ଓ ମୁକ୍ତ ପରିପ୍ରକାଶର । ସାମାଜିକ ଜୀବନର ଯେତେ ହସ କାନ୍ଦ ୟାର ଧାଡ଼ି ଧାଡ଼ି ଭିତରେ ନିମଗ୍ନ । ନାରୀ ଜୀବନର ନିୟତିର ଗୀତ ଏଇ ହୁମୋ ବଉଲୀ, ନାରୀ ଜୀବନର ପ୍ରଣୟ କାହାଣି ଏଇ ହୁମୋ-ବଉଲୀ, ନାରୀ ଜୀବନର ସିନ୍ଦୁରବିନ୍ଦୁ, ଆଉ ଦୁଃଖ ସିନ୍ଧୁର ଅଜସ୍ର ଚଳଚଞ୍ଚଳ ଲହଡ଼ିରେ ଆନ୍ଦୋଳିତ କରୁଣ ବିଲାପ ଏଇ ସଜନୀ ଗୀତର ଜୁଲୀ ଗୀତ ହୁମୋ-ବଉଲୀ ତାର ଭବିଷ୍ୟତର ଆଶା, ଆଶ୍ୱାସନା, ସ୍ୱପ୍ନ, କଳ୍ପନା ଏଥିରେ ବିଭୋର ଆଉ ରୂପାୟିତ ।

ନିଜ ହୃଦୟର ବ୍ୟଥାକୁ ଜଣେ ଅନ୍ତରଙ୍ଗ ବନ୍ଧୁ ପାଖରେ ପ୍ରକାଶ କରି ପାରିଲେ ମନରୁ ଏକ ଭାରୀ ବୋଝ ଉତୁରି ଯାଇ ହାଲୁକା ଲାଗେ । ଏଣୁ ବାନ୍ଧବୀ ବଉଳ ବା ବଉଳୀ ପ୍ରତି ତାର ଏ ଆନ୍ତରିକ ଆବେଦନ, ଏ ସମ୍ବୋଧନ - ସଜନୀ ଓ ହୁମୋ-ବଉଲୀ ଯମଜ । ଦୁଇ ଭଉଣୀ ସଜନୀ, ବଡ଼ ଭଉଣୀର ଆଗ୍ନେୟ ଆନ୍ତରିକତା ପୂର୍ଣ୍ଣ କଣ୍ଠରେ ବିପ୍ଳବର ସ୍ୱର ଧ୍ୱନିତ ହେଉଥିବା ବେଳେ ବଉଳୀ, ଅତି ଗେଲ ବସତରରେ ବଢୁଥିବା ଅଲିଅଳୀ ସାନ ଭଉଣୀର ଆତ୍ମାଭିମାନୀ ସ୍ୱର ଏକାନ୍ତ କରୁଣ ଆଉ ମର୍ମନ୍ତୁଦ । ଏମିତିକି ଅତି ସାଧାରଣ ଏକ କଥାରେ ଅଭିମାନ କରି ଛଳ ଛଳ ଆଖିରେ କବାଟ କଣରେ ଲୁଚି ରୁଷିଛି । କେହି ବୁଝାଇବାକୁ ଗଲେ ଦୀର୍ଘଶ୍ୱାସ ସହିତ ଆଖିରୁ ତାର ଛୁଟୁଛି ଧାର ଧାର ଅଶ୍ରୁ ।

ସଜନୀ ଦିବାଲୋକରେ ସମସ୍ତ ସାମଜିକ ସତ୍ୟତାର ମୁଖା ଖୋଲିଦେଲା ବେଳେ, ବଉଲୀ ରାତିର ଘନାନ୍ଧକାର ମଧ୍ୟରେ ହୃଦୟର ଅନ୍ଧକାରାଛନ୍ନ କୋଣ ନିକଟରେ ଯେମିତି ପାଦପ୍ରଦୀପର ଭୂମିକାରେ ଅବତିତା ହୁଏ । ଏକ ଗାଉଁଲୀ ଅପାଠୋଇ ଯୁବତୀ ଝିଅର ଲାବଣ୍ୟଶ୍ରୀରେ ରଞ୍ଜିତ ଏଇ ବଉଲୀ ତାର ହୃଦୟର ନିଷ୍କପଟତା, ସରଳତା, ନିରୀହତା, ଦୟା, କ୍ଷମା, ଶାନ୍ତ, ସହାନୁଭୂତି, ଧୈର୍ଯ୍ୟ, ପ୍ରୀତି ସବୁ ଯେପରି ଏକାଧାରରେ ଏଥିରେ ସମାହିତ । ବଉଲୀ ହେଉଛି ଅନ୍ତରର ନିବିଡ଼ ତମିସ୍ରାରେ ଆଲୋକର ଗୀତ - ଗାଉଁଲୀ ନାରୀ ଜୀବନର ଆଲୋକ ତୀର୍ଥ ।

East and West : home is best, 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ....'

-ହୁମୋ ନୁନ ନୁନ ବଉଲୀରେ
ହୁମୋ ନୁନ ନୁନ ହୁଶ
ନଖାଉ ନପିଉ ଗୁଆ ପଣସ ୨
ନଯାଉଁ ତୁମର ଦେଶ ବଉଲୀରେ
ନଯାଉଁ ତୁମର ଦେଶରେ....

ଦୁମୋ-ବଉଲୀରେ ସମାଜ ଚିତ୍ର :-

-କଦଳି କାଟିଲି ଖୁରେ ବଉଲୀରେ
କଦଳି କାଟିଲି ଖୁରେ
କାହିଁକି ମାତା ଗୋ କାନ୍ଦୁଛ ଘରେ ୨
ବର୍ଷକେ ଆସିମି ଥରେ ବଉଲୀରେ
ବର୍ଷକେ ଆସିମି ଥରେ....

ଏ ଚିତ୍ର ସବୁ ଆମ ସମାଜର ନିତିଦିନର ଘଟଣା, ହସ-କାନ୍ଦ, ଆଶା-ନିରାଶାର ଅମଳିନ ଜୀବନ୍ତ ଘରୋଇ ଚିତ୍ର :-

-ବୈଶାଖ ମାସଟା ଲେଉଟି ଗଲା ୨
ଫଗୁନ୍ ପୁନୀ ଯାତ୍ରା ନିକଟ ହେଲା
ମୋ ଭାଇ ନେବାକୁ ଆସିଲା ବଉଲୀରେ....
ଯା ଯାରେ ଭାଇ ତୋ କୁଞ୍ଜ ବନକୁ ୨
ଆନିବୁ ଜୀବଧନକୁ ବଉଲୀରେ.......

ଝିଅ ଚାହିଁ ବସିଛି ବାପଘର ଯିବ ବୋଲି । ଅନେକ ଦିନରୁ ବୋଉକୁ ଦେଖିନି; ସାନ ସାନ ଭାଇ-ଭଉଣୀ ତାର ମନେ ପଡୁଛନ୍ତି ; ଆଉ ଭାଇ ଏତେଦିନ ହେଲା କାହିଁକି ଆସି ନାହାନ୍ତି, ଯାଇଥିବେ ଭାଉଜଙ୍କୁ ଆଣି ।

ଢ଼ବା ଘର ଘଁସୁଥିଲି ବଉଲୀରେ ୨
ବାପା ଆଏବେ ବୋଲି ନଜାନି ଥିଲି
ବାପା ଆନିଦେବେ କଟକିଆ ଶାଢ଼ି
ମାଆ ଆନି ଦେବା ବଉଲକେରୀ
ମନେକରି ବହୁ ଭାଙ୍ଗିଥା ଗୁଆ
ମୋର୍ଦବା ସୁପାରି ଖିଆ ବଉଲୀରେ...

ବାପଘରେ କିଛିଦିନ ରହିଲା ପରେ ଶାଶୁଘର କଥା ମନେ ପଡ଼ିଛି ଝିଅର, ସେ ଯିବାକୁ ଚାହୁଁଛି, କିନ୍ତୁ ସାଙ୍ଗ ସାଥିମାନେ କହୁଛନ୍ତି ଆଉ କିଛି ଦିନ ରହିଯିବା ପାଇଁ -

- କଟ କଟ କଟ କଟ ବଉଲୀରେ
କଟ କଟ କଟ କଟ

ବରସା ଆସିଣ ହେଲା ନିକଟ ୨
ବିଦା କକରି ଦିଅ ଝଟ ବଉଲୀରେ...

କିନ୍ତୁ ବର୍ଷା ଯେ ନିକଟ ହେଲାଣି, ନୂଆ ଫସଲ ବର୍ଷର ଆରମ୍ଭ, ନଗଲେ କିମିତି ହେବ। କେତେ କାମ; ପୁଣି ଶାଶୁ ଯେ ତାକୁ କେତେ ଭଲ ପାଆନ୍ତି -

- ମହୁଲ ଗଛର ପଟା ବଉଲୀରେ
ମହୁଲ ଗଛର ପଟା
ମୋ ଶାଶୁ ଘରର ପିନ୍ଧେନ କପଟା ୨
ଦୁହୁଲି ଯାଉଛେ ଅଁଟା ବଉଲୀରେ.....

ପୁଣି ସାବତ ମାଁ-

- ଛାନି କେ ଛାନି ଉତ୍ତର ବଉଲୀରେ...
ମାଁ ଥିଲେ ଝିଅ ଦେତା ଉତ୍ତର ୨
ମଉସୀ କଲା ଅନ୍ତର ବଉଲୀରେ....

X . X  X  X

- ବୁଚି ମାଠିଆର ଘିଅ ବଉଲୀରେ
ଆମର ଘରେ ଅଛି ଦୁର୍ପତୀ ଝିଅ ୨
ଟଙ୍କା ଗଣିକରି ନିଅ ବଉଲୀରେ....

- ତେତେଲ ପତର ଖାର ବଉଲୀରେ...
ଯେନ୍ ଦିନେ ଗନିବ ଟଙ୍କା ହଜାର ୨
ସେଦିନ ହେମି ତୁମର ବଉଲୀରେ......

- ଧାନ ବୁନ୍ଧେ ଗଲା ପାନି ବଉଲୀରେ...
ଆସ ଜେମାମଣୀ ଚାନ୍ଦୁଆ ଟାଣି ୨
ଦେହରେ ନବାଜୁ ପାଣି ବଉଲୀରେ....

- ଘରକୁ ଦିଶେ ଫୁଙ୍ଗଲ ବଉଲୀରେ.....
ଘର ତୁଙ୍ଗି ଦେଖ କେତେ ସୁନ୍ଦର
ପଡ଼ିଛେ ମାଛ ମଙ୍ଗର ବଉଲୀରେ.....

- ତାଲ ବରଡ଼ାର ଘର ବଉଲୀରେ.....
ଚଳାଇ ନେବା ହୋ ଥିଲାର ପୁଅ ୨
ଗରୀବ ଘରର ଝିଅ ବଉଲୀରେ.......

- ବର ପତର ଛେଦଲିଆ ବଉଲୀରେ.....
ତୋର ଦଦା ଭାଇ ଏଡ଼େ ନିର୍ଦ୍ଦୟା ୨
ନାଇଁ ଦେଲେ କତରିଆ ବଉଲୀରେ.....

- ଟୁପା ଟୁପା ଟୁପା ଟୁପା ଚଉଲୀରେ.....
ପାଚିଛେ ଜମ୍ବୁର୍ଲା ଫଡ଼କୁଛେ ଚମ୍ପା ୨
ଟଙ୍କା ଥିଲେ ଘନି ପକା ବଉଲୀରେ......

- ଦଲି କରେ କଟ କଟ ବଉଲୀରେ......
ମୋର ଭାଇ କପାଳେ ସୁନା ମୁକୁଟ ୨
ଘିନି ଦେମୁ ରନ୍ ଖଟ ବଉଲୀରେ......

- ନିଆଁ କରେ ରିବି ରିବି ବଉଲୀରେ.....
ଆଉର୍ ଚାରିଦିନ ଘରେ ରହିବି ୨
ଅଦେଖା ରାଇଜ ଯିବି ବଉଲୀରେ......

- କରଡ଼ି ଦୁଇଖଣ୍ଡ ଗଜା ବଉଲୀରେ... ୨
ମୋର ସାନ ଭାଇ ରାଇଜେ ରଜା... ୨
ସୁଖରେ ପାଲୁଛେ ପ୍ରଜା ବଉଲୀରେ.....

- ପର୍ବତେ ବାଜଇ ଖରା ବଉଲୀରେ....
ଉଠ ଯଶୋବନ୍ତୀ ଦେଇବ ଛରା ୨
କଲିଜାରେ ଦାଗ ଦେଇ ବଉଲୀରେ.....

- ଖଟ ଗାଡ଼େ ଲାଲ କଇଁ ବଉଲୀରେ....
ଜଣକୁ ଦଇବ ନେଲା ଛଡ଼ାଇ ୨
କଲିଜାରେ ଦାଗ ଦେଇ ବଉଲୀରେ....

- ଚୁଆଁରେ ପକାଲି ଗିଲ ବଉଲୀରେ....
  ଚୁଆଁ ଟରା ଟରା ମନ୍ଦାର ଫୁଲ ୨
  ଗୁଟେ ଛାଡ଼ି ଗୁଟେ ତୁଲ ବଉଲୀରେ....
- ଗଜ ବାହାଲର ଝରା ବଉଲୀରେ.....
  ପଡ଼ିଲେ ପଡ଼ିମି ପୁଲିଶେ ଧରା ୨
  ନିଶ୍ଚେ ଜିମିଁ ତୁମର ପରା ବଉଲୀରେ....
- ଟୁପୁଲି ଟୁପୁଲି ସୁତା ବଉଲୀରେ.....
  ତୋର ପରେ ନନୀ ଗଁଡ଼ା ଘଇତା ୨
  ଜାତିରେ ପକାମା କଥା ବଉଲୀରେ.....
- ପିପଲ କାଠକୁ କାଠ ବଉଲୀରେ....
  ଆମର ଗାଆଁଥ୍ ପାଉଁଚ ଘାଟ ୨
  ଗୁଡ଼ି ତଲେ ହାଟ ବଉଲୀରେ......
- ପାନିଗଲା ପାଉଁଚକୁ ବଉଲୀରେ.....
  ପାନ ଭାଙ୍ଗିଦେମି ଗୁଣମଣିକୁ ୨
  ଚଲି ଯିମା କଚେରୀକୁ ବଉଲୀରେ.....
- ପାନିଗଲା ଗାଆଁ ଖୁଲି ବଉଲୀରେ....
  ହାମର ଦେଶର ରଜା ଆନିଝେ ରାନୀ ୨
  ଡ଼େବିରୀ ଆଖିଟା କାନି ବଉଲୀରେ....
- ମହୁଲ ପତର ଲାଲ ବଉଲୀରେ....
  ରିଷେ ଚିରିଦେଲି ଲାଲ ଚାଦର ୨
  ଶୀତେ ବଡ଼ା ହରବର ବଉଲୀରେ....
- ତେତେଲ ଫଲେ ବନେ ବନେ ବଉଲୀରେ.
  ମୋତେ ଦେଇଦେଲ ରାଇଜର କୁନେ ୨
  ରଖିଥିବ ମନେ ମନେ ବଉଲୀରେ.....
- ନଡ଼ିଆ କଟା କେ କଟା ବଉଲୀରେ....
  ଚାରିମାସ ହେଲା ନକହୁ କଥା ୨
  କେଉଁ ଦୋଷ କଲି ବତା ବଉଲୀରେ....
- ଆହାରେ ବିରନ ଜରି ବଉଲୀରେ...
  ତୁମେ ନାଇଁ ଜାନ ମହବତ୍ କରି ୨
  ଦୁନିଆଁରେ ଗଲ ସରି ବଉଲୀରେ....
- ବାହାଲେ ବୁନିଲି ମୁଗ ବଉଲୀରେ....
  ତୋତେ ଦେଖି କରି ଲାଗୁଛେ ଲୁଭ ୨
  ବସିଯିମା ଗଜାମୁଗ ବଉଲୀରେ.....
- ଝିପି ଝିପି ଝିପି ଝିପି ବଉଲୀରେ.....
  କାହାକେ ସଜନୀ ଲେଖୁଛ ଲିପି ୨
  ଆଁଖିଲ ପଡୁଛେ ଥିପି ବଉଲୀରେ....
- ଥାଲି ପହଁରାଇ ଦେଲି ବଉଲୀରେ....
  ଥାଲି ସଙ୍ଗେ ମୁହିଁ ପହଁରି ଗଲି ୨
  ଜୀବନ ହରାଇ ଦେଲି ବଉଲୀରେ....
- କଟଙ୍ଗ ବାଉଁଶ ପୁଲା ବଉଲୀରେ....
  ମହାନଦୀର ପାନି ମାରୁଛେ ଦୁଲା ୨
  ସହର ତଲିଆ ପିଲା ବଉଲୀରେ.....
- ପାଣିକୁ ଧରିଲା ନିଲି ବଉଲୀରେ....
  କାହିଁଗଲା ତୋର ସାଙ୍ଗର ଜୁଲି ୨
  ଏକଲା ଆସିଛୁ ବୁଲି ବଉଲୀରେ.....
- ଦୁଲି ତଲେ ଗଲା ହଁସ ବଉଲୀରେ
  ତୋତେ କରି ଦେମି ବଙ୍ଗାଲୀ ବେଶ ୨
  ବୁଲୁଥିବୁ ଦେଶ ଦେଶ ବଉଲୀରେ....
- ଗାଆଁ ଖୁଲି ଗଲା ଲହ ବଉଲୀରେ.....
  ଗାଆର ଗଉଁଟିଆ ଆନଛେ ବହ ୨
  ସୁନାର୍ ପାନି ଗୋଡ଼ ଧୁଅ ବଉଲୀରେ....

- ତାଲ ପତ୍ର ଚର ଚରି ବଉଲୀରେ......
ସାହେବ ଦେଇଛେ ଚିଠି ପତର ୨
ବାଛି ବାଛି କର ଚରବଉଲୀରେ.....

- ଧାନ ଦାଇଗଲି ହରେ ବଉଲୀରେ....
ଛୁଆ ଥିଲି ବେଲେ ତାହାର ଭିଲେ ୨
ଦେଇଦେଲ ବେଶୀ ଦୂରେ ବଉଲୀରେ...

- କଦଲୀ କାଟିଲି ଖୁରେ ବଉଲୀରେ....
କାହିଁକି କାନ୍ଦୁଛ ମାତା ଗୋ ଘରେ ୨
ବୈଶାଖେ ଆସିମି ଥରେ ବଉଲୀରେ...

- ଆହା ମୋ ଶର୍ବନା ଯଷ୍ଟି ବଉଲୀରେ...
ମୁହିଁତ ଗୋ ବାପା ଜନମ ଦୁଖୀ ୨
ଘାଏ ନାଇଁ ଗଲ ଦେଖି ବଉଲୀରେ..

- ଦୋହଲାକୁ ଗଲା ସାପ ବଉଲୀରେ...
ସଉତିଆ ଘରେ ନ ଦେବ ବାପ ୨
କରିଥିଲି କେଉଁ ପାପ ବଉଲୀରେ....

- ତବା ଯେ ତବା ଲାଗିଛେ ବଉଲୀରେ...
ମଏଧର ଡ଼ବାରେ ଦୀପ ଜଲୁଛେ ୨
ଝିର ଭାର ଲମ୍ବୁଛେ ବଉଲୀରେ.....

- ଜନକୁ ମହା ମନ୍ଦଲ ବଉଲୀରେ
ଖେଲିଖିଆ ଝିଅ ଘରୁ ବାହାର ୨
ଘୁଟୁଛେ ମେଘ ବାଦଲ ବଉଲୀରେ....

- ଘନା ହାଡ଼ି ଛନ ଛନ ବଉଲୀରେ...
ମାଆ ଘରେ ପରେ ସରିଲା ଦିନ ୨
ଶାଶୁ ଘରେ ହିନିମାନ ବଉଲୀରେ....

- ଖପର୍ ଘରେ ଉଦେ ତରା ବଉଲୀରେ...
ଝିଅ ଜମନ୍ କଲୁ ସର୍‌ଗର ତରା
ଜୁଏ ଜଲୁ ଦରମରା ବଉଲୀରେ....

- ସେମିଫୁଲ କେରା କେରା ବଉଲୀରେ...
ମୋର୍ଦ୍ଦା ଯାଉଛେ ସିପେଇ ଡ଼େରା
ଲୋକମାନେ ତରାତରା ବଉଲୀରେ....

- ଗାଇ ଧରସିଆ କେନ୍ଦୁ ବଉଲୀରେ...
ଆଷାଢ଼ ମାସରେ ନୁଆଇଁ ବନ୍ଧୁ,
ଧାନ ଦୁଆ ବେଲେ କାନ୍ଦୁ ବଉଲୀରେ...

- ଦୁଆରେ ଗାଡ଼ିଲି ଛତା ବଉଲୀରେ...
ଛତାର ଉପରେ ଲେଖନା ଥିତା
ଜନମ ଦିନର କଥା ବଉଲୀରେ...

- ନଇପାନି ହଜ ହଜ ବଉଲୀରେ...
କାଣା ହଜାଇଲୁ ରାଧିକା ସଜ
ତୁହୁରି ପକାଇ ଖୁଜ ବଉଲୀରେ...

- ଢ଼େକି ଶାଳ ଆଡ଼ ପଢ଼ା ବଉଲୀରେ...
କାନ୍ଦି କାନ୍ଦି ନନୀ ମୁହୁଁ ନ ଶୁଖା
ପାଇଛୁ ପିଲା ଘଇତା ବଉଲୀରେ...

- ଯାଉଁ ଯିମା ଯାଉଁ ଯିମା ବଉଲୀରେ...
ନିଆଁଲି ବନ୍ଧରେ ମୁଣ୍ଡ ଝାରିମା
ସତ୍ୟ ବନ୍ଧେ ଖେଲୁଥିମା ବଉଲୀରେ....

- ଖପରେ ବସିଲା ଶାରୀ ବଉଲୀରେ...
ବସିଥାରେ ଶାରୀ କର୍ମ ଆଦରି
ଖାଏବୁ ପାନ ସୁପାରୀ ବଉଲୀରେ....

- ହୁଁ ଉଁ କରେ ହନୁମନ୍ତ ବଉଲୀରେ...
ଚାଲ ଦେଖିଯିମା ନୃସିଂହ ନାଥ
ଚାରିଆଡ଼େ ପରବତ ବଉଲୀରେ....

- କଅଁଳୀ ବୟସ ନାରୀ ବଉଲୀରେ:..
ନାଇଁଯାଏଁ ଧନ ମୁଇଁ ଛାଡ଼ିକରି ୨
ବସିଥିବ କୁଳେ ଧରି ବଉଲୀରେ....

- ଧାନ ପତ୍ର ଠନ ଠନ ବଉଲୀରେ....
ବାଜୁଛେ ବାଁଶେରୀ ଟେକିଥା କାନ ୨
ଆସିବେ ରାଧା ମହନ ବଉଲୀରେ...

- ଛାନିକୁ ଛାନି ଅନ୍ତର ବଉଲୀରେ...
ଛାନୀ ଛାଉଥିଲେ ସାନ ଦିଅର ୨
ହସିଦେଲେ କର କର ବଉଲୀରେ...

- ଇଶ୍କୁଲ୍ ପାଶେ ଆମ ଘର ବଉଲୀରେ..
ପାଚିଲା କଦଲୀ ମାଗେ ମାଷ୍ଟର ୨
ଦେବାକୁ ଆମର ଡ଼ର ବଉଲୀରେ...

- ସଡ଼କେ ନାହିଁନ ଲଟା ବଉଲୀରେ...
ସଡ଼କେ ପକେଇ ଦେମା ଲୁହାର କଣ୍ଟା ୨
ଚାଲଯିବା କଲିକତା ବଉଲୀରେ....

- ତବାଘର ସୁରୁବାଟ ବଉଲୀରେ...
ଖାଇଗଲେ ମୋର ସୁରୁ ସଙ୍ଗାତ ୨
ଧରାଇ ଦେତି କରାଟ ବଉଲୀରେ....

- ଦୁଆରେ ଜଗାଲି ମଲି ବଉଲୀରେ...
ମୋର ଥିବା ଯାକର ଫୁଟିବୁ ମଲୀ ୨
ମୁଇଁ ଗଲେ ଯିବୁ ତଲି ବଉଲୀରେ...

- ସୁରୁ ବଲିଆର କାତି ବଉଲୀରେ...
ମୋର୍ନାନୀ ଯାଇଛେ ବେସର ବାଟି ୨
କିଏ ଅଡ଼ାଇଲା ଛାତି ବଉଲୀରେ....
ଛାତି ଅଡ଼ା ଲୋକ୍‌କେ ପାଏଲେ ଭେଟି ୨
ବର୍ଗଡ଼ କଚେରୀ ନେତି ବଉଲୀରେ....

- ମୁନୁଗା ତଲର ବାଲି ବଉଲୀରେ....
କିଏ ହଜେଇଛେ ଗଜବନ ମାଲୀ ?
ଗାଲିଦେବେ ବନମାଲୀ ବଉଲୀରେ...

- ଦୁଆରେ କାଟିଲି ଛକା ବଉଲୀରେ...
ସଭେ ସମିଗଲେ ଜୁଡ଼ି ଜୁଡ଼ିକା ୨
ମୋହରି କପାଲ ଏକା ବଉଲୀରେ....

- ଦୁଆରେ ଲିପିଲି କଲା ବଉଲୀରେ...
ଆମର କଲାବତୀ ରାନ୍ଧନୀ ହେଲା ୨
କାନ୍ଦି କାନ୍ଦି ପରଶିଲା ବଉଲୀରେ.....

- ଦୁଆରେ ତୁପିଲି କେନ୍ଦୁ ବଉଲୀରେ....
ଜାନି ଜାନି ଦଦା ବାନ୍ଧିଣ ଦେଲୁ ୨
ବାର ବିଟିଲିଆ ବନ୍ଧୁ ବଉଲୀରେ.....

- ଆମ୍ବ ଖାଇଗଲି ଲେଡି ବଉଲୀରେ....
ସମ୍ବଲପୁରର ବିଜୁଳି ବତି
ଜଳୁଥାଏ ଦିନରାତି ବଉଲୀରେ....

- ଗୀନାରେ ଖାଇଲି ଶାଗ ବଉଲୀରେ...
କାଏଁ ହେଲା ମକର ହୋଇଛ ରାଗ
କରିଦେମା ଦୁଇଭାଗ ବଉଲୀରେ....

- ଦେଉଲ ଉପରେ ଘାସ ବଉଲୀରେ...
ସୀତା ରହିଥିଲେ ଅଢ଼େଇ ମାସ
ଜନମ୍ ହେଲେ ଲବକୁଶ ବଉଲୀରେ...

- ମଯ୍ଯା ଗୁଟେ ଦୁଇ ଦୁଇ ଫାଲ ବଉଲୀରେ..
ହିଟେଇ ଦିଅ ଶାଶୁ ଶୁର୍ଶିଯ୍ଯା ମାଲ
ପିନ୍ଧିବେ ସାନ ଦିଅର ବଉଲୀରେ...

- ଦୁଆରେ ରଙ୍ଗେ ବଲିଆ ବଉଲୀରେ...
ଭାତ ରାନ୍ଧିଦେବେ ଦୁଇ ଦୁଇ ଫାଲିଆ

ଖାଇବେ ସାନ ଦିଅର ବଉଲୀରେ....

- ଗିନାରେ ଖାଇଲି ଚନା ବଉଲୀରେ...
ଜମର୍ଦ୍ଦା ଯିବାକୁ କରୁଛେଁ ମନା
ଗୋପପୁର ହେବା ଛିନା ବଉଲୀରେ....

- ବାଟର ତେଙ୍ଗ ଖଜୁର୍ ବଉଲୀରେ...
ଫଳ ଫଲେ ଗଛ ଦିଶେ ସୁନ୍ଦର
ସେ ଫଳ ବଡ଼ ମଧୁର ବଉଲୀରେ....

- ବସାଇଲି ବସା ଦହି ବଉଲୀରେ...
ଗୋପରେ ପୀରତି କଲେ କହ୍ନାଇ
ଜାଣି ନ ପାରିଲେ କେହି ବଉଲୀରେ..

- ଆଜି କେନାପାଲି ହାଟ ବଉଲୀରେ...
ସୀତା ପିନ୍ଧିଛନ୍ତି ମୁଗୁନୀ ପାଟ ୨
ରାବଣ ଛେକିଲା ବାଟ ବଉଲୀରେ...

- ଅରୁଆ ଚାଉଲ ପଷେ ବଉଲୀରେ....
ରଜା ଘର ଝିଅର ବନ୍ଦନା ବସେ ୨
ମୁଲୁକି ମୁଲୁକି ହସେ ବଉଲୀରେ....

- କରାଟେ ଧରିଲି ମେଥି ବଉଲୀରେ...
ସେଇ ମେଥିଟିକ ଡାକ ଡାକୁଛି ୨
ଜମର୍ଦ୍ଦିଆ ରଜା ନିତି ବଉଲୀରେ...

- ଜମର୍ଦ୍ଦିଆ ରଜା ପାନି ଟେଣ୍ଟୁଛି ବଉଲୀରେ
ଚାରି ଝିଅ କଜଲ ପାତି
କଜଲପାତୁ 'ଛ' ଜଳ ଧାରେ
ତେଲେଙ୍ଗା ବଇଦ ରହିଯା ଗୁଡି
ଲାଲ ଧାନର୍ ଭାତ ଖୁଆମି ତୋତେ
ମରିଗଲେ ପରାନ୍ ଜାତେ ବଉଲୀରେ...

- ମରିଗଲେ ତୋର ହାଡ଼ ନେଇମି ବଉଲୀରେ
ଗଙ୍ଗା ଉଡ଼ିଶାରେ ଛାଡ଼ି ଆଏମି
ଗଙ୍ଗା ଉଡ଼ିଶାରେ ଫୁଲ ତୋଳିବି
କୃଷ୍ଣଙ୍କୁ ମଖାଉ ଥିବି ବଉଲୀରେ....

- କୃଷ୍ଣମୋ ବସିବେ ପଲଙ୍କ ଖଟେ ବଉଲୀରେ
ଭଣ୍ଡାରି ବସିବା ତଲେ ବଉଲୀରେ....

- ମଦଲ ମାଦଲ ଗିନା ବଉଲୀରେ...
ଇ ଗିନା ଯାଇଛେ ଜହଲି ଖାନା ୨
ରନ୍ଧା ଘର ହେଲା ଛିନା ବଉଲୀରେ....

- କରାଟେ ଧରିଲି ଚନା ବଉଲୀରେ
ଚନା ପଡ଼ିଗଲେ ଦେବୁ ଭରଣା ୨
ଶହେ ଟଙ୍କା ଜରିବାନା ବଉଲୀରେ...

- ବାଟର ତେଙ୍ଗ ଫଲଶା ବଉଲୀରେ...
ବଜାର ଯାଉଛ ନିଅ ପଇସା ୨
ଆଣିଦେବ ମୁହଁ ପୋଛା ବଉଲୀରେ...

- କୁଲାରେ କାଟିଲି ଲାଉ ବଉଲୀରେ...
କଲା ସରବର ତେଙ୍ଗେଇ ବହୁ ୨
ମୋର୍ ଦଦାର କପାଲେ ଥାଉ ବଉଲୀରେ.

- ବାହାରେ ବୁନିଲି ମେକା ବଉଲୀରେ..
ଉଦାର କପଟା ଅଣ୍ଟା ମଲକା ୨
ଭୁଲିଆ ମାଗୁଛେ ଟଙ୍କା ବଉଲୀରେ...

- ତାଲ ପତ୍ର ଖର ଖର ବଉଲୀରେ...
ଗୀତ ନ ଜାଣିଲେ ଉଧାର କର ୨
ଲେଖିଦିଅ ଚର ଚର ବଉଲୀରେ....

- ତାଲ ପତ୍ର ଖର ଖର ବଉଲୀରେ...
ତୋର ପରେ ନନୀ ଗୁସାଇଁ ବର ୨
ତୁମା ଧରି ଧରି ବୁଲ ବଉଲୀରେ...

- ଗାଈକୁ ମାରିଲି ଝାଁଟେ ବଉଲୀରେ...
ଗାଈ ପକାଇଲା ଯମୁନା ଘାଟେ ୨
ମାମୁଁ ଘର କେଉଁ ବାଟେ ବଉଲୀରେ...
- ମାମୁଁ ଘରର୍ ପିଣ୍ଡା ଉସାର ନାହିଁ ୨
ରେହେଁଟି ଗାଡ଼ିମା କାହିଁ ବଉଲୀରେ...
- ଧାନକୁ ବୁହିଲା ବମା ବଉଲୀରେ...
କାହିଁ ଯାଉଅଛ ସଁପୁରମୁହାଁ
ବୈଶାଖେ ଖାଇବା ନୂଆଁ ବଉଲୀରେ...
- ଢେକିରେ କୁଟିଲ ଗୁଡି ବଉଲୀରେ...
କାହିଁକି କାନ୍ଦୁଛ ଫୁଫୁଲି ବୁଡୀ ୨
ସକାଳୁ ମୁର୍‌ହି ଟୁପୁଲି ବଉଲୀରେ...
- ଡଲି ବନ୍ଧେ ବଡ଼ ଜକ ବଉଲୀରେ...
ବେକର ଖଗଲ ଝଅକ ମକ ୨
ଦଣ୍ଡି ପିନ୍ଧା ବଡ଼ା ଶଧ ବଉଲୀରେ.....
- ଲେସୁନ ଖାଇଲା ପୋକ ବଉଲୀରେ...
ପୁଲିଆଁ ଡଲିରେ କାହିଁରି ଲୋକ ୨
ଡ଼େଗାଇ ଡ଼େଗାଇ ଦେଖ ବଉଲୀରେ...
- ସଡ଼କେ ବସିଲା କାଉ ବଉଲୀରେ...
ଉଡ଼ିଯାରେ କୁଆ ମଟର ଯାଉ ୨
ଆସିବେ ମୋ ବଡ଼ ବହୁ ବଉଲୀରେ....
- ନୂଆଁ ଚାଲି ପିଟୁଥିଲି ବଉଲୀରେ....
ନୂଆ ଚାଲି ତଲେ କହାର ମାଲି ୨
ସେଟା ମୋର୍ ଦଦାର ଶାଲୀ ବଉଲୀରେ..
-ମୋର ଦଦାର ଶାଲୀଟା ବିଇଟ୍‌ବିଟ୍ କାଲି ୨
ପିନ୍ଧିଛେ ଶୁର୍ଶୟା ମାଲି ବଉଲୀରେ..
- ପଇସା ଠିନି କରିଲା ବଉଲୀରେ.....

କେନ୍ ବହୁ ମତେ ଗୀତେ ଜୁଲିଲା ୨
ଅଛେକି ପଲେଇ ଗଲା ବଉଲୀରେ...
- ତୁଆ ତୁଆ ତୁଆ ତୁଆ ବଉଲୀରେ...
ହଗିଗଲା ବାଟେ ପାଇଛୁ ଛୁଆ ୨
କାହାକେ ବୋଲିବା ବୁଆ ବଉଲୀରେ...
- କାଥି ଦେଲି ଲୁଥୁ ଲୁଥୁ ବଉଲୀରେ....
କାହିଁ ଗଲା ତୋର ଲୁଥୁ ଘଇତା ୨
ଫୁଲମାଲେ ଗଁଥି ଦେତା ବଉଲୀରେ....
- ପର୍ବତେ ଗାଡ଼ିଲା ଘନା ବଉଲୀରେ...
ଆସରେ ଟୁକୁଲେ ପିଇବ ପନା
ପିଲାଏ ପେଲିବେ ଘନା ବଉଲୀରେ...
- ବିଲେଇ ମୁଡ଼ର ଜଟ ବଉଲୀରେ...
କାହିଁ ବାଲେଶ୍ୱର କାହିଁ କଟକ
ଦେବଗଡ଼େ ହେମା ଭେଟ ବଉଲୀରେ...
- ବାରିର ଝିର୍ଝିଟି କଟା ବଉଲୀରେ
ମୋର ଭେନେଇର ସଁପୁର ଅଣ୍ଟା
ଘିନିଦେମା ଲାଲ ମଠା ବଉଲୀରେ...
- ବାଟର ପୁଟୁକି ଟାର ବଉଲୀରେ...
ନ ଭଙ୍ଗା ନ ଭଙ୍ଗା କାନ୍ତ ମୋହର
ପାଚିଲେ ହେମି ତୁମର ବଉଲୀରେ....
- ଶିରିଆଲି ଦୁଇ ଦୁଇ ପତର ବଉଲୀରେ...
ସୀତା କାନ୍ଦୁଥିଲେ ବନ ଭିତର
ଖାଇବାକୁ ଫଲମୂଲ ବଉଲୀରେ....

- ଏଥିରେ ରହିଛି ସାମାଜିକ ଜୀବନର, ନାରୀର ଉତ୍‌ଥାନ-ପତନ, ଆଶା-ନିରାଶା, ହସ-ଅଶ୍ରୁ, ବିଚ୍ଛେଦ-ମିଳନ, ହାସ୍ୟ-ବ୍ୟଙ୍ଗ,

ରସିକତା, ଇତିହାସ, ଭୂଗୋଳର ରାଶି ରାଶି ଖଣ୍ଡିତ ଚିତ୍ର ପ୍ରତିମା ।

ଲୋକ ସଂସ୍କୃତିର ସ୍ରଷ୍ଟା ଏଇ ଲୋକଗୀତ ସବୁ । ଲୋକ ସଂସ୍କୃତିର ଅଗାଧ ଜଳରେ ମୁକ୍ତାଗର୍ଭା ଶାମୁକା ସବୁ ଏଇ ଗୀତ ଗୁଡ଼ିକ । ସେଥିରୁ ମୁକ୍ତା ଆହରଣ କରିବାକୁ ହେଲେ ସେଇ ଅଗାଧ ଜଳ ଭିତରକୁ ଲମ୍ଫ ଦେବାକୁ ହିଁ ପଡ଼ିବ ।

- ସଜନୀ ଗୀତକୁ ମଧ୍ଯ ସାମାନ୍ୟ ପରିବର୍ତ୍ତିତ ରୂପରେ ଢୁମୋ-ବଉଲୀରେ ପ୍ରୟୋଗ କରାଯାଇଥାଏ । ଲୋକଗୀତ ସିଧା ଅନ୍ତରର ଅବାରିତ, ମୁକ୍ତ ପରିପ୍ରକାଶ ଏଣୁ ଏହା କୌଣସି ନୀତିନିୟମର ଧାର ଧାରେନା, ଯାହା ମନରେ ଉଠେ, ହୃଦୟକୁ ଗଭୀର ଭାବରେ ଆଲୋଡ଼ିତ କରେ, ତାହା ନିର୍ଦ୍ୱନ୍ଦ ଭାବରେ ରୂପ ପାଇଥାଏ ଏଥିରେ । ଏଣୁ 'ସଜନୀ' ଓ ଢୁମୋ ଗୀତ ମଧ୍ୟରେ ବିଶେଷ ପୃଥକୀ କରଣ ଅସାଧ । ଆଜି କାରିଗର ଝୀଅମାନେ (ସହର କଥାତ ଉଠୁନି, ସେଠି ଶସ୍ତା ଫିଲ୍ମି ଗୀତର ସାମ୍ରାଜ୍ୟ) ଗାଆଁ ଗହଳୀରେ ମଧ୍ଯ ବାହୁରେ ବାହୁ ଛନ୍ଦି, କାନ୍ଧକୁ କାନ୍ଧ ମିଳାଇ, ଦୁଇ ଦଳରେ ବିଭକ୍ତ ହୋଇ କିଆ ଫୁଲିଆ ଜହ୍ନ ରାତିରେ ଆଗ ପଛ କରି ଝୁଲିଲା ଝୁଲିଲା ଚାଲି 'ବଉଲୀ' କ୍ୱଚିତ୍ ଗାଉଥିବାର ଦେଖାଯାଉଛି ।

-ସଡ଼କର ଲାଲ ମାଟି ବଉଲୀରେ
ସଡ଼କର ଲାଲ ମାଟି
ଲାଲ ଲାଲ ଫୁଲ ଫୁଟାଇ ଦେତି
ଲାଲ ଲାଲ ଫୁଲ ଫୁଟାଇ ଦେତି
ସଡ଼କର ଚାରିକୁତି ବଉଲିରେ....
ସଡ଼କର ଚାରିକୁତି...

ସଡ଼କର ଚାରିଆଡ଼େ ମହାମାନବିକ ମିଳନର ଲାଲ ଲାଲ ରକ୍ତରଙ୍ଗୀ ଫୁଲ ଫୁଟୁ । ଯେତେ ସଂଘର୍ଷ ଜନିତ ତିକ୍ତତା, ବିଷାଦ ଲୋପ ପାଇଁ ସତେଜ ଲାଲ ସୂର୍ଯ୍ୟ ମୈତ୍ରୀର ଭାବ ଉଠୁ ଏହାହିଁ କାମନା, ଏହାହିଁ ଢୁମୋବଉଲୀର ଆନ୍ତରିକ ଆବେଦନ । ଏହାହିଁ ତାର 'ଜୁଲି'ର ଏକାନ୍ତ ଆକାଂକ୍ଷା ।



# ସମ୍ବଲପୁରରେ ଭାଷା ଆନ୍ଦୋଳନ

ଶଙ୍କର ପ୍ରସାଦ ପାଢ଼ୀ

ଶ୍ରଦ୍ଧାକର ସୂପକାର

ସମ୍ବଲପୁର ଜିଲ୍ଲା ୧୮୬୨ ମସିହାରୁ ମଧ୍ୟପ୍ରଦେଶର ଶାସନାଧୀନ ହୋଇଥିଲା। ସମ୍ବଲପୁରରେ ବ୍ରିଟିଶ୍ ଶାସକଗଣଙ୍କ ନିମ୍ନତମ କର୍ମଚାରୀମାନେ ପ୍ରାୟ୍ ସମସ୍ତେ ଥିଲେ ଅଣଓଡ଼ିଆ, ହିନ୍ଦୀଭାଷାଭାଷୀ। ଇଂରେଜ ଶାସକଗଣ ସାଧାରଣତଃ ହିନ୍ଦୀ ଛଡ଼ା ଅନ୍ୟ ଦେଶୀୟ୍ ଭାଷା ବୁଝୁ ନଥିଲେ। ନିମ୍ନତମ କର୍ମଚାରୀ ମାନେ ଶାସନ ଓ ଶିକ୍ଷାକ୍ଷେତ୍ରରେ ଓଡ଼ିଆ ଭାଷାର ନ୍ୟୁନତା ପ୍ରତିପାଦନ କରିବାକୁ ଚେଷ୍ଟା କରୁଥିଲେ। ପରେ ସରକାରୀ କାଗଜପତ୍ରରେ ଓ ଅଦାଲତରେ ଓଡ଼ିଆ ଭାଷାକୁ ଉଠାଇ ଦେଇ ହିନ୍ଦୀ ଭାଷା ପ୍ରଚଳନର ବ୍ୟବସ୍ଥା କରାଗଲା।

ଊନବିଂଶ ଶତାବ୍ଦୀରେ କେବଳ ଯେ ସମ୍ବଲପୁରର ଅବସ୍ଥା ଏପରି ଥିଲା ତାହା ନୁହେଁ, ଉପକୂଳ ଅଞ୍ଚଳର ଅବସ୍ଥା ମଧ୍ୟ ଏହିପରି ଥିଲା। କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ବଙ୍ଗ ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା ଓ ସେଠାରେ ବଙ୍ଗାଳୀ କର୍ମଚାରୀ ଓ ଶିକ୍ଷକମାନଙ୍କ ପ୍ରଭାବରେ ଓଡ଼ିଆ ଭାଷା ଓ ସାହିତ୍ୟକୁ ହେୟ୍ଜ୍ଞାନ କରି ଓଡ଼ିଆ ଭାଷାର ଅସ୍ତିତ୍ୱକୁ ଲୋପ କରିବାର ଚେଷ୍ଟା କରାଯାଇଥିଲା। ବାଲେଶ୍ୱର ଜିଲ୍ଲାସ୍କୁଲର ଜଣେ ବଙ୍ଗାଳୀ ଶିକ୍ଷକ ଶ୍ରୀ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ 'ଉଡ଼ିୟା ଏକ ସ୍ୱତନ୍ତ୍ର ଭାଷା ନୟ୍' ବୋଲି ପ୍ରମାଣ କରିବାକୁ ଚେଷ୍ଟା କରି ଗୋଟିଏ ପୁସ୍ତକ ଲେଖିଲେ। ଏହା ଫଳରେ ଉପକୂଳବର୍ତ୍ତୀ ଓଡ଼ିଶାରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ତାହା ସମସ୍ତଙ୍କର ଜଣାଶୁଣା।

ସେ କାଳରେ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ଆଦି ସାହିତ୍ୟର ମହାରଥୀମାନଙ୍କର ଜନ୍ମସ୍ଥଳୀ ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଗତ ଥିଲା।

କେବଳ ଯେ ଓଡ଼ିଶାରେ ଓଡ଼ିଆ ଭାଷାର ବିଲୋପ ସାଧନର ଚେଷ୍ଟା କରାଯାଇଥିଲା ତାହା ନୁହେଁ। ଆସାମରେ ଅସମୀୟା ଭାଷାର ଲୋପ କରିବା ପାଇଁ ଉଦ୍ୟମ କରାଯାଉଥିଲା। ଊନବିଂଶ ଶତାବ୍ଦୀରେ ଅସମୀୟା ଛାତ୍ରଛାତ୍ରୀମାନଙ୍କୁ ପ୍ରାଥମିକ ଶ୍ରେଣୀରୁ ହିଁ ବଙ୍ଗଳାଭାଷାରେ ଶିକ୍ଷା ଦିଆଯାଉଥିଲା। ଏହି ବିଷୟ୍ରେ ଆସାମର ସାହିତ୍ୟ ରଥୀ ସ୍ୱର୍ଗତ ଲକ୍ଷ୍ମୀନାଥ ବେଜବରୁଆ

ସ୍ୱୀୟ ଆତ୍ମଜୀବନୀରେ ଲେଖିଛନ୍ତି :- "ସେହି ସମୟରେ (ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ) ଦେଶଧିକାରୀମାନଙ୍କର ବିପରୀତ ବୁଦ୍ଧି ଯୋଗୁଁ ବଙ୍ଗଳା ଭାଷା ଆସାମର ବିଦ୍ୟାଳୟ ମାନଙ୍କରେ ଶିକ୍ଷା ଦିଆଯାଉଥିଲା ।

....ଈଶ୍ୱରଙ୍କ ଚରଣରେ ଆମେ କୃତଜ୍ଞ ଯେ କାଳକ୍ରମେ ଦେଶାଧିକାରୀମାନଙ୍କର ଏହି ଭ୍ରମ ଭାଙ୍ଗିଲା, ଅସମୀୟା ହିଁ ମାତୃସ୍ତନର ସ୍ୱାଭାବିକ କ୍ଷୀରଧାରା ପାନ କରିବାକୁ ପାଇ ନିଜକୁ ଧନ୍ୟ ମନେକଲେ । ଅସମୀୟାର ମାତୃଭାଷା ଯେ ଅସମୀୟା ଅଟେ, ବଙ୍ଗଳା ନୁହେଁ, ଏହି ସତ୍ୟ ପୁନରାୟ ଦୃଢ଼ ଭାବରେ ସୁପ୍ରତିଷ୍ଠିତ ହେଲା ।" ଅସମୀୟ ବାଳକ ବାଳିକା ମାନଙ୍କର ପ୍ରାଥମିକ ବଙ୍ଗଳା ଶିକ୍ଷାକୁ ଲକ୍ଷ୍ମୀନାଥ 'ଫିଡ଼ିଙ୍ଗ୍ ବୋତଲ' ସହିତ ତୁଳନା କରିଥିଲେ । ଲକ୍ଷ୍ମୀନାଥଙ୍କର ଆତ୍ମଜୀବନୀରେ ଯେଉଁ ଭାବନା ଉପରେ ଦିଆଯାଇଛି, ପ୍ରାୟ ଠିକ୍ ସେହି ଭାବନା ୰ ଶ୍ରୀପତି ମିଶ୍ରଙ୍କର 'ଶିମଳା ଯାତ୍ରା'ରେ ଲକ୍ଷ୍ମୀନାଥଙ୍କ ଆତ୍ମଜୀବନୀ ପ୍ରକାଶର ପ୍ରାୟ କୋଡ଼ିଏ ବର୍ଷ ପୂର୍ବରୁ ନିମ୍ନମତେ ଭାଷାରେ ରୂପାୟିତ ହୋଇଛି :-

"ଅଙ୍ଗର ଗଠନ ଓ ପରିପୁଷ୍ଟି ସକାଶେ ଶିଶୁର ପ୍ରାଥମିକ ଅବସ୍ଥାରେ ଯେପରି ମାତୃସ୍ତନ୍ୟ ନିତାନ୍ତ ପ୍ରୟୋଜନ, ତଦ୍ରୁପ ମାନଚର ମାନସିକ ବୃତ୍ତି ସମୂହର ବିକାଶ ଓ ପରିପୁଷ୍ଟ ସକାଶେ ମାତୃଭାଷାର ବିମଳ ସ୍ୱଚ୍ଛ ସ୍ରୋତର ଅମୃତମୟ ଭାବ ଅପରିହାର୍ଯ୍ୟ । ଶିଶୁ ପ୍ରାଥମିକ ଅବସ୍ଥାରେ ସ୍ତନ୍ୟପାନ ନକରି କଠିନ ଦୁସ୍ପାଚ୍ୟ ପଦାର୍ଥ ଭକ୍ଷଣ କଲେ ଯାଦୃଶ ରୁଗ୍ଣ ହୋଇ ଯମର ଆତିଥ୍ୟ ଗ୍ରହଣ କରିବାକୁ ବାଧ ହୁଏ, ତଦ୍ରୁପ ମାନବର ପ୍ରାଥମିକ ଶିକ୍ଷା ମାତୃଭାଷାରେ ପରିଚାଳିତ ନହେଲେ, ତାହାର ମାନସିକ ବୃତ୍ତି ସମୂହ ଅଙ୍କୁରାବସ୍ଥାରେ ପରିପୁଷ୍ଟ ହୁଏ ।"

(ଶିମଳା ଯାତ୍ରା ପୃ. ୧-୨)

କବିବର ଗଙ୍ଗାଧର ମଧ ସେ ସମୟରେ ସମ୍ବଲପୁରର ଦୁର୍ଦ୍ଦଶାରେ ତୀବ୍ର ମର୍ମବେଦନା ପାଇ ଲେଖିଥିଲେ :-

" ନିଜ ଘରେ ବସି ନିର୍ବାସନ ଦୁଃଖ
ଆମ୍ଭ କି ଲଲାଟ ଲେଖନ
ମାତୃଭାଷା ମନା ଭାଇ ସଙ୍ଗ ବିନା
ବିକଳ ହେଉଛି ଜୀବନ
ଗୁହାରୀଲେ ଦୁଃଖ ନୃପତି ଆଗରେ

ଡଡ଼ି ଦେଉଛନ୍ତି ଛାମୁକୁ ରାଗରେ
ନୁହେଁ ତାଙ୍କ ଦୋଷ, ବୁଝନ୍ତି ନାହିଁରେ
ଆମ୍ଭର କଥିତ ବଚନ।

(କବିତାମାଳା - ଉତ୍କଳ ସମ୍ମିଳନୀ ଉପଲକ୍ଷରେ ରଚିତ)

୧୯୬୨ ମସିହାରୁ ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ହୋଇଥିଲେ ମଧ, ୧୯୪୯ ମସିହା ପର୍ଯ୍ୟନ୍ତ ଏ ଜିଲ୍ଲାରୁ ଓଡ଼ିଆ ଭାଷାର ବିଲୋପ ସାଧନ ପାଇଁ ଚେଷ୍ଟା ହୋଇ ନଥିଲା।

ମଧ୍ୟପ୍ରଦେଶର ଚିଫ୍ କମିଶନର ସାର୍ ଜନ୍ ଉଡ୍‌ବର୍ଣ୍ଣଙ୍କ ଆଦେଶରେ ୧୮୯୫ ମସିହାରେ ସମ୍ବଲପୁରରେ ହିନ୍ଦୀ ଭାଷାକୁ ସରକାରୀ ଭାଷାରୂପେ ପ୍ରଚଳନ କରିବାର ଆଦେଶ ଦେଇ ଏ ବିଷୟରେ ସରକାରୀ କର୍ମଚାରୀ ସମ୍ବଲପୁରର ଜନସାଧାରଣଙ୍କ ମତ ଲୋଡ଼ିଲେ। ସେହି ସମୟରେ ସମ୍ବଲପୁରରେ ଡେପୁଟି କମିଶନର ଥିଲେ ମିଷ୍ଟର ଆର.ଏ.ବି ଚେପ୍‌ମେନ। ସେ ଭାଷା ପରିବର୍ତ୍ତନ କରି ସମ୍ବଲପୁରରେ ହିନ୍ଦୀ ଭାଷାକୁ ସରକାରୀ ଭାଷାରୂପେ ପ୍ରଚଳନ କରିବାର ପକ୍ଷପାତୀ ଥିଲେ। ସେହି ବର୍ଷ ଜୁନ୍ ମାସ ୧୩ ତାରିଖରେ ସମ୍ବଲପୁରରେ ସ୍ୱର୍ଗତ ଧରଣୀଧର ମିଶ୍ରଙ୍କ * ସଭାପତିତ୍ୱରେ ଗୋଟିଏ ସାଧାରଣ ସଭା ହୋଇ ହିନ୍ଦୀ ଭାଷା ପ୍ରଚଳନ ବିରୁଦ୍ଧରେ ପ୍ରସ୍ତାବ ଗୃହୀତ ହେଲା ଓ ସେହି ପ୍ରସ୍ତାବଟି ତଦାନୀନ୍ତନ ବଡ଼ଲାଟ ଏଲଗିନଙ୍କ ପାଖକୁ ପଠାଗଲା। ବଡ଼ଲାଟ କିନ୍ତୁ ଏ ପ୍ରସ୍ତାବକୁ ଗ୍ରହଣ କଲେନାହିଁ।

ସମ୍ବଲପୁରର ଏହି ଭାଷା ଆନ୍ଦୋଳନ ବିଷୟରେ ତଦାନୀନ୍ତନ ସମ୍ବଲପୁରର ଜଣେ ବିଶିଷ୍ଟ ସାମ୍ବାଦିକ ତଥା ନାଗରିକ ୰ ଶ୍ରୀପତି ମିଶ୍ର 'ଶିମଳା ଯାତ୍ରା' ନାମକ ପୁସ୍ତିକାରେ କରାଯାଇନାହିଁ। ମାତ୍ର ସମ୍ଭବତଃ ୧୯୦୧ ମସିହାରେ ଏହି ନାଗପୁର ଯାତ୍ରା ହୋଇଥିବା ସମ୍ଭବ। ପ୍ରତିନିଧି ମାନଙ୍କର ନାଗପୁର ଯାତ୍ରା ଓ ଶିମଳା ଯାତ୍ରା ମଧ୍ୟରେ ସମୟର ବ୍ୟବଧାନ ବିଶେଷ ନଥିଲା।

ଦେଶ ମିଶ୍ରଣର ପ୍ରତିନିଧି ସମ୍ବଲପୁରର ଏହି ଚାରିଜଣ ନେତୃସ୍ଥାନୀୟ ବ୍ୟକ୍ତି ନାଗପୁରରେ ମଧ୍ୟପ୍ରଦେଶର ରାଜ୍ୟପାଳଙ୍କ ସହିତ ସାକ୍ଷାତ କରି ସମ୍ବଲପୁର ଜନସାଧାରଣଙ୍କ ଆପତ୍ତି ବିଷୟରେ ଆଲୋଚନା କରିଥିଲେ। ରାଜ୍ୟପାଳ ଶ୍ରୀମାନ ଫ୍ରେଜର ଏମାନଙ୍କର ଦାବୀପ୍ରତି ସହାନୁଭୂତି ପ୍ରକାଶ କରିଥିଲେ। ଶ୍ରୀପତି ମିଶ୍ର ଲେଖିଛନ୍ତି "ଫ୍ରେଜର ସାହେବ ସମ୍ବଲପୁର ପ୍ରତିନିଧି ମାନଙ୍କୁ ସାନ୍ତ୍ୱନାସୂଚକ ଅଭୟବାଣୀରେ ସମ୍ବୋଧନ କରି ସ୍ୱୟଂ ଗଭର୍ଣ୍ଣର ଜେନେରାଲଙ୍କଠାରେ

ସମ୍ବଲପୁରବାସୀଙ୍କର ଭାଷା ପରିବର୍ତ୍ତନ ଜନିତ ଦୁଃଖ ଜଣାଇବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।" ସେ ପ୍ରତିନିଧି ମାନଙ୍କୁ ବଡ଼ଲାଟଙ୍କ ସହିତ ଶିମିଳାଠାରେ ସାକ୍ଷାତ କରାଇବାର ପ୍ରତିଶ୍ରୁତି ମଧ୍ୟ ସମ୍ଭବତଃ ଦେଇଥିଲେ ।

୧୯୦୧ ମସିହା ସେପ୍ଟେମ୍ବର ମାସରେ ସମ୍ବଲପୁରର ପାଞ୍ଚଜଣ ନେତୃସ୍ଥାନୀୟ ବ୍ୟକ୍ତି ତଦାନୀନ୍ତନ ବଡ଼ଲାଟ ଲର୍ଡ କର୍ଜନଙ୍କ ସହିତ ସାକ୍ଷାତ କରି ରାଜ୍ୟପାଳ ଫ୍ରେଜରଙ୍କ ସାହାଯ୍ୟରେ ଭାଷା ଆନ୍ଦୋଳନ ସମ୍ପର୍କୀୟ ଦାବୀ ଉପସ୍ଥାପିତ କରିବା ପାଇଁ ସମ୍ବଲପୁରରୁ ଶିମଳା ଯାତ୍ରା କଲେ । ଏ ସମ୍ପର୍କରେ ମନରେ ଏକ ସାଧାରଣ ପ୍ରଶ୍ନ ଉଠେ । ସେ ସମୟରେ ଭାରତବର୍ଷର ରାଜଧାନୀ ଥିଲା କଲିକତା । ସମ୍ବଲପୁରର ପ୍ରତିନିଧି ଏହି ପାଞ୍ଚଜଣ ବିଶିଷ୍ଟ ନେତା ନିକଟବର୍ତ୍ତୀ କଲିକତାରେ ବଡ଼ଲାଟଙ୍କ ସହିତ ଦେଖା ନ କରି ସୁଦୂର ସିମଳା ପର୍ଯ୍ୟନ୍ତ ଗଲେ, କାହିଁକି ?

ବିଂଶ ଶତାବ୍ଦୀର ପ୍ରଭାତରେ ବ୍ରିଟିଶ ରାଜପ୍ରତିନିଧିଙ୍କର ଅଖଣ୍ଡ ପ୍ରତାପ ଥିଲା । ସେ ଯୁଗରେ ଗଭର୍ଣ୍ଣର ଜେନେରାଲଙ୍କ ସାକ୍ଷାତ୍ ପାଇବା ସାଧାରଣ ଲୋକଙ୍କ କଥା ଦୂରେଥାଉ, ଏପରିକି ଅସାଧାରଣ ଲୋକଙ୍କ ପକ୍ଷରେ ମଧ୍ୟ ପ୍ରାୟ ଅସମ୍ଭବ ଥିଲା । ପ୍ରଦେଶର ସର୍ବୋଚ୍ଚ ଶାସକ ରାଜ୍ୟପାଳଙ୍କ ଅନୁମତି ବିନା ବଡ଼ଲାଟଙ୍କ ସହ ସାକ୍ଷାତ୍ କରିବା ବୋଧହୁଏ ଅସମ୍ଭବ ଥିଲା ।

ସେ ଯୁଗରେ ରାଜନୈତିକ ଜାଗରଣ ବା ସଙ୍ଗଠନ ନଥିଲା । ସ୍ୱାଧିନତା ସ୍ୱପ୍ନରେ ସୁଦ୍ଧା କଳ୍ପନା କରିବା ଥିଲା ଏକ ଗୁରୁତର ଅପରାଧ । ସ୍ୱର୍ଗତ ଗୋପାଳକୃଷ୍ଣ ଗୋଖେଲ ଥରେ କହିଥିଲେ, "କେବଳ ପାଗଳଖାନା ବାହାରେ ଲୋକେ ସ୍ୱାଧିନତା କଥା କଳ୍ପନା କରି ପାରୁଥିଲେ ବା ସେ ବିଷୟରେ କଥା କହି ପାରୁଥିଲେ... ବ୍ରିଟିଶ ଶାସନ ଛଡ଼ା ଅନ୍ୟ ଗତି ନାହିଁ । ଏ ପରିସ୍ଥିତି କେବଳ ବର୍ତ୍ତମାନ ନୁହେ, ବହୁଦିନ ପର୍ଯ୍ୟନ୍ତ ଚାଲିବ ।"

ସେ ଯୁଗରେ ଦେଶର ଏକମାତ୍ର ରାଜନୈତିକ ଅନୁଷ୍ଠାନ ଜାତୀୟ - କଂଗ୍ରେସର ନେତାମାନେ ବ୍ରିଟିଶ ଶାସନକଙ୍କ ପ୍ରତି ଅସୀମ ରାଜଭକ୍ତି ପ୍ରଦର୍ଶନ କରି ବିନୀତ କରିବାରେ ନିଜର କର୍ତ୍ତବ୍ୟ ପାଳନ କରୁଥିଲେ । ଏ ପରିସ୍ଥିତିରେ ସମ୍ବଲପୁରର ନେତୃବର୍ଗଙ୍କ ପକ୍ଷରେ ମାତୃଭାଷାର ପୁନରୁଦ୍ଧାର ପାଇଁ ହାରିଗୁହାରି ଛଡ଼ା ଅନ୍ୟ ଉପାୟ ନଥିଲା ।

ସେ ସମୟରେ ଉପକୂଳ ଅଞ୍ଚଳରେ ଉତ୍କଳ ସଭାର ଅପ୍ରତିଦ୍ୱନ୍ଦୀ ନେତା ଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସ । ସମ୍ବଲପୁରର ପ୍ରତିନିଧିମାନେ ତାଙ୍କର ପରାମର୍ଶ ଗ୍ରହଣ କରୁଥିଲେ । ଏ ବିଷୟରେ 'ଶିମିଳା ଯାତ୍ରା'ରେ ଲେଖା ଅଛି :-

"ପରିଶେଷରେ ସ୍ଥିର କଲୁଁ ଯେ ବାବୁ ମଧୁସୂଦନ ଦାସ ମହୋଦୟଙ୍କ ସିମିଳା ଯାତ୍ରା ବିଷୟ ଅନୁସନ୍ଧାନ କରିବୁଁ । ସେ ବିଷୟରେ କିଞ୍ଚିତ ଆଭାସ ପୂର୍ବରୁ ପ୍ରାପ୍ତ ହୋଇଥିଲୁଁ । ସୁତରାଂ ତାର ଯୋଗେ ତାଙ୍କର ଠିକଣା ବିଷୟରେ ଜିଜ୍ଞାସା କଲୁଁ ଏବଂ ଏଲାହାବାଦରେ ତହିଁର ଉତ୍ତର ପ୍ରତୀକ୍ଷାରେ ରହିଲୁଁ । (ଶିମିଳା ଯାତ୍ରା-ପୃଷ୍ଠା ୫)

ଏହି ପ୍ରତିନିଧି ମାନେ ଶିମିଳାରେ ପହଞ୍ଚିଲା ବେଳେ ମଧୁସୂଦନ ସେଠାରେ ନଥିଲେ । ଏଥିରୁ ଆମ ମନରେ କେତେ ସଂଶୟ ଜାତହୁଏ । ସମ୍ବଲପୁରର ଏହି ପ୍ରତିନିଧି ମାନେ ଶିମିଳାରେ ପହଞ୍ଚିବା ବିଷୟରେ ଲାଟ୍ ସାହେବ ସମ୍ଭବତଃ ତାରିଖ (apointment) ଧାର୍ଯ୍ୟ କରିଥିଲେ, କିନ୍ତୁ ସେହି ସମୟରେ ଶିମିଳାରେ ପହଞ୍ଚିବା ମଧୁବାବୁଙ୍କ ପକ୍ଷରେ ସମ୍ଭବ ନଥିଲା । ସମ୍ବଲପୁରର ପ୍ରତିନିଧିମାନେ ମଧୁବାବୁଙ୍କ ପାଖକୁ ଯେଉଁ ବାର୍ତ୍ତା ପଠାଇଲେ, ତାହା ଯଥା ସମୟରେ ମଧୁବାବୁଙ୍କ ଠାରେ ପହଞ୍ଚି ନଥିଲା ।

ପ୍ରତିନିଧିମାନଙ୍କ ପକ୍ଷରେ କଲିକତା ଯାଇ ମଧୁବାବୁଙ୍କ ସାହାଯ୍ୟରେ ନିଜ ଜିଲ୍ଲାର ଭାଷା ଆନ୍ଦୋଳନର ତୀବ୍ରତା ଓ ଗୁରୁତ୍ୱ ବିଷୟରେ ଅବଗତ କରାଇବାର ସହଜ ପନ୍ଥା ଗ୍ରହଣ କରାଗଲା ନାହିଁ କାହିଁକି ? ଏଥିରେ ଆଉ ଏକ କାରଣ ଥାଇପାରେ । ସେ ସମୟରେ କଲିକତା ଭାରତବର୍ଷର ରାଜଧାନୀ ଥିଲା ଓ ସେତେବେଳେ ବଙ୍ଗ ପ୍ରଦେଶର ଅନ୍ତର୍ଭୁକ୍ତ ଉପକୂଳ ଅଞ୍ଚଳରେ ଓଡ଼ିଶାର ରାଜଧାନୀ ମଧ୍ୟ ଥିଲା । ମଧୁବାବୁଙ୍କ ଜରିଆରେ କଲିକତାରେ ବଡ଼ଲାଟଙ୍କୁ ସ୍ମାରକପତ୍ର ଦେଇଥିଲେ ହୁଏତ ସମ୍ବଲପୁର ଆନ୍ଦୋଳନ ସ୍ୱତଃସ୍ଫୁର୍ତ୍ତ ହୋଇଥିବାର ପ୍ରମାଣ ଯଥେଷ୍ଟ ଶକ୍ତିଶାଳୀ ହୋଇ ନଥାନ୍ତା ।

ସବୁ ଯୁଗରେ ତପସ୍ୟାର ତୀବ୍ରତା ଅନୁଯାୟୀ ବରଲାଭ ହୋଇଥାଏ । ସେ ଯୁଗରେ କଲିକତା ଯାତ୍ରା ଅପେକ୍ଷାକୃତ ସହଜ ନଥିଲା । ସମ୍ବଲପୁରର ପ୍ରତିନିଧିମାନଙ୍କ ପକ୍ଷରେ ଶିମଳା ଯାତ୍ରା ତପସ୍ୟା ପରି କଠିନ ଥିଲା । ରେଳଯାତ୍ରା ସେ ସମୟରେ ଅତି ବିପଦସଙ୍କୁଳ ଥିଲା, ରେଳଭ୍ରମଣରେ ଚୋର ଖଣ୍ଟଙ୍କର ଆକ୍ରମଣର ଆଶଙ୍କା ଥିଲା । ସେ ସମୟରେ କଲେରା ଏକ ଅତି ମାରାତ୍ମକ ଓ ଅତି ସଂକ୍ରାମକ ରୋଗଥିଲା ଓ ଯାତ୍ରୀ ମାନଙ୍କର ଆଶଙ୍କାର ବିଷୟ ଥିଲା । ଏହାର ମାରତ୍ମକତାର ଭୁକ୍ତଭୋଗୀ ପରେ ହୋଇଥିଲେ ଏହି ପାଞ୍ଚଜଣଙ୍କ ମଧ୍ୟରୁ ଜଣେ ବିଶିଷ୍ଟ ନେତା ୰ ବ୍ରଜମୋହନ ପଟ୍ଟନାୟକ ଏବଂ ଶିମଳା ଯାତ୍ରାର ପ୍ରାୟ ଛଅ ବର୍ଷ ପରେ ବ୍ରଜମୋହନ ପଟ୍ଟନାୟକ ୧୯୦୭ ମସିହାରେ କଲିକତାରେ ଅନୁଷ୍ଠିତ ହେଉଥିବା କୃଷି ଶିଳ୍ପ ପ୍ରଦର୍ଶନୀକୁ ସମ୍ବଲପୁର ଜିଲ୍ଲାବୋର୍ଡର ପ୍ରତିନିଧି ରୂପେ ଯୋଗ ଦେବାକୁ ଯାଇଥିଲେ । ସେଠାରୁ ସେ ଫେରିଲେ ନାହିଁ । କଲେରା ରୋଗରେ

କଲିକତାରେ ପ୍ରାଣ ହରାଇଲେ ।

ଏମାନେ ଯେଉଁ ସମୟରେ ଶିମଳା ଯାଇଥିଲେ, ସେ ସମୟରେ କାଲ୍‌କା ଠାରୁ ଶିମଳା ପର୍ଯ୍ୟନ୍ତ ରେଳରାସ୍ତା ହୋଇନଥିଲା । କାଲ୍‌କାଠାରୁ ଶିମଳା ପର୍ଯ୍ୟନ୍ତ ଘୋଡ଼ାଗାଡ଼ି ବା ପଦବ୍ରଜରେ ଯିବାକୁ ପଡୁଥିଲା । ସେ ଯାତ୍ରାରେ ବିପଦର ସମ୍ଭାବନା ବିଷୟରେ ଶ୍ରୀପତି ମିଶ୍ର ଲେଖିଛନ୍ତି :-

"ଶିମଳା ଯାତ୍ରା ବହୁ ବ୍ୟୟସାପେକ୍ଷ ଓ ଶ୍ରମସାଧ, ବର୍ଷା ସମୟରେ କଲିକତା ଶିମଳା ସଡ଼କ ଘୋର ବିପଜ୍ଜନକ । ବିଗତ ବୃଷ୍ଟି ସମୟରେ ଖଣ୍ଡିଏ ପ୍ରକାଣ୍ଡ ଶିଳା ଅଧଃପତିତ ହୋଇ ଦୁଇଗୋଟି ଟାଙ୍ଗାକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି ପକାଇଥିଲା । ଏହା ଆମ୍ଭେ 'ଷ୍ଟେଟସମେନ'ରେ ପଢ଼ିଥିଲୁଁ କିନ୍ତୁ ସେହି ଭୟ ଆଉ ହୃଦୟରେ ସ୍ଥାନ ପାଇଲା ନାହିଁ । ଭାଷା ସଙ୍କଟ ଜନିତ ଦୁଃଖ ଟାକୁ ହୃଦୟରେ ପ୍ରବେଶ କରି ଦେଲାନାହିଁ ।"

(ଶିମଳା ଯାତ୍ରା - ପୃ. ୩)

ସମ୍ବଲପୁରରେ ମାତୃଭାଷାର ପୁନରୁଦ୍ଧାର ପାଇଁ ଯେଉଁ ପାଞ୍ଚଜଣ ପ୍ରତିନିଧି ଶିମଳାକୁ ଯାଇଥିଲେ ସେମାନେ ହେଲେ ଶ୍ରୀ ବ୍ରଜମୋହନ ପଟ୍ଟନାୟକ, ଶ୍ରୀ ବଳଭଦ୍ର ସୁଆର, ଶ୍ରୀ ମଦନମୋହନ ମିଶ୍ର, ମହନ୍ତ ମହାରାଜ ବିହାରୀ ଦାସ ଓ ଶ୍ରୀ ଶ୍ରୀପତି ମିଶ୍ର । ଶ୍ରୀପତି ମିଶ୍ର ଏମାନଙ୍କ ମଧରେ କନିଷ୍ଠ ଥିଲେ ଓ ପୂର୍ବର ନାଗପୁର ଯାତ୍ରାରେ ଯୋଗ ଦେଇ ନଥିଲେ । ଶିମଳା ଯାତ୍ରା ସମୟରେ ଶ୍ରୀପତି ମିଶ୍ରଙ୍କର ବୟସ ତିରିଶ ବର୍ଷରୁ ଊଣା ଥିଲା । ଅନ୍ୟ ଚାରିଜଣ ଥିଲେ ସମ୍ବଲପୁରର ପ୍ରବୀଣ ଜନନାୟକ ।

ଏମାନେ ସମ୍ବଲପୁରରୁ ବିଳାସପୁର ଦେଇ ଏଲାହବାଦରେ ପହଞ୍ଚିଥିଲେ ଓ ସେଠାରେ ଦିନେ ଦୁଇଦିନ ଗଙ୍ଗାସ୍ନାନ ପାଇଁ ରହିଥିଲେ । ରାଜନୈତିକ ତୀର୍ଥଯାତ୍ରା ସହିତ ପାରମ୍ପରିକ ତୀର୍ଥଯାତ୍ରା ମଧ ଏମାନଙ୍କର କାର୍ଯ୍ୟକ୍ରମର ଅନ୍ତର୍ଗତ ଥିଲା । ଏଲାହାବାଦରୁ ଏମାନେ କାନପୁର ଅମ୍ବାଲା ଦେଇ କାଲ୍‌କାରେ ପହୁଞ୍ଚିଥିଲେ । କାଲ୍‌କାଠାରୁ ଶିମଳା ପର୍ଯ୍ୟନ୍ତ ଏମାନେ ଟାଙ୍ଗାଗାଡ଼ିରେ ଯାଇଥିଲେ । ସେ ସମୟରେ ଅଠାବନ ମାଇଲ ଦୂର ଏହି ରାସ୍ତାରେ ଦ୍ୱିତୀୟ ଶ୍ରେଣୀ ଟାଙ୍ଗା ଗାଡ଼ିରେ ଯିବାକୁ ଦୁଇଦିନ ଓ ଫେରିବାକୁ ବାରଘଣ୍ଟା ସମୟ ଲାଗୁଥିଲା । ଶ୍ରୀପତୀ ମିଶ୍ର କେଉଁ ବର୍ଷ କେଉଁ ମାସରେ ଶିମଳା ଯାତ୍ରା କଲେ ତାହା ଉଲ୍ଲେଖ କରି ନାହାନ୍ତି, ମାତ୍ର ସେମାନେ ଯେଉଁଦିନ ଶିମଳାରେ ପହଞ୍ଚିଲେ ସେଦିନଟି ଗଣେଶ ଚତୁର୍ଥୀ ହୋଇଥିବା ଓ ଗଣେଶ ଚତୁର୍ଥୀ ଦିନ ଚନ୍ଦ୍ର ଦର୍ଶନ ଅଶୁଭ ସଙ୍କେତ ବୋଲି ସେ ଅଞ୍ଚଳରେ ମଧ ପ୍ରବାଦ ଥିବାର ବିଷୟ ଉଲ୍ଲେଖ କରିଛନ୍ତି ।

ସମ୍ବଲପୁରର ଏହି ପାଞ୍ଚଜଣ ପ୍ରତିନିଧି ଶିମିଳାରେ ପହଞ୍ଚି ମଧ୍ୟପ୍ରଦେଶର ଲାଟ ଏଣ୍ଡ୍ରୁଫ୍ରେଜର ଓ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସହିତ ସାକ୍ଷାତ୍‌କାର ପାଇବାର ଉଦ୍ୟମ କଲେ । ଏଥିପାଇଁ ଏମାନଙ୍କ ମଧ୍ୟରୁ ଦୁଇଜଣ ଲାଟ ସାହେବଙ୍କ ସେକ୍ରେଟେରୀଙ୍କ ସହିତ ସାକ୍ଷାତ୍ କଲେ । ଏ ବିଷୟରେ ଶ୍ରୀପତି ମିଶ୍ର ଲେଖିଛନ୍ତି :-

"ଇତି ମଧ୍ୟରେ ଶ୍ରୀ ବ୍ରଜମୋହନ ପଟ୍ଟନାୟକ ଏବଂ ଶ୍ରୀ ବିହାରୀ ଦାସ ମହନ୍ତ ମହାରାଜ କ୍ରମ୍ପ ସାହେବଙ୍କ ସହିତ ପରାମର୍ଶ କରି ବାହୁଡ଼ି ଆସିଲେ । ସାହେବ ମହୋଦୟ ସେମାନଙ୍କୁ ଦେଖି ଚମତ୍କୃତ ହେଲେ । ଓଡ଼ିଆର ସାହାସ, ତ୍ୟାଗ ସ୍ୱୀକାର ଏବଂ ସ୍ୱଦେଶାନୁରାଗ ମୁହୂର୍ତ୍ତକ ପାଇଁ ତାଙ୍କୁ ଆବାକ୍ କରିଦେଲା । ସେ ଆଗମନର ଉଦ୍ଦେଶ୍ୟ ଅବଗତ ହେଲାରୁ କହିଲେ ଯେ ମଧ୍ୟପ୍ରଦେଶର କମିଶନର କାର୍ଯ୍ୟରେ ଏଡ଼େ ବ୍ୟସ୍ତ ଅଛନ୍ତି ଯେ ଆପଣମାନଙ୍କ ସହିତ ସାକ୍ଷାତ୍ ହେବା ସକାଶେ ତାଙ୍କର ସମୟର ଏକାନ୍ତ ଅଭାବ । ଚିଫ୍ କମିଶନର ଅବିଳମ୍ବରେ ଆପଣମାନଙ୍କ ଜିଲ୍ଲାକୁ ଯାଇ ସ୍ୱୟଂ ଭାଷା ବିଷୟରେ ଅନୁସନ୍ଧାନ କରିବେ । ଆମ୍ଭେମାନେ ଯେଉଁ ସମୟରେ ଶିମିଳାରେ ଉପସ୍ଥିତ ଥିଲୁଁ, ସେହି ସମୟରେ ଶିକ୍ଷା ସମିତିର ଅଧିବେଶନ ହେଉଥିଲା । ସ୍ୱୟଂ ଗଭର୍ଣ୍ଣର ଜେନେରାଲ ତିହିଁରେ ଯୋଗଦାନ କରିଥିଲେ । ପ୍ରତ୍ୟେକ ପ୍ରଦେଶର ଶାସନକର୍ତ୍ତାଗଣ ତଦୁପଲକ୍ଷରେ ଦିବାରାତ୍ର ପରିଶ୍ରମ କରୁଥିଲେ । ଆମ୍ଭେମାନେ କ୍ରମ୍ପ ସାହେବଙ୍କ ଉପଦେଶ ଶିରୋଧାର୍ଯ୍ୟ କରି ଗଭର୍ଣ୍ଣର ଜେନେରାଲଙ୍କ ସହିତ ସାକ୍ଷାତ୍ ହେବା ଚେଷ୍ଟାରୁ ନିବୃତ୍ତ ହେଲୁଁ । ଆମ୍ଭମାନଙ୍କର ପରିଶ୍ରମ ଯେ ବ୍ୟର୍ଥ ହେଲା ଏପରି ନୁହେଁ । ଆମ୍ଭେମାନେ ସମ୍ବଲପୁରରେ ଉପନୀତ ହେବାର ଦୁଇଦିନ ପରେ ଚିଫ୍ କମିଶନର ସ୍ୱୀୟ ପରିଦର୍ଶନ ଉଦ୍ଦେଶ୍ୟ ପ୍ରକାଶ ନକରି ଏକାଥରକେ ଶିମିଳାରୁ ସମ୍ବଲପୁରକୁ ଶୁଭାଗମନ କଲେ । ସେ ସକଳ ବିଷୟ ସୂକ୍ଷ୍ମ ରୂପେ ଅନୁସନ୍ଧାନ କରି ସମ୍ବଲପୁରରେ ଓଡ଼ିଆ ପ୍ରଚଳନ କରିବା ନିମନ୍ତେ ଭାରତ ଗଭର୍ଣ୍ଣମେଣ୍ଟଙ୍କ ନିକଟକୁ ରିପୋର୍ଟ କରିବାର ଉଦ୍ଦେଶ୍ୟ ସହରର ଭଦ୍ରଲୋକଙ୍କ ସମ୍ମୁଖରେ ଘୋଷଣା କଲେ ।"

(ଶିମିଳା ଯାତ୍ରା -ନି. ୧୧-୧୮)

ଚିଫ୍ କମିଶନର୍ ଫ୍ରେଜରଙ୍କ ସମ୍ବଲପୁର ଗସ୍ତ ବିଷୟରେ 'ଶିମଳା ଯାତ୍ରା'ରେ ଏକ ବିସ୍ତୃତ ବିବରଣୀ ଦିଆଯାଇଛି । ସେ ଯୁଗରେ ଲାଟ ସାହେବଙ୍କ ଗସ୍ତ ମଫସଲ ସହର ପକ୍ଷରେ ଏକ ଅତି ଐତିହାସିକ ଘଟଣାଥିଲା । ରାସ୍ତା ଘାଟ ସବୁଠାରେ ପୋଲିସ, ଗୁପ୍ତଚର, ଚୌକିଦାର ମାନଙ୍କର ଅହୋରାତ୍ର ପହରା, ଲାଟସାହେବଙ୍କ ଅଙ୍ଗରକ୍ଷୀ ମାନଙ୍କର ପୋଷାକରେ ଚାକଚକ୍ୟ, ଜିଲ୍ଲାପାଳଙ୍କ ଠାରୁ ଅମିନ ଚପରାଶି ପର୍ଯ୍ୟନ୍ତ ସମସ୍ତଙ୍କ ମନରେ ଉଦ୍‌ବେଗ, ଜନସାଧାରଣଙ୍କ ମନରେ ଆତଙ୍କ

ଓ କୌତୁହଳ ସୃଷ୍ଟି କରୁଥିଲା । କିନ୍ତୁ ଚିଫ୍ କମିଶନର୍ଙ୍କ ଏ ଗସ୍ତ ଥିଲା ଟିକିଏ ଭିନ୍ନ ଧରଣର । ଶ୍ରୀପତି ମିଶ୍ର ତାଙ୍କ ପୁସ୍ତିକାର ୭୦ ପୃଷ୍ଠାରେ ଲେଖିଛନ୍ତି :-

"ସହରରେ ଉପସ୍ଥିତ ହେଲା କ୍ଷଣି ଶ୍ରୀମାନ୍ ଫ୍ରେଜର ମହୋଦୟ ବହୁ ସହସ୍ର ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇଥିଲେ । ଲୋକମାନେ ତାହାଙ୍କୁ ଦେବାର୍ଚ୍ଚନ ବିଧିରେ ପୂଜା କରିଥିଲେ । ବ୍ରାହ୍ମଣମାନେ ମନ୍ତ୍ରୋଚାରଣ ପୂର୍ବକ ତାଙ୍କୁ ଦୁର୍ବାକ୍ଷତ ଏବଂ ଅନ୍ୟାନ୍ୟ ଉପକରଣରେ ପୂଜା କରିଥିଲେ ।

ପରଦିବସ ଶ୍ରୀମାନ୍ ଫ୍ରେଜର ମହୋଦୟ ଅଶ୍ୱପୃଷ୍ଠରେ ଏକାକୀ ବିଚରଣ କରିବାକୁ ଲାଗିଲେ । ଲୋକମାନଙ୍କ ରାଜଭକ୍ତି ଓ ନିଜଠାରେ ବ୍ୟକ୍ତିଗତ ଶ୍ରଦ୍ଧା ଉପରେ ତାଙ୍କର ଏପରି ଦୃଢ଼ ବିଶ୍ୱାସ ଥିଲା ଯେ ସେ ଭ୍ରମଣ ମଧ୍ୟରେ ଜଣେ ସୁଦ୍ଧା ଶରୀର-ରକ୍ଷୀ ପ୍ରହରୀ ସଙ୍ଗରେ ନେଇ ନଥିଲେ । ଶାସନକର୍ତ୍ତାଙ୍କ ଉପରେ ଲୋକମାନଙ୍କର ଏପରି ବିଶ୍ୱାସ ଥିଲା ଯେ ପୁତ୍ର ପିତାଙ୍କ ନିକଟରେ ନିଃଶଙ୍କ ମନରେ ଆଳାପ କଲାପରି ଦଳ ଦଳ ଲୋକ ତାଙ୍କଠାରେ ହୃଦୟ ଉନ୍ମୁକ୍ତ କରି ଦୁଃଖ କାହାଣୀ ଜଣାଇଲେ । ଶାସନକର୍ତ୍ତା ମଫସଲରେ ମଧ ସେହି ବେଶରେ ଭ୍ରମଣ କରିଥିଲେ । ତେଣୁ ସେ ଶତପ୍ରତିବନ୍ଧକ ଭେଦକରି ଲୋକମାନଙ୍କ ହୃଦୟ ଦେଶରେ ଉପନୀତ ହେବାରେ ସମର୍ଥ ହୋଇଥିଲେ । ତେଣୁ ବୈଦେଶିକ ସ୍ୱାର୍ଥର କୁତ୍ସିତ ରୂପ ଦର୍ଶନ କରି ପ୍ରକୃତ ସତ୍ୟ ହସ୍ତଗତ କରିବାରେ ସମର୍ଥ ହେଲେ । ଭ୍ରମଣ ଶେଷକରି ଶାସନକର୍ତ୍ତା ସହର ଏବଂ ମଫସଲର ସକଳ ପ୍ରତିନିଧିଙ୍କୁ ନିମନ୍ତ୍ରଣ କରି ସମସ୍ତଙ୍କର ମତ ଜିଜ୍ଞାସା କଲେ । ସମସ୍ତେ ଏକବାକ୍ୟରେ କହିଲେ ଯେ ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳିତ ହୋଇ ସମ୍ବଲପୁର ଓଡ଼ିଶାରେ ମିଳିତ ହେଉ । ମାନ୍ୟବର ଫ୍ରେଜର ମହୋଦୟ ସେହି ବିଷୟରେ ଭାରତ ଗଭର୍ଣ୍ଣମେଣ୍ଟଙ୍କ ନିକଟକୁ ରିପୋର୍ଟ କରିବା ସକାଶେ ପ୍ରତିଶ୍ରୁତି ଦେଲେ । ଯଥାକାଳରେ ସମ୍ବଲପୁରର ଅଦାଲତ ସମୂହରେ ଓଡ଼ିଆ ପ୍ରଚଳିତ ହେଲା । ପରେ ବଙ୍ଗର ଶାସନକର୍ତ୍ତା ସ୍ୱରୂପ ସମ୍ବଲପୁର ଓଡ଼ିଶାରେ ମିଳିତହେବା ବିଷୟରେ ମାନନୀୟ ମହୋଦୟ ବିଶେଷ ଚେଷ୍ଟା କରିଥିଲେ ।"

ବିଂଶ ଶତାବ୍ଦୀର ପ୍ରଭାତରେ ସମଗ୍ର ଭାରତରେ, ବିଶେଷତଃ ଓଡ଼ିଶାର ଉପକୂଳ ଅଞ୍ଚଳରେ ଓ ସମ୍ବଲପୁର ଅଞ୍ଚଳରେ ରାଜନୈତିକ ଅବସ୍ଥା ଏପରି ନୈରାଶ୍ୟଜନକ ଓ ନିଷ୍ଫଳପ୍ରାୟ ଥିଲା, ସେହି ପରିପ୍ରେକ୍ଷୀରେ ସମ୍ବଲପୁରର ଭାଷା ଆନ୍ଦୋଳନର ଗୁରୁତ୍ୱ ବିଶେଷ ପ୍ରଣିଧାନ ଯୋଗ୍ୟ । ଓଡ଼ିଶାର ରାଜନୈତିକ କେନ୍ଦ୍ରଠାରୁ ସମ୍ବଲପୁର ଦୂରରେ ଥିବା ଯୋଗୁଁ ଏ ଆନ୍ଦୋଳନରେ ସମ୍ବଲପୁରବାସୀ ମାନଙ୍କର ଅବଦାନ ଓଡ଼ିଶାର ରାଜନୈତିକ ଇତିହାସ ବା ସାହିତ୍ୟରେ ଉପଯୁକ୍ତ

ସ୍ଥାନ ପାଇନାହିଁ । ଅପର ପକ୍ଷରେ ସେ କାଳର ଇତିହାସ ଯେଉଁମାନେ ଲେଖୁଛନ୍ତି ବା ଲେଖିଛନ୍ତି ସେମାନେ ଓଡ଼ିଶାରେ ସମ୍ବଲପୁରର ମିଶ୍ରଣରେ ଉପକୂଳ ଅଞ୍ଚଳର କେତେ ନେତାଙ୍କର ଗୌରବ ବଢ଼ାଇବାକୁ ଯାଇ ସମ୍ବଲପୁର ଅଧିବାସୀ ଓ ନେତାମାନଙ୍କର ତଥାକଥିତ ନିଷ୍କ୍ରିୟତା ବା ଅପାରଗତା ଦର୍ଶାଇବାକୁ ଦ୍ୱିଧାବୋଧ କରିନାହାନ୍ତି । ଏହା ଏକଦେଶଦର୍ଶିତା । ଫ୍ରେଜର ସାହେବଙ୍କ ସମ୍ବଲପୁରକୁ ଆକସ୍ମିକ ଆଗମନ ଅବସରରେ ସମ୍ବଲପୁରର ଜନସାଧାରଣଙ୍କ ଓ ନେତାମାନଙ୍କର ସ୍ୱତଃସ୍ଫୂର୍ତ୍ତ ଉଦ୍ଦୀପନା ବିଷୟରେ ଆଜିଠାରୁ ପ୍ରାୟ ସତୁରିବର୍ଷ ପୂର୍ବେ ଲେଖାଯାଇଥିବା ଉପର୍ଯ୍ୟୁକ୍ତ ବିବରଣୀରୁ ଜଣାପଡ଼େ ଯେ ସମ୍ବଲପୁର ଜିଲ୍ଲାରେ ସେ ସମୟରେ ମାତୃଭାଷାର ପୁନରୁଦ୍ଧାର ପାଇଁ ଯେଉଁ ଆନ୍ଦୋଳନ ହୋଇଥିଲା, ତହିଁର ମୂଳରେ ଥିଲା ସ୍ଥାନୀୟ ଲୋକମାନଙ୍କର ଓ ନେତାମାନଙ୍କର ବ୍ୟାପକ ସଙ୍ଗଠନ । ଏହି ସଙ୍ଗଠନକୁ ଏ ପର୍ଯ୍ୟନ୍ତ ଯଥାଯଥ ମୂଲ୍ୟ ଦିଆଯାଇନାହିଁ ।



# ପଶ୍ଚିମ ଓଡ଼ିଶାରେ ସ୍ୱାଧୀନତା ଚେତନା

ଶିବପ୍ରସାଦ ଦାଶ

ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ପ୍ରତିହାର ବା ପରିହାର ବଂଶର ରାଜା ଭୋଜ ପ୍ରବଳ ପରାକ୍ରମରେ ପଞ୍ଜାବରୁ ବଙ୍ଗଳା ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଦଶମ ଶତାବ୍ଦୀରେ ରାଷ୍ଟ୍ରକୂଟମାନେ ଏହି ସାମ୍ରାଜ୍ୟ ଧ୍ୱଂସ କରି ପ୍ରତିହାର ଶକ୍ତିକୁ ଚୂର୍ଣ୍ଣ କରିଥିଲେ । ଫଳରେ ଉତ୍ତର ଭାରତରେ ଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ଅଭ୍ୟୁଦୟ ଘଟିଥିଲା । ଡ଼ାହାଳ ବା ଜବଲପୁରରେ ଚେଦୀମାନେ ଏକ ରାଜ୍ୟ ସ୍ଥାପନ କରି ତ୍ରିପୁରୀକୁ ରାଜଧାନୀ କଲେ । ଏମାନଙ୍କୁ ତ୍ରିପୁରୀର ହୈହୟ କଲଚୁରୀ କୁହାଯାଏ ।

ହୈହୟ କଲଚୁରୀ ବଂଶର ରାଜା ଗାଙ୍ଗେୟଦେବ (୧୦୧୫-୧୦୪୦) ତିରହୁତଠାରୁ କାନାଡ଼ ପର୍ଯ୍ୟନ୍ତ ଯୁଦ୍ଧ ବିଜୟ କରି ସମ୍ବଲପୁର, ସୋନପୁର, ପାଟଣା ହସ୍ତଗତ କରିଥିଲେ ଏବଂ ସେହି ଅଞ୍ଚଳ ସୋମଗୁପ୍ତ (ଓଡ଼ିଶାର କେଶରୀ) ବଂଶର ମହାମଣ୍ଡଳେଶ୍ୱରଙ୍କୁ ସୋନପୁରରୁ ତଡ଼ି ଦେଇଥିଲେ ।

କିନ୍ତୁ ଦେବଗିରିର ଯାଦବ ରାଜା କୃଷ୍ଣଦେବ - ତ୍ରିପୁରୀର କଲଚୁରୀ କ୍ଷମତା ଧ୍ୱଂସ କଲେ ଏବଂ କଲଚୁରୀ ବଂଶର ଅଷ୍ଟମ ରାଜା ରତ୍ନଦେବ ତ୍ରିପୁରୀରୁ ରତ୍ନପୁରକୁ ରାଜଧାନୀ ହଟାଇ ଆଣିଲେ । ଏତେବେଳେ ଓଡ଼ିଶାର ଚୋଳ ବଂଶର ରାଜେନ୍ଦ୍ର ଚୋଳ ସୋନପୁର କୋଶଳ ପୁନରୁଦ୍ଧାର କରିଥିଲେ । ଚୋଳ ବଂଶର ଚାରିଜଣ ମହାମଣ୍ଡଳେଶ୍ୱର ପ୍ରାୟ ଶହେ ବର୍ଷ ସୋନପୁରରୁ କୋଶଳ ବା ପଶ୍ଚିମ ଓଡ଼ିଶା ଶାସନ କରିଥିଲେ ।

ପୂର୍ବୋକ୍ତ ରତ୍ନଦେବଙ୍କ ନାତି ଜାଜ୍ଜଲ୍ଲଦେବ (୧୧୬୦-୧୧୮୦) କ୍ଷମତାଶାଳୀ ହୋଇ ସୋନପୁର ମହାମଣ୍ଡଳେଶ୍ୱର ସୋମେଶ୍ୱର ଦେବା ବା ଭୁଜବଳଙ୍କୁ ଯୁଦ୍ଧରେ ବନ୍ଦୀ କରି କୋଶଳ ମଣ୍ଡଳରୁ ରାଜସ୍ୱ ଆଦାୟ କରିଥିଲେ ।

ଜାଜଲ୍ଲ ଦେବ ନୃପତିଷ୍ଠ ସ୍ଥନୁରଭୂତ୍ ସୁବର୍ଣ୍ଣପୁରନାଥଂ
ଭୁଜବଳମବଳଂଚକ୍ରେ ନିଜଭୁଜବଳତଃ ସମୀକେ ଯଃ ।।
(ଖରୋଦ ଶିଳାଲୀପି ଜିଲ୍ଲା ବିଲାସପୁର)

ରତ୍ନପୁର ରାଜା ଓଡ଼ିଶା ଗଜପତିଙ୍କ ତୁଳନାରେ ଅତି ଖର୍ବ ଥିଲେ । ଗଜପତି ଅନନ୍ତବର୍ମା ଚୋଳଗଙ୍ଗଦେବ ସେତେବେଳେ ଦାକ୍ଷିଣାତ୍ୟ ଓ ବଙ୍ଗଳା ଯୁଦ୍ଧରେ ନିତାନ୍ତ ବ୍ୟସ୍ତ ଥିଲେ । ତେଣୁ ସୋନପୁର କୋଶଳ ପ୍ରତି ଧ୍ୟାନ ଦେଇ ପାରିନଥିଲେ । ରତ୍ନପୁର ଏହି ଅବସ୍ଥାର ସୁଯୋଗ ନେଇ ସୋନପୁର କୋଶଳକୁ ମାଡ଼ି ବସିଥିଲା ଏବଂ ଗଜପତିଙ୍କ ସଙ୍ଗେ ବହୁଦିନ ପର୍ଯ୍ୟନ୍ତ ଯୁଦ୍ଧ ଚଳାଇଥିଲା । ଯାହାହେଉ, ଶେଷରେ ୧୩୩୮ ଖ୍ରୀଷ୍ଟାବ୍ଦରେ ଅନନ୍ତବର୍ମାଙ୍କ ପଣନାତି ଅନଙ୍ଗଭୀମଦେବ ରତ୍ନପୁର ରାଜାଙ୍କ ସୋନପୁର କୋଶଳ ଅଧିକାର ସାଧ ସଂପୂର୍ଣ୍ଣ ରୂପେ ମେଣ୍ଟାଇ ଦେଇଥିଲେ ।

ଏହି ରାଜନୈତିକ ଅବ୍ୟବସ୍ଥିତ ପରିସ୍ଥିତି ପ୍ରଜାମାନଙ୍କୁ ସ୍ୱାୟତ୍ତଶାସନ ନିମନ୍ତେ ଏକ ମାହେନ୍ଦ୍ର ସୁଯୋଗ ଆଣି ଦେଇଥିଲା । ଯୁଦ୍ଧବେଳେ ସୈନ୍ୟମାନେ ପ୍ରଜା ବା ଜନତାର କୌଣସି ମୁକାବିଲା ବା କ୍ଷତି କରୁ ନଥିଲେ । ଶାନ୍ତିବେଳେ ହୈହୟ ବଂଶ ହୁଅନ୍ତୁ ବା ଗଙ୍ଗ ବଂଶ ହୁଅନ୍ତୁ, କେନ୍ଦ୍ରରୁ କୌଣସି ପ୍ରକାର ବଳିଷ୍ଠ କର୍ତ୍ତୃତ୍ୱ ଜାରି କରି ପାରୁନଥିଲେ । ମଣ୍ଡଳମାନଙ୍କର ମଣ୍ଡଳେଶ୍ୱରମାନେ କେନ୍ଦ୍ରୀୟ ରାଜସ୍ୱ ପୈଠ କରିଦେଲେ, କେନ୍ଦ୍ର ଅନ୍ୟ କୌଣସି ପ୍ରକାର କ୍ଷେତ୍ରରେ ମଣ୍ଡଳେଶ୍ୱରଙ୍କ କାର୍ଯ୍ୟରେ ହସ୍ତକ୍ଷେପ ବା ପ୍ରତିବନ୍ଧକତା କରୁନଥିଲେ ।

ବହୁ ପ୍ରାଚୀନ କାଳରୁ ଭାରତରେ ପ୍ରବର୍ତ୍ତିତ ଏକ ସୁଗଠିତ ଓ ସୁପରିଚାଳିତ ଶାସନ ସଂସ୍ଥା ରହି ଆସିଥିଲା । ସୋମଗୁପ୍ତ ବଂଶ ପଶ୍ଚିମ ଓଡ଼ିଶାରେ ସେହି ରାଜନୈତିକ ଶାସନସଂସ୍ଥା ପ୍ରବର୍ତ୍ତନ କରିଥିଲେ ।

ସମଗ୍ର ରାଷ୍ଟ୍ରର କୈନ୍ଦ୍ରିକ ଶାସନରେ ରାଜାଙ୍କ ତଳେ ଅଷ୍ଟ ପ୍ରଧାନ ବା ଆଠଜଣ ମନ୍ତ୍ରୀ ରହୁଥିଲେ । କେନ୍ଦ୍ର ଶାସନ ତଳେ ରାଷ୍ଟ୍ର କେତେକ ମହାମଣ୍ଡଳରେ ବିଭକ୍ତ ରହୁଥିଲା । ମହାମଣ୍ଡଳରେ ଜଣେ ମହାମଣ୍ଡଳେଶ୍ୱର ରହୁଥିଲେ । ସାଧାରଣତଃ ଜଣେ ରାଜକୁମାର ବା କେହି ରାଜବଂଶୀୟ ଏହି ପ୍ରକାର ମହାମଣ୍ଡଳେଶ୍ୱର ନିଯୁକ୍ତ ହେଉଥିଲେ । ମହାମଣ୍ଡଳ କେତେକ ମଣ୍ଡଳରେ ବିଭକ୍ତ ରହୁଥିଲା ଏବଂ ସେଠାରେ ଜଣେ ମଣ୍ଡଳେଶ୍ୱର ରହୁଥିଲେ । ମଣ୍ଡଳ କେତେକ ବିଷୟ (ଜିଲ୍ଲା)ରେ ବିଭକ୍ତ ହେଉଥିଲା । ମଣ୍ଡଳେଶ୍ୱର ସେଠାରେ ଜଣେ ବିଷୟପତିଙ୍କୁ (ବିଷୋଇ) ନିଯୁକ୍ତ କରୁଥିଲେ । ବିଷୟମାନ ପାଟକରେ (ପଟି - ଥାନା) ବିଭକ୍ତ ହେଉଥିଲା । ପାଟକମାନେ କେତେକ ଗ୍ରାମର ସମଷ୍ଟି ମାତ୍ର । ଗ୍ରାମରେ ଜଣେ ଗ୍ରାମଣୀ ବା ବୃହଦ୍‌ଭୋଗୀ ମାଳିକ ରହୁଥିଲେ ।

ଯେ ଗ୍ରାମର ବ୍ୟବସ୍ଥା କରୁଥିଲେ ଏବଂ ରାଜସ୍ୱ ବିଷୟପତିଙ୍କ ଠାରେ ଜମା ଦେଉଥିଲେ । ଗ୍ରାମଣୀ କେତେକ ଜମି ବିନା ରାଜସ୍ୱରେ ବୃତ୍ତି ରୂପେ ଭୋଗ କରୁଥିଲେ । ଏହି ଜମି ଏପର୍ଯ୍ୟନ୍ତ ଭୋଗରା ନାମରେ କଥିତ ହୁଏ । ଏହି ପ୍ରଣାଳୀରେ ରାଜସ୍ୱ କେନ୍ଦ୍ରକୁ ପୈଠ ହେଉଥିଲା ।

କଳାହାଣ୍ଡି ବ୍ୟତୀତ ସମଗ୍ର ପଶ୍ଚିମ ଓଡ଼ିଶାକୁ ସୁବର୍ଣ୍ଣପୁର (ସୋନପୁର) ମହାମଣ୍ଡଳ କୁହାଯାଉଥିଲା । ସୋନପୁରରେ ମହାମଣ୍ଡଳେଶ୍ୱର ରହୁଥିଲେ । ଏହା ତଳେ ଗୁଡ଼ିଏ ମଣ୍ଡଳ ଥିଲା । ମଣ୍ଡଳ ଗୁଡ଼ିକର ନାମ ତାମ୍ରଶାସନ ଭିତ୍ତିରୁ ଜଣାଯାଉ ନଥିଲେ ମଧ ସେଗୁଡ଼ିକ ନିଶ୍ଚୟ ପାଟଣା, ବୌଦ, ରେଢ଼ାଖୋଲ, ବାମଣ୍ଡା, ଆଠମଲିକ ପ୍ରଭୃତି ହୋଇଥିବ । ବିଭିନ୍ନ ଭିତ୍ତିରୁ ସଂଗୃହୀତ ଓଡ଼ିଶାର କେତେକ ମଣ୍ଡଳର ନାମ ତଳେ ଦିଆଗଲା :-

୧. ମୟୁରଭଞ୍ଜ - କେନ୍ଦୁଝର : ଖିଚିଙ୍ଗ ମଣ୍ଡଳ
୨. ତାଳଚେର - ଢ଼େଙ୍କାନାଳ : କୋଦାଳ ମଣ୍ଡଳ
୩. ରେଢ଼ାଖୋଲ - ଅନୁଗୁଳ : ଯମଗର୍ତ୍ତ ମଣ୍ଡଳ
୪. ନୟାଗଡ଼ - ଦଶପଲ୍ଲା : ଚାମୁଣ୍ଡା ମଣ୍ଡଳ
୫. ନରସିଂହପୁର - ବଡ଼ମ୍ବା : ଐରାବତ ମଣ୍ଡଳ
୬. ବଣାଇ : ବନାଇ ମଣ୍ଡଳ
୭. କାସାଇ - ସୁବର୍ଣ୍ଣରେଖା ଅଞ୍ଚଳ : ଦଣ୍ଡଭୁକ୍ତ ମଣ୍ଡଳ

ଅନୁମାନ କରାଯାଏ, ସୋନପୁର, ବାମଣ୍ଡା, ରେଢ଼ାଖୋଲ ପ୍ରତ୍ୟକ୍ଷରେ ସୋନପୁରରୁ ଶାସିତ ହେଉଥିଲା ଏବଂ ବରଗଡ଼ - ସମ୍ବଲପୁର ଅଞ୍ଚଳ ସୋନପୁର ଅନ୍ତର୍ଗତ ଥିଲା ।

ଗ୍ରାମଗୁଡ଼ିକ ସ୍ୱୟଂଶାସିତ ଅଞ୍ଚଳ ଥିଲା । ଗ୍ରାମଣୀ ଗ୍ରାମର ବୃଦ୍ଧମାନଙ୍କୁ ଘେନି ଏକ ପଞ୍ଚାୟତ ସଭା ଗଠନ କରି ସେହି ସଭାର ସାହାଯ୍ୟରେ ଗ୍ରାମର ସମସ୍ତ ବ୍ୟବସ୍ଥା କରୁଥିଲେ ଏବଂ କଳିଗୋଳ ନିଷ୍ପତ୍ତି କରୁଥିଲେ । ଲୋକେ ରାଜଦରବାରକୁ ସାଧାରଣତଃ ଯାଉ ନଥିଲେ ।

ମହାମଣ୍ଡଳେଶ୍ୱରମାନଙ୍କୁ ମହାରାଣକ ଏବଂ ମଣ୍ଡଳେଶ୍ୱର ମାନଙ୍କୁ ରାଣକ କୁହାଯାଉଥିଲା । ମଣ୍ଡଳ ମଧ୍ୟରେ ରାଣକ ସବୁ ବ୍ୟବସ୍ଥା କରୁଥିଲେ ଏବଂ ମଣ୍ଡଳର ରାଜସ୍ୱ ଆଦାୟ କରିବା ଛଡ଼ା ମହାରାଣା ତାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରୁନଥିଲେ । କୈନ୍ଦ୍ରିକ ଶାସନ ମଧ ସେହିପରି ମହାରାଣାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରୁ ନଥିଲେ ।

ମହାରାଣାଙ୍କ ଏକ ମନ୍ତ୍ରୀସଭା ଥିଲା । ମନ୍ତ୍ରୀସଭା ରାଜ୍ୟର ଶାସନ କଥା ବୁଝୁଥିଲା । ରାଣାଙ୍କ

ମଣ୍ଡଳ ମଧ୍ୟରେ ବାସ କରୁଥିବା ବୃଦ୍ଧ ଓ ଜ୍ଞାନୀ ବା ମହଲ୍ଲିକ ମାନଙ୍କ ସାହାଯ୍ୟରେ ମଣ୍ଡଳର ଶାସନ ବ୍ୟବସ୍ଥା ଚଳାଉଥିଲେ । ପାଲୀ ଭାଷାରେ ମହଲ୍ଲିକ ଶବ୍ଦର ଅର୍ଥ ବୃଦ୍ଧ ଓ ଜ୍ଞାନୀ । ଏମାନେ ମଣ୍ଡଳର ବିଭିନ୍ନ ଅଞ୍ଚଳର ପ୍ରତିନିଧି ଥିଲେ । ଆଠଜଣ ମହଲ୍ଲିକ ରାଣାଙ୍କୁ ସାହାଯ୍ୟ କରୁଥିଲେ । ଆଠଜଣ ମହଲ୍ଲିକ ରହୁଥିବାରୁ ଏବେ ସୁଦ୍ଧା ପଶ୍ଚିମ ଓଡ଼ିଶାର ଏକ ଅଞ୍ଚଳର ନାମ ଆଠମଲ୍ଲିକ ରହିଅଛି । ପାଟଣା ମଣ୍ଡଳରେ ମଧ୍ୟ ଆଠଜଣ ମହଲ୍ଲିକ ଥିଲେ ।

ପଶ୍ଚିମ ଓଡିଶା ଆଦିବାସୀ ବହୁଳ ଅଞ୍ଚଳ । ଶବର, ମୁଣ୍ଡା, ଗଣ୍ଡା, କନ୍ଧ, ବିଂଝାଲ, ଓରାମ ଏହାର ପ୍ରଧାନ ଅଧିବାସୀ । ଏମାନେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ଜଣେ ଜଣେ ଦଳପତିଙ୍କ ଅଧୀନରେ ରହୁଥିଲେ । ପ୍ରତ୍ୟେକ ଦଳର ଗୋଟିଏ ଗୋଟିଏ ଦୁର୍ଗ ଥିଲା । ରାଣକମାନେ ସହଯୋଗ ଅପେକ୍ଷାରେ ଆଦିବାସୀ ଦଳପତିଙ୍କ ବିନା ପରାମର୍ଶରେ ମଣ୍ଡଳର ଶାସନକାର୍ଯ୍ୟ ପରିଚାଳନା କରୁ ନଥିଲେ । ଯେଉଁ ବଂଶ ଯେତେବେଳେ ଶାସନକ୍ଷମତା ହସ୍ତଗତ କରୁଥିଲେ, ଆଦିବାସୀ ଦଳପତିମାନେ ସେତେବେଳେ ସେମାନଙ୍କର ଆନୁଗତ୍ୟ ସ୍ୱୀକାର କରି ଦେୟ ରାଜସ୍ୱ ଅର୍ପଣ କରୁଥିଲେ ।

ଆବହମାନ କାଳରୁ ପଶ୍ଚିମ ଓଡ଼ିଶାରେ ଏ ପ୍ରକାର ସ୍ୱୟଂଶାସନ ଓ ପ୍ରତିନିଧି ମୂଳକ ଶାସନ ପ୍ରବର୍ତ୍ତିତ ହୋଇ ଆସିଅଛି । ସୋମବଂଶ ପରେ ଅନ୍ୟ ବଂଶମାନେ ମଧ୍ୟ ଇଂରେଜ ଶାସନ ପର୍ଯ୍ୟନ୍ତ ସେହି ସ୍ଥାନୀୟ ସଂସ୍ଥାରେ ବିଶେଷ କିଛି ପରିବର୍ତ୍ତନ କରି ନଥିଲେ । ବିଶେଷତଃ ହୈହୟ ଓ ଗଙ୍ଗବଂଶ ଅମଳରେ ପଶ୍ଚିମ ଓଡ଼ିଶାରେ ଏକପ୍ରକାର ଅରାଜକତା ଉପସ୍ଥିତ ହୋଇଥିଲା । ସେହି ଦୁଇ ବଂଶ ପଶ୍ଚିମ ଓଡ଼ିଶାରେ ବଳିଷ୍ଠ କର୍ତ୍ତୃତ୍ୱ ପ୍ରତିଷ୍ଠା କରିପାରି ନଥିଲେ । ସାମନ୍ତ ଓ ଉପସାମନ୍ତ ମାନେ ଏକପ୍ରକାର ପୂର୍ଣ୍ଣ ସ୍ୱାଧୀନତା ଉପଭୋଗ କରୁଥିଲେ । ସେମାନେ ନିରଙ୍କୁଶ କର୍ତ୍ତୃତ୍ୱରେ ନିଜେ ନିଜେ ରହିଥିଲେ ।

ଏ ସମସ୍ତର ପରିଣାମରେ ପଶ୍ଚିମ ଓଡ଼ିଶାର ଜନତାର ପ୍ରାଣରେ ସ୍ୱାଧୀନତା ମନୋବୃତ୍ତି ବା ଚେତନାର ବିକାଶ ହୋଇ ବଳିଷ୍ଠ, ଦୃଢମୂଳ ଓ ଅସ୍ଥିମଜ୍ଜାଗତ ହୋଇଥିଲା । ଏହି ଚେତନା ପୁରୁଷାନୁକ୍ରମିକତାର ରୂପ ଧାରଣ କରିଅଛି । ବିଟ୍ରିଶ ଶାସନ ଅଳ୍ପକାଳ ସ୍ଥାୟୀ ଅର୍ଥାତ୍ ଶହେ ବର୍ଷରୁ ଊଣା ହୋଇଥିବାରୁ ସେହି ଚେତନାକୁ ଦମନ କରିପାରି ନଥିଲା ।

ବ୍ରିଟିଶ ଶାସନ କାଳରେ ପଶ୍ଚିମ ଓଡ଼ିଶାର ସ୍ୱାଧୀନଚେତା ନେତା ସୁରେନ୍ଦ୍ର ସାଏ, ତାଙ୍କ ସହଚର ଆଦିବାସୀ ଜମିଦାର ଶ୍ରେଣୀ ତଥା ସାଧାରଣ ଜନତାର ଅନ୍ୟାନ୍ୟ ଜନନାୟକମାନେ ବିପ୍ଲବ କରି ବ୍ରିଟିଶ ଶାସନକାଳକୁ କିପରି ଟଳମଳ କରି ଦେଇଥିଲେ, ତାହା ସମସ୍ତଙ୍କୁ ଜଣା ଅଛି ।

ଏଠାରେ ତହିଁର ପୁନରାବୃତ୍ତି କଲେ, ପ୍ରବନ୍ଧର କଳେବର ଅଯଥା ବୃଦ୍ଧି ହେବ।

ଏହି ସ୍ୱାଧୀନତା ଚେତନା ଏପର୍ଯ୍ୟନ୍ତ ପଶ୍ଚିମ ଓଡ଼ିଶାରେ ଅବିକଳ ରହିଅଛି। ୧୯୨୦ ମସିହାରେ ଯେତେବେଳେ ମହାତ୍ମାଗାନ୍ଧୀ କଂଗ୍ରେସ ମହାପୀଠରେ ଅସହଯୋଗ ଆନ୍ଦୋଳନ ଚଳାଇବାର ପ୍ରସ୍ତାବାନୁମୋଦନ କରାଇ ନେଲେ, ସମ୍ବଲପୁର ଜିଲ୍ଲାସ୍କୁଲର କିଶୋର ଛାତ୍ରମଣ୍ଡଳୀ ପ୍ରଥମେ ବିଦ୍ୟାଳୟ ବର୍ଜନ କରି ଚାଲି ଆସିଥିଲେ ଏବଂ ଭାରତରେ ଏକ ମହାନ୍ ଆଦର୍ଶ ଦେଖାଇଥିଲେ। ସେତେବେଳେ କଲିକତା ମହାନଗରୀ ସ୍କୁଲ କଲେଜରେ କିମ୍ବା କଟକରେ ରେଭେନ୍ସା କଲେଜରେ ମଧ୍ୟ ଆନ୍ଦୋଳନର ସୂତ୍ରପାତ ହୋଇ ନଥିଲା। ଜଣେ ଭାରତୀୟ ନେତା କଲିକତା ମହାନଗରୀର ଏକ ଜନସଭାରେ ବଙ୍ଗଳା ଭାଷାରେ ଯାହା ଏ ବିଷୟରେ କହିଥିଲେ, ଏଠାରେ ତାହାର ଓଡ଼ିଆ ଅନୁବାଦ ଦିଆ ଯାଉଅଛି।

"କାହିଁ ଜଙ୍ଗଲ ମଧ୍ୟରେ ସମ୍ବଲପୁର। ସେଠାରେ କିଶୋର ସ୍କୁଲ ଛାତ୍ରମାନେ ଅସହଯୋଗ ଆନ୍ଦୋଳନର ଆହ୍ୱାନରେ ସ୍କୁଲ ଛାଡ଼ି ଦେଇ ଅଛନ୍ତି, ଅଥଚ କଲିକତା ମହାନଗରୀର ସୁଶିକ୍ଷିତ ଜନତା ମଧ୍ୟରେ କୌଣସି ଜାଗରଣ ବା ଉନ୍ମାଦନା ନାହିଁ।"

ଆଜି ଏହି ପବିତ୍ର ସ୍ୱାଧୀନତା ଦିବସରେ ପଶ୍ଚିମ ଓଡ଼ିଶାର ଅଧିବାସୀମାନଙ୍କୁ ସେହି ସ୍ୱାଧୀନତା ଚେତନାର ମନୋବୃତ୍ତି ଅକ୍ଷୁର୍ଣ୍ଣ ତଥା କ୍ରମବର୍ଦ୍ଧମାନ ରଖିବାକୁ ଆହ୍ୱାନ କରି ପ୍ରବନ୍ଧର ଉପସଂହାର କରୁଅଛି।



# ସମ୍ବଲପୁରୀ ଉପଭାଷା

ମଙ୍ଗଲୁ ଚରଣ ବିଶ୍ୱାଳ

ସବୁଠୁ ବଡ଼ ମଣିଷର ମନ । ଏଇ ମନର ବାହାରେ ଭାଷାର କୌଣସି ସ୍ଥିତି ନାହିଁ । ଭାଷା ଭାବ ବି ଚିନ୍ତାର ବାହପ । ଲିଖିତ ଭାଷା କଥିତ ଭାଷାର ସ୍ଥାୟୀ ପ୍ରତିନିଧି । ବାଂମୟ ଧ୍ୱନିର ପ୍ରକାଶ୍ୟ ରୂପହିଁ ଲିପି । କୌଣସି ଏକ ଭାଷା ଗୋଷ୍ଠୀର ଲୋକ ସଂଖ୍ୟା କ୍ରମବର୍ଦ୍ଧିଷ୍ଣୁ ହେଲେ ଉପଭାଷାର ଜନ୍ମ ଅନିବାର୍ଯ୍ୟ ହୋଇପଡେ । କୌଣସି ଏକ ନିର୍ଦ୍ଦିଷ୍ଟ ଭାଷାଭାଷୀ ଅଞ୍ଚଳରେ ବେଳେବେଳେ ତା'ର ବାକ୍‌ରୀତିର ସ୍ୱାତନ୍ତ୍ର୍ୟ ଯୋଗୁଁ ହେଉ ବା ଅନ୍ୟ ପଡୋଶୀ ଭାଷାର ପ୍ରଭାବରେ ହେଉ କ୍ରମଶଃ ମୂଳ ଭାଷାର କର୍ତ୍ତୃତ୍ୱ ବା ନିୟନ୍ତ୍ରଣ ଦୁର୍ବଳ ହୋଇପଡେ । ଫଳରେ ସେ ଅଞ୍ଚଳରେ ଉପ ଭାଷାର ଜନ୍ମ ଏକ ଜରୁରୀ ପ୍ରୟୋଜନରେ ପରିଣତ ହୁଏ । ଭୌଗୋଳିକ, ବାଣିଜ୍ୟକ ଓ ରାଜନୈତିକ କାରଣରୁ ମଧ୍ୟ ଏକ ଭାଷାରୁ ଅନେକ ଉପ ଭାଷାର ଜନ୍ମ ଘଟେ । ପୂର୍ବରୁ ସୂଚିତ ବାକ୍‌ରୀତି ଅନେକ ସମୟରେ ଉପ ଭାଷାର ଉଦ୍‌ଭବ ଦିଗରେ ଯଥେଷ୍ଟ ପ୍ରଭାବ ପକାଇ ଥାଏ । ଆମେ ସାଧାରଣତଃ ତିନୋଟି ବାକରୀତିର ବ୍ୟବହାର କରିଥାଉ (୧)ଲିଖିତ ଭାଷାର-ଆପଣ କେଉଁଆଡେ ଯାଉଛନ୍ତି ? (୨) କଥିତ ଭଦ୍ର ଭାଷାର-ଆପଣ କେଉଁଆଡେ ଯାଉଛନ୍ତି ? (୩) ଉପ-ଭାଷାର-ଆପଣ କେନକେ ଯାଉଛନ୍ ? ଆମେ ଯେ କୌଣସି ବଳିଷ୍ଠ ଶକ୍ତିଶାଳୀ ଭାଷାର ଅନୁଧାନ କଲେ ଜାଣି ପାରିବା ଯେ ସେ ଭାଷାର ପ୍ରଶସ୍ତି ଓ ସୁପରିଚୟ ମୂଳରେ ରହିଛି ଏକାଧିକ ଉପ ଭାଷାର ଦାନ । ଉପ ଭାଷା ଏକ ସ୍ୱୟଂସଂପୂର୍ଣ୍ଣ ଭାଷାର ଗୌରବ ହାସଲ କରିବା ମୂଳରେ ରହିଛି ସେହି ଉପଭାଷା ମାଧ୍ୟମରେ ସାହିତ୍ୟ ସୃଷ୍ଟି । ପ୍ରତିଭାବାନ୍ କବି, ଚିନ୍ତାଶୀଳ ଜନନାୟକ ଯେଉଁ ଉପଭାଷା ମାଧମରେ ଆପଣାର ରଚନା ଓ ଚିନ୍ତାକୁ ପ୍ରକାଶ କରନ୍ତି, ପାଠକ ଓ ଉତ୍ତର ପୁରୁଷ ଗଣ ଓ ପରବର୍ତ୍ତୀ କବି ଶିଳ୍ପୀଗଣଙ୍କ ଉପରେ ସେ ଭାଷାର ପ୍ରଭାବ ନିଶ୍ଚୟ ପଡିବ । ଫଳତଃ ସେଇ ଉପଭାଷା ଏକ ଶିଷ୍ଟ ରୂପ ଲାଭ କରି ପ୍ରଚଳିତ ଭାଷାର ସ୍ଥାନ ଗ୍ରହଣ କରି ଓ ସାହିତ୍ୟର ବାହକ ହୋଇ ପୂର୍ବର ସାହିତ୍ୟିକ ଭାଷାର ସମଧର୍ମୀ ଓ ସମକର୍ମୀ ହୋଇପଡେ ।

ଆମ ଓଡିଶାର ଭାଷା ଓଡିଆ । ଏଇ ଓଡିଆ ଭାଷା ଆଜି ବିକାଶର ଯେଉଁ ସ୍ତରରେ ଅଛି,

ଆଗେ ସେପରି ନଥିଲା । ଅତୀତରୁ ଆଜି ପର୍ଯ୍ୟନ୍ତ ଓଡିଆ ଭାଷାର ବିକାଶର ଯେଉଁ ସ୍ତର ଦେଇ ଆସିଛି, ତା'ର ଏକ ସଂକ୍ଷିପ୍ତ ସୂଚନା ଏଠି ଅପ୍ରାସଙ୍ଗିକ ହେବ ନାହିଁ । ପୃଥିବୀର ବିଭିନ୍ନ ଭାଷାଗୋଷ୍ଠୀ କୌଣସି ଏକ ମୌଳିକ ଭାଷାରୁ ଜନ୍ମଲାଭ କରିଛନ୍ତି । ଇନ୍ଦୋୟୁରୋପୀୟ ଭାଷା ପରିବାର ଏଇ ମୌଳିକ ଭାଷାରୁ ଜାତ ପରିବାର ନଅଟି ଶାଖା ମଧ୍ୟରୁ ଇନ୍ଦୋଇରାନୀୟ ଏକ ଉପଶାଖା । ଏଇ ଉପଶାଖାରୁ ଭାରତୀୟ ଆର୍ଯ୍ୟଭାଷା ଉତ୍ପନ୍ନ ବୋଲି ଭାଷା ବିଜ୍ଞାନୀମାନଙ୍କ ମତ । ଭାରତୀୟ ଆର୍ଯ୍ୟ ଭାଷାର ଆଦି ରୂପ ଥିଲା ବୈଦିକ ସଂସ୍କୃତରୁ ସଂସ୍କୃତ । ସଂସ୍କୃତର ପରବର୍ତ୍ତୀ ସରଳତର ଅବସ୍ଥାହିଁ ପ୍ରାକୃତ । ପ୍ରାକୃତର ପ୍ରାଚୀନତମ ଅବସ୍ଥାକୁ 'ପାଲି' କହନ୍ତି । ମହାରାଷ୍ଟ୍ରୀ, ସୌରସେନୀ, ମାଗଧୀ ଅର୍ଦ୍ଧ ମାଗଧୀ ଓ ପୈଶାଚୀ ପ୍ରାକୃତ ସବୁ ଦେଶର ଅଂଚଳ ବିଶେଷରେ ପ୍ରଚଳିତ ଲୋକ ଭାଷା । ପ୍ରାକୃତର କ୍ରମ ପରିବର୍ତ୍ତିତ ରୂପ ହେଉଛି 'ଅପଭ୍ରଂଶ' ମାଗଧୀ ଅପଭ୍ରଂଶରୁ ପ୍ରାଚୀନ ଓଡିଆ ଭାଷାର ଜନ୍ମ। ସାଧୁ ଓଡିଆ ଭାଷା ବୋଇଲେ ଆମେ ସାଧାରଣତଃ ପିଲାମାନଙ୍କର ପାଠ୍ୟ ବହିର ଭାଷା ବୋଲି ବୁଝୁ । କିନ୍ତୁ କଥିତ ଓଡିଆ ଭାଷା କହିଲେ ମୂଖ୍ୟତଃ ଆଗମନକୁ ଆସେ, କଟକୀ, ସମ୍ବଲପୁରୀ, ବାଲେଶ୍ୱରୀ ଓ ଗଞ୍ଜାମୀ ଭାଷା । ବାଲେଶ୍ୱର, ମୟୁରଭଞ୍ଜ ଓ କେନ୍ଦୁଝର ଲୋକେ ବିଶେଷତଃ ବଙ୍ଗଳା ଭାଷାର ପ୍ରଭାବରେ ଏକ ଭିନ୍ନ ବାକ୍‌ରୀତିରେ ଓଡିଆ କହନ୍ତି । କଟକ, ପୂର୍ବ, ଢେଙ୍କାନାଳର ଲୋକେ ଓଡିଶାର ପ୍ରାଣକେନ୍ଦ୍ର କଟକର କଥିତ ଭାଷା ପ୍ରଭାବରୁ ଓଡିଆକୁ ମୁକ୍ତ କରି ପାରି ନାହାନ୍ତି । ଗଞ୍ଜାମ ଓ କୋରାପୁଟର ଲୋକେ ସଂଲଗ ତେଲଗୁ ଭାଷା ଭାଷୀ ଲୋକଙ୍କ ସାମାଜିକତାରେ ଆସି ଏକ ପ୍ରକାର ସ୍ୱତନ୍ତ୍ର ବାକରୀତିରେ ଓଡିଆ ଭାଷା ପ୍ରୟୋଗ କରନ୍ତି । ଇଆଡେ ପୁଣି ବଲାଙ୍ଗୀର, କଳାହାଣ୍ଡୀ, ସମ୍ବଲପୁର ଓ ସୁନ୍ଦରଗଡ ଆଦି ଅଞ୍ଚଳର ଲୋକେ ହିନ୍ଦୀଭାଷାର ପ୍ରଭାବରେ ଓଡିଆରେ ଅନ୍ୟ ବାକରୀତିର ବ୍ୟବହାର କରନ୍ତି । ମୋଟାମୋଟି ଭାବେ ଓଡିଆ ଭାଷାରେ ବଙ୍ଗଳା, ହିନ୍ଦୀ, ତେଲଗୁ ଓ ସ୍ଥାନୀୟ ଆଦିବାସୀଙ୍କର କଥିତ ଭାଷାର ପ୍ରଭାବ ଫଳରେ ଓଡିଶାରେ ତିନୋଟି ଉପଭାଷା ମୁଣ୍ଡଟେକି ଉଠିଛି । ଏଇ ଉପଭାଷାର ଏକାଧିକ ନାମ ରହିଥିଲେ ସୁଦ୍ଧା ବାଲେଶ୍ୱରୀ ସମ୍ବଲପୁରୀ ଓ ଗଞ୍ଜାମୀ ବୋଲି ସର୍ବ ସାଧାରଣରେ ପରିଚିତ ।

ସମ୍ବଲପୁରୀ ଓଡିଆ ଭାଷାର ଏକ ବଳିଷ୍ଠ ଉପଭାଷା । ପଶ୍ଚିମ ଓଡିଶାର ଅଧିବାସୀମାନଙ୍କ ଏହ କଥିତ ଭାଷା ।ଏଇ ଭାଷା ଓଡିଶାର କଳାହାଣ୍ଡି, ବଲାଙ୍ଗୀର, ବଉଦ, ସମ୍ବଲପୁର, ସୁନ୍ଦରଗଡ ଓ ମଧ୍ୟପ୍ରଦେଶ ଅନ୍ତର୍ଗତ ଶକ୍ତି ଫୁଲଝର, ସାରଙ୍ଗଗଡ, ରାୟଗଡ, ବସ୍ତର ଅଞ୍ଚଳରେ ପ୍ରଚଳିତ । ସ୍ଥାନୀୟ ଆଦିବାସୀମାନଙ୍କର ସଂସ୍ପର୍ଶ, ଇଂରେଜୀ ଭାଷାର ରାଜନୈତିକ ପ୍ରଭାବ, ହିନ୍ଦୀ ଓ ସଂସ୍କୃତର ମୌଳିକ ସାନ୍ନିଧ ଯୋଗୁଁ ସମ୍ବଲପୁରୀ ଭାଷା ଆଜି ଏକ ସ୍ୱତନ୍ତ୍ର ଭାଷାର ସମ୍ମାନ ଦାବୀ

କରେ ।

ଆଗେ ଉପଭାଷାକୁ ଭାଷାବିଜ୍ଞାନୀମାନେ ଗୌଣ ଚକ୍ଷୁରେ ଦେଖୁଥିଲେ । ଜନ ସାଧାରଣଙ୍କ ଅସତର୍କ ବାକଭଙ୍ଗୀ ଓ ଅଜ୍ଞତାରୁ ହିଁ ଉପଭାଷାର ଜନ୍ମ ବୋଲି ଭାଷାବିତ୍‌ମାନଙ୍କର ଧାରଣା ଥିଲା । ଆଗରୁ କୁହାଯାଇଛି ଯେ ଭାଷା ଭାବର ବାହକ । ଭାଷା ଯେତେବେଳେ ଭାଷାବିତ୍ ଓ ବ୍ୟାକରଣକାର ମାନଙ୍କର ଶୃଙ୍ଖଳାରେ ଛନ୍ଦି ହୋଇଯାଏ ଓ ତଦ୍ ନିୟମ କାନୁନର ଘେର ଭିତରେ ସାଧାରଣଙ୍କ ପ୍ରବେଶ ପାଇଁ ଏକ ନିଷିଦ୍ଧ ଅଞ୍ଚଳ ପାଲଟି ଯାଏ ସେତେବେଳେ ଜନସାଧାରଣ ଭାବ ବିନିମୟ ପାଇଁ ଭାଷାକୁ ବାଟ କଟେଇ ଏକ ସରଳତର ମାର୍ଗରେ ଆଗେଇ ନିଅନ୍ତି । ସେଇ ସରଳତର ଭାବ ବିନିମୟର ବାହକ ରୂପେ ଏକ ନୂତନ କଥିତ ଭାଷା ଜନ୍ମ ଲାଭ କରେ । ଭାଷାବିତ୍‌ମାନେ ନୂତନ ମୋଡ ଦେଇଥିବା ଏଇ ଭାଷାକୁ ଉପଭାଷା କହନ୍ତି ।

ପଶ୍ଚିମ ଓଡିଶାର ଲୋକେ ଘରେ ଓ ସମାଜରେ ସମ୍ବଲପୁରୀ କହନ୍ତି । କିନ୍ତୁ ପଢିବା ଲେଖିବାବେଳେ ସାଧୁ ଓଡିଆଭାଷା ବ୍ୟବହାର କରନ୍ତି । ଏଣୁ ସାଧୁ ଓଡିଶାରେ ସମ୍ବଲପୁରୀ ଶବ୍ଦର ବ୍ୟବହାର ଆଗେ ନିଷିଦ୍ଧ ଥିଲା ଓ ଅସଭ୍ୟତାର ପରିଚାୟକ ଥିଲା । ଏଣୁ ସାଧୁ ଓଡିଆ ଭାଷା ସମ୍ବଲପୁରୀ ଭାଷା ଭାଷୀମାନଙ୍କ ପାଇଁ ଭାବର ସହଜ ବାହକ ରୂପେ କାର୍ଯ୍ୟ କରିବାକୁ ଦୁର୍ବଳ ହୋଇ ପଡିଛି । ବିଶେଷ କରି କଥିତ କଟକୀ ଭାଷାରେ ରଚିତ ପୁସ୍ତକାଦି, ସମଗ୍ର ଓଡିଆ ଭାଷାଭାଷୀମାନଙ୍କ ପାଖରେ କ୍ରମଶଃ ଏକ ବିଦେଶୀ ଭାଷା ଭଳି ଭାବର ସ୍ୱାଭାବିକ ସଂକ୍ରମଣରେ ସାହାଯ୍ୟ କରିପାରୁ ନାହିଁ । ଯାହାଫଳରେ ଆଜି ସମ୍ବଲପୁରୀ ଉପଭାଷା ବିକାଶ ଓ ବିସ୍ତୃତି ପାଇଁ ଯୌଥ ଉଦ୍ୟମର ଅପେକ୍ଷା ରଖେ ।

ଶିଷ୍ଟ ଓଡିଆ ଭାଷାରେ କୌଣସି ଏକ ସମ୍ବଲପୁରୀ ଶବ୍ଦ ବ୍ୟବହୃତ ହେଉଥିଲେ ଆଗେ ତଥାକଥିତ ଶିକ୍ଷିତ ଲୋକେ ନାକ ଟେକୁଥିଲେ । କଥିତ ଆଞ୍ଚଳିକ ଭାଷାକୁ ଅସଭ୍ୟ ମ୍ଳେଚ୍ଛ ମାନଙ୍କରେ ଭାଷାବୋଲି କୁହାଯାଉଥିଲା । ବହୁକାଳ ପର୍ଯ୍ୟନ୍ତ ପଶ୍ଚିମ ଓଡିଶା ଅନଗ୍ରସର ଥିଲା । ବଣ ପାହାଡଘେରା ଏଇ ପାହାଡିଆ ମୂଲକରେ ଜୀବନର ସ୍ୱାଭାବିକତାକୁ ନିରାଡମ୍ବର ଭାବେ ଏ ଅଞ୍ଚଳର ଭାଷା ପ୍ରକାଶ କରୁଥିଲା । ତେଣୁ ସମ୍ବଲପୁରୀ ଭାଷାରେ ବୈଦେଶିକ ପ୍ରଭାବ ଖୁବ୍ କମ । ସୂକ୍ଷ୍ମ ଭାବେ ଅନୁଧ୍ୟାନ କଲେ ବର୍ତ୍ତମାନ ଆମେ କୌଣସି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଭାଷାକୁ ଓଡିଶାର Standard Language ରୂପେ ଗ୍ରହଣ କରି ପାରିବା ନାହିଁ । ବାଲେଶ୍ୱରୀ, କଟକୀ, ସମ୍ବଲପୁରୀ ଓ ଗଞ୍ଜାମ ଏଇ ଚାରୋଟି ମୁଖ୍ୟ ଉପଭାଷାର ସ୍ଥୂଳ ରୂପ ହିଁ ଓଡିଆ ଭାଷା । ତେଣୁ କୌଣସି ଆଞ୍ଚଳିକ ସଂକୀର୍ଣ୍ଣତାରେ ଭାବପ୍ରବଣ ନ ହୋଇ ଆମେ ଯଦି ବିଚାରକରୁ ତେବେ ଜାଣି ପାରିବା ଯେ ଉପରୋକ୍ତ ଉପଭାଷା ଗୁଡିକ ଓଡିଆ ଭାଷାର ଶାଖା ବିଶେଷ

ନୁହନ୍ତି । ବରଂ ଏ ଉପଭାଷା ଗୁଡିକ ଓଡିଆ ଭାଷାର ମୂଳପିଣ୍ଡ । ପ୍ରାକୃତିକ ବାଧାବିଘ୍ନ ଶାସନଗତ ବିଚ୍ଛିନ୍ନତା, ଉପାନ୍ତ ଅଞ୍ଚଳରେ ବଙ୍ଗଳା ବିହାରୀ ହିନ୍ଦୀ ତେଲୁଗୁ ଆଦି ଭାଷାର ସଂସ୍ପର୍ଶ ଯଦିଓ ଓଡିଆ ଭାଷାର ବିରୋଧ କରି ପାରିବେ ନାହିଁ । ଶିକ୍ଷିତ ସମାଜର ଶିଷ୍ଟ ଓଡିଆ ଭାଷା ଯଦି ଉପଭାଷାର ବ୍ୟବହାରପୋଯୋଗୀ ଶବ୍ଦ ଗୁଡିକୁ ମାର୍ଜିତ ଭାଷାରେ ଗ୍ରହଣ କରିବାକୁ ବିରୋଧ କରେ ତେବେ ସେଇଠି ସମସ୍ୟାର ଉଦ୍‌ଭବ ସ୍ୱାଭାବିକ ହେବ । ଉପଭାଷାର ଅନୁଶୀଳନାତ୍ମକ ବିକାଶ କେବେ କଦାପି ମୂଳ ଭାଷାର ବିରୋଧ କରେନା ବରଂ ଉପଭାଷାରେ ରଚିତ ବଳିଷ୍ଠ ସାହିତ୍ୟ ମୂଳଭାଷାର ବ୍ୟୁତ୍ପତ୍ତି ଓ ବିସ୍ତୃତି ଘଟାଏ । ବିହାରର ମୂଳଭାଷା ହିନ୍ଦି ହେଲେ ମଧ ଆଞ୍ଚଳିକ କଥିତ ଭାଷା ମୈଥିଳୀ ଏକ ଆତ୍ମନିର୍ଭରଶୀଳ ଉପଭାଷା ଓ ଏଇ ମୈଥିଳୀ ଉପଭାଷା ସ୍ନାତକୋତ୍ତର ଶ୍ରେଣୀର ପାଠ୍ୟ । ଏ ଯାଏଁ ଆମ ଓଡିଆ ଭାଷା ବିଦଗଣ କୌଣସି ଉପଭାଷାକୁ ସେ ମର୍ଯ୍ୟାଦା ଦେଇଛନ୍ତି କି ? ହୁଏ ତ ଏଠି ପ୍ରଶ୍ନ ହୋଇ ପାରେ ସମ୍ବଲପୁରୀ ଭାଷାରେ ଉଚ୍ଚସ୍ତରରେ ସାହିତ୍ୟ କାହିଁ ? ସମ୍ବଲପୁରୀ ଭାଷାରେ ସାହିତ୍ୟ ସୃଷ୍ଟିର ଅଭାବ ଓ ସର୍ବୋପରି ଉଦ୍ୟମର ଅଭାବ ପାଇଁ ଏ ଅଞ୍ଚଳର କବି ସାହିତ୍ୟିକଗଣ ଅଧୋମୁଖ ହେବାକୁ ବାଧ୍ୟ ।

ଅନେକ ସମୟରେ ପ୍ରବୀଣ କବି ଓ ସାହିତ୍ୟିକଗଣ ସ୍ୱର ଉତ୍ତୋଳନ କରିଥାନ୍ତି ଯେ ଉପଭାଷା ସବୁ ରକରମର ଅନୁଭୁତି ଓ ଚିନ୍ତାର ବାହକ ହୋଇ ପାରେନା କାରଣ ତା'ର ଶବ୍ଦ ସଂପଦ ସୀମିତ । ଏ ପ୍ରକାର ଧାରଣାକୁ ଅବଶ୍ୟ ଇଂରାଜୀ କବି W.B. Yeats ଅତିକ୍ରମ କରାଯାଇଛନ୍ତି । ସେ ଇଂରାଜୀ ସାହିତ୍ୟର ଜଣେ ଯଶସ୍ୱୀ କବି ହେଲେ ମଧ ନିଜର କଥିତ ଭାଷା Irish ରେ ଚମତ୍କାର କବିତା ମାନ ଲେଖି ଇଂରାଜୀ ସାହିତ୍ୟକୁ ପରିପୁଷ୍ଟ କରିଛନ୍ତି । ଆଧୁନିକ ଯୁଗରେ କବି T.S Eliot ଓ ତାଙ୍କର ଅନୁଗାମୀ ଗଣ କଥିତ ଭାଷାର ଚଳନ୍ତି ପ୍ରୟୋଗ ଉପରେ ଜୋର ଦେଇ ବେଶ ଏକ ନୂତନ ଭାଷା ବିନ୍ୟାସର ସୂତ୍ରପାତ କରିଥିଲେ । Cockney ଆଞ୍ଚଳିକ ଉପଭାଷାର common speech of its time ର ସଦ୍‌ବ୍ୟବହାର କରିଛନ୍ତି ଏଲିଅଟ । କଥିତ ଭାଷାର ପ୍ରୟୋଗ ଉପରେ Aristotle ଙ୍କ ଉକ୍ତି "Words in every day use, foreign words, dilectical words, words newly coined, merely metaphorical words etc. Jucicions fusin of all these would create the language of Poetry" ସମ୍ବଲପୁରୀ କଥିତ ଭାଷାର ଉପାଦେୟତା କ୍ଷେତ୍ରରେ ମଧ ଏ ଉକ୍ତି ସତ୍ୟ ହୋଇପାରେ ମାତ୍ର ଏଠି ସ୍ମରଣୀୟ ଯେ କଥିତ ଭାଷାର ନିତାନ୍ତ ଅରୁଚିକର ନଗ୍ନ ପ୍ରୟୋଗ ଶିଷ୍ଟ ସାହିତ୍ୟର ମର୍ଯ୍ୟାଦା ହାନି କରିବ । କଥିତ ଗାଉଁଳି ଭାଷାର ସୁଚତୁର ପ୍ରୟୋଗହିଁ ଫକୀର ମୋହନଙ୍କୁ ଓଡିଆ ସାହିତ୍ୟରେ କାଳଜୟୀ କରିପାରିଛି । ଗଙ୍ଗାଧର ପଶ୍ଚିମ ଓଡିଶାର ଅପ୍ରତିଦ୍ୱନ୍ଦୀ କବି ପ୍ରତିଭା ହେଲେ ମଧ୍ୟ ସମ୍ବଲପୁରୀ

କଥିତ ଭାଷାର ଆଶନୁରୂପ ପ୍ରୟୋଗ କରିପାରି ନଥିବାରୁ ସମ୍ବଲପୁରୀ ଭାଷାର ପ୍ରଚାର କଳ୍ପେ ଏକ ସମ୍ଭାବିତ ଗୌରବରୁ ବଂଚିତ ହୋଇଛନ୍ତି । କେହି ସ୍ୱୀକାର କରୁ ବା ନ କରୁ ହିନ୍ଦି ଭାଷା ଭଳି ସମ୍ବଲପୁରୀ ଏକ ପ୍ରଭାବଶାଳୀ ଭାଷା । ଏ ଭାଷା ଲଳିତ ମଧୁର ଓ ବ୍ୟାପକ ଅର୍ଥବହ ଶବ୍ଦରେ ସ୍ମୃଦ୍ଧିମନ୍ତ । ଏବେ ସମ୍ବଲପୁରୀ ଭାଷାର ଲୋକସଙ୍ଗୀତ ଆକାଶବାଣୀରୁ ବରାବର ପ୍ରଚାରିତ ହେଉଛି ।

BBC ଲଣ୍ଡନରୁ ଗତ ତା ୨୬-୦୭-୧୯୭୩ ସମ୍ବଲପୁରୀ ସଂଗୀତ ପ୍ରଚାରିତ ହୋଇଥିବା ସୁଖର କଥା ସମ୍ବଲପୁରୀ ଭାଷାରେ ହୁଏତ ଯଥେଷ୍ଟ ଲିଖିତ ପୁସ୍ତକ ନାହିଁ ବୋଲି ଘୋଷଣା କରିବାରେ ଲଜ୍ଜା କରିବାର କିଛି ନାହିଁ । ତଥାପି ସମ୍ବଲପୁରୀ ଭାଷାର ଲୋକଗୀତ ପ୍ରତି ମଫସଲର ଜୀବନ୍ତ ପୃଷ୍ଠାରେ ସଂକଳିତ । ଲକ୍ଷ୍ମଣପତି, କପିଲ ମହାପାତ୍ର, ଶଶିଭୂଷଣ ମିଶ୍ର, ଶ୍ରୀ ସତ୍ୟନାରାୟଣ ବହିଦାର, ଶ୍ରୀରାମ ଲକ୍ଷ୍ମଣ ପ୍ରସାଦ ଦାସ, ଶ୍ରୀ ବିରଞ୍ଚି ଦର ପ୍ରଭୃତି କବି ସାହିତ୍ୟିକ ସମ୍ବଲପୁରୀ ଭାଷାର ବିକାଶ ଦିଗରେ ଆଶାତୀତ ଉଦ୍ୟମ କରିଛନ୍ତି ଓ କରୁଛନ୍ତି । ସମ୍ବଲପୁରୀ ଭାଷା ଓ ତା'ର ବ୍ୟାକରଣର ବିକାଶ ଦିଗରେ ଯେଉଁ କେତେଜଣ ଉଦ୍ୟମଶୀଳ ସେମାନଙ୍କ ମଧ୍ୟରେ ଶ୍ରୀ ଅଶ୍ୱିନୀ କୁମାର ପୂଜାରୀ ଓ ଶ୍ରୀ ସତ୍ୟନାରାୟଣ ବହିଦାରଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

ସମ୍ବଲପୁରୀ ଭାଷାରେ ସାହିତ୍ୟ ସୃଷ୍ଟିକୁ ଏବେ ମଧ୍ୟ ଏକ ଗୌଣ ସାହିତ୍ୟିକ ଚେଷ୍ଟା ବୋଲି ଅନେକଙ୍କ ମତ । ଏପରି ଧାରଣାର ବଶବର୍ତ୍ତୀ ହେଲେ ଏ ଭାଷାର ବିକାଶ ସମ୍ଭବପର ନୁହେଁ । ସମ୍ବଲପୁରୀ ଭାଷାରେ ଗଳ୍ପ କବିତା, ପ୍ରବନ୍ଧ, ନାଟକ ଉପନ୍ୟାସ, ଜୀବନୀ ଆଦି ରଚିତ ହେଲେ ଓ ଏ ଭାଷାର ବ୍ୟାକରଣ, ଧ୍ୱନି ଶବ୍ଦ ଓ ଭାଷାତତ୍ତ୍ୱର ବୈଜ୍ଞାନିକ ବିଶ୍ଳେଷଣ କରାଗଲେ ହୁଏତ ଏ ଭାଷାକୁ ସମୁଚିତ ମର୍ଯ୍ୟାଦା ଦିଆଯାଇପାରିବ । ସମ୍ବଲପୁରୀ ଭାଷାର ବିକାଶ କରିବା ବେଳେ ଓଡିଆ ଭାଷାର ବିରୋଧ କରିବା ଆତ୍ମଘାତୀ ହେବ । ସର୍ବଦା ମନେରଖିବାକୁ ହେବ ଯେ ଓଡିଆ ଆମର ମାତୃଭାଷା ଓ ସମ୍ବଲପୁରୀ ଆମର କଥିତ ଆଂଚଳିକ ଭାଷା, ଅନ୍ୟ ପକ୍ଷରେ ଓଡିଆ ଭାଷା ତା'ର କୂପ ମଣ୍ଡୁକତା ବର୍ଜ୍ଜନ କରି ସମସ୍ତ ଉପଭାଷାରୁ ଶକ୍ତି ସଂଗ୍ରହ କଲେ ଯାଇ ସମସ୍ତ ଓଡିଆ ଭାଷାଭାଷୀ ଅଞ୍ଚଳର ପ୍ରାଣ ଶକ୍ତିର ବାହକ ହୋଇ ପାରିବ ।

ଭାଷା ପରିବର୍ତ୍ତନଶୀଳ ଓ ଯୁଗୀୟ ଆବଶ୍ୟକତାର ସତୀର୍ଥ ହେବା ବାଞ୍ଛନୀୟ । ଭାଷାର ମୌଳିକ କାର୍ଯ୍ୟ ମଣିଷ ମନରେ ସୂକ୍ଷ୍ମାତିସୂକ୍ଷ୍ମ ଭାବର ବହନ କରିବା । ଯେଉଁ ଭାଷା ଏହା କରି ପାରେନା ସେ ଭାଷା ଶକ୍ତିହୀନ, ଦୁର୍ବଳ । ଏ ଦୁର୍ବଳତା ସମ୍ବଲପୁରୀ ଭାଷାରେ ନ ରହୁ, ଏହାହିଁ କାମନା ।

# ସମ୍ବଲପୁରୀ ଶବ୍ଦାବଳୀର ଆଳଙ୍କାରିକ ପ୍ରୟୋଗ

ନରସିଂହ ପ୍ରସାଦ ଗୁରୁ
ରାଧୁ ମିଶ୍ର

ଭାଷା ମାଧ୍ୟମରେ ମଣିଷ ନିଜ ମନର ଭାବକୁ ବ୍ୟକ୍ତ କରିଥାଏ । ଚିନ୍ତାରାଜ୍ୟରେ ତରଙ୍ଗାୟିତ ହେଉଥିବା ବିଭିନ୍ନ ଭାବଧାରାକୁ ସୁସଂଗଠିତ ଲାଳିତ୍ୟମୟୀ ଶବ୍ଦ ସଂଯୋଜନା ଦ୍ୱାରା ସରସ, ସୁନ୍ଦର ଓ ରୁଚିପୂର୍ଣ୍ଣ ଭାବରେ ପରିପ୍ରକାଶ କରିବାପାଇଁ ସେ ସତତ ଚେଷ୍ଟା କରେ । କଥାର ଚାତୁରୀ ଦ୍ୱାରା ଅନ୍ୟର ମନକୁ ସହଜରେ ପ୍ରଭାବିତ କରାଯାଇପାରେ । ଏଥିପାଇଁ ଏକ ସାଧାରଣ କଥାକୁ ଅସାଧାରଣ ଭାବରେ ପ୍ରକାଶ କରିବା ପାଇଁ ଅନେକ ସମୟରେ ଭାଷାର ଆଳଙ୍କାରିକ ପ୍ରୟୋଗ ଗୁଡ଼ିକ ବିଶେଷ ସହାୟକ ହୋଇଥାନ୍ତି । କଥାର ଛଟକ ଦ୍ୱାରା ଓ କଡା କଡାକେ ଡଗଡମାଳି ବୋଲି ଶ୍ରୋତାଙ୍କୁ ହସାଇ ରସାଇ ପାରୁଥିବା ଲୋକ ବେଶ ଲୋକପ୍ରିୟ ହୋଇଥାନ୍ତି । ଏଣୁ ଭାଷାର ସୌଷ୍ଠବ ରକ୍ଷା ପାଇଁ ଶବ୍ଦାବଳୀର ଆଳଙ୍କାରିକ ପ୍ରୟୋଗ ଯେ ଏକ ଅପରିହାର୍ଯ୍ୟ ଅଙ୍ଗ ଏକଥା ଅସ୍ୱୀକାର କରାଯାଇ ନପାରେ, କହିବାର ଚାତୁରୀ ବା ଲେଖିବାର ଶୈଳୀ ମଧ୍ୟରେ ଉପଯୁକ୍ତ ଶବ୍ଦର ବିନ୍ୟାସ ଦ୍ୱାରା ପ୍ରକାଶଭଙ୍ଗୀ ଅତ୍ୟନ୍ତ ପ୍ରଭାବଶାଳୀ ଓ ହୃଦୟଗ୍ରାହୀ ହୋଇଥାଏ । 'ଖା', 'ଭୁଞ୍ଜ' 'ଗିଲ୍'ର ଅର୍ଥଗତ ସାମଞ୍ଜସ୍ୟ ଥିଲେ ମଧ୍ୟ ପ୍ରକାଶ ଭଙ୍ଗୀ ଉପରେ ତାର ମୁଖ୍ୟତଃ ନିର୍ଭର କରେ ।

ସୁନ୍ଦର ଚେହେରା, ସୁନ୍ଦର ଗଠନ ଥିଲେ ମଧ୍ୟ ଦିଖଣ୍ଡ ଅଳଙ୍କାର ପିନ୍ଧିଲେ ରୁଚି ମାର୍ଜିତ ହୁଏ । ପରିପାଟୀ ଅପୂର୍ବ ଦିଶେ । ଭାଷା ସୁନ୍ଦରୀକୁ ସେହିପରି ମାଜିଘଷି ଚିକକଣ କରି ତା ଦେହରେ ଦିଖଣ୍ଡ ଅଳଙ୍କାର ଖଞ୍ଜିଦେଇ ପାରିଲେ ଭାଷାର ମାଧୁର୍ଯ୍ୟ ବୃଦ୍ଧି ପାଇଥାଏ । ଭାଷାର ସମୃଦ୍ଧି ଶବ୍ଦ ଭଣ୍ଡାର ଓ ସେଗୁଡ଼ିକ ବିଭିନ୍ନ ଆଳଙ୍କାରିକ ପ୍ରୟୋଗ ଉପରେ ନିର୍ଭର କରେ । ସାହିତ୍ୟିକ ସାବଲୀଳତା ଓ କାବ୍ୟିକ ମାଧୁରୀ ଭାଷାର ପରିପାଟୀକୁ ଅନବଦ୍ୟ ଓ ଆକର୍ଷଣୀୟ କରି ତୋଳେ ।

ଏହି ପରିପ୍ରେକ୍ଷୀରେ ପଶ୍ଚିମ ଓଡିଶାର ବିଭିନ୍ନ ଜିଲ୍ଲା ମାନଙ୍କରେ ପ୍ରଚଳିତ ସମ୍ବଲପୁରୀ ଉପଭାଷାରେ ବିଭିନ୍ନ ଶବ୍ଦାବଳୀର ଆଳଙ୍କାରିକ ପ୍ରୟୋଗ ଦ୍ୱାରା ଏହି ଉପଭାଷା କିପରି ସମୃଦ୍ଧ

ଓ ସୌଷ୍ଠବଯୁକ୍ତ ହୋଇଛି ତାହା ଅନୁଧ୍ୟାନ କଲେ ଏକ ଅବହେଳିତ ଆଦିବାସୀ ଅଧ୍ୟୁଷିତ କ୍ଷୁଦ୍ର ଭୂଖଣ୍ଡରେ ବସବାସ କରୁଥିବା ଅଶିକ୍ଷିତ ଲୋକଙ୍କ ମଧ୍ୟରେ ସାହିତ୍ୟିକ ଚେତନା ଓ ସୌନ୍ଦର୍ଯ୍ୟବୋଧ କିପରି ପ୍ରଚ୍ଛନ୍ନ ଭାବରେ ଭାଷା ଓ କହିବା ଶୈଳୀ ମଧ୍ୟରେ ସ୍ୱାଭାବିକ ରୀତିରେ ରୂପାୟିତ ହୋଇଛି ସେ କଥା ସହଜରେ ଜାଣିହୁଏ ।

ସମ୍ବଲପୁରୀ ଉପଭାଷା ଓ ଏହାର ଅସରନ୍ତି ଶବ୍ଦ ଭଣ୍ଡାର ଭିତରେ ଯେଉଁ ସାହିତ୍ୟିକ ସୌଷ୍ଠବ ଲୁକ୍କାୟିତ ରହିଛି ସେଗୁଡିକ ଆଲୋଚନା ଓ ବ୍ୟବହାର ନ କଲେ ତାର ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ସମ୍ଭବ ନୁହେଁ । ଅଧିକନ୍ତୁ ଏହି ଶବ୍ଦାବଳୀର ଭିନ୍ନାର୍ଥକ ଆଳଙ୍କାରିକ ଅଭିବ୍ୟକ୍ତି କିପରି ଏହି ଉପଭାଷାକୁ ସୁରୁଚି ସମ୍ପନ୍ନ ଓ ଜୀବନ୍ତ କରି ଗଢିତୋଳିବା ସଙ୍ଗେ ସଙ୍ଗେ ଶ୍ରୁତି ମଧୁର, ଆକର୍ଷଣୀୟ ଓ ସାର୍ଥକ କରି ପାରିଛି ଏହାର ବିରାଟ ଗନ୍ତାଘରର ଦ୍ୱାର ଉନ୍ମୋଚନ ନ କଲେ ଏହି ଉକ୍ତିର ସତ୍ୟତା ପ୍ରତିପାଦିତ ହୋଇ ପାରିବ ନାହିଁ । ସଂଶିତ ପ୍ରବନ୍ଧରେ ଏ ସମ୍ବନ୍ଧରେ ଯତ୍‌କିଂଚିତ ଆଲୋକପାତ କରିବା ପାଇଁ ପ୍ରୟାସ କରାହୋଇଛି । 'ଗବେଷକ' ମାନେ ଏ ଉପଭାଷା ସମୁଦ୍ରକୁ ମନ୍ଥନ କରି ମୂଲ୍ୟବାନ ରତ୍ନରାଜିର ସନ୍ଧାନ ଦେଇ ପାରିବେ ଏହା ସତ୍ୟ । ତଥାପି ଏ ଦିଗରେ ସଂଗୃହୀତ କେତୋଟି ଉଦାହରଣ ପ୍ରତି ସୁଧୀ ପାଠକ ପାଠିକାମାନଙ୍କ ଦୃଷ୍ଟି ଆକର୍ଷଣ କରିବା ସକାଶେ ଏହି ପ୍ରବନ୍ଧରେ ଆଲୋଚନା କରା ହୋଇଛି ।

ନିତ୍ୟବ୍ୟବହୃତ କେତୋଟି ଆଳଙ୍କାରିକ ପ୍ରୟୋଗ:-

୧. ଏକାର୍ଥ ବୋଧକ ଯୁଗ୍ମ ଶବ୍ଦ:-

ଦୁଇଟି ଶବ୍ଦ ଏକତ୍ର ମିଳିତ ହୋଇ ଏକ ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶ କରନ୍ତି ।

ଯଥା:-

ଝାର୍+ପତ୍‌ରା=ଝାର୍‌ପତ୍‌ରା=ଜଙ୍ଗଲ ଓ ନିକଟବର୍ତ୍ତୀ ଅଞ୍ଚଳ ।
ମାତ୍+ମର୍ଦ୍ଦନ=ମାତ୍‌ମର୍ଦ୍ଦନ୍=ମାତପିଟ
ଚୋର+ଚୁହାଡ୍=ଚୋରଚୁହାଡ୍=ଚୋର ଓ ସେ ଭଳି ଅପହରଣକାରୀ ବ୍ୟକ୍ତି ।
ଗଛ୍+ଖୁଁଟ୍=ଗଛ୍‌ଖୁଁଟ୍=ଚୋଟଚଡ ଗଛ
କପଡା+ଲତା=କପଡାଲତା=ଲୁଗାପଟା
ଗୁପା+ଗଲିଆ=ଗୁପାଗୁଲିଆ=ଗୋଲମାଲିଆ
ଭଟା+ଟିକ୍‌ରା=ଭଟାଟିକ୍‌ରା=ମେଲାସ୍ଥାନ

ଟାମ୍‌ଡି+ହାତ୍‌ଲି=ଟାମ୍‌ଡିହାତ୍‌ଲି=ଅଣ୍ଡାଳି ହେବା
ଅଟେ+ବୁଟେ=ଅଟେବୁଟେ=ଛୋଟିଆ ମୋଟିଆ କାମ
ବାହା+ଜାଙ୍ଗଲ=ବାହାଜାଙ୍ଗଲ=ଶକ୍ତି ସାମର୍ଥ୍ୟ
ରଡା+କିର୍‌ଲା=ରଡାକିର୍‌ଲା=ଚିତ୍କାର କରିବା
ଜିଇଁ+ଜାଗି=ଜିଇଁଜାଗି=ବଞ୍ଚିରହିବା
କିନ୍ଦ୍ରା+ମର୍ଲା=କିନ୍ଦ୍ରାମର୍ଲା=ବୁଲାବୁଲି କରିବା
ରଞ୍ଚେ+ଥିପେ=ରଞ୍ଚେଥିପେ=ଅତିଅଳ୍ପ
ଡିଁଡା+ଠେଙ୍ଗୁଆ=ଡିଁଡାଠେଙ୍ଗୁଆ=ଅବିବାହିତ ଯୁବକ
ଛୁଆ+ପୁତା= ଛୁଆପୁତା=ପିଲାପିଲି
ଭାଣ୍‌+ଭେସର୍‌=ଭାଣ୍‌ଭେସର୍‌=ଅଶ୍ଲୀଳ କଥା

୨. ଭିନ୍ନାର୍ଥ ବୋଧକ ଯୁଗ୍ମ ଶବ୍ଦ:-

ଏକାଜାତୀୟ ଦୁଇଟି ଶବ୍ଦ ଦୁଇଟି ଭିନ୍ନଭିନ୍ନ ଅର୍ଥ ପ୍ରକାଶ କରନ୍ତି ।

ଯଥା:-

ମସ୍କିବା-ଭୁଜା ମସ୍କିବା=ମୁଢ଼ି ଖାଇବା
ହାତ ମସ୍କି ହୋଇଯିବା= ହାତ ମୋଡି ହୋଇଯିବା
ମୁସ୍କିବା- କଥା ମୁସ୍କି ଦେବା=କଥା ଅମାନ୍ୟ କରିବା
କରିଆ- ପାଞ୍ଚହାତି କରିଆ=ପାଞ୍ଚଲୁଗା
କିରିଆ-କିରିଆ ପକାଇବା=ରାଣ ପକାଇବା
ବତର୍‌(ଉପଯୁକ୍ତ ପାଗ)=ମୁଗ୍ ବୁନାକେ ବତର୍ ଅର୍ଥାତ୍ ମୁଗ୍ ବୁଣିବାକୁ ଅନୁକୂଳ ପାଗ ।

ବଏତର- (ବେଶୀଦିନ ବ୍ୟବହାର ଉପଯୋଗୀ=ସମ୍ବଲପୁରୀ ଶାଢୀ ବନେ ବଏତର ଯାଏସି ଅର୍ଥାତ୍ ସମ୍ବଲପୁରୀ ଶାଢୀ ବେଶୀ ଦିନ ବ୍ୟବହାର ଉପଯୋଗୀ ହୋଇଥାଏ ।)

ଲେଛିବା-ପୋଛିବା=ହାତ୍‌କେ କାନ୍ଥିଥି ଲେଛିଦେଲା (ହାତକୁ କାନ୍ଥରେ ପୋଛିଦେଲା) । ମୋର କଥାକେ ଲେଛିଦେଲା ଅର୍ଥାତ୍ (ମୋ କଥାକୁ ଅବଜ୍ଞା କଲା)

ଲେଛେଇବା-ଗୁପ୍ତକଥା ଅନ୍ୟତ୍ର ପ୍ରକାଶ କରିଦେବା- ମୋର କହେଲା କଥା ସେନେ ଲେଛେଇ ଦେଲା ଅର୍ଥାତ୍ ମୋ କହିଥିବା କଥା ତୁ ସେଠାରେ ପ୍ରକାଶ କରିଦେଲୁ ।

ଠିକା- ଜମି ଲଗାଣ ଲଗାଇବା(ଜମି ଠିକା ଦେବା)

ଠୂକା- ବସିବା ଅବସ୍ଥା(ସେ ଠୂକା ହୋଇ ବସିଛେ ଅର୍ଥାତ୍ ସେ ଅଳସୁଆ ହୋଇ ରହିଛି।)

ଚିପା- ବଳଦ କରାହେବା=ବଛା ଚିପା ହେଲାନ(ବଛାକୁ ବଳଦ କରା ହେଲାଣି।)

ଚିପା- Tight ପେଣ୍ଟ ବଡା ଚିପା ହେଲାନ।

ଚିପୋ- ଗାଳିବିଶେଷ (ତୁଇ ଗୁଟେ ଭକୁଆ ଚିପୋଟେ ବୋ ଅର୍ଥାତ୍ ତୁ ଗୋଟାଏ ମୂର୍ଖ ଲୋକ।)

୩. ଅନେକାର୍ଥ ବୋଧକ ଶବ୍ଦ:-

ଚୁଁଟିଦେବା-କଣହାଁ ଚୁଁଟିଦେବା(ଛିଦ୍ର ବନ୍ଦ କରିଦେବା) ଇ ଘରର୍ କଥା ଯାଇ ତୁଇ ସେନେ ଚୁଁଟୁଛୁ (ଘରର କଥା ଯାଇ ତୁ ସେଠି ଚୁଗୁଲି କରୁଛୁ।)

ଜିଇଁବା- ପାଏନ୍ ପାଏବାକେ ଗଛ ଜିଇଁଗଲା ପାଣି ପାଇବାରୁ ଗଛ ବଞ୍ଚିଗଲା) ଦଶ ପଏସୀ ଜିଇଁ ଗଲାନ (ଦଶ୍ ପଏଶୀ ଘଷ ହୋଇ ଅଚଲ ହୋଇ ଗଲାଣି) ପେଟେ ଭାତ ଜିଇଁବା (ପେଟରେ ଭାତ ହଜମ ନ ହେବା)

ଅଁଠି- ଶାଢୀର ଅଁଠି (ଶାଢୀର ଧଡି) କାନ୍ ଅଁଠିବା (କାନ ମୋଡିବା)

ବତର୍- ଦାନ ବୁନାକେ ବତର୍ (ଧାନ ବୁଣିବାକୁ ଅନୁକୂଳ ପାଗ) ମତେ ଇଟା ବତର୍ ବନିଛେ( ମୋପାଇଁ ଏହା ପରଚ ସୁଯୋଗ)

ଅାଁ-. ଚୂଅାଁର ପାଏନ୍ ଅାଁଟି ଗଲାନ (କୂଅର ପାଣି କମି ଗଲାଣି)। ଆତେ ଚାଉଳର ଭାତ୍ କାହାକେ ନାଇଁ ଅଁଟୁଲା (ଆତେ ଚାଉଳର ଭାତ କାହାକୁ ପାଇଲା ନାହିଁ।)

ଲେଛେଇବା-କଥା ଲେଛେଇବା-ଗୁପ୍ତକଥା ଅନ୍ୟତ୍ର ପ୍ରକାଶ କରିଦେବା, ବିଛୁ ଲେଛେଇବା-ବିଛା ମାରିଦେବା, ନିଆଁ ଲେଛେଇବା-ନିଆଁ ଲଗାଇଦେବା।

୪. ବିଶେଷ୍ୟ ପଦର କ୍ରିୟା ପଦ ରୂପେ ବ୍ୟବହାର:-

ଦୁରମୁସ- (ଯାହା ସାହାଯ୍ୟରେ ଭୁଇଁକୁ ବାଡେଇ ବାଡେଇ ସମତଳ କରାଯାଏ)

ଦୁରମିବା-ହାଜରେ ପିଟିବା

ଛତି-ଛତୁ

ଛତ୍‌ନେଇବା-କୌଣସି ପଦାର୍ଥରେ ଫିମ୍ପି ଲାଗିଯିବା।

ଲାବତ୍-ସଂସ୍କୃତ ଲାଗୁଡ ଶବ୍ଦରୁ ଅର୍ଥାତ୍ ଯଷ୍ଟି ।

ଲବ ଦେଇବା- ଲକ୍ଷ୍ୟ କରି ଫିଙ୍ଗିବା ।

ଧୁଙ୍ଗିଆ-ଧୂଆଁ

ଟୁଣ୍ଡ-ପାଟି

ଟୁଣ୍ଡେଇବା-ପାଟିଖୋଲି କହିବା

ଚମତା-ଚମଡା

ଚେମେଡେଇବା=ଚମଡା ଭଳି ଦାନ୍ତରେ ନ ଛିଣ୍ଡିବା

କିର୍‌ହା-ପୋକ

କିରହେଇବା-ପୋକ ଲାଗିଯିବା

ଅଙ୍କୁର-ଗଜା

ଆଁ କରିବା- ଗଜାହେବା

ଲାଙ୍ଗୁଡ-ଲାଞ୍ଜ

ଲେଙ୍ଗ୍‌ଡିବା-ପଛେପଛେ ଗୋଡେଇବା

୫. ଗୋଟାଏ ମୂଳ ଶବ୍ଦରେ ବିଭିନ୍ନ କ୍ରିୟାସଂଯୋଗ କରି ଭିନ୍ନ ଭିନ୍ନ ଅର୍ଥରେ ବାକ୍ୟ ମଧ୍ୟରେ ବ୍ୟବହାର କରାଯାଏ ।

ଯଥା:-

ଛଟା

ଛଟା ମାରିବା- ଗାଡି ଓଲଟିଯିବା (ଗାଡି ଛଟା ମାରିଦେଲା)

ଛଟାଯିବା-ହାଣ୍ଡି ଫାଟିଯିବା (ହାଣ୍ଡି ଛଟା ଗଲାନ)

ଛଟା ଆଡିବା- ନିଜକୁ ବଞ୍ଚାଇବା (ଛିଞ୍ଚା ଦେଖି ଛଟା ଆଡିବା)

ଛଟା ଧରିବା- ତୋଷାମଦ କରିବା (ତୋର ବାଗିର୍ ମୁଇଁ ସାହେବର ମୁଡେ ଛଟା ନାଇଁ ଧରି ଜାନେ( ତୋ'ପରି ମୁଁ ସାହେବ ମିଣ୍ଡ ଉପରେ ଛଟା ଟେକି ଜାଣି ନାହିଁ) ।

ଗାଇ(ଗାୟ୍)

ଗାଇ କାଟିବା- ପାଟିଗୋଲ କରିବା- ତୁଚ୍ଛା କଥାଥି କାହିଁର ଲାଗି ଗାଇ କାଟୁଛ ଅର୍ଥାତ୍ ତୁଚ୍ଛା କଥାରେ କାହିଁକି ପାଟିଗୋଳ କରୁଛ ।

ଗାଇ ମାରିବା- ଗୋହତ୍ୟା ଅର୍ଥରେ (ଟଙ୍କା ଲାଗ୍ ଦେଇକରି ମୁଇଁ କାଣା ଗାୟ୍ ମାଇଲି ଅର୍ଥାତ୍ ଟଙ୍କା ଗୁଣ ଦେଇ କଣ ମୁଁ ଗୋହତ୍ୟା ପାପ କଲି ।)

ଗାଈଗଙ୍ଗା ହେବା- ଅତି ସରଳ ପ୍ରକୃତିର ହେବା (ଲୋକଟା ସତେ ବତେ ଗାୟଗଙ୍ଗାଟେ ହୋ ଅର୍ଥାତ୍ ଲୋକଟା ପ୍ରକୃତରେ ଅତି ସରଳ ପ୍ରକୃତିର)

ପାଏନ୍(ପାଣି)

ପାଏନ୍ ପିଏଇଦେବା- ପରାସ୍ତ କରିଦେବା (ପହଁରାଥି ମୁଇଁ ତାକେ ପାଏନ୍ ପିଏଇ ଦେଲି ଅର୍ଥାତ୍ ମୁଁ ପହଁରିବାରେ ତାକୁ ପରାସ୍ତ କରିଦେଲି)

ପାଏନ୍ ପିଟିବା- ବୃଥା ପରିଶ୍ରମ କରିବା (ଛୁଛାଥି ପାଏନ୍ ପିଟି କାଏଁ ଲାଭ ଅର୍ଥାତ୍ ତୁଛାଟାରେ ପାଣି ପିଟି କି ଲାଭ)

ପାଏନ୍ ନମାଗିବା- ସଙ୍ଗେ ସଙ୍ଗେ ମୃତ୍ୟୁ ବରଣ କରିବା ଗୁଟେ ଠେଙ୍ଗା ମାଡେ ଆରୁ ପାଏନ ନାଇଁ ମାଗଲା (ଗୋଟାଏ ଠେଙ୍ଗା ମାଡରେ ସେ ଆଉ ପାଣି ମାଗିଲା ନାହିଁ)

ପାଏନ୍ ଲାଗିବା-ସ୍ୱାସ୍ଥ୍ୟୋନ୍ନତି ହେବା (ବନେ ମୁଟେଇଛୁ ତ ବୋ ସହରର ପାଏନ୍ ଲାଗ୍‌ଲାନ ତ (କିରେ ଭଲ ମୋଟା ହେଲୁଣି ସହରର ପାଣି ତୋ ଦେହରେ ଲାଗିଲାଣି ତ)

ପାଏନ୍ ପଏଟ୍ କରିବା- କଣ୍ଠସ୍ଥ କରିବା (କୁରେ ଫୁଲର ଝୁଁପା ବହିର ଗୀତ୍‌ମାନଙ୍କୁ ମୁଇଁ ପାଏନ୍ ପଏଟ୍ କରି ଦେଇଛେଁ ଅର୍ଥାତ୍ କୁରେ ଫୁଲର ଝୁଂପା ବହିର ଗୀତମାନଙ୍କୁ ମୁଁ ପାଣିଭଳି ଭଳି ମୁଖସ୍ଥ କରି ଦେଇଛି)

ପାଏନ୍ ପାଏନ୍ ହେବା- ଛଳ ଛଳ ହେବା (ତାର ଆଏଁଖ ପାଏନ୍ ପାଏନ୍ ହେଲା ଅର୍ଥାତ୍ ତା ଆଖି ଛଳ ଛଳ ହେଲା)

ପାଏନ୍ ପାଇବା- ସମାନ ଗୁଣର ଅଧିକାରୀ ହେବା (ଆମର୍ ବାବୁ ତାର୍ ଅଜାର୍ ପାଏନ୍ ପାଇଛେ ଅର୍ଥାତ୍ ଆମ ବାବୁ ତା ଅଜାର ପାଣି ପାଇଛି।

ପାଏନ୍ ଉତୁରିଯିବା-ମଳୀନ ହୋଇଯିବା ( ତାଣ୍ଡି ଦେଲି ଯେ ତା'ର ମୁହଁର ପାଏନ୍ ଉତୁରି ଗଲା ଅର୍ଥାତ୍ ଭଲକରି ଦିପଦ ଶୁଣେଇଲି ଯେ ତା, ମୁହଁର ପାଣି ଉତୁରି ଗଲା)କ

ସୋର(ସ୍ମୃତି)

ସୋର୍ କରିବା- ମନେ ପକାଇବା (ପିଲା ଦିନର କଥା ସୋର୍ ପଡୁଛେ ଅର୍ଥାତ୍ ପିଲାଦିନ କଥା ମନେ ପଡୁଛେ)

ସୋର୍ ଧରିବା- ଅଭ୍ୟସ୍ତ ହେବା (କୁଶେର ବାରିକେ ଭାଲୁ ବନେ ସୋର୍ ଧଏଲାନ ଅର୍ଥାତ୍ ଆଖୁବାରିକୁ ପଶିବାକୁ ଭାଲୁ ଅଭ୍ୟସ୍ତ ହେଲାଣି।)

ସୋର୍ ପାଇବା- କାନକୁ କଥାଯିବା ବା ଜାଣିବା ( ଇ କଥା ମୁଇଁବି ଟିକେ ଟିକେ ସୋର୍ ପାଇଥିଲି ଅର୍ଥାତ୍ ଏକଥା ମୁଁ ବି କିଛି କିଛି ସୋର୍ ପାଇଥିଲି ବା ଜାଣିଥିଲି )

ସୋର୍ ବୁଡିବା- ବେହୋସ୍ ହେବା(ଡାକ୍ତର ଡାକୁନ୍ ଡାକୁନ୍ ଟାର ସୋର୍ ବୁଡିଗଲା ଅର୍ଥାତ୍ ଡାକ୍ତର ଡାକୁ ଡାକୁ ତା ଚେତା ହଜିଗଲା)

କଁଟ(କଣ୍ଟ)

କଁଟ ଦେବା- ମାପଦେବା(ଦର୍ଜିକେ କଁଟ୍ ଦେଲୁନ ଅର୍ଥାତ୍ ଦର୍ଜିକୁ କଣ ମାପ ଦେଲୁଣି )

କଁଟିହେଟା - ଅନ୍ୟସହିତ ସମାନ ହେବାପାଇଁ ଚେଷ୍ଟା କରିବା (ମୋର ସଙ୍ଗେ ତୁଇ ଫେର୍ କଁଟି ହେଉଛୁ ଅର୍ଥାତ୍ ମୋ ସହିତ ତୁ ପୁଣି କଣ୍ଟି ହେଉଛୁ)

କଁଟ୍ କରିବା - ସମୟ ନିର୍ଦ୍ଦିଷ୍ଟ କରିବା (ସାଉକାର ଫଗୁନ୍ କେ କଁଟ୍ କରିଛେ ଅର୍ଥାତ୍ ସାଉକାର ଫଗୁଣକୁ କଣ୍ଟ କରିଛି)

ଏକୁଶ୍‌କଁଟେ - ଏକଲୟରେ (ଜନ୍ କେ ବାବୁ ଏକୁଶ୍‌କଁଟ୍ ଦେଖୁଛେ । ଜହ୍ନକୁ ପୁଅ ଏକଲୟରେ ଅନାଇଛି)

ଲେଞ୍ଜ (ଲାଞ୍ଜ)

ଲେଂଞ୍ଜ ଜାଁକିବା - ଡରିଯିବା (ମାଷ୍ଟରକେ ଦେଖିକରି ପିଲେ ଲେଂଞ୍ଜ ଜାକିକରି ପଲାଲେ । ମାଷ୍ଟରକୁ ଦେଖି ପିଲେ ଲାଞ୍ଜ ଯାକି ପଲେଇଲେ)

ଲେଂଞ୍ଜ ଟେକିବା - ଯିବାପାଇଁ ଅତର୍ଛ ହେବା (ବେଲ ନିହେ ହେବାର୍‌କେ ତୁଇ ଏତ୍‌କିବେଲୁ ଲେଞ୍ଜ ଟେକଲୁନ । ବେଳ ହେଇନି ତୁ ଏତେବେଳୁ ଲାଞ୍ଜ ଟେକିଲୁଣି ବା ଯିବାପାଇଁ ଅତର୍ଛ ହେଲୁଣି)

ଲେଂଞ୍ଜ ମୋଡ଼ିବା - ଶିଥିଳତା ଦୂର କରିବାକୁ ମଝିରେ ମଝିରେ ପ୍ରେରଣା ଦେବା - (ଲେଂଞ୍ଜ ମୁଡ୍‌ଲେ ଯାଇ କବାର ହେସି । ଲାଞ୍ଜ ମଝିରେ ମଝିରେ ମୋଡୁଥିଲେ କାମ ହୁଏ)

ସାରି

ସାରିଦେବା - ଶେଷ କରିଦେବା (କବାରଟା ସାରି ଦେଲିନ) । କାମଟା ଶେଷ କରି ଦେଲିଣି ।

ସାରିଦେବା - ମାଲିସ୍ କରି ପୀଡ଼ା ଦୂରକରିଦେବା (ତେଲ ଟିକେ ଦେଇକରି ଟକା ସାରିଦେ । ତେଲ ଟିକିଏ ମାଲିସ୍ କରି ପୀଡ଼ା ଦୂର କରି ଦେ ।)

ସାରିଦେବା - ଧ୍ୱଂସ କରିଦେବା (ବହଟା ଯେନ୍‌ତା ଘରେ ଗୋଡ଼୍ ଦେଲା ମୋର୍ ଘର୍ ସାରି ଦେଲାନ (ବହୁ ଯେମିତି ଘରେ ପାଦ ଦେଇଛି ଘରଟା ମୋର ଧ୍ୱଂସ ହୋଇଗଲାଣି)

ସାରିଦେବା - କଡ଼କୁ ଘୁଞ୍ଚିଯିବା । (ଟିକେ ସାରିହ' ଗୋ, ବହ ଗାଧି ଯାଉଛେ । ଟିକେ ବାଟ ଦିଅ ଗୋ, ବୋହୂ ଗାଧେଇ ବାହାରିଛି) ।

ଚାଖି

ଚାଖିବା - ପାଟିରେ ପରଖି ନେବା । (ନୁନ୍ ଲାଗିଛେ କି ନାଇଁ ତୁନ୍ ଟିକେ ଚାଖତ । ଲୁଣ ଲାଗିଛି କି ନାହିଁ ତିଅଣ ଟିକିଏ ଚାଖି ଦେଖିଲ) ।

ଚାଖିହେବା - ଦେଖେଇ ହେବା ବା ଛଡ଼ି ହେବା (guiles) କେତେ ଚାଖି ହେଉଛୁ ନନି । କେତେ ଛଇ ଛଟକ ହେଉଛୁ କିଲୋ ।

ଚାଖିନେବା - ପରଖି ନେବା (ଚେହେରା ଦେଖି ସେ କିଏ କେନ୍‌ତା ଲୋକ୍ ଚାଖି ନେସନ) ଚେହେରା ଦେଖି ସେ କିଏ କେମିତି ଲୋକ ପରଖି ନିଅନ୍ତି ।

ଆଡ଼ି

ପିଠ୍ ଆଡ଼ିବା - ପଛଘୁଞ୍ଚା ଦେବା (ଅସଲ୍ ବେଲ୍‌କେ ଦୁଇ ପିଠ୍ ଆଡୁଛୁ ନାଁ । (ଅସଲ ବେଳକୁ ପଛଘୁଞ୍ଚା ଦେଉଛୁ ନା) ।

ମୁହୁଁ ଆଡ଼ିବା - ମୁହଁ ମୋଡ଼ି ଦେବା । (ବାପର୍ କଥାକେ ବି ତୁଇ ମୁହଁ ଆଡ଼ିଦେଲୁ) ।

ଆଡ଼ି ନ ରହିବା - ଦୁର୍ବଳ ହୋଇଯିବା । (ବେମାର ପଡ଼ିପଡ଼ି ମୋରତ ଦିହେ ଆରୁ ଆଡ଼ି ନାଇନ) । ରୋଗରେ ପଡ଼ି ପଡ଼ି ତା ଦେହ ଦୁର୍ବଳ ହୋଇ ଗଲାଣି ।

ଆଡ଼ିହେବା - ଛେକି ହେବା (ଆଡ଼ି ନାଇଁହ ବାଟୁ ଘୁଞ୍ଚିଯା । ଛେକି ହ ନା ବାଟରୁ ଘୁଞ୍ଚି ଯା) ।

ଛିଡ଼େଇବା ବା ଛଡ଼େଇବା

ଝାଁଟ୍ ଛିଡ଼େଇବା - ଅତିଶୟ ପ୍ରହାର କରିବା । (ଗଣିତ ନାଇଁକଲା ପିଲାକେ ମାଷ୍ଟର କାଲି ଝାଁଟ ଛିଡ଼େଇ ଦେଲେ । ଗଣିତ କରି ନଥିବା ପିଲାଙ୍କୁ ଶିକ୍ଷକ ଖୁବ୍ ମାଡ଼ଦେଲେ ।)

ଝାଁକ ଛଡ଼େଇବା - ଗାଲି ବର୍ଷଣ କରିବା । (ଉଠ୍‌ଲା ଖଟୁ ଚାହା ନାଇଁ ଦେଲେ ପିଲା ଝାଁକ୍ ଛଡ଼େଇ ଦେସି) । ପୁଅ ଉଠିଲାଣି ତାକୁ Bed Tea ନ ଦେଲେ ଗାଳି ବୃଷ୍ଟି ହୋଇଯାଏ ।

ପାର୍ ଛିଡ଼େଇବା - ବାଦ୍ୟର ସମାପ୍ତି କରିବା ବା ତାଳ ସମ୍‌ରେ ଆସି ପହଞ୍ଚିବା । (ତୁଲର ପାର୍ ଛିଡ୍‌ଲେ ଯାଇ ଗାଏବ । ବାଦ୍ୟ ସରିଲେ ଯାଇ ଗାଇବା ଆରମ୍ଭ କରିବ ।)

କବାର୍ ଛିଡ଼େଇବା - କାମ ତୁଟେଇବା । (ବାବୁ ଘରୁ କବାର୍ ଛିଡ଼େଇଁ କରି ମୁଇଁ ଫିରୁଛେଁ । ବାବୁ ଘରୁ କାମ ସାରି ମୁଁ ଫେରୁଛି ।)

ଫୁଲ୍ ଛିଡ଼େିବା - ଫୁଲ ତୋଳିବା । (ଗୁଲାଫୁଲ୍ ଫୁଟି ସୁନ୍ଦର ଦିଶୁଛେ ଛିଡ଼ାବ ନାଇଁ । ଗୋଲାପ ଫୁଟି ସୁନ୍ଦର ଦିଶୁଛି ତୋଳିବ ନାହିଁ ।)

ଦୁଆଁ ଛିଡ଼େଇବା ବା ଦୁଆଁ ଛଡ଼ାହେବା - ଅମାନିଆଁ ହେବା (ଦୁଆଁ ଛିଡ଼ା ଲୋକକେ ଭରସା ନାଇଁ)

ପାଏନ୍ ଛଡ଼େଇବା - ଭୋଗ ଲଗାଇବା ବା ଆଶା ଛାଡ଼ିବା (ଦେହେରୀ ଭୋଗ ନେଇ କରୁ ପାଏନ୍ ଛଡ଼ାଲ ନ । ପୂଜକ ଭୋଗ ଦେଇକରି ପୂଜାଦେଇ ସାରିଲେଣି (ଜୀବନ୍‌କେ ପାଏନ୍ ଛଡ଼େଇ କରି ମୁଇଁ ନିଆଁ ଲିଭେଇ ଗଲି । ଜୀବନକୁ ଜଳାଞ୍ଜଳି ଦେଇ ମୁଁ ନିଆଁ ଲିଭାଇ ଗଲି) ପାଏନ୍ ଛଡ଼ା ଅର୍ଥ ପ୍ରସାଦ ।

ମଡ଼େଇବା

ଧାନ୍ ମଡ଼େଇବା - ବଳଦ ଦ୍ୱାରା ଖଳାରେ ଧାନ ଅମଳ କରିବା । ମଙ୍ଗଲୁ ଖଲାଥି ଧାନ ମଡ଼ଉଛେ । (ମଙ୍ଗଲୁ ଖଳାରେ ଧାନ ଅମଳ କରୁଛି ।)

ଜମି ମଡ଼େଇବା - ଜମି ହସ୍ତାନ୍ତର କରିବା । ଜମି ରେଜେଷ୍ଟ୍ରି ନିଏ ହୁଏ, ହେଲେ ଜମି ମାଲିକ ଜମି ମଡ଼େଇ ଦେଲେନ । (ଜମି ରେଜେଷ୍ଟ୍ରି ହୋଇନି ହେଲେ ମାଲିକ ଜମି ହସ୍ତାନ୍ତର କରି ଦେଲେଣି)

ପାଏନ୍ ମଡ଼େଇବା - ଜମିରେ ଜଳସେଚନ କରିବା । (କୁଶେର୍ ବାରିଥି କାଏଲ୍ ପାଏନ୍ ବୁଲେ ମଡ଼େଇ ଦେବ) । ଆଖୁ ବାରିରେ କାଲି ଗୋଟିଏ ଥର ପାଣି ମଡ଼େଇ ଦେବ ।

୬. ସେଇ ଏକପ୍ରକାର କାର୍ଯ୍ୟର ସାମାନ୍ୟ ଅର୍ଥଗତ ପାର୍ଥକ୍ୟ ପ୍ରକାଶ କରିବା ପାଇଁ ଭିନ୍ନ ଭିନ୍ନ ଶବ୍ଦ ବ୍ୟବହାର କରାଯାଇଥାଏ । ଯଥା :-

(କ) ବଳ ପୂର୍ବକ ମାଡ଼ି ଦେବା ଅର୍ଥରେ :-

ହୁର୍‌ସୁଲି ଦେବା - (ମୂଳଶବ୍ଦ ହୃଦୟରେ ଶୂଳବିଦ୍ଧ କରିବା ଜୁଏଁଖୁଟା ହୁର୍‌ସୁଲି ଦେବା ଅର୍ଥାତ୍ ନିଆଖୁଣ୍ଟା ବଳପୂର୍ବକ ମାଡ଼ିଦେବା । (ଏଠାରେ କୌଣସି ବଡ଼ ଜିନିଷକୁ ବଳ ପ୍ରୟୋଗ କରି ଯୋର୍‌ରେ ମାଡ଼ି ଦେଲେ ସେଇଠି ହୁର୍‌ସୁଲି ଦେବା ହୁଏ । ଶରୀରର ଯେ କୌଣସି ସ୍ଥାନରେ ଜୋର୍‌ରେ କୌଣସି ଜିନିଷ ମାଡ଼ିଦେବା ଦ୍ୱାରା ଯେଉଁ ଯନ୍ତ୍ରଣା ଦାୟକ ଅବସ୍ଥା ସୃଷ୍ଟି ହୁଏ ଯାହାଦ୍ୱାରା ହୃଦୟକୁ ବାଧିଲା ଭଳି ପରିସ୍ଥିତି ସୃଷ୍ଟି ହୁଏ ତାହାକୁ ହିଁ ହୁର୍‌ସୁଲି

ଦେବା କୁହାଯାଏ ।

ଚୁଙ୍ଗିଦେବା - କୌଣସି କ୍ଷୁଦ୍ର ମୁନିଆ ଜିନିଷ ମାଡ଼ିଦେବା ଅର୍ଥରେ ଚୁଙ୍ଗିଦେବା ବ୍ୟବହୃତ ହୁଏ । ଯଥା - ସୁଜି ଚୁଙ୍ଗି ଦେବା (ଛୁଞ୍ଚ୍ ଫୋଡ଼ି ଦେବା ।)

(ଶାବଳ ଚୁର୍‌ସୁଲି ଦେବା, କିନ୍ତୁ ଛୁଞ୍ଚ୍ ଚୁଙ୍ଗି ଦେବାର ପ୍ରୟୋଗ ହୋଇଥାଏ । ଶାବଳ ବଡ଼ ଶକ୍ତ ଜିନିଷ ହୋଇଥିବାରୁ ଚୁର୍‌ସୁଲି ଦେବା ଶବ୍ଦର ପ୍ରୟୋଗ ହେଲା ମାତ୍ର ଛୁଞ୍ଚ୍ କ୍ଷୁଦ୍ର ଜିନିଷ ହୋଇଥିବାରୁ ଚୁଙ୍ଗି ଦେବା କ୍ରିୟାର ପ୍ରୟୋଗ ହେଲା ।)

କୁଁଚି ଦେବା - କେଞ୍ଚ୍ ଦେବା (ଖାଡ଼ଇ କୁଁଚି ଦେବା ।) କୌଣସି ଛୋଟ ଜିନିଷ ଯାକିଦେବା ବା ମାଡ଼ିଦେବା ଅର୍ଥରେ ପ୍ରୟୋଗ ହୁଏ ।

ଟୁଇଁ ଦେବା - ଆଖି ବା କାନ ଭଳି ଶରୀରର କୋମଳାଙ୍ଗରେ ଅଙ୍ଗୁଳି ବା କ୍ଷୁଦ୍ର କୁଟା କାଠି ଅସାବଧାନତା ବଶତଃ ବାଜିଗଲେ ଆଖି ବା କାନ ଟୁଇଁ ହେଲା ବୋଲି କୁହାଯାଏ । (ଅନ୍ୟ କୌଣସି ଅଙ୍ଗରେ ବାଜିଲେ ଟୁଇଁ ହେବା ପ୍ରୟୋଗ ହୁଏନାହିଁ । ସେଠି କୁଁଚି ହେବା ପ୍ରୟୋଗ ବରଂ ଯୁକ୍ତିଯୁକ୍ତ ହେବ ।)

(ଖ) ବ୍ୟତିବ୍ୟସ୍ତ ହେବା ଅର୍ଥରେ :-

ଅଡ଼ାବସା - ବ୍ୟତିବ୍ୟସ୍ତ ହେବା (ବୁଢ଼ାଟା ମୋର ପଡ଼ିଛନ୍ ଯେ ଆମେ ସଭେ ଅଡ଼ାବସା ହେଲୁନ) ବୁଢ଼ା ରୁଗ୍‌ଣ ଥିବାରୁ ଆମେ ସମସ୍ତେ ବ୍ୟତିବ୍ୟସ୍ତ ହୋଇ ପଡ଼ିଲୁଣି ।

ଅର୍ଲା ସର୍ଲା - ମୃତ୍ୟୁକାଳୀନ ଯନ୍ତ୍ରଣା ଦାୟକ ଅବସ୍ଥା । (ବଇଦକେ ଡ଼ାକିଯ ବୁଢ଼ା ଅର୍ଲା ସର୍ଲା ହେଲେନ) । ବଇଦକୁ ଯାଅ ଡ଼ାକି ଆଣିବ ବୁଢ଼ାଙ୍କ ଶେଷ ଅବସ୍ଥା ଆସିଗଲା ।

ଅଚାବୁହା - ଭୀତତ୍ରସ୍ତ ହେବା । (ଷାଠେ ଶ୍ଳୁକ ପଢ଼ିଥ ଶୁଆ ବିଲେଇ ଦେଖିଲେ ଅଚାବୁହା) । ସମ୍ବଲପୁରୀ ଢ଼ଗ । ଅର୍ଥାତ୍ ଶୁଆ ଷାଠିଏ ଶ୍ଳୋକ ପଢ଼ିଲେ ମଧ ବିରାଡ଼ି ଦେଖିଲେ ଅତିଶୟ ଭୀତତ୍ରସ୍ତ ହୋଇଯାଏ ।

ଅଥାଥାଲି - ଅସ୍ଥିର ଅବସ୍ଥା । (ପିଲାଟା ଗଲାଦିନୁ ଘରେ ଆମେ ସଭେ ଅଥାଥାଲି ହେଇ ମରୁଛୁଁ) । ପିଲାଟା ଘରଛାଡ଼ି ଚାଲିଯିବା ଦିନରୁ ଆମେ ସମସ୍ତେ ଅସ୍ଥିର ଅବସ୍ଥାରେ ଦିନ କାଟୁଛୁଁ ।

(ଗ) ମୋଡ଼ିବା ଅର୍ଥରେ :-

ଆଁଠିବା - କାନ୍ ଆଁଠିବା (କାନ ମୋଡ଼ିବା)

ମୁରକୁଟିବା - ବେକ୍ ମୁରକୁଟିବା (ବେକ ମୋଡ଼ିବା)

ମସ୍କିବା - ହାତ ମସ୍କିବା (ହାତ ମୋନିଦେବା)

(ଘ) ବଳ ପ୍ରୟୋଗ ଅର୍ଥରେ :-

ଆଲଟିବା - ଜଣକୁ ଧରି ବଳ ପ୍ରୟୋଗ କରି ଓଲଟେଇ ଦେବା ।

ହାପ୍‌ସିବା/ଆଦ୍‌ଡ଼ିବା - ଜଣକୁ ଧରି ବଳ ପ୍ରୟୋଗ କରି ତଳେ କଚାଡ଼ି ଦେବା ।

ଉର୍‌କିବା - ଉପରେ ଟାଙ୍ଗି ଦେବା । (ହିନ୍ଦିରେ 'ଉଚକ୍‌ନା' ଅର୍ଥ ଭୁଇଁରୁ ପାଦ ଉପରକୁ ଉଠାଇବା ସଙ୍ଗେ ସଙ୍ଗେ ସମଗ୍ର ଶରୀରକୁ ଉପରକୁ ଟାଣିବା) ।

ଖାଁଚ୍‌କିବା - ତଳେ ଜାକିଦେବା ।

(ଙ) ଆଖିର ଚାହିଁବା ଠାଣି ଅର୍ଥରେ :-

ଆଖିର ବିଭିନ୍ନ ଚାହିଁବା ଠାଣି ମଧରେ ମନର ଭାବ ପ୍ରକାଶିତ ହୋଇଥାଏ । ଏହି ବିଭିନ୍ନ ଚାହିଁବା ଠାଣି ଭିନ୍ନ ଭିନ୍ନ ସମ୍ବଲପୁରୀ ଶବ୍ଦଦ୍ୱାରା ଅତି ନିଖୁଣ ଭାବରେ ରୂପ ନେଇଥାଏ ।

ଯଥା :-

ଗୁଁର୍‌ରେଇବା - କଟମଟ - କରି ଚାହିଁବା (କ୍ରୋଧ କଷାୟିତ ଶାଣିତ ଦୃଷ୍ଟି କେବଳ ଗୋଟାଏ ଶବ୍ଦ 'ଗୁଁର୍‌ରେଇବା' ମାଧମରେ ଅତି ସହଜ ଓ ସୁନ୍ଦର ଭାବରେ ପ୍ରକାଶିତ ହୋଇଥାଏ । ଓଡ଼ିଆ ଭାଷାରେ ଏପରି ଏକ ଏକ ନିର୍ଦ୍ଦିଷ୍ଟ ଶବ୍ଦ ମାଧମରେ ଭାବର ଅଭିବ୍ୟକ୍ତି ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ ।

ଏଁଟ୍‌ରେଇବା - ଏକ ଲୟରେ ଅନେଇବା ।

ପେର୍‌ରେଇବା - ଆଖିଡ଼ୋଳା ଦିଓଟି ଓଲଟେଇ ଦେବା । (ସାଧାରଣତଃ ମୁମୂର୍ଷୁ ଅବସ୍ଥାରେ ଏପରି ହୋଇଥାଏ) ।

ଟେର୍‌ଘେଇବା - କଣେଇ କରି ଚାହିଁବା ।

ମଲ୍‌କେଇବା - ଆଖିର ଛଟକ ।

(ଚ) ଏକାର୍ଥ ବୋଧକ କ୍ରିୟା ପଦର ଭିନ୍ନାର୍ଥକ ପ୍ରୟୋଗ :-

ଯଥା :- ଧରିବା - ବାଡ଼ି ଧରିବା, ବହି ଧରିବା ବା ହାତ ମୁଠାରେ ପଇସା ଧରିବା ।

ଛିନିବା - କୌଣସି ଗତିଶୀଳ ନିର୍ଦ୍ଦିଷ୍ଟ ବସ୍ତୁକୁ ଲକ୍ଷ୍ୟ କରି ହଠାତ୍ ଧରି ପକାଇବା । ଓଡ଼ିଆ ଭାଷାରେ

ଛିନିବା ଶବ୍ଦର ପ୍ରୟୋଗ ନାହିଁ। ଏଠି ଉଭୟ ଅର୍ଥରେ କେବଳ ଧରିବା ଶବ୍ଦ ପ୍ରୟୋଗ କରାଯାଏ । ଏଣୁ 'ଛିନିବା' ଶବ୍ଦର ବ୍ୟବହାର ଦ୍ୱାରା ଯେ ଭାବରେ ପାର୍ଥକ୍ୟ ସୁନ୍ଦର ଭାବରେ ପ୍ରକାଶିତ ହୋଇ ପାରିବ ଏଥିରେ ସନ୍ଦେହ ନାହିଁ।

(ଛ) ପାଏନ୍ (ପାଣି) ଝିରିବା ଅର୍ଥରେ :-

ପାଏନ୍ ପଝ୍‌ରିବା - (ପୟଃ ଝରିବା - ପଝରିବା) ଇଂରାଜୀରେ Percolate ଅର୍ଥାତ୍ ଅଳ୍ପ ଅଳ୍ପ ପାଣି ଝରିବା ।

ପାଏନ୍ ଉବ୍‌ଜିବା - ଅଳ୍ପ ଅଳ୍ପ ପାଣି ଭୂଇଁତଲୁ ପଦାକୁ ବାହାରିବା । (ଇଂରାଜୀରେ Odze)

ପାଏନ୍ ଟୁଡ଼ିହେବା - ଏକ ସ୍ଥାନରେ ପ୍ରଚୁର ପାଣି ଭରପୁର୍ ହୋଇ ରହିବା ।

ଉଝୋ ଉଝୋ ପାଏନ୍ କୁଟିବା - ମୂଷଳ ଧାରାରେ ବର୍ଷା ହେବା ।

ପଝ୍‌ରିବା ଓ ଉବ୍‌ଜିବା ଶବ୍ଦ ଦ୍ୱୟର ଅର୍ଥଗତ ପାର୍ଥକ୍ୟ ସୂଚାଉଥିବା ଭଳି ଉପଯୁକ୍ତ ଶବ୍ଦ ଓଡ଼ିଆ ଭାଷାରେ ଖୋଜିଲେ ମିଳିବା କଷ୍ଟକର । ଏଣୁ ବର୍ଣ୍ଣନାକୁ ଲାଳିତ୍ୟମୟୀ ଓ ହୃଦ୍ୟ କରିବାକୁ ହେଲେ ଏଭଳି ଶବ୍ଦରାଜି ଦ୍ୱାରା ଓଡ଼ିଆ ଭାଷାର ଗନ୍ତାଘର ସମୃଦ୍ଧ ଓ ଋଦ୍ଧିମନ୍ତ କରିବା ଏକାନ୍ତ ଆବଶ୍ୟକ ।

(୭) ଏକ ବିଶେଷଣ ପଦ ସହିତ ଅନ୍ୟ ବିଶେଷଣ ପଦର ସଂଯୋଗ କରି ଏକ ନୂତନ ଶବ୍ଦର ବ୍ୟବହାର ହୋଇଥାଏ । ଏପରି କରିବା ଦ୍ୱାରା ଉଭୟ ଶବ୍ଦର ମିଶ୍ରଣରେ ଗଠିତ ନୂତନ ଶବ୍ଦର ଅର୍ଥଗତ ଗୁରୁତ୍ୱ ବୃଦ୍ଧି ପାଇଥାଏ । ଯଥା :-

କଞ୍ଚା - ଅପାକଳ ଅବସ୍ଥା, ବଦ କଞ୍ଚା - ଅତିଶୟ କଞ୍ଚା,

ଭୁସ୍‌କା - ମୋଟା, ଭୁସ୍‌କାଲଦୋ - ଅତିଶୟ ମୋଟା

ପୁଲା - ଫମ୍ପା, ଭଁପୁଲା - ଅତିଶୟ ଫମ୍ପା ।

(୮) କେତୋଟି ସୁନ୍ଦର ସମ୍ବଲପୁରୀ ବିଶେଷଣ ଶବ୍ଦ :-

ମଟ୍‌ଫର୍‌କା - ଅବାଞ୍ଛିତ ଲୋକ, ମାଲ୍‌ଥଟୋ - ବୋକା, ବୁଡ୍‌ବକ - ମୂର୍ଖ

ବାଁକୁଟ୍ କୁହ୍ଲିଆ - ଯାହାର ଜାତି କି ଗୋତ୍ରର ଠିକଣା ନଥାଏ (ବର୍ଣ୍ଣଶଙ୍କର)

ଅଏନ୍ ତଉଲ ଡାଉଲ୍ - ସୁନ୍ଦର, ନିକୋ/ ବନେ - ଭଲ, ଲବାର୍ - ଦୁଷ୍ଟ,

ଗୁସ୍ପୁନ୍‌ଗୁହାଁ - ଚୁପ୍ ସଇତାନ୍, ଭେସ୍‌ଡ଼ିଆ - ଅଶ୍ଳୀଳ, ଦୁଶ୍ଚରିତ୍ର

ଅକ୍ସାଖିଆ - ଅଘସାଖିଆ (ଯେ ଦାନ୍ତ ନଘସି ଖାଏ ତାକୁ ଅକ୍ସଖିଆ କୁହାଯାଏ । ଆଉ ମଧ ଦାନ୍ତର ମଇଳାକୁ ଅକ୍ସା କୁହାଯାଏ । ଦାନ୍ତ ସଫା ନକରି ଖାଦ୍ୟ ଖାଇବା ଦ୍ୱାରା ସେଇ ମଇଲା ପେଟକୁ ଯାଏ । ଏଣୁ ଦାନ୍ତ ନଘସି ଯେ ଖାଏ ତାକୁ ଅକ୍ସାଖିଆ କୁହା ଯାଇଥାଏ ।

(ଙ) ଉପରୋକ୍ତ ଉଦାହରଣ ଗୁଡ଼ିକ ବ୍ୟତୀତ ପଶ୍ଚିମ ଓଡ଼ିଶାରେ ନିତ୍ୟ ପ୍ରଚଳିତ ଅନେକଗୁଡ଼ିଏ ଅତି ସୁନ୍ଦର ସମ୍ବଲପୁରୀ ଢଗ-ଢମାଳି ଓ ପ୍ରବଚନ ପ୍ରଚଳିତ ଅଛି । କହିବା ଚାତୁରୀ ଓ ଭାବ ବ୍ୟଞ୍ଜନା ଦୃଷ୍ଟିରୁ ଏ ଗୁଡ଼ିକ ଏକ ବିଶିଷ୍ଟ ସ୍ଥାନ ଅଧିକାର କରନ୍ତି । ଏ ଅଞ୍ଚଳର ଢଗ ବା ପ୍ରବଚନ ବୈଶିଷ୍ଟ ଦୃଷ୍ଟିରୁ ସେ ଗୁଡ଼ିକ ଏକ ସ୍ୱତନ୍ତ୍ର ପ୍ରବନ୍ଧ ଆବଶ୍ୟକ କରୁଥିବାରୁ ଏଠାରେ କେବଳ ସେ ସମ୍ବନ୍ଧୀୟ ପ୍ରୟୋଗର କେତୋଟି ଉଦାହରଣ ମାତ୍ର ଦିଆଯାଉଛି । ଯଥା :-

୧. ଗାଇ ରଡ଼ା ରଡ଼ିବା - ଅତିଶୟ ବିକଳରେ ଚିତ୍କାର କରିବା । ଉଦାହରଣ - ପିଚାଥି ମାଦୁଟେ ହେଇଛେ ଯେ ପିଲା ଗାଏରଡ଼ା ରଡୁଛେ । (ପିଚାରେ ମାଦୁ ହୋଇଥିବାରୁ ପିଲା ବିକଳ ହୋଇ ରଡ଼ି ଛାଡୁଛି) ।

୨. ଖୁଜ୍‌ଲେ ଉଷୋ କର୍‌ବାକେ ନ ମିଳିବା - ଦୁର୍ମୂଲ୍ୟ ହେବା । ତୁମର ସହରେ କେତେ ମଶା, ଆମର ଗଁଲିଥି ଉଷୋ କର୍‌ମି ବଏଲେ ମଶାଟେ ନାଇନ । (ତୁମ ସହରରେ କେତେ ମଶା ଅଛନ୍ତି କିନ୍ତୁ ଆମ ଗାଉଁଲି ଗାଁରେ ଔଷଧ କରିବାକୁ ବି ମଶାଟେ ମିଳିବେ ନାହିଁ ଅର୍ଥାତ୍ ଦୁର୍ମୂଲ୍ୟ) ।

୩. ଚିଙ୍ଗ୍‌ରି ଛଟ୍‌କ ଛଟ୍‌କିବା - ଅତିଶୟ କଲବଲ ହେବା । କେନ୍ ତାସନେ କାନ୍‌ପାଟିଥି ଚଟ୍‌କନ୍‌ଟେ ଦେଲା ଯେ ପିଲା ଚିଙ୍ଗ୍‌ରି ଛଟ୍‌କା ଛଟ୍‌କି ଗଲା । (କେମିତି ସଜରେ କାନମୁଣ୍ଡାରେ ଚଟକଣାଟେ ପକେଇଲ ଯେ ପୁଅ ତ ଯନ୍ତ୍ରଣାରେ ଚିଙ୍ଗୁଡ଼ି ମାଛ ଭଳି ଛଟ୍‌କିଗଲା ଅର୍ଥାତ୍ ଅତିଶୟ କଲବଲ ହେଲା) ।

୪. ଆଖିର କୁଟା ବାଘର ବଇରି ହେବା - ଜଣକ ପ୍ରତି ସବୁବେଳେ ଶତୃତା ଆଚରଣ କରିବା । (ମୁଇଁ ତ ତୁମର ଆଖିର୍ କୁଟା ବାଘର ବଇରି ହେଇଛେଁ । ଅର୍ଥାତ୍ ମୁଁ ତୁମର ସବୁବେଳେ ଅହନ୍ତା ହୋଇଛି) ।

୫. ହୁଡ୍‌ମୁସିଆ ଯିବା - ଭଲମନ୍ଦ ବିଚାର ନକରି ଏକ ମୁରୁଖିଆ ହୋଇ କାମ କରିବା । (ତେଲ ଶିଶିକେ ଝୁଁଟେଇ ଦେଲୁ । ତୋର୍ ତ ସବୁବେଲେ ହୁଡ୍‌ମୁସିଆ ଚାଲି) । ତେଲ ଶିଶିକୁ ଗୋଡ଼ରେ ଝୁଣ୍ଟେଇ ଦେଲୁ ତୋର ତ ଖାଲି ଏକ ମୁରୁଖିଆ ଚାଲି ଆଗ ପଛକୁ ତୁ

କଣ ଦେଖୁଛୁ କି ?

୬. ଭଖ୍ ମର୍ଦନ୍ ଘା ଭିଆଇବା - ଅଯଥା ବିପଦ ମୁଣ୍ଡାଇବା । ମାତ୍‌ପିଟ୍ ଠାନ୍‌କେ ମୁଇଁ ଯାଏଡି ନାଇଁ କି ପୁଲିସ୍ ମତେ ସାଖି କରତା ନାଇଁ । ଭଖ୍ ମର୍ଦନ୍ ଘା ଭିଅଲିଇଟା । (ମାଡ଼ଗୋଳ ଜାଗାକୁ ମୁଁ ଯାଆନ୍ତି ନାଇଁ କି ପୋଲିସ୍ ମୋତେ ସାକ୍ଷ୍ୟ କରିବା ସୁଯୋଗ ପାଆନ୍ତା ନାହିଁ । ଅଯଥା ହଇରାଣ ଯୋଗ ମୁଣ୍ଡାଇଲି ସିନା) ।

୧୦. ସ୍ପର୍ଶାନୁଭୁତି ସମ୍ବନ୍ଧୀୟ ଶବ୍ଦ :-

ନିଆଁ ଚଟ୍ କରିବା - ବିଶେଷ ଗରମ ଅନୁଭବ କରିବା ।

ପାଣି ଚେଁ କରିବା ବା ଜର୍ କର୍‌ବା - ବିଶେଷ ଥଣ୍ଡା ଅନୁଭବ କରିବା ।

ଭଜା ଚେଁ କରିବା - ଭଜା ଥଣ୍ଡା ହୋଇଯିବା ।

୧୧. କୌଣସି କାର୍ଯ୍ୟ ହଠାତ୍ ସଂଗଠିତ ହେବା ଅର୍ଥରେ ବ୍ୟବହୃତ ଶବ୍ଦ :-

ବଁ ଫଁ କରିବା - ହଠାତ୍ ରାଗିଯିବା ।, ଦଁ ମରି ଜଳି ଉଠିବା - ନିଆଁ ହଠାତ୍ ଜଳି ଉଠିବା

ବଁ ବଁ ପବନ ବହିବା - ହଠାତ୍ ଖୁବ୍ ଯୋର୍‌ରେ ପବନ ବହିବା ।

ଛାତି ଧକ୍ କରିବା - ଭୟରେ ହଠାତ୍ ଶଙ୍କିଯିବା,

ପାଟି ଭକ୍ କରିବା - ପାଟିରୁ ହଠାତ୍ କଡ଼ା ଗନ୍ଧ ବାହାରିବା

ଜୀବନ ସର୍ କରିବା - ଭୟରେ ହଠାତ୍ ଚମକି ପଡ଼ିବା

ରଟ୍ କରି କାମୁଡ଼ିବା - ହଠାତ୍ କାମୁଡ଼ି ଦେବା

ଝାଏଁ କରିବା - ବାତାବରଣର ଶୂନ୍ୟତା ଅନୁଭବ କରିବା

ହାୟ୍ ଲାଗିବା - ଉଶ୍ୱାସ ଲାଗିବା

୧୨. ପନୁରଚ୍ଚାରିତ ଶବ୍ଦର ଅନ୍ୟାନ ପ୍ରୟୋଗ :-

ଖସ୍ ଖସ୍ - ତର ତର ହୋଇ ଏକ ମୁରୁଖିଆ ଭାବରେ ଚାଲିଯିବା ଅର୍ଥରେ ।

ମସ୍ ମସ୍ - ତର ତର ହୋଇ ଖାଇବା ଅର୍ଥରେ

ଭସ୍ ଭସ୍ - ଏକାବେଳକେ ଗୁଡ଼ାଏ ପାଣି ବା ଧୁଆଁ ବାହାରି ଆସିବା ଅର୍ଥରେ ।

ରସ୍ ରସ୍ - ଥଣ୍ଡାଜନୀତ ଅସୁସ୍ଥତା ବୋଧ କରିବା ଅର୍ଥରେ (ବା ଜ୍ୱରର ପ୍ରାରମ୍ଭିକ ଅବସ୍ଥା) ।

ଚର୍ ଚର୍ - ତର ତର ହୋଇ ଲେଖିବା ଅର୍ଥରେ

ଛକ୍ ଛକ୍ - ତର ତର ହୋଇ କାଟିବା ଅର୍ଥରେ

ଭକ୍ ଭକ୍ - ଏକାବେଳକେ ଗୁଡ଼ାଏ ବାନ୍ତି କରିବା ଅର୍ଥରେ

ଚକ୍ ବକ୍ - ଏକାବେଳକେ ଗୁଡ଼ାଏ ଅଦରକାରୀ ଓ ବିରକ୍ତିକର କଥା କହିବା ଅର୍ଥରେ

ଠସ୍ ଠସ୍ - ଏକାବେଳକେ କାନ୍ଦି ପକାଇବା ଅର୍ଥରେ

ଲପ୍ ଲପ୍ - କୌଣସି ଲେମ୍ବୁ ଅଥବ ପତଳା ଜିନିଷର ସୂଚନା ଦେବା ଅର୍ଥରେ । (ଶକ୍ତ ନୁହେଁ ଦୁର୍ବଳ ଅର୍ଥରେ)।

ଖପ୍ ଖପ୍ - ତର ତର କରି ଧରି ପକାଇବା ଅର୍ଥରେ ।

ଗବ୍ ଗବ୍ - ତର ତର ହୋଇ ଗିଳିବା ଅର୍ଥରେ । ମଲ୍ ମଲ୍ - ଦେଖେଇ ହେବା ଅର୍ଥରେ ।

କଚ୍ କଚ୍ - ସେହି ଏକା କଥାକୁ ବାରମ୍ବାର କହି ବିରକ୍ତ କରିବା ଅର୍ଥରେ ।

ଝଲ୍ ଝଲ୍ - ନିର୍ମଳ ଅର୍ଥରେ (ଝଲ୍ ଝଲ୍ ପାଣି)

ଖଲ୍ ଖଲ୍ - ପାଣି ବହିବା ଅର୍ଥରେ (ପାଣି ଖଲ୍ ଖଲ୍ ହୋଇ ବହୁଛି)।

ଚକ୍ ଚକ୍ - ଭୟ କରିବା ଅର୍ଥରେ (ମଶାଣି ପଦାଟା ଏକୁଟିଆ ଗଲାବେଳେ ଚକ୍ ଚକ୍ ଲାଗିବ)।

ଫକ୍ ଫକ୍ - ଡ଼େଇଁବା ଅର୍ଥରେ (ସକାଳ ପହରୁ ବାଁ ଆଖିଟା ଫକ୍ ଫକ୍ ଡ଼େଉଁଛି)।

ଉପର ବର୍ଣ୍ଣିତ ସମ୍ବଲପୁରୀ ଆଳଙ୍କାରିକ ପ୍ରୟୋଗ ଗୁଡ଼ିକ ଏ ଅଞ୍ଚଳର ଏକ ଏକ ନିଖୁଣ, ନିତ୍ୟ ପ୍ରଚଳିତ ବିଭବର ଉଦାହରଣ । ସମ୍ବଲପୁରୀ ଭାଷାଭାଷୀ ପଶ୍ଚିମ ଓଡ଼ିଶାର ନିରାଟ ପଲ୍ଲୀ ଅଞ୍ଚଳରେ ମଧ କି ଶିକ୍ଷିତ କି ଅଶିକ୍ଷିତ ସମସ୍ତଙ୍କ ମୁହଁରେ ଏ ଭାଷା ଓ ଏ ଶବ୍ଦ ଗୁଡ଼ିକର ନିଖୁଣ ପ୍ରୟୋଗ ହୋଇଥାଏ । ଏହାଦ୍ୱାରା ଭାଷାର ମାଧୁରୀ ଓ ଲାଳିତ୍ୟ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ କଥା ବାତୁରୀକୁ ସରସ, ସୁନ୍ଦର ତଥା ଚିତ୍ତାକର୍ଷକ କରିବା ପାଇଁ ପ୍ରୟାସ କରାଯାଇଥାଏ । ଏଣୁ ଏହା ଉପଯୁକ୍ତ ଆଳଙ୍କାରୀକ ପ୍ରୟୋଗ ଗୁଡ଼ିକୁ ତଥା ସୁନ୍ଦର ସମ୍ବଲପୁରୀ ଶବ୍ଦ ଗୁଡ଼ିକୁ ସାହିତ୍ୟରେ ସ୍ଥାନ ଦେଲେ ଓଡ଼ିଆ ସାରସ୍ୱତ ଭଣ୍ଡାର ଋଦ୍ଧିମନ୍ତ, ସମୃଦ୍ଧ ଓ ସାର୍ଥକ ହୋଇ ପାରିବ ଏଥିରେ ସନ୍ଦେହ ନାହିଁ । ଏଣୁ ଏହାର ଉଚିତ୍ ମୂଲ୍ୟାୟନ ହେବା ଆବଶ୍ୟକ ।



# କେତୋଟି ସମ୍ବଲପୁରୀ ପ୍ରବଚନ

କଳାକୃଷ୍ଣ ମିଶ୍ର

୧. 'ଗାଏ ନାଇଁ କୁଦେ, ଗୁହାଲ୍ କୁଦେ'

ଗାଏ - ଗାଇ, କୁଦେ - ଡ଼ିଏଁ।

ସାଧାରଣତଃ ଗାଇ ଡ଼େଇଁବା କଥା କିନ୍ତୁ ସେ ନ ଡ଼େଇଁବା ସ୍ଥଳେ ଗୁହାଳ ଡେଉଁଚି । ପ୍ରକୃତ ବ୍ୟକ୍ତି ବିନା ଅନ୍ୟ କେହି ଯଦି କୌଣସି ଅନାବଶ୍ୟକ ଆଚରଣ କରେ ତା ହେଲେ ତାତ୍ପର୍ଯ୍ୟ ଅର୍ଥରେ ବ୍ୟବହୃତ ହୁଏ।

୨. 'ଉଷୋ ମନର୍ ଘା, ଉଷୋ ଲଗେଇ ପଡ଼ିଥା' । ବା 'ଆପେଁ ଆପେଁ କଲୁ ଘା, ଉଷୋ ଲଗେଇ ପଡ଼ିଥା'

ଆପଣା ହସ୍ତେ ଜିହ୍ୱା ଛେଦି - ଓଡ଼ିଆ । ନିଜ କୃତ ପାପ ନିଜେ ଭୋଗିବା । ·

୩. 'କୁର୍ପନେ ପାଏନ୍ କି କୁର୍ପନେ ଧନ୍'

ପାଏନ୍ - ପାଣି ।

କୃପଣ ଠାରୁ ପାଣି ନା କୃପଣ ଠାରୁ ଧନ । ଲୋଭୀ ଠାରୁ ପାଣି ଟିକିଏ ବି ମିଳିବା ଆଶା ନଥାଏ ଧନ ତ ଧନ ।

୪. 'କଣା ଘୁଡ଼ା ବିରହ ପାଡ଼େଁ ସନ୍ତୋଷ' ।

ଘୁଡ଼ା - ଘୋଡ଼ା, ପାଡ଼େଁ - ଚୋପା ।

ଆଖିକୁ ଦିଶୁ ନଥିବା ଘୋଡ଼ା ବିର୍‌ହି ଚୋପାରେ ସନ୍ତୋଷ ହୋଇଥାଏ । ଅକର୍ମଣ୍ୟ ଅଳ୍ପ ବସ୍ତୁରେ ମଧ ସନ୍ତୋଷ ଲାଭ କରେ ନିଜ ଭାଗ୍ୟ ଯୋଗୁଁ।

୫. 'ଘର୍ ବଲୁଛେ ଯା, ଘାଟ୍ ବଲୁଛେ ଆ'

ସାଧାରଣତଃ ମନୁଷ୍ୟର ଶେଷ ଅବସ୍ଥାରେ ଏହା କୁହାଯାଇଥାଏ । ଯେତେବେଳେ ତାହାର

କୌଣସି ଆବଶ୍ୟକ ଅନ୍ୟ କେହି ଉପଲବ୍ଧି କରନ୍ତି ନାହିଁ । କେବଳ ଶ୍ମଶାନ ଘାଟ ହିଁ ତାକୁ ଆଦ୍‌ରରେ ଡ଼ାକି ଆଶ୍ରୟ ଦିଏ ।

୬. 'ଘରେ ନାଇଁନ ଧନ ଭୁଏର୍ ଝିକେ ମନ୍ ।

ଓଡ଼ିଆ - ଘରେ ନାହିଁ ଧନ୍ ରଜା ଝିଅକୁ ମନ ।

୭. 'ଘରେଁ ନାଇଁନ ତିରନ୍ ତସୁ ,ଗିଜ୍ ବଲୁଛେ ମେଁଚେ ବସୁ ।'
ତିରନ୍ ତସୁ - ପଖାଳ ତୋରାଣି, ଗିଜ୍ - ପିଚା, ମେଁଚେ - ଚଉକି ।

ଘରେ ତୋରାଣି ମନ୍ଦେ ଚି ନାହିଁ ତଥାପି ପିଚା ଦୁଇଟିର ଇଛା ଚଉକିରେ ବସନ୍ତେ । ସମ୍ବଳହୀନ ହୋଇ ଅସମ୍ଭବ କଳ୍ପନା କରିବା ।

୮. 'ଘରକେ ସୁନ୍ଦର ପିଁଡ଼ା, ବୁଡ଼ୀକେ ସୁନ୍ଦର ବୁଡ଼ା
ଧଙ୍ଗ୍‌ରା (ଯୁଆନ୍) କେ ସୁନ୍ଦର ଧାଙ୍ଗ୍‌ରି, ବୁଠିକେ ସୁନ୍ଦର ଚାଙ୍ଗ୍‌ରୀ ।'

ଧାଙ୍ଗ୍‌ରୀ - ଯୁବତୀ, ଯୁଆନ୍ - ଯୁବକ, ବୁଠି - ଗେଡା, ଢାଙ୍ଗ୍‌ରୀ, ଗେଡ଼ି, ଧାଙ୍ଗ୍‌ରା- ଯୁବକ । (ଅର୍ଥ ବୋଧଗମ୍ୟ)

୯. 'ଖରଖସ୍ ଗିଜେଁ ମଗ୍‌ଦଲ ଫୁଲ' । (ମଖ୍‌ମଲ୍)
ଖରଖସ୍ - ଖଦଡ଼ିଆ, ଗିଜେଁ - ପିଚାରେ ।

ରୂପ କୁତ୍ସିତ କିନ୍ତୁ ବେଶଭୂଷା ଆଡ଼ମ୍ବର ପୂର୍ଣ୍ଣ । ମଗ୍‌ଦଲ୍ ।

୧୦. 'ଘୁବ୍‌କୁଡୁ ଚାଙ୍ଗ୍ ଚାଙ୍ଗ୍, ପଏସା ଟାକେ ପତରେ ଭାଙ୍ଗ୍'

ପ୍ରଥମ ଅଂଶ ପଢ଼ିବା ପାଇଁ,

ପଇସା ଟାକେଁ - ପଇସାକର, ଭାଙ୍ଗ - ଦୋଷ୍ଠା । ଅଳ୍ପ ଦେଇ ବେଶୀ ଲାଭ କରିବା ଅର୍ଥରେ ବ୍ୟବହୃତ ।

୧୧. 'ଚୋର୍‌କେ ବିଧେ ଦେଲେଁ ଜହ'
ବିଧେ - ବିଧାଏ, ଜହ - ବେଶୀ ।

ଚୋର ଚୋରି କରି ପଳେଇ ଗଲା ସମୟରେ ତାକୁ ଧରି ନ ପାରିଲେ ମଧ ଯଦି ତାକୁ ବିଧାଏ ଦିଆଯାଏ ତା ହେଲେ ଆତ୍ମତୃପ୍ତି ଆସେ ।

୧୨. 'ଚକରନୁ ପୁଆଲ ମୁଠେ'

ପୁଆଲ - ପାଳ, ମୁଠେ - କରେ ।

ହିନ୍ଦୀ - ଭଗ୍‌ତା ଭୁତ୍‌କୀ ଲେଙ୍ଗୋଟୀହୀ କାଫି ।

୧୩. 'ଚୋର୍ ଖୁଜୁଥାଏ ଅନ୍ଧାର ରାଏତ୍'

ଚୋର ଯେପରି ଅନ୍ଧାର ରାତିର ଅପେକ୍ଷାରେ ଥାଏ ସେହିପରି ସୁବିଧାବାଦୀ ସବୁବେଳେ ସୁବିଧା ଖୋଜୁଥାଏ ।

୧୪. 'ଚାନ୍‌ଲି ବଏଲା ସୁଜିକେ ତୋର୍ ଗିଡେଁ କହ୍ନାଁଟେ ।'

୧୫. 'ନିଜର ଗିଡେଁ ଟୁପେ ମାଛି, ସେ ଯାଉଛେ ପର୍‌କେ ବାଛି ।'

୧୬. 'ଆପ ଛିଦ୍ର ନ ଜାନନ୍ତି ପର ଛିଦ୍ର ଭୁଗା ଟୁପା ।'

ଚାନ୍‌ଲି - ଅଟା ପ୍ରଭୃତି ବାଛିବା ପାଇଁ ଉପକରଣ ଚାଲୁଣୀ, ସୁଜି - ଛୁଞ୍ଚି,

କହ୍ନାଟେ-କଣାଟିଏ

ଓଡ଼ିଆ - ନିଜଠାରେ ଥାଇ, ପରକୁ ବାଛଇ ।

୧୭. 'ଛୋଟ୍ ମୁହେଁ ବଡ଼ କଥା ।'

ହିନ୍ଦୀ - ଛୋଟାମୁହଁ ବଡ଼ୀବାତ୍ (ସ୍ପଷ୍ଟ)

ନିଜେ ଯେତିକିର ସେତିକିରେ ରହିବା ଶୋଭାପାଏ ।

୧୮. 'ଛେଲ୍‌ଥିଁ ଧାନ୍ ନାଇଁ ମରେ'

ଛେଲ୍‌ଥିଁ - ଛେଳି ଦ୍ୱାରା, ଧାନ୍ - ଧାନ

ଛେଳି ସାହାଯ୍ୟରେ ଯଦି ଧାନ ଅମଳ କରିବା ଚେଷ୍ଟା କରାହୁଏ ଏବଂ ଦିନ ଦିନ ଧରି ଯଦି ଧାନ ଉପରେ ଘୁରାଯାଏ ତଥାପି ତାହା ବୃଥା ହୁଏ । ଯାହାଦ୍ୱାରା ଯେଉଁକାମ ହୁଏନା ଜୋର ଜବର ଯଦି ତାକୁ ସେହିକାମ ଦିଆହୁଏ ତା'ହେଲେ କେବେ କାର୍ଯ୍ୟସିଦ୍ଧି ହୁଏନା ।

୧୯. 'ଛିରେ ଛତୁ, ମେଘ ବରଷିଲେଁ କେତେ ଫୁଟ୍‌ତୁ ।'

ଛିରେ - ବିରକ୍ତି ଅର୍ଥରେ ।

ଅକାଳରେ ଛତୁ ଫୁଟିବା ଦେଖି କୁହାଯାଇଛି । ଛତୁ ଯଦି ମେଘ ବର୍ଷା ହୁଅନ୍ତା ତା'ହେଲେ ତୁ କେତେ ପରିମାଣରେ ନ ଫୁଟନ୍ତୁ ଏହା ଭର୍ତ୍ସନାରେ ବ୍ୟବହୃତ ହୁଏ । କାହାରି ଉଚ୍ଛୃଙ୍ଖଳତା ଦେଖି ବୟୋଜ୍ୟେଷ୍ଠମାନେ କହିଥାନ୍ତି ।

୨୦. 'ଜହ ଲୁକେଁ ମୂଷା ନାଇଁ ମରେ ।'

ବେଶୀ ଲୋକରେ ମୂଷା ମରେ ନା ।

୨୧. 'ଜୀବନ୍ ଥିଲେଁ ଜୀବିକା ଅଛେ ।'

ଜୀବନ ଥିଲେ ଜୀବିକା ଅଛି ।

୨୨. ଜୁଏଁ ବାଁକ୍ କି ନଏଦ୍ ବାଁକ୍ ।

ଜୁଏଁ - ଜୋଇଁ, ବାଁକ - ବଙ୍କା, ନଏଦ୍ - ନଦୀ ।

ଜୋଇଁ ବଙ୍କା ନା ନଦୀ ବଙ୍କା ।

ନଦୀରେ ମୋଡ଼ଥିବା ସ୍ୱାଭାବିକ, ଠିକ୍ ସେହିପରି ପ୍ରତ୍ୟେକ ଜୋଇଁ ନିଜନିଜ ଶ୍ୱଶୁରଙ୍କ ସକାଶେ ବଙ୍କା ହୋଇଥାଆନ୍ତି । ଶ୍ୱଶୁର ଯେଉଁ କଥା କିମ୍ବା କାର୍ଯ୍ୟକଲେ ସେଥିରେ ବ୍ୟଞ୍ଜନା ଅର୍ଥ ଖୋଜିବାରେ ବ୍ୟସ୍ତ ରହନ୍ତି । ତେଣୁ ନଦୀ ଓ ଜ୍ୱୋଇଁଙ୍କୁ ସମାନ ତୁଳନା କରାହୋଇଛି ।

୨୩. 'ଝାର୍‌କେ ନାଇଁ ବଲବ ପଦା, ପୁଲିସ୍‌କେ ନାଇଁ ବଲ୍‌ବ ଦଦା ।'

ଝାର୍‌କୁ - ବଣକୁ, ବଲ୍‌ବ - ବୋଲିବ, ଦଦା - ବଡ଼ଭାଇ

ବଣକୁ ପଦା ବୋଲି ଭାବି ଯେପରି ନିଶ୍ଚିନ୍ତ ହେବା ଉଚିତ ନୁହେଁ ସେହିପରି ପୁଲସ ଲୋକକୁ ନିଜ ସମ୍ବନ୍ଧୀୟ ବୋଲି ଭାବି ମଧ ନିଶ୍ଚିନ୍ତ ହେବା ଉଚିତ୍ ନୁହେଁ । ବଣରେ ହିଂସ୍ର ଜୀବଜନ୍ତୁ ଯେ ନଥିବେ ଏପରି ବିଶ୍ୱାସ ଅନୁଚିତ । ପୁଲିସଲୋକ ସେପରି ସମ୍ବନ୍ଧୀୟ ହେଲେ ବି କେତେବେଳେ ନିଜକୁ ସନ୍ଦେହ ନ କରିବେ ତାହା ମଧ ଭାବିବା ଠିକ୍ ନୁହେଁ । ପୁଲିସ୍ ମାନଙ୍କ କାର୍ଯ୍ୟକଳାପରୁ ଏହାର ସୃଷ୍ଟି ।

୨୪. 'ଠେଁଟର ବେକେଁ ତୁଲ୍‌ସୀ ମାଲ୍ ।'

ଠେଁଟର୍ - ଡ଼କାୟତର, ବେକେଁ - ଗଳାରେ, ମାଲ୍ - ମାଳ ।

ବକ ବୈଷ୍ଣବ । ତୁଳସୀମାଳ ସାତ୍ତ୍ୱିକ ଗୁଣଯୁକ୍ତ ସାଧୁ ପୁରୁଷର ଭୂଷଣ ଯଦି ଗୋଟିଏ ଡକାୟତର ଗଳାରେ ଲମ୍ବିଥାଏ ତା'ହେଲେ ମଣିନା ଭୂଷିତଃ ସର୍ପଃ କିମସୌ ନଭୟଙ୍କରଃ ?

'ବେଶ ନୁହଇ ସଖୀ ଗୁଣର ଚିହ୍ନ, ବାହାରେ ସାଧୁବେଶ ଭିତରେ ଭିନ୍ନ ।' ଗଙ୍ଗାଧର

୨୫. 'ଠକ୍‌ଲେଁ ଠିକେଁ ପଡ଼୍‌ସନ୍ ।'

ଠକିଲେ ଶିଖନ୍ତି ।

୨୬. 'ଡେଙ୍ଗାର୍ ମୁଁଡ଼େ ଠେଙ୍ଗା ।' ବା 'ଚଡ଼େନ୍ ଝୁରିର୍ ମୁଡ଼େଁ ଠେଙ୍ଗା ।'
ଚଡେନ୍ - ଚଢୁଥିବା, ଝୁରିର୍ - ମାଛର, ମୁଡେଁ - ମୁଣ୍ଡରେ ।
ଡେଙ୍ଗା ମୁଣ୍ଡରେ ଠେଙ୍ଗା ।

୨୭. 'ଢେଁକି ସରଗ୍‌କେ ଗଲେ ବି ଧାନ୍ କୁଟ୍‌ସି ।'
ଢେଁକି - ଢେଙ୍କି, ସରଗ୍‌କେ - ସରଗକୁ, ଧାନ୍ କୁଟ୍‌ସି - ଧାନକୁଟେ ।
ଢେଙ୍କି ସରଗକୁ ଗଲେ ବି ଧାନ କୁଟେ ।

୨୮. 'ତାଲ୍ ତଲେଁ କାଲ୍ ।'

ତାଳଗଛ ତଳେ ବସା ବାନ୍ଧିଲେ କେଉଁ ଅନିଶ୍ଚିତ ମୁହୂର୍ତ୍ତରେ ଯେ ମୃତ୍ୟୁ ଘଟିବା ତା' କହିହେବନି । ବିପଦପୂର୍ଣ୍ଣ ସ୍ଥାନକୁ 'ତାଳତଳ' ବୋଲି କୁହାଯାଇଛି ।

୨୯. 'ତୋର୍ ଧାନ୍‌କେ ତୋର୍ ମୁର୍‌ହି, ଦେ କେଉଁଟେନ୍ ଭୁସ୍‌କରି ।'
ମୁର୍‌ହି - ମୁଡି, କେଉଁଟେନ୍ - କେଉଁଟୁଣୀ ।
କେଉଁଟୁଣୀର ଧାନରେ କେଉଁଟୁଣୀର ମୁଡି କିଣିବା ।
ହିନ୍ଦୀ 'ଆମ୍‌କେ ଆମ ଗୁଠୁଲି କେ ଦାମ୍'
କୌଣସି କ୍ଷତି ନଥାଇ କୌଣସି ଜିନିଷ ଲାଭ ହେଲେ କୁହାଯାଏ ।

୩୦. 'ତଲ୍ ବରଡ଼ା ଖସୁଛେ, ଉପର୍ ବର୍‌ଡ଼ା ହସୁଛେ
ର,ର, ରରେ ଉପର୍ ବର୍ଡ଼ା ତୋର୍ ଦିନ୍‌କାଲ୍ ଆସୁଛେ ।'
ବର୍‌ଡ଼ା - ତାଳବାହୁଙ୍ଗା, ଖସୁଛେ - ଖସୁଛି,
ର,ର-ରହ,ରହ । ଆସୁଛେ - ଆସୁଛି ।

ତାଳ ଗଛର ବିଭିନ୍ନ ସ୍ତରରେ ଥିବା ବାହୁଙ୍ଗା ମାନଙ୍କ କଥୋପକଥନ-ଛଳରେ ମନୁଷ୍ୟ ଜୀବନର ପ୍ରଧାନ ତିନୋଟି ଅବସ୍ଥା କୈଶୋର, ଯୌବନ ଓ ବୃଦ୍ଧ ସମୟର କରୁଣ ପରିଣତି ସୂଚାଇ ଦିଆଯାଇଛି । ସର୍ବ ନିମ୍ନରେ ଥିବା ବାହୁଙ୍ଗା ଗଛରୁ ଖସି ପଡୁଛି ସେହି ସମୟରେ ସବା ଉପରେ ଥିବା ବାହୁଙ୍ଗା ହସି ଉଠିଲା, ତାକୁ ଲକ୍ଷ୍ୟକରି ମଝିବାହୁଙ୍ଗା କହିଲା ତୋର ମଧ୍ୟ ସେ ଖସିପଡ଼ିବା ସମୟ ଆସୁଛି । ମନୁଷ୍ୟ ଜୀବନର ଏହି ପ୍ରଧାନ ତିନୋଟି ଅବସ୍ଥାର ଯଥାର୍ଥ ସଭ୍ୟତା ଏହି ବାହୁଙ୍ଗା ମାନଙ୍କ କଥୋପକଥନ ଦ୍ୱାରା ପରିପ୍ରକାଶ ହୋଇଛି । ସମାଜରେ ଏହି ତିନୋଟି ଅବସ୍ଥାସମ୍ପନ୍ନ ତିନୋଟିସ୍ତର ରହିଛନ୍ତି । କିଶୋର, ଯୁବକ ଓ ବୃଦ୍ଧ । ବୃଦ୍ଧଗଣ ସାଧାରଣତଃ

ପୁରାତନପନ୍ଥୀ, ପୁରାତନ ଛାଡ଼ି ନୂତନତ୍ୱରେ ଭାସିଯିବା ସେମାନେ ଶିଖିନାହାନ୍ତି, ସେହି ପୁରାତନରେ ହିଁ ତାଙ୍କ ଜୀବନ ସାଫଲ୍ୟ ନିହିତ ବୋଲି ତାଙ୍କର ଚିରବିଶ୍ୱାସ, ଏହି ଅବସ୍ଥା ଲକ୍ଷ୍ୟକରି କିଶୋର ଦଳ ଉପହାସ କରିବାକୁ ପଶ୍ଚାଦ୍‌ପଦ ହୁଅନ୍ତି ନି, ତାଙ୍କ ଆଖିକୁ ଏହା ସୁହାଏନି, କିଶୋର ଦଳର ଏହି ଅବସ୍ଥା (ଉପହାସପ୍ରିୟ) ତାଙ୍କ ବାପା ମାଙ୍କ ଆଖିକୁ ଭଲ ଦିଶେନା । ସେମାନେ ଏହାଙ୍କୁ ଅନେକ ଶିକ୍ଷା ଦିଅନ୍ତି, ସେପରି ନହେବାକୁ ପ୍ରବର୍ତ୍ତାନ୍ତି । ଏହା ହିଁ ଏହି ପ୍ରବଚନର ଅନ୍ତର୍ନିହିତ ଭାବ ।

୩୧. 'ଟାଲ୍ ଟଲ୍‌କେ ଯିବାର୍ ବେଲ୍, ଟାଲ ପଡ଼୍‌ବାର୍ ବେଲ୍ ।'

ଟାଳ ଟଳକୁ ଯିବା ବେଳ, ଟାଳ ପଡ଼ିବା ବେଳ ।' 'କାଳ ଟଳିକ ନ୍ୟାୟ ।'

୩୨. 'ଦାରିର୍ ଘର୍ ପୁଡ୍‌ଲା ବେଲ୍‌କେ ନାଗର ବଏଲା ଖଟ୍ ପକା ।'

ଦାରିର୍ - ବେଶ୍ୟାର ଘର ପୋଡିଲା ବେଳେ ନାଗର ବୋଲିଲା ଖଟପକା ।

'କାହାର ପୁଷମାସ, କାହାର ସର୍ବନାଶ' ।

ଘର ବୁଡ଼ି ଆଣ୍ଠୁଏ, କାହାରି କାହାରି ବିପଦ୍ ସମୟ ତାର ବିପତ୍ତିକୁ ଆମେ ଦୃଷ୍ଟି ନଦେଇ ନିଜ ସ୍ୱାର୍ଥସୁବିଧା ପ୍ରତି ଦୃଷ୍ଟି ଦେଉଁ ତା ଉପଲକ୍ଷରେ ଏହା କଥିତ ।

୩୩. 'ଦାଁତର ବେଲ୍‌କେ ଚନା ନାଇଁ, ଚନାର୍ ବେଲ୍‌କେ ଦାଁତ୍ ନାଇଁ ।'

'ଦାନ୍ତ ବେଳକୁ ଚଣାନାହିଁ, ଚଣା ବେଳକୁ ଦାନ୍ତ ନାହିଁ ।'

ଗୋଟିଏ ଦିଗରେ ସବୁ ସୁଯୋଗ ସୁବିଧା ଥିଲେ ଅନ୍ୟ ଦିଗରେ ଅସୁବିଧା ଥାଏ । ତେଣୁ କୌଣସି କାର୍ଯ୍ୟ ଠିକ୍ ଭାବରେ ହୋଇ ପାରେନା ।

୩୪. 'ଦେଲୁଁ ନାରୀ ହେଲୁଁ ପାରି ।'

ଝିଅ ବାହାହେବା ଯାହା, ଅତି ବିଷମ ବିପଦରୁ ରକ୍ଷା ପାଇବା ତାହା ।

୩୫. 'ଦେଇଥିଲେଁ ପାଇ, ବୁନିଥିଲେ ଦାଇ ।'

ଦେଇଥିଲେ ପାଇ, ବୁଣିଥିଲେ ଦାଇ ।

୩୬. 'ଦୁର୍‌କେ ସୁନ୍ଦର୍ ଫଲସା ଫୁଲ୍'

ଫଲ୍‌ସା ଫୁଲ - ପଳାସ ଫୁଲ 'ଦୂର ପରବତ ସୁନ୍ଦର ।'

୩୭. 'ଦାଁତରି ମାଏଝିର୍ ହଁସ୍‌ବାର୍ କାନ୍ଦ୍‌ବାର୍ ଏକାଟା ।'

ଦାଁତରି - ଦାନ୍ତୁରୀ, ମାଏଝିର - ସ୍ତ୍ରୀର, ହସିବା କାନ୍ଦିବା ଏକା । କାନ୍ଦିଲେ ଦାନ୍ତ ଦିଶେନା

ହସିଲେ ଦାନ୍ତ ଦିଶେ କିନ୍ତୁ ଯାହାର ଦାନ୍ତ ସଦାସର୍ବଦା ଦେଖାଯାଏ ଯଥା ଦାନ୍ତୁରୀ ତାର ହସିବା କାନ୍ଦିବା ଭିତରେ ପ୍ରଭେଦ ସହଜେ ବାରି ହୁଏନା । ଦୁଃଖୀଲୋକ ଦୁଃଖ ସହି ସହି ପରିଶେଷରେ ନିଜେ ସବୁବେଳେ ସେ ସହିବା ଭିତରେ ହସିବାକୁ ଚେଷ୍ଟା କରେ ଏଣୁ ପ୍ରକୃତରେ ଯେତେବେଳେ ତାର ସୁଖସମୟ ଉପସ୍ଥିତ ହୁଏ ସେତେବେଳେ ତାହା ଦୁଃଖର ହସ ନା ସୁଖର ହସ କିଛି ବୁଝାଯାଏନି ।

୩୮. 'ଦାନ୍ ଗାଏର୍ କାଏଁ ଦାଁତ୍ ଦେଖା ।'

ଦାନ୍ ଗାଏର୍ - ଦାନ ଦିଆ ହୋଇଥିବା ଗାଈର । କାଏଁ - କ'ଣ,

ଦାଁତ୍ ଦେଖା - ଦାନ୍ତ ଦେଖା ।

ଦାନଦିଆ ଯାଇଥିବା ଗାଈର ଦାନ୍ତ ଦେଖିବା ଅନାବଶ୍ୟକ । କାରଣ ତାହା ସେମିତି ସେମିତି ବିନା ଖର୍ଚ୍ଚରେ ମିଳିଛି । ତେଣୁ ତାକୁ ଦେଖି ପରଖି ଆଣିବା ମୂର୍ଖାମୀ, ଗାଈଟା ମିଳିଛି ଯେ ଯଥେଷ୍ଟ, ଯାହାବିନା ମୂଲ୍ୟ ବିନା ପରିଶ୍ରମରେ ମିଳିଛି ତାକୁ ଖୋଳିତାଡ଼ି ଦେଖିବା ଅନାବଶ୍ୟକ ।

୩୯. 'ଦହିଁ ହାଁଡ଼ିକେ ବିଲେଇ ସାଖୀ ।'

ହାଣ୍ଡିକେ - ହାଣ୍ଡିକୁ, ବିଲେଇ - ବିରାଡ଼ି

ଦହି ବିରାଡ଼ିର ପ୍ରିୟଖାଦ୍ୟ ଏଣୁ ଦହିହାଣ୍ଡି ଓ ବିରାଡ଼ିର ସମ୍ପର୍କ ଉତ୍ତମ ହେବା ନିଶ୍ଚିତ, କାରଣ ବିରାଡ଼ି, ଦହି ଭଲପାଏ । ଯେ ଯାହାକୁ ଭଲପାଏ ସେ ତା ସପକ୍ଷରେ ମତ ଦେବାକୁ ପଶ୍ଚାତ୍‌ପଦ ହୁଏନା । କୌଣସି ଅଭିଯୁକ୍ତ ଯଦି ନିଜ ସମଗୋଷ୍ଠୀ ବା ପ୍ରିୟ ଲୋକକୁ ଯଦି ନିଜ ସାକ୍ଷୀ ବୋଲି କହେ ତା'ହେଲ କୁହାଯାଏ ।

୪୦. 'ଧୁନ୍ ଟାନ୍ ଟାନ୍, ଗୁନ୍ ଟାନ୍ ।'

ଧୁନ୍ - ଧନୁ, ଟାନ୍ - କଠିଣ, ଟାଣ, ଗୁନ୍ - ଗୁଣ ।

ଧନୁ ଯଦି ଟାଣ ଥାଏ ତା'ହେଲେ, ଗୁଣ (ବାଉଁଶ ବା ଧନୁର ଦଣ୍ଡର ଦୁଇ ମୁଣ୍ଡକୁ ବାନ୍ଧି ରଖିଥିବା ଦଉଡି ) ଟାଣ ହୁଏ । କୌଣସି ଅନୁଦାନ ବା ପରିବାର କିମ୍ବା ଯେ କୌଣସି ସଂସ୍ଥା କିମ୍ବା ସଙ୍ଗଠନର ମୁଖ୍ୟ ଯଦି ଶକ୍ତ ହୁଅନ୍ତି ତା'ହେଲେ ସଂଗଠନର ଆନୁସଙ୍ଗିକ ବ୍ୟକ୍ତିମାନେ ମଧ ଆପେ ଆପେ ଶକ୍ତ ହୋଇ ଯାଆନ୍ତି ।

୪୧. 'ଧର୍ମର ଗାଡ଼ଇଁ ମେଖ, ବଏଠା ଜାଲି ଦେଖ ।

ଏହାର ଶୁଦ୍ଧ ଓଡ଼ିଆ ରୂପ ମଧ ଏକା ।

୪୨. 'ଧୁରିଆ ବନ୍ଧୁ ସୁନ୍ଦର, ପାଖର ବନ୍ଧୁ ବାନ୍ଦର୍ ।'

ଧୁରିଆ - ଦୂର, ଦୂର ବନ୍ଧୁ ସୁନ୍ଦର । ବାନ୍ଦର - ଅସୁନ୍ଦର, ପାଖ ବନ୍ଧୁ ଅସୁନ୍ଦର ।

ଦୂର ବନ୍ଧୁକୁ ସମସ୍ତେ ଆଦର କରନ୍ତି, ପାଖ ବନ୍ଧୁକୁ ଅତି ପରିଚୟ୍ ହେତୁ ଅନାଦର ନକଲେ ବି ଦୂରବନ୍ଧୁ ତୁଳନାରେ କମ୍ ଆଦର କରନ୍ତି ।

୪୩. 'ଧାଇଁ ଧୁପି ବାର, ବସିଥାଇ ତେର ।'

ଓଡ଼ିଆ ରୂପାନ୍ତରରେ ମଧ ଏହିପରି ।

୪୪. 'ଧାନର୍ ନାଁ ପେଟ ପୁରନ୍ ।'

ପେଟ୍ ପୁରନ୍ - ଉଦର ପୁରଣ । ଧାନର ଅନ୍ୟନାମ ପେଟ ପୂର୍ଣ୍ଣ କରିବା, ଧାନ ଅମଳ କରାହୁଏ ଖାଇବାକୁ ।

୪୫. 'ନାଇଁ ହେଲା ବେଲ୍‌କେ ନାତି ଘଏତା ।'

ଘଏତା - ସ୍ୱାମୀ, ବେଲ୍‌କେ - ବେଳେ ।

ନହେଲା ବେଳକୁ ନାତିକୁ ମଧ ସ୍ୱାମୀ କଲେ ଚଳିବ, 'ନାହିଁ ମାମୁଁଠାରୁ କଣାମାମୁଁ' ନ୍ୟାୟରେ କିମ୍ବା ଆତୁରେ ନିୟେମୋନାସ୍ତି' ନ୍ୟାୟରେ ।

୪୬. 'ନାଁ ଲଛମନ୍ ଗିଜ୍‌ଭର ଖସୁ ।'

ଗିଜ୍‌ଭର - ପଛ ପିଚା ପୂର୍ଣ୍ଣ ଭାବରେ, ଖସୁ - କାଛୁ, ଲଛ୍‌ମନ୍ - ଲକ୍ଷ୍ମଣର ଅପଭ୍ରଂଶ ।

ଲକ୍ଷ୍ମଣ ନାଁଟି ଉତ୍ତମ ସ୍ୱଭାବ ଯୁକ୍ତ ପୁରୁଷକୁ ବୁଝାଏ କିନ୍ତୁ ତା ପିଚା ଯାକ ଯେମିତି କାଛୁରେ ଭରି ଯାଇଥିଲେ ଅବସ୍ଥାଟା କେମିତି ଅସଙ୍ଗତ ମନେହୁଏ ସେହିପରି କଥା ଏବଂ କାର୍ଯ୍ୟର ବୈପରିତ୍ୟ ବା ପାର୍ଥକ୍ୟରେ ଏହା କୁହାଯାଏ ।

୪୭. 'ନାଗର ପୁଅ ଢ଼େଁଡୁ ।'

ନାଗ ପୁଅ ଧଣ୍ଡ । ଅତି ଶକ୍ତି ସମ୍ପନ୍ନ ବ୍ୟକ୍ତି ବା ବସ୍ତୁର ସୃଷ୍ଟି ଯଦି ନିକମା ହୁଏ ତା'ହେଲେ କହନ୍ତି ।

୪୮. 'ନିଜର୍ ଗାଲେଁ ନିଜର୍ ଚପଲ୍ ।'

ନିଜ ଗାଲରେ ନିଜେ ପାଣ୍ଡେଇ । ନିଜ କୃତ କର୍ମଫଳ ନିଜେ ଭୋଗିବା । ଅନ୍ୟକୁ ଅପମାନ ଦେବାକୁ ଚେଷ୍ଟା କରି ସେହି ଅପମାନରେ ନିଜେ ପଡ଼ିବା ।

୪୯. 'ନାଇଁନ ଭାବ, ମୁହୁଁ ଶୁଖିଗଲା ପନ୍‌ତ ଡ଼ାବ ।'

ନାଇଁନ - ନାହିଁ, ମୁହୁଁ - ମୁହଁ, ପନ୍ତ - ପଣତ (ଅଞ୍ଚଳ) ତାବ - ଘୋଡ଼ାଅ ।

ଯାହା ସହିତ ଭାବ କଟିଯାଏ । ସ୍ନେହ ଆଉ ରହେନା ତାକୁ ମୁହଁ ଦେଖାଇବାକୁ ବା ତା'ମୁହଁ ଦେଖିବାକୁ ଲଜ୍ଜାବୋଧ ହୁଏ । ତାକୁ ଲକ୍ଷ୍ୟକରି କୁହାଯାଇଛି ।

୫୦. 'ନିଜର୍ ବୁଦ୍ଧି ଠାକୁର୍, ପରର୍ ବୁଦ୍ଧି କୁକୁର୍ ।'

ନିଜ ବୁଦ୍ଧି ଠାକୁର, ପର ବୁଦ୍ଧି କୁକୁର । (ଶୁଦ୍ଧ ଓଡ଼ିଆ)

ଆପ୍ ବୁଦ୍ଧି ଠାକୁର୍, ପର୍ ବୁଦ୍ଧି କୁକୁର୍ । (ହିନ୍ଦୀ

୫୧. 'ନଲିଆର୍ ଧାର୍, ପାନିର୍ ଗାର୍ ।'

ନଲିଆର୍ - କ୍ଷୁଦ୍ର ନଦୀ, ଜୋଡ଼ର । ପାନିର - ପାଣିର ।

ଅତିକ୍ଷୁଦ୍ର ନଦୀର ପାଣିଧାର ବେଶୀଦିନ ରହେନାହିଁ । ଅତିକମ୍ ସମୟପାଇଁ ଏହି ନଦୀ ବା ଜୋଡ଼ର ପାଣିଆସେ ଏବଂ ଶୁଖିଯାଏ । ସେହିପରି ପାଣିରେ ଯଦି କେହି ଗାର ଟାଣିବାକୁ ଚେଷ୍ଟାକରେ ପାରିରେ ଗାର ଆଦୌ ରହିପାରେନା । କ୍ଷଣସ୍ଥାୟୀ ବସ୍ତୁକୁ ଲକ୍ଷ୍ୟକରି ଏହା କଥିତ ।

୫୨. 'ପରର୍ ଧନେଁ ବିକ୍ରମ ରଜା ।'

ପରର୍ ଧନେଁ - ପରଧନରେ ରାଜାମାନେ ସାଧାରଣତଃ ଶକ୍ତିଶାଳୀ ହେଉଥିଲେ ପରଧନ ସାହାଯ୍ୟରେ । କର ଇତ୍ୟାଦି ଆଦାୟ୍ କରି ନିଜସ୍ୱ ପରି ମନେ କରୁଥିଲେ । ଏବଂ ତଦ୍ଵାରା ନିଜଶକ୍ତି ବଢ଼ାଉଥିଲେ । ତେଣୁ ଅନ୍ୟ ସାହାଯ୍ୟରେ କେହି ଉନ୍ନତି କରି ଗର୍ବକଲେ କୁହାଯାଏ ।

୫୩. 'ପୁଡ଼ର୍ ରିଷ୍ ବେନା ବୁଟାଥିଁ ।'

ପୁଡର - ପଣ୍ଡା (ଅଣ୍ଡିରା ମହିଷ), ବୁଟାଥିଁ - ବୁଦାରେ ।

ମହିଷ ଜାତିର ଗୋଟିଏ ଲକ୍ଷଣ, ଯଦି କୌଣସି ପ୍ରତିଦ୍ୱନ୍ଦୀ ସହିତ ଯୁଦ୍ଧରେ ହାରିଯାଆନତି ତା'ହେଲେ ପାଖରେ ଥିବା ବେଣାବୁଦାକୁ ମୁଣ୍ଡିଆମାରି ସିଙ୍ଗଦ୍ଵାରା ତାକୁ ଉପାଡ଼ିବାକୁ ଚେଷ୍ଟା କରନ୍ତି । ଯେତେବେଳେ କେହି ସେହିପରି ଆଚରଣ କରେ ତା'ହେଲେ କୁହାଯାଏ ।

୫୪. 'ପରହର ଭାତେଁ କୁକୁର୍ ମାଡ଼୍ ।'

ପର୍‌ହର୍ - ପରର, ଭାତେଁ - ଭାତରେ, ମାଡ଼୍ - ମାଡ଼, ଲଢ଼େଇ ।

କୁକୁରମାନଙ୍କ ସ୍ୱଭାବ ଅନ୍ୟଦ୍ୱାରା ଫୋଫଡ଼ା ଯାଇଥିବା ଭାତ ପାଇଁ ତାଙ୍କ ନିଜ ନିଜ ଭିତରେ ଲଢ଼େଇ କରିବେ ।

୫୫. 'ପେଡ୍, ବାହ୍ମନ, ବର୍ହା, ନାଇଁ ସହି ପାରନ୍ ଖରା ।'

ମହିଷ, ବାହ୍ମଣ, ବାର୍ହା ଏମାନେ ଖରାସହି ପାରନ୍ତିନି ।

୫୬. 'ପଲାଲା ମାଛ୍ ବଢ଼େଟେ ।'

ପଲାଲା - ଚାଲିଯାଇଥିବା, ବଢ଼େଟେ - ବଡ଼ଟିଏ । ଗଲା କଥାକୁ ଅତିରଞ୍ଜିତ କରି କହିବା ।

୫୭. 'ପତଲା ଦେଖି ଲଡ୍‌ବ ନାଇଁ, ମୁଟା ଦେଖି ଡ଼ର୍‌ବ ନାଇଁ ।'

ଲଡ୍‌ବ - ଲଢିବ, ମୁଟା - ମୋଟା, ଡର୍‌ବ - ଡରିବ ।

ପତଲା ଦେଖି ହେୟଜ୍ଞାନ କରି ଲଢିବା ଉଚିତ ନୁହେଁ କିମ୍ବା ମୋଟା ବୋଲି ବଳୁଆ ହୋଇଥିବ ଭାବି ଡରିବା ଉଚିତ ନୁହେଁ ।

ହସ୍ତିସ୍ଥୁଳ ତନୁଃ ସଚାଙ୍କୁଶଃ ବଶଃ କ୍ୱହସ୍ତିକ୍ୱ ଚାଙ୍କୁଶାଃ ସ୍ଥୁଳେଷୁ କ୍ୱପତ୍ୟୟାଃ ।

୫୮. 'ପାଁଡବର୍ କାଏଁ ହଲ୍ ଧାନ୍, ପାଣ୍ଡବ ବୁଲେ ଗାଁ ଗାଁ ।'

ପାଁଡ଼ବ - ପାଣ୍ଡବ (ନାମ ବିଶେଷ), କାଏଁ - କ'ଣ, ହଲ୍ - ହଳବଳଦ ।

ଯାହାର ଗାଈ ଗୋରୁ ହଳ, ବଳଦ, ଧାନ କିଛି ନାହିଁ ତାର ଆଉ ଅନ୍ନ ସଂସ୍ଥାନ ପାଇଁ ଅନାବଶ୍ୟକ ଚିନ୍ତା କରିବାକୁ ପଡ଼େନା । ମୋଟାମୋଟି ଯାହାର କିଛି ନାହିଁ ତାର କୌଣସି ଥିରେ ଚିନ୍ତା ନଥାଏ ।

୫୯. 'ଫୁଲ୍ ଫୁଟ୍‌ଲେଁ ବାସ୍‌ସି, ଗୁହୁ ଘାଁଟଲେ ଗନ୍ଧ୍‌ସି ।'

ଫୁଲ୍ ଫୁଟିଲେ ବାସେ, ଗୁହ ଘାଣ୍ଟିଲେ ଗନ୍ଧେ ।

ଫୁଲ ଯାହା ମନମୁଗ୍ଧକର ଯଦି ଫୁଟେ ତା'ହେଲେ ସୁବାସିତ ଫୁଲ ହୁଏ ତା'ହେଲେ ନିଶ୍ଚୟ ବାସେ କିନ୍ତୁ ବିଷ୍ଠାକୁ କେହି ନିର୍ବିକାର ବ୍ୟକ୍ତି ଯଦି ହୋଇଥିବେ ଘାଣ୍ଟିବାକୁ ସାହାସ କରିବେ ତାହେଲେ ଗନ୍ଧେ । ଭଲ କାମ ଫୁଲ ସହିତ ଏବଂ ଖରାପକାମ ବିଷ୍ଠା ସହିତ ତୁଳନା କରାହୋଇଛି । ଭଲକାମ କଲେ ସମସ୍ତେ ଆନନ୍ଦିତ ହୁଅନ୍ତି ଏବଂ ଖରାପ କାର୍ଯ୍ୟ କଲେ ସମସ୍ତେ ନାକ ଟେକନ୍ତି ।

୬୦. 'ବାହ୍ମନ ଘି ପାଏଲେଁ ରୁଙ୍ଗ୍‌ସି ।'

ବାହ୍ମନ - ବ୍ରାହ୍ମଣ, ରୁଙ୍ଗ୍‌ସି - ଆଉ ପାଇବାକୁ ଜିଦ୍ କରେ । ପୌରହିତ କରୁଥିବା ବ୍ରାହ୍ମଣକୁ ଯଦି ଘିଅ ଟିକିଏ ଦିଆଯାଏ ତେବେ ସେ ସେଥିରେ ସନ୍ତୁଷ୍ଟ ନହୋଇ ଆଉ ଅଧିକ ପାଇଁ ଜିଦ୍ କରେ । ବିନାମୂଲ୍ୟରେ ମିଳିଥିବା ଜିନିଷ, ଅଧିକପାଇଁ କେହି କହିଲେ କୁହାଯାଏ ।

୬୧. 'ବାହ୍ମନର୍ ପଏତା, ମାଏଝିର୍ ଘଏତା ।'

ବ୍ରାହ୍ମଣର ପଇତା ହିଁ ତାକୁ ବ୍ରାହ୍ମଣ ବୋଲି ପରିଚିତ କରାଏ । କିମ୍ବା ବ୍ରାହ୍ମଣର ଭୂଷଣ ଯଦି ପଇତା ହୁଏ ତା ହେଲେ ସ୍ତ୍ରୀର ଭୂଷଣ ସ୍ୱାମୀ ।

'ନରୀଣାଂ ଭୂଷଣଂ ପତିଃ ।

୬୨. 'ବୁଦ୍ଧିର ଗୁନୁଁ ଗିଜ୍ କାବରୀ ।'

ଗୁନୁଁ - ଯୋଗୁଁ, କାବ୍‌ରୀ - ପୋଡ଼ିଯାଇ ଧଳା ହୋଇଯିବା ।

ନିଜ ମନ୍ଦବୁଦ୍ଧି ଯୋଗୁଁ ନିଜ ପିଚା ପୋଡ଼ିଯାଇ ଧଳା ହୋଇଥାଏ । ଯଦି କେହି ନିଆଁ ଉପରେ ବସିପଡ଼େ ତାହେଲେ ପିଚା ପୋଡ଼ିବ ହିଁ ପୋଡ଼ିବ ।

'ଆପଣା ହସ୍ତେ ଜିହ୍ୱାଛେଦି । କେ ତା'ର ଅଛି ପ୍ରତିବାଦି ।'

୬୩. 'ବାବାଜି ମଠ୍‌କେ ଗଲେ  ଟାଙ୍କର୍ ଛୁଆପୁତା କାନ୍ଦୁଥିଲେ ।' (ଛଟ୍‌କୁଥିଲେ)

ପ୍ରତିଶବ୍ଦ ଅର୍ଥବୋଧ । ।

ସଂସାରୀ ହୋଇ ରାଗରେ କିମ୍ବା ପିଲାଛୁଆ କୁଟୁମ୍ବଙ୍କ ଭରଣପୋଷଣ ସମ୍ଭାଳି ନପାରି ଯଦି ବାବାଜୀ ହୋଇଯିବାର ଚେଷ୍ଟା କେହି କେହି କରନ୍ତି ତା'ହେଲେ ଛୁଆପିଲାମାନେ ଭୋକ ଉପାସରେ ନିଶ୍ଚୟ ବିକଳ ହୋଇ ମରିବେ । ଘର ସୁବିଧା ଅସୁବିଧା ନବୁଝି ଯଦି ନିଶ୍ଚିନ୍ତ ମନରେ ବୁଲୁଥାଏ ତା'ହେଲେ କହନ୍ତି ।

୬୪. 'ବିହାହାରୀର୍ ଯେତ୍‌କି ମଲ୍ ମଲ୍ ନାଇଁ, ଚଙ୍ଗରା ବୁହିର ସେତ୍‌କି ।'

ବିହାହାରୀର୍ - ବାହାହେଉଥିବା ଝିଅର, ଯେତ୍‌କି ମଲ୍ ମଲ୍ - ଯେତେ ପର୍ବ, ଚଙ୍ଗ୍‌ରା ବୁହି - ଝିଅ ସାଙ୍ଗରେ ଯାଇଥିବା ସ୍ତ୍ରୀ (ବାହାଘର ପରେ ଝିଅ ଶ୍ୱଶୁର ଘର ଗଲାବେଳେ ତା ସହିତ ଅପେକ୍ଷାକୃତ ଟିକଏ ବୟସ୍କା ସ୍ତ୍ରୀ ମଧ ଯାଏ । ତାକୁ ଚଙ୍ଗରାବୁହି ବା ଘୋଡ଼ାଖାଇ କହନ୍ତି । ସେତ୍‌କି - ସେତେ ।

ପ୍ରକୃତରେ ଯେ ଗର୍ବ କରବାର ଉଚିତ୍ କିମ୍ବା ଗର୍ବ କଲେ ବି ଶୋଭା ପାଆନ୍ତା । ସେ ଶାନ୍ତଥିବ ଅଥଚ ଯେ କଡ଼ାକର ମଧ ନୁହେଁ ସେ ଯଦି ଦେଖେଇ ହେଉଥାଏ ତା'ହେଲେ ପ୍ରକୃତରେ ହସମାଡ଼େ ।

୬୫. 'ବାପ ଜାନିଁ ପୋ ମା ଜାନିଁ ଝି ।'

ଜାନିଁ - ଜାଣି, ପୁଓ - ପୁଅ, ଝି - ଝିଅ ।

ବାପ ଜାଣି ପୁଅ, ମାଁ ଜାଣି ଝିଅ ।

୬୬. 'ବିନ୍ ପଏସେଁ ସମାର୍ ହାଟ୍ ।'

ବିନ୍ ପଏସେ - ବିନା ପଇସାରେ, ସମାର୍ ହାଟ୍ - ସୋମବାର ହାଟ ।

ରିକ୍ତହସ୍ତ ହୋଇ ବଜାର ଯିବାଟା ଯେମିତି ଅତୁଆ କିଛି ନଥାଇ ବଡ଼କଥା କହିବାଟା ସେମିତି ହାସ୍ୟାସ୍ପଦ ।

୬୭. 'ବିହାବେଲ୍‌କେ ବାଏଗନ୍ ରୁଆ ।' ବା 'ଘର୍‌ପୋଡ଼ିବେଳେଁ କୁଆଁ ଖୁଦା'

ବାହାବେଳେ ବାଇଗଣ ରୁଆ ।

୬୮. 'ବଡ଼ ମାଛର କଁଟେ ସୁଆଦ୍ ।'

କଁଟେ - ଅନୁରୂପରେ, ସୁଆଦ - ସ୍ୱାଦ, ମିଠା । ମାଛ ଯେତେବଡ଼ ହେବ ମିଠା ସେତିକି ବେଶି ହେବ । ଭଲମନ୍ଦ ପରିମାଣ ଅନୁରୂପରେ ଭଲମନ୍ଦ କମ୍‌ବେଶୀ ହୁଏ ।

୬୯. 'ବାପ୍ ଦେହେରୀ ପୁଓ ପୁଝାରୀ, ଅଲ୍ତାପତ୍ରି ସବୁ ଆମ୍‌ରି ।'

ଦେହେରୀ - ଦେହୁରୀ (ଦେବୀ ମନ୍ଦିର ପୂଜକ) ପୂଝାରୀ ଭଗବାନ୍ ପୁଜକ । ଅଲ୍ତାପତ୍ରି - ଭୋଗଥାଳି ।

ବାପ ଦେବୀ ମନ୍ଦିରରେ ପୁଅ ଭଗବାନ ମନ୍ଦିରରେ ଯଦି ପୂଜକ କାର୍ଯ୍ୟ କରୁଥାନ୍ତି । ମନ୍ଦିର ମାନଙ୍କରେ ଯାଇଥିବା ଭୋଗ ସାମଗ୍ରୀ ଅନ୍ୟକେହି ନେଇ ପାରିବେ ନାହିଁ । ଏମାନେ ହିଁ ସର୍ବେସର୍ବା ସବୁ ଦାୟିତ୍ୱ ଅତି ଜଣାଶୁଣା ବା ଗୋଟିଏ ପରିବାର ଗୋଟିଏ ଦୁଇଟି ଲୋକଙ୍କ ଉପରେ ଥିଲେ ଏବଂ ତଦ୍ୱାରା ସେମାନେ ସବୁ ସୁବିଧା ପାଉଥିଲେ କୁହାଯାଏ ।

୭୦. 'ବଡ୍ ଗଲେନ ଫସରଫାଟି ସାନ୍ ଯାଉଛେ ବେସାର ବାଟି ।'

ଗଲେନ-ଗଲେଥି, ବେସାର୍‌ବାଟି-ବେସରବାଟି ·ଏ ସ୍ଥାନରେ ଏକ କଠିଣ କାର୍ଯ୍ୟ ସହିତ ତୁଳନା କରାହୋଇଛି ।

୭୧. "ବିରିହର ମାଡେଁ କୁଲୁଥ ଚେପ୍‌ଟା ।"

ମାଡେଁ-ମାଡରେ, କୁଲୁଥ୍-କୋଳଥ ।

ବିରିମାଡ ଦେଖି କୋଳଥ ଚେପ୍‌ଟା । ଜଣକୁ କିଛି ଶାସନ କରିବା ଦେଖି ଆଉଜଣକର ଭୟରେ କପଡା ଖରାପ୍ ହେବା ।

୭୨. "ବାପେଁ ପୁଏଁ ସାରା ରାଏତ୍ ଉସିନ୍ଦ୍ରା, କୁମୁନାର୍ ଗିଲ୍‌ମେଲା ।"

ବାପ ପୁଅ ସାରା ରାତି ଅନିଦ୍ରା ମୁଗୁରା ରାଣ୍ଡିଟା ମେଲା ।"

ଅନେକ ପରିଶ୍ରମ ସତ୍ତ୍ୱେ ନିଜ ଟିକିଏ ଭୁଲ୍ ଯୋଗୁଁ ସବୁନଷ୍ଟ ହେବା ।

୭୩. "ବାପର୍ ପୁଓ ଦଶ୍ ମସିଆ ।"

ବାପ ପୁଅ ଦଶ ମସିଆ ।

ସବଳ ପଣରେ କୁହାଯାଏ ।

୭୪. "ବୁଡି ବୁଡି ଗଲା ପାଏନ୍ କୁଆଲି, ଚୁକେଇ ଖାଏଲା ବଁକ ।"

ପାଏନ୍ କୁଆଲି-ପାଣିକୁଆଲି,

କଳାରଙ୍ଗର ଚଢେଇ ପାଣିରେ ବୁଡି ମାଛ ଧରେ 'ପାଣି ବୁଡି' ମଧ କହନ୍ତି ।

ଚୁକେଇ-ଭୁଲେଇ, ଠକି ।

ପାଣି କୋଇଲି ବୁଡି ବୁଡି ମାଛଟିଏ ପାଇବା ପାଇଁ ଅଧିକ ପରିଶ୍ରମ କରେ କିନ୍ତୁ ବକ ଚୁପ ହୋଇ ବସିଥାଏ ଏବଂ ସେ ମାଛ ଧରିପାରେ ।

(ସଂ ୮୩ ସହିତ ସମାନ)

୭୫. "ଭାଟରୁ ବକ୍ ବକ୍ କି ବୟସର ବକ୍ ବକ୍ ।"

ବକ୍ ବକ୍ ହେବା-ଗର୍ବ କରିବା ।

"ଯୌବନ ଧନ ସମ୍ପତ୍ତି ପ୍ରଭୁତ୍ୱମଃବିବେକତା ।"

ଖାଇବା ପିଇବା ପାଇଁ ଢେର୍ ମହଜୁଦ୍ ଥିବା ସାଙ୍ଗକୁ ଯୌବନ ମଧ ଯଦି ଥାଏ ଏବଂ କୌଣସି ଅଶୋଭନୀୟ କାର୍ଯ୍ୟ କରେ ତା ହେଲେ କୁହାଯାଏ ।

୭୬. "ଭିଣ୍ଡି ଭୁଣ୍ଡା କରି କାଏଁ ଥୁରେ ଥାରି ।"

ଭଣ୍ଡିଭୁଣ୍ଡା କରି ମିଛ କହି, କାଏଁ-କ'ଣ ଥୁରେ ଥାରି-କମ୍

ମିଛ ଯଦି କୁହାଯାଏ, ଟିକିଏ ହେଲେ ବି ମିଛ ବେଶୀ ହେଲେ ବି ମିଛ ଏଣୁ ଭଲ ଭାବରେ ଯେଉଁମାନେ ମିଛ କହି ବସନ୍ତି ତାଙ୍କୁ ଲକ୍ଷ କରି କୁହାଯାଏ ।

୭୭. "ଭୁଦୋମାସେଁ କୁଦୋଲିଆ, ଫଟାଘରେଁ ତାଲା ଦିଆଁ ।"

ଭୁଦୋମାସେ କୁଦେଲିଆଁ ପଦପଡିବା ପାଇଁ । କିନ୍ତୁ ଫଟାଘରେ ତାଲାଦିଆ ଏଥବରେ ପ୍ରଧାନ । ଫାଟି ଯାଇଥିବା ଗୋଟିଏ ଘରକୁ ଯଦି ଚାବିପକାଇ ବନ୍ଦ କରାହୁଏ ତାହେଲେ ଘଟଣାଟି

କିପରି ହାସ୍ୟାସ୍ପଦ ମନେହୁଏ । ପ୍ରଚ୍ଛନ୍ନବ୍ୟଙ୍ଗ ପ୍ରସ୍ଫୁଟିତ ।

୭୮ . ଭାଙ୍ଗ୍ ଫସ୍‌କା ହେଲେଁଗଲା

ମୁନୁଷ୍ ଭୁଷ୍କା ହେଲେଁଗଲା ।

ଭାଙ୍ଗ-ଦୋଲ୍ଡା, ଫସ୍‌କା-ସାଦା, ମୁନୁଷ୍-ମନୁଷ୍ୟ, ଭୁଷ୍କା-ମୋଟା ଦୋଲ୍ଡାର ଧର୍ମ ସାଧାରଣ ପତା ହେବା ଉଚିତ, ଯଦି ତାର ସେହି ସାଧାରଣ ଧର୍ମକୁ ପରିତ୍ୟାଗ କରେ ତାହେଲେ ଟା' ମୂଲ୍ୟ କିଛି ରହେନା; ଠିକ୍ ସେହିପରି ମଣିଷ ସାଧାରଣ ସ୍ୱାସ୍ଥ୍ୟବାନ୍ ହେବା ପରିବର୍ତ୍ତେ ଯଦି ଅତି ମୋଟା ହୁଏ ତାହେଲେ ଏପରି କେତେକ ଅତି ଆବଶ୍ୟୟକୀୟ କାର୍ଯ୍ୟ ଅଛି ଯାହା ତା ଦ୍ୱାରା ହୋଇପାରେନା । ତତ୍‌ସଙ୍ଗେ ସଙ୍ଗେ ସୁନ୍ଦର ଗଠନଟା ମଧ୍ଧ ବିକୃତ ହୋଇଯାଏ ।

୭୯. "ମଲାବେଲ୍‌କେ କୁର୍‌ରାଭକ୍ଷୀ ।"

ମଲାବେଲ୍‌କେ-ମଲାବେଳେ, କୁର୍‌ରା-ବିକୃତ

ବିକୃତସ୍ୱର ସୃଷ୍ଟି ହୋଇଥାଏ । କାରଣ ସେତେବେଳେ ସେ ସମସ୍ତ ପ୍ରକାର ଚେତନା ହରାଇ ସାରିଥାଏ । ଠିକ୍ ସେହିପରି କୌଣସି ଲୋକକୁ ବିପଦ ପଡେ ସେ ସେଥିରେ ବିଚଳିତ ହୋଇ ହିତାହିତଜ୍ଞାନ ହରାଇ ଅନେକ ଅବାଞ୍ଛିତ କାର୍ଯ୍ୟ କରିପକାଏ ।



# ସମ୍ବଲପୁରୀ ଭାଷାରେ ନାମ ତଥା ଉପନାମ ରହସ୍ୟ

ଡୋଲାମଣି ପ୍ରଧାନ

ମନୁଷ୍ୟ ଶିଶୁ ଜନ୍ମ ହେଲା ମାତ୍ରେ ତାର କୌଣସି ନାମ କରଣ କରିବାକୁ ପଡିଥାଏ । ଶିଶୁର ନାମ କରଣ ପିତାମାତା, ବନ୍ଧୁବାନ୍ଧବ ତଥା ବ୍ରାହ୍ମଣ କରିଥାନ୍ତି । ବ୍ରାହ୍ମଣ ବା କୁଳ ପୁରୋହିତ ଯେଉଁନାମ ଦିଅନ୍ତି ତାହା ଶିଶୁର କୋଷ୍ଠୀ ଆଦି ଉପରେହିଁ ଆଧାରିତ ହୋଇଥାଏ । ପିତାମାତା ତଥା ବନ୍ଧୁବାନ୍ଧବ ଆଦରରେ ଶିଶୁର ଗୋଟିଏ ଦୁଇଟି ନାମ ଦିଅନ୍ତି । ନାମରେ ସୁନ୍ଦର ଅର୍ଥ ଥାଇପାରେ ନ ପାରେ । ସ୍ଥଳ ବିଶେଷରେ ଲଳିତ ଶବ୍ଦ ଚୟନ କରି ନାମ ଦିଆଯାଏ । ଶିକ୍ଷିତ ସମାଜରେ ସୁନ୍ଦର ଅର୍ଥଭୁକ୍ତ ନାମହିଁ ଦିଆଯାଏ । କୌଣସି ବିଶେଷ ଘଟଣା ବା ଶିଶୁର କୌଣସି ଗୁଣ ଅବିଗୁଣକୁ ନେଇ ନାମ ଦିଆଯାଇଥାଏ ଓ ଶିଶୁମାନେ ସେହି ନାମରେହିଁ ପରିଚିତ ହୋଇଥାନ୍ତି ।

ପୁରାଣ ଉପରେ ଦୃଷ୍ଟିପାତ କଲେ ଜଣାପଡେ ଯେ ଶିଶୁର ବିଭିନ୍ନ ଗୁଣ ତଥା ସ୍ଥାନର ମହତ୍ତ୍ୱକୁ ନେଇ ନାମ କରଣ କରାଯାଇଛି । ଯେପରି ରାମଙ୍କର ଅତି ସୁନ୍ଦର ରୂପ ଥିଲାବୋଲି ରାମଚନ୍ଦ୍ର, ସୁ-ଲକ୍ଷଣରୁ ଲକ୍ଷ୍ମଣ, କୃଷ୍ଣବର୍ଣ୍ଣରୁ କୃଷ୍ଣ ବା ଶ୍ୟାମ, ବି-ଭୀଷଣ ଅର୍ଥାତ୍ ଯେ ଭୀଷଣ ନୁହେଁ ରୁ ବିଭୀଷଣ ନାମ ଦିଆଯାଇଛି । ପୁଣି ରାବଣ, କୁମ୍ଭକର୍ଣ୍ଣ, ଯୁଧିଷ୍ଠିର; ଭୀଷ୍ମ, ଭୀମ, କର୍ଣ୍ଣ, ସୁଗ୍ରୀବ, ବାଳୀ, ସୀତା, ଲବ କୁଶ ଦୁର୍ଗା ଆଦିଙ୍କ ନାମ ଉଲ୍ଲେଖ କରାଯାଇ ପାରେ । ସୁନ୍ଦର ତଥା ପ୍ରଭାବ ପୂର୍ଣ୍ଣ ନାମର ବିଶେଷ ମହତ୍ତ୍ୱ ରହିଛି । ଅଜାମିଳ ପୁତ୍ରର ନାମ ନରାୟଣ ଡାକି ମୁକ୍ତି ପାଇଲା । ରତ୍ନାକର 'ମରା' ଜକି ବାଲ୍ମିକୀ ହେଲା । ପ୍ରହ୍ଲାଦ ହରିନାମ ଡାକି ଅମର ହେଲା । ଭକ୍ତ ତଥା ମୁନିଋଷିମାନେ ଭଗବାନଙ୍କ ନାମକୁ ହିଁ ଉଚ୍ଚାରଣ କରିଥାନ୍ତି । ବିଷ୍ଣୁଙ୍କ ସହସ୍ର ନାମ ଓ ଶତଅଷ୍ଟୋତ୍ତର ନାମ, ନୃସିଂହ କବଚ ଦୁର୍ଗା କବଚ ତଥା ହନୁମାନ କବଚ ଆଦିରେ ବିଶେଷତଃ ନାମକୁହିଁ ଉଚ୍ଚାରଣ କରାଯାଏ । ଏହିପରି ନାମର ମହିମା ଶାସ୍ତ୍ରରେ ବହୁଭାବରେ ପ୍ରତିପାଦିତ ହୋଇଛି ।

ପୁରାଣ ଯୁଗରେ ମଧ୍ୟ ସୁନ୍ଦର ନାମଗୁଡିକ ରହିଛି । ଅନେକ ସ୍ଥଳରେ ପୁରାଣ ଯୁଗର ନାମକୁ ଚୟନ କରି ଦିଆଯାଇଛି । ପୁଣି ଆଜିକାଲି ସୁନ୍ଦର ଅର୍ଥଯୁକ୍ତ ଲଳିତ୍ ଶବ୍ଦ ଉପରେ ଲୋକଙ୍କର

ବିଶେଷ ଆଗ୍ରହ ରହିଥାଏ । ଉକ୍ତ ନାମ ଗୁଡିକ ପ୍ରାୟ ଏହିପରି ।

ଯଥା- ଅବିନାଶ, ବିକାଶ, ରାଜେଶ, ଅମରେଶ, ଅଭିନ୍ନ, ଅନୁକୂଳ, ସୁଧାଂଶୁ, ହିମାଂଶୁ, ହେମନ୍ତ, ଶିଶିର, ତୁଷାର, ବସନ୍ତ, ଶରତ, ବିଜୟ, ସଂଜୟ, ସୁଜୟ ରାଜୀବ, ରାଜେନ୍ଦ୍ର, ମହେନ୍ଦ୍ର, ଅବନୀ, ଆଶୁତୋଷ ଆଦି ସ୍ୱାମୀମାନଙ୍କର ନାମ ମଧ୍ୟ ଲଳିତ, କୋମଳ ଓ ସୁନ୍ଦର ଅର୍ଥଯୁକ୍ତ ନିଶ୍ଚିତରେ ହୋଇଥାଏ ।

ଆଜିକାଲି ସଭ୍ୟ ସମାଜରେ ଶିଶୁମାନଙ୍କର ଏକ ଭିନ୍ନ ନାମ ବା ଡାକନାମ ପ୍ରଚଳିତ ହୋଇଥାଏ । ଏହାର ଅର୍ଥ ଥାଉ ବା ନଥାଉ କିଛି ଯାଏଆସେ ନାହିଁ । ଏହି ନାମ ଗୁଡିକ ଅତି ସ୍ନେହ ବା ସଉକରେ ଦିଆଯାଏ । ଶିଶୁର କଅଁଳ ଛନ ଛନ ରୂପ ଥିବା ପର୍ଯ୍ୟନ୍ତ ଏଇ ନାମ ଗୁଡିକ ଭାରି ଭଲ ଲାଗେ । ମାତ୍ର ଶିଶୁ ପ୍ରାପ୍ତବୟସ୍କ ହେଲା ମାତ୍ରେ ଆଉ ସେ ନାମ ଭଲ ଲାଗେ ନାହିଁ । ଏହିପରି ନା ଗୁଡିକ ହେଲା-କୁନା, କୁନ, କୁନି, ବୁଲା, ବୁଲୁ, ବୁଲୀ, ବବୁଲା, ମବୁଲୀ, ରୁନା, ରୀନା, ଭିଲ୍, ଝୁନୁ, ବୁନୁ, ଟିଟୁ, ଟୁଟୁ, ରୀତା, ମୀତା, ଛୁନୁ, ମୁନା, ମୁନୁ, ଲୁଲୁ ଇତ୍ୟାଦି ।

ନାମ ଗୁଡିକ ଭାଷା ଉପରେ ମଧ୍ୟ ଆଧାରିତ ହୋଇଥାଏ । ତାହା ଅନ୍ୟ ଭାଷାଭାଷୀ ଲୋକଙ୍କୁ ଶୁଣିବାକୁ ଭଲ ଲାଗେ ନାହିଁ । ଉକ୍ତ ରଚନାରେ ଯେଉଁ ନାମ ଗୁଡିକ ବିଷୟରେ କୁହାଯାଇଛି ତାହା ସମ୍ବଲପୁରୀ ଭାଷା ଉପରେହିଁ ଆଧାରିତ । ଅଶିକ୍ଷିତ ସମାଜରେହିଁ ଉକ୍ତ ନାମ ଗୁଡିକର ପ୍ରଚଳନ ବେଶୀ ।

(କ) ଆମ ଅଞ୍ଚଳରେ ବିଭିନ୍ନ ପ୍ରକାରର ନାମ ଦିଆଯାଇଥାଏ । ଦେବାଦେବୀଙ୍କ ନାମ ପ୍ରତ୍ୟେକ ଧର୍ମାବଲମ୍ବୀ ମାନଙ୍କ ମଧ୍ୟରେ ପ୍ରଚଳିତ । ଦେବାଦେବୀଙ୍କ ଅନୁଗ୍ରହ ଲାଭ ଆଶାରେ ବା ମୁକ୍ତି ଆଶାରେ ଉକ୍ତ ନାମ ଗୁଡିକ ଦିଆଯାଏ । ଅନେକ ପିତାମାତା ସନ୍ତାନ ପ୍ରାପ୍ତି ଆଶାରେ କୌଣସି ଦେବାଦେବୀଙ୍କ ପୂଜା କରି ସନ୍ତାନ ଲାଭ କଲେ ତାହା ଦେବତାଙ୍କ ଆଶୀର୍ବାଦ ଭାବି ସେହି ଦେବତାଙ୍କ ନାମ ଦେଇଥାନ୍ତି । ଯଥା ପାର୍ବତୀ, ଉମା, ଶିବ, ଶଙ୍କର, ମହାଦେବ, ନାରାୟଣ, ରୁଦ୍ର, କର୍ମ ବା କର୍ମା (କର୍ମ ସ୍ୱାମୀ ପୂଜା) ଆଦି ନାମ ଦିଆଯାଏ ।

(ଖ) ବିଖ୍ୟାତ ମହାପୁରୁଷ ମାନଙ୍କ ନାମ କିମ୍ବା ବର୍ଗ ଅନୁସାରେ ମଧ୍ୟ ନାମ ଦିଆଯାଏ । ଯଥା-ଗାନ୍ଧୀ, ନେହେରୁ । ଏ ଅଞ୍ଚଳରେ ମହାତ୍ମାଗାନ୍ଧୀ ତଥା ଜବାହରଲାଲ ନେହେରୁଙ୍କ ବର୍ଗ ବିଶେଷ ଭାବରେ ପ୍ରଚଳିତ ହୋଇଥାଏ ।

ଅନେକ ପିତାମାତା ବହୁକଷ୍ଟରେ ସନ୍ତାନାଦି ଲାଭ କଲେ ସେମାନେ ଯେଉଁ ନାମ ରଖନ୍ତି ସେଥିରେ କ୍ଷୁଦ୍ରତା ଅଧମତା ବା ମୂଲ୍ୟହୀନତା ଅର୍ଥ ରହିଥାଏ, ଯଥା- ବେଟିଖାଇ (ଅର୍ଥାତ୍

ଅନ୍ୟର ଅଇଣ୍ଠା ଗୋଟାଇ ଖାଇବା) ସାଉଁଟି ଖାଇ, ମାଗିଖିଆ, ମାଗିରାମ, ବେଟାଖିଆ, ମହରଗ, ମହରଗୁ, ମହର୍‌ଗୀ, ଜପ, ଜପୀ, ତପ, ତପୀ ଦୁକାଲୁ ପୁଆଲୁ ଆଦି ।

(ଗ) ଅନେକ ଭାବନ୍ତି ଖରାପ ନାମ ଦେଲେ ଯମ ନେବାକୁ ଘୃଣା କରେ, ତେଣୁ ସେମାନେ ଅର୍ଥହୀନ । ଖରାପଅର୍ଥ ଯୁକ୍ତ ନାମ ଦେଇଥାନ୍ତି ଯଥା- ହାତୁ, ଖାଡି, ବୁଡ, ଟିକନୁ, ମାଖନୁ, ଅଏଁଠୁ, ମାଠୁ, ଅସକଟ, କେଚକେଚା, (କଦର୍ଯ୍ୟ) ମଏନୁ, ମାନୁ, ସପରୁ, ହଗରୁ, ହଗରା, ହଗରୀ, ଚିଡି, ଚିଡୋ, ଠେଁକଡି, ଠେଁକ, ଭୁସୁ, ମୁଚୁ, ପୁଚୁ, ଲୁରୁ, ବୁଚା, ଗେଁଚା, ଗେଁଚୀ, ଖେତୁ, ବେଙ୍ଗ, ଚଡ୍‌ଚଡି, ରେଙ୍ଗି, ପରକେ, ଝାରୁ, ଘଗୋ, ବାଁକୋ, ଛେଳିଆ, ଛାଲୁ, ଧଧୋ, ମୁଟଲ, ଖୁଟଲୁ, ଗୁଲ୍‌ଠୁ, ଖରଲୁ ଆଦି ।

(ଘ) କୌଣସି ପିତାମାତାଙ୍କ ସନ୍ତାନାଦି ମରି ଯାଉଥିଲେ ଓ ଭଗବାନଙ୍କ କୃପାରେ ଗୋଟିଏ ଦୁଇଟି ବଞ୍ଚିଲେ ସେମାନଙ୍କୁ ଅନ୍ୟଜାତିର ଲୋକଙ୍କ ପାଖରେ ବିକ୍ରୀ କରାଯାଏ । ଯେ କିଣେ ସେ ସାତୋଟି ଟଙ୍କା ପଇସା ସନ୍ତାନର ପିତାମାତାଙ୍କୁ ଦିଏ । ସେ ଶିଶୁକୁ ନିଜ ଘରକୁ ନିଏ ନାହିଁ କିନ୍ତୁ ନିଜ ପୁଅଭଳି ସ୍ନେହଭାବ ସଦା ରଖିଥାଏ ଶିଶୁ ମଧ୍ୟ କ୍ରେତାଙ୍କୁ ପିତାମାତାର ସମ୍ମାନ ନିଏ । ପୂଜା ପର୍ବ ବେଳେ କ୍ରେତା ଉପଯୁକ୍ତ ସମ୍ମାନ ସହିତ ନିମନ୍ତ୍ରିତ ହୁଅନ୍ତି ଓ ଶିଶୁର ମଙ୍ଗଳ ନିମନ୍ତେ ସ୍ୱୟଂ ବ୍ୟୟସାଧ୍ୟ ଉଦ୍ୟମ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଦେଖାଯାଏ ଏହି ପ୍ରଥା ଦ୍ୱାରା ସ୍ଥଳ ବିଶେଷରେ ଜାତିର ସଂକୀର୍ଣ୍ଣତା ଭୁଲି ଉଚ୍ଚ ତଥା ଅନୁନ୍ନତ ଜାତିର ଲୋକେ ପରସ୍ପର ସହ ବନ୍ଧୁତା କରି ବସନ୍ତି । ବର୍ତ୍ତମାନ ମଧ୍ୟ ଏହି ପ୍ରଥା ପ୍ରଚଳିତ । ଏହିପରି ଶିଶୁମାନଙ୍କ ନା ନିମ୍ନୋକ୍ତି ।

ଯଥା- ଗଣ୍ଡା (ହରିଜନ) ଘରେ ବିକ୍ରୀ କରିଥିଲେ ଶିଶୁର ନାମ ଗଣ୍ଡା ବା ଗଁଡା ଦିଆଯାଏ । ସେହିପରି ଘଁସିଆ, ଘାଁସି, ଘାସି ରାମ (ଚଣ୍ଡାଳ) ଚମରା, ଚମେରେନ୍ ଚମରୁ, ଲୁହୁରା (କମାର) ଲୁହୁରେନ୍, କୁମ୍ଭାର, କୁମ୍ଭାରୁ, କୁମ୍ଭାରେନ୍, ଗଉର, ଗଉରେନ୍, ମାହାର, ମାହାରେନ୍ ଆଦି ।

(ଙ) ଶିଶୁର ଜନ୍ମଦିନ ବା ମାସ ବା ଋତୁ ଅନୁସାରେ ନାମ ଦିଆଯାଏ ଯଥା- ଦିନ ଅନୁସାରେ ସୋମବାର-ସମାରୀ, ମଙ୍ଗଲୁ, ମଙ୍ଗୁଳି, ବୁଧ, ବୁଧିଆରୀ, ବୁଧୁବାରୀ, ଗୁରୁ, ଗୁରୁବାରୀ, ଶୁକ୍ରୁ, ଶୁକ୍ରୀ, ରଏବାରୁ, ରଏବାରୀ ଆଦି । ମାସ ଅନୁସାରେ- ଜେଠୁ, ଅସାଡୁ, ଅଶୀନ୍, କାର୍ତ୍ତିକ, ମଗଶୀର, ମାଘ, ମାଘୁ, ଫଗନୁ, ଚଏତୁ, ବୈଶାଖୁ ଆଦି । ତିଥି ଅନୁସାରେ- ଦ୍ୱିତୀୟ, ଦ୍ୱିତୀୟା, (ଦୁରତୀଆ, ଦୁରତୀୟା, ଦୁତିଆ, ଦୁତୀ) ତୃତୀୟା (ତୁରତୀଆ) ପଞ୍ଚମ, ପଞ୍ଚମୀ, ଷଷ୍ଠୀ, ସପ୍ତମୀ, ଅଷ୍ଟମୀ, ପୂର୍ଣ୍ଣିମା, ପୁନେଇ, ପୁନି, ପୁନିତ୍ ଆଦି । ଋତୁ ଅନୁସାରେ-ବସନ୍ତ, ବାସନ୍ତୀ, ଶରତ, ଶରଦ, ଶିଶିର, ହେମ, ହେମନ୍ତ ହେମନ୍ତିନୀ, ହେମନ୍ତି ଆଦି ।

(ଚ) କୌଣସି ପ୍ରକାର ଶାରୀରିକ ଅସାମଞ୍ଜସ୍ୟ ଥିଲେ କିମ୍ବା ପିଲାବେଳେ କୌଣସି ବିଶେଷ ଘଟଣା ଘଟିଥିଲେ ନିମ୍ନ ପ୍ରକାରର ନାମ ଦିଆଯାଏ । ଯଥା:-

ବେଶୀ ଲାଳ (ନାଳ) ବହୁଥିଲେ-ଲୁଲୁହା, ଲାଲୁ, ଲାଲ ପେଟ ବଡିଲେ-ପେଟୁ ।
ଅନ୍ଧାରକଣା ହେଲେ-ରାଏତ୍‌କା, ରାଏତ୍‌କାଣୀ, ରାଏତ୍‌କଣା,
ଝାଡାରୋଗ ହୋଇଥିଲେ-ହଗରା, ହଗରୁ, ହଗରୀ,
କାନ ନ ଶୁଭିଲେ-ଭଏଁରା, ଭଏଁରୀ, ଭଏଁରୁ, ଭଏଁରବ
କାହାର ଅଇଁଠା ଖାଇଲେ-ଅଏଁଠୁ, ଅଏଁଠା
ମାଟି ଖାଉଥିଲେ-ମାଏଟଖାଇ, ମାଏଟ୍‌ଖାଉ,
ମୁଣ୍ଡର ବାଳ କସରାଥିଲେ- କଏଁରା, କଏଁରୁ, କଏଁରୀ
ଦେହ ଜୀର୍ଣ୍ଣଶୀର୍ଣ୍ଣ ଥିଲେ- ହାଡୁ, ଖେଡୁ, ଖେଡୀ, ହାଡି
ମୁଣ୍ଡ ମୁଣ୍ଡ ନକରା ହୋଇଥିଲେ- ଠଠୁ, ଠାଠି, ଠେଁକି, ଠେଁକ
ବାଙ୍ଗରା ଥିଲେ- ବାଙ୍ଗରୁ, ବାଙ୍ଗରୀ, ହାଥେ, ବିଟେ
ଛୋଟା ଥିଲେ- ଛୁଟା, ଛୁଟୀ, କେମ୍ପା, କେମ୍ପୀ ଆଦି
ପାଣିରେ ବୁଡିଥିଲେ- ପାନୁ, ପାନି, ପାଏନବୁଡୁ, ପାଏନବୁଡି
ନିଆଁରେ ପୋଡିଥିଲେ- ପୁଡୁ
ଦିନ ତଥା ରାତିର ବିଭିନ୍ନ ସମୟରେ ଜନ୍ମ ଅନୁସାରେ ଝୁଲ୍, ଝୁଲୁ (ପ୍ରଭାତ) ରାଏତ କା, ବେଳବୁଡୁ, ମଏଧାନୁ, ପହଟିଆ (ପ୍ରଭାତୀ ତରାର ଉଦୟ ସମୟରେ)

(ଛ) ପଶୁପକ୍ଷୀ ନାମ ଅନୁସାରେ- ବାଘ, ସାପ, ରୂପ (ଶୁଆ) ଶାରା, ବିଲେ, ଚିତା, ମୂଷା, ମାଛି, ଚାଟିଁ, (ପିମ୍ପୁଡି) ଗୁନଚା (ଗୁଣ୍ଡୁଚି) ଖରା (ଠେକୁଆ) ହନୁମାନ, କୁଲିହା (ଶୃଗାଳ) ପଣକା (କପୋତ) ଲିଟି, ଟିହା ଆଦି ।

(ଜ) ଫଳ ତଥା ଫୁଲର ନାମ ଅନୁସାରେ- ମହୁଲ, ଅଏଁଲା, ବେଲ୍, ମୁଗ, ଡାଲିମ (ଡାଲିମ୍ବ) କଇଁ, ମିର୍ଚ୍ଚା ଟେଭା ବୁରୋ (ବରକୋଳି) ଆଁଠି (ମଞ୍ଜି) ଆଦି ।

(ଝ) ବିଭିନ୍ନ କାମ ଅନୁସାରେ- ଭାତକାଉ, ମୁରିଖାଇ, ମାଏଟକୁଡୁ, ଜାମଝୁନୁ, କାଏନ୍‌ଟେଡୁ, ପାଏନ୍‌ବୁଡୁ ଇତ୍ୟାଦି ।

(ଞ) ଘରେ କୌଣସି ଶିଶୁ ଜନ୍ମ ହେଲେ, ଘରର ପୂର୍ବପୁରୁଷ ମାନଙ୍କର କାହାର ଚରିତ୍ର ପ୍ରଭାବ ଶିଶୁ ଉପରେ ପଡିଛି ତାହା କୌଣସି 'ଗୁଣିଆଁ' କୁ ଦେଖାଇ ଜାଣିଥାନ୍ତି । ଶିଶୁର ନାମ ବା

ଉପନାମ ସେହି ପୂର୍ବପୁରୁଷ ନାମ ବା ଉପନାମ ଅନୁସାରେ ହୋଇଥାଏ ।

ଯଥା- କୌଣସି ପୁଅର ଟାର ବୁଢୀ ଆଈର ଚେହେରା ସହିତ ସାମଞ୍ଜସ୍ୟ ଅଛି । ଧରନ୍ତୁ, ସେହି ବୁଢୀର ଉପନାମ 'ଭଏଁରୀ' ଥିଲା । ତେବେ ଏହି ପୁଅର ନାମ 'ଭଏଁରୀ' ହେବ ।

ଏହି ପଲ୍ଲୀ ଅଞ୍ଚଳର ସାଧାରଣ ଅର୍ଥହୀନ ବା ଅସୁନ୍ଦର ନାମ ଗୁଡିକ ବିଷୟରେ ଚିନ୍ତାକଲେ ଅନେକ ତଥ୍ୟ ଜଣାପଡିଥାଏ । ଏହା ପଲ୍ଲୀ ଜନଜୀବନ ତଥା ସଂସ୍କୃତି ସହିତ ଜଡିତ ହୋଇଥାଏ । ଏହି ତଥ୍ୟ ଗୁଡିକ ହାସ୍ୟ ରସାତ୍ମକ ତଥା ଆନନ୍ଦଦାୟକ ହୋଇଥାଏ ।

ପରିବାରରେ ବିଶେଷତଃ ସ୍ତ୍ରୀମାନେ ନିଜଠାରୁ ମାନ୍ୟ ବ୍ୟକ୍ତିମାନଙ୍କର ନାମ ବା ନାମର ଆରମ୍ଭ ବା ଶେଷର ଗୋଟିଏ ବା ଦୁଇଟି ଅକ୍ଷର ଉଚ୍ଚାରଣ କରନ୍ତି ନାହିଁ । ଏହା ଉଚ୍ଚାରଣ କରିବା ଦୋଷାବହ ମନେକରନ୍ତି । ଅନେକ କ୍ଷେତ୍ରରେ ଦେଖାଯାଏ ଯେ, ସ୍ତ୍ରୀ ଓ ପୁରୁଷ ଭିତରେ ଭଲ ପଟୁ ନଥିଲେ ଓ ସ୍ତ୍ରୀ ଛାଡପତ୍ର ପାଇବାକୁ ଚାହୁଁଥିଲେ ପୁରୁଷର ନାମ ଧରିପକାଏ । ଏହିପରି ଅନେକ ଘଟଣା ଶୁଣିବାକୁ ମିଳେ । ଉଦାହରଣ ସ୍ୱରୂପ ଜଣକର ନାମ 'ବୁଧୁ' ତେବେ ବୁଧୁର ସ୍ତ୍ରୀ ବୁଦବାର କହିବା ନାହିଁ । ବୁଧବାରକୁ 'ମଙ୍ଗଳବାରର୍ ଆର ଦିନ' ବୋଲି କହିବ । ବୁଧବାର ଦିନ କୌଣସି ଗ୍ରାମରେ ହାଟ ବସୁଥିଲେ "ଅମୁକ ହାଟର ଦିନ୍" ବୋଲି କହିବ । ଏ ଅଞ୍ଚଳରେ ଧରନ୍ତୁ 'ବଟି' ନାମକ ଗ୍ରାମରେ ହାଟ ବସେ । ତେବେ ବୁଧବାର ଦିନକୁ 'ଚଟି ହାଟର ଦିନ୍' ବୋଲି କହିବ । ସେହିପରି ଶୁକ୍ରବାର (ଶୁକ୍ରବାର)- ବରଗଡ ହାଟର ଦିନ, ଗୁରୁବାରର୍ ବାସି ଦିନ; ସୋମବାର (ସମାର) ପାଏନ ଡଲା ଦିନ । ସୋମବାର ଦିନ ଶିବ ମନ୍ଦିରରେ ଶିବଙ୍କ ଶିରରେ ଲୋକେ ଜଳ ଢାଳନ୍ତି ।

ପୁନଶ୍ଚ, କୌଣସି ପୁରୁଷର ନାମ 'କାଲିଆ' ଥିଲେ ସ୍ତ୍ରୀ କାଏଲ୍ (କାଲି) କାଲ୍‌ହିର୍ (କାଲି) କଲା ବା କଳା କହିବେ ନାହିଁ ସେହିପରି ଅବସ୍ଥାରେ-ଗତକାଲି ଗଲାଦିନ୍, ଆସନ୍ତାକାଲି ଆଏବାର ଦିନ କାଏଲ୍‌କେ-ଆଏବାର୍ ଦିନକେ ବା ଇ ରାଏତ୍‌ଗଲେ ବା ଆରେ ବେଳେଁ ବୋଲି କହିବେ । କଳାକୁ ଲାଗିଗଲା (ମୋର୍ ହାତେଁ କଲା ଲାଗିଗଲା) ମୋର ହାତେଁ ହାଁଡିର୍ ରଙ୍ଗ ଲାଗିଗଲା ।

ଧରନ୍ତୁ ସ୍ୱାମୀଙ୍କ ନାମ ଲାଲ, ତେବେ ସ୍ତ୍ରୀ 'ଲୋ' ବା 'ଲାଲ୍' ରେ ଆରମ୍ଭ କୌଣସି ଶବ୍ଦ କହିବେ ନାହିଁ । ଟା ବଦଳରେ ନିମ୍ନପ୍ରକାର ଶବ୍ଦ ବା ନାମ କହିବେ । ଯଥା- ଲାଲ୍‌ରଙ୍ଗ ରକତ୍ ରଙ୍ଗ ବା ସିନ୍ଦୁର ରଙ୍ଗ୍ ଲାଲ୍‌ଟିନ୍ (ଲଣ୍ଠନ)- କାଚର ବଏଠା (କାଚଲଗା ଦୀପ)' ଲାଲିଆଟା- ରକତ୍ ରଙ୍ଗ୍ ବାଗିରଟା, ଲାଲ୍ (ନାଲ)- ଥୁକ୍ । ସେହିପରି 'ଗୁଣ' ନାମଥିଲେ- ଗୁଣ୍ ବା ଗୁନ୍

କୁ-ଚଲନ, ଗୁଡ, ବା ଗୁର୍‌କୁ-ଜମେନ୍ (ଜମେନ୍‌ର ଅର୍ଥ ପାଣିଆ ଗୁଡ) ଶୁଖା ଗୁଡ଼କୁ ଶୁଖା ଜମେନ୍, ଗୁରସ୍ (ଗୋରସ)- ଗାଏର୍‌ଟା, (ଗାଈର ଜିନିଷ) ରୁକୁବାର୍‌ଟା (ପୂଜା ଆଦିରେ ଗୋରସ ରୁକା (ଢଳା) ଯାଏ।

'ତ୍ରିପୁରାରି' ନାମଥିଲେ- ତ୍ରି-ତିନି-ଦୁଇଟା ଗୁଟେ( ୨+୧=୩) ଦିଅତ। (ମୋତେ ତିନୋଟି ଟଙ୍କା ଦିଅ), ପୁରା (ପୁଡା) ଧାନ ଉଲିଆ, ଭରତେଲ୍ (ପୂର୍ଣ୍ଣ) ପୁରୀ- ଛାନ୍‌ଲା ଗୁଟି ଟା ତେଲ୍‌ଁ ପକାଲା ଗୁଟି। 'ବନମାଳୀ' ନାମଥିଲେ- ବନ (ବନ୍ଧ) କଟା, ଚନ୍ ବା-ହେବା, ମାଲ୍ଲ୍ ଜମି-ଡିପ୍‌ଖେତ୍, ମାଲୀ (ମାଳା)-ହାର୍ ବା ଚେଙ୍ଗ (ଚେନ୍) ମାଲୀ-ଶାଗ୍ ବିକାଲୋକ, ମାଲୀ ଘରେଁ-ଶାଗ୍ ବିକା ଘରେଁ।

ଏହିପରି ପଲ୍ଲୀବାସୀଙ୍କ ଦୈନନ୍ଦିନ ଜୀବନକୁ ବିଶ୍ଳେଷଣ କଲେ ଅନେକ ତଥ୍ୟ ଜଣାପଡେ। ନାମର ବ୍ୟବହାରରୁ ବାକ୍‌ଚାତୁରୀ ମଧ୍ୟ ଜଣା ପଡିଥାଏ। ଏହିପରି ଅନେକ ଉଦାହରଣ ହଜାର ହଜାର ସଂଖ୍ୟାରେ ମିଳିପାରିବ। ନାମ ଧରିବାରେ ଥରେ ଥରେ କିପରି ଅବସ୍ଥାରେ ପଡି ଲୋକେ ନାମ ଧରିପକାନ୍ତି ତାହା ତଳ ଲିଖିତ ଘଟଣାରୁ ଜଣାପଡେ।

ଥରେ ଜଣେ ସ୍ତ୍ରୀ ଲୋକ ତାଙ୍କ ସାତ/ଆଠ ବର୍ଷର ପୁତୁରାକୁ ସାଙ୍ଗରେ ନେଇ ଶିବ ମନ୍ଦିରକୁ ଯାଇଥିଲେ। ସେଠାରେ ଶିବଙ୍କ ପୂଜା ଆଦି ସରିଲା। ଶିବଙ୍କ ଶିରରେ ଜଳ ଢାଳିବା ସମୟରେ ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ନାମ ଧରିବାକୁ କହିଲେ। କେତୋଟି ନାମ ସ୍ତ୍ରୀ ଲୋକ ଜଣକ ଓ କେତୋଟି ସେହି ପିଲା ଧରିଲା। ପୂଜାରୀ ପ୍ରତ୍ୟେକଙ୍କ ନାମରେ ଜଳ ଢାଳୁଥାନ୍ତି। କେବଳ ସ୍ୱାମୀଙ୍କ ନାମ ସ୍ତ୍ରୀଲୋକଟି ଧରିଲେ ନାହିଁ। ପିଲାଟି ମଧ୍ୟ କହି ପାରିଲା ନାହିଁ। ସେ ମନେପକାଇ ନପାରି ମଉନ ହୋଇ ରହିଲା। ସ୍ତ୍ରୀଲୋକ ଜଣକ ବିରକ୍ତ ହୋଇ କହିଲେ, "ହଇଗୋ ବାବୁ ତମର୍ କକାର୍ ନାଁ ଧର"। ପୁଣି କହିଲେ, ହଏଗୋ ସେ ପାଏନ୍ ପଡ୍‌ସି ଯେ, ହେଟା ନିଜାନ" ? ପିଲାଟି କିଛି କହି ନପାରି ମୁହଁ ଚାହିଁ ରହିଲା। ସେ ପୁଣି କହିଲେ 'ହଏଗୋ, ସେ ଗଦ୍ ଗଦ୍ ପାଏନ୍ ପଡସିଟା' ? ପିଲାଟି କହିଲା 'ଗଦ୍‌ଗଦୋ'। ପୂଜାରୀ ଜଳ କଣ ଢାଳିବେ ହସି ହସି ବେଦମ। ସ୍ତ୍ରୀ ଲୋକଟି ସ୍ୱାମୀଙ୍କ ନାମ ଧରିଦେଲେ ବୋଲି ମୁଣ୍ଡିଆ ନମାରି ମନ୍ଦିରରୁ ଫେରାର୍। ଏଠାରେ ପୁରୁଷର ନାମ ଗଦ୍‌ଗଦୋ ଥିଲା। ପାଣି ପଡିବା ଶବ୍ଦକୁ 'ଗଦ୍‌ଗଦ୍' କହନ୍ତି। ପିଲାଟି ଏହି ଶବ୍ଦକୁ ଜାଣିପାରୁ ନଥିଲା।

ଆଉ ଗୋଟିଏ ଘଟଣାରୁ ନାମ ଧରିବାରେ ସ୍ତ୍ରୀମାନଙ୍କ ସତର୍କତା ତଥା ଚାତୁରୀ ଜଣାପଡେ।

ଜଣେ ଏହିପରି ଥାଏ- "ଗାତଶୁଆ" (ଗାତପଶା) "ଅଁଟକୁରା" (ଆଣ୍ଠୁକୁଡା) "ବାଗ୍‌ଧରା"

(ବାଘ ଖାଇବ) "ତୋର ବାଉି ବୁଡବା ଯେ" (ଅର୍ଥାତ୍ ତୋର ବଂଶ ବୁଡିବା) ଏଠାରେ ବାଉି ଶବ୍ଦର ଅର୍ଥ ଜଣାପଡିଲା ନାହିଁ। ପରେ ଜଣାପଡଲା ଯେ, ସ୍ତ୍ରୀଲୋକର ପୁରୁଷ ମିତର ନାମ ବଂଶୀ। ଏଣୁ ସେ ବଂଶ ବଦଳରେ ବାଉି କହୁଛନ୍ତି। ସମ୍ବଲପୁରୀ ଭାଷାରେ 'ବାଉଁଶ' ଓ 'ବଂଶ' କୁ 'ବଉଁଶ୍' ବୋଲି କହନ୍ତି। ବାଉି ହେଉଛି ଏକ ପ୍ରକାରର ବାଉଁଶ। ଏଣୁ ସେ ବଉଁଶ୍ (ବଂଶ) ସ୍ଥାନରେ ବାଉିର ପ୍ରୟୋଗ କରିଛନ୍ତି।

ଏହିପରି ନାମ ତଥା ଉପନାମ ଓ ସେଗୁଡିକର ପ୍ରୟୋଗ ଉପରେ ଦୃଷ୍ଟି ନିକ୍ଷେପ କଲେ ଅନେକ ସୁନ୍ଦର ତଥ୍ୟ ଜଣା ପଡିବ। ଏହା ନିତ୍ୟ ଜୀବନର ଏକ ଘନିଷ୍ଠ ଅଙ୍ଗ। କେତେକ ସ୍ଥଳରେ ଏହା କୁସଂସ୍କାର ହୋଇଥିଲେ ମଧ୍ୟ ଏଥିରେ ପଶ୍ଚିମାଞ୍ଚଳର ସଂସ୍କୃତିର ପ୍ରତିଫଳନ ଅସ୍ୱୀକାର କରିହେବ ନାହିଁ।



# ଲୋକଗୀତ ଓ ନୂଆଖାଇ

ନାରାୟଣ ପୃଷ୍ଟେଠ

ପଶ୍ଚିମ ଓଡିଶାର ଜୀବନ ଓ ସଂସ୍କୃତିର ଜାହ୍ନବୀର ଧାରାକୁ ଚିରପ୍ରବାହିତ କରି ରଖିଥିବା ଅନେକ ପର୍ବ ମଧ୍ୟରେ 'ନୂଆଖାଇ' (ନବାନ୍ନ) ଅନ୍ୟତମ । କୃଷକ ମାନବର ସଚେତନ ମନରେ ଅନ୍ନହିଁ ବ୍ରହ୍ମବୋଲି ଚେତନା ଜାଣିବା ପରେ ନିଜ ଦ୍ୱାରା ଉତ୍ପାଦିତ ଅନ୍ନକୁ ଭଗବାନଙ୍କ ଚରଣ ତଳେ ନୈବେଦ୍ୟ ରୂପରେ ଅର୍ପଣ କରି ଶସ୍ୟପୂଜା କରିବାର ଆରମ୍ଭରୁ 'ନୂଆଖାଇ' ର ସୃଷ୍ଟି । ନୂତନ ଭାବେ ଉତ୍ପାଦିତ ଅନ୍ନକୁ ଭଗବାନଙ୍କୁ ଅର୍ପଣ କରି ସେଇ ପ୍ରସାଦ ନିଜେ ସେବନ କରିବା ଏହି ପର୍ବର ପୀଠ ପତ୍ତନ । ଏଥିରେ ଯେ କେବଳ ଅଚ୍ୟୁତ ଦର୍ଶନର ସ୍ରୋତସ୍ୱିନୀ ପ୍ରବାହିତ ହୁଏ, ତା ନୁହେଁ, ଏହି ଧାରା ପ୍ରବାହିତ ହୁଏ ଏଠାର ପ୍ରାଚୀନ ଜୀବନର ଉତ୍ତରଳ ଇତିହାସ । ଏହି ପର୍ବରେ ମୁଖ୍ୟତଃ କୃଷି ଅଭିମୁଖୀ ମଣିଷର ଦୁଇଟି ଦିଗକର୍ମ ଓ ବିରାମ ଅତି ନିଖୁଣ ଭାବେ ପରିପ୍ରକାଶ କରିଥାଏ । ନବାନ୍ନ ସମୟରେ ବ୍ୟକ୍ତି ଓ ସମାଜକୁ ଏହି ପର୍ବ ନୀତିଶିକ୍ଷା ଦେବା ସଙ୍ଗେ ସଙ୍ଗେ ନବାନ୍ନ ଭକ୍ଷଣ ପରେ ଆନନ୍ଦ ମଧ୍ୟ ଦାନ କରେ । ତେଣୁ କବିଙ୍କ ଭାଷାରେ-

'ଆମର, ତୁମର, ତାଙ୍କର ନୂଆଖାଇ
ଆସିଛେ ଆଜି ଭାଇ
ନୂଆ ଧାନର ନୂଆ ଖିରି
ନୂଆ ଗେଙ୍ଟି ଖୋଲା
ପହ ପହନ୍‌ର ସିନ୍ଦୁର ଝିଟା
ସୁରୁଜ୍ ଉଦେ ବେଲା X X X
ହୁର୍ ହୁରିଆ ଧୂକା
କୁସୁମ ଝୁଁକା ଝୁଁକା
ଖାଇବୁ କେତେ, ନେବୁ କେତେ
ଦେବୁ କେତେ ପିଲା ।

ଆନନ୍ଦର ସେଇ ଉଚ୍ଛଳ ମୁହୂର୍ତ୍ତରେ ଯେତେ ଖୁସି ହେଲେ ବି ଏସବୁ ମିଥ୍ୟା । ରୋଗ, ଅଭିମାନ, ଈର୍ଷା ଏସବୁ ନିଜ ସାଥୀରେ ଯିବ ନାହିଁ । ଏକାନ୍ତ, ନିଃସଙ୍ଗୀ ଭାବେ ନିଜକୁ ମହାଯାତ୍ରା କରିବାକୁ ପଡିବ । ତେଣୁ ଏ ପର୍ବର ଏଇ ପବିତ୍ର ଅବସରରେ ତାହାକୁ ଚେତେଇବାକୁ ଯାଇ କବି ପୁଣି କହନ୍ତି-

‘ଟିକ୍ ଦାହାଁକାଁ ମାଦଲ୍ ବଜା
ଚୁଛେଇଟାକେ ମାର୍‌ନ ମଜା
ଖିଖେଇ ହେବାର, ଦେଖେଇ ହେବାର
ଯାଇଛେ ସବୁ ହୋ-
ଗଲାବେଲେ କାଏଁଟା ନେବୁ ବୋ’

ନବାନ୍ନ କେବଳ ବ୍ୟକ୍ତିର ଶୁଭକାମନା ପାଇଁ ଉଦ୍ଦିଷ୍ଟ ନୁହେଁ । ତେଣୁ ଏ ପ୍ରସାଦ ସେବନ କଲାବେଳେ ଘରର ସଭିଏଁ ଏକାଠି ବସି ଖାଆନ୍ତି, ତାପରେ କନିଷ୍ଠମାନେ ବୟୋଜ୍ୟେଷ୍ଠମାନଙ୍କୁ ତଥା ବନ୍ଧୁଗଣ ପରସ୍ପରକୁ ‘ନୂଆଖାଇ ଜୁହାର’ ରେ ସମ୍ମାନ ଦେଖାଇଥାନ୍ତି । ଏଥିରେ ସାମାଜିକ ସୌହାର୍ଦ୍ଦ୍ୟ ତଥା ‘ଚିରନ୍ତନ ଭ୍ରାତୃଭାବ୍’ ର ଆଲେଖ୍ୟ ରହିଥାଏ । କେବଳ ଏ ଦର୍ଶନ ନୁହେଁ, ଏ ପର୍ବ ଆସେ ଅନ୍ୟପାଇଁ ‘ଶୁଭଚିନ୍ତନର ସ୍ୱର’ । ତେଣୁ କବି ଗାଏ-

‘ଅଝର ନୂଆ ଖାଇ
ତୁମ୍ହର ତାଙ୍କର୍ ଆମର୍ ଆଏ
ହାଟ ଫିର୍‌ତା ଝାଏଁ...ରେ...ଝାଏଁ
ଶୁଭେ ସାଏତେ ଥାଉନ୍ତୁ ତେଭେଁ
ଶତ୍ରୁର ମିତ ସବ୍‌କେ ସଭେଁ
ରସର୍ କେଲିର୍ ବରଜବାଟିର ଭାଇ
ଆଜିର ନୂଆଖାଇ’

(ସତ୍ୟନାରାୟଣ ବହିଦାର)

ଅନ୍ୟଠି ସର୍ବତ୍ର ପ୍ରଚଳିତ ଥିବା ଲୋକ ସାହିତ୍ୟ ଭଳି ପଶ୍ଚିମ ଓଡିଶାର ଲୋକ ସାହିତ୍ୟରେ ମଧ ବ୍ୟକ୍ତିତ୍ୱ ବିକାଶର ଅମର ତଥା ଆଦିମ ସାଧନାର ସ୍ୱର ଚିର ଅପ୍ରତିହିତ । ତେଣୁ ବୋଧହୁଏ ଲୋକ ଗୀତକୁ ‘ପ୍ରଚଳିତ ବେଦ’ କୁହାଯାଇଥାଏ । କାରଣ ଏହାର ମାଧମରେ ହିଁ ଜୀବନର ଦର୍ଶନ ମିଳିଥାଏ ମଣିଷର ନିଜ କଥିତ ଭାଷାରେ । ସଂସାର ଯେ ଏକ ମାୟାଜାଲ ଏବଂ ଏଥିରୁ

ମୁକ୍ତି ପାଇଁ ଭଗବତ ଚିନ୍ତନ ହିଁ ଏକମାତ୍ର ପନ୍ଥା- ଏହି ଚିରନ୍ତନ ଚେତାବନୀ ସହଜ ହୋଇ ଉଠେ ପର୍ବର ମଧ୍ୟରେ । ଏଇଠି କବିଙ୍କର କଠୋର ଚେତାବନୀ ହେଉଛି-

ଏକ୍‌କେ ତୁ କର୍ ଫନ୍ଦା
ଯିବା ତୋର୍ ଦୁଇର୍ ଧନ୍ଦା
ତିନ୍‌କେ ଯଦି କାଟବୁ ବଏଲେ
ଚାର୍‌କେ ଧର ଯାଇ ଝଟ୍‌ରେ
ପାଞ୍ଚକେ ହାତେ ଘିର୍
ଛଅକେ ନାଇଥିବା ଡର୍
ସାତେଁ ସତର ଥିଁ ଗୁଟେଁ
କୁଟେ ନାଟଁ ଚିଟ୍‌ରେ
ଆଉ ନାଇଁ କର୍ ଆଠ୍‌ର୍ ଆଶା
କଲିଯୁଗେ ନଅ ଭର୍‌ସା
ଦଶର୍ ସାର୍ ସୁନାର୍ ବାଗିର୍
ଡାର୍ ପାଦେଁ ଖଟରେ
ଏଗାର୍ କେ ପକା କାଟି
ଗୀତେ କହେ ଗୁବିନ୍ଦ୍ ବୁଠୀ'*

(ଗୋବିନ୍ଦ ପାଣିଗ୍ରାହୀ)

ଲୋକଗୀତ 'ପ୍ରଚଳିତ ବେଦ' ଭାବରେ, ଗାଉଁଲି ଭାଷାରେ ଉଚ୍ଚାଙ୍ଗ ଦର୍ଶନର ଗୀତ ଗାଇ ଯାଇ ଜୀବନରେ ଉର୍ଦ୍ଧ୍ୱତମ ମାର୍ଗ ଦର୍ଶାଇଥିଲେ ମଧ୍ୟ ଏଥିରେ ଜୀବନର ଅପର ଶୀଥିଳ ପାର୍ଶ୍ୱଟି ଅବହେଳିତ ନୁହେଁ । ଜୀବନର ଦୁଃଖ, ଶୋକ, ପ୍ରଣୟ, ସ୍ନେହ ମମତା ଓ ଆବେଗ ପ୍ରଭୃତି ସକଳ ଅନୁଭୂତି ସ୍ୱତଃସ୍ଫୁର୍ତ୍ତ ଭାବରେ ଏଥିରେ ପ୍ରକାଶ ପାଇଥାଏ । ତେଣୁ ଏହା ଜୀବନ୍ତ ଓ ମୂର୍ତ୍ତିମାନ । ବହୁ ସମୟରେ ଏହା ଗ୍ରାମୀଣ ପରିବେଶରେ ଧୈର୍ଯ୍ୟର ପ୍ରତୀକ ଭାବେ ନାରୀର

*. ଏକ୍ = ଅକବ୍ରହ୍ମ । ଦୁଇ = ଜନ୍ମ, ମୃତ୍ୟୁ । ତିନ୍ = ତ୍ରିତାପ - ଆଧାତ୍ମିକ, ଅଧିଭୌତିକ ଓ ଅଧିଦୈବୀକ । ଚାର୍= ଚାରିଧର୍ମ = ସତ୍ୟ, ଶକ୍ତି, ଦୟା ଓ କ୍ଷମା । ପାଞ୍ଚ = ପଞ୍ଚମନ, ଛଅ = ଷଡ଼ରପୁ - କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ । ସାତ୍ = ୨ +୧୨+୧ = ୨୫ - ପଚିଶ ପ୍ରକୃତି । ଆଠ୍ = ଅଷ୍ଟାଙ୍ଗ ଯୋଗସିଦ୍ଧି । ନଅ = ନବଧା ଭକ୍ତି । ଦଶ୍ = ଦଶଅବତାର । ଏଗାର = ଏକାଦଶ ଇନ୍ଦ୍ରିୟ ।

ମର୍ମବାଣୀକୁ ଆବେଗଭରା ଗୀତ ଉଚ୍ଛ୍ୱାସରେ ପ୍ରକାଶ କରେ । ଏଥିରେ ଦର୍ଶନ ଆଶା କରିବା ବୃଥା ବା ଭୁଲ ଅଭୁଲ୍‌ର ବାଛବିଚାରର ପ୍ରଶ୍ନ ନାହିଁ । ସେଇ ଗ୍ରାମୀଣ ପରିସର ଓ ସେ ଭିତରେ ଏକ ପୀବର, ସରହଦ୍ ହିଁ ନାରୀର ଦୁନିଆ । ଉଚ୍ଚ ଦର୍ଶନ ତାଠାରେ ମୂଲ୍ୟହୀନ । ଜୀବନ ହିଁ ସକଳ ବାସ୍ତବତାର ବେଦୀ, ସକଳ ଆଶା ଓ କାମନାର କୁଞ୍ଜବନ । ସ୍ୱାମୀ ଶ୍ରମିକ ଭାବରେ ଅନ୍ୟତ୍ର ଯାଇଛି କାମ ଆଶାରେ । ପର୍ବପର୍ବାଣୀରେ ଘରକୁ ଆସିବାର, ଏବଂ ବିଶେଷ କରି ନୂଆଖାଇ ବେଳକୁ ନିଶ୍ଚିତ ଭାବେ ଆସିବାର ଏକ ପରମ୍ପରା ପ୍ରାୟ ସବୁ ଗାଁରେ ବିଦ୍ୟମାନ ଏବଂ ଆମର ପାରିବାରିକ ସଂହତି ରକ୍ଷାଦିଗରେ ଏହା ନିଶ୍ଚିତ ଭାବେ ଏକ ମୁଖ୍ୟକାରଣ ବୋଲି କୁହାଯାଇପାରେ । 'ରଥ ଦୁତିଆ' (ରଥଯାତ୍ରା) କୁ ସ୍ୱାମୀ ଘରକୁ ଆସିଥିଲା । ରାଣ ପକେଇ ଯାଇଥିଲା ପୁଣିଥରେ 'ନୂଆଖାଇ' କୁ ଘରକୁ ଆସିବ ବୋଲି ନୂଆଖାଇ ଚାଲିଗଲା । ଧୀରେ ଧୀରେ 'ଦଶରା' ଆସିଗଲା । ଅଥଚ ତାହାର ଦେଖାନାଇଁ । ଆଶାର ଏ ବିଦୀର୍ଣ୍ଣ ମୁହୂର୍ତ୍ତ ପୂରବୀର ସ୍ୱର ତୋଳେ ସ୍ତ୍ରୀର ବିରହ ଜର୍ଜରିତ, ବେଦନା ବିଧୁରିତ ହୃଦୟରେ -

'ଦଶରା ଆସିଲା ଧୀରେ ଧୀରେ
ସେ କେଭେଁ କେନ୍ତା ନାଇଁ ଫିରେ
ବଗ୍‌ବଗାନୁ ଫୁଲ୍ ଫୁଟ୍‌ଲାନ କଇଁଫୁଲ
ପାଏନ୍ କେ ଫେର୍ ଲେନ ପାଏନ୍ ଚରେ ରେ
ଦେଖି ଆସିଥିଲା ସେ ଦୁତିଆ
କହେଲା ଆଏମି ଆଏଲେ ନୂଆଖିଆ
ସେ ଆଶା ଦିନ୍ କେ ରାଏତ୍ ଘାରେ
ଖୁଜାନୁରା ଲାଗ୍‌ଲାନ ତାହାକେ
ମନର ଆଶ କହେମି ମୋର କାହାକେ
ସେ ଆସ୍‌ଲେ ମୋର୍ ମନର୍
ଗାଁଖୁଲି ଖିଲ୍ ଖିଲାନୁ ହସେ ରେ ।"

ଜୀବନର ଏ ସ୍ୱାଭାବିକ ବେଦନା କେବଳ ଅନୁଭୂତି ସିଦ୍ଧ । ଏଗୀତ ତେଣୁ ନାରୀର ଲଘୁଚିନ୍ତାର ମର୍ମବାର୍ତ୍ତା ନୁହେଁ, ମାତ୍ର ଏକ ନିର୍ଦ୍ଦିଷ୍ଟ ପର୍ବରେ (ନୂଆଖାଇ) ତାର ପ୍ରିୟଜନର ଅନୁପସ୍ଥିତିର ଏକ ସାର୍ଥକ ତଥା ଏକାନ୍ତ ସ୍ମାରକୀ । ଏଭଳି ଅସଂଖ୍ୟ ପ୍ରାଣର ସଂଖ୍ୟାଗୀତ ଭଳି ନୂଆଖାଇର ଏ ଗୀତ ସେଇ ଗ୍ରାମୀଣ ପରିବେଶରେ ହି ଉପଭୋଗ୍ୟ । ପ୍ରାକୃତିକ ପରିବେଶରୁ

ତାକୁ ଟେପ୍ ଟେପ୍ ବା ରେଡିଓକୁ ଆଣିଲେ ତାହାର ସୌନ୍ଦର୍ଯ୍ୟ ଓ ମାଧୁରିମା ନଷ୍ଟ ହୋଇଯାଏ । କାରଣ 'ନବ କିଶଳୟ ଭଳି ବା ସମୁଦ୍ର ତଟର ଶାମୁକା ଭଳି 'ଲୋକଗୀତ'କୁ ତାହାର ପ୍ରାକୃତିକ ପରିବେଶରୁ ବାହାର କରି ଆଣିଲେ ତାହାର ସୌନ୍ଦର୍ଯ୍ୟ ବିନଷ୍ଟ ହେବା ସଙ୍ଗେ ସଙ୍ଗେ ତାହା ସୂର୍ଯ୍ୟଦଗ୍ଧା ପତ୍ର ଭଳି ଝରିଯାଏ । ପ୍ରତ୍ୟେକ ଏହା ନିଜର ସ୍ମୃତିରୁ ଗାଆନ୍ତି, ଅନ୍ୟମାନେ ଶିଖନ୍ତି । ଶିଖୁ ଶିଖୁ କେତେକ ପଦ ଭୁଲିଯାଇ ପୁଣି ନୂତନ ପଦ ଯୋଡାଯାଏ । (Oral variation) ଏହି ମୌଖିକ ପରିବର୍ତ୍ତନ ହିଁ ଲୋକଗୀତର ଜୀବନ (+)। ଗ୍ରାମ୍ୟ ଗୀତର ଏହି ବିଷାଦରଙ୍କ ଭାଷା ଭଳି ପଶ୍ଚିମ ଓଡିଶାର ପର୍ବପର୍ବାଣୀର ଧାରା ଗତିକରି ଆସିଛି 'ଲୋକଗୀତ' ରେ । ଏଥିରେ ମିଶିଛି ଦର୍ଶନର ଧାରା, ଜୀବନର ଉପଧାରା ।

କେବଳ ବ୍ୟକ୍ତିଗତ ଜୀବନର ସୁଖ ବା ଦୁଃଖ ନୁହେଁ, ଏଠାରେ ଦାମ୍ପତ୍ୟ ଜୀବନର କଳହର ଚିତ୍ର ମଧ୍ୟ ଦେଖିବାକୁ ମିଳେ ।

ନୂଆଖାଇର ବିଶେଷତ୍ୱ ହେଉଛି ଯେ ନବାନ୍ନ ଦିବସରେ ସଭିଏଁ ଗୋଟିଏ ଗୋଟିଏ ଜାଗାରେ ବସି ଖାଇବେ । ଏଠାରେ ଗୃହବଧୁର କାମ ବେଶୀ, କିଛିଦିନ ଆଗରୁ ଘର ସଫାସୁତୁରା ବା ଲିପାପୋଛା କରିବ । ମାତ୍ର ସ୍ୱାମୀ-ସ୍ତ୍ରୀର କଳହ ଯୋଗୁଁ ସ୍ତ୍ରୀ ବାପ ଘରକୁ ଚାଲିଆସିଛି । ସହରର ଝିଅ ହୋଇଥିବାରୁ ଗାଁ ଭଲ ଲାଗୁନାହିଁ । ମାତ୍ର ନବାନ୍ନ ଆସିଯାଉଛି ବୋଲି ସ୍ୱାମୀ ତାକୁ ନେବାକୁ ଆସିଛି । ତାର ସବୁ ଦାବୀର ନିର୍ଭର ପ୍ରତିଶୃତି ଦେଇ ସ୍ୱାମୀ କାକୁତି ମିନତି ହୋଇଛି । ଏପରି ଏକ ମଧୁର କଳହର ଉଦାହରଣ-

ପୁ- ନୂଆଁଖାଇ ନାଇ ଯାଉକାଏଁ ସରଗର ତରା
ସରଗର ତରା.....ନୂଆଁଖାଇ ନାଇ ଯାଉକାଏଁ
ସ୍ତ୍ରୀ- ତୋର ସାଙ୍ଗେ ମୁଇଁ ନାଇଁ ଯାଏଁରେ ଗାତସୁଆରେ
ରଇଖିଆରେ, କେରୁଆ ଟୁନ୍‌ତାଁ ।
ପୁ- ରଥ୍ ଦୁତିଆ ଦେଖିବା ଲାଗି,
ଦୁଇମାସ ହେଲା ଆଏଛୁ ଭାଗି
ତୋର ଲାଗି ପରେ କାନ୍ଦିମରୁଛନ ଗଛ୍ ପତରା
ସ୍ତ୍ରୀ- ସହର୍ ଜାଗାର୍ ଟୁକେଲ୍ ମୁଇଁ
ଗଅଁଲି ଗାଁ କେ ମୋର ମନ୍ କେ ନାଇଁ....

---

+. Cottin T.P. - Heritage of Folklore - ପୃ : ୧୦

ତୋର ଗାଁଥି ନାଇଁନ ଗୁଟେ ଖଜା ପସରା....
ପୁ- ତୁଇ ନାଇଁଗଲେ ନାଇଁ ଚଲେନ,
ଘର୍‌ଘସା ରହିଗଲାନ
ତୋର ଲାଗି ପରେ କାନ୍ଦି ମରୁଛନ୍ ଗଛ୍ ପତରା
ସ୍ତ୍ରୀ- ଠକି ଭଣ୍ଡି ନେବୁ ବନ୍ଦ୍ ତରାଥି ମାର୍ ମାର୍‌ବୁ
ତୋର୍ ସାଙ୍ଗେ ମୁଇଁ ନାଇଁ ଯାଏନ
କେରୁଆ ଟୁନ୍‌ତା

ଏଭଳିଭାବେ ନୂଆଖାଇ ଏ ଅଞ୍ଚଳର ଜୀବନ ଓ ଯାତ୍ରାକୁ ଗଭୀରଭାବେ ପ୍ରଭାବିତ କରିଛି । ସଂସ୍କୃତି ଓ ଜୀବନ ପ୍ରାଣୋଚ୍ଛ୍ୱାସ ରୂପେ ପ୍ରକାଶ ପାଏ । ଏ ପର୍ବର 'ଲୋକଗୀତ' ରେ ଜୀବନର ଦୈନନ୍ଦିନ ଧାରାର ଅଭିବ୍ୟକ୍ତି ଅଛି ଯେତିକି, ଦର୍ଶନର କୃଷ୍ଟି ଓ ସୃଷ୍ଟି ଘଟିଛି ପୁଷ୍କଳଭାବେ ସେତିକି ।



# ସମ୍ବଲପୁରର ମୁଣ୍ଡାମାନଙ୍କର କରମସାନି ଉତ୍ସବ

ବିନୋଦ ଶଙ୍କର ଦାଶ

ସମ୍ବଲପୁର ଜିଲ୍ଲାରେ ଅନ୍ତତଃ ୧୪ଟି ଉପଜାତୀୟ ଅଧିବାସୀ ବାସ କରନ୍ତି । ପଶ୍ଚିମ ଓଡ଼ିଶାର ସୁନ୍ଦରଗଡ଼, ବଲାଙ୍ଗୀର, ବରପାଲି, ରାଉରକେଲା ପ୍ରଭୃତି ସ୍ଥାନ ମାନଙ୍କରେ ଏମାନେ ବସତି ବିସ୍ତାର କରିଛନ୍ତି । ୧୯୦୧ ମସିହାର ଆଦମ ସୁମାରୀ ଅନୁସାରେ ଏହି ଅଧିବାସୀ ମାନଙ୍କର ଅନୁପାତ ଥିଲା ଶତକଡ଼ା ୩୩ ଭାଗ ଏବଂ ୧୦ଟି ପ୍ରଧାନ ଉପଜାତୀୟର ପ୍ରାୟ ଦୁଇଲକ୍ଷ ଅଧିବାସୀ ସମସ୍ତ ଜିଲ୍ଲାଟିରେ ବିକ୍ଷିପ୍ତ ହୋଇ ରହିଥିଲେ । ଅବଶ୍ୟ ଏହି ହିସାବରେ ଓରାଓଁ ମାନଙ୍କୁ ହିସାବ କରାଯାଇ ନାହିଁ । ଜିଲ୍ଲା ଗେଜେଟିୟରରେ ଏମାନଙ୍କ ସଂଖ୍ୟା ପ୍ରାୟ ୨୪,୬୭୪ ଜଣ ବୋଲି ଦର୍ଶିତ ହୋଇଛି । ୧୯୦୧ ମସିହା ତୁଳନାରେ ସମ୍ବଲପୁର ଜିଲ୍ଲାର ସମସ୍ତ ଜନସଂଖ୍ୟା ବଢ଼ିଛି + ୧୫.୯ ଶତାଂଶ । ଅନ୍ୟ ଦିଗରେ ୧୯୫୧ ଠାରୁ ୧୯୬୧ ମସିହା ମଧ୍ୟରେ ଉପଜାତୀୟ ମାନଙ୍କର ଜନସଂଖ୍ୟା ବୃଦ୍ଧିର ପରିମାଣ ପ୍ରାୟ ୨୪.୯ ଶତାଂଶ । କାରଣ ସ୍ତ୍ରୀ ସଂଖ୍ୟା ବୃଦ୍ଧି ପାଇଛି । ହୀରାକୁଦ ବନ୍ଧ ଏବଂ ସେଥି ସଙ୍ଗେ ଚାଷର ସୁଯୋଗ ସୁବିଧା ବୃଦ୍ଧି, କୃଷି କ୍ଷେତ୍ରରେ ସୁଯୋଗ ସୁବିଧା, ସମ୍ବଲପୁର ଏବଂ ବୁର୍ଲାକୁ ଘେରି ବିଭିନ୍ନ କଳକାରଖାନାରେ କର୍ମସଂସ୍ଥାନର ସୁବିଧା ବାହାରର ଅଧିବାସୀ ମାନଙ୍କୁ ମଧ୍ୟ ଆକର୍ଷଣ କରିଛି । ତଳେ ଦିଆଯାଇଥିବା ହିସାବରୁ ଦଶ ବର୍ଷରେ କେତେ ଦୂର ପରିବର୍ତ୍ତନ ହୋଇଛି ଜଣାଯାଇ ପାରିବ ।

ଟେବୁଲ୍ ନଂ - ୧

| ମସିହା | ସମ୍ବଲପୁର ଉପଜାତୀୟ ଜନସଂଖ୍ୟା | ଉପଜାତୀୟ ମାନଙ୍କର % ଭାଗ |
|---|---|---|
| ୧୯୫୧ | ୩୫୧,୭୮୮ | ୨୭% |
| ୧୯୬୧ | ୪୩୯,୪୦୫ | ୨୯.୧% |

(Vide Census Report, Sambalpur 1961 P.10)

ମୋ ମତରେ ଏହି ଉପଜାତୀୟମାନଙ୍କୁ ସାଂସ୍କୃତିକ ଏବଂ ଅର୍ଥନୈତିକ ଦୃଷ୍ଟିରୁ ତିନୋଟି

ଭାଗରେ ବିଭକ୍ତ କରାଯାଇ ପାରେ । ପ୍ରଥମରେ ଏ ପର୍ଯ୍ୟନ୍ତ ସଭ୍ୟତାର ଆଲୋକ ପାଇ ନଥିବା - ଶବର, କନ୍ଧ, ଗଣ୍ଡା ଉପଜାତି ମାନେ - ଯେଉଁମାନେ ଏ ପର୍ଯ୍ୟନ୍ତ ବଣଭୂମି ଅଞ୍ଚଳ ଗୁଡ଼ିକରେ ବାସ କରନ୍ତି । ସେମାନଙ୍କର ସାମାଜିକ ଓ ଅର୍ଥନୈତିକ ଜୀବନରେ ବିଶେଷ କିଛି ପରିବର୍ତ୍ତନ ଆସିନି । ଦୁଇରେ ମୁଣ୍ଡା, ଖଡ଼ିଆ, ଓରାଓଁ ଉପଜାତି - ଏମାନେ ସହର ଅଞ୍ଚଳଗୁଡ଼ିକୁ ଉଠି ଆସିଛନ୍ତି ଏବଂ ପ୍ରଧାନତଃ କୃଷିକୈନ୍ଦ୍ରୀକ ଜୀବନ ଧାରାରେ ଅଭ୍ୟସ୍ତ ହୋଇ ଉଠିଛନ୍ତି ଏବଂ ପାର୍ଶ୍ୱବର୍ତ୍ତୀ ଓଡ଼ିଆ ହିନ୍ଦୁ ସଂସ୍କୃତିର ପ୍ରଭାବ ଅନୁଭବ କରୁଛନ୍ତି । ଏମାନେ କୋଲ୍‌ହ ଜାତିଭୁକ୍ତ । ତୃତୀୟ କିଷାନ, ମିର୍ଦ୍ଧା, ଲୋଧା ପ୍ରଭୃତି ଉପଜାତିମାନେ ଯେଉଁମାନେ ନିଜକୁ ଦ୍ରାବିଡ଼ ଜାତିର ଶାଖା ବୋଲି ଦାବୀ କରନ୍ତି । ଏମାନଙ୍କ ମଧ୍ୟରେ ଅନେକ ଇଂରାଜୀ ଶିକ୍ଷାରେ ଶିକ୍ଷିତ ହୋଇଛନ୍ତି ଓ ଖ୍ରୀଷ୍ଟ ଧର୍ମାବଲମ୍ବୀ ଅଟନ୍ତି । କିନ୍ତୁ ଆହୁରି ଅନେକ ଏ ପର୍ଯ୍ୟନ୍ତ ପ୍ରାଚୀନ ଧର୍ମକର୍ମ ଓ ସାମାଜିକ କୃତ୍ୟ ତ୍ୟାଗ କରି ନାହାନ୍ତି । ଏହି ସବୁ ଆଦିବାସୀମାନେ ହିଁ ସମ୍ବଲପୁରର ରାଜନୈତିକ, ସମବାୟ ଭିତ୍ତିକ ଓ କୃଷିକେନ୍ଦ୍ରିକ ସମାଜ ଜୀବନର ଉତ୍ଥାନ ପତନରେ ଅଂଶଗ୍ରହଣ କରିଛନ୍ତି । ସ୍ଥାନୀୟ କଲେକ୍ଟରେଟ୍‌ର ରେକର୍ଡ଼ ରୁମର ରେଭିନ୍ୟୁ ରେକର୍ଡ଼ରୁ ଏହିସବୁ ଜନଗୋଷ୍ଠୀର (ରାଜନୈତିକ) ଗଣ ଅଭ୍ୟୁତ୍ଥାନର ବିବରଣୀ ମିଳେ । ଉନବିଂଶ ଶତକର ପ୍ରଥମରେ ସମ୍ବଲପୁରର ବିଧବାରାଣୀ କୁସୁମ କୁମାରୀଙ୍କ ଅମଳରେ ଯେତେବେଳେ ତାଙ୍କର ପ୍ରିୟପାତ୍ର ବିଦେଶୀମାନେ ହିନ୍ଦ୍ ସାମନ୍ତ ଜମିଦାର ମାନେ ଗଣ୍ଡ ଓ ବିଂଝାଲ ଉପଜାତୀୟ ଜମିଦାରମାନଙ୍କର ସାମାଜିକ ଓ ଅର୍ଥନୈତିକ ସୁଯୋଗ ସୁବିଧା ହରଣ କରି ନେଇଥିଲେ ସେତେବେଳେ ଏମାନେ ବିଦ୍ରୋହ କରିଥିଲେ । ୧୮୨୧ ମସିହାରେ ରାଜା ନାରାୟଣ ସିଂହଙ୍କ ବିରୁଦ୍ଧରେ ବରଗଡ଼ର ଗଣ୍ଡ ଉପଜାତିମାନେ ମଧ୍ୟ ସେହି କାରଣରୁ ବିଦ୍ରୋହ କରିଥିଲେ । ତିରିଶ ଦଶକରୁ ଷାଠିଏ ଦଶକ ପର୍ଯ୍ୟନ୍ତ ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ଉପଜାତୀୟ ମାନଙ୍କର ବିଦ୍ରୋହ ସମ୍ବଲପୁରରେ ସ୍ୱାଧୀନତା ପାଇଁ ପ୍ରଥମ ଯୁଦ୍ଧ ବୋଲି ଅଭିହିତ ହୋଇଛି ।

ସମ୍ବଲପୁର ଜିଲ୍ଲାର ପ୍ରତ୍ୟେକ ଗ୍ରାମ ଓ ସହରରେ ଏହି ଉପଜାତୀୟମାନଙ୍କୁ ଦେଖିବାକୁ ମିଳେ । ସମ୍ବଲପୁର ରୋଡ଼ ଷ୍ଟେସନର ଉତ୍ତରରେ ବିସ୍ତୃତି ବୁଢ଼ାରଜା ପାହାଡ଼ । ଏହାର ଆଖପାଖରେ ବିକ୍ଷିପ୍ତ ବିଭିନ୍ନ ବସ୍ତିରେ ଅଛନ୍ତି ଅନେକ ଆଦିବାସୀ ଯେଉଁମାନଙ୍କ ମଧ୍ୟରେ କେତେକ ମୁଣ୍ଡା, ଖଡ଼ିଆ, ଓରାମ, ଉପଜାତିର ଓ ଅନ୍ୟ କେତେକ ମିର୍ଦ୍ଧା, କିଷାନ, ଉପଜାତିର ଅନ୍ତର୍ଭୁକ୍ତ ଉପଜାତୀୟ ଅଧିବାସୀ । ଏମାନଙ୍କ ମଧ୍ୟରେ ସ୍ତ୍ରୀ ଲୋକମାନେ ଅଧିକାଂଶ କ୍ଷେତ୍ରରେ ବିଡ଼ି ତିଆରି କାମ କରନ୍ତି । ମାଲିକ ପକ୍ଷ ସହିତ ଏକ ଚୁକ୍ତି ଲିଭିରେ ମାଲିକ ଏମାନଙ୍କୁ ପାରିଶ୍ରମିକ ଓ ଉପକରଣ ଦିଅନ୍ତି ।

ଗୁଜରାଟୀ ଓ ବଙ୍ଗାଳି ମାଳିକମାନେ ଚୁକ୍ତି ବିଷୟରେ ଯଥେଷ୍ଟ ବିବେଚିତ । ଏମାନଙ୍କର ପୁରୁଷମାନେ ବିଲବାଡ଼ିର କାମ କରିଥାନ୍ତି । ଏମାନଙ୍କର ନିଜସ୍ୱ ଜମିଜମା ଅଛି । କିନ୍ତୁ ଜମିର ପରିମାଣ ହାରାହାରି ୨ / ୩ ଏକରରୁ ବେଶୀନୁହେଁ । ଅନେକ ପୁଣି ଆଖପାଖର କଳକାରଖାନାରେ ମଧ କାମ କରନ୍ତି । ପୂର୍ବେ କାମ ପାଇବା କଷ୍ଟକର ଥିଲା କାରଣ ଜମିରୁ ବର୍ଷକୁ ଗୋଟିଏ ଫସଲ ଉଠାଇବା ପାଇଁ ଏମାନଙ୍କୁ ଶରୀର ପାତ କରିବାକୁ ପଡୁଥିଲା । କିନ୍ତୁ ହୀରାକୁଦ ବନ୍ଧ ନିର୍ମାଣ ପରଠାରୁ ଏମାନଙ୍କର କାମ ପାଇବାରେ ଆଉ କିଛି ଅସୁବିଧା ନାହିଁ । ଜମିରେ ବର୍ଷକୁ ଦୁଇଟି ଫସଲ ଉତ୍ପନ୍ନ କରନ୍ତି, ମାଛ ଧରନ୍ତି, ଶୁଖୁଆ ତିଆରି କରନ୍ତି, ବସ୍ତି ଫଳଗ୍ଭ ବଗିଚା ମାନଙ୍କରେ ଶକସବଜୀ ମଧ ଉତ୍ପନ୍ନ କରନ୍ତି । ସେହି କାରଣରୁ ସମ୍ବଲପୁରରେ ଚାଉଳ ଏବଂ ମାଛ ଦୁଇଟି ଜିନିଷ ଅପେକ୍ଷାକୃତ ଶସ୍ତା । ଲୁଗାର ଦର ଅବଶ୍ୟ ବେଶୀ କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ ଦର ବେଶୀ ହେଲେ ମଧ ଉପଜାତୀୟ ସ୍ତ୍ରୀ ଲୋକମାନେ ସମ୍ବଲପୁରୀ ଛଡ଼ା ବାହାରର ଅନ୍ୟ ମିଲ୍ ତିଆରି ଲୁଗା ଖୁବ୍ କମ୍ ବ୍ୟବହାର କରନ୍ତି । ଯଦିଚ ଏମାନେ ନାଗରିକ ସଭ୍ୟତା ସହିତ ଖାପ୍ ଖୁଆଇ ଓଡ଼ିଶାର ଗଣ ସଂସ୍କୃତି ସହିତ ମିଶିଗଲେଣି ତଥାପି ଗତ ସତୁରୀ ବର୍ଷରେ ଏମାନଙ୍କର ସାମାଜିକ କ୍ରିୟା ଅନୁଷ୍ଠାନର ଖୁବ୍ କମ୍ ପରିବର୍ତ୍ତନ ଦେଖାଦେଇଛି । କିନ୍ତୁ ଅର୍ଥନୈତିକ ଜୀବନରେ ମର୍ମାନ୍ତିକ ପରିବର୍ତ୍ତନ ସବୁ ଆସିଛି । ୟାଙ୍କ ଚାଷଜମି ହାତଛଡ଼ା ହୋଇଛି । ୟାଙ୍କ ସମାଜର ପାହାନ୍ (ଗୋଷ୍ଠୀପତି), ମାହାତୋ (ଗ୍ରାମ୍ୟକର୍ମଚାରୀ) ଗ୍ରାମ୍ୟ ପୂଜାର ପୁରୋହିତ ମାନେ ଓଡ଼ିଆ ହିନ୍ଦୁ ଅବସ୍ଥାପନ୍ନ କୃଷକମାନଙ୍କ ସଙ୍ଗରେ ହାତ ମିଳାଇ ଏମାନଙ୍କୁ କୃଷକ ଶ୍ରମିକରେ ପରିବର୍ତ୍ତନ କରି ଦେଇଛନ୍ତି । କିନ୍ତୁ ତଥାପି ଏମାନେ ଆଜି ପର୍ଯ୍ୟନ୍ତ ଗୋଷ୍ଠୀ ଜୀବନରେ ଓ ବସ୍ତିରେ ବାସ କରନ୍ତି । କେତୋଟି ପଲ୍ଲୀ ବା 'ପାଲି' ନେଇ ଏମାନଙ୍କର ଗୋଷ୍ଠୀ ସଭା ବା 'ପଞ୍ଚ', ଗଠିତ ହୁଏ । ସେଠାରେ ଗୋଷ୍ଠୀପତିଙ୍କର ଭୂମିକା ପ୍ରଧାନ । ପାଞ୍ଚଜଣଙ୍କର ବିଚାର ଏମାନେ ମୁଣ୍ଡପାତି ଗ୍ରହଣ କରନ୍ତି । କିନ୍ତୁ ଊନବିଂଶ ଶତକର ପ୍ରଥମ ଷାଠିଏ ବର୍ଷର ଇତିହାସ ଏମାନଙ୍କ ମଧରେ ଗଣ ବିକ୍ଷୋଭର ଇତିହାସ । କାହିଁକି ଏମାନେ ବିଦ୍ରୋହ କଲେ ତାହା ଅନ୍ୟ କାହାଣୀ ଓ ଅନ୍ୟ ଇତିହାସ । ତଳେ ଦିଆଯାଇଥିବା ହିସାବରୁ ଏମାନଙ୍କର ଜନସଂଖ୍ୟାର କ୍ରମ ବିବର୍ତ୍ତନ କଥା ଜାଣିହେବ ।

ଟେବୁଲ୍ ନଂ - ୨

| ଉପଜାତିର ନାମ | ୧୯୦୧ | ୧୯୬୧ |
|---|---|---|
| ୧ . ମୁଣ୍ଡା | - | ୩୫,୬୫୫ |
| ୨ . ବିଂଝାଲ | ୩୨,୨୨୫ | ୪୭,୧୩୪ |

| | | |
|---|---|---|
| ୩. ଭୁଇଁଆଁ | ୦୯,୦୭୩ | ୨୦,୫୯୫ |
| ୪. ଗଣ୍ଡା | ୦୬,୨୪୮ | ୯୩,୮୭୫ |
| ୫. କାଓୟାର | ୦୩,୮୩୫ | - |
| ୬. ଖନ୍ଦ | ୧୫,୦୨୬ | ୨୩,୬୩୬ |
| ୭. କିଷାନ | ୧୪,୨୬୮ | ୬୬,୫୨୮ |
| ୮. କୋଲ୍ହ | ୦୯,୨୨୩ | ୦୯,୬୮୦ |
| ୯. କୁର୍ଦ୍ଧା | ୧୧,୧୯୨ | - |
| ୧୦. ଶବର | ୭୬,୮୪୧ | ୮୨,୫୭୫ |
| ୧୧. ମିର୍ଦ୍ଧା | - | ୧୬,୪୫୧ |
| ୧୨. ଖଡ଼ିଆ | ୦୫,୦୨୯ | ୧୯,୧୮୦ |
| ୧୩. ଓରାମ | - | ୧୨,୧୨୯ |
| ୧୪. ଲୋଧା | - | ୦୫,୮୪୧ |

(Vide District Gazetter, Sambalpur L.S.S. O Mally, Calentha 1909 P.P. 65-66, Census Report, Sambalpur 1961, M. Ahmed Pp. 17-18)

ନିର୍ଦ୍ଦିଷ୍ଟ ଦିନରେ ବସ୍ତିର ପାହାନ (ନେତା), ବା ପୂଜାର (ପୁରୋହିତ) ବା ମାହାତୋର କର୍ତ୍ତୃତ୍ୱରେ ଗାଁର କେତେଜଣ ଯୁବକ ଦିନସାର ଉପବାସ ରହି ବଣକୁ ଯିବେ । ଅବିବାହିତ ଝିଅମାନେ ଗାଧୋଇ ବିଲରୁ ତୋଳି ଆଣିବେ ପାଖନା ଫୁଲ ଓ ଲାଲ କରମା, ପାଛିଆରେ ଆଣିବେ ବଡ଼ି, ଉରିଡ଼, ବରାଇ ପ୍ରଭୃତି ନାନା ପ୍ରକାର ବଣ୍ୟ ଶସ୍ୟ ଓ କଖାରୁ, କାକୁଡ଼ି ପ୍ରଭୃତି ପରିବା । ବଣ୍ୟକରମ ଗଛର (Nanclea Parvitolia) ଯେଉଁ ଡ଼ାଳ ମାଟି ଛୁଇଁନି ଏବଂ ଯାହାର ପ୍ରତିଗୁଡ଼ିକ ସିଧା ଏବଂ କୀଟଦଷ୍ଟ ନୁହେଁ ସେହି ଡ଼ାଳରେ ତେଲ ଓ ସିନ୍ଦୁର ଲଗାଇ ତାହା ପୂଜା କରିବ । ଯୁବକ ମାନେ ଗାଇବେ :-

ଗିରୁ ପାରାବାଟେ ସିଜୁରାମାର ଗେଲେ ହୋ ଦାଦା
କରାୟା ଫୁଲା ଲାଇନ୍ ଦେ ବେ ରେ
(ଦୁଇଥର ଗାଇବାକୁ ପଡ଼ିବ)
ଡେଁତରେ ବାଲିନ ବାଢ଼େ ରିଝୁ ଆବରେ
କାହାଁ ପାବ କରାୟା ଫୁଲାରେ
କାହାଁ ପାବ କରାୟା ଫୁଲାର ।

ପୂଜାର ମନ୍ତ୍ର କିନ୍ତୁ ସାଧାରଣ । ହେ, ଗ୍ରାମଦେବୀ ! ତୁମେ ସନ୍ତୁଷ୍ଟ ହୁଅ । ତୁମେ ଆମମାନଙ୍କ ମଧ୍ୟରେ ଆସି ଆମ ପୁଅ ଓ ଭାଇମାନଙ୍କୁ ନିରାପଦରେ ରଖ । ଆମ ଫସଲ ଯେପରି ନଷ୍ଟ ନ ହୁଏ । "ହେ ଗ୍ରାମଦେବୀ, ଆଲେୟା ହାତୁରେ ଇସିଂ ସଭା ହୁଇୟୋ କାମେନ୍ଦେ କାରାମସାନି ଆମକି ଇଦିହିଜା କାନାଲେ ଯେତନା ହାତୁଢ଼େ ହାଡ଼ାମ ବୁଢ଼ିଆ ହନ ଗାଁ ନା ନାଇ ପିଲା ଆଛାମଜାକତେ ଏନେ ସୁସନେ କାକା ଯାଁ ହେକେ ଲାହିଁ ଆସୁବାନ ବଲ୍ ହାସୁବାନ, କାଟାତି ହାସୁବାନ୍ ଭରିନା ରାବାଂବାନ୍ । ଆଛା ମାଜା କତେ ଲାନ୍ଦା ରାସ୍କାୟ୍ କାଙ୍କ । ଆମାଧାରାମରେ ଯେତ୍‌ନା ହାତୁ ଗାଁଣ୍ଠାରେର ହତକ । ହିଜୁୟାକ ଆଛା ମାଜା କେତେ ସେନକାକ୍ଵ ।

ଏହାପରେ ପୂଜାର ଗୋଟିଏ କୁଡ଼ାରି ଦବ ଜଣେ ଯୁବକକୁ । ସେ ଯୁବକ ଯାଇ ସେହି ମନ୍ତ୍ରପୁତଃ ଡ଼ାଳଟି କାଟିବ ଯେଉଁ ଡ଼ାଳ ହେବ କରମସାନି ପୂଜର କରମା (ଦେଖିବାର ବିଷୟ ଯେ ଦେବୀ ଏଠାରେ ହଠାତ୍ ରାଜା ହୋଇଗଲେ !) । ତାହାପରେ ତିନିଜଣ ଅବିବାହିତ ଅଭୁକ୍ତ ଯୁବକ ସେଇ ଡ଼ାଳଟି ସଂଗ୍ରହ କରି ଗ୍ରାମ ଆଡ଼କୁ ବାହାରିବେ । ପୁଅ ପିଲାମାନେ ନାଚ ଓ ଗୀତ ସହଯୋଗେ ତା' ସହିତ ଆସିବେ । ଆଉ ଝିଅ ପିଲାମାନେ ଟିକେ ଦୂରତ୍ୱ ବଜାୟ୍ ରଖି ଗୀତ ଗାଇ ଗାଇ ଆସିବେ । କରମ ଡ଼ାଳ ନେବା ସମୟ୍ ଗୀତ :-

"ବାରା ମାଲିନାରେ ସିଜିଆରେ କାରାମ
ବାନା ଭିତରେ ରହା - ଲେ କାରାମ ।"

ଏହି ସମବେତ ଦଳ ଏଥର ଗ୍ରାମ ଭିତରେ ନିର୍ଦ୍ଦିଷ୍ଟ ସମବେତ ନାଚ ଆଖାଡ଼ାକୁ ପ୍ରବେଶ କରିବେ । ମାଦଳ ଓ ନୃତ୍ୟର ଶବ୍ଦ ପୁଣି ଗ୍ରାମର ଯୁବା ବୃଦ୍ଧ ସମସ୍ତେ ଆଗେଇ ଆସବେ ସାଦର ଅଭ୍ୟର୍ଥନା କରିବା ପାଇଁ । ଆଖଡ଼ାର ଠିକ୍ ମଧ୍ୟସ୍ଥଳରେ ଡାଳଟିକୁ ରୋପଣ କରାଯିବ । ରୋପଣ କରିବା ବେଳର ଗୀତ :-

"ଦୟାଲାନୁ ପାହାଡ଼ଁ ବାତିଲାନୁ ପାହାଡ଼ଁ
କାରାମ ରାଜା ଆଁଧାରେ ଆଓୟୋ ।

ଏତିକି ଭାଇବାପରେ ଅନ୍ୟମାନେ ଧୂଆ ଗାଇବେ ।

ଆଜ ତୋୟେ କାରାମରାଜା ଝିଲିମିଲି ଝାକାମାକା
ନାଖେଡ଼ାକେ ସେ ଭା
(ଏହା ଦୁଇଥର ଗାଇବାକୁ ପଡ଼ିବ)

ଏଇଥର କାରାମରାଜାଙ୍କର ପୂଜା କରାଯିବ ଅର୍ଥାତ୍ କାରାମ ଦେବୀଙ୍କର ପ୍ରାଣ ପ୍ରତିଷ୍ଠା କରାହେବ। ଝିଅମାନେ ସଂଗୃହୀତ ସମସ୍ତ ଦ୍ରବ୍ୟ କାରାମ ପାଛିଆ ଆଣି ଉପସ୍ଥିତ କରିବେ। ପୂଜାର ଅନ୍ୟାନ୍ୟ ଉପଚାର ଭିତରେ ଅଛି ସାରୁପତ୍ର, ପ୍ରଦୀପ ବା ମହମବତି, ଅରୁଆ ଚାଉଳ, ଯବ ବା ଗହମ ରୁଟି, ନଡ଼ିଆ, କାକୁଡ଼ି ଏବଂ ଦହି। ପୂଜା କରିବେ ପୂଜାର ପାହାନ ଏବଂ ମାହାତେ ମାନେ। ଏହାପରେ ପୁରବାସୀ ଯୁବକ ଓ ଯୁବତୀ ମାନେ ଘରକୁ ଯାଇ ଖିଆପିଆ କରିବେ ଓ ପାହାନ ମାନେ ରାତିସାରା ସେହି ସ୍ଥାନରେ ରହି ହାଣ୍ଡିଆ ମଦ ପିଇବେ ଓ କାରାମ ରାଜାଙ୍କୁ ପ୍ରହରା ଦେବେ।

ସଞ୍ଜ ଗଡ଼ିଗଲେ ଗ୍ରାମର ଚୌକିଦାର ଡାକି ଗ୍ରାମର ଯୁବକ ଓ ଯୁବତୀମାନଙ୍କୁ ଜଣାଇ ଦେବ ସେମାନେ ଯେପରି ଆଖଡ଼ାର ପୂଜାସ୍ଥଳୀରେ ଯାଇ ଉପସ୍ଥିତ ହୁଅନ୍ତୁ। ସେତେବେଳେ ସ୍ତ୍ରୀଲୋକମାନେ କରମା ପାଛିଆରେ କଖାରୁ (ସତେ ଯେପରି ଛୋଟ ଶିଶୁର ପ୍ରତୀକ, ଯବର ଫୁଲ ବାହାରିଥିବା ଛୋଟ ଗଛ ଯାହାକି ସେମାନେ ପ୍ରାୟ ଦଶଦିନ ପୂର୍ବରୁ ବିଶେଷ ଭାବରେ ଲଗାଇ ଯତ୍ନ ସହକାରେ ପାଣି ଇତ୍ୟାଦି ଦେଇ ରଖିଥିଲେ ଏବଂ ପୂଜାର ଅନ୍ୟାନ୍ୟ ଉପଚାର ସାଙ୍ଗରେ ଧରି ପୂଜା ମଣ୍ଡପରେ ନେଇ ରଖିବେ। ଯେ ପର୍ଯ୍ୟନ୍ତ ପୂଜା ଶେଷ ନ ହୋଇଛି ସେ ପର୍ଯ୍ୟନ୍ତ ସ୍ତ୍ରୀ ଓ ପୁରୁଷମାନେ ଏକା ସାଙ୍ଗରେ ରହିବେନି ବା ନାଚିବେନି।

ପୂଜା ସରିଗଲେ ପାହାନ ଗୋଟିଏ କାହାଣୀ ଶୁଣାଇବ। ଏହି କାହାଣୀଟି ମୁଣ୍ଡା ମାନଙ୍କର। କିନ୍ତୁ ମିର୍ଦ୍ଧାମାନଙ୍କର କାହାଣୀଟିରେ ପୁଣି କିଛି କିଛି ପରିବର୍ତ୍ତନ ରହିଛି। ଅନେକ ଅନେକ ଦିନ ଆଗରୁ କୌଣସି ଏକ ସାଧବ ବୁଢ଼ାର (ବାରାନ୍ତରେ ମିର୍ଦ୍ଧା ବୁଢ଼ାର) ସାତପୁଅ ବଳଦ ଗାଡ଼ିରେ ଗ୍ରାମାନ୍ତରକୁ ଯାଇଥିଲେ ବାଣିଜ୍ୟ କରିବାପାଇଁ। (କିଶାନ ମାନଙ୍କ କାହାଣୀରେ ଅଛି ସାତଭାଇ ସାତଟି ଡ଼ଙ୍ଗାରେ ସମୁଦ୍ରକୁ ବାହାରିଥିଲେ।) ବାଣିଜ୍ୟ ଶେଷକରି ସାତଭାଇ ପ୍ରଚୁର ପରିମାଣ ଖାଦ୍ୟ, ଶଷ୍ୟ, ଧନ, ରତ୍ନ ଘେନି ଗ୍ରାମର ଉପକଣ୍ଠକୁ ପହଞ୍ଚିଲେ। (ବାରାନ୍ତରେ ସାତଟି ଡ଼ଙ୍ଗାରେ ଆସି ପହଞ୍ଚିଲେ।) ସେଦିନ ଭୁଦ ମାସର ଏକାଦଶୀ ତିଥି କରମ ରାଜାଙ୍କର ପୂଜା ଦିବସ। ଗ୍ରାମର ସବୁ ଯୁବକ ଯୁବତୀ ଉତ୍ସବରେ ମତ୍ତ। ମାଦଳର ଶବ୍ଦଶୁଣି ବଳଦଗାଡ଼ି ଗୁଡ଼ିକ ରହିଲେ। ବଡ଼ଭାଇ ସବୁଠାରୁ ସାନଭାଇକୁ ପଠାଇଲେ ଖବର ଦେବାପାଇଁ। କାରଣ ଘରର ସ୍ତ୍ରୀଲୋକମାନେ ବରଣ କରି ନେଇ ନଗଲେ ସେମାନେ ଗ୍ରାମ ଭିତରକୁ ଯିବେ କିପରି ? ସାନଭାଇ ଯାଇ ଦେଖିଲା ତାଙ୍କ ଝିଅ ବହୁମାନେ ଗାଁର ଅନ୍ୟାନ୍ୟ ଯୁବକ ଯୁବତୀଙ୍କ ସାଙ୍ଗରେ ଉତ୍ସବର ନାଚ ଗୀତରେ ମତ୍ତ। ସାତଭାଇ ଯେ ଫେରି ଆସିଛନ୍ତି ସେଥିପ୍ରତି ତାଙ୍କର ଖିଆଲ ମଧ ନାହିଁ। ଏହା ଦେଖି

ସାନଭାଇ ଗୋଟିଏ ମାଦଳ ନେଇ ସେହି ନୃତ୍ୟ ଅନୁଷ୍ଠାନରେ ଯୋଗ ଦେଲା - ତାଙ୍କ ଝିଅ ବୋହୁମାନଙ୍କୁ ତାଙ୍କ ଆସିବା ଖବର ଦେବା କଥା ଭୁଲିଗଲା । ଏହାପରେ ଆଉ ପାଞ୍ଚଭାଇମାନେ ଏକ ପରେ ଏକ ଆସି ଏହିପରି ନୃତ୍ୟ ଅନୁଷ୍ଠାନରେ ମାତି ରହିଗଲେ । ଭୁଲିଗଲେ ଯେ ତାଙ୍କ ବଡ଼ଭାଇ ଏକା ଅପେକ୍ଷା କରି ରହିଛନ୍ତି ଗ୍ରାମର ଉପକଣ୍ଠରେ । ଅବଶେଷରେ ଅତ୍ୟନ୍ତ ରାଗରେ ବଡ଼ଭାଇ ଆସି ଦେଖିଲା ସବୁଭାଇ ଓ ବହୁମାନେ ନୃତ୍ୟରେ ମତ୍ତ । ସେତେବେଳେ ସେ ସେମାନଙ୍କୁ ସମସ୍ତଙ୍କୁ ଗାଳି ଦେଲେ । ଅଦୂରରେ ଠାକୁରଙ୍କ ପାଖରେ ନିବେଦନ ପାଇଁ ଦୁଧରେ ଭୋଗ ତିଆରି ଚାଲିଥିଲା । ସେ ରାଗରେ ସେ ନୈବଦ୍ୟ ପାତ୍ରକୁ ପକେଇ ଦେଲା ଏବଂ ଘର ଛାଡ଼ି ଚାଲିଗଲା । (ମିର୍ଦ୍ଧା ମାନଙ୍କର ଗପରେ ଅଛି ଯେ, ବଡ଼ଭାଇ ରୋପିତ ହୋଇଥିବା କରମସାନି ଡାଳକୁ ଓପାଡ଼ି ପକେଇ ନିକଟସ୍ଥ ସମୁଦ୍ରରେ ପକାଇଦେଲା । ସାଙ୍ଗେ ସାଙ୍ଗେ ସେ ସାତଟି ଡ଼ଙ୍ଗା ବୁଡ଼ିଗଲେ କିନ୍ତୁ କରମସାନି ଡ଼ାଳ ଭାସି ଭାସି ଯାଉଥାଏ । ଏହାଦେଖି ସାନଭାଇ ଡ଼ାଳଟି ଧରିବାକୁ ଗଲା ବହୁଦିନ ବହୁରାତି ବିତିଗଲା । ଡାଳଟି ଧରି ପାରେନି । ଶେଷରେ ସାନଭାଇ କାରାମ ରାଜା ପାଖରେ ପ୍ରାର୍ଥନା କଲେ । ସେତେବେଳେ ଦେବୀ ଧରାଦେଲେ । ନୂଆକରି ପୂଜା କରାଗଲା । ସାତଟି ଡ଼ଙ୍ଗା ଭାସି ଉଠିଲେ । ଆକାଶରୁ ଦୈବବାଣୀ ହେଲା କାରାମ ରାଜାର ପୂଜା ନ କଲେ ତମମାନଙ୍କର ମଙ୍ଗଳ କେବେ ହେବନି । ମୁଣ୍ଡା ମାନଙ୍କର କାହାଣୀ ଅନୁସାରେ ସେତେବେଳେ ସାନବହୁ ସାଦରେ ସେହି ଡ଼ାଳକୁ ଆଉଥରେ ରୋପଣ କରିଦେଲା । ନୂଆ ଉପଚାରରେ ସମସ୍ତେ ତାକୁ ପୂଜା କଲେ ଆଉଥରେ । ସେବେଠାରୁ ଦୁଧ ପରିବର୍ତ୍ତେ ଦଧି ଓ ଅରୁଆ ଚାଉଳ, କଖାରୁ, କାକୁଡ଼ି ଓ ରୁଟି ହେଲା କାରାମ ରାଜାଙ୍କର ନୈବେଦ୍ୟର ଉପକରଣ ।

କାହାଣୀ କଥନ ପରେ ପୂଜାରି ପ୍ରଶ୍ନ କରିବେ ।

ପ୍ରଶ୍ନ - ଆପନ ଧାରମ, ଭାଇକୋ ଧାରମ
ଝୁନୁଟାରେ ବେଠଲା ମାୟା କାପାଲେ....

ସ୍ତ୍ରୀ ଲୋକମାନେ ଉତ୍ତର ଦେବେ :-

'ଆପନ ଧାରମ ଭାଇକୋ ଧାରମ'

ପ୍ରଶ୍ନ - 'କହନା ସେ ତୋର ବେଟାକେ କାନାଓ ?'

ଉତ୍ତରରେ - ଭାଇ ବା ଖୁଡ଼ୀ ବା ପୁତ୍‌ରାର ନାମ କହିବ ।

ଏହାପରେ ସମସ୍ତ ରାତ୍ରି ଧରି ଚାଲିବ ନୃତ୍ୟ ଗୀତ । କେତେଜଣ ଯୁବକ ମାଦଳ ବଜାଉ

ଥିବେ । ଆଉ ଯୁବକ ଓ ଯୁବତୀମାନେ ହାତ ଧରାଧରି ହୋଇ ନାଚୁଥିବେ । ଏହି ନାଚର ଗୀତ ଗୁଡ଼ିକ କିନ୍ତୁ ଭିନ୍ନ ଭିନ୍ନ ଧରଣର । ମୁଁ ତିନି ପ୍ରକାର ନୃତ୍ୟର ନାମ, ବୋଲ୍ ଓ ଗୀତର ନମୁନା ଦେଉଛି । ଏ ଗୁଡ଼ିକ ମୁଣ୍ଡାମାନଙ୍କର । ମିର୍ଦ୍ଧା (କିଷାନ୍ ମାନଙ୍କର) କିଛିଟା ଭିନ୍ନ ଧରଣର । ଏମାନେ ରାତ୍ରିର ପ୍ରଥମ-ଯାମରେ ନାଚିବେ ମିହିନ୍ଦି ଖେଲ, ମଧ୍ୟ ଯାମରେ ଝାଇଲ ଓ ଶେଷ ଯାମରେ ଝୁମୁରୁ ନୃତ୍ୟ ।

ମହିନ୍ଦି ଖେଲ - ମାଦଲର ବୋଲ୍ - ଟାଁକ୍ ଦାଁଦର ୨ ଟାଁକ୍ ଦାଦିର ୨

ପୁଇସାଙ୍କ ଡରଡେ ଡରଡେ କାଲିନାଗ ଚାବ୍‌ଲାକ
 ଦେଓ୍ୟାରୋ କାଲିନାଗ ଚାବ୍‌ଲାକ
ଫୋକିଓୟୋ ଦେବେ ଦେବରାୟ୍ ଝାରିଓ ଦେବେ ଦେବରାୟ୍
ସେ ସାଁଝୁ ମାର ମାଇୟା ସେ ସାଁଝୁ ମାରେ
ମିହିଦି ପିସାଲ ହାଟେ, ହାଟେ ଭାଙ୍ଗିଗେଲା ହାଟେଁ
ନେକେ ସାଁଝୁ ମାର ମାଇୟା ନେକେ ସାଁଝୁମା
 (ଏହା ଦୁଇଥର ଗାଇବାକୁ ହୁଏ)

ଏହା ସହିତ ଅଛି ଠେକୁଆ ଖେଲର ଗୀତ । ବୋଲ୍ ସହ ଦୁଇ ପ୍ରକାର ଗୀତ ଉଦ୍ଧୃତ କରୁଛି ।

ମାଦଲର ବୋଲ - ଧାଟି ୨ ତାଟାର୨ ଯାକୁଟ ୨ ଧାଟିଂ ୨ ତାଟା

ନୀଚେ ଟୁଂମୁରିୟାରେ ନୁପରେ ବାଟାନିଆ
ଡାରଲାଗେ ମକେ ସାଞ୍ଜାକୋ ବେରିୟା- ।
ହିଁୟ୍ ଚାଧାରେ ଡାରଲାଗେ ମୋକେ ସାଞ୍ଜାକୋ ବେରିୟା
ଡାହାରାକୋ ଗାଡ଼ାଡୋକା ଜାମ ପକଶଲ - ପାନି
ଡାରଲାଗେ ମକେ ସାଞ୍ଜାକୋ ବେରିୟା ।
ହିଁୟାର ଆନ୍ଧାରେ ଡାରଲାଗେ ମକେ ।

ଆଉ ଗୋଟିଏ ଠାଡୁଆ ନୃତ୍ୟର ଗୀତ ଦିଆଯାଉଛି । ମାଦଳର ବୋଲ୍ ଏକ ପ୍ରକାର ।

ରାଜା ଯେ ଚାଲେଲଶଗାଲ ହିଲେ ଲାଗାଲ ଗାଡ଼ରେ
ଭାଇରୋ ରାଣୀ ରୋୟେଲାଗାଲ ନାନା ବହେଲୋର (ଦୁଇଥର)

ଇଁୟାହାରେ ଭାଇ ଭାଁଇରୋ ରାଣୀ ରୋୟେ.....

ମାଡି କାନ୍ଦୋ ରାଣୀ ପଛେରା - ପଛ ଲୋରେ

ସେରାକେ ସୁଁଦୁରା ରାଣୀ ଦେବ ହାରିଲେ

ହିଁୟା ହାରେ ଗଂଧାରେ ସେରାକେ ସିଂଦୁରାଣୀ ଦେବ ହାରିଲେ ।

ଗୀତଗୁଡ଼ିକ ମଧ୍ୟରେ ରାଧାକୃଷ୍ଣଙ୍କର ରାସନୃତ୍ୟର ଭାବପ୍ରଚ୍ଛନ୍ନ ରହିଛି । ସାଧାରଣ ଗ୍ରାମ୍ୟ ଜୀବନର ସମସ୍ୟା ମାନଙ୍କର ଉଲ୍ଲେଖ ମଧ୍ୟ ଗୀତ ଗୁଡ଼ିକରେ ମିଳେ । ବର୍ତ୍ତମାନ ଝାୟେଲ ଗୀତର କଡା ଓ ବୋଲ ଉଦ୍ଧୃତ କରୁଛି । ଏଥିରେ ମଧ୍ୟ ଭାରତୀୟ ହିନ୍ଦିର ସମିଶ୍ରଣ ଦେଖିବାକୁ ମିଳିବ ।

ଝାୟେଲ ଗୀତ :- ମାଦଳର ବୋଲ୍ :   ଧିନାକ ଧାଁଡ଼ା ୨ ଭାଦଡ଼ ୨

ଚାଲା ଧୀରେରେ ମାମା ହୋ ବୋଲେ

ଭାଗିନା ହୋ କଲେ ବୃନ୍ଦାବାନେ

ମାମା ଭାଗିନା କେୟସାନା ପିରତି ବୃନ୍ଦାବାନେ

ଚାଲା ଧୀରେରେ ହାୟରେ.../

ମାମାକେ ଦେବ ରୁଟୁମୁଟୁ ଜୁତା ବୃନ୍ଦାବାନେ

ଭାଗିନାକେ ଦେବ ଡାଲାରେ ଟାରୋୟାର ବୃନ୍ଦାବାନେ....

ମା.. ..ର ବୋଲ୍ : ଦିଦାଂଦାରା ୨ ଦିଂ ଦାଂ ଡାକେଟ୍ ଡାକ୍

ଗୀତ -

ମହାଲାଂକୋ ଡାଣ୍ଡେ ଡ଼ିୟୋ ଯେଫାରେ ୨

ହାଡ ଲେଲେ ଖେଜୁର ବିଡ଼ା ମୁଡ଼ ଲେଲେ ନାଚୋୟା

ଚାଲ ଭାଓଜି ଡିମ୍ପୁ ଟରେକ୍ ଯା । (ଦୁଇଥର)

ବାରି ଭୀତର ଝାୟେ ଝାଁୟେ ବିଲାଇ କାନ୍ଦାୟ୍ ୨

ଟେଟେଙ୍ଗା ମାନ୍ଦେରା ବାଜାୟ୍

ମୁସାଭାଇ ଝୁମାରି ଖେଲାୟ୍ ହୋ

ଟେଟେଙ୍ଗା ମାନ୍ଦେରା ବାଜାୟ୍

ମୁସାଭାଇ ଝୁମାରି ଖେଲାୟ୍ ହୋ ।

ପ୍ରଭାତ ଆସନ୍ନ । ପୂର୍ବାକାଶରେ ଉଦିତ ରବିର କିରଣ ବିଚ୍ଛୁରିତ । କୁକୁଡ଼ା ଡ଼ାକିବା ଆରମ୍ଭ

କଲେଣି । ଆକାଶରେ କୁଆମାନେ ଶବ୍ଦ କରି ଉଡ଼ିଗଲେ । ଗଛମାନଙ୍କର ଛୋଟ ଛୋଟ ପକ୍ଷୀମାନେ କିଚିରି ମିଚିର ଆରମ୍ଭ କଲେଣି । ବର୍ତ୍ତମାନ କାରାମ ରାଜାଙ୍କୁ ବିଦାୟ ଦେବାର ବେଳ । ଶେଷପୂଜା ସାଙ୍ଗକରି ରୋପଣ କରାଯାଇଥିବା କରମା ଗଛର ଡ଼ାଳଟି ଉଠାଇ ନେବେ ତିନିଜଣ ଯୁବତୀ । ସାଙ୍ଗରେ ପାଣି ଭର୍ତ୍ତି ଗାଗରୀ । କାରମା ରାଜାଙ୍କୁ ଗ୍ରାମ ପ୍ରଦକ୍ଷୀଣ କରାଇ ସମସ୍ତଙ୍କ ଘରେ ଘରେ ପୂଜା କରାଇ ଶେଷଥର ପାଇଁ ସ୍ନାନ ଅର୍ଚ୍ଚନା କରାଇ ବିଦାୟ ଦେବେ ସ୍ରୋତପାଣିରେ ସଙ୍ଗେ ସଙ୍ଗେ ଆରମ୍ଭ ହେବ ତାଳି ଝୁମୁରର ଗୀତ :-

ଧାମେନା କୋ ମାଠି ଧାସେ ପଡ଼ି ଗେଲା ଗୋ
ଆଜ ଗାଙ୍ଗା ଗାଙ୍ଗବଲା ଲାସିଜୁର ଗୋ (ଦୁଇଥର)
ନୋରେ ହୋ ଗାଙ୍ଗା, ପାରେ ହୋ ଯମୁନା
ମାଝା ଧାରେ କାରାମ୍ବା କୋ ଫୁଲ ଗୋ
ଆଜ ଗାଙ୍ଗା ଗାଙ୍ଗବାଲା ଲାମିଂଜୁର ଗୋ (ଦୁଇଥର)

ସମବେତ ଯୁବକ ଯୁବତୀମାନେ ପ୍ରଥମେ ଯିବା ପାହାନ ଘରକୁ, ତା'ପରେ ପୂଜାର ଓ ମାହାତୋ ଘରେ । ସେ ସବୁ ଘରର ଝିଅ ବହୁମାନେ ସିନ୍ଦୁର, ଅରୁଆ ଚାଉଳ, ଗୁଡି ଓ ପଇସା ଦେଇ ପୂଜା କରିବେ । କହିବେ : ଖ୍ୟାଲେ କରମ, ହାଁଡ଼ିଆ ପ୍ୟାଲେ ଔର ଗୁଡ଼ କି ଚଲା ଗେଲେ । ହା ରେ କରକ ହାୟରେ କରମ । ଏହିପରି ଗ୍ରାମ ପ୍ରତ୍ୟେକଙ୍କ ଘରକୁ ଯିବେ ଓ ଅବଶେଷରେ ନଦୀ ବା ନାଳ କୂଳକୁ ଯାଇ କରମ ରାଜାଙ୍କୁ ସ୍ନାନ କରାଇ ପୂଜା କରାଇବେ । ସେଠାରେ ଭୋଗ ନିବେଦନ କରିବା ପରେ ନଦୀରେ ଭସାଇ ଦେବା ତାଙ୍କର ଶେଷ ଗୀତଟି ବଡ଼ କରୁଣ ସ୍ୱରରେ-

ନାଇୟୋ ଦିୟାଦ ଭାରି ବା ବା ଦିୟାଦ ଭାରିରେ
ଗେନ୍ଦା ଫୁଲା ବାଗେଇଚା ଲାଗାୟ ୨
ନାଇୟୋ ମରି ଗେଲେରେ ବାବା ହୋର ଗେଲାରେ
ସେ ହୋ ଗେନ୍ଦା ଧସିୟୋ ଗେଁଲାୟରେ ୨

ଏହାପରେ ପ୍ରତ୍ୟେକ ନିଜେ ନିଜେ ସ୍ନାନ ସାରି ସଂଗୃହୀତ ଅର୍ଥ ଓ ଭୋଗ ସାମଗ୍ରୀ ସାଙ୍ଗରେ ଧରି ଫେରି ଆସିବେ । ସେଇସବୁ ଦ୍ରବ୍ୟକୁ ରାନ୍ଧିବେ, ଖାଇବେ ଓ ବିଶ୍ରାମ କରିବେ ।

କରମସାନି ଉତ୍ସବର ଗୀତ ଓ ପୂଜା ପଦ୍ଧତି ଆଲୋଚନା କରି ବସିଲେ ଦେଖାଯିବ ଏ ଉତ୍ସବ ମୂଳତଃ ସ୍ତ୍ରୀଲୋକ ମାନଙ୍କର ଉତ୍ସବ । ଭୁଦୋ ମାସ ଜମିରେ ବୁଣା ଯାଇଥିବା ଶସ୍ୟରେ

ଫୁଲ ଆସିବାର ସମୟ ଝଡ଼ ବା ବନ୍ୟା ଆସିବାର ସମ୍ଭାବନା ରହିଥାଏ – ତେଣୁ ଭୟ ହୁଏ ଫସଲ ନଷ୍ଟ ହୋଇଯିବ । ତେଣୁ ସ୍ତ୍ରୀ ଲୋକମାନେ ଏହି ସମୟରେ ନିଜ ଭାଇମାନଙ୍କର ଏବଂ ଅନାଗତ ସନ୍ତାନମାନଙ୍କର ନିରାପତ୍ତା ପାଇଁ ପ୍ରାର୍ଥନା କରି କରମବୃକ୍ଷ ଦେବୀଙ୍କର ପୂଜା କରନ୍ତି । ସେମାନେ ପ୍ରାର୍ଥନା କରନ୍ତି ଯେପରି ଜମିର ଫସଲ ଓ ଘରର ଭାଇ ଓ ସନ୍ତାନମାନେ ରୋଗ, ମୃତ୍ୟୁ ଓ ଅନିବାର୍ଯ୍ୟ ବିପଦ ହାତରୁ ରକ୍ଷା ପାଆନ୍ତି । ନାନା ପ୍ରକାର ଖାଦ୍ୟ, ପାନୀୟ, ନୃତ୍ୟ ଓ ଗୀତ ସହଯୋଗେ କରମସାନିଙ୍କର ମନୋରଞ୍ଜନ ପାଇଁ ପୁରୁଷମାନଙ୍କୁ ସାଙ୍ଗରେ ନେଇ ଚେଷ୍ଟା ଚାଲେ ସାରାଦିନ ଓ ସାରା ରାତି ଧରି ମିର୍ଧା ଓ ଓରାମ ମାନଙ୍କ ମଧ୍ୟରେ ଉତ୍ସବର କାହାଣୀ ପ୍ରାୟ ଏକା – ଯଦିଓ ପାର୍ଥକ୍ୟ ମଧ୍ୟ ଅଛି କିଛି କିଛି । ପାର୍ଥକ୍ୟ ପ୍ରଧାନତଃ ସଙ୍ଗୀତରେ । କେତେବେଳେ ଗାଁରେ ଦୁର୍ଭୀକ୍ଷ ମରୁଡ଼ି ଦେଖାଦେଲେ ବିଶେଷ କରମା ପୂଜା କରାଯାଏ । ଏହାର ନାମ ବୁଡ୍ଢୀ କରମାସାନି । ସମ୍ବଲପୁର ଠାରୁ ଦୂରରେ ବରଗଡ଼ ମହକୁମାର ୧୧ ମାଇଲ ଦକ୍ଷିଣରେଅଛି ବରପାଲି ଗ୍ରାମ । ସେଠାରେ କରମା ଦେବୀଙ୍କର ମନ୍ଦିର ରହିଛି । ଏହି ଗ୍ରାମ ମିର୍ଧା ଉପଜାତି ଅଧ୍ୟୁଷିତ ଗ୍ରାମ । ଏଠାରେ କରମା ଦେବୀଙ୍କର ମନ୍ଦିର ପ୍ରତିଷ୍ଠା ସମ୍ପର୍କରେ ଗୋଟିଏ କାହାଣୀ ଅଛି । ମିର୍ଧା ଭେଣ୍ଡିଆମାନେ ବଣକୁ ଯାଇଥିଲେ କରମସାନି ଡାଳ ଆଣିବା ପାଇଁ । ଦିନ ଗଡ଼ିଯାଇ ରାତି ଆସିଗଲା କିନ୍ତୁ ଭେଣ୍ଡିଆମାନେ ଫେରିଲେ ନାହିଁ । ଗାଁର ବୁଢ଼ାମାନେ ଭେଣ୍ଡିଆ ମାନଙ୍କୁ ଖୋଜିବା ପାଇଁ ଯାଇ ଦେଖିଲେ ଯେ ଭେଣ୍ଡିଆମାନେ ଗୋଟାଏ କରମାବୃକ୍ଷକୁ କେନ୍ଦ୍ର କରି ନାଚିବାରେ ଲାଗିଛନ୍ତି । ବୁଢ଼ାମାନଙ୍କୁ ଦେଖି କରମା ଦେବୀ କରମା ବୃକ୍ଷ ଉପରୁ କହିଲେ "ଗଛ ଉପରେ ଆଉ କେତେଦିନ ରହିବି ? ଗୋଟାଏ ଦେଉଳ ଗଢ଼ି ଦିଅ ।" ସେହି ଘଟଣାଠାରୁ ବରପାଲିରେ କରମସାନି ଦେବୀଙ୍କର ମନ୍ଦିର ପ୍ରତିଷ୍ଠା ହୋଇ ରହିଛି । ଆଜି ପର୍ଯ୍ୟନ୍ତ ସେହି ମନ୍ଦିର ମିର୍ଧା, କିଷାନ ଉପଜାତି ମାନଙ୍କର ପୂଣ୍ୟଭୂମି । ଭାଦ୍ର ମାସର ଏକାଦଶୀ ତିଥିରେ ଏଠାରେ ଖୁବ୍ ଆଡ଼ମ୍ବର ସହକାରେ କରମସାନି ପୂଜା ପାଳିତ ହୁଏ ।



# ପଶ୍ଚିମ ଓଡ଼ିଶାର ଆଉ କେତୋଟି ପ୍ରବଚନ

ନବୀନ କୁମାର ନେଗୀ

୧. 'ଆମ୍ଁ ପାଚଲେଁ ତଁମ ରଜା, ନଏଦ୍ ବଢ଼ଲେଁ କେଉଁଟ୍ ରଜା ।'

ଆମ୍ - ଆମ୍ବ, ତମ୍ - ପାଣ ଜାତୀୟ, ନଏଦ୍ - ନଦୀ ।

ଅର୍ଥାତ୍ - କେଉଁ ପରିସ୍ଥିତିରେ କାହାକୁ କି ପ୍ରକାର ସୁବିଧା ମିଳିଥାଏ ।

୨. 'ଆଁଏଲା ଗଲା ବାଏଁଗନ୍ ପଁଲ୍‌ହା, ଛେଲଁ ଖାଇ ଦେଲେଁ ଗଲା ।'

ଆଏଲାଗଲା - ଇତସ୍ତତଃ ହୋଇ ଉଠିଥିବା, ବାଏଗନ୍ - ବାଇଗଣ, ପଁଲ୍‌ହା - ଚାରା

ଅର୍ଥାତ୍ - କ୍ଷଣସ୍ଥାୟୀ ପଦାର୍ଥକୁ ଉପଲକ୍ଷ ଦିଆଯାଏ ।

୩. 'ଏକେଁ ପିଁଆ ତହିଁ ମହଙ୍ଗା ।'

ପିଆଁ - ସଢ଼ା, ମହଙ୍ଗା - ବଡ଼ାଦର

ଅର୍ଥାତ୍ - ଯାହା ସୁବିଧାରେ ମିଳିପାରେ ନାହିଁ ତା ପ୍ରତି ପ୍ରଯୁଜ୍ୟ ।

୪. 'ଏଭୁଁ ଏଡ଼େ ପାଏନ୍ ପାଏଲେଁ ହେବୁଁ କେଡ଼େ ।

ଓଳିଆରୁ ଗଜା ରୂପେ ପ୍ରଯୁଜ୍ୟ ।

୫. 'କରମ ଜାନିଁ କରମଙ୍ଗା ଫଲେଁ, ଲାଉଁ ଲଗାଲେଁ ତୁତ୍‌କା ଫଲେଁ ।'

କରମ୍ - କର୍ମ, ଜାନିଁ - ଜାଣିକରି, କରମଙ୍ଗା - ଏକ ପ୍ରକାର ରୁଚିକର ଫଳ,

ତୁତ୍‌କା - ଜହ୍ନି ଜାତୀୟ ଏକ ପ୍ରକାର ଫଳ କିନ୍ତୁ ପିତା ଲାଗେ ।

ଅର୍ଥାତ୍ - କର୍ମ ଦଶା ଭଲଥିଲେ ଅସମ୍ଭବ କାର୍ଯ୍ୟ ମଧ୍ୟ ସାଧନ ହୁଏ ମାତ୍ର ଦଶା ଭଲ ନଥିଲେ ଉତ୍ତମ କାର୍ଯ୍ୟ କରି ମଧ୍ୟ ମନ୍ଦ ଫଳ ମିଳିଥାଏ ।

ସଂସ୍କୃତ ଶ୍ଲୋକ - "ମାତୃଜଂଘାହି ବସସ୍ୟ ସ୍ତମ୍ଭୀ ଭବତି ବନ୍ଧନେ"ର ଅନୁକରଣ ।

୬. 'କାଉ ଡ଼ରେନ୍ କେ କୁସେର କାଁଡ଼୍'

କାଉ - କୁଆ, ଡ଼ରେନ୍ - ଡରାଣି, କୁସେର - ଆଖୁ, କାଁଡ଼ଂ - କାଣ୍ଡ (ତୀର) ।

ଅର୍ଥାତ୍ - ଭୟାତୁର ବ୍ୟକ୍ତିକୁ ନଗଣ୍ୟ ପଦାର୍ଥରେ ମଧ ଭୟ ପ୍ରଦର୍ଶନ କରାଯାଇ ପାରେ ।

୭. 'କଡ଼ାକେ ଟରି, କଡ଼ାକେ ମରି, କଡ଼ାକେ ବଉଡ଼ି ବେଉସି ପାର୍‌ଲେଁ ସୁନା ଖୁମ୍ଭେ ସୁନା କଲ୍‌ସ ତେରି ।'

ଟରି - ରକ୍ଷାପାଇ, ବେଉସି - ଯତ୍ନ୍‌କରି, ଖୁମ୍ଭେ - ଖୁମ୍ଭରେ, କଲ୍‌ସ - କଳସ, ତେରି-ସଞ୍ଚିକୃତ କରି ହେବ ।

ଅର୍ଥାତ୍ - ସାମାନ୍ୟ ପଦାର୍ଥ ମଧ ଯତ୍ନ୍‌କଲେ ଭବିଷ୍ୟତରେ ତହିଁରୁ ଲାଭ ମିଳିଥାଏ ।

ସଂସ୍କୃତ - କିଂ କ୍ଷଣସ୍ୟ କୁତୋବିଦ୍ୟା କିଂ କଣସ୍ୟ କୁତଃ ଧନଂ । କ୍ଷଣସ୍ୟ କଣସ୍ୟଚୈବ ମିଦ୍ୟାମର୍ଥଂ ଚ ଚିନ୍ତୟେତ୍‌ର ଅନୁକରଣ । ଆଉ ମଧ ବିନ୍ଦୁରେ ସିନ୍ଧୁର ପ୍ରଯୁଜ୍ୟ ମଧ । ଯତ୍ନ୍ କଲେ ରତ୍ନ୍ ମିଳେ ଅନୁକରଣରେ ।

୮. 'କଁସାରୀ ଘରର ପାରାକେ କୁଲାଁ ତପ୍ ତପ୍ ।'

କଁସାରୀ - କଂସାବାସନ ନିର୍ମାତାକରୀ ଜାତି ବିଶେଷ ।, ତପ୍ ତପ୍ - ଏକ ଧନ୍ୟାତ୍ମକ ଅବ୍ୟୟ ପଦ ।

ଅର୍ଥାତ୍ - ଶକ୍ତିଶାଳୀ ବ୍ୟକ୍ତି ତଥା ଭୟଙ୍କରରେ ଅଭ୍ୟସ୍ତ ବ୍ୟକ୍ତିକୁ ସାମାନ୍ୟ ଭୟ ପ୍ରଦର୍ଶନ କରିବା ।

୯. 'କଏଁରି କଁଟୁଆର ବଡ଼ା ବିଷ୍ ।'

କଏଁରୀ କଁଟିଆ - ବିଛାର ଏକ ଛୋଟ ପ୍ରକାର )

ଅର୍ଥାତ୍ - ଛୋଟ ପଦାର୍ଥ ମଧ ବୃହତ୍ କାମରେ୍ ଲାଗିଥାଏ ।

୧୦. 'କୁମ୍ଭାର ଘରର ବହ, ଝାଏଁଟ୍‌କେ ନୁହିଲେ ମାଏଟ୍ କେ ଯା ।'

ବହ - ବହୁ, ଝାଏଁଟ୍ - କାଠ ନିମିତ୍ତ, ନୁହିଲେ - ନଚେତ୍, ମାଏଟ୍‌କେ - ମାଟି ଆଣିବା ପାଇଁ ଯା ଆ ଆ ।

ଅର୍ଥାତ୍ - ସର୍ବଦା ଯେ କିଛିନା କିଛି କାର୍ଯ୍ୟରେ ବ୍ୟସ୍ତ ରହିବା ପାଇଁ ବାଧ ହେଉଥାଏ ।

୧୧. 'କୁସେର୍ ଜଗାସି ଚିକିର୍ ପୋ, କପା ଲଗାସି ବାପର୍ ପୋ ।'

କୁସେର୍ - ଆଖୁ, ଜଗାସି - ଚାଷ କରେ, ଚିକିର୍ ପୋ - ମୁର୍ଖ, ଜଗାଏ - ଚାଷକରେ, ବାପର୍ ପୋ - ଚାଲାକ୍ ।

ଅର୍ଥାତ୍ - ଆଖୁ ଚାଷୀକୁ ବହୁତ କ୍ଷତି ସହିବାକୁ ହୁଏ ମାତ୍ର କପାଚାଷୀର ସେତେ କ୍ଷତି ହୁଏ ନାହିଁ । କାରଣ କପାକୁ ବିଶେଷ କେହି ମାଗି ନେଇ ନଥାନ୍ତି ମାତ୍ର ଆଖୁକୁ କିଏ ଛାଡ଼େ କି ?

୧୨. 'କିଏ ଧାଇଁ ଧୁପି ବାର ତ କିଏ ବସିଥାଇ ତେର ।'

ଧାଇଁ ଧୁପି - ଅତି ଯତ୍ନରେ ଓ ବ୍ୟସ୍ତତା ସହକାରେ,. ବାର - ବିଫଳ, ତେର - ସଫଳ ।

ଅର୍ଥାତ୍ - ବିନା ପରିଶ୍ରମରେ ଲାଭ ମାରିନେବା ଏବଂ ପରିଶ୍ରମ କରି ମଧ୍ୟ ଆଶାନୁରୂପ ଫଳ ନ ପାଇବାରେ ପ୍ରଯୁଜ୍ୟ ।

୧୩. 'କିଏ ବଏଲାଁ ଡ଼ରଲି, କିଏ ବଏଲା ଡ଼ରାଲି ।'

ଅଥାର୍ତ - କାର କଥାରେ ଗୁରୁତ୍ୱ ଦିଆଯାଏ ଏବଂ କାହା କାହା କଥାରେ ଗୁରୁତ୍ୱ ଦିଅ ନଗଲେ କୁହାଯାଏ ।

୧୪. 'ଖେତର ତେଲ୍ ।'

ତେଲ - ଟେକା, ଅର୍ଥାତ୍ - ନଗଣ୍ୟ ତୁଚ୍ଛ ପଦାର୍ଥର ତୁଳନା, ଅଭିମାନ ବ୍ୟଞ୍ଜକରେ ବ୍ୟବହୃତ ହୁଏ । ଉଦାହରଣ - ମୁଇଁ କେନ୍ ଖେତର ତେଲ ଯେ ମଁତେ ବୁଝାଇବେ ।

୧୫. 'ଖର୍‌ଖସ୍ ଦିହେଁ ମଗଦେଲ୍ ଫୁଲ୍ ।'

ଖର୍‌ଖସ୍ ଦିହେ= ଇତଃସ୍ତତଃ ହୋଇଥିବା ଦେହରେ, ମଗ୍‌ଦେଲ ଫୁଲ= ଗେଣ୍ଡୁ ଜାତୀୟ ଏକ ଶୁଶୋଭି ପୁଷ୍ପ ।

ଅର୍ଥାତ୍- ବାନର ବେକରେ ମୋତିମାଳ ପରି ।

୧୬. 'ଖ୍‌ରଖରି ଘଁରେଁ ବାଜଲା ବଜା, ଠେଲକୋଁ ତୁନେଁ ଘି ପରଖା ।'

ଖର୍‌ଖରି= ଆତ୍ମବଡିମା ଯେ ପ୍ରଚାର କରେ । ଠେଲକୋ ଏକ ତୁଚ୍ଛ ବନ୍ୟଫଳ ।

ଅର୍ଥାତ୍- ଯୁକ୍ତି ମାଧ୍ୟମରେ ସାମାନ୍ୟ କଥାକୁ ମଧ୍ୟ ବଡ କରି ପ୍ରଚାର କରିବା । ଉପକୂଳ ଅଞ୍ଚଳର ତୋ ବାପ ଘର ଡମ୍ କହିବି କେତେ ? ଖଟ ଉପରେ ଧାନ ଶୁଖୁଛି ଏ ତେର ସଦୃଶ ।

୧୭. 'ଗାଁ ବାହାରର ଟଁ ଡିକେ ଡରି ।'

ଅର୍ଥାତ୍- ହଳଦୀ ପୁଣି ଅସାମାଜିକ ସ୍ତ୍ରୀକୁ ଗାଁର ସମସ୍ତେ ଭୟ କରି ଏହା କହିଥାନ୍ତି ।

୧୮. 'ଗହ୍ମାପୁନି ଭୁଗଲେ ଜହ୍ନିମାର୍ ଭୁଗଲେ ଜହ୍ନିମାର୍ ଭୁଜା ପାଏନ୍ ସାନି ସାନି ।'

ଗହ୍ମାପୁନି=ଶ୍ରାବଣ ପୂର୍ଣ୍ଣମୀ ଭୁଜା ମୁଡ଼ି, ପଏନ୍=ପାଣି, ସାନି ସାନି= ମିଶ୍ରିତ କରି ।

ଅର୍ଥାତ୍= ଶ୍ରାବଣ ପୂର୍ଣ୍ଣମୀରେ କରୁଥିବା ମଜଲିସ୍ ପରି ଯାହାକୁ ସୁଯୋଗ ମିଳିଛି ତା ପ୍ରତି କହିବାକୁ ହୁଏ ।

୧୯. ଗୁଟେ ଆଁଖି ଦଏବ୍ ସାଖି= ଯାର ଏକମାତ୍ର ସନ୍ତାନ ଥାଏ ତାକୁ ଛଳ ଶ୍ଳେଷରେ ଉପମା ଦେଇ କହିବାକୁ ହୁଏ ।

୨୦. 'ଗାଁ ବଲ୍‌ଦିଆ ବିକାଏ ନାଇଁ ଯଦି, ବିକାବା କଉତି ନାଇଁ।'

ଅର୍ଥ- ବଲଦିଆ-ବ୍ୟବସାୟୀ, ବିକାଏ ନାଇଁ ଦରଛିଣ୍ଡେ ନାହିଁ, ବିକାବା=ଦର ଛିଣ୍ଡିଲେ, କଉତି ନାଇଁ=କ୍ଷତି ହୁଏ ବା କ୍ଷତିରେ ପଡେ।

ଅର୍ଥାତ୍- 'ଗାଁ କନିଆଁ ସିଂଘାଣି ନାକ'ର ଅବଲମ୍ବନରେ ପ୍ରଯୁଜ୍ୟ।

୨୧. 'ଗାଁ ବାମ୍‌ହନାଁ, ଖେଁତ୍ ସମଁନ୍ନା, ଘରଁ ଧମନା ହେଁଲେଁ ନାଶ ଯାଏସି।'

ଅର୍ଥାତ୍- ବ୍ରାହ୍ମଣ ଗାଁ, ସଁମନା-ତୃଣ ଯାହାକି କ୍ଷେତକୁ ନଷ୍ଟ କରେ। ଧମନା=ଡାମଣା ସାର ଏସବୁ ଧ୍ୱଂସର ପରିଚାୟକ ରୂପେ ପ୍ରଯୁଜ୍ୟ।

୨୨. 'ଘର ପୁଡ଼ିକେ ଛୁଁଆ କୁଡ଼ି।'

ଘରପୁଡ଼ି=ଘରପୋଡ଼ି, ଛୁଁଆକୁଡ଼ି= କୂଅ ଖୋଳାଇବା।

ଅର୍ଥାତ୍- ବିପଦ ପହଞ୍ଚିଲେ କାମର ମୂଳଦୂଆ ସ୍ଥାପନ କରିବା।

୨୩. 'ଘି ବାଲାର ଘି ଢଲଲେ ନଡିଆ ବାଲାର ନଡିଆ ଢଲସି।'

ଅର୍ଥାତ୍- ଯାର ପଦାର୍ଥ ନଷ୍ଟ ହୋଇଥାଏ, ନିଜର ନଷ୍ଟ ହୋଇ ନଥିଲେ ମଧ୍ୟ ତାକୁ ବିଦ୍ରୂପ କରିବା ରୂପେ ଦେଖେଇ ଦେବା ସ୍ଥାନରେ ପ୍ରଯୁଜ୍ୟ।

୨୪. 'ଚୋର୍‌କେ ଚବରା ଶିଖାସି।'

ଚୋର୍-ଚୋର, ବବରା ଶିଖାବା=ପଳାୟନ କରିବାର ବାଟ ଶିକ୍ଷା ଦେବା।

ଅର୍ଥାତ୍- ଦୋଷୀ ନିଜେ ସାବଧାନ କରିବା।

୨୫. ' ଚୁଉର ମାଁ ଯଦର୍‌ଭି କାନ୍‌ଦେଁ ଗୁନ୍ ସୁମରି କାନଦେଁ।'

ଅର୍ଥାତ୍- ଚୋର ମା ଲାଜେ ନ କାନ୍ଦେ, ଯଦି କାନ୍ଦେ ଦୁଆର ଦେଇ କାନ୍ଦେ।

୨୬. 'ଚୁଉର୍ ଠାନେଁ ମାନ୍ କରି କାଏଁ ଖପରେ ଖାଏବ।'

ମାନ୍‌କରି=ଅଭିମାନ କରି, ଖପ୍‌ରେ=ମାଟି ପାତ୍ରରେ

ଅର୍ଥାତ୍- ସାମାନ୍ୟ ବିନାଶରେ ଦୁଃଖ କରି କାମ ଆରମ୍ଭ ନ କରିବା।

୨୮. 'ଚତ୍‌ରୀ ପିନ୍‌ସି ସୁନାଁ, ଉଜାରୀ ପିନ୍‌ସି କନା।'

ଚତ୍‌ରୀ-(ଚାଲାକ ସ୍ତ୍ରୀ), ପିନସି ପିନ୍ଧେ ପରିଧାନ କରେ। ଉଦାରୀ-ଉଦାରତା ଥିବା ସ୍ତ୍ରୀ ତ ନୁହେଁ; ଲୁଗାପରି ସାମାନ୍ୟ ବେଶ ପରିପାଟୀକୁ ଯେଉଁମାନେ ବେଶୀ ଭଲ ପାଆନ୍ତି।

୨୯. 'ଚାହେଁଲେଁ ଚକ୍‌ଲି ଗଡେଲେଁ ମଡ଼ା।'

ଅର୍ଥାତ୍- ଯେଉଁ ବ୍ୟକ୍ତିର କିଛି ଅପୂର୍ଣ୍ଣ ନୁହେଁ ବା ଯେ ଇଛା କରି ସବୁ କରି ପାରନ୍ତି। ବଡିମା ପ୍ରକାଶରେ ବ୍ୟବହୃତ ହୁଏ।

୩୦. 'ଜାଲ୍ ମଲିଆ କାଏଁ କୁଟୁମ୍ ପୁଷେ, କଲା ମେଘେ କାଏଁ ପାଏନ୍ ବରଷେ।'

ଜାଲମଲିଆ-ବାଚାଳ, କୁଟୁମ୍=ପରିବାର, ପୁଷେ=ପୋଷଣକରେ, କଳାମେଘେ-ପ୍ରବଳ ଝଡ଼ ତୋଫାନ୍ ସହ ଆସୁଥିବା ମେଘରେ, ପାଏନ୍=ପାଣି, ବରଷେ= ବର୍ଷା ହୁଏ।

ଅର୍ଥାତ୍- ଏସବୁ ନିରର୍ଥକ ହୁଏ।

୩୧. 'ଝାର ମଲ ମଲ୍ ପିପଲ ପତର୍ ପାଏନ୍ ମଲ୍ ମଲ୍ କେରାଲି, ଗାଁ ମଲ୍ ମଲ୍ ରାଆଁଡ଼ି ଛାର୍‌ରୀ, ସଭା ମଲ୍ ମଲ୍ ଭଁଡ଼ାରି।

ଝାର=ବନ, ପିପଲ=ଅଶ୍ୱତଥ, ପତର୍=ପତ୍ର, ମଲ ମଲ୍=ଅସ୍ଥିର, କେରାଲି=କେରାଣ୍ଡି, ରାଆଁଡ଼ି=ବିଧବା, ଛାର୍‌ରୀ= ପରିତ୍ୟକ୍ତା, ଭଣ୍ଡାରୀ=ବାରିକ।

ଅର୍ଥାତ୍- ମାନେ ସଫରି ଫର୍‌ଫରାୟତେ ତୁଲ୍ୟ।

୩୨. 'ନିଜର ବୁଧି ଠାକୁର, ପରର ବୁଧି କୁକୁର୍।'

ଠାକୁର ଉଙ୍କମ, ବୁଧି=ବୁଦ୍ଧି।

ଅର୍ଥାତ୍- ନିଜ ବୁଦ୍ଧି ଠାକୁର ପରବୁଦ୍ଧି କୁକୁରର ଅପଭ୍ରଂଶ ମାତ୍ର।

୩୩. ' ଠାନ୍ ଜାନିଁ ଧାନ୍ ପାଚସି।'

ଠାନ୍=ସ୍ଥାନ, ଜାନିଁ=ଜାଣି, ଧାନ୍=ଧାନ, ପାଚସି=ଫଳେ।

ଅର୍ଥାତ୍- ସୁବିଧା ସୁଯୋଗ ଦେଖି କାର୍ଯ୍ୟ ଆରମ୍ଭ କରିବା ଠାରେ ପ୍ରଯୁଜ୍ୟ।

୩୪. 'ତୁଇ କହୁତା ଝାଁଡ଼ିଝାଁଡ଼ି ମୁଇଁ ଦେଇଛେଁ ମୁଁହୁଁ କେ ଆଁଡ଼ି।'

ଝାଡ଼ି ଝାଡ଼ି= ଚଣୁଆଁ ଭାବେ, ମୁହଁ ଆଡ଼ି ଦେବା=ପଛ କରିବା, ଅବଜ୍ଞା କରିବା।

ଅର୍ଥାତ୍ - କଡ଼ାକଥା ପ୍ରତି କର୍ଣ୍ଣପାତ ନ କରିବା।

୩୫. 'ତମର୍‌ଟା ଶ୍ରିର୍‌ମୁଖ, ଆମର୍‌ଟା ଥୁତନାଁ।'

ଶିର୍‌ମୁଖ=ଶ୍ରୀ ମୁକର ଅପଭ୍ରଂଶ, ଥୁତନା=ମୁହଁ।

ଅର୍ଥାତ୍- ଅନ୍ୟର କଥାକୁ ଯେ ଗ୍ରହଣ ନ କରି କେବଳ ନିଜର ବଡାଇ ପ୍ରକାଶ କରନ୍ତି ତାଙ୍କ ପ୍ରତି ପ୍ରଯୁଜ୍ୟ।

୩୬. 'ଦେଖା ସୁଖା ଉତ୍‌ଶା ।'

ଦେଖା ସୁଖା=ଅନୁକରଣ କରି, ଉତ୍‌ଶା=ପୁରୀ ।

ଅର୍ଥାତ୍- ଅନୁକରଣ କାରୀ ପ୍ରତି ପ୍ରଯୁଜ୍ୟ ।

୩୭. 'ଦେ କେ ଦେଖେଇ ଦେହେରୀ ଖାଏ ।'

ଦେ କେ= ଦିଅଁଙ୍କୁ, ଦେହେରୀ= ପୂଜାରୀ (ପୂଜକ) ।

ଅର୍ଥାତ୍- କର୍ତ୍ତାଙ୍କୁ ଭୁଲାଇ କେବଳ ନେଲେ ।

୩୮. 'ଧୁବା ଚହଲିଆ ଶଣ୍ଡାରୀ-ଫୁଲା ଘରେ ଭାତ ନାଇଁ ଟଟଲା ନୁରା ।'

ଚହଲିଆ=ଠାଣିବାଲା, ଫୁଲା=ଆତ୍ମଭିମାନୀ, ଟଟଲା=ଗରମ, ନୁରା=ଖୋଜା ।

ଆତ୍ମାଭିମାନୀ ପ୍ରତି ପ୍ରଯୁଜ୍ୟ ।

୩୯. 'ଧୁବା, ଭଣ୍ଡାରିର କୁସେର ବାଏର୍, ହିଁସା ଅହଁକାରେ ମଲା କୁସେର ।'

ବାଏର୍=ବାଡି, ହିଁସା=ହିଂସା

ଅର୍ଥାତ୍- ପରସ୍ପର ବିବାଦ୍ୟମାନ ଦୁଇ ବ୍ୟକ୍ତିଙ୍କର ମିଶ୍ରିତ କାର୍ଯ୍ୟ ଏପରି ଦଶା ପାଇଥାଏ ।

୪୦. 'ଧୀର୍ ପାଏନ୍ ପଥର କାଟେ, ହରବର୍ ହେଲେ, ଆଁଠୁ ଗାଁଏଠ୍ ଫାଟେ ।'

ଧୀର ପାଣି ପଥର କାଟେର ଅବଲମ୍ବନ,

ଅର୍ଥାତ୍- ଅତି ଚଞ୍ଚଳ ଭଲନୁହେଁ ପରିସ୍ଥାନର ପ୍ରଯୁଜ୍ୟ ।

୪୧. 'ପଟରି ସୁନାକେ ମାହାନ୍ ଦୀଆ ।'

ପଟରି ସୁନା- ଖାଣ୍ଟି ସୁନା, ମହାନଦୀଆ= ଏକ ପ୍ରକାର ନିକୃଷ୍ଟ ଧରଣର ସୁନା= ମହାନଦୀରୁ ତୁମା, ସୋନପୁର ପ୍ରଭୃତିର ଲୋକେ ଏ ପ୍ରକାର ସୁନା ନଦୀବାଲିରୁ ସଂଗୃହୀତ କରୁଥିଲେ ।

ଅର୍ଥାତ୍- ଭଲ ପାର୍ଥକୁ ନଷ୍ଟ କରିବା, "ମଳୀନ କୁରୁତେ ଧୂମଂ ସର୍ବଥା ବିମଳାମ୍ବରଂ" ର ଅନୁକରଣ ପରି ମନେ ହୁଏ ।

୪୨. 'ପରେ କାଏଁ ମାନ୍, ଅଲନେଁ କାଏଁ ସୁଆଦ ।'

ପରେ ସମନ୍ଧଥିବା ବ୍ୟକ୍ତିଠାରେ । ମାନ-ଅଭିମାନ । ଅଲନେ-ଅଲଣାରେ ସୁଆଦ- ମଧୁରତା । ସୁଆଦ-ମଧୁରତା ।

ଅର୍ଥାତ୍- ବିରକ୍ତି ବ୍ୟଞ୍ଜକ ନିରର୍ଥକ ରୂପେ ବ୍ୟବହୃତ ।

୪୩. 'ବାର ପୁଁନିର ପିଠାଖାଇ କେଭେଁ ମନ ହରସ୍ ନାଇଁ ।'
ପୁଁନି-ପର୍ବ, କେଭେଁ-କଦାପି, ହରସ-ଆନନ୍ଦ ।
ଅର୍ଥାତ୍- ଯେ ସର୍ବଦା ଗମ୍ଭୀର ଭାବରେ ଥାଏ ।

୪୪. 'ଭଣ୍ଡାରୀ ବିହାଥ୍ ସଭେ ଠାକୁର ।'
ବିହାଥ୍-ବିବାହରେ, ସଭେ-ସମସ୍ତେ, ଠାକୁର-ମାଲିକ ।
ଅର୍ଥାତ୍- ଯେଉଁଠାରେ ସମସ୍ତେ ମୁରବୀ ପଣିଆଁ ଦେଖାନ୍ତି ।

୪୫. 'ଭୁରସି ମୁଡ଼ି କୁଆଘରା, ପାଏନ୍ ପାଏଲେଁ ଟରାବୁରା ।'
ଭୁରସି ମୁଡ଼ି-ଯେଉଁ ସ୍ତ୍ରୀ ବା ବାଳିକା କେଶର ଯତ୍ନ ନିଏ ନାହିଁ, କୁଆଘରା-କୁଆବସା, ପାଏନ୍-ପାଣିବର୍ଷା ହେଲେ, ଟରାବୁରା-ଦୁର୍ଦ୍ଦଶା ହୁଅନ୍ତି ।
ଅର୍ଥାତ୍- ତୁଳନା ଏହିକି ଯେ ଯେଉଁମାନେ କେଶର ଯତ୍ନ ନେଇ ନଥାନ୍ତି ଉକୁଣୀ ହେତୁ କୁଆ ନିଜ ବସାରେ ବର୍ଷା ସମୟରେ ଅପଦସ୍ତ ହେଲା ପରି ଦୁଃଖ ପାଆନ୍ତି ।

୪୬. 'ଭୁଏ କି ଭଣ୍ଡାରି ।'
ଭୁଏ-ଗରୁଡ଼ ।
ଅର୍ଥାତ୍- ଯାହାଠାରେ କିଛି ଦରକାର ନଥାଏ ତା ପ୍ରତି ପ୍ରୟୋଗ କରାଯାଏ ।

୪୭. 'ଭଣ୍ଡାରି ଦେଖିଲେ ଆଁଠୁଆତୁ ନଖ ।'
ଅର୍ଥାତ୍- ସୁବିଧା ପାଇଲେ ନାଭିରୁ ପାଦେ ଅସୁବିଧା ବାହାର କରି ସୁବିଧା କରିବା ପାଇଁ ଚେଷ୍ଟା କରିବା ।

୪୮. 'ମୁଲିଆ ଚାପକ୍ ମାନ୍ କଲା । ତାର ମାନ୍କ ହାଁଏନ କଲା ।'
ଚାପକ୍-ବିଚରା, ମାନ୍ କଲା-ଅଭିମାନ୍ କଲା, ମାନକ୍-ମାଣକ (ମାପିବା ମାଣ) ହାଁଏନ୍-କ୍ଷତି ।
ଅର୍ଥାତ୍- ଜାଣି ଜାଣି ଗର୍ବରେ ଯେ ନିଜର କ୍ଷତି କରେ ତା ପ୍ରତି ପ୍ରଯୁଜ୍ୟ ।

୪୯. 'ମାର ଦମ୍କେ, କାହାକେ କହିଲେ କିଏ ଚମକେ'
ଅର୍ଥାତ୍- ତାଙ୍କୁ କୁହାନଗଲେ ମଧ୍ୟ ଅନ୍ୟର କଥାରେ ଯେ ଚିଡ଼ନ୍ତି ତାଙ୍କ ପ୍ରତି ପ୍ରଯୁଜ୍ୟ ।

୫୦. 'ମାଲିକେ ଛେଲି ଅତୁଆ ।'
ଅର୍ଥାତ୍- ଯା ପକ୍ଷେ ଯାହା କ୍ଷତିକାରକ ହୋଇଥାଏ ତା ପ୍ରତି ପ୍ରଯୁଜ୍ୟ ।

୫୧. 'ମାହାତି ଜାତି, ଉଧାର ପାଏଲେଁ ହାତୀ ଘିନ୍‌ନ୍ତି ।'

ମାହାତି-ମାହାନ୍ତି, ଉଧାର-ଧାର, ଘିନନ୍ତି-କିଣନ୍ତି ।

ଅର୍ଥାତ୍- ଯେ ସୁବିଧା ପାଇ ସବୁ ସୁବିଧା କରି ନେବାକୁ ଚାହେଁ ତା ପ୍ରତି ପ୍ରଯୁଜ୍ୟ ।

୫୨. 'ମାହାଲିଁଆ ପାଏଲେଁ ମହରା ଖାଏସି ।'

ମାହାଲିଆ-ବିନାମୂଲ୍ୟରେ, ମହରା-ବିଷ ।

ଅର୍ଥାତ୍- ବିନାମୂଲ୍ୟରେ ପାଇଲେ ଯାହା ଇଛା ତାହା ନେବା ।

୫୩. 'ଯେନ୍‌ତା ଗୁରୁକେ ସେନ୍‌ତା ଚାଲା, ହରତା ମାଁଗଲେ ବେହେରା ଦେଲା ।'

ଯେନ୍ ତା- ଯେପରି, ସେନ୍‌ତା-ସେପରି, ଚାଲା-ଶିଷ୍ୟ, ହର୍‌ତା-ହରିତା, ବେହେରା-ବାହାଡା ।

ଅର୍ଥାତ୍- "ଯେମିତି ଦିଅଁଙ୍କୁ ସେମତି ପୂଜା" ନକଲ ପରି ।

୫୪. 'ଯାର ବଉଁଶେ ବାଘ୍ ଲାଗିଥିସି ସେ ଗୁଛା ଦେଖଲେ ଡରସି ।'

ଯାର୍-ଯାହାର, ବଉଁଶେ-ବଂଶରେ, ବାଘ୍-ବାଘ, ଗୁଛା-ବୁଦା ।

ଅର୍ଥାତ୍- ଅନୁଭବୀ ସାମାନ୍ୟ ଭୟର କାରଣରେ ଭୟକରେ ।

୫୫. 'ଯାଚଲା ନାଇଁ ଖାଉଁ ଉଚକିଲା ଖାଉଁ, ଶିକା ଡଲ୍ ଡଲ୍ ଗୁଡ଼ଉ ଥାଉଁ ।'

ଯାଚଲା-ଯାଚିକରି ଦେବା, ଉଚକିଲା-ଶିକାରେ ଓହଳାଇ ଦେବା, ଶିକା-ପଦାର୍ଥ ରଖିବା ବା ଓହଳାଇବା ପଦାର୍ଥ ବିଶେଷ, ଗୁଡ଼ଉଥାଉଁ-ଧାଇଁବା ।

ଅର୍ଥାତ୍-ଯାଚିଦେଲେ ନ ଖାଇ ପରେ ଚୋରୀକରି ନେବା ।

୫୬. 'ଯାର୍ ବୁଆ ଚଢେ ଘୁଡା, ତାର୍ ପୁଓ ଥୁଡ଼ା ଥୁଡ଼ା ।'

ବୁଆ-ବାପା, ଘୁଡ଼ା-ଘୋଡ଼ା, ପୁଓ-ପୁତ୍ର, ଥୁଡ଼ା ଥୁଡ଼ା-କିଛି କିଛି ।

ଅର୍ଥାତ୍- ବାପ ଗୁଣେ ପୁଅ ।

୫୭. 'ଯେ ଦେହେରୀ ସେ ପୁଝାରୀ ଅଗ୍‌ତା ପଚ୍‌ରୀ ସବୁ ତାହାରି ।'

ଦେହରୀ-ଦେବୀପୂଜକ, ପୁଝାରୀ-ପୂଜକ, ଅଗ୍‌ତା ପଚ୍‌ରି-ଭୋଗ, ଅହ୍ମଣିଆ ।

ଅର୍ଥାତ୍- ସବୁ ପଦାର୍ଥ ଯେ ଆତ୍ମସାତ୍‌କରେ ତା ପ୍ରତି ପ୍ରଯୁଜ୍ୟ ।

୫୮. 'ଯିଏ ଗୁରସେ ପୁଡ଼ି ମର୍‌ସି ସେ ମହି ଦେଖିଲେ ଡ଼ରସି ।'

ଗୁରସେ-ଗୋରସରେ, ମହି-ଘୋଳଦହି ।

ଅର୍ଥାତ୍- ଅନୁଭବି ସାମାନ୍ୟ ପଦାର୍ଥରେ ମଧ ଭୟ୍ କରିଥାଏ ଯାର ଦୁର୍ବଳତା ଥାଏ ।

୫୯. 'ଲାଜ୍ ନାଇଁ ଥାଏଁ ଲଜଉ ଥାଏଁ, ଫଟା ମାନ୍ଦଲ୍ ବଜଉ ଥାଏଁ ।'

ମାନ୍ଦଲ୍ - ଏକ ବାଦ୍ୟ ବିଶେଷ ।

ଅର୍ଥାତ୍ - ନିର୍ଲଜ ବେହିଆ ପ୍ରତି ପ୍ରଯୁଜ୍ୟ ।

୬୦. 'ଲାଜ୍ ନାଇଁ ଥିସି ଯାହାର୍ ମୁଖେ ଚରେଇ ଯାଏଁସି ଉଜଲ୍ ପଖେ ।'

ଅର୍ଥାତ୍ - ଲାଜ ମନ ମାଡ଼ଇ ଯେବଣ ମୁଖେ ଚୋରୀ କରୁଥାଏ ଉଜ୍ଜ୍ୱଳ ପଖେ ।

୬୧. 'ଷାଠେ ଶୁଲ୍କେ ପଢ଼େ ଶୁଆ, ବିଲେଇ ଦେଖିଲେ ଅଚାବୁହା ।'

ଷାଠେ - ଷାଠିଏ, ଶୁଲ୍କ - ଶ୍ଳୋକ, ଶୁଆ - ଶୁକପକ୍ଷୀ, ଅଚାବୁହା - ଭୟଭିତ ।

ଅର୍ଥାତ୍ - ସବଳ ଥାଇ ମଧ ଶତ୍ରୁ ପ୍ରତି ସମସ୍ତଙ୍କର ଭୟ ତଥା ଦୁର୍ବଳତା ଥାଏ ।

୬୨. 'ସୀତା କଏଁତା, ରାଇଜ ଯାକର୍ ତାର୍ ପୁଓ ଘଏତା ।'

କଏଁତା-କୁନ୍ତୀ, ରାଇଜ-ରାଜ୍ୟ(ପୃଥିବୀ), ଯାକର-ସବ. ଘଏତା - ସ୍ୱାମୀ, ପୁଓ-ପୁତ୍ର ।

ଅର୍ଥାତ୍ - ଯେ ସମସ୍ତଙ୍କୁ ନିଜର କରେ । ମାତ୍ର ଏହା ସାଧାରଣତଃ ସମଲୋଚନାର ବାକ୍ୟ ରୂପେ ପ୍ରୟୋଗ କରାଯାଇ ଥାଏ ।

୬୩. 'ସିଧା ଆଙ୍ଗଠିଥି ଘି ନାଇଁ ବାହାରେ ।'

ଆଙ୍ଗଠି - ଆଙ୍ଗୁଳି, ଥି - ରେ, ଘି - ଘିଅ ।

ଅର୍ଥାତ୍ - ବିନା କପଟରେ ବି ବିନା ବାଧବାଧକତାରେ କାର୍ଯ୍ୟ ହାସଲ ହେଉ ନଥିଲେ ପ୍ରଯୁଜ୍ୟ ହୋଇଥାଏ ।

୬୪. 'ହାଏଁଡ଼ି ଭାଙ୍ଗ୍‌ଲେ ଖପରା, ମନ ଭାଙ୍ଗିଲେଁ ଚୁପ୍‌ରା ।'

ଖପରା - ଭଙ୍ଗାଖଣ୍ଡା, ମନ୍‌ଭାଙ୍ଗିଲେ - ମନଖଟା ହେଲେ ବା ବନ୍ଧୁତା ଭାଙ୍ଗିଗଲେ ।

ଚୁପ୍‌ରା - ଚୁଗୁଲି ମିଛ ।

୬୫. 'ହଲଦୀର କାଏଁ ରଙ୍ଗ୍, ପରଦେଶୀର କାଏଁ ସଙ୍ଗ୍ ।'

ପରଦେଶୀ - ବିଦେଶୀ, ସଙ୍ଗ୍ - ସାଥୀ, ଏଭଳି ପ୍ରଦାର୍ଥ କ୍ଷଣସ୍ଥାୟୀ ।

ଅର୍ଥାତ୍ - ଏ କଥାଟି ଉପଲକ୍ଷେ ଦେବାରେ ବ୍ୟବହୃତ ହୁଏ ।

୬୬. 'ହର୍‌ବରିଆର୍ ଦୁଇଭାଗ୍ ।'

ହର୍‌ବରିଆ - ଚଞ୍ଚଳ ବ୍ୟକ୍ତି, ଦୁଇଭାଗ - ବେଶୀକଷ୍ଟ ।

ଅର୍ଥାତ୍ - ବିଳମ୍ବେ କାର୍ଯ୍ୟ ସିଦ୍ଧିର ବିପରୀତ ଅର୍ଥରେ ପ୍ରଯୁଜ୍ୟ ।

# ପଶ୍ଚିମ ଓଡ଼ିଶାର ପର୍ବ-ପର୍ବାଣୀ ପରିପ୍ରେକ୍ଷୀରେ କରମସାନୀ

ଶୁକଦେବ ସାହୁ

କୌଣସି ଅଞ୍ଚଳ ବିଶେଷର ସାଂସ୍କୃତିକ ବିଚାର ପ୍ରସଙ୍ଗରେ ସେ ଅଞ୍ଚଳର ଅନୁସୃତ ବିଭିନ୍ନ ପର୍ବ ପର୍ବାଣୀ, ଧର୍ମାନୁଷ୍ଠାନ ଇତ୍ୟାଦିର ବିଚାର ଅପରିହାର୍ଯ୍ୟ । କାରଣ ଏ ଗୁଡ଼ିକର ମାଧ୍ୟମରେ ସେହି ଅଞ୍ଚଳର ଜନସାଧାରଣଙ୍କର ବିଶ୍ୱାସ, ଚିନ୍ତା - ଚେତନା ଓ ହୃଦୟର ଭାବ ପ୍ରକାଶିତ ହୋଇଥାଏ । କରମସାନୀ ସେହି ଦୃଷ୍ଟିରୁ ଏକ ବିରାଟ ଅଞ୍ଚଳର ଏକ ପୂଜା ଅନୁଷ୍ଠାନ, କେବଳ ଓଡ଼ିଶାର ପଶ୍ଚିମାଞ୍ଚଳରେ ନୁହେଁ, ମଧ୍ୟପ୍ରଦେଶର ସାରଙ୍ଗ ଗଡ଼, ଫୁଲଝର ପର୍ଯ୍ୟନ୍ତ ଏହାର ବ୍ୟାପ୍ତି ରହିଛି । କାରଣ ଏଥିରେ ବ୍ୟବହୃତ ବହୁତ ଗୀତ ଲରିଆ ବୋଲିରେ ବୋଲା ଯାଇଥାଏ, ଏବଂ ସେହି ସ୍ଥାନ ମାନଙ୍କରେ ଏବେ ସୁଦ୍ଧା ତାହା ପାଳିତ ହୋଇ ଆସୁଅଛି ।

'କରମସାନୀ' ବା ସଂକ୍ଷେପରେ 'କର୍ମା' ଶବ୍ଦଟି ସମ୍ଭବତଃ କର୍ମସ୍ୱାମୀର ସ୍ତ୍ରୀ ଲିଙ୍ଗରେ 'କର୍ମସ୍ୱାମୀନୀ'ର ଅପଭ୍ରଂଶରୁ ସୃଷ୍ଟ ହୋଇଛି । ପ୍ରାକ୍ ଐତିହାସିକ କାଳରୁ ମଣିଷ ପ୍ରକୃତି ମଧ୍ୟରେ ଯେଉଁଠି ଦେଖିଛି ବୈଚିତ୍ର୍ୟ, ପ୍ରକୃତି ଜଗତର ବିଶାଳତା, କୌଣସି ବସ୍ତୁକି ଯଦି ତା'ର କଳ୍ପନା ସୀମାରେ ଊର୍ଦ୍ଧ୍ୱରେ ଦେଖିଛି, ସେ ସମସ୍ତଙ୍କୁ ସେ ନାନା ଦେବାଦେବୀ ଭାବରେ ବର୍ଣ୍ଣନା କରି ତାର ପୂଜା କରିଆସିଛି । ମଣିଷର ଆଦି ଯୁଗରେ ସଂହତ ଜୀବନର ପ୍ରଥମାବସ୍ଥାରେ ମାତୃକୈନ୍ଦ୍ରିକ ସମାଜରେ ସୃଷ୍ଟିକାରିଣୀ, ପାଳନ କର୍ତ୍ତ୍ରୀ ମାତୃ ମୂର୍ତ୍ତିର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ସୁତରାଂ ଯେଉଁଠି ଶକ୍ତି ରହିଛି, ଅଥଚ ମାନବ ସମାଜର ହିତ ଅହିତ ସହିତ ତା'ର ଅଙ୍ଗାଙ୍ଗୀ ସମ୍ପର୍କ ବିଦ୍ୟମାନ, ତାକୁ ସେହି ଆଦ୍ୟଜନନୀ, ଆଦ୍ୟଶକ୍ତି ମନେକରି ପୂଜା କରିଆସିଛି । ତା'ର ବିଭିନ୍ନ ରୂପ ଓଡ଼ିଶାର ବିଭିନ୍ନ ପ୍ରାନ୍ତରରେ ଭିନ୍ନ ଭିନ୍ନ ରୂପ ନେଇ ଦେଖା ଦେଇଛି । କେଉଁଠି ସେ ଝଙ୍କଡ଼ ବାସିନୀ ମା' ଶାରଳା, କେଉଁଠି ବିରଜା, କେଉଁଠି ସମଲେଶ୍ୱରୀ ତ କେଉଁଠି କରମସାନୀ । ଏମାନଙ୍କର ବିଭିନ୍ନ ପ୍ରକାଶ ମାତ୍ର ।

'କର୍ମ' ଶବ୍ଦର ଦୁଇଗୋଟି ଅର୍ଥର ପ୍ରଚଳନ ଦୃଷ୍ଟିରୁ କରମସାନୀ ଶବ୍ଦର ମଧ୍ୟ ଦୁଇଟି ଅର୍ଥ କରାଯାଇ ପାରେ । କର୍ମକୁ କାର୍ଯ୍ୟ ଦୃଷ୍ଟିରୁ ବିଚାର କଲେ, ମଣିଷ ତା'ର ଆଦିମ ସ୍ତରରୁ ଆଜିର

ସଭ୍ୟ ଜଗତରେ ସେ ଉପନୀତ ହୋଇପାରିଛି କେବଳ ତା'ର କାର୍ଯ୍ୟ ବଳରେ । ଖାଦ୍ୟ, ବସ୍ତ୍ର ଭଳି ମୌଳିକ ଆବଶ୍ୟକତାର ପୂରଣ କରିପାରିଛି କେବଳ ଏହି କାର୍ଯ୍ୟ ବା କର୍ମ ବଳରେ । ତେଣୁ ମଣିଷର ସମସ୍ତ କାର୍ଯ୍ୟର ଅଧିନାୟିକା ଭାବରେ ତା'ର ସମସ୍ତ କର୍ମର ପଥ ପ୍ରଦର୍ଶିକା ହୋଇ 'କରମସାନୀ' ତା'ର ଜୀବନର ସୁଖ ସମୃଦ୍ଧିର କାରଣ ହୁଅନ୍ତୁ । ଦ୍ୱିତୀୟ ଅର୍ଥରେ 'କର୍ମ'କୁ ଭାଗ୍ୟ ଅର୍ଥରେ ମଧ୍ୟ ବ୍ୟବହାର କରାଯାଇ ଥାଏ । ଯଥା - କୁହାଯାଇଥାଏ 'ଜନ୍ମ ସିନା ଦେଇଛୁ, କର୍ମ ତ ଦେଇନାହୁଁ ।' ବା 'କରମ ଲିଖନ କେ କରିବ ଆନ ।' - ଇତ୍ୟାଦି । ତେଣୁ ଏହି ଭାଗ୍ୟ ବିଶ୍ୱାସ ଦେଶ କାଳ ନିର୍ବିଶେଷରେ ଆଦିମ ଯୁଗଠାରୁ ଆଜିର ବିଜ୍ଞାନ ଯୁଗ ପର୍ଯ୍ୟନ୍ତ ସବୁ ସ୍ଥାନରେ ସବୁ ମଣିଷ ପାଖରେ ରହିଛି । ଯେଉଁଠି ମଣିଷର ସକଳ କର୍ତ୍ତୃତ୍ୱ ଶେଷ ହୋଇଥାଏ, ସେଇଠି ମଣିଷ ଭାଗ୍ୟବାଦୀ ହେବାକୁ ବାଧ ହୁଏ । ମଣିଷର ଚନ୍ତା ଓ କାର୍ଯ୍ୟର ଫଳ ଅନେକ ସମୟରେ ବିପରୀତ ହୋଇଥାଏ । ତେଣୁ ସେତେବେଳେ ସେ ଅଦୃଷ୍ଟ ବା ଭାଗ୍ୟ ଉପରେ ନିର୍ଭର କରିବାକୁ ବାଧ ହୁଏ । ଏହି ଭାଗ୍ୟ ବା ଅଦୃଷ୍ଟର ଦେବୀ ଭାବରେ 'କରମସାନୀ' ନାମକରଣ ହୋଇଥିବା ସମ୍ଭବ । ମଣିଷର ଚିନ୍ତା ଚେତନା ଓ କାର୍ଯ୍ୟର ଅନ୍ତରାଳରେ ରହି ସେ ସବୁର ନିୟନ୍ତ୍ରଣ କରିବା ପୂର୍ବକ ମଣିଷର ଜୀବନକୁ ସୁଖମୟ କରିବା ପାଇଁ ତା'ର ଏ ଆକୁଳ ନିବେଦନ 'କରମସାନୀ'ଙ୍କ ପାଖରେ ।

ଭାଦ୍ରବ ଶୁକ୍ଳ ଏକାଦଶୀ ତିଥି ହେଉଛି ଏ ଉତ୍ସବ ଅନୁଷ୍ଠାନର ନିରୂପିତ ଦିବସ । କିନ୍ତୁ ଏହି ଦିନଠାରୁ ଦଶହରା ପୂର୍ଣ୍ଣିମା ପର୍ଯ୍ୟନ୍ତ ନିଜର ସୁବିଧା ଓ ଲଗ୍ନ ଅନୁଯାୟୀ ମଧ ତାହା ପାଳନ କରାଯାଇ ଥାଏ । ପାରମ୍ପରିକ ରୀତି ଅନୁସାରେ ଦଶମୀ ଦିନ ଲୌକିକ ଭାଷାରେ 'ଜଥା ଜମାଯାଏ' ଅର୍ଥାତ୍ ମୁଗ, ବିରି, ଧାନ ଇତ୍ୟାଦି ଗଜା କରାଯାଏ ଓ ଟାଙ୍ଗୁଡ଼ିଏ ବାଲି ଉପରେ ନଡ଼ିଆ, ଘିଅ, ଗୋରସ ସହିତ ଏଗୁଡ଼ିକ ରଖା ଯାଇଥାଏ, ଯେ ଉକ୍ତ ଅନୁଷ୍ଠାନର ଉଦ୍ୟୋକ୍ତା, ଉପବାସୀ ଥାଇ ସନ୍ଧ୍ୟା ସମୟରୁ ଶୁଦ୍ଧପୂତ ହୋଇ କରମସାନୀଙ୍କ ପ୍ରତୀକ 'କର୍ମା' ଗଛ ପାଖକୁ ଯାଇ ପାଞ୍ଚୋଟି କିମ୍ବା ସାତୋଟି ପତ୍ର ଥିବା ଏକ ଡାଳ ଆଣି ତା'ର ଚତୁଃପାର୍ଶ୍ୱରେ ସୁତା ଗୁଡ଼ାଇ ଦେଇ ଗ୍ରାମମୁଣ୍ଡରେ ତାକୁ ଅବସ୍ଥାପିତ କରିଥାଏ । ଏକାଦଶୀ ଦିନ ମାଦଳ, ଗିନି ଓ କରତାଳ ସହିତ ସେଠାକୁ ଯାଇ ଉକ୍ତ ଡାଳକୁ ଆମନ୍ତ୍ରଣ କରି ମଣ୍ଡଳିକୁ ଅଣାଯାଏ । ପୂର୍ବରୁ ମଣ୍ଡଳିକୁ ଆମ୍ବପତ୍ରର ତୋରଣ ଓ ତା'ର ଚାରିପାଖରେ କଇଁ ଇତ୍ୟାଦି ବିଭିନ୍ନ ଫୁଲରେ ମଣ୍ଡନ କରାଯାଇଥାଏ । ମଣ୍ଡଳିର ମଧ୍ୟସ୍ଥଳରେ ଦେବୀଙ୍କର ଆସ୍ଥାନ ଭାଗର ଚାରିପାଖରେ ଆଖୁଦଣ୍ଡ ଗୁଡ଼ିକର ଅଗ୍ରଭାଗକୁ ଏକାଠି କରି ତା'ର ଭୂମି ସଂଲଗ୍ନ ମୂଳ ସବୁକୁ ପ୍ରଶସ୍ତ କରି ଦିଆଯାଇ ଥାଏ । * ଅବସ୍ଥାପିତ ଦେବୀଙ୍କର ପୂଜା ତା'ପରେ ଆରମ୍ଭ ହୋଇଥାଏ । ଧୂପ, ଘିଅ, ନଡ଼ିଆ, ଦୀପ, ଫଳ, ପୁଷ୍ପାଦି ସହିତ ମଦ୍ୟକୁ ମଧ ପୂଜୋପକରଣର ଏକ ସାମଗ୍ରୀ ଭାବରେ ଗ୍ରହଣ କରାଯାଇ ଥାଏ । ତା'ପରେ ଓଡ଼ିଶାରେ

ପ୍ରଚଳିତ ବହୁ ଓଷା, ବ୍ରତ ମେଳା ପ୍ରଭୃତି ପ୍ରତ୍ୟେକଙ୍କର ଏକ ଏକ ଗଳ୍ପ ଥିବାପରି ଏଥିରେ ସନ୍ନିହିତ ଗଳ୍ପଟି କୁହାଯାଏ ଗଳ୍ପଟି ଏହିପରି -

ସାଧବ ବୁଢ଼ା - ତା'ର ସାତୋଟି ପୁଅ, ସାନ ପୁଅଟି ଛୋଟା। କରମସାନୀ ଦେବୀଙ୍କ ଉପରେ ବୁଢ଼ାର ପ୍ରଗାଢ଼ ବିଶ୍ୱାସ। ଭାଗ୍ୟଦେବୀଙ୍କ କୃପାରୁ ବୁଢ଼ାର ଘର ଧନ ଜନ ଗୋପଲକ୍ଷ୍ମୀରେ ପରିପୂର୍ଣ୍ଣ। ପ୍ରତିବର୍ଷ ଭାଦ୍ରବ ଏକାଦଶୀ ଦିନ ସେ କରମସାନୀଙ୍କ ପୂଜା ମହା ସମାରୋହରେ ପାଳନ କରିଥାଏ। ପ୍ରତିବର୍ଷ ଏହିପରି କଟିଯାଏ। ସାନ ବ୍ୟତୀତ ଅନ୍ୟ ଛଅ ପୁଅ ଚାଲିଯାନ୍ତି ବାଣିଜ୍ୟ କରିବା ଉଦ୍ଦେଶ୍ୟରେ। ଠିକ୍ ଏହି ଭାଦ୍ରବ ଶୁକ୍ଳ ଏକାଦଶୀ ଦିନ ସେମାନେ ଫେରିଆସନ୍ତି ଅନେକ ଧନରତ୍ନାଦି ସହିତ। ବନ୍ଦରରେ ଅବସ୍ଥାନ ପୂର୍ବକ ଗୃହକୁ ସମ୍ବାଦ ପ୍ରେରଣ କରନ୍ତି। ଘରେ ପାଳିତ ହେଉଥାଏ କରମସାନୀ ପୂଜା। ତେଣୁ ସମ୍ବାଦ ପ୍ରେରଣ ସତ୍ତ୍ୱେ ତାଙ୍କୁ ପାଛୋଟି ଆଣିବାରେ ଅକାରଣ ଅବହେଳା ପ୍ରଦର୍ଶନ କରାଯାଇଛି। ବୋହୂମାନେ, ସାନପୁଅ, ବୁଢ଼ାବାପ, ସମସ୍ତେ ନାଚିବାରେ ବ୍ୟସ୍ତ। ମରଣ କାଳେ ବିପରୀତ ବୁଦ୍ଧି। ବଡ଼ପୁଅ ଗାଁ'କୁ ଆସି ଦେଖେତ ବୋହୁମାନଙ୍କ ସମେତ ସମସ୍ତେ ନାଚିବାରେ ବ୍ୟସ୍ତ। ଫେରିଯାଇ ଅନ୍ୟ ଭାଇମାନଙ୍କୁ ଜଣାନ୍ତେ ସମସ୍ତେ ରାଗିଯାଇ ଗାଁ'କୁ ଯାଇଛନ୍ତି ଓ ପୂଜା ମଣ୍ଡପାଦିକୁ ପାଦରେ ଭାଙ୍ଗି ଦେଇଛନ୍ତି। ଏହିଠାରେ ଦେଖା ଦେଇଛି ଭାଗ୍ୟର ବିପର୍ଯ୍ୟୟ୍ ଅବଲୀଳା କ୍ରମେ ସେମାନଙ୍କ ଗୃହରୁ ସମସ୍ତ ଧନରତ୍ନ ଉଭେଇ ଯାଇଛି। ରୋଷ କଷାୟିତ ଦେବୀ ଯାଇ ଅଧିଷ୍ଠାନ କରନ୍ତି ସାତ ସମୁଦ୍ରର ମଧ୍ୟବର୍ତ୍ତୀ ଏକ ସ୍ଥାନରେ। ଯିବାବେଳେ ସେ ସାଧବ ବୁଢ଼ାକୁ ସ୍ୱପ୍ନରେ କହିଯା'ନ୍ତି ଯଦି ସେ ପୁଣି ତାଙ୍କୁ ଫେରି ପାଇବାକୁ ଚାହେଁ, ତେବେ ସେ ଫେରିଆସିବେ କେବଳ ଛୋଟ ଛୋଟା ପୁଅଟିର ଅନୁରୋଧରେ। ସକାଳୁ ଛୋଟା ବିନିର୍ଗତ ହୁଏ ଦେବୀଙ୍କୁ ପୁଣି ଫେରାଇ ଆଣିବା ଉଦ୍ଦେଶ୍ୟରେ। ଚାଲି ଚାଲି ଛୋଟା ଅର୍ଦ୍ଧପଥରେ କେତୋଟି ଆଶ୍ଚର୍ଯ୍ୟଜନକ ଘଟଣାରର ସମ୍ମୁଖୀନ ହୁଏ। ପ୍ରଥମତଃ ଏକ ପୋଖରୀ, - ତୃଷାର୍ତ୍ତ ଛୋଟା ପାଣି ପିଇବାକୁ ଯାଇ ଦେଖେ ତ ପାଣି ପୋକରା। ତୁଠ ଉପରସ୍ଥିତ ପୁଷ୍କରିଣୀର ଅଧିକାରୀ ଏହାର କୌଣସି ସନ୍ତୋଷଜନକ ଉତ୍ତର ଦେଇ ନପାରି ବରଂ ଧର୍ମ ପାଇଁ ଖୋଳିଥିବା ଉକ୍ତ ପୁଷ୍କରଣୀର ଜଳ କାହିଁକି ପୋକରା ହେଲା ସେ ସଂପର୍କରେ କରମସାନୀଙ୍କ ନିକଟକୁ ଯାଉଥିା ଉକ୍ତ ଛୋଟାକୁ ତା'ର କାରଣ ଜଣାଇବା ପାଇଁ ନିବେଦନ କଲା। ସେ ସେଥିରେ ରାଜିହୋଇ କିଛି ବାଟ ଯିବା ପରେ ଦେଖିଲା ଏକ ଆମ୍ବଗଛ କଣ୍ଟାଛାଦିତ। ଫଳ ଖାଇବାକୁ ଯାଆନ୍ତେ ଆମ୍ବଗଛର ସତ୍ତ୍ୱାଧିକାରୀ ତାକୁ ବାରଣ କଲା କାରଣ ଏ ବୃକ୍ଷର ଆମ୍ବତକ ପୋକରା। ତହିଁର କୌଣସି କାରଣ ସେ ଦେଇ ନପାରି କରମସାନୀଙ୍କୁ ତାହା ପଚାରିବା

*. ନାଚି ନାଚି ମଣ୍ଡଳିର ଚତୁଃପାର୍ଶ୍ୱରେ ସାତଥର ପ୍ରଦକ୍ଷିଣ କରି ଦେବୀଙ୍କୁ ତା ମଧ୍ୟରେ ଅବସ୍ଥାପିତ କରାଯାଏ।

ପାଇଁ ସେ ମଧ୍ୟ ଅନୁରୋଧ କଲା । ସେ ରାଜିହୋଇ କିଛିବାଟ ଯିବା ପରେ ପୁଣି ଦେଖିଲା ଜଣେ ସ୍ତ୍ରୀ ଲୋକର ଛାତିରେ ଏକ ଶିଳ, ଅନ୍ୟଏକ ସ୍ତ୍ରୀ ମୁଣ୍ଡରେ ଏକ ଉହ୍ଲେଇ ଲାଗିରହିଛି ଓ ଅନ୍ୟଏକ ଦୃଶ୍ୟ ଗୋଟିଏ ଢ଼ିଂକି ଜଣେ ଲୋକର କାନ୍ଧରେ ଲାଖିରହିଛି । ବହୁ ଚେଷ୍ଟା କରି ମଧ୍ୟ ସେଥିରୁ ସେମାନେ ମୁକ୍ତିଲାଭ କରିପାରୁ ନାହାନ୍ତି । ଛୋଟାକୁ ସେମାନେ ମଧ୍ୟ ନିଜ ନିଜ ଦୁଃଖ ଜଣାଇ କରମସାନୀଙ୍କ ପାଖରେ ନିବେଦନ କରିବାକୁ ଅନୁରୋଧ କଲେ । ଛୋଟା ପରିଶେଷରେ ଯାଇ ପହଞ୍ଚେ ସମୁଦ୍ର କୂଳରେ । ମନର ନିଷ୍ଠା ଓ ଦୃଢ଼ତା ନେଇ ବହୁ ଆକୁଳତାର ସହ ସେ ଡ଼ାକିବାରୁ ପ୍ରସନ୍ନା ଦେବୀ ମନୁଷ୍ୟ ରୂପରେ ଆବିର୍ଭୁତା ହୋଇ ଛୋଟା ମନର ଦୃଢ଼ତାର ପରିଚୟ ଲାଭ କରିବା ପରେ ତା' ସହିତ ସେହି ରାସ୍ତାରେ ଆସି ଛୋଟା ଦ୍ୱାରା ଅନୁରୁଦ୍ଧା ହୋଇ ଦୁଃଖୀଜନ ମାନଙ୍କର ଦୁଃଖଜନ ମାନଙ୍କର ଦୁଃଖ ନିବାରଣ କଲେ । ସାଧବ ବୁଢ଼ା ଦେବୀଙ୍କୁ ପୁଣି ଫେରିପାଇଲା । ବିପର୍ଯ୍ୟସ୍ତ ଗୃହ ପୁଣି ହସିଉଠିଲା । 'ରାଜକୁମାର' ନାମକ କବି ବିଶେଷ ଏହାକୁ ଏକ ସଙ୍ଗୀତ ରୂପ ନିମ୍ନମତେ ଦେଇଛନ୍ତି -

କ.
ଜୟ ଜୟ ଗୋ ମା କରମସାନୀ
କଳିଯୁଗେ ଉଦ୍ଧରିବାକୁ ପ୍ରାଣ
ମର୍ତ୍ତ୍ୟରେ ପ୍ରକାଶ ହେବାକୁ ମନ
ସାଧବ ସୁତକୁ ଦେଲୁ ଦର୍ଶନ ଯେ
ସାନ ଭାଇରୁ ସେ ସାନ
ବାକି ଷଡ଼ଭାଇ ବଣିଜକୁ ଗଲେ ପିତାର ଆଜ୍ଞା ପାଳିଣ ଯେ । ।।୧।।

ସାନଭାଇ ତୋର ପାଦେ ସେବିଲା
ମାଦଳ ଚାପ କଳଙ୍ଗି ପାଇଲା
ସାତଖଣ୍ଡ ଶାଢ଼ୀ ଗୃହକୁ ନେଇ
ବୋହୂ ମାନଙ୍କୁ ଯତନେ ପିନ୍ଧାଇ ସେ
ତୋ ନାମରେ ସ୍ତୁତି ଗାଇ
ମାଦଳ ବଜାଇ ବୋହୂଙ୍କୁ ନଚାଇ ଭକ୍ତିପ୍ରେମେ ଭୋଳ ହୋଇ ଯେ । ।।୨।।

ଉପରେ ଚାନ୍ଦୁଆ ଦେଇଛୁ ଟାଣି
କୁସାଇ ବେଢ଼ା କରିଣ ମଣ୍ଡଣୀ
..... ଖମ୍ବଗାଡ଼ି ଆମ୍ବ ତୋରଣ ମାରି ଯେ
ଭକ୍ତି ଚିତ୍ତେ ପୂଜା କରି ଯେ

ଦର୍ଶନକାରୀଏ ବେଢ଼ିଣ ଦେଖନ୍ତି ତିଳେମାତ୍ର ଲଜ୍ଜା ନାହିଁ ଯେ । ।।୩ ।।
ବଣିଜରୁ ଷଡ଼ ଭାଇ ଆସିଲେ
ଦେଖି କୋପେ ପୂଜା ବିଧି ଭାଙ୍ଗିଲେ
ତାଳପତ୍ର ଭାଙ୍ଗି ଫୋପାଡ଼ି ଦେଲେ
ଧିକ୍କାର ବଚନରେ ଗାଳିଦେଇ ଯେ
ହେଲୁ କି ତୁହିଁ ପାଗଳ
ଘର ମହତକୁ ଦାଣ୍ଡରେ ପକାଇ କଲୁ ଏତେ ଗଣ୍ଡଗୋଳ ଯେ । ।।୪ ।।
ଏହା ଦେଖିଣ ମାତ କୋପ କଲୁ
ଧନ ସମ୍ପତ୍ତି ସର୍ବସ୍ୱ ହରିଲୁ
ନିଧନ ହୋଇଲେ ସାଧବ ସୁତେ
ସାନଭାଇଙ୍କୁ କହିଲେ ଗୁପତେ ଯେ
କରମସାନୀଙ୍କୁ ଆଣ
ଭକ୍ତିରେ ପୂଜିବା ଚରଣେ ସେବିବା ପାଇବାକ ଧନ ଜନ ଯେ । ।।୫ ।।
ଭାଇଙ୍କ ବଚନେ ସାଧବ ସୁତ
ତୋ ନାମ ସୁମରି ଜଗତ ମାତ
ତୋତେ ଖୋଜି ଖୋଜି ଅରଣ୍ୟେ ଗଲା
ପଥରେ ଗୁହାରି ଆକୁଳ କଲା
କେ କଣ୍ଟା ଛାପ ବହିଛ ଯେ
ନିଆ ଉହ୍ମାଇକୁ ମୁଣ୍ଡରେ ବହିଣ କେ ଡ଼ିଂକି କାନ୍ଧେ ବହିଛ ଯେ । ।।୬ ।।
କାହାର କଦଳୀ ପାଚି ସଢ଼ୁଛି
କା ବନ୍ଧ ପାଣି ପୋକରା ହୋଇଛି
ଗୁହାରି କଲେ ସାଧବଙ୍କୁ ଚାହିଁ
ଆମ୍ଭ ଦୁଃଖ ସୁଖ କହିବୁ ଭାଇରେ
ଏ କଥା ତୋତେ କହନ୍ତି
ଆମ୍ଭ ଦୁଃଖ ହରି ତାଳ ରୂପ ଧରିଲୁ ସାଧବ ସଙ୍ଗେତେ ଯେ । ।।୭ ।।

ତୋତେ ସେବୁ ହୋଇଲୁ ଧନବାନ

ପୂର୍ବପରି ହେଲା ଗୋଧନ ଧନ

ରାଜକୁମାର ମାଗେ ତୋତେ ଭିକ୍ଷା

ଏ ଭବ ସଙ୍କଟରୁ କର ରକ୍ଷା ମା

କଷ୍ଟୀ କଷ୍ଟ ନିବାରିଣୀ

ଦୁଃଖ ନିବାରିଣୀ ସର୍ବ ଅନ୍ତର୍ଯ୍ୟାମୀ ଅସୁର କୂଳ ନାଶିନୀ ଯେ ।*

କାହାଣୀଟି ସ୍ଥାନ ବିଶେଷରେ ଭିନ୍ନ ଭିନ୍ନ ଭାବରେ କୁହା ଯାଇଥାଏ । ସେଥିରେ କେତେ ମେଳ କେତେ ଅମେଳ ମଧ ଥାଏ । ସେ ଯାହା ହେଉ ଅସୁର କୂଳ ନାଶିନୀ, କଷ୍ଟୀ କଷ୍ଟ ନିବାରିଣୀ ଆଦ୍ୟାଶକ୍ତି ମା କରମସାନୀଙ୍କର ମହତ୍ତ୍ୱ ବର୍ଣ୍ଣନା କରି ଲୋକଙ୍କୁ ଧର୍ମାଭିମୁଖୀ କରାଇବା ଏହାର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ । ଭାଗ୍ୟଦେବୀ ପ୍ରସନ୍ନା ହେଲେ ଗୃହ ଧନ-ଜନ-ଗୋପଲକ୍ଷ୍ମୀରେ ପରିପୂର୍ଣ୍ଣ ହୋଇଉଠେ ଓ ରୁଷ୍ଟା ହେଲେ ସେ ସବୁ କ୍ଷଣିକ ମଧରେ ଅପସରି ଯାଏ । ତେଣୁ ତାଙ୍କୁ ପ୍ରସନ୍ନ କରି ରଖିବା ଅଭିପ୍ରାୟରେ ପରମ୍ପରା କ୍ରମେ ତାଙ୍କର ପୂଜା ଉପାସନା ପାଇଁ ଏକ ଧର୍ମୀୟ ପରିବେଶ ଏହା ମଧରେ କରାଯାଇଛି ମାତ୍ର । ଯେ ତାହା ନ କରେ, ସାଧବଘର ଦଶ ହୁଏତ କାତୁ ଭୋଗ କରିବାକୁ ପଡ଼ିପାରେ । ତେଣୁ ମଣିଷର ଯେତେ ପ୍ରକାର ଦୈହିକ ବା ମାନସିକ କଷ୍ଟ ବିଶେଷତଃ ରୋଗ, ନିଃସନ୍ତାନତ୍ୱ - ଇତ୍ୟାଦିର ଉପଶମନ ବା ଦୂରୀକରଣ ପାଇଁ ଦେବୀଙ୍କ ପାଖରେ ଉପବାସ ରହି ଧାରଣା ଦିଅନ୍ତି । ବରୁଆ (ଦେବୀ ପୂଜକ, ଯାହା ଉପରେ ଦେବୀ ବିରାଜିତା ହୁଅନ୍ତି ।) ଗୋଟି ଗୋଟି କରି ସମସ୍ତଙ୍କ ପାଖକୁ ଯାଇ ଅଭିଯୋଗ ଶୁଣନ୍ତି ଓ ତା'ର ଉପାୟ କରନ୍ତି । ତାଙ୍କରି ଦୟାରୁ କେହି କେହି ପୁତ୍ରବତୀ ହେବାର ମଧ ଶୁଣାଯାଏ । କୃତଜ୍ଞତାର ସ୍ମାରକୀ ସ୍ୱରୂପ କିଏ ନୂଆଁ ଲୁଗା ବା ବୋଦା (ସ୍ଥାନ ବିଶେଷରେ) ଦେବାର ପ୍ରତିଶ୍ରୁତି ମଧ ଦେଇଥାନ୍ତି । ଲବ୍ଧ ପୁତ୍ର କିମ୍ବା କନ୍ୟାସହ ଆରବର୍ଷ ପ୍ରତିଶ୍ରୁତି ବସ୍ତୁ ସହ ଉପସ୍ଥିତ ହୁଅନ୍ତି । କାରଣ ଦେବୀଙ୍କର ଋଣ ଲାଗିବା ସବୁଠାରୁ ଗର୍ହିତ ବିଷୟ । ବରପାଲି ନିକଟସ୍ଥ ଯୁଲଟ ତଥା ବାଗବାଡ଼ି ଗ୍ରାମ ନିକଟସ୍ଥ 'କର୍ମାଡ଼ାଁଣ' ବା କର୍ମା ଦାଣ୍ଡ (ପଡିଆ) ଏବଂ ସୋନପୁରସ୍ଥିତ ବିନକା ଅନ୍ତର୍ଗତ ଭାଗିଟିକିରା ଠାରେ ଏହିପରି ପୂଜା ଅନୁଷ୍ଠାନ ହୋଇଥାଏ । ପ୍ରତିବର୍ଷ ଉକ୍ତ ସ୍ଥାନମାନଙ୍କରେ ବହୁ ଲୋକଙ୍କର ସମାଗମ ହୋଇଥାଏ । କେହି କେହି ପୁତ୍ର କନ୍ୟା ପ୍ରାପ୍ତ ହେବା ପରେ ସାତବର୍ଷ ବା ଚଉଦବର୍ଷ ପୁଣି ଜୀବନବ୍ୟାପୀ ଏହା ପାଳନ କରିଥାନ୍ତି । ଯଦିଓ ଏଥିପାଇଁ ସ୍ୱତନ୍ତ୍ର କୌଣସି ଦୃଷ୍ଟି ଆକର୍ଷଣକାରୀ

ପୀଠ ନାହିଁ, ତଥାପି ତା'ର ପ୍ରଭାବ ଏ ଅଞ୍ଚଳରେ ସର୍ବବ୍ୟାପୀ ।

ସଂଯୋଜିତ କାହାଣୀଟିର ସତ୍ୟତା ପରୀକ୍ଷା ପ୍ରଶ୍ନ ଏଠି ଅବାନ୍ତର । କାରଣ ଏପରି ବହୁ କାହାଣୀ ରହିଛି ଯାହାର ଏ ଦିଗ ପ୍ରତି ଆଦୌ ଦୃଷ୍ଟି ନିକ୍ଷେପ କରାଯାଏ ନାହିଁ । ମଙ୍ଗଳା ସ୍ତୁତି, ମୃଗିଣୀ ସ୍ତୁତି, ଲକ୍ଷ୍ମୀପୂଜା, ପୁଅ ଜିଉଁତିଆ ଏହିପରି ଏକ ଏକ ପୂଜାହୋବ । କିନ୍ତୁ ସାଧବଘର, ବଣିଜ ବେପାର, ବୋଇତ ବନ୍ଦାଣ, ସମୁଦ୍ର - ଏ ସବୁର ସ୍ମୃତି ସୁଦୂର ଅତୀତ ଓଡ଼ିଶାର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟର ସୂଚନା ଦିଏ ।

ଧାର୍ମିକ ପ୍ରଭାବ ବା ତା'ର ଧର୍ମଗତ ପରିବେଶଟିକୁ ଛାଡ଼ିଦେଲେ କର୍ମାର ପ୍ରଧାନ ଆକର୍ଷଣ ହେଉଛି ତା'ର ନୃତ୍ୟ ଓ ଗୀତ । ମଣିଷ ନିଜର ସମସ୍ତ ଜାଗତିକ ସତ୍ତାକୁ ହରାଇ ଏଥିରେ ନାଚିବା କଥା,ସାଧବ ବୁଢ଼ା ବୋହୁ ଓ ଛୋଟା ପୁଅକୁ ନେଇ ଯେପରି ନାଚୁଥିଲା । ଏ ନାଚରେ ଯଦିଓ ଜାଗତିକତ ସତ୍ତା ହରାଇବା ସମସ୍ତଙ୍କ ପକ୍ଷରେ ଏବେ ସମ୍ଭବ ନୁହେଁ, ଅନ୍ତତଃ ମଦ୍ୟର ବ୍ୟବହାର ମାଧ୍ୟମରେ ତାହା ସମ୍ଭବ ହେଉଛି, ଏବଂ ନାଚର ଉନ୍ନତତା ରକ୍ଷା କରାଯାଉଛି । ଏଥିପାଇଁ ମଧ ଗାୟକ ବାଦକ ସୁନାମ ଅର୍ଜନ କରିଥାନ୍ତି । ସେଥିପାଇଁ ବିଖ୍ୟାତ କୌଣସି ଗାୟକ ବା ବାଦକ ଆସିଛନ୍ତି ଶୁଣିଲେ ଦର୍ଶକର ସଂଖ୍ୟା ବଢ଼ିଯାଏ । ଆଜିକାଲି ଓଡ଼ିଶୀ ସଙ୍ଗୀତରେ ହିନ୍ଦୁସ୍ଥାନୀର୍ ମିଶ୍ରଣ ଭଳି ନାନା ପ୍ରକାର ଗୀତ, ସ୍ୱର ଓ ଲୟର ସନ୍ନିଶ୍ରଣ ଏଥିରେ ହୋଇଥାଏ । କେବଳ ଗିନି, ବା କରତାଳ ଓ ମାଦଳ ହିଁ ଏହାର ସଙ୍ଗୀତର ଉପକରଣ ବା ବାଦ୍ୟଯନ୍ତ୍ର, ମୁଖ୍ୟତଃ ଏହା ଆଦିବାସୀ ମାନଙ୍କର ଏକ ଦେବୀ । ସୁତରାଂ ସେମାନଙ୍କର ଗୀତ ବାଦ୍ୟାଦିରେ ଏହାର ମୂଳ ସ୍ୱର ନିହିତ ଥିବାପରି ମନେହୁଏ । ବର୍ତ୍ତମାନ ଯୁଗରେ ସବୁର ଆଧୁନିକୀକରଣ ଭଳି ଏଥିରେ ମଧ ତାହା ସନ୍ନିଶ୍ରିତ ହୋଇ ଏକ ମିଶ୍ରସ୍ୱାଦ ସୃଷ୍ଟି ହୁଏ । ଉଦାହରଣ ସ୍ୱରୂପ ଏହାର ଝୁମେର ସ୍ୱରଟି ପ୍ରାଚୀନ ସ୍ୱର ମଧ୍ୟରୁ ଅନ୍ୟତମ । ତାହା ପ୍ରାୟତଃ ଲରିଆ ଭାଷାର ଗୀତ -

ଖ.

ହାତେ ଧରି ଟାଙ୍ଗିଆ
          ଚ୍ୟାଁଦେ ବହେ ବାସୁଲା
ଚେଲି ଯାବେ ଡଂଗୁରୀ ପାହାଡ଼
          ବିରଦାବାନ ରସିଆ
ହାମାର ମାଁଦଠ ଛାଁଚିଖୁନ୍ଦି ଫିରାଦିଆ....
          ରେ ବିଇଦାବାନ ରସିଆ
          ଚେଲି ଜାବେ ଡୁଂଗୁରୀ ପାହାଡ଼

ବଡ଼ିଆ କେ ଭାୟା କେ ଅଟେ ମିତାନ.... ରେ ବିରିଦାବାନ ।
ହାମାର ମାଁଦଲ ଝୁମୁକ୍ ଝାମୁକ୍
ଲଗା ଦିଆରେ ବିରିଦାବାନ....
ଏକ ସୁକା କଲଗିଁ କେ ଦୋ ଦୋ ସୁକା ମୂଲ
ଗାଞ୍ଜା ଲରିଆ ହୋ ଯାଇଛେ ସମ୍ବଲପୁର
ସମ୍ବଲପୁରେ ଏକ ଘର ସୁନାରି
ସୁନାକେ ବନେ ଗାଞ୍ଜାଫୁଲ
ଗାଞ୍ଜା ଲରିଆ ହୋ.... ସମ୍ବଲପୁର

ଉଦାହରଣଟିରେ ଭାଷାଗତ ଭୁଲ ଥାଇପାରେ କାରଣ ଏହାର ପ୍ରଦାନକାରୀ ଲରିଆ ନୁହନ୍ତି କିନ୍ତୁ କର୍ମାର ଜଣେ ଓସ୍ତାଦ୍ । କିନ୍ତୁ ଯେଉଁ ଭାବଟି ଏଥିରୁ ଉକୁଟି ଉଠୁଛି, ତାହା ବେଶ୍ ସ୍ୱାଦଯୁକ୍ତ । 'କର୍ମା ରସିକ ହାତରେ ଟାଙ୍ଗିଆ କାନ୍ଧରେ ଭାର (ବାସୁଲା) ପକାଇ ପାହାଡ଼ ଉପରକୁ ଉଠିଯାଉଛି ସମ୍ଭବତଃ ମାଦଳଟି ପାହାଡ଼ ଉପରେ ଥିବା ମାଦଳ ନିର୍ମାଣକାରୀ ପାଖକୁ ଆଣିବା ପାଇଁ, ଯାହାକି ସେ ଛାଞ୍ଚି ପୋଛି ଠିକ୍ କରି ଫେରାଇ ଦେଇଛି, ଯେ ଜଣେ ଉପଯୁକ୍ତ ନିର୍ମାଣକାରୀ, ଯେ'କି ତା'ର ମାଦଳରେ ନାନାଦି ଝୁମ୍କା (ମାଦଳର ଶୋଭା ବର୍ଦ୍ଧନକାରୀ ଓ ବ୍ୟବହାର ସମୟରେ ଝୁଣୁ ଝୁଣୁ ଆବାଜ ଦେଉଥିବା ଛୋଟ ଛୋଟ ନୁପୂର) ଲଗାଇ ଦେଇଛି । (ଏ ନୃତ୍ୟ ସମୟରେ ମସ୍ତକରେ କଳଗିଁ ଲଗା ଯାଇଥାଏ) । କଳଗିଁ ଏକ ଗୁଛକ, ଦୁଇସୁକା ଲେଖାଏଁ, ତାହା କିଣିବାପାଇଁ ଅନ୍ୟ କୌଣସି ଜଣେ ଲରିଆ ଭାଇକୁ ସେ ସମ୍ବଲପୁର ପଠାଇଛି । ସମ୍ବଲପୁର ଏବଂ ସୁନାରି, ଯେ କି ତା ମାଦଳରେ ଖଞ୍ଜିବା ପାଇଁ ଏକ ସୁନାର ଫୁଲ ତିଆରି କରି ଆଣିଦେବ ।

ବଣ ପାହାଡ଼ରେ ବସବାସ କରୁଥିବା ଜୀବନର କି ସରଳତା, ନୃତ୍ୟଗୀତ ପାଇଁ କି ଉଦ୍ଦାମତା. ଆଜି ଦୁନିଆଁରେ କୁଟିଳତା ତାକୁ ସ୍ପର୍ଶ କରିନାହିଁ । ମାଦଳର ରୂପ, ତା'ର ଅଳଙ୍କାର ନୃତ୍ୟ ସମୟରେ ନିଜେ ପିନ୍ଧିବା କଳଗିଁ, ସବୁ କିଛି ତା'ର କଳ୍ପନା ମଧ୍ୟରେ ରହି ତାକୁ ଅତିଷ୍ଠ କରି ପକାଉଛି, କେବେ ତା'ର କରମସାନୀର ପୂଜା ଦିନ ଆସିବ, ସେଇ ଭାଦ୍ରବ ଶୁକ୍ଳ ଏକାଦଶୀ କରମସାନୀ ମା'ର ଜନ୍ମଦିନ । ତା' ପୂର୍ବରୁ ସେଥିପାଇଁ ତାର ପ୍ରସ୍ତୁତ ଭିତରେ ତାର ମନ ମଧ୍ୟରେ ଅପୂର୍ବ ଉଲ୍ଲାସ, ଆନନ୍ଦ ।

ତେବେ ନୃତ୍ୟଗୀତ କୌଣସି ଚଳଚିତ୍ର କିମ୍ବା ସଙ୍ଗୀତ ସମାରୋହ ଭଳି ଦୁଇ ବା ତିନିଘଣ୍ଟା ପାଇଁ ଉଦ୍ଦିଷ୍ଟ ନୁହେଁ । ଏହାର ସ୍ୱାତନ୍ତ୍ର ଏହା ସାରାରାତି ପାଇଁ ଚାଲେ । ଏକ ସଙ୍ଗରେ ନୃତ୍ୟଗୀତ

ଓ ଅଧିବାସ ସମ୍ପବପର ହୁଏ । ଯେତେ ଗାୟକ ବାଦକ ଆସିଥାନ୍ତି, ଜଣ ଜଣ କରି ଦେବୀ ମଣ୍ଡପର ସମ୍ମୁଖରେ ଦେବୀ ଆରଧନା ସୂଚକ ଗୀତ ସହିତ ଉର୍ଣ୍ଣ ଧୁର୍ଣ୍ଣି ବା ଘୂର୍ଣ୍ଣି ପାର (ବାଦ୍ୟ) ବଜାଇ ଥାନ୍ତି । ଏହି ବାଦ୍ୟଟି ପରିବେଶର ଗାମ୍ଭୀର୍ଯ୍ୟକୁ ବୃଦ୍ଧିକରେ । ତା'ପରେ ଜଣେ ଗାୟକ କୌଣସି ଏକ ଗୀତ ଆରମ୍ଭ କରେ, ଗାୟକ ମଧରୁ ଜଣ ଜଣ ହୋଇ କେବଳ ଘୋଷାଟିର ସହିତ 'ମାନ' ଦିଅନ୍ତି । ଯେ ଏ 'ତାନମାନ' ଦେଇ ପାରିଲା, ସେ ପ୍ରଶଂସିତ ହୁଅନ୍ତି । ଏ ନୃତ୍ୟର ଏହି ଅଂଶଟି ବେଶ୍ ଆମୋଦ ଦାୟକ । ଏହିପରି ପ୍ରତ୍ୟେକ ବାଦକ ଥରେ ଥରେ ଉଠି ତାହା କରିଥାନ୍ତି । ସେହି ନିର୍ଦ୍ଦିଷ୍ଟ ଗାୟକ ସଙ୍ଗରେ କିଏ ହାରେ, କିଏ ବା ଜିତେ । ତଦନୁସାରେ ସେମାନଙ୍କ ମୂଲ୍ୟ ନିରୂପିତ ହୁଏ । ଗୀତର ମୂଳ ପଦକ ଏହିପରି ଭାବରେ ସରିଯିବା ପରେ ଗାୟକ ମହାଶୟ ଗୀତଟିର ଅନ୍ତରା ଇତ୍ୟାଦି ପରବର୍ତ୍ତୀ ପର୍ଯ୍ୟାୟ ଗାନ କରନ୍ତି ଓ ତାକୁ ନୃତ୍ୟଯୋଗ୍ୟ କରି ଆବୃତ୍ତି କରନ୍ତି । ଫଳରେ ସବୁ ବାଦକ ଏକ ସଙ୍ଗରେ ନିଜ ନିଜ ମାଦଳ ଧାରଣ କରି ଏତେ ଉଚ୍ଚଶବ୍ଦରେ ବଜାନ୍ତି ଏକ ତାଳ ଓ ଲୟରେ ଯେ ପରିବେଶଟି ଆହୁରି ଗୁରୁଗମ୍ଭୀର ହୋଇଯାଏ ଏବଂ କର୍ଣ୍ଣ ମଧଦେଇ ହୃଦୟକୁ ଦ୍ରବୀଭୂତ କରିଦିଏ, ଫଳରେ ଶ୍ରୋତା ବା ଦର୍ଶକମାନଙ୍କ ମଧରୁ ଅନେକଙ୍କୁ ନୃତ୍ୟମଣ୍ଡପକୁ ଟାଣିଆଣେ ନାଚିବା ପାଇଁ । ଏହିପରି ରାତିସାରା ଚାଲେ । ମଝିରେ ମଝିରେ ନୃତ୍ୟକାରୀ ଦଳଙ୍କୁ ମଦ୍ୟଦ୍ୱାରା ଆପ୍ୟାୟିତ କରାଯାଇ ଥାଏ ।

କେବଳ ଏମିତି ନୁହେଁ, ଏ ନୃତ୍ୟଗୀତର ମଝିରେ ଗାୟକ ବାଦକ ଦଳ ନିଜ ନିଜ ବିଷୟରେ ବିଭିନ୍ନ ପ୍ରଶ୍ନ ଯଥା ମାଦଳ ଜନ୍ମ, ତାହା କେତେ ମାପର, କରମସାନୀଙ୍କ ସଂପର୍କରେ ବିଭିନ୍ନ ପ୍ରଶ୍ନ କରିଥାନ୍ତି । ଦର୍ଶକ ମଧରୁ ବି ଏ ପ୍ରକାର ପ୍ରଶ୍ନର ସମ୍ମୁଖୀନ ସେମାନଙ୍କୁ ହେବାକୁ ପଡ଼ିଥାଏ । ପ୍ରଶ୍ନ ଓ ଉତ୍ତର ସୂଚକ ଏକ ଗୀତ -

ଗ.

ଯେଉଁଦିନ ପୃଥିବୀ ଉତପତି
ବ୍ରହ୍ମ ଧଇଲେ ସୁଯଜ୍ଞ ପାଞ୍ଜିପୋଥି
ସେଦିନ ସାଧବଘର ସାତ ବୋହୁଗଲେ
ସାତଖଣ୍ଡ ନୂଆ ଲୁଗା କାଢ଼ଇଲେ
ଭାଦ୍ରବ ମାସରେ ଶୁକ୍ଳ ପ୍ରକ୍ଷରେ
ଏକାଦଶୀ ଦିନେ ଚାନ୍ଦୁଆ ଟାଣିଲେ
ଚାନ୍ଦୁଆ ଟାଣିଣ ସପ୍ତ ସିନ୍ଧୁପୁର ଗଲେ
ସାତ ବହୁଏ ହସ୍ତ ପ୍ରସାରିଣ

ସେ ବୃକ୍ଷକୁ ଉପାଡ଼ିଲେ
ସେ ବ୍ୟକ୍ଷକୁ ପୁଣି ନିର୍ମାଲ୍ୟ କରିଣ
ପିଣ୍ଡାପରେ ବସାଇଲେ
କେ ଜାଳେ ଜାଗର, କି ଦିଏ ଆରତି
ଉଜାଗର ରହିଲେ ସେତ ନିଶା ରାତି
କାଳି ଝିମି ଝିମି ତାକା ଧେଇ ଧେଇ
ମାଧୁରୀ ମାଧୁରୀ ମାଦଳ ବାଜେ
ଆଦିତ କରମସାନୀ, ସିନ୍ଧୁପୁରେ ଜାତ ହେଲେ -
ଜୁହାର ମା ଗୋ କରମସାନୀ
ତୋ ପାଦେ ଆମ୍ଭର ଦୟିନୀ
ନିଧନ କେ ଧନ ଦେଲ ନିପୁତ୍ରୀ କେ ପୁତ୍ର ଦେଲ

X X X X

ଈଶ୍ୱର ପାର୍ବତୀ ସେଠାରେ ତୁମେ ଅଛ ବସି
ଅନ୍ଧକୁ ଯେ ଦେଲ ଚକ୍ଷୁଦାନ
ଖଣ୍ଡା ଖର୍ପରା ତ୍ରିଶୁଳ ଧରା
ମଲ୍ଲୀଫୁଲ ଦନା ଦନା ପାଉଛି ଯେ ଆରାଧନା
ଡମର ମୁଖେ ଯେ ପଡ଼ିଲେ ନ ବର୍ତ୍ତିବ
ଉଠାଇଛ ହାତ ଦେଖ ମଣ୍ଡଳି ପୂରଣ କରି
ଗାୟକ ରତନ ଏହା ମୁଁ ପଚାରୁଛି ପୁଣ
କରମସାନୀ ସିନ୍ଧୁପୁରେ ଜନମ ଗୋ
ଆରେ ମୋ ବାୟକ ଭାଇ
ଏହାର ସଂଶୟ ଲାଗିଲା ମୋତେ
ତୁମେ ତ ଦେବ ବୁଝାଇ
ଜଗତର ମାତ କରମସାନୀ
କେ ଗାଡ଼ିଲା ତାକୁ ଆଣି
ପୂଜା ଆଳତୀ ଦେଇ ଖଞ୍ଜିଲା ତାକୁ ତହିଁ

ଗୋ ମା କରମ ସାନୀ
ମାଦଳ କାଣ୍ଡିରୁ ଜନମ
କେତେ ନାପ କେତେ ଛାଉଣୀ
କେତେ ସୁରେ କରୁଛି ବାଜେଣୀ
ବାଜୁଛି ନାନା ବାଜୁଣୀ ମାଗୋ କରମସାନୀ....
ମାଦଳ କେ କଲା ଛାଉଣୀ......
ଗାୟକ କର ଅଗ୍ନି ବହନ
ନ କରିଲେ କୁରୁରାଣ, ତୁମ୍ଭ ପାଦେ ପଶୁଛି ଶରଣ
କହେ କବି ଚିନ୍ତାମଣିହୀନ ଗୋ ମା କରମସାନୀ...
ଗାୟକ ପୁଛି ତୁ ଅଗ୍ନି ପୁରାଣ....(ଗ)

ଏହାର ଉତ୍ତର ସୂଚକ ଗୀତ :-

ଜୟ ଜୟ ମାଗୋ କରମସାନୀ
ସିନ୍ଧୁପୁରେ ମାଗୋ ତୁମ୍ଭର ଠାଣୀ ଗୋ ମା କରମସାନୀ
ତୁମ୍ଭେ ଅଟ ଠାକୁରାଣୀ

ହସ୍ତର ମଇଳ ବ୍ରହ୍ମା କରିଥିଲେ ଠୁଳ
ନାପ ଯେ କଲେ ନଉ ଆଙ୍ଗୁଳ
ବ୍ରହ୍ମାଙ୍କ ଶ୍ୱେତ ନୟନ ଗାଇ
ତାକୁ ଚମଡ଼ା କରଇ
ଚାରି ହସ୍ତ ଗୋଡ଼ ଆମ କୁସାରି ଯେ
ବାଦି ଖଞ୍ଜିଣ
ବ୍ରହ୍ମାଙ୍କ ପଦଧୂଳି ଚରଣ, ସେଠାରୁ ଦେଲେ କିରଣ
ଛତିଶ ସୁରେ କରୁଛଇ ବାଜେଣୀ ମାଗୋ କରମସାନୀ....
ଧନ୍ୱନ୍ତରୀ କଲା ଯେ ଛାଉଣୀ ଗୋ ମା....
ପଚାର ଉଚାର କଲି ସଂପୂର୍ଣ୍ଣ
କହିଦେଲି ମୁହିଁ ସଭା ମଧ୍ୟେଣ.....(ଘ)

X X X X

ଆଖୁ ଯେ ତାଙ୍ଗ କୁସାଇ ଚାରିପାଖେ ତୁମ ଯତନ କରି
ଯାଇ ଯୁଈ ମଲ୍ଲୀ ମଧୁମାଳତୀ ସେବତୀ
କଇଁଫୁଲ ଆଣି ଛାଦନ କଲୁ ସେମିତି
ହଳଦୀ ଅଁର୍ଳା ଦୁବ ଯେ ବରପତର
ଖଇ ଯେ ରଖିଲୁ ଯତନେ ତୁମ୍ଭ ଛାମୁର
ହୀରା ନୀଳା ଆଦି ମୋତି ଯେ ମାଣିକ
ଭୂଷଣ ହୋଇଅଛ ଯେ ଦେହଯାକ
କୁଣ୍ଡରେ ବାନ୍ଧିଛ ଯେ ମା ଛିଟ ଯେ ପଗଡ଼ି ପାଟ
ଧୂପ ଯେ କଞ୍ଚାଗୋରସ ମଧରେ ଜଳୁଅଛି ଦୀପ
କଜଳପାତୀ ଲାଲ ସିନ୍ଦୁର
ବଉପାଖେ ଖମ୍ବ ଗଡ଼ାଇଣ, ଲମ୍ବାଇଲୁ ତୁମ୍ଭ ବେନିଡ଼ୋର
ଅରଖ ଦୁଧରା ମଲ୍ଲୀ ଚମ୍ପା ଯେ ନାଗେଶ୍ୱରୀ
ତୁଳସୀ, ବେଲପତର ମନ୍ଦାର ମାଳ
ଶିରେ ବୋହିଛ ଗୋ ମା କରମସାନୀ
ତୁମ୍ଭ ପାଦରେ ଆମ୍ଭେ ଦୟିନୀ...
ଜନ୍ମକୁ ଆଳତୀ, କଲିକ ସଂପୂର୍ଣ୍ଣ, ପୂଜାରେ ଦିଅ ମନ
କହେ କବି ଚିନ୍ତାମଣି ହୀନ, ବାହେକ ପୁଛ ଅଗ୍ନି ପୁରାଣ । (୪)

ଏହିପରି ନୃତ୍ୟଗୀତ ମଧରେ ରାତି ଅତିବାହିତ ହୋଇଯିବା ପରେ ସକାଳରୁ ଦେବୀ ଗାୟକ ବାଦକଙ୍କ ଗହଣରେ ଗ୍ରାମ ପରିକ୍ରମା କରନ୍ତି, ଘରେ ଘରେ ପୂଜା ପାଆନ୍ତି ଓ ପରିଶେଷରେ ତାଙ୍କର ବିସର୍ଜନରେ ଅନୁଷ୍ଠାନଟିର ସମାପ୍ତି ହୁଏ ।

ପୂର୍ବରୁ କଥିତ, ଏହା ପ୍ରାୟତଃ ଆଦିବାସୀ, ଗିରିଜନ ମାନଙ୍କର ଏକ ଦେବୀପୂଜା । ଓରାମ, କୋଲ୍‌ହ, ବିଞ୍ଝାଲ ସଉଁରା ଇତ୍ୟାଦି ଜାତିମାନଙ୍କର ପରମ ପୂଜନୀୟା ଦେବୀଙ୍କ ଉପରେ ଗଭୀର ବିଶ୍ୱାସ । କିନ୍ତୁ ଓଡ଼ିଶାର ସଂସ୍କୃତି ଚିରଦିନ ଏକ ସମନ୍ୱୟବାଦୀ ସଂସ୍କୃତି । ଶବର ବିଶ୍ୱାବସୁ ପୂଜିତ ନୀଳମାଧବ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ ଜଗନ୍ନାଥ ହୋଇ ପାରିଥିବା ଭଳି, ଉକ୍ତ ଆଦିବାସୀଙ୍କ ଦ୍ୱାରା ପୂଜିତା ଦେବୀ ଏ ଅଞ୍ଚଳର ପ୍ରାୟ ସମସ୍ତଙ୍କର ଆରାଧ ଦେବୀ ହୋଇ ପାରିଛନ୍ତି ଓ ଜାତିବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କର ସାଂସ୍କୃତିକ ମିଳନର ପୀଠସ୍ଥଳୀ ହୋଇ ପାରିଛନ୍ତି । ଏ ସମନ୍ୱୟର, ଏ ବିଶ୍ୱାସର ଜୟ ହେଉ ।

# ସମ୍ବଲପୁରୀ ଭାଷାରେ ଦ୍ୱନ୍ଦ୍ୱ ସମାସ

ସତ୍ୟନାରାୟଣ ବହିଦାର

ଏକଦା ଜଣେ ପଣ୍ଡିତ ଜନୈକ ରାଜାଙ୍କ ପାଖକୁ ଦୁଃଖ ଗୁହାରିବା ପାଇଁ ଗଲେ । ହୀନତି ବିନତି ହୋଇ କହିଲେ ତ ରାଜା ଶୁଣିବେ ନାହିଁ । କାରଣ ତାଙ୍କପରି ହଜାର ହଜାର ଗୁହାରିଆ ରାଜ ଦରବାରରେ ପଡ଼ିଥାନ୍ତି । ତେଣୁ ବକ୍ଷ୍ୟମାଣ ଶ୍ଳୋକରେ ସେ ରାଜାଙ୍କ ଦୃଷ୍ଟି ଆକର୍ଷଣ କଲେ ।

"ଦ୍ୱନ୍ଦ୍ୱୋଽହଂ ଦ୍ୱିଗୁରହଂ ମଦ୍‌ଗେହେ
ନିତ୍ୟମବ୍ୟୟୀ ଭାବଃ
ତତ୍‌ପୁରୁଷଃ କର୍ମଧାରୟ ଯେନାହଂ
ବହୁବ୍ରୀହିଃ ସ୍ୟାମ ।"

ଅର୍ଥାତ୍ ଆମେ ଦୁଇପ୍ରାଣୀ । ଆମର ଦୁଇଟା ଗାଈ ଅଛନ୍ତି । ଘରେ ଦୈନନ୍ଦିନ ଅଭାବ ଲାଗି ରହିଛି । ତେଣୁ, ହେ ରାଜ ପୁରୁଷ । ଏପରି କର୍ମ ବ୍ୟବସ୍ଥା କରନ୍ତୁ ଯେପରିକି ମୁ ବହୁବ୍ରିହୀ (ଶସ୍ୟଶାଳୀ, ଅଭାବ ମୁକ୍ତ) ହେବି ।

କହିବାର ତାତ୍ପର୍ଯ୍ୟ ଏହି ଯେ ଦ୍ୱନ୍ଦ୍ୱ, ଦ୍ୱିଗୁ, ଅବ୍ୟୟୀଭାବ, ତତ୍‌ପୁରୁଷ, କର୍ମଧାରୟ, ବହୁବ୍ରିହୀ ଭେଦରେ ଷଡ୍‌ବିଧ ସମାସ ବ୍ୟାଜରେ ପଣ୍ଡିତେ ବୃତ୍ତି ବାଞ୍ଛାକଲେ ଏବଂ ଏବେ ମୁଁ ସମ୍ବଲପୁରୀ ଭାଷାରେ ଦ୍ୱନ୍ଦ୍ୱ ସମାସର କିଞ୍ଚିତ୍ ଅବଲେଖ ଦେଇ ମା-ମହିଷ୍ମତୀର ମଙ୍ଗଳ ଯାଚ୍‌ଞ୍ଚା କରିବି ।

"ଉଭୟ - ପଦାର୍ଥ ପ୍ରଧାନଃ ଦ୍ୱନ୍ଦ୍ୱ ।"

ଯେଉଁ ସମାସରେ ସମାସମାନ ଉଭୟ ପଦର ଅର୍ଥ ପ୍ରଧାନ ରୂପେ କାର୍ଯ୍ୟକାରୀ ହୁଏ, ତାହାକୁ ଦ୍ୱନ୍ଦ୍ୱ ସମାସ କହନ୍ତି ଯଥା - (ପତ୍ର ଓ ପୁଷ୍ପ) = ପତ୍ରପୁଷ୍ପ... ଗୋଟିଏ ପଦ ହେଲା । ଫଳ ଆଉ ଗୋଟିଏ ପଦ । ତେଣୁ (ପତ୍ରପୁଷ୍ପ ଓ ଫଳ)... ଏହି ଉଭୟ ପଦ ମିଳି ସମୂହ, ପଦ ନିଷ୍ପନ୍ନ ହେଲା - ପତ୍ର-ପୁଷ୍ପ-ଫଳ । ବାକ୍ୟରେ ବ୍ୟବହାର କରିବାକୁ ଗଲେ - "ବାଳିକାଟି ବଗିଚାରୁ ପତ୍ର ପୁଷ୍ପ ଫଳ ସଂଗ୍ରହ କରୁଅଛି ।" ଅର୍ଥାତ୍ ପତ୍ର ପୁଷ୍ପ ସଂଗ୍ରହ କରୁଅଛି ଓ ଫଳ ମଧ ସଂଗ୍ରହ

କରୁଅଛି । ଅନ୍ୟ କଥାରେ ଏ ତିନୋଟିରୁ କୌଣସିଟା ଅସଂଗୃହୀତ ନୁହେଁ । ତେଣୁ ଏହି ତିନୋଟି ପଦର ଶକ୍ତି ବା ଅର୍ଥ ବାକ୍ୟ ମଧ୍ୟରେ ସ୍ୱତନ୍ତ୍ର ଭାବରେ କାର୍ଯ୍ୟ ନିମନ୍ତେ 'ଓ', 'ଏବଂ' ପ୍ରୟୋଗ କରାଯାଏ ଏବଂ ସମାସଗତ ବିଶେଷତ୍ୱ ଏହି ଯେ ସମାସମାନ ପ୍ରତ୍ୟେକ ପଦ କେବଳ ବିଶେଷ୍ୟର ଏକବଚନ ହୋଇଥାଏ । ସମ୍ବଲପୁରୀ ଭାଷାରୁ ଏବେ ଏଥିର ଉଦାହରଣ ଦିଆଯାଉ । (କୟା ଓ ଅରସା= କୟାଅରସା; (କୟା ଅରସା ଓ ଗୁରଭେଲି) = କୟାଅରସାଗୁରଭଲି (ପ୍ରତ୍ୟେକଟି, ଅରଣ୍ୟ ଫଳ) । ସେହିପରି - (ମର ଓ ପିଟ) = ମାରପିଟ, (ଧମ ଓ ଧଡ଼କା) = ଧୁମ୍ ଧଡ଼କା; (ଉଠା ଓ ପଟକ) (ମାରପିଟ ଓ ଧୁମ୍ଧଡ଼କା) = ମାର ପିଟ୍ ଧମ୍ ଧଡ଼୍କା । (ମାରପିଟ୍ ଧମ୍ ଧଡ଼କା ଓ ଉଠା ପଟକ) = ମାରପିଟ ଧୁମ୍ ଧଡ଼କା ଉଠାପଟକ ।

ବିଶେଷ୍ୟ । ବ୍ୟକ୍ତିବାଚକ ।

(କ) ପୁ ଲିଙ୍ଗ :-

ଜଗା (ଜଗତ୍ ଓ ଜନକ (ଜନକ) = ଜଗା ଜନେକ ସେହିପରି ମୁନୁମୁଟୁ ।

(ଖ) ସ୍ତ୍ରୀ ଲିଙ୍ଗ :-

ଉର୍କୁଲି ଉଜଲୀ (ଉଜଲୀ = ଉତ୍ + ଜ୍ୱଳ); ଖେଡ଼ି, କୁକିଆଁ ।

(ଗ) କ୍ଲିବ ଲିଙ୍ଗ :-

ଗଛ - ବାନ୍ଦେନ ସାହାଜ; ଫଳ - ଟୋଲ ମହୁଲ; ଶସ୍ୟ - କୁଦୋଜଙ୍ଗର୍ଲା ।

ଜାତିବାଚକ ।

ଆରଜୁ ଏନ୍ (ସଂ: ଅର +ଓ : ଜୁଆଳି) ଆଳଙ୍କାରିକ ଅର୍ଥରେ ଅହି ନକୁଳ ସଂପର୍କ; ଅରାପୁଟି (ଅରା ଗାଡ଼ି ଚକର କାଠ ନିର୍ମିତ ପରିଧି), ଉରା ମୁସଲି (ଘର ଛାତର ମଧ୍ୟଭାଗର ଏ ମୁଣ୍ଡରୁ ସେ ମୁଣ୍ଡକୁ ଲମ୍ବ, ବଡ଼ କାଠ ମୁସଲି (ମୁଷଳ) + ତାହାର ଦୁଇ ପାଖରେ ପ୍ରଧାନ ଦୁଇ କାଠକୁ ଉରା (ଭୁ+) କହନ୍ତି); ଗିନା (ତାଟିଆ) ତାସଙ୍ଗି (କଂସା ଥାଳିଆ); ଗୁଲିମାଠ : ଗୁଲି - ବିଭାଘରର ଅଟା ଓ ଚାଉଳଗୁଣ୍ଡ ତିଆରି, ଛଣା ଯାଇଥିବା, ଗୁଡ଼ପଗା ବଡ଼ ବଡ଼ ଲଡୁ; ମାଠ - ଏହି ପ୍ରଣାଳୀରେ ତିଆରି ଥାଳିଆ ପରି ଚକା ଚକା ପଦାର୍ଥ); ଜୁଡ଼ଜଗନା (ଜୁଡ଼ - ଘାସ ଇତ୍ୟାଦି) ଜଗଡ଼ା (ହିନ୍ଦି - ଜୋଗରା - ଆବର୍ଜନା), ଦନ୍ ଦନ୍ (ମାଂସ) ଖସଖସ (ନିରାମିଷ ସାମଗ୍ରୀ) । (ହରି ବନ୍ଧୁ ପଟ୍ଟନାୟକ ରେଢ଼ାଖୋଲର ଦେଓ୍ୱାନ ଥିବାବେଳେ ଦୌରା ଯିବା ଅବକାଶରେ କୌଣସି ଗାଁ ନିମନ୍ତ୍ରଣ କଲେ ପଚାରନ୍ତି - "ଦନ୍‌ଦନ୍.... କି ...ଖସ୍‌ଖସ୍ ?"

"ଦନ୍‌ଦନ୍" କହିଲେ ଯାଆନ୍ତି, "ଖସ୍‌ଖସ୍'... କହିଲେ ଯାଆନ୍ତି ନାହିଁ।), ଲଡୁ ତିଆରି (ମୁଆଁ ଏବଂ ବିଶେଷତଃ ଚୋପାଛଡ଼ା ମୁଗକୁ ବାଟି କରାଯାଇଥିବା ଜାଉ), ଶାଗସୁଲ୍‌ହା - (ସୁଲ୍‌ହା- ଶୁଖିଲା ପାଦଳ ବାଇଗଣ ଫଡ଼ା)। ଶାଗସୁଲ୍‌ହା - ଉପମାନ ବାଚକ ରୂପେ ବ୍ୟବହୃତ ହୁଏ, ଯଥା - ବେମାର ପଡ଼ି ପଡ଼ି ଶାଗ ସୁଲ୍‌ହା ହେଇ ଗଲାନ ଅର୍ଥାତ୍ ନିଃସ୍ୱତ୍ୱ ଓ ଧଡ଼ିଆ ହୋଇଗଲାଣି।

ବସ୍ତୁବାଚକ - ଅବରଖ (ଅଭ୍ର) ଖପରା (Nickel) କଂସାପିତ୍ତଳ।

ଗୁଣବାଚକ - ନାଲିସଫେଟି, ଉପଷ୍ଟମ, ଟେଣ୍ଡିବାଜି (ଉପଷ୍ଟମ - ଔଦ୍ଧତ୍ୟ, ଟେଣ୍ଡିବାଜି (Obduracy)

କ୍ରିୟାବାଚକ - ଖଙ୍ଗେ (ଖଙ୍ଗ +ଭାବେତି = ଖଙ୍ଗତି, Shortage) ବଡ଼େ (ବଡ଼ତି), ଘିଚା ରପ୍‌ଟା (ଘିଚା - ଟାଣିବା, ରପ୍‌ଟା - ଦୌଡ଼, ଟଣାଟଣି ଅର୍ଥରେ ପ୍ରସିଦ୍ଧ) ଜକ୍ଷାପହରା (ଜୁହା- (ହେ+) - ଜୁହିବା - ଛକିରହି ଅନ୍ଦାଜ କରିବା, ଜୁହା ପହରା - ଛକାଛକି ଅର୍ଥରେ ବ୍ୟବହୃତ ହୁଏ। ଠୁକନାବୁଦନା (ବକ୍ରୋକ୍ତି ବା କଟୁକ୍ତି), ଦେଖନି ମାଗନି (ଦେଖନି - ବିବାହର ପ୍ରାକ୍‌କାଳରେ କନ୍ୟାଦେଖା, ମାଗନି - କନ୍ୟାକୁ ଦେଖିବା ପରେ ମାଗି ଆସିବା ପ୍ରଥା)। ଧୁରୁତ୍ ମାରୁତ୍ (ଧୃ + ମୃ + ; ଆର୍ଥାତ୍ ପ୍ରହାରକନ୍ତେ, ପିଟେ - ନ ପିଟେଁ, ଧୁରୁତ୍ ମାରୁତ୍ - ଆପେକ୍ଷିକ ଶବ୍ଦ, ଧରଧର ମାର୍‌ମାର୍ : ଧୁରୁତ୍ ବା ମୁରତ୍‌ର ଅଲଗ ଅଲକଗ କରି ବ୍ୟବହାର ନାହିଁ ଅଥଚ ନିରାଲମ୍ବ ଭାବରେ ପ୍ରତ୍ୟେକର ଅର୍ଥ ସ୍ଫୁଟିତ ହୁଏ।)



# ସମ୍ବଲପୁରୀ ଭାଷାରେ ଅନୁନାସିକତା

ବିଜୟ୍ କୃଷ୍ଣ ତ୍ରିପାଠୀ

ସମ୍ବଲପୁରୀ ଭାଷାର ସାଧାରଣ ଗୁଣ ଗୁଡ଼ିକ ମଧ୍ୟରୁ ଅନୁନାସିକତା ବା Nasalisation ଏକ ବିଶିଷ୍ଟ ଗୁଣ । ଏହି ଭାଷାର ସମସ୍ତ ସ୍ୱରଧ୍ୱନି (Vowels) ଏହି ବିକାର (Modification) ର ଅନ୍ତର୍ଭୁକ୍ତ । ସମ୍ବଲପୁରୀ ଭାଷାରେ ଯେତେଗୋଟି ସ୍ୱରଧ୍ୱନି ଅଛି ଠିକ୍ ସେତିକିଟି ଅନୁନାସିକ ସ୍ୱରଧ୍ୱନି (rasal vowels) ଅଛି ବୋଲି କହିଲେ ଭୁଲ ହେବ ନାହିଁ । ପ୍ରତ୍ୟେକ ସ୍ୱରଧ୍ୱନି ଓ ତା'ର ଅନୁରୂପ ଅନୁନାସିକ ସ୍ୱରଧ୍ୱନି ମଧ୍ୟରେ ଥିବା ବ୍ୟତିରକେ ବା Contrast ନିମ୍ନରେ ଦିଆଗଲା । ଏଥିରୁ ଜଣାଯିବ କିପରି ଅନୁନାସିକତା ଫଳରେ ଶବ୍ଦର ଅର୍ଥରେ ପରିବର୍ତ୍ତନ ଆସୁଛି ।

୧. ଅ/ଏବଂ/ଅଁ/

"ଅଟା" ଓ ଅଁଟା (ଅଣ୍ଟା);"ଗଡ଼୍" (ଗଡ଼) ଓ 'ଗଁଡ୍' (ଏକ ଆଦିବାସୀ ସମ୍ପ୍ରଦାୟ) ।

୨. ଆ/ଏବଂ/ଆଁ

'ଆଠ୍' (ଆଠ) ଓ 'ଆଁଟ୍' (କଠିନ); 'ବାଟ୍' (ବାଟ) ଓ 'ବାଁଟ୍' (ବାଣ୍ଟିବା);
'କଲା' (ସେ କଲା) ଓ 'କଲାଁ' (ଆମେ କଲାଁ) ।

୩. ଇ/ଏବଂ/ଇଁ/ .

'ସିକ୍' (ଦିଆସିଲି କାଠି) ଓ 'ସିଁକ' (ଏକ ଜାତୀୟ କଣ୍ଟା); 'ପାଇଁ' ଓ ପାଇଁ) ।

୪. ଏ/ଏବଂ/ଏଁ/

'ଏଡ଼େ' (ଏତେ ବଡ଼) ଓ 'ଏଁଡ଼େଁ' (ଦୁଆର ବନ୍ଧ ଉପରେ); 'ବେଟ' (ଗୋଟେଇ ରଖ) ଓ 'ବେଁଟ' (ବେଣ୍ଟ); 'ଜୁଏ' (ନିଆଁ) ଓ 'ଜୁଏଁ' (ଜ୍ୱାଇଁ) ।

୫. ଉ/ଏବଂ/ଉଁ/

'ଉଆସ୍' (ଉଆସ) ଓ 'ଉଆଁସ୍' (ଅମାବାସ୍ୟା);
ଗୁର୍ (ଗୁଡ଼) ଓ 'ଗୁଁର୍' (ଭୁକିବାର ଉପକ୍ରମ) ।

୬. ଓ /ଏଙ୍/ଓଁ/

'ଓଟ୍' (ଓଠ) ଓ 'ଓଁଟ୍' (ଓଟ); ଖୋର୍ (ଅଭ୍ୟସ୍ତ) ଓ 'ଖୋଁର୍' (ଭଣ୍ଡାରୀର ଖୁର)।

ସମ୍ବଲପୁରୀ ଭାଷାରେ କେତେକ ସ୍ଥାନ ଛଡ଼ା ଅନ୍ୟାନ୍ୟ ସ୍ଥାନରେ ଅନୁନାସିକତା unpredictable ଅଟେ। ଯେଉଁ ଜାଗାରେ ଏହା predictable ସେଠାରେ ଏହାର ଉପସ୍ଥିତି ଓ ଅନୁପସ୍ଥିତି ମଧ୍ୟରେ କିଛି ପାର୍ଥକ୍ୟ ନାହିଁ। ଉଦାହରଣ ସ୍ୱରୂପ ନାସିକ୍ୟ ବ୍ୟଞ୍ଜନ (nasal phoneme) ମଧ୍ୟରେ ବ୍ୟବହୃତ ସ୍ୱରଧ୍ୱନି ଓ ଅନୁନାସିକ ସ୍ୱରଧ୍ୱନି ମଧ୍ୟରେ ଉଚ୍ଚାରଣ ଗତ ପାର୍ଥକ୍ୟ ପ୍ରାୟ ନଥାଏ। ଯଥା,

'ମାନ୍ ଓ ମାଁନ୍।

ଏଠାରେ ଉଭୟର ଅର୍ଥ 'ସମ୍ମାନ' ହୋଇପାରେ ବା ଓଜନ 'ମାଣ' ଅର୍ଥରେ ମଧ୍ୟ ବ୍ୟବହୃତ ହୋଇପାରେ।

ସ୍ୱରଧ୍ୱନିର predictable nasality ବା ଅନୁନାସିକତା କୁ ଏହି ସ୍ୱରଧ୍ୱନିର ପୂର୍ବେ ବା ପରେ ଥିବା ନାସିକ ବ୍ୟଞ୍ଜନର ଏକ ଅଂଶ ବୋଲି ବିଚାର କରାଯାଇ ପାରେ। ଏକ ନାସିକ ବ୍ୟଞ୍ଜନ ପୂର୍ବରେ ଉଚ୍ଚାରିତ ସ୍ୱରଧ୍ୱନି ଓ ତାର ଅନୁନାସିକ ରୂପର ବ୍ୟବହାର ମଧ୍ୟରେ କୌଣସି ପ୍ରଭେଦ ନଥାଏ। ଯଥା,

'କାମ୍' ଓ 'କାଁମ୍' (କାମ); 'ଦିନ୍' ଓ 'ଦିଁନ୍' (ଦିନ); 'ଗୁନ୍' ଓ 'ଗୁଁନ୍' (ଗୁଣ)।

ଉପରୋକ୍ତ ଉଦାହରଣ ଗୁଡ଼ିକରୁ ଜଣାଯାଏ ଯେ ଉଭୟ ପାର୍ଶ୍ୱରେ ଥିବା ନାସିକା ବ୍ୟଞ୍ଜନ ଗୁଡ଼ିକ ସହିତ ସ୍ୱରଧ୍ୱନିର ଅନୁନାସିକତାର ନୀବିଡ଼ ଧ୍ୱନି ଗ୍ରାମୀୟ (phonemic)ସମ୍ପର୍କ ରହିଛି।

ବିଶ୍ରାମ ବା pauses ପୂର୍ବରୁ ଓ ନାସିକ ବ୍ୟଞ୍ଜନର ଠିକ୍ ପରେ ବ୍ୟବହୃତ ଅନୁନାସିକ ସ୍ୱରଧ୍ୱନିର ଅନୁନାସିକତା ପୂର୍ବୋକ୍ତ ନାସିକ ବ୍ୟଞ୍ଜନର ଅଂଶ ବିଶେଷ ବୋଲି ଧ୍ୱନି ଗ୍ରାମୀୟ ଦୃଷ୍ଟିକୋଣରୁ ବିଚାର କରାଯାଇ ପାରେ। ଯଥା,

"ବନାଁ' ଓ 'ବନଁ' (ଉଭୟର ଅର୍ଥ 'ବଣା')।

କେତେକ ଭାଷାଭାଷୀ ଲୋକ ଏହାକୁ 'ହଁନାଁ' ବୋଲି ମଧ୍ୟ ଉଚ୍ଚାରଣ କରିଥାନ୍ତି ଓ ଏଥିରୁ ଜଣାଯାଏ ଯେ ନାସିକ ବ୍ୟଞ୍ଜନର ପୂର୍ବ ଓ ପରବର୍ତ୍ତୀ ଧ୍ୱନି ଗୁଡ଼ିକ ସାଧାରଣତଃ ଅନୁନାସିକତାର ବଶବର୍ତ୍ତୀ ହୋଇଥାନ୍ତି। ଆହୁରି ମଧ୍ୟ ଶବ୍ଦ ଶେଷରେ ଥିବା ସ୍ୱରଧ୍ୱନିଟି ଯଦି ତାହା ପୂର୍ବରୁ ଏକ ନାସିକ ବ୍ୟଞ୍ଜନ ଥାଏ ତେବେ ତାର ପ୍ରଭାବରେ ଅନୁନାସିକ ସ୍ୱରଧ୍ୱନିରେ ପରିଣତ ହୁଏ। ଯଦିଓ

ଏହି କ୍ଷେତ୍ରରେ ସ୍ୱରଧ୍ୱନି ଓ ତାର ଅନୁନାସିକ ରୂପ ମଧ୍ୟରେ ଧ୍ୱନିଗ୍ରାମୀୟ ପ୍ରଭେଦ ରହିଛି ଏହି ପ୍ରଭେଦ ଅତି ମାମୁଲି ଓ ସହଜରେ ଉଚ୍ଚାରଣ ସମୟରେ ଧରାପଡ଼େ ନାହିଁ । ଏହି ପ୍ରଭେଦକୁ ଧରିବାକୁ ଚେଷ୍ଟାକଲେ ଉଚ୍ଚାରଣ ବିକୃତ ହୋଇ ପଡ଼ିବାର ଭୟ ରହିଛି ।

ଅନୁନାସିକ ସ୍ୱରଧ୍ୱନିର ପୂର୍ବରୁ ଯଦି ନାସିକ ବ୍ୟଞ୍ଜନ ଥାଏ ଓ ପରେ ଅନ୍ୟ ବ୍ୟଞ୍ଜନ ଥାଏ ତେବେ ତାହା ପ୍ରାୟତଃ ଦୁଇଟି ଧ୍ୱନ୍ୟାତ୍ମକ (Phonetic) ରୂପରେ ଉଚ୍ଚାରିତ ହୋଇଥାଏ, ଯଥା (୧) ଦୁର୍ବଳ ଅନୁନାସିକତା ସ୍ୱରଧ୍ୱନି ଓ (୨) ସବଳ ଅନୁନାସିକତା ସ୍ୱରଧ୍ୱନି ।

ଦୁର୍ବଳ ଅନୁନାସିକ ସ୍ୱରଧ୍ୱନିଟି ଧ୍ୱନିଗ୍ରାମୀୟ ଦୃଷ୍ଟିରୁ କେବଳ ଏକ୍ ସ୍ୱରଧ୍ୱନି ଅଟେ ଓ ତାହାର ଅନୁନାସିକତା ତାର ପୂର୍ବୋକ୍ତ ନାସିକ୍ୟ ବ୍ୟଞ୍ଜନର ଅଂଶ ମାତ୍ର । ଯଥା,

"ମୁଁଡ଼ଶ" (ଏକ ଛୋଟ ପୋଖରୀ) ।

ଅନ୍ୟପକ୍ଷରେ ଧ୍ୱନିଗ୍ରାମୀୟ ଦୃଷ୍ଟିରୁ ସବଳ ଅନୁନାସିକତା ସ୍ୱରଧ୍ୱନି ଏକ ସ୍ୱରଧ୍ୱନି ସ ଏକ ନାସିକ ବ୍ୟଞ୍ଜନର ମିଶ୍ରଣରେହିଁ ଉଚ୍ଚାରିତ ହୋଇଥାଏ । ଯଥା,

"ମୁଁନ୍‌ଡ଼ା' (ଏକ ଆଦିବାସୀ ସମ୍ପ୍ରଦାୟ) ।

ସବଳ ଅନୁନାସିକତା ଧ୍ୱନିଗ୍ରାମୀୟ ଅଟେ ଓ ତାହା ସବଳ ନାସିକ ବ୍ୟଞ୍ଜନ ପରେ ହିଁ ଉଚ୍ଚାରିତ ହୋଇଥାଏ, କିନ୍ତୁ ନାସିକ ବ୍ୟଞ୍ଜନର ଅନୁପସ୍ଥିତିରେ ଦୁର୍ବଳ ଅନୁନାସିକତାରେ ଉଚ୍ଚାରଣ ଧ୍ୱନିଗ୍ରାମୀୟ ହୋଇଥାଏ । ଯଥା,

"ପାଁଚ୍" (ପାଞ୍ଚ) ।

କିନ୍ତୁ ଦୁର୍ବଳ ଅନୁନାସିକ ସ୍ୱରଧ୍ୱନି ଯଦି ନାସିକ ବ୍ୟଞ୍ଜନର ସଂସ୍ପର୍ଶରେ ଆସେ ତେବେ ଦୁର୍ବଳ ଅନୁନାସିକତା ଅଣଧ୍ୱନିଗ୍ରାମୀୟ ହୋଇପଡେ । ଯଥା,

"ଆଁମ' (ଆମ୍ବ); "ମାଁ" (ମା) ଇତ୍ୟାଦି ।

ଯଦି ସ୍ୱରଧ୍ୱନିର ପୂର୍ବରେ ନାସିକ ବ୍ୟଞ୍ଜନ ନ ଥାଇ ପରେ ଥାଏ ତେବେ ଅନେକଙ୍କ ଉଚ୍ଚାରଣରେ ସ୍ୱରଧ୍ୱନିରୁ ଦୁର୍ବଳ ଅନୁନାସିକତା ଲୋପ ପାଇଥାଏ । ଯଥା,

"ଆମ" (ଆମ୍ବ); "କାମ୍" (କାମ) ଇତ୍ୟାଦି ।

ନାସିକ ବ୍ୟଞ୍ଜନର ପରେ ନାସିକ ବ୍ୟଞ୍ଜନ ବ୍ୟତୀତ ଅନ୍ୟ ବ୍ୟଞ୍ଜନର ପୂର୍ବରୁ ଥିବା ଅନୁନାସିକ ସ୍ୱରଧ୍ୱନି ତାହାର ଦୁର୍ବଳ ଅନୁନାସିକତା ହରାଇଥାଏ । ଯଥା,

"ମାଘ୍" (ମାଘ) ।

ସ୍ୱରଧ୍ୱନି ସହ ସ୍ୱରଧ୍ୱନିର ତୁଳନା କଲେ ଜଣାଯାଏ ଯେ ଅଣନାସିକ (non-nasal) ପରିବେଶ (environment) ରେ ଅନୁନାସିକତା ଏକ ଭେଦକ ଅଭିଲକ୍ଷଣ (distinctive feature) ଭାବରେ ଗୃହୀତ ହୁଏ । ଆହୁରି ମଧ ଦୁର୍ବଳ ଅନୁନାସିକତାର ପ୍ରଭେଦ ଧ୍ୱନିଗ୍ରାମୀୟ ଅଟେ । (unpredictable) ଅନୁନାସିକତାର କାରଣ ସ୍ୱରଧ୍ୱନି। ଆଗରେ ବା ପଛରେ ଥିବା ନାସିକ ବ୍ୟଞ୍ଜନ ହିଁ ଅଟେ । ନିମ୍ନଲିଖିତ ଉଦାହରଣ ଗୁଡ଼ିକରୁ ଏହି ପ୍ରବୃତ୍ତିଟି ସ୍ପଷ୍ଟ ଜଣା ପଡ଼ିବ ।

୧ .କ) ଅନୁନାସିକ ସ୍ୱରଧ୍ୱନି ବନାମ ନାସିକ ବ୍ୟଞ୍ଜନ /ମ/ ପରେ ଉଚ୍ଚାରିତ ସ୍ୱରଧ୍ୱନି । ଯଥା,

"ଚୁଆଁ" (କୂଅ); 'ଚୁମା' (ଚୁମ୍ବନ)

ଖ) ଅନୁନାସିକ ସ୍ୱରଧ୍ୱନି ବନାମ ନାସିକ ବ୍ୟଞ୍ଜନ /ମ/ ପୂର୍ବରୁ ଉଚ୍ଚାରିତ ସ୍ୱରଧ୍ୱନି । ଯଥା,

'ଆଁ' (ଖୋଲାପାଟି); 'ଆମ୍' (ଆମ୍ବ)

୨ .କ) ଅନୁନାସିକ ସ୍ୱରଧ୍ୱନି ବନାମ ନାସିକ/ନ/ପରେ ଉଚ୍ଚାରିତ ସ୍ୱରଧ୍ୱନି ଯଥା,

'ଅଁଳା' (ଅଁଳା); 'ନଲା' (ନଳା)

ଖ) ଅନୁନାସିକ ସ୍ୱରଧ୍ୱନି ବନାମ ନାସିକ ବ୍ୟଞ୍ଜନ / ନା/ ପୂବରୁ ଉଚ୍ଚାରତି ସ୍ୱରଧ୍ୱନି ଯଥା,

'ଜୁଏଁ' (ଜ୍ୱାଇଁ) 'ଜୁଏନ୍' (ଜୁଆଣି)

୩.କ) ଅନୁନାସିକ ସ୍ୱରଧ୍ୱନି ବନାମ ନାସିକ ବ୍ୟଞ୍ଜନ/ଣ/ ପରେ ଉଚ୍ଚାରିତ ସ୍ୱରଧ୍ୱନି ଯଥା,

'କାଇଁ', (ଏକ ଜାତୀୟ ପୋକ); 'କାଣି' (ଗୋଟିଏ ଆଖି ନଷ୍ଟ ହୋଇଥିବା ସ୍ତ୍ରୀ ଲୋକ)

ଖ) ଅନୁନାସିକ ସ୍ୱରଧ୍ୱନି ବନାମ ନାସିକ ବ୍ୟଞ୍ଜନ/ଣ/ ପୂର୍ବରୁ ଉଚ୍ଚାରତି ସ୍ୱରଧ୍ୱନି । ଯଥା,

'ଛିଁଲା' (ସ୍ପର୍ଶକଲା); 'ଛିଣ୍ଡଲା' (ଛିଣ୍ଡିଲା)

ଉପରୋକ୍ତ ଉଦାହରଣ ଗୁଡ଼ିକରୁ ଜଣାଯାଏ ଯେ ଅନୁନାସିକ ସ୍ୱରଧ୍ୱନି ଓ ନାସିକ ବ୍ୟ... ଦ୍ୱାରା ପରିବେଷ୍ଟିତ ସ୍ୱରଧ୍ୱନି ଏକା ନୁହନ୍ତି । ସେ ଗୁଡ଼ିକର ବ୍ୟବହାରରେ ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ହୋଇଥାଏ ଓ ବ୍ୟତିରେକୀ (Contrastive) ଅଟନ୍ତି ।

ସମ୍ବଲପୁରୀ ଭାଷାରେ ଅନୁନାସିକତାରେ ଅଧ୍ୟୟନ କଲାବେଳେ ଆଉ ଏକ ପ୍ରକିୟା ଦୃଷ୍ଟିକୁ ଆସେ । ଯେତେବେଳେ ଦୁଇଟି ସ୍ୱରଧ୍ୱନି ପରସ୍ପର ମିଳିତ ହୁଅନ୍ତି, ସେଗୁଡ଼ିକ ସମସ୍ତ ସମ୍ଭାବ୍ୟ ଆକୃତି (shape) ରେ ମିଳିତ ହୁଅନ୍ତି, ଯଥା- ସ୍ୱରଧ୍ୱନି ଓ ସ୍ୱରଧ୍ୱନି; ସ୍ୱରଧ୍ୱନି ଓ ଅନୁନାସିକ ସ୍ୱରଧ୍ୱନି; ଅନୁନାସିକ ସ୍ୱରଧ୍ୱନି ଓ ସ୍ୱରଧ୍ୱନି; ଏବଂ ଅନୁନାସିକ ସ୍ୱରଧ୍ୱନି ଓ ଅନୁନାସିକ ସ୍ୱରଧ୍ୱନି ।

ନାସିକ ବ୍ୟଞ୍ଜନ ବ୍ୟତୀତ ଅନ୍ୟ ବ୍ୟଞ୍ଜନର ପରେ ଅନୁନାସିକ ସ୍ୱରଧ୍ୱନି ସ୍ୱରଧ୍ୱନିର ଆକୃତି ବା (shape) ସମ୍ବଲପୁରୀ ଭାଷାରେ ମିଳେନାହିଁ। ଏହାକୁ ଉଚ୍ଚାରଣ କରିବାର ଚେଷ୍ଟାକଲେ ଭାଷା ବିକୃତ ଓ କୃତ୍ରିମ ହେବାର ସମ୍ଭାବନା ରହିଛି। କିନ୍ତୁ ଅନୁନାସିକ ସ୍ୱରଧ୍ୱନି ଓ ସ୍ୱରଧ୍ୱନିର (shape) ଯଦି ନାସିକ ବ୍ୟଞ୍ଜନ ପରେଥାଏ ତେବେ ତାହା ଦୁଇଟି ସ୍ୱରଧ୍ୱନି ଭାବରେ ଉଚ୍ଚାରିତ ହୁଏ। ଯଥା,

'ମାଇଁ' ଓ 'ମାଇ' (ମାଇଚିଆ)।

ସ୍ୱରଧ୍ୱନି ଓ ଅନୁନାସିକ ସ୍ୱରଧ୍ୱନିର (shape) ନିମ୍ନରେ ଦିଆଗଲା। ଯଥା,

"ଚୁଆ" (ଏକ ଖେଳନା); "ଚୁଆଁ" (କୂଅ)।

କିନ୍ତୁ ଅନୁନାସିକ ସ୍ୱରଧ୍ୱନି ଓ ଅନୁନାସିକ ସ୍ୱରଧ୍ୱନିର (shape) ଯଦି ନାସିକ ବ୍ୟଞ୍ଜନ ପରେ ଥାଏ ତେବେ ତାହା ଦୁଇଟି ଅନୁନାସିକ ସ୍ୱରଧ୍ୱନି ପରିବର୍ତ୍ତେ ସ୍ୱରଧ୍ୱନି ଓ ଅନୁନାସିକ ସ୍ୱରଧ୍ୱନିରେ ପରିଣତ ହୁଏ। ଯଥା,

"ମାଁଇଁ" ଓ "ମାଇଁ"।



# ପଶ୍ଚିମ ଓଡ଼ିଶାରେ ସାଂସ୍କୃତିକ ସହାବସ୍ଥାନ ଓ କରମା

ସନ୍ତୋଷ କୁମାର ରଥ

ଭାଷାକୁ ଭିତ୍ତିକରି ଜାତି ଗଢ଼ିବା ଖୁବ୍ କମ ଦିନର କଥା । ଜାତିର ସଂଗଠନ ଶକ୍ତି ସଂସ୍କୃତି । ସଂସ୍କୃତି ମଣିଷ ମଣିଷ ଭିତରେ ଗୋଟିଏ ସମାନ ଚିନ୍ତନ ସୃଷ୍ଟିକରେ, ଗୋଟିଏ ଆଭିମୁଖ୍ୟରେ ଗୋଷ୍ଠୀ ଏ ମଣିଷକୁ ଗଢ଼େଇ ନିଏ । ଗଲା ଶତାବ୍ଦୀର ଶେଷଭାଗରେ ଓ ଏଇ ଶତାବ୍ଦୀର ପ୍ରଥମ ଭାଗରେ ଭାରତରେ ଏକ ନୂତନ ଧରଣର ସଙ୍ଗଠନ ଦେଖାଦେଲା । ତାକୁ କୁହାଯାଇପାରେ, ମହାଭାରତୀୟ ହିନ୍ଦୁ ଜାତିର ପୁନରୁତ୍ଥାନ । ହିନ୍ଦୁ ଜାତିର ହିଁ କହିବାକୁ ପଡ଼ିବ କାହିଁକିନା ସମସ୍ତ ଚେଷ୍ଟା ଓ ଉଦାରତା ସତ୍ତ୍ୱେ ସେ ସମୟ ହିନ୍ଦୁ ଓ ମୁସଲମାନ ମଧ୍ୟରେ ଏକତା ଆଣିପାରିଲା ନାହିଁ । ଭାରତ ଓ ପାକିସ୍ଥାନର ପ୍ରଧାନ ବିଭେଦକ ହେଲା ଧର୍ମ । ଅନ୍ତ-ଭାରତୀୟ ସ୍ତରରେ ପରବର୍ତ୍ତୀ ବିଭେଦକ ହେଲା ଭାଷା । ସେଇଠୁଁ ଜନ୍ମହେଲା ଆସାମୀଜାତି, ଓଡ଼ିଆ ଜାତି, ବଙ୍ଗାଳି ଜାତି, ମରାଠୀ ଜାତି ଇତ୍ୟାଦି ।

ଓଡ଼ିଆ ଜାତିର ଜନ୍ମ ଏକ ସାଂସ୍କୃତିକ ପ୍ରେରଣାରୁ ନୁହେଁ ଭାଷିକ ପ୍ରେରଣାରୁ । ଆଜିର ଓଡିଆ ଜାତି ନିକଟରେ ଏଣୁ ଏକ ସମାନ ପରମ୍ପରା ଓ ପୁରୋଦୃଷ୍ଟି ଆଶା କରାଯାଇ ନପାରେ । ସାଂସ୍କୃତିକ ବୈଚିତ୍ର୍ୟ ହିଁ ଏହାର ବୈଶିଷ୍ଟ୍ୟ ହେବ । ଏଥିରେ ରହିଛି, ସାଂସ୍କୃତିକ ବୈଚିତ୍ର୍ୟ ଓ ବିକାଶଶୀଳ ଏକ ନୂତନ ସଂସ୍କୃତି । "ଚାହାଣୀ, ଚଳଣି ଓ ଚମକ ରେ ଏହାର ପ୍ରତ୍ୟେକ ଭୌଗୋଳିକ ଅଞ୍ଚଳ ଅନ୍ୟଠାରୁ ଭିନ୍ନ । ସେ ଗୁଡ଼ିକରେଁ ଘଟୁଥିବା ସାଂସ୍କୃତିକ ସଂଘର୍ଷ, ସହାବସ୍ଥାନ ଓ ସଂକ୍ରମଣ ଗଭୀର ନିରୀକ୍ଷାରେ ଅପେକ୍ଷାରଖେ । ଏହା ଓଡ଼ିଶାର ବୃହତ୍ତମ ସାଂସ୍କୃତିକ ଐକ୍ୟର ପ୍ରତିବନ୍ଧକ ନୁହେଁ, ତାର ପ୍ରତ୍ୟେକ ଅଙ୍ଗର ଉପାଙ୍ଗ ଅନ୍ୱେଷଣ । ତାର ପ୍ରତ୍ୟେକ ଅଙ୍ଗରେ ଘଟୁଥିବା ବିବର୍ତ୍ତନ କାରଣ ସନ୍ଧାନ ।

ପ୍ରବନ୍ଧଟିର ପରୀକ୍ଷା କ୍ଷେତ୍ର ପଶ୍ଚିମ ଓଡ଼ିଶା । ଆଦିବାସୀ ସଂସ୍କୃତି ସହ ଆର୍ଯ୍ୟ ଓ ତାର ସହାବସ୍ଥାନର ଆଲୋଚନା । ଆଲୋଚନାଟି କୌଣସି ନିର୍ଦ୍ଦିଷ୍ଟ ସମୟରେ ସୀମାବଦ୍ଧ ନୁହେଁ, କିନ୍ତୁ

ସମୟର ବିଭିନ୍ନ ସ୍ତର ଦେଇ ଏହାର ଐତିହାସିକ ଆଲୋଚନା କରାଯାଇପାରୁନି । ବର୍ତ୍ତମାନର ପ୍ରଚଳିତ 'ବାହାଣୀ' ଚଳଣୀ ଓ 'ଚମକ' ରେ ଉପସ୍ଥାପିତ ସଂଘର୍ଷ ର ଉଦ୍‌ଘାଟନ ପ୍ରଚେଷ୍ଟା ରହିଛି ।

ପଶ୍ଚିମ ଓଡ଼ିଶାରେ ଆର୍ଯ୍ୟବସତିର ଦୁଇଟି ସ୍ପଷ୍ଟ ସମ୍ଭାବନା ରହିଛି । ପ୍ରଥମଟି ହେଲା, ମହାନଦୀ କୂଳେ କୂଳେ କନ୍ଦ୍ରୋତୀଗ ଦକ୍ଷିଣ-ପୂର୍ବ ଆର୍ଯ୍ୟଗତ । ଅନ୍ୟଟି ମଧଦେଶରୁ ପୂର୍ବ ଉପକୂଳରୁ

ପଶ୍ଚିମକୁ ବସତି ସଂକ୍ରମଣ । ଉଭୟ ଯୁକ୍ତି ସମ୍ଭାବନାମୟ ହୋଇପାରେ ଉଭୟଟି ସତ୍ୟଭିତ୍ତିକ । ଏଇ ଆର୍ଯ୍ୟବସତି ସ୍ଥାପନର ଐତିହାସିକ ସମୟ ନିରୂପଣ କଷ୍ଟସାଧ । ତଥାପି ପ୍ରାଥମିକ ଗଙ୍ଗଙ୍କ ରାଜତ୍ୱ କାଳରୁ (୭ମ/୮ମ ଶତାବ୍ଦୀ) ପୂର୍ବ ଉପକୂଳ ସହ ସମ୍ପର୍କ ଓ ସଂଘର୍ଷ ର ପ୍ରମାଣ ମିଳେ । ଏଇ ଶତାବ୍ଦୀର ପୂର୍ବ ଉପକୂଳରୁ କିଛି ବ୍ରାହ୍ମଣ ଓ ବ୍ରାହ୍ମଣେତର ଆର୍ଯ୍ୟ ରାଜବଂଶ ସହ ଆସିଥିବା ଖୁବ୍ ସମ୍ଭବ । ପୁଣି ମୁଳୁଥିବା କେତୋଟି ତାମ୍ର ଶାସନରୁ ପ୍ରମାଣମିଳେ ସମ୍ବଲପୁର ଓ ପାଟଣା ଅଞ୍ଚଳରେ ତା ପୂର୍ବରୁ ଆର୍ଯ୍ୟମାନେ ସ୍ଥାୟୀଭାବରେ ବସବାସ କରିଥିଲେ । (ସମ୍ବଲପୁର-ଇତିହାସ- ଶିବ ନାରାୟଣ ଦାସ) । ପଶ୍ଚିମ ଓଡ଼ିଶାର ଆର୍ଯ୍ୟ ଜାତି (ବ୍ରାହ୍ମଣ, ଭଣ୍ଡାରୀ, ଗଉଡ଼, ତେଲି ଇତ୍ୟାଦିରେ ଦୁଇଟି ଗୋଷ୍ଠୀ ଦେଖାଯାଏ । ଝାଡୁଆ ଗୋଷ୍ଠୀ ଓ ଓଡ଼ିଆ ଗୋଷ୍ଠୀ । ଝାଡୁଆ ଗୋଷ୍ଠୀ ଆଚାର ଓ ଅଭିଚାରରେ ଅଧିକ ଅଷ୍ଟ୍ରିକ । ଓଡ଼ିଆ ଗୋଷ୍ଠୀ ସାଧାରଣତଃ କମ୍ ସତ୍ତା ହଜାଇଥିବା ଆର୍ଯ୍ୟ । ମନେହୁଏ, ଝାଡୁଆ ଗୋଷ୍ଠୀ ଝାଡ଼ଖଣ୍ଡ ଦେଇ ମହାନଦୀର କୂଳେ କୂଳେ ଆସିଥିବା ଆର୍ଯ୍ୟଗୋଷ୍ଠୀ ଓ ଓଡ଼ିଆମାନେ ପୂର୍ବଉପକୂଳରୁ ପରବର୍ତ୍ତୀ କାଳରେ ଆସିଥିବା ଆର୍ଯ୍ୟଗୋଷ୍ଠୀ ।

ପ୍ରଥମ ଆର୍ଯ୍ୟଗୋଷ୍ଠୀ ପହଞ୍ଚିବାବେଳେ ପାହାଡ଼ି ମଣିଷଙ୍କର ଥିଲା ଏ ମାଟିରେ ବିସ୍ତୀର୍ଣ୍ଣ ଦଖଲ । କିନ୍ତୁ ନବାଗତମାନେ ଥିଲେ ଚୁର ଓ ମାଟି ଲୋଭୀ । ସେତେବେଳେ କୃଷି ସଂସ୍କୃତି ଉତ୍ତର ଭାରତରେ ବ୍ୟାପିଯାଇଥିଲା । ଜମିର ଲୋଭରେ ଆର୍ଯ୍ୟମାନେ ଦିଗ ଦିଗକୁ ସଞ୍ଚରିଯାଉଥିଲେ । ମାଟି ସଂପର୍କରେ ପାହାଡ଼ିମଣିଷମାନଙ୍କର ଥିବା ସମସ୍ତ ସଂସ୍କାରକୁ ଆପଣାର କରିବା ଛଡା ସେମାନଙ୍କର ଗତ୍ୟାନ୍ତର ନ ଥିଲା । ଚିନ୍ତାର ମହାନତା, ଧାର୍ମିକ ସଂବୃଦ୍ଧି ଓ ଜୀବନ ଓ ଯାପନର ଉଚ୍ଚତର ମାନଦଣ୍ଡ ସତ୍ତ୍ୱେ ଆର୍ଯ୍ୟମାନେ ଆଦିବାସୀ ଗୋଷ୍ଠୀଦ୍ୱାରା ପ୍ରଭାବିତ ହେଲେ । ଏଇ ପ୍ରଭାବକୁ ପାଶ୍ଚାତ୍ୟ ପ୍ରଭାବସହ ତୁଳନା କରାଯାଇନପାରେ । ଏହା ତାର ସଂପୂର୍ଣ୍ଣ ବିପରୀତ । ଆର୍ଯ୍ୟମାନଙ୍କୁ ନିଜର କରିବାପାଇଁ ଆଦିବାସୀମାନେ ମୋଟେ ପ୍ରସ୍ତୁତ ନଥିଲେ । ଏବେ ବି ଗଣ୍ଡ

ଜାତିର ଲୋକେ ବ୍ରାହ୍ମଣଙ୍କର ବର୍ଣ୍ଣ ଶ୍ରେଷ୍ଠତ୍ୱକୁ ଅସ୍ୱୀକାର କରନ୍ତି । (ଗଣ୍ଡମାନେ 'ପଇତା' ଧାରଣ କରନ୍ତି । ବ୍ରାହ୍ମଣଙ୍କ ହାତରେ ଖାଆନ୍ତି ନାହିଁ ଇତ୍ୟାଦି ।) କିନ୍ତୁ ଅନ୍ତତଃ ୮ମ ଶତାବ୍ଦୀରୁ ପଶ୍ଚିମ ଓଡ଼ିଶାରେ ରାଜାମାନଙ୍କ ଦ୍ୱାରା ପୃଷ୍ଟପୋଷକତା ପାଇ ଆସିଛନ୍ତି । (ସମ୍ବଲପୁର ଇତିହାସ) ପରିମାଣରେ, ଉଭୟ ଗୋଷ୍ଠୀ ମଧ୍ୟରେ ବାହ୍ୟତଃ ସହାବସ୍ଥାନର ସର୍ତ୍ତସବୁ ସହଜ ହେଲେ ବି ପ୍ରଚ୍ଛନ୍ନଭାବରେ ନିଜକୁ ଜାହିର କରିବା ଇଚ୍ଛା ଉଭୟଙ୍କ ପାଖରେ ରହିଛି । 'କରମା ପରବ' କୁ ଭିତ୍ତିକରି ଏମିତି ଏକ ସହାବସ୍ଥାନ/ସଂଘର୍ଷକୁ ଆଲୋଚନା କରିବା ।

କରମା ଏକ ଆଦିବାସୀ ଉତ୍ସବ । ମଦ ଓ ମାଦଳ, ଧାଂରା ଓ ଧାଂରୀରେ ଏହା ପାଳିତ ହୁଏ । ଏହାର ସମସ୍ତ ଆଭିଚାରିକ କ୍ରିୟାରେ ଆଦିବାସୀ ସଂସ୍କୃତିର ସଙ୍କେତ ନିହିତ କିନ୍ତୁ ଆଜିକାଲିର ପ୍ରଚଳିତ କରମାକୁ ପୁରାମାତ୍ରାରେ ଆଦିବାସୀ ଉତ୍ସବ କୁହାଯାଇପାରିବନାହିଁ । ଆର୍ଯ୍ୟାକରଣକ୍ରୀୟାରେ ଏହା ନୂତନ ରୂପ ପାଇଛି । ଏହାର ପୂଜା, କାହାଣୀ ଓ ସଙ୍ଗୀତରେ ଆର୍ଯ୍ୟ ସଂସ୍କୃତିର କିଛି ପ୍ରଭାବ ରହିଯାଇଛି ।

ସମସ୍ତ ପ୍ରାଚୀନ ଧର୍ମର ଉପାସନା କରି କରମା ଏକ ସକାମ ଉପାସନା । କୃଷିର ଉନ୍ନତି ସହ ଏହା ବିଶେଷଭାବେ ଜଡ଼ିତ । ମାଟି ଓ ମଣିଷର ସୌଭାଗ୍ୟ ଓ ସଂବୃଦ୍ଧି ପାଇଁ କରମସାନୀ ବା କରସାଇଁ ପାଖରେ ପ୍ରାର୍ଥନା କାତର । ଭାଦ୍ରବ ଶୁକ୍ଳ ଏକାଦଶୀରୁ ଏହାର ଆରମ୍ଭ । ପ୍ରୟୋଜନ ଅନୁସାରେ ଶରତ ଋତୁର ଅନ୍ୟ କେବେ ମଧ୍ୟ ପୂଜାର ଆୟୋଜନ କରାଯାଇପାରେ । ଶାରଦୀୟ ଜହ୍ନର ତଳେ କରମସାନୀର ଏଇ ପୂଜା ପାଇଁ ଆଜି ବି ଆରଣ୍ୟକ ମଣ୍ଡପଟିଘର ଅପେକ୍ଷା ରଖେ । ପୂଜାର କୌଣସି ମନ୍ତ୍ର ନାହିଁ, ପୂଜା କେବଳ ମଦ ଓ କୁକୁଡ଼ାର ନିବେଦନ । ନିବେଦନ ପରେ କରମସାନୀର ମହିମା ପ୍ରଖ୍ୟାପକ କାହାଣୀଟିଏ ଝାଙ୍କର ଶୁଣାଇ ଦିଏ । ପୁରା ରାତିଟା ମଦ ଓ ମାନ୍ଦକରେ, ଧାଂରା ଓ ଧାଂରୀରେ ଜମିଯାଏ । ସକାଳେ କରମସାନୀ ଗାଁ ପରିକ୍ରମାକରେ । ସବୁ ଦ୍ୱାରରେ ତାର ପୂଜାପରେ ନଈ ପାଣିରେ ତାକୁ ଭସାଯାଏ ।

କରମା କରମ ଗଛର ପୂଜା । ପୂଜା ପଦ୍ଧତିରେ ଆର୍ଯ୍ୟ କୌଣସି ହସ୍ତକ୍ଷେପ କରିନି । ଆଜି ବି ଆର୍ଯ୍ୟ ପାଇଁ କରମସାନୀ ଦାଣ୍ଡର ଦିଅଁ ହୋଇ ରହିଯାଇଛି । କରମସାନୀ ପ୍ରତି ଆର୍ଯ୍ୟର ବିଶ୍ୱସ୍ତତା ରହିଛି, ଝାଙ୍କର ସାହାଯ୍ୟରେ ତା'ର ପୂଜା କରେଇ ନିଏ । ଏଠାରେ ଭୟ ବା ଭକ୍ତି ଠାରୁ ମୈତ୍ରୀର ଇଚ୍ଛା ବେଶୀ । କରମାର ଉତ୍ସବରେ ଆର୍ଯ୍ୟ ଶ୍ରଦ୍ଧାଶୀଳ ଦୂରତାରେ ରହିଥାଏ ।

ପ୍ରତ୍ୟେକ ମହିମା ପ୍ରଖ୍ୟାପକ କାହାଣୀର ସଂରଚନା (ଯେମିତି ବ୍ରତ କଥା, ଓଷା, ମହାତ୍ମ୍ୟ) ବାରୋଟି ପର୍ଯ୍ୟାୟରେ ଗଠିତ । ୧ । ଆକସ୍ମିକ ଭାବେ କୌଣସି ଏକ ଦେବତାକୁ ସ୍ୱୀକାର ଓ

ଟରା ଉପାସନା ୨ । ସେ ଦେବତାର ଦୟାରୁ ସୌଭାଗ୍ୟପ୍ରାପ୍ତି ଓ ଦେବତା ପ୍ରତି ଅବମାନନା ୩ । ଆକସ୍ମିକ ଭାବେ ବିପର୍ଯ୍ୟର ଆରମ୍ଭ ଓ ଦୈବୀଶକ୍ତି ନିକଟରେ ମଣିଷର କରୁଣସ୍ଥିତି । ୪ । ଦେବା ପ୍ରତି ଦୃଢ ବିଶ୍ୱାସ ସ୍ଥାପନ ଓ ତା'ର କରୁଣ ସ୍ଥାୟୀ ସୌଭାଗ୍ୟ ପ୍ରାପ୍ତି । କରମା କାହାଣୀର ସଂରଚନାରେ ମଧ ଏଇ କ୍ରମଟି ରକ୍ଷିତ । ପ୍ରଥମେ ସାଧବ ବୁଢ଼ା କରମାସାନୀଙ୍କୁ ସ୍ୱୀକାର କରିଛି ଓ ସୌଭାଗ୍ୟ ପାଇଛି । ପରେ ଅସ୍ୱୀକାର କରି........ଇତ୍ୟାଦି ।

ଆଦିବାସୀ ସମାଜରେ ନୌ ସଭ୍ୟତା କୈନ୍ଦ୍ରିକ ଏମିତି ଏକ କାହାଣୀ ଆଶା କରାଯାଇ ନପାରେ । ପୁଣି ସାଧବପୁଅମାନଙ୍କର କରମସାନୀକୁ ଅସ୍ୱୀକାର କାରଣଟି ଉଲ୍ଲେଖଯୋଗ୍ୟ । ଆର୍ଯ୍ୟଙ୍କର ନୀତିବଦ୍ଧ ଜୀବନରେ ସ୍ତ୍ରୀ ପୁରୁଷର ଏକତ୍ର ନାଚଗୀତ ସହ୍ୟ ହୋଇନି । ଏଣୁ ସାଧବ ପୁଅ ପୂଜାମଣ୍ଡପ ଭାଙ୍ଗି ଦେଇଛି, କରମସାନୀକୁ ପାଣିରେ ଭସାଇ ଦେଇଛି । ଏହାର ପରବର୍ତ୍ତୀ ଘଟଣା ଆଦିବାସୀ କାହାଣୀ 'ଧର୍ମୁ ଓ କର୍ମୁ' ର ଅନୁରୂପ । ଉଭୟ କାହାଣୀର ନାୟକ ଦେବତାଙ୍କୁ ଅସ୍ୱୀକାର କରିବ ପରେ ଅନେକ ଦୁଃଖକଷ୍ଟ ଭୋଗିଛନ୍ତି ଓ ଦେବତା ଅନୁସନ୍ଧାନ ପାଇଁ ଯାତ୍ରା ଆରମ୍ଭ କରିଛନ୍ତି । ବାଟରେ ଅନେକ ସମସ୍ୟାର ସମ୍ମୁଖୀନ ଚରିତ୍ରଙ୍କୁ ଭେଟିଛନ୍ତି । ତାଙ୍କ ଦୁଃଖ ଦେବତାଙ୍କୁ ଜଣେଇବାର ପ୍ରତିଶ୍ରୁତି ଦେଇ ଚାଲିଛନ୍ତି । ଉଭୟ ଗଳ୍ପରେ ଲକ୍ଷ୍ୟ କରିବା କଥା ଚିତ୍ରମାଙ୍କର ସମସ୍ୟା ଓ ସମାଧାନ ପ୍ରାୟ ସମାନ (ଦେଖନ୍ତୁ, ଓଡିଆ ଲୋକଗୀତ ଓ କାହାଣୀ, ଡ଼: କୁଞ୍ଜବିହାରି ଦାସ ପୃଷ୍ଠା-୧୭୫ ରୁ ୧୮୩) ଦେବତାର ଅନୁଗ୍ରହ ଲାଭ ଉପରେ ଉଭୟ କାହାଣୀର ନାୟକ ସୌଭାଗ୍ୟଶାଳୀ ହୋଇଛନ୍ତି । କାହାଣୀ ଦୁଇଟିକୁ ବିଶ୍ଳେଷଣ କଲେ ଦୁଇଟି କଥା ଜଣାପଡ଼େ । ୧୧ । ଆଦିବାସୀ କାହାଣୀଟି ପରବର୍ତ୍ତୀ କାଳରେ କରମା କାହାଣୀରେ ପରିବର୍ଦ୍ଧିତ ହୋଇଛି । ୨ । ସାଧବର/ଆର୍ଯ୍ୟର ଅସ୍ୱୀକାରୁ ଓ ତା'ର କରୁଣ ପରିଣତିକୁ ଭିତ୍ତିକରି ଏଇ ମହିମା ପ୍ରଖ୍ୟାପକ କାହାଣୀର ପରିବର୍ଦ୍ଧିତ ଅଂଶ ପ୍ରକ୍ଷିପ୍ତ (ଅଥଚ ପ୍ରଥମ କାହାଣୀର ନାୟକ ଜଣେ ଆଦିବାସୀ ଚରିତ୍ର) ।

କରମାର ସଙ୍ଗୀତରେ ରହିଛି ଆଦିବାସୀ ଛନ୍ଦ । ଅନୁଭୂତିର ସ୍ୱଚ୍ଛନ୍ଦ ପ୍ରକାଶ । କରମାର ଗୀତନୃତ୍ୟ ଆସରରେ ଆର୍ଯ୍ୟର ପ୍ରବେଶ ଖୁବ ସଙ୍କୁଚିତ । ଶୁଦ୍ଧାଶୀଳ ଦୂରତାରେ ରହି ସେ କେବଳ ଉପଭୋଗକରେ । ତଥାପି କରମାର ଗୀତରେ ଆର୍ଯ୍ୟର ନିୟନ୍ତ୍ରଣ ଲକ୍ଷ୍ୟ କରିହୁଏ । ସେତେବେଳେ ମଦର ବିହ୍ୱଳ ନିଶାରେ ସ ମାଦକର ଉଦ୍ଧାମକ ବାଦ୍ୟରେ ଆପେ ଆପେ ଅଶ୍ଳୀଳ ଗୀତ ସବୁ ବାହାରି ଦୂରରୁ ଥାଇ ବି ଆର୍ଯ୍ୟଭାବକୁ ନିୟନ୍ତ୍ରିତ କରେ । ସେ କହେ- 'କରମସାନୀ ବିରଝୁ ଅଛେ ତୁରିଆ କଥାକେ' (ରାମେସର ନାଗ- ପାଁ ଟେଲ) ।

କରମସାନୀର ସଙ୍ଗୀତରେ ଥାଏ ସ୍ତୁତି, ପ୍ରାର୍ଥନା, ଜଣାଣ ଓ ତା ସହିତ ମଣିଷର ନିତି ଦିନିଆଁ ଦୁଃଖ ସୁଖ। କେତୋଟି କରମାଗୀତରେ କରମାକୁ ପୌରାଣିକ ପୃଷ୍ଠଭୂମି ଓ ପ୍ରତିଷ୍ଠା ନେବା ଚେଷ୍ଟା ସବୁ ଦେଖାଯାଏ। ଗୀତସବୁରେ କୁହାଯାଇଛି ଭଗବାନ ବିଭିନ୍ନ ଅବତାରରେ କରମା ନାଚିଛନ୍ତି। ଏହା ଆର୍ଯ୍ୟମାନଙ୍କର ମାନସିକ ସାନ୍ତ୍ୱନା ହୋଇପାରେ। କିମ୍ବା ଆଦିବାସୀ ମାନଙ୍କର ଆର୍ଯ୍ୟମାନଙ୍କୁ ଆକୃଷ୍ଟ କରିବାପାଇଁ ପ୍ରକ୍ଷେପ ହୋଇପାରେ।

ଆଦ୍ୟରେ କରମା ହେଲା ଶିର୍ ବୃନ୍ଦା କରେ
ପଶାଖେଳୁ ଥିଲେ ହି ସତ୍ୟଭାମା ତୁଲେ
ବଳରାମ ଧଇଲେ ମାନ୍ଦଲ
ନାଚୁଥିଲେ ସୁଦାମ ସୁବଲ। (ରା: ମ: ପା)

ପଶ୍ଚିମ ଓଡ଼ିଶାର ସାଂସ୍କୃତିକ ପାର୍ବଣକୁ ନେଇ ଏମିତି ସଂକ୍ରମଣ ଓ ସହାବସ୍ଥାନର ଇତିହାସ ରଚନା କରାଯାଇପାରେ। ପୁଣି ପଶ୍ଚିମ ଓଡ଼ିଶାର ଆଦିବାସୀ ଗୋଷ୍ଠୀରେ ହୋଇଥିବା ଆର୍ଯ୍ୟାକରଣ କିମ୍ବା ତା'ର ବିପରୀତ (ଆର୍ଯ୍ୟଙ୍କ ମଧରେ ଦ୍ରାବିଡ଼ୀକରଣ) ର ନୃତାତ୍ତ୍ୱିକ ଆଲୋଚନା କରାଯାଇପାରେ। ଏ ବିଷୟରେ ବିସ୍ତାର ଆଲୋଚନାର ଅପେକ୍ଷା ରଖି ପ୍ରବନ୍ଧଟି ଶେଷ କରୁଛି।।



# ସମ୍ବଲପୁର ଅଞ୍ଚଳର ଲୋକନୃତ୍ୟ- 'ଦଣ୍ଡନାଚ' ବା 'ଡଁଡ୍'

**ଚିତ୍ରସେନ୍ ପଣ୍ଡାୟତ୍**

ଇତିହାସର ଧାରାବାହିକତା କହିଲେ ବସ୍ତୁତଃ ସଂସ୍କୃତିର ଗତିଶୀଳତାକୁ ବୁଝାଏ । ଏହା ବିନା ଦେଶରେ ଭାବନାତ୍ମକ ଐକ୍ୟ ସମ୍ବନ୍ଧ ଦେବା ପାଇଁ ଦାବୀ କରିବା ବିଡ଼ମ୍ବନା ମାତ୍ର । ଶ୍ରୀମାନ୍ ବାଳଗୋପାଳ ପୁରୋହିତଙ୍କ ଭାଷାରେ "ଇତିହାସର ଧାରାକୁ ସଜୀବ ରଖିବାରେ ଓଡ଼ିଆ ପ୍ରାନ୍ତର ସାଂସ୍କୃତିକ ବିବର୍ତ୍ତନ ସ୍ୱତଃ ପ୍ରବୃତ୍ତ ଓ ଲୋକ ଜୀବନ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଉତ୍କଳ, କଳିଙ୍ଗ, କୋଶଳ ପ୍ରଭୃତି ନାମଗୁଡ଼ିକ ରାଜନୀତି, ସଂସ୍କୃତି ଓ ସଭ୍ୟତାର ଆଧୁନିକ ଶୋଭା ଯାତ୍ରାରେ ଉଦାର ବ୍ୟବହାର ଆମକୁ ସୂଚାଇ ଦିଏ ଯେ ଶତାବ୍ଦୀ ବ୍ୟାପୀ ଇତିହାସର ବିଭିନ୍ନ ଗତିଧାରା ଆମ ପାଖେ ସମାନ ମର୍ଯ୍ୟାଦା ଲାଭ କରିଛି ।"

ଓଡ଼ିଶା ସଂସ୍କୃତିର ଧାରାବାହିକତା ଲୋକଗାଥା ମଧ୍ୟ ଦେଇ ଜୀବିତ । ପଶ୍ଚିମ ଓଡ଼ିଶାର ସଂସ୍କୃତିର ମହାପ୍ରବାହରେ ଜଡ଼ିତ, ଏ କଥାର ସତ୍ୟତା ଆଜି ଓଡ଼ିଆ ଭାଷା ଭାଷୀ ବିଚ୍ଛିନ୍ନାଞ୍ଚଳ ଯାହାକି ଏବେ ମଧ୍ୟ ମଧ୍ୟପ୍ରଦେଶରେ ପଡ଼ି ରହିଛି, ସେସବୁ ଅଞ୍ଚଳ ପୁରପଲ୍ଲୀ ଘୂରି ବୁଲିଲେ ଦେଖିବାକୁ ମିଳେ । ସେ ଯାହାହେଉ ଗଙ୍ଗାଧର ମେହେର, ଭୀମ ଭୋଇଙ୍କ ରଚନାଦି ତଥା ସାଂପ୍ରତିକ ଆଧୁନିକ ଯୁଗରେ ଆଧୁନିକ କବିଗଣଙ୍କ ରଚନାଦି ବିଷୟ ଅନୁଧ୍ୟାନ କଲେ ଜଣା ପଡ଼ିବ ଯେ ଓଡ଼ିଆ ସାହିତ୍ୟକୁ ପଶ୍ଚିମ ଓଡ଼ିଶାର ଅବଦାନ କୌଣସି ଗୁଣରେ କମ ନୁହେଁ; ବରଂ ଓଡ଼ିଆ ସାହିତ୍ୟର ଗନ୍ଧାଘର ଏହାକୁ ନେଇ ଆଜି ପରିପୁଷ୍ଟ । ଏହାଛଡ଼ା ଏ ଅଞ୍ଚଳର ଲୋକଗୀତ, ଲୋକ ସାହିତ୍ୟ, ଲୋକ ନୃତ୍ୟର ଏକ ସ୍ୱତନ୍ତ୍ର ଶୈଳୀ ତଥା ପ୍ରଣାଳୀ ରହିଛି ।

ପଶ୍ଚିମ ଓଡ଼ିଶାର ଲୋକନୃତ୍ୟ ସଂପର୍କରେ କହିବାକୁ ଗଲେ, ମାନିବାକୁ ପଡ଼ିବ ଯେ, ଏହାର ଏକ ନିଜସ୍ୱ ସ୍ୱତନ୍ତ୍ରତା ଅଛି । କର୍ମମୟ ଜୀବନରୁ ଘଡ଼ିଏ ଶାନ୍ତିର ନିଃଶ୍ୱାସ ମାରି ଅବସ୍ଥୁ ମନର ସୁସ୍ଥତା ପାଇଁ ମନୁଷ୍ୟକୁ ଏହାର ଆଶ୍ରୟ ନେବାକୁ ପଡ଼ିଥାଏ । ନାନା ପ୍ରକାର କ୍ରୀଡ଼ା, କୌତୁକ, ଗୀତ, ବାଦ୍ୟ, ନୃତ୍ୟାଦି ମାଧ୍ୟମରେ ସେ ଗଢେ ଏକ ସୁନ୍ଦର ଏବଂ ଉନ୍ନତ ଜୀବନ ।

ପଶ୍ଚିମ ଓଡ଼ିଶାର ଲୋକନୃତ୍ୟ ମଧ୍ୟରେ କର୍‌ମା, ଡାଲଖାଇ, ବଜାନଚା, ଘୁମ୍‌ରା, ସଂପ୍ରଡା ତଥା 'ଡଣ୍ଡ' ବା ଦଣ୍ଡ ନୃତ୍ୟ ପ୍ରଧାନ। ଏମାନେ ହେଲେ ଆମ ସଂସ୍କୃତିର ସଂପତ୍ତି, ଯାହାକୁ ନେଇ ଆମ୍ଭେ ଗର୍ବ କରୁଁ। ପଶ୍ଚିମ ଓଡ଼ିଶାରେ ଅନ୍ୟାନ୍ୟ ଲୋକନୃତ୍ୟ ପରି 'ଦଣ୍ଡନାଚ' ଏକ ସୁପ୍ରସିଦ୍ଧ ଲୋକନୃତ୍ୟ। ଚୈତ୍ର ମାସର ଆରମ୍ଭରୁ ଦଣ୍ଡନାଚର ନିର୍ଦ୍ଦିଷ୍ଟକାଳ ଆରମ୍ଭ ହୁଏ। ଏହା ଭିତରେ ପଶ୍ଚିମ-ଓଡ଼ିଶାର ସାମାଜିକ ସଂସ୍କୃତିର ଏକ ନିଗୂଢ଼ ତତ୍ତ୍ୱ ଲୁଚି ରହିଥବା ପରି ମନେହୁଏ। ଏହା ପ୍ରଧାନ ଆରାଧ୍ୟ ଦେବତା ହେଉଛନ୍ତି 'ଶିବ'। ପ୍ରାୟ ପନ୍ଦର/କୋଡ଼ିଏ ଜଣ ଏଇ ନୃତ୍ୟରେ ଅଂଶ ଗ୍ରହଣ କରି ଥାଆନ୍ତି। ଏହି ନୃତ୍ୟର ଏକ ପ୍ରଚଳିତ ନୀତି ନିୟମ ଅଛି, ଯାହାକି ମାନି ଚଳିବାକୁ ପଡ଼ିଥାଏ। ଦଣ୍ଡନୃତ୍ୟରେ ଅଂଶ ଗ୍ରହଣ କରୁଥିବା କଳାକାର ବର୍ଗଙ୍କୁ ଓଳିଏ ଓପାସ ରହିବାକୁ ପଡ଼େ ଏବଂ ଛତ୍ର ବଇରଖ ତଳେ ଶିବ-ପାର୍ବତୀଙ୍କୁ ପୂଜା କରାଯାଏ।

'ଦଣ୍ଡନୃତ୍ୟ', ସାଧାରଣତଃ ରାତ୍ରିକାଳରେ ପରିବେଷଣ କରାଯାଏ। ଚିତ୍ତ ବିନୋଦର ଏହା ଏକ ପ୍ରଧାନ ମାଧ୍ୟମ। ବିଶେଷ କରି ଗ୍ରାମାଞ୍ଚଳରେ ଏହି ନୃତ୍ୟରେ ଆଦର ଖୁବ୍ ବେଶୀ। ଦଣ୍ଡନୃତ୍ୟ ବୋଲାଯାଉଥିବା ଗୀତ ଗୁଡ଼ିକ ବିଶେଷତଃ ଆମ ଅଞ୍ଚଳର କବିମାନଙ୍କ ଦ୍ୱରା ରଚିତ ହୋଇଥାଏ। ଗୋଟିଏ ସୁନ୍ଦର ଉଦାହରଣ ହେଲା- ଆଈ ଓ ନାତୁଣୀ ମାନଙ୍କ ମଧ୍ୟରେ ସାଧାରଣତଃ ହସ-କୌତୁକ ସଦା ସର୍ବଦା ଲାଗିଥାଏ। ବୃଦ୍ଧା ଆଈର ବୟସ ଚାଲିଯାଇଛି। ନାତି ଆସି ଏଠାରେ ଆଈକୁ ଚିଡେଇବା ପାଇଁ କହୁଛି-

"ଆଈ ଗୋ ଆଈ
କବାଟ କିଲି
କେତେ ଦେଖୁ ଦର୍‌ପନ"

ଦଣ୍ଡ-ନୃତ୍ୟ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଥାଏ। ଏହାର ପ୍ରଥମ ପର୍ବରେ ମହୁଲର ପରିଚୟ, ଗୁଣ, କାର୍ଯ୍ୟକାରିତା, ଉପଯୋଗୀତା ତଥା ଆହରଣ ପ୍ରଣାଳୀ ବର୍ଣ୍ଣିତ ହୋଇଥାଏ। ପଶ୍ଚିମ-ଓଡ଼ିଶାର ଘଞ୍ଚ ବନାନୀ ପୂର୍ଣ୍ଣ ଏଇ ପାର୍ବତ୍ୟାଞ୍ଚଳରେ ମହୁଲ ଏକ ଲାଭ ଦାୟକ ଫସଲ। ସାଧାରଣତଃ ଚୈତ୍ର ମାସରେ ଏହା ଅମଳ କରାଯାଇଥାଏ ଏବଂ ଏହି ମାସରୁ ହିଁ 'ଦଣ୍ଡ ନୃତ୍ୟ' ର ନିର୍ଦ୍ଦିଷ୍ଟ କାଳ ଆରମ୍ଭ ହୁଏ। ଏହାର ଉଦାହରଣ ସ୍ୱରୁପ:-

"ମହୁଲର ଭାବ ମିଠାରେ
ଜାତି ଖାଇଲେ ଜାନିବୁ ସିନା.........' ଇତ୍ୟାଦି

ଏହାର ଦ୍ୱିତୀୟ ପର୍ଯ୍ୟାୟକୁ 'ପଏନ୍ ଦଣ୍ଡ' କୁହାଯାଏ । ଏହି ପର୍ଯ୍ୟାୟରେ ଚାଷବାସ-ପ୍ରସଙ୍ଗ ଉପସ୍ଥାପନା କରାଯାଇଥାଏ । କିଆରି ତୋଳିବା, ହଳକରିବା, ଧାନ ବୁଣିବା, ପଲ୍ଲା ବନେଇବା, ରୋଇବା ଆଦି ଚାଷକାର୍ଯ୍ୟମାନ ଅତି ସୁନ୍ଦର ତଥା ହାସ୍ୟରସ ମାଧ୍ୟମରେ ପ୍ରଚାରିତ ହୋଇଥାଏ ।

'ଦଣ୍ଡ-ନୃତ୍ୟ' ର ମୁଖ୍ୟ ନାୟକ ନାୟିକା ହେଲେ ଶିବ-ପାର୍ବତୀ । ଏମାନଙ୍କ ସହ କାର୍ତ୍ତିକ, ଗଣେଷ ତଥା ବୃଷଭ ମଧ୍ୟ ସକ୍ରିୟ ଭାବରେ ଅଂଶ ଗ୍ରହଣ କରନ୍ତି । ବିଶେଷତଃ ଗଣେଶଙ୍କର ବନ୍ଦନା ଆଗେ କରାଯାଏ । ଯେହେତୁ ଶାସ୍ତ୍ରାନୁଯାୟୀ ଗଣେଶ ଅଗ୍ରପୂଜ୍ୟ ତେଣୁ ଏହାର ବ୍ୟତିକ୍ରମ ଏଠାରେ ପରିଲକ୍ଷିତ ହୁଏ ନାହିଁ । ଯଥା-

'ପ୍ରଥମେ ବନ୍ଦୁଛେଁ ଶ୍ରୀଗଣେଶର
ଦ୍ୱିତୀୟେ ବନ୍ଦିଲି ଉମାଶଙ୍କର .... .....' ଇତ୍ୟାଦି

ଗଣେଶଙ୍କ ଚରିତ୍ରକୁ 'ଦଣ୍ଡ ନୃତ୍ୟ' ରେ ଏକ ହାସ୍ୟ ରସାତ୍ମକ ଚରିତ୍ର ହିସାବରେ ଚିତ୍ରଣ କରାଯାଇଥାଏ । ତାଙ୍କୁ ଏକ ଛୋଟ ଶିଶୁ ରୂପରେ ଅବତାରଣ କରି ଘଟଣା ବହୁଳ ସାଧାରଣ ଜନ-ଜୀବନ ଘଟୁଥିବା ଘଟଣା ଗୁଡ଼ିକୁ ସୁନ୍ଦର ଭାବରେ ପରିବେଷଣ କରାଯାଏ । ଯଥା:-

'ମାଁ ଗୋ, ମାଁ ଗୋ
ଦୁଦୁ ଦେଇଯା ମତେ ।"

ଏଠାରେ ଗଣେଶ ଏକ ସାଧାରଣ ଶିଶୁଙ୍କ ପରି, ମାଆ ପାଖରେ କ୍ଷୀର ଖାଇବାକୁ ଅଳି କରୁଛନ୍ତି । ଏହିପରି ଦୃଷ୍ଟାନ୍ତ ସାଧାରଣ ଜନ-ଜୀବନରେ ବିରଳ ନୁହେଁ ।

ମଧ୍ୟ ରାତ୍ରରେ ଭଗବାନ ଶ୍ରୀକୃଷ୍ଣଙ୍କର ଚରିତ୍ର ପରିବେଷଣ କରାଯାଇଥାଏ । ଏହି କ୍ରମରେ କୃଷ୍ଣଙ୍କର ବିଭିନ୍ନ 'କେଳି' ଉପରେ ଆଧାରିତ ଚିତ୍ର ନିଖୁଣ ଭାବରେ ପ୍ରଦର୍ଶିତ ହୋଇଥାଏ । ତାପରେ ବୀଣା କାଟିଆ, ଶବର ଶବରୁଣୀ, ନବଛନ୍କା, ନବଛନ୍କୀ ଆଦି ସୁଆଙ୍ଗ ବାହାରି ନିଜ ନିଜର ନୃତ୍ୟକଳା ପ୍ରଦର୍ଶନ କରିଥାନ୍ତି ।

"ବାଁଡ଼ି ବୁଟଲ୍" 'ଦଣ୍ଡନାଚ' ର ଏକ ଅନୁସାଙ୍ଗୀକ ନୃତ୍ୟ । 'ରାଧାକୃଷ୍ଣ' ଙ୍କର ପ୍ରେମଲୀଳା ଉପରେ ଆଧାରିତ ଗୀତ ଏଥିରେ ବୋଲାଯାଇଥାଏ । ସୁଆଙ୍ଗ ମାନଙ୍କ ମଧ୍ୟରେ ରାଦା, ଲଳିତା, ଦୂତୀ (ବାଁଡ଼ି) ଚନ୍ଦ୍ରଶେଣା ଆଦି ।

ଦଣ୍ଡ ନୃତ୍ୟରେ ସମୟ ସମୟରେ ଉତ୍ତେଜନାମୂଳକ ଦୃଶ୍ୟ ନୃତ୍ୟ ମାଧ୍ୟମରେ ପରିବେଷଣ କରାଯିବା ସଙ୍ଗେ ସଙ୍ଗେ ଅଶ୍ଳୀଳ ଗୀତ ମଧ୍ୟ ବୋଲାଯାଇଥାଏ । ଯଥା:-

"ଗଣ୍ଡା ଗଣ୍ଡା ବଲି ଡାକୁଛେ ପୁଇଁ
କେନେ ଗଣ୍ଡା ମୋର ପଡିଲୁ ଶୁଇ
ଗଣ୍ଡା ଲାଗି ଯା-ନ
ଇପ୍‌ରି ଭାବ ତୁ ପାଇବୁ କାହିଁ;
ଲେ ଲେ ଲ-ଗା ଶଗଡ଼ିଆ ଘାଟି ଚଘା
ଇପ୍‌ରୀ ଭାବ .......।"

ଏଇ ପ୍ରସଂଗରେ ଶ୍ରୀମାନ୍ ପୂର୍ଣ୍ଣଚନ୍ଦ୍ର ପାତ୍ରୀଙ୍କ କଥା ମନେ ପଡ଼ିଯାଏ- 'ଶୀଳ ଅଶ୍ଳୀଳ ବୋଲି ଏହି ପର୍ଯ୍ୟାୟର ଲୋକଗୀତକୁ ଉଡ଼ାଇ ଦେବା ଅନୁଚିତ୍। କାରଣ ସୃଷ୍ଟି ଧର୍ମର ଅତ୍ୟାବଶ୍ୟକୀୟ ମାଧ୍ୟମ ହେଉଛି ପ୍ରକୃତି ଓ ପୁରୁଷ। ଯୁଗେ ଯୁଗେ ମନ୍ଦିର ଗାତ୍ରରେ, ପୂଜାପାର୍ବଣରେ ଅନୁଷ୍ଠାନରେ ସର୍ବତ୍ର ଉତ୍ସବାଦିରେ ଆଙ୍ଗିକ ରୂପେ ପ୍ରକୃତି ଓ ପୁରୁଷ ଅନତିକ୍ରମଣୀୟ।

ତେବେ ପଶ୍ଚିମ-ଓଡ଼ିଶାର ଲୋକନୃତ୍ୟ ମାନଙ୍କ ମଧ୍ୟରେ 'ଦଣ୍ଡନାଚ' ବା 'ଡଁଡ୍' ନିଜର ଏକ ସ୍ୱତନ୍ତ୍ର ଆସନ ଦାବୀ କରେ। ଆଦି ସଭ୍ୟତାର ଭିତ୍ତିଭୂମି ହେଉଛି ଗ୍ରାମାଞ୍ଚଳ। ଅର୍ଥନୈତିକ ତଥା ସାମାଜିକ ରୂପରେ ଅଣନିଃଶ୍ୱାସୀ ହୋଇ ଗ୍ରାମବାସୀ ଆଜି ନଗରାଭିମୁଖୀ। ତେଣୁ କ୍ରମେ ପଶ୍ଚିମ ଓଡ଼ିଶାର ଐତିହ୍ୟ ଅବନତି ଆଡ଼କୁ ମୁହେଁଇଛି। ଏହାର ସୁରକ୍ଷା ଆମ ସଂସ୍କୃତିର ସୁରକ୍ଷା।



# ସମ୍ବଲପୁରୀ ଉପଭାଷା – ଏକ ବିହଙ୍ଗାବଲୋକନ

ଯୁଗଳ କିଶୋର ମେହେର

ଉପଭାଷା ସମ୍ବନ୍ଧରେ :-

ଓଡ଼ିଆ ସାହିତ୍ୟ ଇତିହାସର ବିଭିନ୍ନ ପୃଷ୍ଠାକୁ ଉନ୍ମୋଚନ କଲେ ଜଣାଯାଏ ଯେ ଓଡ଼ିଆ ଭାଷା ସମେତ ବିଭିନ୍ନ ଉପଭାଷାର ବ୍ୟବହାର ଆମ ଦୃଷ୍ଟିଗୋଚରକୁ ଆସିଥାଏ । ଆମ ଓଡ଼ିଆ ସାହିତ୍ୟ ଯଦିଓ ମୁଖ୍ୟତଃ ଶୁଦ୍ଧ ଓଡ଼ିଆ ଭାଷାରେ ଲିଖିତ ହେଉଥିଲେ ହେଁ ସେଥିରେ ବିଭିନ୍ନ ଆଞ୍ଚଳିକ ଭାଷା ସ୍ୱତଃ ପ୍ରବୃତ୍ତ ଭାବରେ ପ୍ରବେଶ କରିଛି । ଏହି ଓଡ଼ିଆ ଭାଷା ମଧ୍ୟରେ କଟକୀ, ବାଲେଶ୍ୱରୀ, ସମ୍ବଲପୁରୀ, ଗଞ୍ଜାମୀ ତଥା ଆଦିବାସୀ ଅଞ୍ଚଳର ଭାଷା ଅର୍ନ୍ତନିହିତ । ଏମାନେ ସମସ୍ତେ ଯେଉଁ ଭାଷାରେ କଥାବାର୍ତ୍ତା କରନ୍ତି ବା ଲେଖନ୍ତି ସେସବୁକୁ ଆମେ ଉପଭାଷା କହୁଁ । ସେଥିମଧ୍ୟରୁ ସମ୍ବଲପୁରୀ ଗୋଟିଏ ଉପଭାଷା; ଯାହାରକି ଅନ୍ୟାନ୍ୟ ଉପଭାଷା ଅପେକ୍ଷା ବିଶେଷ ଗୁରୁତ୍ୱ ରହିଛି ।

ପଶ୍ଚିମ ଓଡ଼ିଶା ମୁଖ୍ୟତଃ ଆଦିବାସୀ ବହୁଳ ଗ୍ରାମ ଗୁଡ଼ିକୁ ନେଇ ଗଠିତ । ଏହାର ଅଧିକାଂଶ ଲୋକ ଗାଁ କହଳ ତଥା ବଣ ଜଙ୍ଗଲରେ ବାସ କରିଥାନ୍ତି । ଏଣୁ ଏମାନଙ୍କ ଭାଷା ବିଭିନ୍ନ ସ୍ଥାନମାନଙ୍କରେ ବିଭିନ୍ନ ପ୍ରକାର ରୂପ ଧାରଣ କରିଥିବା ଲକ୍ଷ୍ୟ କରାଯାଇଥାଏ । ସମ୍ବଲପୁର କିମ୍ବା ବଲାଙ୍ଗୀରର ଅଧିବାସୀ ମାନେ ଯେଉଁ ଭାଷା ବ୍ୟବହାର କରିଥାନ୍ତି, କଳାହାଣ୍ଡି କିମ୍ବା ସେ ପାଖର ଆଦିବାସୀ ଅଧୁଷିତ ଲୋକମାନେ ସାମାନ୍ୟ ଭିନ୍ନ ଧରଣର କଥାବାର୍ତ୍ତା କରୁଥିବାର ପରିଦୃଷ୍ଟ ହୋଇଥାଏ । ଏଣୁ ଭାଷା ଗୋଟାଏ ଧରଣର ହେବା ଅସମ୍ଭବ । ସମ୍ବଲପୁର ହେଉଛି ପଶ୍ଚିମ ଓଡ଼ିଶାର ପ୍ରାଣକେନ୍ଦ୍ର, ଏଣୁ ଏଠାକାର ଭାଷାକୁ ସାଧାରଣତଃ ସମସ୍ତେ ସମ୍ବଲପୁରୀ ଭାଷା କହିଥାନ୍ତି । ସାଧାରଣତଃ ସମ୍ବଲପୁରୀ ଭାଷା କହିଲେ ବଲାଙ୍ଗୀର, ସମ୍ବଲପୁର, କଳାହାଣ୍ଡି, ସୁନ୍ଦରଗଡ଼ ଓ ଫୁଲବାଣୀ ଅଞ୍ଚଳର ଭାଷାକୁ ବୁଝାଇଥାଏ । ସମ୍ବଲପୁରୀକୁ ଏକ ଭାଷା କୁହା ନଯାଇ ଏହାକୁ ଏକ ଉପଭାଷା ଭାବରେ ଗ୍ରହଣ କରାଯାଇଥାଏ ।

ଓଡ଼ିଆ ଭାଷା କିପରି ଭାବରେ ଓଡ଼ିଶାରେ ପ୍ରଚଳିତ ହେଲା ଓ ତାହାର ସୃଷ୍ଟିକର୍ତ୍ତା କିଏ ଏବଂ କେବେ ସୃଷ୍ଟି ହେଲା, ତାହାର ସଠିକ୍ ଉତ୍ତର ଯେପରି ଏ ପର୍ଯ୍ୟନ୍ତ ମିଳିପାରିନି, ଠିକ୍ ସମ୍ବଲପୁରୀ ଉପଭାଷାର ଅବସ୍ଥା ସେଇୟା । ସେ ଯାହା ହେଉନା କାହିଁକି ଏହା ଖୁବ୍ ପ୍ରାଚୀନ ଭାଷା ବୋଲି ମନେ ହୋଇଥାଏ । ସମ୍ବଲପୁରୀ ଉପଭାଷା ହେଉଛି ମୁଖ୍ୟତଃ କଥିତ ଭାଷା, ଏହାର ଲିଖିତ ପୁସ୍ତକ ଗୁଡିକ ଦେଖିବାକୁ ଖୁବ୍ କମ୍ । ଏବେ ଅନେକ ଗୁଡ଼ାଏ ସମ୍ବଲପୁରୀ ଭାଷାରେ ରଚିତ ପୁସ୍ତକ ଦେଖିବାକୁ ମିଳୁଛି, ଏଥିମଧ୍ୟରୁ ଅଧିକାଂଶ ପଦ୍ୟଧର୍ମୀ ।

ସମ୍ବଲପୁରୀ ଭାଷାରେ ଢ଼ଗ ଢ଼ମାଳୀ :-

ସମ୍ବଲପୁରୀ ଭାଷାରେ ବହୁଳ ଭାବରେ ଢ଼ଗ-ଢ଼ମାଳୀ ଦେଖିବାକୁ ମିଳିଥାଏ । ଏହି ଢ଼ଗଢ଼ମାଳୀ ଗୁଡ଼ିକ ଶୁଣିବାକୁ ଯେପରି ଶ୍ରୁତିମଧୁର ତା'ରି ଭାବଗତ ଅର୍ଥ ମଧ୍ୟ ଖୁବ୍ ଗଭୀର । ଏହି ଢ଼ଗ-ଢ଼ମାଳୀ ଗୁଡ଼ିକ ବିଶେଷ ଭାବରେ ଗାଁ ଗହଳି ତଥା ଆଭ୍ୟନ୍ତରୀଣ ଅଞ୍ଚଳ ମାନଙ୍କରେ ଶୁଣିବାକୁ ମିଳିଥାଏ । ସାଧାରଣତଃ ଗାଁ ଗହଳିର ବୁଢ଼ାବୁଢ଼ୀମାନେ ଯେତେବେଳେ ତାଙ୍କ ତାଙ୍କ ମଧ୍ୟରେ କଳିକଜିଆ କରନ୍ତି, ସେତେବେଳେ ତାଙ୍କ ମୁହଁରୁ ଏହି ଢ଼ଗଗୁଡ଼ାକ ସ୍ୱତଃପ୍ରବୃତ୍ତ ଭାବରେ ବାହାରି ପଡ଼େ । ଆହୁରି ମଧ୍ୟ ସେମାନଙ୍କ ସାଧାରଣ କଥାବାର୍ତ୍ତାରୁ ସୁନ୍ଦର ସୁନ୍ଦର ଢ଼ଗ-ଢ଼ମାଳୀ ଜନ୍ମ ନେଇଥାଏ । ନିମ୍ନରେ ଥିବା ଗୋଟାଏ ଉଦାହରଣରୁ ସ୍ପଷ୍ଟ ଭାବରେ ଜାଣିହୁଏ ଯେ ସମ୍ବଲପୁରୀ ଭାଷାର ଢ଼ଗ-ଢ଼ମାଳୀ ଗୁଡ଼ିକ କିପରି ଭାବରେ ଶ୍ରୁତିମଧୁର ହୋଇ ପାରିଛି ।

"ଯେନ୍ ରାଆଁଡ଼ିକେ ସେ ଦୁଖ୍ ଘଏଁତା କରା କାଏଁ ସୁଖ୍ ।"

ଏହି ଢ଼ଗ-ଢ଼ମାଳୀ ଗୁଡ଼ିକ ଯେପରି ଶ୍ରୁତିମଧରୁ ହୋଇଥାଏ, ସେପରି ଭାବ ଉଦ୍ଦୀପକ ମଧ୍ୟ । ଉକ୍ତ ଢ଼ଗଟିର ଭାବାର୍ଥ ଖୁବ୍ ଗଭୀର । ଏହି ଢ଼ଗଟି ସାଧାରଣତଃ ସ୍ତ୍ରୀ ମାନଙ୍କର କଳିକଜିଆ ସମୟରେ ବାହାରିଥାଏ । ଜଣେ ଅନ୍ୟଜଣକୁ କଟୁ ଭାଷାରେ କହିବାକୁ ଗଲେ ଉପରୋକ୍ତ ଢଗଟି ବାହାରି ଥାଏ । ଏହିପରି ଆଉ ଗୋଟିଏ ଢ଼ଗ ନିମ୍ନରେ ଦିଆଯାଉଛି ଯାହା ସର୍ବଜନ ବିଦିତ ।

"ଯେନ୍ତା ଗୁରୁକେ ସେନ୍ତା ଚେଲା, ହର୍ଡ଼ା ମାଗ୍‌ଲେ ବେହେରା ଦେଲା ।"

ଏହି ଢ଼ଗଟି ସାଧାରଣତଃ ଦୁଇଟି ନିର୍ବୋଧ ବ୍ୟକ୍ତିଙ୍କ ପକ୍ଷରେ ପ୍ରଜୁଯ୍ୟ ହୋଇଥାଏ । ଏଠାରେ ଗୁରୁ ଏବଂ ଶିଷ୍ୟ ଉଭୟଙ୍କୁ ନିର୍ବୋଧ ଭାବରେ ତୁଳନା କରାଯାଏ । କିନ୍ତୁ ପ୍ରକୃତରେ ଏହା ଗୁରୁଶିଷ୍ୟଙ୍କୁ ନ ନେଇ ସାଧାରଣ ବ୍ୟକ୍ତିଙ୍କ ପକ୍ଷରେ ପ୍ରୟୋଗ କରାହୁଏ ।

ସମ୍ବଲପୁରୀ ଉପଭାଷାରେ ଯେଉଁ ଢ଼ଗଢ଼ମାଳୀ ଗୁଡ଼ିକ ରଚିତ ହୋଇଛି ତାହାର ପ୍ରକୃତ

ଭାବାର୍ଥ ବ୍ୟାଖ୍ୟା କରିବା ବାସ୍ତବିକ କଷ୍ଟକର ବ୍ୟାପାର । ଢ଼ଗଢ଼ମାଳୀ ଗୁଡ଼ିକ କହିଲା ବେଳେ ଆମେ ସହଜରେ ଅର୍ଥ ଧରିପାରୁଁ, କିନ୍ତୁ ଏହାର ଭାବାର୍ଥ ଲେଖିଲା ବେଳକୁ ଖୁବ୍ କଷ୍ଟକର । ଶୁଦ୍ଧ ଓଡ଼ିଆ ଭାଷାର ଢ଼ଗ ଢ଼ମାଳୀ ଗୁଡ଼ିକରେ ଯେମିତି ସହଜରେ ଭାବ ଗ୍ରହଣ କରିହୁଏ, ଏଇଠି କିନ୍ତୁ ତାହାର ବ୍ୟତିକ୍ରମ ଘଟେ । ନିମ୍ନରେ ଥିବା ସମ୍ବଲପୁରୀ ଢଗ ଗୁଡ଼ିକରୁ ଜଣାଯାଏ ଯେ ତାହାର ଅର୍ଥ ବୁଝିବାକୁ ଯେମିତି ସହଜ, ତାହାର ଅର୍ଥ ବ୍ୟାଖ୍ୟା କରିବାକୁ ସେମିତି ସହଜ ନୁହେଁ-

୧ । 'ଚକେଗଲେ ବାର ହାତ୍ ।'

୨ । 'ଚୋରର୍ ମାଁ ଗୁନ୍ ଗୁମରେ ।'

୩ । 'ପରଦେଶୀର୍ କାଏଁ ସଙ୍ଗ, ହଲଦିର୍ କାଏଁ ରଙ୍ଗ ।'

୪ । 'ନିଜର ଦିହେଁ ଟୁପେ ମାଛି, ପର୍କେ ଯାଉଛେ ବାଛି ।'

୫ । 'କୁଲାର୍ ମୁହେଁ ଯାଉଛେ, ସୁଜିର୍ ମୁହୁଁକେ ଛାପ୍‌କୁଛେ ।'

୬ । 'ଯେତେଚୋର୍ ବିର୍‌ହିଅଁଟେ ଠୁଲ୍ ।'

ଏହି ଢ଼ଗଢ଼ମାଳୀ ଗୁଡ଼ିକର ଆଦିସ୍ରଷ୍ଟା କିଏ ଓ ଏହା କିପରି ଭାବରେ ସୃଷ୍ଟି ହୋଇଛି, ଏହାର ସଠିକ ହିସାବ କେହି ରଖି ନାହାନ୍ତି । ସାଧାରଣତଃ ଏହି ଢ଼ଗଢ଼ମାଳୀ ଗୁଡ଼ିକ ଲୋକମାନଙ୍କ ମୁହଁରୁ ବାହାରି ତାହା ଲୋକଲୋଚନକୁ ଆସି ପ୍ରଚାରିତ ହେବାରେ ଲାଗିଛି ।

ସମ୍ବଲପୁରୀ ଭାଷାରେ ପ୍ରବଚନ-

ଏହି 'ପ୍ରବଚନ' କୁ ଇଂରାଜୀରେ Proverb କହନ୍ତି । ଇଂରାଜୀ ଏବଂ ଓଡ଼ିଆ ଭାଷାରେ ଯେପରି ପ୍ରବଚନ ଗୁଡ଼ିକ ରହିଛି ଠିକ ସମ୍ବଲପୁରୀ ଭାଷାରେ ମଧ୍ୟ ସେପରି ପ୍ରବଚନ ରହିଥିବା ଜଣାଯାଏ । ଓଡ଼ିଆ କିମ୍ବା ଇଂରାଜୀ ଭାଷାର ପ୍ରବଚନ ଗୁଡିକ ଯେପରି ଭାବାର୍ଥ ମୂଳକ ତଥା ଶ୍ରୁତି ମଧୁର, ସମ୍ବଲପୁରୀ ଭାଷାର ପ୍ରବଚନ ମଧ୍ୟ ସେପରି । ଅନେକ ସ୍ଥଳରେ ସମ୍ବଲପୁରୀ ପ୍ରବଚନ ଗୁଡ଼ିକର ଭାବଗତ ଅର୍ଥ ଖୁବ୍ ଗଭୀର ମନେହୁଏ । ନିମ୍ନରେ କେତେଗୁଡ଼ିଏ ପ୍ରବଚନ ଉଦାହରଣ ପ୍ରଦାନ କରାଗଲା, ଯାହା ଇଂରାଜୀ ପ୍ରବଚନ ସହ ସମାନ ବୋଲି ମନେହୁଏ ।

ଓଡ଼ିଆ- ଆୟ ଦେଖି ବ୍ୟୟ କରିବା ।

ସମ୍ବଲପୁରୀ- ଶହେ ଗାଡ୍‌କେ ଅଶି ମେର୍‌ହା ।

ଓଡ଼ିଆ- ବିଦ୍ୟା ସର୍ବତ୍ର ପୂଜ୍ୟତେ ।

ସମ୍ବଲପୁରୀ- ଢେଁକି ଯେନ୍‌କେ ଗଲେ ଧାନ୍ କୁଟ୍‌ବା ।

ଏଠାରେ ଦ୍ୱିତୀୟ ପ୍ରବଚନରେ ବିଦ୍ୟାସ୍ଥାନରେ ଢେଁକିର ସମ୍ବନ୍ଧ ସ୍ଥାପନ କରାଯାଇଛି । ଢେଁକିକୁ ଗୁଣିଜନ ବା ବିଦ୍ୟା ଭାବରେ ଗ୍ରହଣ କରାଗଲା । ଉକ୍ତ ଅର୍ଥ ଦ୍ୱୟର ଭାବ ମଧ୍ୟରେ କିଛି ପାର୍ଥକ୍ୟ ଥିଲାପରି ମନେହୁଏ ନାହିଁ ।

ଓଡ଼ିଆ- ସମୟ ଦେଖି କାର୍ଯ୍ୟ କରିବା ।

ସମ୍ବଲପୁରୀ- ଯେତେବେଲର୍ ଆମ୍‌କେ ସେତେବେଲର୍ ଲେଦା ।

ଏଠାରେ ଗୋଟିଏ କଥାପ୍ରତି ଲକ୍ଷ୍ୟ କରାଯାଇ ପାରେ ଯେ ସମୟ ଦେଖି କାର୍ଯ୍ୟ କରିବା 'କୁ ସାଧାରଣ ଭାବରେ ପ୍ରୟୋଗ କରାଯାଇଛି । ଏଠାରେ କୌଣସି ଉପମା ବା ବିଷୟବସ୍ତୁର ଉପସ୍ଥାପନା ନକରି କେବଳ ସମୟ ଓ କାର୍ଯ୍ୟ ପ୍ରତି ଦୃଷ୍ଟି ନିକ୍ଷେପ କରାଯାଇଛି । କିନ୍ତୁ ସମ୍ବଲପୁରୀ ଭାଷାରେ ଥିବା ପ୍ରବଚନ 'ଯେତେବେଲର୍ ଆମ୍‌କେ ସେତେବେଲର୍ ଲେଦା' ରେ ଦୁଇଟି ବିଷୟ ପ୍ରତି ଆମର ଦୃଷ୍ଟି ପଡେ ଏବଂ ଲେଦା ଶବ୍ଦ ଦ୍ୱୟର ସମ୍ବନ୍ଧ ସମୟ ଓ କାର୍ଯ୍ୟର ସମ୍ବନ୍ଧକୁ ବୁଝାଏ । ଏଣୁ ଏଠାରେ ଓଡ଼ିଆ ପ୍ରବବନ ଠାରୁ ସମ୍ବଲପୁରୀ ପ୍ରବଚନ ଅଧିକ ଶ୍ରୁତିମଧୁର ହେବା ସଙ୍ଗେ ସଙ୍ଗେ ବିଶେଷ ଭାବଗର୍ଭକ ହୋଇପାରିଛି ।

ଓଡ଼ିଆ- ଯେସାକୁ ତେସା ।

ସମ୍ବଲପୁରୀ- 'ଯେନ୍ ରାଆଁଡ଼ିକେ ସେ ଦୁଖ୍ ଘଏଁଚା କରାକାଏଁ ସୁଖ ।'

ଏଣୁ ଓଡ଼ିଆ ପ୍ରବଚନ ଠାରୁ ସମ୍ବଲପୁରୀ ପ୍ରବଚନ ଗୁଡିକ ନିଶ୍ଚିତ ଭାବରେ ଭାବଗର୍ଭକ ହୋଇ ପାରିଛି । ଯଦିଓ ସମ୍ବଲପୁରୀ ଭାଷା ଉନ୍ନତ ଧରଣର ହୋଇପାରିନି ତଥାପି ତାହା ଭାବଗର୍ଭକ ଓ ଶ୍ରୁତି ମଧୁର ହୋଇଛି । ଓଡ଼ିଆ ଭାଷାରେ ଆମେ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ପରିମାଣର ପ୍ରବଚନ ଦେଖିବାକୁ ପାଇବା କିନ୍ତୁ ସମ୍ବଲପୁରୀ ଭାଷାରେ ସେପରି କିଛି ନିର୍ଦ୍ଦିଷ୍ଟ ନାହିଁ ।

ସମ୍ବଲପୁରୀ ଭାଷାରେ ନୃତ୍ୟଗୀତ ବା କ୍ରୀଡ଼ା ସଂଗୀତ:-

ସମ୍ବଲପୁରୀ ଭାଷାରେ ଅନେକଗୁଡ଼ାଏ ନୃତ୍ୟଗୀତ ରହିଥିବା ଆମର ପରିଦୃଷ୍ଟ ହୁଏ । ଏକ ସଙ୍ଗରେ ନୃତ୍ୟ ଏବଂ ଗୀତ ଚାଲିଥାଏ । ପଶ୍ଚିମାଞ୍ଚଳର ଅନେକ ଗୁଡାଏ ଶିଶୁ ଖେଳ ଅଛି; ଯାହାକି ଗୀତ ନ ଗାଇଲେ ଖେଳି ହୁଏ ନାହିଁ ।

ଯଥା- ହୁମୋ, ଛିଲୋଲାଇ, ଖମ୍‌ଖମାଲେ ଇତ୍ୟାଦି । ଏ ଗୀତ ଗୁଡାକ କିଏ ରଚନା କରିଛନ୍ତି ତାହାର ସଠିକ୍ ହିସାବ ନାହିଁ । ଏ ଗୀତଗୁଡାକ ଆପେ ଆପେ ଛୋଟ ଛୋଟ ଶିଶୁମାନଙ୍କ ମୁଖରୁ ବାହାରିଥାଏ ।

ଛିଲୋଲାଇ:-ଏହା ଏକ ଝିଅମାନଙ୍କର ଖେଳ । ଏହାକୁ ପୁଚିଖେଳ କୁହାଯାଏ । ଛୋଟ ଛୋଟ ଝିଅମାନେ ଗାଁ ଦାଣ୍ଡରେ ଜମାହୋଇ ଗୋଲେଇ ଭାବରେ ବସିଯାନ୍ତି । ତା'ପରେ ସେମାନେ ତାଙ୍କର ଦୁଇହାତକୁ ଧୂଳି ଉପରେ ପ୍ରସାରି ଗୀତ ଗାଇବାରେ ଲାଗନ୍ତି । ଗୀତଗାଇ ସାରିଲା ପରେ ସେମାନେ ଦୁଇଗୋଡ଼ ଓ ହାତକୁ ଏକାସଙ୍ଗରେ ପ୍ରସାରନ୍ତି ଓ ଖେଳଖେଳିବାରେ ଲାଗନ୍ତି । ଏହି ଗୀତଗୁଡ଼ାକ ଶୁଣିବାକୁ ଖୁବ୍ ମଜାଲାଗେ ।

"ଛିଲୋଲାଇ, ଆ' ଖେଲ୍ ମା ଭାଇ,
ଭାଇଗଲେ ଗୁଷି, ଆଗୋ ମାଁ ପିସି ।
କଲା କଲା ବାଇଗନ, ଗୁଇଗଲି ଧାରେ,
ଘୁଚିଯାରେ ଘୁଚିଯା, କଦମ ତଲକୁ ।
କଦମ୍ ତଲର୍ ସିଙ୍ଗ୍ ପନିଆ ଭୁର୍ଷି ମୁଡ଼କୁ ।
ମୋର ସଉତେନ୍ ହେବୁରେ
ବନା ଲୁଗା ପିନ ତୁରେ
ଉତ୍‌କି ଉତ୍‌କି ଚାଲ୍ ତୁରେ ।"

ଢୁମୋ:-ଏହି ଖେଳ ପଶ୍ଚିମ ଓଡ଼ିଶାର ଧାଙ୍ଗଡ଼ୀମାନେ ଗାଇଥାନ୍ତି । ଛୋଟ ଛୋଟ ଝିଅମାନଙ୍କ ଅପେକ୍ଷା ଧାଙ୍ଗଡ଼ୀମାନେ ଏ ଖେଳକୁ ଭଲ ପାଇଥାନ୍ତି । ପ୍ରଥମେ ଝିଅମାନେ ଦୁଇଟି ଧାଡ଼ିରେ ବିଭକ୍ତ ହୁଅନ୍ତି ଏବଂ ମୁହଁକୁ ମୁହଁ ଠିଆ ହୋଇ ଗୋଟାଏ ପକ୍ଷରୁ ଗୀତଗାଇ ସାରିଲାପରେ ଆଉ ଗୋଟାଏ ପକ୍ଷରୁ ଗାଇବା ଆରମ୍ଭ କରନ୍ତି । ଏହାକୁ ଗ୍ରୁପ ସଙ୍ଗ କୁହାଯାଇପାରେ । ଗୀତ ଗାଇବା ସମୟରେ ଧାଙ୍ଗଡ଼ୀମାନେ ହାତକୁ ହାତ ଏବଂ କାନ୍ଧକୁ କାନ୍ଧ ମିଳାଇ ଏକ ସଙ୍ଗରେ ଅନ୍ୟ ଧାଡ଼ିରେ ଥିବା ଝିଅମାନଙ୍କ ପାଖକୁ ଯାଆନ୍ତି । ପୁଣି ଗୀତ ଗାଇସାରିଲା ପରେ ନିଜ ସ୍ଥାନକୁ ଫେରି ଆସନ୍ତି । ଏହି ଖେଳର ବିଶେଷ ତାତ୍ପର୍ଯ୍ୟ ଏହି ଯେ ସେମାନେ ଗୀତ ମାଧମରେ ଆର ପକ୍ଷର ଝିଅଙ୍କ ସହ ଯୁକ୍ତି କରନ୍ତି । ଯେଉଁମାନେ ଗୀତ ମାଧମରେ ଯୁକ୍ତି ଦେଇ ପାରନ୍ତିନି ସେମାନେ ଖେଳରେ ହାରିଯାନ୍ତି । ଏହି ଖେଳର ଗୋଟାଏ ଗୀତ ସଂକ୍ଷିପ୍ତରେ ପ୍ରଦାନ କରାଗଲା:-

" ଢୁମୋନନ ନନ ନନ ବୋଇଲିରେ
ଢୁମୋନନ ନନ ନନ..... ।"

ଖମ୍‌ଖମାଲୋ:-ଏହା ସାଧାରଣତଃ ପିଲାମାନଙ୍କର ଖେଳ । ଏହି ଖେଳ ଅତିକମ୍‌ରେ ୫ଟି ପିଲାକୁ ନେଇ ଖେଳାଯାଏ । ଚାରିଟି ଖୁମ୍ବରେ ଚାରିଜଣ ପିଲା ରହିବେ ଏବଂ ଅନ୍ୟଜଣେ ଏ ଖୁମ୍ବରୁ ସେ

ଖୁମ୍ବକୁ ଗୀତ ଗାଇ ଗାଇ ଯିବା ଆସିବା କରୁଥିବ ଏବଂ ଯେତେବେଳେ ପିଲାମାନେ ଏ ଖୁମ୍ବରୁ ସେ ଖୁମ୍ବକୁ ଅଦଳ ବଦଳ ହୁଅନ୍ତି ସେତେବେଳେ ଟାଙ୍କୁ ଛୁଇଁବା ପାଇଁ ଚେଷ୍ଟା କରେ । ଯେଉଁ ପିଲାଟି ମଝିରେ ଥିବ ସେ ନିମ୍ନରେ ଥିବା ଗୀତଟି ଗାଇ ଗାଇ ଏ ଖୁମ୍ବରୁ ସେ ଖୁମ୍ବକୁ ଯିବା ଆସିବା କରୁଥିବ । ଏ ଖେଳଟି ଦେଖିବାକୁ ବିଶେଷ କୌତୁହଳ ଲାଗେ ।

ଛୁରକି:- ଏହା ଛୋଟ ଛୋଟ ଝିଅମାନେ ଖେଳିଥାନ୍ତି । ଏହି ଖେଳ ଖେଳିଲା ବେଳେ ଝିଅମାନେ ନିଜ ଅଣ୍ଟାରେ ଦୁଇହାତକୁ ରଖି ଥରେ ଆଗକୁ ଏବଂ ଥରେ ପଛକୁ ଡିଆ ମାରି ମାରି ଗୀତ ଗାଆନ୍ତି ।

"ଛୁର୍ ଛୁର୍‌କି ଛୁର୍‌କି ଲିଆଖେଲା ଦୁର୍‌କି ।"

ଇଚିର୍ ମିଚିର୍- ଏହି ଖେଳର ବିଭିନ୍ନ ନାମ ରହିଥିଲେ ମଧ୍ଯ ସାଧାରଣତଃ ଏହାକୁ ଇଚିର୍ ମିଚିର୍ କହିଥାନ୍ତି । ଏହି ଖେଳ ଉଭୟ ପୁଅ ଏବଂ ଝିଅ ଖେଳିଥାନ୍ତି ।ଏହି ଖେଳରେ ପୁଅ ଏବଂ ଝିଅମାନେ ଗୋଲେଇ ହୋଇ ତଳେ ବସିଯାନ୍ତି । ନିଜ ନିଜର ଦୁଇହାତକୁ ଓଲଟାଇ ଭୂମି ଉପରେ ରଖନ୍ତି । ସେଥି ମଧ୍ଯରୁ ଜଣେ ଗୀତ ଗାଇ ଗାଇ ଗୋଟିଏ ପରେ ଗୋଟିଏ ହାତରେ ଆଙ୍ଗୁଠି ଟିପି ମାରିବାକୁ ଲାଗେ । ଏମିତି ଭାବରେ ଏହି ଖେଳ ଚାଲେ । ଏହି ଖେଳରେ ଥିବା ଗୀତଟି ଶୁଣିବାକୁ ଖୁବ୍ ମଜାଲାଗେ ।

"ଇଚିର୍ ମିଚିର୍ ଧୋବ ଚିର୍ ଚିର୍
ଖଏର୍ କାଠ୍ ବାଘ୍ ନଖ୍
କୁଟା ସିଙ୍ଘା ଝୋଲ ।
ହାତ୍ ଫୁଟେ ଫୁଟେ ମାଉଁସ ଫୁଟେ
ଇ' ଆଙ୍ଗଠି ଗୁଟେ ମୋର୍ ।"

ଏତଦ୍ ବ୍ୟତୀତ ସମ୍ବଲପୁରୀ ଭାଷାରେ ବିଭିନ୍ନ ଗୀତ ସବୁ ରହିଛି ଯାହାକି ନୃତ୍ୟ ସଙ୍ଗରେ ଗାନ କରାଯାଏ । ଏହି ଗୀତ ଗୁଡ଼ିକ କେବଳ କ୍ରୀଡ଼ା କୌତୁକ ନିମନ୍ତେ ରଚିତ । ଏହାକୁ କିଏ ଓ କେବେ ରଚନା କରିଛନ୍ତି ତାହା କହିହେବ ନାହିଁ । କିନ୍ତୁ ପଶ୍ଚିମ ଓଡ଼ିଶାର ଏହି ସ୍ୱର ଗୁଡ଼ିକ ଶୁଣିବାକୁ ମିଳିଥାଏ ।

ସମ୍ବଲପୁରୀ ଭାଷା ଉପରେ ଅନ୍ୟାନ୍ୟ ଭାଷାର ପ୍ରଭାବ:-ସମ୍ବଲପୁରୀ ଭାଷା ଉପରେ ବିଭିନ୍ନ ଭାଷାର ପ୍ରଭାବ ପଡ଼ିଥିବା ଲକ୍ଷ୍ୟ କରାଯାଏ । ଏହି ପ୍ରଭାବ କେତେକ ସ୍ଥଳରେ ପ୍ରତ୍ୟକ୍ଷ ଭାବରେ

ଏବଂ କେତେକ ସ୍ଥଳରେ ପରୋକ୍ଷ ଭାବରେ ଆସିଛି । ସମ୍ବଲପୁରୀ ଭାଷାର ଅଧିକାଂଶ ଶବ୍ଦ ଶୁଦ୍ଧ ଓଡ଼ିଆ ଭାଷାରୁ ଅପଭ୍ରଂଶ ହୋଇଛି । ଯଥା-

ଲୁଣ< ନୁନ< ରସୁଣ< କାକୁଡ଼ି କାକେଁର, ଘିଅ-ଘି ।

ଏ ସବୁ ଶବ୍ଦଗୁଡ଼ିକ ଶୁଦ୍ଧ, ଓଡ଼ିଆରୁ ଅପଭ୍ରଂଶ ହୋଇ ସମ୍ବଲପୁରୀ ଭାଷାରେ ମିଶି ଯାଇଛି ।

ସମ୍ବଲପୁରୀ ଭାଷା ଉପରେ ଇଂରାଜୀ, ହିନ୍ଦୀ, ସଂସ୍କୃତ ତଥା ଲରିଆ ଭାଷାର ପ୍ରଭାବ ସଂପୂର୍ଣ୍ଣ ଭାବରେ ପଡ଼ି ନଥିଲେ ମଧ ଆଂଶିକ ଭାବରେ ପଡ଼ିଥିବାର ଲକ୍ଷ୍ୟ କରାଯାଏ । ପଶ୍ଚିମ ଓଡ଼ିଶା ତଥା ସମ୍ବଲପୁରୀ ଭାଷା କହୁଥିବା ଅଧିବାସୀମାନେ ଏପରି ସ୍ଥାନମାନଙ୍କରେ ଅଛନ୍ତି ଯେଉଁ ସ୍ଥାନମାନଙ୍କରେ କି ମଧପ୍ରଦେଶର ପ୍ରଭାବ ରହିଛି । ଏପରି ସୀମାନ୍ତ ଅଞ୍ଚଳମାନଙ୍କରେ ଯେଉଁମାନେ ବାସ କରନ୍ତି ସେମାନଙ୍କ ଭାଷା ହିନ୍ଦୀ ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ । କଳାହାଣ୍ଡି ଜିଲ୍ଲାର ସିନାପାଲି, ନୂଆପଡ଼ା, ଖରିଆର୍ ରୋଡ଼ ଏବଂ ସେମାନଙ୍କ ନିକଟବର୍ତ୍ତୀ ଅଞ୍ଚଳର ଲୋକମାନେ ହିନ୍ଦୀଭାଷା ଦ୍ୱାରା ଅନେକାଂଶରେ ପ୍ରଭାବିତ । ଏଣୁ କରି ସେମାନଙ୍କ ଭାଷାରେ ହିନ୍ଦୀ ଶବ୍ଦ ବହୁଳ ଭାବରେ ପ୍ରବେଶ କରି ଯାଇଛି:-

ଆଖରି- (ଶେଷ ସମୟ)
ଖିଆଲ- (ଖୟାଲ୍)
ହରାମଜାଦା-

ଏତଦ୍ ବ୍ୟତୀତ ଇଂରାଜୀ ଶବ୍ଦଗୁଡ଼ିକ ମଧ ପରୋକ୍ଷ ଭାବରେ ସମ୍ବଲପୁରୀ ଭାଷା ମଧକୁ ପ୍ରବେଶ କରିଛି । ଏହି ଶବ୍ଦଗୁଡ଼ାକ ପ୍ରଥମେ ଶୁଦ୍ଧ ଓଡ଼ିଆରେ କଥିତ ହୋଇ ତାହା ଆସ୍ତେ ଆସ୍ତେ ଅପଭ୍ରଂଶ ହୋଇଛି । ଆହୁରି କେତେକ ଇଂରାଜୀ ଶବ୍ଦ ଅଛି ଯାହାକି ପ୍ରତ୍ୟକ୍ଷ ଭାବରେ ଆସଛି । ଯେଉଁ ଶବ୍ଦଗୁଡ଼ିକ ଇଂରାଜୀରୁ ଅପଭ୍ରଂଶ ହୋଇ ସମ୍ବଲପୁରୀ ଭାଷାରେ ବ୍ୟବହୃତ ହେଉଛି ତାହା ନିମ୍ନରେ ଦିଆଗଲା:-

| ଇଂରାଜୀ | ଓଡ଼ିଆ | ସମ୍ବଲପୁରୀ |
|---|---|---|
| Glass | ଗ୍ଲାସ୍ | ଗିଲାସ୍ |
| Hairpin | - | ଖିର୍‌ପିନ୍ |
| Almirah | ଆଲ୍ ମିରାହ୍ | ଆଲ୍‌ମାରୀ |
| Lontern | ଲଣ୍ଠନ | ଲାନ୍‌ଟିନ୍ |

| | | |
|---|---|---|
| Freesheel | ଫ୍ରିହୁଇଲ୍ | ଫିର୍‌ବିଲ୍ |
| Puncture | ପଙ୍କଚର | ପନ୍‌ଚର |
| Valvetube | ଭଲ୍‌ବ୍‌ଟ୍ୟୁବ୍ | ଭଲଟୁ |

ସଂସ୍କୃତ ପ୍ରଭାବରୁ ମଧ୍ୟ କେତେକ ଶବ୍ଦ ସମ୍ବଲପୁରୀ ଭାଷାମଧ୍ୟକୁ ଆଗମନ କରିଥିବାର ଜଣାଯାଏ । ଏହି ଶବ୍ଦଗୁଡ଼ିକ ମଧ୍ୟ ଶୁଦ୍ଧ ଓଡ଼ିଆ ଭାଷାରୁ ଅପଭ୍ରଂଶ ହୋଇ ସମ୍ବଲପୁରୀ ରେ ପରିଣତ ହୋଇଛି । ଯଥା:-

ସମ୍ବଲପୁରୀ ଭାଷାର ଉଚ୍ଚାରଣ:-

ସମ୍ବଲପୁରୀ ଗୋଟାଏ ଭାଷା, ଯାହାର ପ୍ରାୟ ପ୍ରତ୍ୟେକ ଶବ୍ଦରେ ହଳନ୍ତ' ର ବ୍ୟବହାର ହୋଇଥାଏ । ଏହି ହଳନ୍ତ' ର ବ୍ୟବହାର ଯୋଗୁଁ ଏହା ଅନ୍ୟାନ୍ୟ ଭାଷୀ ଲୋକମାନଙ୍କୁ କହିବାକୁ ଖୁବ କଷ୍ଟ ଜଣାପଡେ । ଏହି ଭାଷା କହିଲାବେଳେ ଜିଭ ଖୁବ ଦ୍ରୁତଗତିରେ ତଳଉପର ହେଉଥାଏ ଯାହାଦ୍ୱାରା ଭାଷା ମଧ୍ୟ ଦ୍ରୁତଗତିରେ ଚାଲେ ।

ସମ୍ବଲପୁରୀ ଭାଷାର ପାର୍ଥକ୍ୟ:-

ପଶ୍ଚିମ ଓଡ଼ିଶାର ଭାଷାକୁ ମୁଖ୍ୟତଃ ସମ୍ବଲପୁରୀ ଭାଷା କୁହାଯାଏ ଏବଂ ଏହି ସମ୍ବଲପୁରୀ ଭାଷା ଗୋଟାଏ ଧରଣର ହେଲେ ମଧ୍ୟ ଏଥିରେ ବିଭିନ୍ନ ପାର୍ଥକ୍ୟ ରହିଥିବାର ଜଣାଯାଏ । ସମ୍ବଲପୁର, ବଲାଙ୍ଗୀର, କଳାହାଣ୍ଡି ଇତ୍ୟାଦି ଜିଲ୍ଲାମାନଙ୍କର ବିଭିନ୍ନ ସ୍ଥାନମାନଙ୍କରେ ବିଭିନ୍ନ ପ୍ରକାରର ଭାଷା ପ୍ରଚଳିତ ହେଉଛି । ଏମାନଙ୍କ କହିବା ଢ଼ଙ୍ଗ ମଧ୍ୟ ଭିନ୍ନ ପ୍ରକାରର । ଏ ସମସ୍ତ ଜିଲ୍ଲାର ଭାଷାର ବ୍ୟବହାରରେ ବିଭିନ୍ନ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ, ଯାହାକି ନିମ୍ନରେ ପ୍ରଦାନ କରାଗଲା ।

| ଓଡ଼ିଆ | ସମ୍ବଲପୁର କଳାହାଣ୍ଡି ବଲାଙ୍ଗୀର ଟିଟିଲାଗଡ଼ | | ଅନ୍ୟାନ୍ୟ |
|---|---|---|---|
| ଉପରବେଳା, | ବେଳଟୁ୍ୟ | ଅଟୌବେଲ୍ | |
| ଏକ୍ଷଣି | ଏଛେନ୍ | | ଏଖେନ୍ (ସୁନ୍ଦରଗଡ଼)<br>ଇଘଡ଼ି (B.M. Pur) |
| କଖାରୁ | ମାଖନ | କୁମୁଡ଼ା | |
| ବିରାଡ଼ି | ବିଲେଇ | ମୀନ | ମାଂଜ (B.M. Pur) |
| ଏଇଠାରେ | ଇଆଡେ | ଇଲକେ | (ଏନେପାରି ଇକୁଟି)<br>(ବିଜେପୁର) |

| | | | |
|---|---|---|---|
| ସେଠାରେ | ସେଆଡେ | ସେଲକେ, | ତେନେପାରି |
| ପାଖରେ | ପାଖେ | ଛୁମେକ୍ | |
| ଆମର | ଆମର୍ | ଆମ୍ | |
| ପିଜୁଳି | ମାୟ୍ଯା,ବିହି | ଜାମ୍ | |
| ବିଲାତି ବାଇଗଣ | ପାତଲ୍ ଘଣ୍ଟା | ଭେଜା, ପତାଲି, ଭେଜରା | |

ଏ ସମସ୍ତ ଦୃଷ୍ଟିରୁ ପଶ୍ଚିମ ଓଡ଼ିଶାର ଭାଷା ତଥା ସମ୍ବଲପୁରୀ ଭାଷା ବିଭିନ୍ନ ସ୍ଥାନମାନଙ୍କରେ ବିଭିନ୍ନ ରୂପ ଧାରଣ କରିଛି । ଏଣୁ ଭାଷା ଯେ ଗୋଟିଏ ହେବା ଅସ୍ୱଭାବିକ । ସମ୍ବଲପୁରୀ ଭଳି ବିଭିନ୍ନ ଆଞ୍ଚଳିକ ଭାଷା ରହିଛି । ବିଭିନ୍ନ ଆଞ୍ଚଳିକ ଭାଷା ସେହି ଶୁଦ୍ଧ ଓଡ଼ିଆ ଭାଷାରୁହିଁ ସୃଷ୍ଟି ।



# ସମ୍ବଲପୁରୀ ଭାଷାର ପ୍ରାଚୀନତା ଓ ବୈଶିଷ୍ଟ୍ୟ

ଅଶୋକ କୁମାର ଦାଶ

କଥାରେ ଅଛି ନଈକେ ବାଙ୍କ ଦେଶ୍‌କେ ଫାଙ୍କ୍ । ଦେଶ ଦେଶ ମଧ୍ୟରେ କିମ୍ବା ଗୋଟିଏ ଦେଶ ମଧ୍ୟରେ ନଈର ଗୋଟିଏ ମୋଡ଼ ପାରି ହେଲେ ଭାଷା ସଂସ୍କୃତି ଇତ୍ୟାଦିରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ତେଣୁ ଏକମାତ୍ର ଓଡ଼ିଶାର ପ୍ରଦେଶର ଅନ୍ତର୍ଭୁକ୍ତ ଥିଲେ ମଧ୍ୟ ଉପକୂଳବର୍ତ୍ତୀ ଅଞ୍ଚଳ ଓ ପଶ୍ଚିମାଞ୍ଚଳ ମଧ୍ୟରେ ଭାଷାକୁ ନେଇ ଯେଉଁ ପାର୍ଥକ୍ୟ ଦେଖା ଦେଇଛି ତାହା ସ୍ୱାଭାବିକ । ଏପରିକି ପଶ୍ଚିମାଞ୍ଚଳର ଭାଷାକୁ ବା ସମ୍ବଲପୁରୀ ଭାଷାକୁ ଆଜି ଏକ ସ୍ୱୟଂ ସଂପୂର୍ଣ୍ଣ ଭାଷା ବୋଲି ସ୍ୱୀକୃତି ଦେବାକୁ ଦାବୀ ହେଲାଣି । ମାତ୍ର ଉପକୂଳବର୍ତ୍ତୀ ଅଞ୍ଚଳର ଜନସାଧାରଣ ଏ ପର୍ଯ୍ୟନ୍ତ ସମ୍ବଲପୁରୀ ଭାଷା ବା ପଶ୍ଚିମ ଓଡ଼ିଶାର ଭାଷାକୁ ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷାର ଏକ ଉପଭାଷା ବୋଲି ବର୍ଣ୍ଣନା କରି ଆସୁ ଅଛନ୍ତି । ସମ୍ବଲପୁରୀ ଭାଷାର ପ୍ରକୃତ ସ୍ୱରୂପ ବିଶ୍ଳେଷଣ ନକରି ଯେଉଁମାନେ ଏ ପ୍ରକାର ମତପୋଷଣ କରନ୍ତି ତାଙ୍କ ମତ ଗ୍ରହଣୀୟ ନୁହେଁ । ଦିନେ ଓଡ଼ିଆ ଭାଷାକୁ ବଙ୍ଗଳା ଭାଷାର ଉପଭାଷା ବୋଲି ଦାବୀ କରାଯାଉଥିଲା, ମୈଥିଳୀ ଭାଷାକୁ ବିହାରୀ ଭାଷାର ଉପଭାଷା ବୋଲି ଦାବୀ କରାଯାଉଥିଲା । ତେଣୁ ସମ୍ବଲପୁରୀ ଭାଷାର ଅସଲ ସ୍ୱରୂପ ଉଦ୍‌ଘାଟିତ ନ ହେବା ପର୍ଯ୍ୟନ୍ତ ଏ ପ୍ରକାର ବାକ୍ ବିତଣ୍ଡା ସ୍ୱାଭାବିକ । ଆଜି ଦେଖିବାକୁ ହେବ ଯେ ସମ୍ବଲପୁରୀ ଏକ ଉପଭାଷା କି ? କିମ୍ବା ଓଡ଼ିଆ ଭାଷାଠାରୁ ଏହା ଅର୍ବାଚୀନ କି ?

ଏ କଥା ଆଜି ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ ଯେ ଓଡ଼ିଶା ସହ ସାମିଲ ହେଲାପରେ ଓଡ଼ିଆକୁ ସମ୍ବଲପୁର ଅଞ୍ଚଳର ଲୋକେ ନିଜର ମାତୃଭାଷା ରୂପେ ଗ୍ରହଣ ସାହିତ୍ୟିକ ମାନେ ମଧ୍ୟ ଓଡ଼ିଆ ସାରସ୍ୱତ ଭଣ୍ଡାରୁ ସମୃଦ୍ଧ କରିଛନ୍ତି । ମାତ୍ର ଏବେ ବି ଦେଖିବାକୁ ହେବ ଯେ ସମ୍ବଲପୁରୀ ଭାଷା ଏକ ଉପଭାଷା କି ? ପଶ୍ଚିମ ଓଡ଼ିଶାର ଲୋକେ ଓଡ଼ିଆରେ ଲେଖାପଢ଼ା କରନ୍ତି ମାତ୍ର କହନ୍ତି ସମ୍ବଲପୁରୀ ଭାଷା । ତେଣୁ ଲେଖାପଢ଼ା ଭାଷା ଓ କଥିତ ଭାଷା ମଧ୍ୟରେ ତାଙ୍କର ପ୍ରଭେଦ ରହିଛି ନିଶ୍ଚୟ । ଏହି ବିଷୟକୁ ନେଇ ଆଜି ପର୍ଯ୍ୟନ୍ତ ନାନା ବାକ୍ ବିତଣ୍ଡା ସୃଷ୍ଟି ହୋଇଛି ଏବଂ ଆଜି

ବି ଏହା ସମାଧାନ ହେବା ପରି ମନେ ହୁଏ ନାହିଁ ଭାଷାତତ୍ତ୍ୱବିତ୍ ଗ୍ରୀୟର୍ସନ ଓଡ଼ିଆ ପ୍ରଦାନ କରିଛନ୍ତି । ( ୧ ) ମାତ୍ର ସେ ସମ୍ବଲପୁର ଅଞ୍ଚଳର ବା ପଶ୍ଚିମାଞ୍ଚଳ ଭାଷା ସମ୍ପର୍କରେ ଅନଭିଜ୍ଞ ଥିବାରୁ ଏବଂ ଶୁଦ୍ଧ ଓଡ଼ିଆରେ ଲେଖା ଏକ ପତ୍ରକୁ କଳାହାଣ୍ଡି ଜିଲ୍ଲାର ଭାଷା ବୋଲି ଗ୍ରହଣ କରି ନେଇଥିବାରୁ ସେ ଏ ଅଞ୍ଚଳର ଭାଷା ସହିତ ପରିଚିତ ହେବାର ସୁଯୋଗ ପାଇ ନଥିଲେ ବୋଲି ମନେ ହୁଏ । ଏ କଥା ଅବଶ୍ୟ ସେ ନିଜେ ସ୍ୱୀକାର କରି ଅଛନ୍ତି । ( ୨ ) ନହେଲେ ପ୍ରାମାଣିକ ଓଡ଼ିଆ ସହ ଯଥେଷ୍ଟ ପାର୍ଥକ୍ୟ ଥିବା ସମ୍ବଲପୁରୀକୁ ସେ ଅନ୍ତତଃ ଏକ ଉପଭାଷା ବା Dialect ବୋଲି ଅନ୍ତତଃ ଗ୍ରହଣ କରୁଥାନ୍ତେ । ତେଣୁ ତାଙ୍କ ମତାମତକୁ ଏ କ୍ଷେତ୍ରରେ ଆସ୍ଥା ସ୍ଥାପନ କରିବା ନିରାପଦ ନୁହେଁ । ତେବେ ସେ ଯାହା ହେଉ ଏ କ୍ଷେତ୍ରରେ ସମ୍ବଲପୁରୀକୁ ଏକ ଭାଷା ବୋଲି ସ୍ୱୀକୃତି ଦେବାକୁ ଉପକୂଳବର୍ତ୍ତୀ ଓଡ଼ିଶାର ଲୋକେ ଆଜି ପର୍ଯ୍ୟନ୍ତ ରାଜି ନୁହନ୍ତି । ଜଣେ ଭାଷାତତ୍ତ୍ୱବିତ୍ ଏ ସମ୍ପର୍କରେ ଏହାକୁ ଏକ ଉପଭାଷା ବୋଲି ଗ୍ରହଣ କରି ଦୃଢ଼ କଣ୍ଠରେ କହିଛନ୍ତି- "ଓଡ଼ିଆ ଭାଷାର ଉପଭାଷା କହିବାକୁ ଗଲେ ସମ୍ବଲପୁରୀ ହେଉଛି ତାହାର ଏକମାତ୍ର ଯଥାର୍ଥ ଉପଭାଷା । ( ୩ ) ମାତ୍ର ସମ୍ବଲପୁର ଅଞ୍ଚଳର କେତେକ ଗବେଷକ ଏହାକୁ ଓଡ଼ିଆର ଏକ ଉପଭାଷା ବେଲି ଗ୍ରହଣ ନକରି ଏକ ସ୍ୱୟଂ ସଂପୂର୍ଣ୍ଣ ଭାଷା ବୋଲି ଦାବୀ କରିଛନ୍ତି । ( ୪ )

ଏ ପ୍ରସଂଗରେ ସମ୍ବଲପୁରୀ ଭାଷାର ମୌଳିକ ପାର୍ଥକ୍ୟ ଓ ରୂପସମ୍ପଦକୁ ବିଚାର ନକରି ଏହାକୁ ଉପଭାଷା ବୋଲି ଗ୍ରହଣ କଲେ ଠିକ ହେବ ନାହିଁ । ଉପଭାଷା ବୋଲି କହିବା ଆଗରୁ ଉପଭାଷାର ଲକ୍ଷଣ ଗୁଡ଼ିକ ସମ୍ବଲପୁରୀ ଭାଷାରେ ଅଛି କି ନାହିଁ ତାହା ଦେଖିବାକୁ ହେବ । କୌଣସି ଭାଷା ସମ୍ପ୍ରଦାୟର ଅନ୍ତର୍ଗତ ଛୋଟ ଛୋଟ ଦଳ ବା ଅଞ୍ଚଳ ବିଶେଷରେ ପ୍ରଚଳିତ ଭାଷାରୂପର ନାମ ଉପଭାଷା ବା ବିଭାଷା । ( ୫ ) ତେଣୁ ଛୋଟ ଛୋଟ ଦଳ ବା ଅଞ୍ଚଳ ବିଶେଷରେ ପ୍ରଚଳିତ ଥିବାରୁ ଉପଭାଷା ସର୍ବଦା ମୂଳଭାଷାର ଅନୁଗାମୀ ଓ ମୂଳଭାଷା ବା ପ୍ରାମାଣିକ ଭାଷା (Standard Language) ର ଶବ୍ଦ ଭଣ୍ଡାର ଠାରୁ ଦରିଦ୍ର । ଆହୁରି ମଧ୍ୟ ମୂଳପ୍ରମାଣିତ ଭାଷାଠାରୁ ଏହାର ଜନ୍ମ ଅର୍ବାଚୀନ । ଡକ୍ଟର ଭୋଳାନାଥ ତିୱାରୀଙ୍କର ମତରେ ଉପଭାଷାର କ୍ଷେତ୍ର ସୀମିତ ଯାହାର ରୂପ ବାକ୍ୟ ଗଠନ ଅର୍ଥ, ଶବ୍ଦ ସମୁହ ତଥା ଆପ୍ତବାକ୍ୟ ଦୃଷ୍ଟିରୁ ସେହି ଭାଷାର ପ୍ରାମାଣିକ ତଥା ଅନ୍ୟ କ୍ଷେତ୍ରିୟ ରୂପମାନଙ୍କର ଠାରୁ ଭିନ୍ନ । କିନ୍ତୁ ପ୍ରାମାଣିକ ଭାଷା ଭାଷୀ ଲୋକଙ୍କର ବୋଧଗମ୍ୟତା ପାଇଁ ଏହି ଭିନ୍ନତା କୌଣସି ପ୍ରତିବନ୍ଧକ ସୃଷ୍ଟି କରିନଥାଏ । ଏଥିରେ ପୁଣି ରୂପ ରଚନା ବାକ୍ୟ ରଚନା, ଶବ୍ଦମାଳା ତଥା ଅର୍ଥ ସମ୍ବନ୍ଧୀୟ କୌଣସି ପ୍ରକାରର ସ୍ପଷ୍ଟ ଉଲ୍ଲେଖ ଯୋଗ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ । ସପୀରଙ୍କ ଭାଷାରେ- To Linguist

there is no real difference between dialect and Language, ପୁଣି ପେଇଙ୍କ ମତରେ There is no intrinsic difference between language and dialect ଉପଭାଷା ଭାଷାଠାରୁ ଉତ୍ପନ୍ନ ଓ ଭାଷା ଜନନୀ ହେଲେ ଉପଭାଷା କନ୍ୟା ।

ଉପରୋକ୍ତ ଲକ୍ଷଣ ସବୁକୁ ଦୃଷ୍ଟିପାତ କଲେ ସମ୍ବଲପୁରୀ ଏକ ଉପଭାଷା କହିବାର ଉପାୟ ନାହିଁ । ସମ୍ବଲପୁରୀ ଓଡ଼ିଆ ଭାଷାଠାରୁ ଶବ୍ଦଗ୍ରହଣ କରି ସମୃଦ୍ଧଶାଳୀ ହୋଇ ନାହିଁ କିମ୍ବା ଓଡ଼ିଆ ଭାଷାରୁ ତାର ଜନ୍ମ ନୁହେଁ । ଅଧିକ ସମ୍ବଲପୁର ଅଞ୍ଚଳର ଐତିହ୍ୟ ଓ ସଂସ୍କୃତି ପ୍ରତି ଦୃଷ୍ଟିପାତ କଲେ ଜଣାଯାଏ ଯେ ଉପକୂଳବର୍ତ୍ତୀ ଓଡ଼ିଶା ସହ ଦୀର୍ଘ ଦିନ ଧରି ସିଧାସଳଖ ଏହା କେବେ ସଂପୃକ୍ତ ନଥିଲା ବରଂ କୋଶଳ ସାମ୍ରାଜ୍ୟର ଅଧୀନରେ ମଧ୍ଯଦେଶ ବା ମଧ୍ଯ ଭାରତ ସହ ଏହାର ସମ୍ପର୍କ ଖୁବ୍ ଦୃଢ଼ ଥିଲା । ଉକ୍ଳଳ ସହ କଦବା କ୍ୱଚିତ୍ ରାଜନୈତିକ ସୂତ୍ରରେ କିମ୍ବା ଏହା ବାଣିଜ୍ୟିକ ସୂତ୍ରରେ ଏହା ଆବଦ୍ଧ ଥିଲା । ପୁଣି ଏହାର ଐତିହ୍ୟ ଓ ସଂସ୍କୃତିରୁ ଜଣାପଡୁଛି ଯେ ଅବଧୀ, ବଘେଲୀ, ଛତିଶ ଗଡୀ ଇତ୍ୟାଦି କୋଶଳି ଭାଷା ବା ପୂର୍ବୀହିନ୍ଦୀ ପରି ଏ ଭାଷାର ଏକ ସ୍ୱତନ୍ତ୍ର ସତ୍ତା ଥିଲା ଯେଉଥିରେ କି ଇଂରେଜ ଅଧିକୃତ ହେବା ପର୍ଯ୍ୟନ୍ତ ଏଠାକାର ଲୋକ କଥାବାର୍ତ୍ତା କରୁଥିଲେ । ଏଣୁ ଏହି ଅଞ୍ଚଳରେ ଓଡ଼ିଆ ଭାଷାରେ ବିଶିଷ୍ଟ ସାହିତ୍ୟିକ କୃତି ଗୁଡ଼ିକ ସେ ପର୍ଯ୍ୟନ୍ତ ସମ୍ଭବ ନଥିଲା । ସମ୍ବଲପୁରୀ ଭାଷା ଅନ୍ୟାନ୍ୟ ଭାରତୀୟ ଆର୍ଯ୍ୟଭାଷା ମାନଙ୍କ ପରି ପ୍ରାଚୀନ ଭାରତୀୟ ଆର୍ଯ୍ୟ ଭାଷାରୁ ସୃଷ୍ଟି ହୋଇଛି । ଆହୁରି ମଧ୍ଯ ଓଡ଼ିଆ ଭାଷାଠାରୁ ଏହାର ଜନ୍ମ ଅର୍ବାଚୀନ ନୁହେଁ କାରଣ ଏ ଅଞ୍ଚଳର ଇତିହାସରୁ ଜଣାପଡୁଛି ଯେ ଏ ଭୂମିରେ ଆର୍ଯ୍ୟମାନେ ପ୍ରଥମେ ପାଦ ଦେଇଥିଲେ ଏବଂ କୋଶଳ ମଧ୍ଯ ଦେଇ କଳିଙ୍ଗକୁ ପ୍ରବେଶ କରିଥିଲେ । କୋଶଳ ବାଟେ କଳିଙ୍ଗକୁ ଆର୍ଯ୍ୟ ସଭ୍ୟତା ପ୍ରବେଶ କରିଥିବା କଥା ଆଜିର ଐତିହାସିକ ଓ ଭାଷାତତ୍ତ୍ୱବିତ୍ ମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଏପରିକି ଦ୍ୱାଦଶ ଶତାବ୍ଦୀରେ ମାର୍କଣ୍ଡେୟଙ୍କ ବର୍ଣ୍ଣିର ଉଡ୍ରୀ ଅପଭ୍ରଂଶର ବ୍ୟାଖ୍ୟା କରି ତହିଁରେ କୋଶଳୀ ଅପଭ୍ରଂଶ ପ୍ରତି ନିର୍ଦ୍ଦେଶ ଦିଆଯାଇଥିବାର ସମ୍ଭାବନା ଡକ୍ଟର ଖଗେଶ୍ୱର ମହାପାତ୍ର କରନ୍ତି । ଆର୍ଯ୍ୟ ସଭ୍ୟତାର ପ୍ରସାର କାଳରେ ବଙ୍ଗଳାର ଛୋଟନାଗପୁର ଅଞ୍ଚଳରୁ ଆର୍ଯ୍ୟଶାଖା ଓଡ଼ିଶାରେ ପହଞ୍ଚିବା ଆଗରୁ ସମ୍ବଲପୁର ଅଞ୍ଚଳରେ ଏହା ମଧ୍ଯ ଦେଶୀୟ ଓ କୋଶଳ ଆର୍ଯ୍ୟ ସଭ୍ୟତାର ସଂସ୍ପର୍ଶରେ ଆସିଥିବା କଥା ବିଶେଷଜ୍ଞ ସୁନୀତ କୁମାର ଚାଟାର୍ଜୀ କହନ୍ତି । ଏଣୁ କଳିଙ୍ଗରେ ଆର୍ଯ୍ୟ ଭାଷାର ପ୍ରବେଶ ପୂର୍ବରୁ ସମ୍ବଲପୁର ଅଞ୍ଚଳରେ ଆର୍ଯ୍ୟଭାଷା ପ୍ରବେଶ କରିସାରିଛି । ଏଥିରୁ ଜଣାଯାଏ ଯେ ସମ୍ବଲପୁର ଅଞ୍ଚଳର ଭାଷାର ସୃଷ୍ଟି ଓଡ଼ିଆ ଭାଷାଠାରୁ ଅର୍ବାଚୀନ ନୁହେଁ । ତେଣୁ ସମ୍ବଲପୁରୀ ଭାଷାକୁ ଓଡ଼ିଆର ଉପଭାଷା ବୋଲି ଗ୍ରହଣ କରିବା ଯୁକ୍ତି

ସଙ୍ଗତ ନୁହେଁ । ଏ ଅଞ୍ଚଳ ଦେଇ ପ୍ରଥମେ ଆର୍ଯ୍ୟଭାଷା ଓଡ଼ିଶାକୁ ପ୍ରବେଶ କରିଥିବାରୁ ଏ ଅଞ୍ଚଳର ଭାଷାରେ ବହୁତ ବ୍ୟବହୃତ ହୁଏ ନାହିଁ କି ଓଡ଼ିଆଭାଷୀ ଲୋକେ ବୁଝିପାରନ୍ତି ନାହିଁ । ଏପରିକି ମୂଳ ଭାରତୀୟ ଆର୍ଯ୍ୟଭାଷାର କେତେକ ଶବ୍ଦର ପ୍ରଚଳନ ଏ ଭାଷାରେ ଆଜିବି ରହିଛି ଯାହା ଓଡ଼ିଆରେ ଦୁର୍ମିଳ । ନିମ୍ନରେ ଏହାର କେତେଗୋଟି ଉଦାହରଣ ଦିଆଗଲା ।

| ମୂଳ ଆର୍ଯ୍ୟଭାଷା | ସଂସ୍କୃତି / ବୈଦିକଭାଷା | ସମ୍ବଲପୁରୀ |
|---|---|---|
| ସେରପୋ (Serpo) | ସରପାମି (I Creed) (ସର୍ପ ଶବ୍ଦ ଉତ୍ପତ୍ତି ବୋଧହୁଏ ଏଇଠୁ) | ସରପଟି ଯିବା (ସର୍ପ ପର ଅଙ୍ଗ ସଙ୍କୋଚନ କରିବା) |
| ମେର୍ଦୋ (Merdo) | ମର୍ଦ୍ଦାମି (I press) (Latin Merdeo) | ମଡାମି (I will press) (ଯଥା-ଧାନ୍ ମଡ଼ାମି) |
| *ପୈଲ୍ସ (Pels) | ପାଷାଣ (ସଂ) ପାସ୍ୟ (ବୈଦିକ)(Pasya) | (ପଖନ୍ ପଥର) |
| | କରିସି (ବୈଦିକ) | ଖର୍ସି (ଗୋବର) ଇତ୍ୟାଦି ଶବ୍ଦ |

ଏଣୁ ସମ୍ବଲପୁରୀ ଭାଷା ଜନ୍ମ ଯେ ଓଡ଼ିଆ ଭାଷାର ଏହା ପୂର୍ବରୁ ଏହା ପ୍ରମାଣିତ କରେ । ଆହୁରି ମଧ ସମ୍ବଲପୁରୀ ଭାଷାର ଓଡ଼ିଆ ଭାଷାର ଶବ୍ଦଭଣ୍ଡାରକୁ ସମୃଦ୍ଧିଶାଳୀ । ଅବଶ୍ୟ ଆର୍ଯ୍ୟ ଆଗମନ ପୂର୍ବରୁ ଏବଂ ପରେ ମଧ ଏ ଅଞ୍ଚଳ ଏକ ଆଦିବାସୀ ବହୁଳ ଅଞ୍ଚଳ ହୋଇଥିବାରୁ ଆର୍ଯ୍ୟଭାଷା ସଙ୍ଗେ ବହୁତ ଶାବର, ଦ୍ରାବିଡ଼ ଇତ୍ୟାଦି ଭାଷାରେ ଶବ୍ଦ ସବୁ ଏହାର ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରିଛି । ସମ୍ବଲପୁରୀ ଭାଷାରେ ଏପରି ଶବ୍ଦ ସବୁ ରହିଛି ଯାହାର ପ୍ରଚଳନ ଓଡ଼ିଆରେ ନାହିଁ କିମ୍ବା ତାର ପ୍ରତିଶବ୍ଦ ମଧ ମିଳିବା କଷ୍ଟକର ପାଖାପାଖି ଅର୍ଥ ନିର୍ଦ୍ଦେଶ କରୁଥିବା ଦୁଇଟି ଅବସ୍ଥାର ପରିପ୍ରକାଶ ପାଇଁ ଓଡ଼ିଆ ଭାଷାରେ ଗୋଟିଏ ଶବ୍ଦ ପ୍ରଚଳିତ ଥିବା ସ୍ଥଳେ ସମ୍ବଲପୁରୀ ଭାଷାରେ ତାହାର ଦୁଇ ତିନିଗୋଟି ପୃଥକ୍ ଶବ୍ଦ ରହିଛି ଏବଂ ପୃଥକ୍ ଅବସ୍ଥାର ଅର୍ଥ ସ୍ପଷ୍ଟ ପ୍ରକାଶ କରି ପାରୁଛି ଯାହା ଓଡ଼ିଆ ଭାଷାରେ ନାହିଁ । ନିମ୍ନରେ ତାହାର ଦୁଇଗୋଟି ଉଦାହରଣ ଦିଆଗଲା ।

---

*. ମୂଳଶବ୍ଦ ଗୁଡ଼ିକ Dr. C.C. Uhlenbeck ଙ୍କର A manual of Sanskrit Phonetics (Munsi RAm Monohar lal, Post Box 1165, Naikk Sarak New Delhi) ରୁ ସଂଗୃହୀତ

| ସମ୍ବଲପୁରୀ | ଓଡ଼ିଆ ପ୍ରତିଶବ୍ଦ |
|---|---|
| ଡୁପ୍ ବା (ପୂର୍ଣ୍ଣତଃ ମାଟିରେ ପୋତିବୋ-ଯଥା-ମୁର୍ଦ୍ଦାର ଡୁପା ।) | ପୋତିବା (ମୁର୍ଦ୍ଦାରକୁ ପୋତିଦିଅ) |
| ଗାଡ଼୍ବା (ଅଧା ମାଟିରେ ପୋତିହୋଇ ଅଧା ବାହାରକୁ ଦିଶିବା ଅବସ୍ଥା) | ପୋତିବା |
| ଯଥା- ଖୁଁଟ୍ ଗାଡ଼୍ | ଯଥା- ଖୁଣ୍ଟ ଟା ପୋତ |
| ଆମ୍- (କଞ୍ଚା ଆମ୍ବ) | ଆମ୍ବ |
| ଲେଟି- (ପାଚିଲା ଆମ୍ବ) | ଆମ୍ବ |

ଉପରୋକ୍ତ ଉଦାହରଣରେ 'ଡୁପ୍ ବା' ଓ ଗାଡ଼୍ବା ପାଇଁ ପୋତିବା ଏବଂ ଲେଟି ଓ ଆମ୍ ପାଇଁ ଆମ୍ବ ଇତ୍ୟାଦି ଗୋଟିଏ ମାତ୍ର ଶବ୍ଦ ଓଡ଼ିଆରେ ପ୍ରଚଳିତ । ଏଣୁ ଓଡ଼ିଆ ଭାଷାର ସମସ୍ତ ଶବ୍ଦ ଥିବା ସତ୍ତ୍ୱେ ଏପରି ଅନେକ ଶବ୍ଦ ସମ୍ବଲପୁରୀରେ ଥିବାରୁ ଏହାର ଶବ୍ଦ ଭଣ୍ଡାର ଅଧିକ ସମୃଦ୍ଧଶାଳୀ । ଏପରି ସ୍ଥଳେ ଏହାକୁ ଓଡ଼ିଶାର ଉପଭାଷା ବୋଲି ଗ୍ରହଣ କରିବାରେ କି ଯଥାର୍ଥତା ଅଛି । ବରଂ କୋଶଳୀ ଭାଷା ଉତ୍କଳରେ ପ୍ରବେଶ କରିଥିବାରୁ ଏ ଭାଷାରୁ ଓଡ଼ିଆ ଭାଷା ଶବ୍ଦ ଗ୍ରହଣ କରି ବର୍ତ୍ତମାନର ସମୃଦ୍ଧଶାଳୀ ସାହିତ୍ୟବିଭବ ପୂର୍ଣ୍ଣ ଭାଷାରେ ପରିଣତ ହେବା ସମ୍ଭବ । ସମ୍ବଲପୁରୀ ଭାଷାର ପ୍ରଚଳିତ ଭୌଗୋଳିକ ଆୟତନ କ୍ଷୁଦ୍ରନୁହେଁ । ଅନ୍ୟୁନ ପାଞ୍ଚଗୋଟି ଜିଲ୍ଲାର ଓ ଅନେକ ପ୍ରାନ୍ତୀୟ ଅଞ୍ଚଳରେ ବସବାସ କରୁଥିବା ଜନସାଧାରଣ ଏହାକୁ ବ୍ୟବହାର କରୁଥିବାରୁ ଏହାକୁ ଏକ କ୍ଷୁଦ୍ର ଆଞ୍ଚଳିକ ବିଭାଷା ବୋଲି ଗ୍ରହଣ କରାଯିବାରେ ମଧ୍ଯ ଯୁକ୍ତି ନାହିଁ ବରଂ ଏହାର ଓଡ଼ିଆ ଭାଷା ସହ ଛତିଶଗଡ଼ୀ, ଅବଧୀ, ବଘେଲୀ ପରି ଏକ ସମକକ୍ଷ ଭାଷା ହୋଇପାରେ ।

ଗୋଟିଏ ଉପଭାଷା ପୁଣି ମୂଳ ଭାଷାର ରୂପତତ୍ତ୍ୱ ଠାରୁ ଏତେଟା ପୃଥକ୍ ନୁହେଁ ଯେ ମୂଳଭାଷା ଭାଷୀ ଲୋକେ ଏହାକୁ ବୁଝିବାରେ ବଞ୍ଚିତ ହେବେ । କିନ୍ତୁ ସମ୍ବଲପୁରୀ ଭାଷା ଓଡ଼ିଆ ଭାଷା ଠାରୁ ସମୟ ସମୟରେ ଏତେ ପୃଥକ୍ ଯେ ଏହାକୁ ଓଡ଼ିଆ ଭାଷା ଭାଷୀ ଲୋକେ ବୁଝିବା ଆଦୌ ସମ୍ଭବପର ନୁହେଁ । ସ୍ୱନାମଧନ୍ୟ ଭାଷାବିତ୍ ଡ: ତ୍ରିପାଠୀ ଏହା ହୃଦୟଙ୍ଗମ କରି ପଶ୍ଚିମାଞ୍ଚଳର ଭାଷାକୁ- "Unintelligible to Oriya speakers living outside Western Orissa" ବୋଲି ସ୍ୱୀକାର କରିଛନ୍ତି । (୧) ଏଣୁ ଏକ ଉପଭାଷା କିପରି ପ୍ରାମାଣିକ ଭାଷାଠାରୁ ଏତେ ଭିନ୍ନ ହୋଇପାରେ ?

---

୧. Evolution of Oriya Language & Script, Dr. K.B. Tripathy, Page 221.

| ସମ୍ବଲପୁରୀ | ଓଡ଼ିଆ |
| --- | --- |
| ଉରା ଉପ୍‌ରୁ ଛୁଛୁ ଟା ଡ଼ାଓକେ ଡୁଙ୍ଗୁଛେ । | ଓଳିଆ ଉପରୁ ଚୁଚୁନ୍ଦ୍ରାଟି ଭୁଆଚିରାଡିକୁ ଜଳ ଜଳ କରି ଦେଖୁଅଛି । |
| ଧର୍ ଡେଁଠୁକେ ମୁର୍‌କୁଟିପକା | ବେକକୁ ଧରି ମୋଡିଦେ । |
| କୁମ୍‌ନାଥ୍ ଗୁଠେ ଝୁରି ନାଇଲାଗି | ମୁଗୁରା ଭିତରେ ଗୋଟିଏ ବି ମାଛ ପଡି ନାହାନ୍ତି । |

ଏହିପରି ଉଦାହରଣ ଖୋଜିଲେ ଯଥେଷ୍ଟ ମିଳିବ । ଉପରୋକ୍ତ ବାକ୍ୟଗୁଡିକ ଉପକୂଳବର୍ତ୍ତୀ ଓଡ଼ିଆ ଭାଷୀଙ୍କର ସଂପୂର୍ଣ୍ଣ ଦୁର୍ବୋଧ ଏବଂ ଏଗୁଡିକରେ ଓଡ଼ିଆରେ ବ୍ୟବହୃତ ଶବ୍ଦ ଗୁଡ଼ିକର ପ୍ରଚଳନ ନ କରି ମଧ୍ୟ ଅର୍ଥ ପ୍ରକାଶ କରିବାରେ କିଛି ଅସୁବିଧା ନାହିଁ । ଏଣୁ ଏ ସମ୍ବଲପୁରୀ ଭାଷାର ପ୍ରାଚୀନତା ଓ ବୈଶିଷ୍ଟ୍ୟ ଯେ ଯଥେଷ୍ଟ ରହିଛି ଏହା ସ୍ୱୀକାର୍ଯ୍ୟ ଏବଂ ଏହା ଏକ ସ୍ୱୟଂ ସଂପୂର୍ଣ୍ଣ ଭାଷା ବୋଲି ନିର୍ଦ୍ୱନ୍ଦରେ ଗ୍ରହଣୀୟ୍ ।



# ସମ୍ବଲପୁର ଭାଷା ଆନ୍ଦୋଳନରେ ଗଙ୍ଗାଧର ଏକ ବଳିଷ୍ଠ ବ୍ୟକ୍ତିତ୍ୱ

କେଶବ ଚନ୍ଦ୍ର ମେହେର

ମହାନ୍ କବି ଗଙ୍ଗାଧର ମେହେର କେବଳ ସାର୍ଥକ କବି ଭାବରେ ନିଜର କବି ଜନୋଚିତ ପ୍ରତିଭାର ଉତ୍କର୍ଷ ଦେଖାଇ ଯାଉଛନ୍ତି, ତା'ନୁହେଁ ଓଡ଼ିଶାର ପଶ୍ଚିମ ସୀମାନ୍ତର ଜାଗ୍ରତ ପ୍ରହରୀ ଭାବରେ ସମ୍ବଲପୁର ଭାଷା ଆନ୍ଦୋଳନ ସହିତ ନିବିଡ଼ ଭାବରେ ସଂପୃକ୍ତ ଥାଇ ନିଜର ସମୟୋଚିତ ମନ୍ତବ୍ୟ ବିଭିନ୍ନ କବିତା ମାଧ୍ୟମରେ ପ୍ରଦାନ କରିବା ସଙ୍ଗେ ସଙ୍ଗେ ସମ୍ବଲପୁରକୁ ହିନ୍ଦୀ ଭାଷାର କବଳରୁ ରକ୍ଷା କରିବା ସକାଶେ ବାରମ୍ବାର ଉପାୟ ପ୍ରଦର୍ଶନ ପୂର୍ବକ ଏ ଅଞ୍ଚଳର ଦେଶବାସୀ ଓ ନେତୃବର୍ଗଙ୍କୁ ଆତୁର ଆହ୍ୱାନ ଜଣାଇବାରେ ଅବହେଳା କରିନାହାନ୍ତି । ସନ୍ ୧୮୯୬ରୁ ସମ୍ବଲପୁର ମରହଟ୍ଟାମାନଙ୍କର କୂଟ ଚକ୍ରାନ୍ତ ଫଳରେ ହିନ୍ଦୀଭାଷାର ଅବାଞ୍ଛିତ ପୀଡ଼ନ ଦ୍ୱାରା ନିପୀଡ଼ିତ ହୋଇ ମାତୃସ୍ତନ ବଞ୍ଚିତ ଶିଶୁପରି ଏକ ଦୟନୀୟ ଓ ନିରାଶ ଜର୍ଜ୍ଜର ଅବସ୍ଥାରେ ରହିଥିଲା ।

କବି ଗଙ୍ଗାଧରଙ୍କ ଜନ୍ମ ବର୍ଷ ୧୯୬୨ ମସିହାରୁ ହିଁ ସମ୍ବଲପୁର ମଧ୍ୟ ପ୍ରଦେଶର ଶାସନାଧୀନ ହୋଇଥିଲା । ଏହି ଜିଲ୍ଲାରେ ବ୍ରିଟିଶ୍ ଶାସକବର୍ଗଙ୍କ ଅଧସ୍ତନ କର୍ମଚାରୀ ସମସ୍ତେ ପ୍ରାୟତଃ ଥିଲେ ଅଣ ଓଡ଼ିଆ । ଇଂରେଜ ଶାସକଗଣ ହିନ୍ଦୀ ବ୍ୟତୀତ ଅନ୍ୟ ଭାଷା ବୁଝିପାରୁ ନଥିଲେ । ଉକ୍ତ ଅଣ ଓଡ଼ିଆ ଅଧସ୍ତନ କର୍ମଚାରୀବୃନ୍ଦ ଶିକ୍ଷା ଓ ଶାସନ କ୍ଷେତ୍ରରେ ଓଡ଼ିଆ ଭାଷାର ନିକୃଷ୍ଟତା ପ୍ରଦର୍ଶନ କରି ସମ୍ବଲପୁରରେ ହିନ୍ଦୀ ଭାଷାର ପ୍ରଚଳନ ସକାଶେ ଏକରକମ ଅପଚେଷ୍ଟା ଆରମ୍ଭ କଲେ ୧୮୯୫ ମସିହାରେ । ଏମାନଙ୍କର ଏହି କୂଟଚକ୍ରାନ୍ତର ଏକ ବିବରଣୀ ସମ୍ବଲପୁରର ତତ୍କାଳୀନ ଏକ ବିଶିଷ୍ଟ ସାମ୍ବାଦିକ ୰ ଶ୍ରୀପତି ମିଶ୍ର ତାଙ୍କର 'ଶିମିଳା ଯାତ୍ରା' ଶିର୍ଷକ ପୁସ୍ତିକାରେ ନିମ୍ନମତେ ଲିପିବଦ୍ଧ କରି ଯାଇଛନ୍ତି ।

"ସମ୍ବଲପୁର ଘୋର ଅରଣ୍ୟ ସମାକୀର୍ଣ୍ଣ ପାର୍ବତ୍ୟ ଦେଶରେ ଅବସ୍ଥିତ ଥିବାରୁ ସମ୍ବଲପୁରରେ ଶିକ୍ଷିତ ବ୍ୟକ୍ତିର ଅଭାବ ଥିଲା । ସୁତରାଂ, ରାଜକାର୍ଯ୍ୟାଳୟରେ ମରହଟ୍ଟା ଓ ହିନ୍ଦୁମାନେ ଆଧିପତ୍ୟ ଲାଭ କରିଥିଲେ । କିନ୍ତୁ ଏମାନଙ୍କ ଭାଷା ସହିତ ଓଡ଼ିଆ ଭାଷାର

ସୌସାଦୃଶ୍ୟ ନଥିବାରୁ ଏମାନେ ଓଡ଼ିଆ ଭାଷା ଶିକ୍ଷା କରିବାକୁ ଆଦୌ ସମର୍ଥ ହେଉ ନଥିଲେ । ସୁତରାଂ ରାଜକାର୍ଯ୍ୟ ପରିଚାଳନ କରିବାରେ ଏମାନେ ଏକାନ୍ତ ଅସମର୍ଥ ହେଉଥିଲେ । ଓଡ଼ିଆ ଭାଷା ଏମାନଙ୍କର ପ୍ରଧାନ ଅନ୍ତରାୟ ହେଉଥିଲା । ଏମାନେ ମନେ କଲେ ଯେ ଓଡ଼ିଆ ଭାଷା ପରିବର୍ତ୍ତରେ ଅଦାଲତରେ ହିନ୍ଦୀ ଭାଷା ପ୍ରଚଳନ କରି ପାରିଲେ ସମ୍ବଲପୁରର କାର୍ଯ୍ୟାଳୟ ମାନଙ୍କରେ ଏମାନଙ୍କର ଆଧିପତ୍ୟ ଅକ୍ଷୁର୍ଣ୍ଣ ରହିବ । ତେଣୁ, ଏମାନେ ସରକାରୀ ରିପୋର୍ଟ ମାନଙ୍କରେ ଆପଣା ଆପଣା ସ୍ୱାର୍ଥପର ମତ ଲିପିବଦ୍ଧ କରି ଆନ୍ଦୋଳନର ସୂତ୍ରପାତ କଲେ । ପରିଶେଷରେ ଉକ୍ତ ସମ୍ବାଦ ମଧ୍ୟପ୍ରଦେଶର ଶାସନକର୍ତ୍ତା ଲର୍ଡ କର୍ଣ୍ଣ ସାହେବ ମହୋଦୟଙ୍କ କର୍ଣ୍ଣଗୋଚର ହେଲା । XXX ପ୍ରକୃତ ସତ୍ୟ ବୈଦେଶିକ ସ୍ୱାର୍ଥାବରଣର ଶତ ଶତ ପ୍ରସ୍ଥ ମଧ୍ୟରେ ଲୁକ୍କାୟିତ ରହିଲା । ସମ୍ବଲପୁରର ତଦାନୀନ୍ତନ ଡେପୁଟି କମିଶନର ଶ୍ରୀ ଚେପ୍‌ମେନ୍ ସାହେବ ଏବଂ ବିଭାଗୀୟ କର୍ତ୍ତୃପକ୍ଷମାନେ ଭାଷା ପରିବର୍ତ୍ତନର ସପକ୍ଷରେ ମତ ଦେଲେ । ସମ୍ବଲପୁରର ଅଦାଲତରେ ହିନ୍ଦୀଭାଷା ସଗୌରବରେ ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲା ।" (ଶିମିଳା ଯାତ୍ରା - ପୃ ୬୫-୬୬)

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଉପକୂଳ ଅଞ୍ଚଳ ମଧ୍ୟ ଏହିପରି ଏକ ସମସ୍ୟାର ସମ୍ମୁଖୀନ ହୋଇଥିଲା । ବାଲେଶ୍ୱର ଜିଲ୍ଲାସ୍କୁଲର ଜନୈକ ବଙ୍ଗାଳୀ ଶିକ୍ଷକ ଶ୍ରୀକାନ୍ତ ଚନ୍ଦ୍ର ଭଟ୍ଟାଚାର୍ଯ୍ୟ 'ଉଡ଼ିୟା ଏକଟା ସ୍ୱତନ୍ତ୍ର ଭାଷା ନୟ' ଶୀର୍ଷକ ଏକ ପୁସ୍ତିକା ଲେଖି ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ ଯେ ଓଡ଼ିଆ ବଙ୍ଗଳା ଭାଷାର ଉପଭାଷା ମାତ୍ର । ତେଣୁ ଓଡ଼ିଆର ଉପକୂଳ ଅଞ୍ଚଳ ଅର୍ଥାତ୍, କଟକ, ପୁରୀ, ବାଲେଶ୍ୱର ଜିଲ୍ଲାର ସ୍କୁଲମାନଙ୍କରେ ଓଡ଼ିଆ ପରିବର୍ତ୍ତେ ବଙ୍ଗଭାଷାର ପ୍ରଚଳନ ହେବା ଉଚିତ୍ । ମାତ୍ର ସେନାପତି ଫକୀର ମୋହନ, ଗୌରୀ ଶଙ୍କର ରାୟ ପ୍ରମୁଖଙ୍କ ପ୍ରତିରୋଧ, ପ୍ରଚେଷ୍ଟା ତଥା ଜନ୍‌ବିମ୍ସ ଓ ରେଭେନ୍ସା ସାହେବଙ୍କ ଯଥାର୍ଥ ବିଚାର ଓ ସୁପାରିଶ୍ ଫଳରେ ଉକ୍ତ ଜିଲ୍ଲାମାନଙ୍କରେ ବଙ୍ଗଳା ଭାଷାର ପ୍ରଚଳନ ହୋଇ ପାରିଲା ନାହିଁ ।

କିନ୍ତୁ ଏ ସ୍ଥଳରେ ଗୋଟିଏ କଥା ମନେ ରଖିବାକୁ ହେବ ଯେ ଉପକୂଳ ଅଞ୍ଚଳର ଭାଷା ସମସ୍ୟା ଅପେକ୍ଷା ସମ୍ବଲପୁରର ଭାଷା ସମସ୍ୟା ଅତି ସଙ୍ଗୀନ୍ ଓ ବିପଦ୍‌ଜନକ ପରିସ୍ଥିତି ସୃଷ୍ଟି କରିଥିଲା । କାରଣ ଉପକୂଳ ଅଞ୍ଚଳରେ ସମ୍ବଲପୁର ଅପେକ୍ଷା ଶିକ୍ଷିତ ଲୋକଙ୍କ ସଂଖ୍ୟା ଥିଲା ଯଥେଷ୍ଟ ବେଶି । ଦ୍ୱିତୀୟତଃ ସେହି ଅଞ୍ଚଳରେ ବଙ୍ଗଳା ଭାଷାର ପ୍ରଚଳନ ନ ହେଉଣୁ ସେହି ଆନ୍ଦୋଳନ ପ୍ରତିରୁଦ୍ଧ ହୋଇ ଭାଙ୍ଗି ଯାଇଥିଲା । ମାତ୍ର ସମ୍ବଲପୁରରେ ଅଣ ଓଡ଼ିଆ ଅଧସ୍ତନ କର୍ମଚାରୀଙ୍କ କୂଟଚକ୍ରାନ୍ତ, ଉକ୍ତ ଜିଲ୍ଲାର ତଦାନୀନ୍ତନ ଡେ଼ପୁଟି କମିଶନର ମିଷ୍ଟର ଆର.ଏ.ବି.

ଚେପ୍‌ମେନଙ୍କର ଭାଷା ପରିବର୍ତ୍ତନର ଇଚ୍ଛା ସୁପାରିଶ୍ ତଥା ମଧ୍ୟପ୍ରଦେଶର ଶାସନକର୍ତ୍ତା ଲର୍ଡ୍ ବର୍ଣ୍ଣ ସାହେବଙ୍କ ସନ ୧୮୯୫ର ଆଦେଶ ଫଳରେ ସମ୍ବଲପୁରର ଅଦାଲତର ସମସ୍ତ କାଗଜାତ୍‌ରେ ହିନ୍ଦୀ ଭାଷାର ପ୍ରଚଳନ ହୋଇଗଲା । ଏହା ଫଳରେ ସମ୍ବଲପୁରବାସୀ ଯେଉଁ ଅସୁବିଧା ଓ ଦୁର୍ଯୋଗର ସମ୍ମୁଖୀନ ହୋଇଥିଲେ ତତ୍ ସମ୍ବନ୍ଧରେ ସଦାଶୟ ଫ୍ରେଜର ସାହେବ ଲେଖିଛନ୍ତି -

"ମୁଁ ଦେଖିଲି ଯେ ଲୋକଙ୍କୁ ଚାଲିବା ପଚାଶ ମାଇଲ ଦୂରରୁ ଅଦାଲତ୍‌କୁ ସମନ୍ କରା ଯାଉଥିଲା । ଏହି ଲୋକମାନେ ନିଜେ ସମନ୍ ପଢ଼ିପାରୁ ନଥିଲେ ବା ସେହି ସମନ୍ ପଢ଼ି ପାରୁଥିବା କୌଣସି ଲୋକକୁ ଗାଁରେ ଖୋଜି ପାଉ ନଥିଲେ । ଯେଉଁ ନିରକ୍ଷର କର୍ମଚାରୀ ସେହି ସମନ୍ ଧରି ଗାଁକୁ ଯାଉଥିଲେ, ସେମାନେ ସଂପୃକ୍ତ ଲୋକଙ୍କୁ କେବଳ ଏତିକି କହୁଥିଲେ ଯେ, ଅଦାଲତ୍‌ରେ ତୁମର ହାଜର ହେବା ଦରକାର । *** ଲୋକଙ୍କର ପିଲାମାନେ ହିନ୍ଦୀରେ ପଢ଼ାପଢ଼ି ଶିଖିବା ଆରମ୍ଭ କରିଥିଲେ । କିନ୍ତୁ ଯିଏ ଯେଉଁ ଗ୍ରନ୍ଥମାନ ପବିତ୍ର ବା ସୁଖକର ବୋଲି ମନେ କରୁଥିଲା, ତାହା ପିଲାମାନେ ପଢ଼ିପାରୁ ନଥିଲେ । ଲୋକେ ନିଜର ପୁଅଝିଅଙ୍କୁ ଦୁଇଟି ଭାଷା ଶିକ୍ଷା ଦେଇପାରୁ ନଥିଲେ । ତାର ନିଜର ମାତୃଭାଷା ଓଡ଼ିଆ, ଯାହାକି ଶୁଣିବାକୁ ମଧୁର ଓ ଯହିଁର ଲେଖା ପଢ଼ିବାକୁ ସୁନ୍ଦର, ତାହା ପକ୍ଷରେ ଲୋପ୍ ପାଇଯାଉଥିଲା । ତେଣୁ ଲୋକେ ଯେ ବିଶେଷ ଭାବରେ ବିବ୍ରତ ଥିଲେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।" ଏଇ ସବୁ ଚିତ୍ରରୁ ଉପକୂଳ ଅଞ୍ଚଳର ଭାଷା ସମସ୍ୟା ଓ ସମ୍ବଲପୁରର ଭାଷା ସମସ୍ୟାର ଭିନ୍ନତା ଓ ସଂକଟର ଉତ୍କଟତା ସହଜରେ ଅନୁମାନ ହେବ ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ ଯେ ଏତେ ବଡ଼ ଘଟଣା ଘଟିଗଲା, ଗୋଟିଏ ଜିଲ୍ଲାର ଭାଷା ଉପରେ ଆଉ ଗୋଟିଏ ଭିନ୍ନ ଭାଷା ଲଦି ଦିଆଗଲା, ସେତେବେଳେ ସମ୍ବଲପୁରର ଲୋକେ କ'ଣ କରୁଥିଲେ ? ସେମାନେ ଏ ସବୁର ପ୍ରତିରୋଧ କଲେ ନାହିଁ କାହିଁକି ? ଏ ସବୁର ଉତ୍ତର ମୁଁ ନିଜେ ଦେବା ପୂର୍ବରୁ ଉପକୂଳ ଅଞ୍ଚଳ ତଥା ସମଗ୍ର ଓଡ଼ିଶାର ପୂଜ୍ୟ ନେତା ଡକ୍ଟର ହରେକୃଷ୍ଣ ମହତାବ ପ୍ରମୁଖଙ୍କ ମତର କତିପୟ ଅଂଶ ଉଲ୍ଲେଖ କରିବା ଉଚିତ ମନେ କରୁଛି । ଡକ୍ଟର ମହତାବ ଲେଖିଛନ୍ତି - "ସମ୍ବଲପୁରରେ ଓଡ଼ିଆ ଭାଷାର ପ୍ରଚଳନ ପାଇଁ ସମ୍ବଲପୁର ନିଜେହିଁ ନେତୃତ୍ୱ ନେଇଛି । ସେ ନେତୃତ୍ୱ ଅନ୍ୟ କେଉଁ ଆଡୁ ଆସିନାହିଁ । ଏହାହିଁ ଓଡ଼ିଆ ଜାତିର ଇତିହାସରେ ସମ୍ବଲପୁରର ଗୌରବମୟ ସ୍ଥାନ ।"

ଉତ୍କଳ ସମ୍ମିଳନୀ ଗଠନ ଚେଷ୍ଟା ସଂକ୍ରାନ୍ତରେ 'ଉତ୍କଳ ସାହିତ୍ୟ'ର ସୁଯୋଗ୍ୟ ସଂପାଦକ ୰

ବିଶ୍ୱନାଥ କର ୧୯୦୨ ମସିହା ଡ଼ିସେମ୍ବର ସଂଖ୍ୟା 'ଉତ୍କଳ ସାହିତ୍ୟ'ର ବିବିଧ ପ୍ରସଙ୍ଗରେ ଲେଖିଥିଲେ - "କିଛି ଦିନ ପୂର୍ବେ ଜଣେ ଓଡ଼ିଆ ଗ୍ରାଜୁଏଟ୍ ଉତ୍କଳ ଖଣ୍ଡର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ନାମ ଧରି ଏହି ସମ୍ମିଳନୀ ସାଧନ ପାଇଁ ଡାକ ଛାଡ଼ି ତୁନି ହେଲେ । କିଛି କାଳପରେ ଅନ୍ୟ ଜଣେ ଭଦ୍ରବ୍ୟକ୍ତି ତାଙ୍କ ଡାକର ଅସ୍ଫୁଟ ପ୍ରତିଧ୍ୱନିଟିଏ କରି କର୍ତ୍ତବ୍ୟ ଶେଷ କଲେ । ସଂସାରରେ କଠିନ କାର୍ଯ୍ୟଗୁଡ଼ାକ ଏତେ ସହଜରେ ଯେବେ ସାଧିତ ହୋଇ ଯାଉଥାନ୍ତା, ତେବେ ଆଉ ଭାବନା କ'ଣ ଥିଲାକି ? ଉତ୍ସାହ, ଉଦ୍ୟମ, ପରିଶ୍ରମ, ସାଧନା କାହିଁ ? ଦେଖୁଅଛୁଁ, ଉତ୍କଳବାସୀ ନୀରବ, ନିଶ୍ଚେଷ୍ଟ । ସମ୍ବଲପୁରର ଭ୍ରାତାମାନେ ଦୀର୍ଘକାଳ ନିର୍ବାସିତା ମାତୃଭାଷାର ପୁନଃ ପ୍ରତିଷ୍ଠା ନିମିତ୍ତ ବହୁ ଶ୍ରମ ଓ ବ୍ୟୟ ସ୍ୱୀକାର କରି ସଫଳକାମ ହୋଇ ଅଛନ୍ତି । ସେଥିପାଇଁ କଣ ସମ୍ମିଳନୀର ଆକାଂକ୍ଷା ସେମାନଙ୍କର ପ୍ରାଣକୁ ଅନ୍ତର୍ହିତ ହୋଇଅଛି ?" ଇତ୍ୟାଦି ।

ଡକ୍ଟର ନଟବର ସାମନ୍ତରାୟ ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' ପୁସ୍ତକରେ ଲେଖିଛନ୍ତି - "ସମ୍ବଲପୁରରେ ଏହି ଭାଷା ଆନ୍ଦୋଳନ ପରେ ଗଞ୍ଜାମର ଲୋକେ ଓଡ଼ିଶା ସହିତ ମିଶ୍ରଣ ପାଇଁ ଉଦ୍‌ଗ୍ରୀବ ହୋଇଥିଲେ । X X X ଆଜି ଯେଉଁ ଜାତୀୟ ଭାବ ଉତ୍କଳରେ ଦେଖା ଦେଇଛି, ସେଥିନିମନ୍ତେ ଆମ୍ଭେମାନେ ସମ୍ବଲପୁର ଓ ଗଞ୍ଜାମ ବାସୀ ଭାଇମାନଙ୍କଠାରେ ଅନେକ ପରିମାଣରେ ଋଣୀ । (ନୋଟ୍ ଉତ୍କଳ ସମ୍ମିଳନୀ ବିବରଣୀ ସନ୍ - ୧୯୦୩ ପୃଷ୍ଠା ୮ ଓ ୯) ।

ସମ୍ବଲପୁରର ଏହି ଭାଷା ଆନ୍ଦୋଳନରେ ଯେଉଁ ପୁରୁଷ ପୁଙ୍ଗବଗଣ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ସାଫଲ୍ୟ ଲାଭ କରିଥିଲେ ସେମାନଙ୍କ ମଧ୍ୟରେ ସ୍ଥିତଧୀ ବୈକୁଣ୍ଠନାଥ ପୂଜାରି, ଦେଶପ୍ରାଣ ବଳଭଦ୍ର ସୂପକାର, ସମ୍ବଲପୁର ଗୋପାଳଜୀ ମଠର ମହନ୍ତ ମହାରାଜ ବିହାରୀ ଦାସ, ସାମ୍ବାଦିକ ଶ୍ରୀପତି ମିଶ୍ର, ଧରଣୀଧର ମିଶ୍ର, ଅନ୍ୟତମ ନେତା ମହାମନା ବ୍ରଜମୋହନ ପଟ୍ଟନାୟକ ଓ ଦେଶହିତୈଷୀ ମଦନମୋହନ ମିଶ୍ର ତଥା କବିବର ଗଙ୍ଗାଧର ମେହେର ଅଗ୍ରଗଣ୍ୟ । ଏଇ ମହାମନା ଦେଶହିତୈଷୀମାନଙ୍କ ସମ୍ବନ୍ଧରେ ୰ ଶଙ୍କର ପ୍ରସାଦ ପାଢ଼ୀ ଓ ଶ୍ରୀଯୁକ୍ତ ଶ୍ରଦ୍ଧାକର ସୂପକାର ସେମାନଙ୍କ ଲେଖାବଳୀରେ ବିସ୍ତୃତ ବିବରଣୀ ପ୍ରଦାନ କରି ଅଛନ୍ତି ।

ସଂପ୍ରତି ଏହି ଭାଷା ଆନ୍ଦୋଳନରେ କବିବର ଗଙ୍ଗାଧର ମେହେରଙ୍କ ଅବ୍ୟାହତ ଉଦ୍‌ବୋଧନୀ, ଉପଚୀକୀର୍ଷା, ଉଚ୍ଚାଟନ ତଥା ଉଦ୍‌ବେଗ ଏକାନ୍ତ ଲକ୍ଷ୍ୟ କରିବାର ବିଷୟ । ଅପେକ୍ଷାକୃତ ଅସ୍ୱଚ୍ଛନ୍ଦ ଏବଂ ଜଞ୍ଜାଳଗ୍ରସ୍ତ କବି ଅନ୍ୟମାନଙ୍କ ପରି ଏହି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ନଥିଲେ ମଧ୍ୟ ନିଜର ଲେଖନୀ ମାଧ୍ୟମରେ ସମ୍ବଲପୁରର ଲୋକଙ୍କୁ ବିଭିନ୍ନ ପନ୍ଥାରେ ଅବହିତ ତଥା ଆନ୍ଦୋଳନ ସକାଶେ ଉତ୍ତେଜିତ କରିବାରେ ମୁଖ୍ୟ ଭୂମିକା ନେଇଛନ୍ତି ।

ତାଙ୍କରି ନିଜ ଭାଷାରେ -

"ହେଲେ ବିଦ୍ୟୁଲ୍ଲେଖା ଗର୍ଜନ ଭୀଷଣ
ଜଣାଯାଏ ମେଘ ବର୍ଷିବ ଜଳ,
ତେଜସ୍ୱିନୀ ଲେଖା ସୁତୀବ୍ର ଭାଷଣ
କର୍ମବୀର ଠାରେ ନୁହେ ନିଷ୍ଫଳ ।

ପୁନଶ୍ଚ -

ଉତ୍ତେଜିତ ଲୋକ ହୁଏ ଉପଦେଶେ
ଧନପଣ ତହିଁ ହୁଅନ୍ତି ଚାଳି,
ନଥାଏ ପୁରୁଷ କାର ଯେଉଁ ଦେଶେ
ସହି ନେଇଥାଏ ସହସ୍ର ଗାଳି ।

ମହାନ୍ କବି ଗଙ୍ଗାଧରଙ୍କ ତେଜସ୍ୱିନୀ ଲେଖା ଓ ଉପଦେଶ ଉପର୍ଯ୍ୟୁକ୍ତ କର୍ମବୀରମାନଙ୍କୁ ଯଥେଷ୍ଟ ଉତ୍ତେଜିତ ଓ ସକ୍ରିୟ କରି ଠିଆ କରାଇଥିଲା ଏଥିରେ ସନ୍ଦେହ ନାହିଁ । ଆସାମର ସାହିତ୍ୟ ରଥି ସ୍ୱର୍ଗତ ଲକ୍ଷ୍ମୀକାନ୍ତ ବେଜବରୁଆ ଆସମୀୟ ବାଳକ ବାଳିକାମାନଙ୍କର ପ୍ରାଥମିକ ବଙ୍ଗଳା ଶିକ୍ଷାକୁ 'ଫିଡ଼ିଙ୍ଗ ବୋତଲ' ସହି ତୁଳନା କରିଥିଲେ । ଓଡ଼ିଶାର ମହାନ୍ କବି ଗଙ୍ଗାଧର ସେହିପରି ନାନା ଭାବରେ ସମ୍ବଲପୁରରେ ହିନ୍ଦୀ ଭାଷାର ପ୍ରଚଳନକୁ ତାଛଲ୍ୟ ଓ ବ୍ୟଙ୍ଗ କରି ଅଛନ୍ତି । ତା. ୧୯.୧.୧୮୯୫ରେ ମଧ ପ୍ରଦେଶର ଚିଫ୍ କମିଶନର୍ ସାର୍ ଜନ ଉଡବର୍ଣ୍ଣ ସମ୍ବଲପୁର କୋର୍ଟ କଚେରୀରେ ଓଡ଼ିଆ ଭାଷା ପରିବର୍ତ୍ତନରେ ହିନ୍ଦୀ ଭାଷା ପ୍ରଚଳନର ପ୍ରସ୍ତାବ କଲେ । ଏହି ପ୍ରସ୍ତାବର ଅନେକ ପୂର୍ବରୁ ଏହାର ସଂକେତ ପାଇ କବିବର ଗଙ୍ଗାଧର ମେହେର ତା. ୩.୧୦.୧୮୯୪ର 'ସମ୍ବଲପୁର ହିତୈଷିଣୀ'ରେ 'ଭାରତୀ ରୋଦନ' ନାମକ ଏକ କବିତା ଲେଖି ଉତ୍କଳ ଭାରତୀଙ୍କ ଖେଦୋକ୍ତିର ନିଜ ଅନ୍ତରର ଦୁଃଖ ଓ ମର୍ମନ୍ତୁଦ ବେଦନାକୁ ବିମିଶ୍ରିତ କରି ଗାଇଥିଲେ -

"ଉତ୍କଳ ଭାରତୀ ରୋଦନ କରୁଛି
କାତରେ ସମ୍ବଲପୁରେ,
ସେ ବିକଳ ଧ୍ୱନି କର୍ଣ୍ଣରେ ପଡ଼ିଲେ
ନୟନେ ଲୋତକ ପୁରେ ।

ଏହି କାତର କ୍ରନ୍ଦନର କାରଣ ହେଉଛି -

ହିନ୍ଦୀ ସରସ୍ୱତୀ ମୋ ଛାତିରେ ବସି

କରିବ ପରା ରାଜତ୍ୱ,
ମୋ ଆଶାକାନନ ଭସ୍ମରାଶି ହେବ
ତା' ନବ ଉଦ୍ୟାନେ ଖତ ।
ଉପମାତା ଆସି ଗର୍ଭଧାରିଣୀର
ମସ୍ତକେ ବରଣ ଦେବ,
ଏ ଦଶା ଦେଖିଲେ କେଉଁ ସନ୍ତାନର
ମନରେ ଦୁଃଖ ନ ହେବ ।
ତା' କୁନ୍ତ ପ୍ରହାରେ ଜୀବନ ନଯିବ,
ହେଉଥିବି କଲବଲ,
ମୋହୋରକ୍ଷା ପାଇଁ ବିକଳ ମୋ ପୁଏ
ମୁଖେ ଦେଉଥିବେ ଜଳ ।
ଏ କଥା ସୁମରି ସୁମରି ମୋ ତନୁ
ହୋଇ ଆସିଲାଣି କ୍ଷୀଣ,
ଚିନ୍ତାଜ୍ୱର ମୋତେ ଘୋଟି ଆସିଲାଣି
ରହିବି କି ଚିରଦିନ ?"

କେବଳ ଉତ୍କଳ ଭାରତୀଙ୍କ ମୁଖରେ କବି ନିଜର ଉଦ୍‌ବେଗ, ଦୁଃଖ ଓ ବେଦନାକୁ ପ୍ରକାଶ କରି ନୀରବ ରହି ନାହାନ୍ତି । ଏହାର ତୀବ୍ର ପ୍ରତିରୋଧ ସକାଶେ ଆଗହୁଁ ଐକ୍ୟବଦ୍ଧ ହୋଇ କାର୍ଯ୍ୟାନୁଷ୍ଠାନ ସକାଶେ ଆତୁର ଆହ୍ୱାନ ପୂର୍ବକ ଅନାଗତ ବିଧାତାର ଭୂମିକା ଗ୍ରହଣ କରି କହି ଅଛନ୍ତି -

ବେଳ ଥାଉଁ ଥାଉଁ ଯତ୍ନକର ବେଗେ
ଆସ ମୋ କୁମର ଗଣ,
ପାଣି ବହିଗଲେ ବନ୍ଧ ବାନ୍ଧିବାର
ହେବ ସିନା ଅକାରଣ !
ବିନୟ ଭାବରେ ନିବେଦନ କର ।
ସର୍ବେ ହୋଇ ଏକ ମୁଖ
ଧର୍ମ ଅବତାର ରାଜରାଜେଶ୍ୱର

ଅବଶ୍ୟ ଶୁଣିବେ ଦୁଃଖ ।

X X X X X

ଧନ ଯୁବନ ନିତ୍ୟ ନୁହେ ବାବୁ
ପଦ୍ମଜଳେ ଜଳ ଯଥା,
ଯେ ଯାହା କରିବ ଚିରଦିନ ପାଇଁ
ରହିଯିବ ସିନା କଥା !" ଇତ୍ୟାଦି

ଏହାପରେ ସମ୍ବଲପୁରବାସୀଙ୍କ ତରଫରୁ ସନ୍ ୧୮୯୫ରେ ଉଚ୍ଚତନ କର୍ତ୍ତୃପକ୍ଷଙ୍କୁ ଏକ ସ୍ମାରକ ପତ୍ର ଦିଆଯାଇଥିଲା । "ସେ ଯୁଗରେ ସତ୍ୟାଗ୍ରହ, ବୟକଟ, ଅସହଯୋଗ, ଅନଶନ, ଧାରଣା, ଘେରାଉ ଆଦି ଆନ୍ଦୋଳନ ଅସ୍ତ୍ରମାନ ଉଦ୍ଭାବିତ ହୋଇ ନ ଥିଲା । ସଭା ସମିତିରେ ପ୍ରସ୍ତାବମାନ ପାସ୍ କରି, ସ୍ମାରକ ପତ୍ର ପ୍ରସ୍ତୁତ କରି ସେଥିରେ ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କର ଦସ୍ତଖତ ସଂଗ୍ରହ କରି ଉଚ୍ଚତନ କର୍ତ୍ତୃପକ୍ଷଙ୍କ ପାଖକୁ ପଠାଇବାହିଁ ଆନ୍ଦୋଳନର ଏକମାତ୍ର ପନ୍ଥା ଥିଲା ।" ସମ୍ବଲପୁରଲୋକଙ୍କ ଏହି ଆବେଦନକୁ ସମର୍ଥନ କରି ତା: ୨୦-୦୬-୧୮୯୫ ରେ ଓଡ଼ିଶା ଆସୋସିଏସନ୍ ତଦାନୀନ୍ତନ ବଡ଼ଲାଟ ଲର୍ଡ ଏଲଗିନ୍ (ଦ୍ୱିତୀୟ)ଙ୍କ ପାଖକୁ ମଧ ଏକ ଆବେଦନ ପତ୍ର ପ୍ରେରଣ କରିଥିଲେ । ମାତ୍ର ବଡଲାଟ ଏଲଗିନ୍ (୨ୟ) ଏହି ସବୁ ଆବେଦନକୁ ବିଚାରକୁ ନେଲେ ନାହିଁ । ଫଳରେ ୧୮୯୬ ମସିହା ଜାନୁୟାରୀରୁ ସମ୍ବଲପୁର କୋର୍ଟ କଚେରୀରେ ଓଡ଼ିଆ ଭାଷା ବଦଳରେ ହିନ୍ଦୀ ଭାଷା ପ୍ରଚଳିତ ହେବ ବୋଲି ସରକାରୀ ଗେଜେଟ୍‌ରେ ପ୍ରକାଶିତ ହେଲା । ଦିଲ୍ଲୀର ଦସ୍ତାବିଜ୍ ଆଦି ହିନ୍ଦୀ ଭାଷାରେ ଲେଖା ହୋଇ ନଥିଲେ ରେଜିଷ୍ଟ୍ରୀ ସକାଶେ ସେସବୁ ଗ୍ରହଣୀୟ ହେବ ନାହିଁ ବୋଲି ମଧ ନିୟମ ହୋଇଗଲା । ସମ୍ଭବତଃ ଏହି ସବୁ ଆବେଦନର କାର୍ଯ୍ୟକାରିତାରେ ସନ୍ଦିହାନ ହୋଇ କିମ୍ବା ସେସବୁ ବିଚାରକୁ ନିଆଯାଉ ନ ଥିବାରୁ ସମ୍ବାଦ ପାଇ କବିବର ଗଙ୍ଗାଧର ତା: ୦୬-୦୭-୧୮୯୬ରେ 'ସମ୍ବଲପୁର ହିତୈଷିଣୀ'ରେ "ଉତ୍କଳ ଭାରତୀଙ୍କ ନିବେଦନ" ଶୀର୍ଷକ ଅନ୍ୟ ଏକ କବିତା ଲେଖି ଏକ ଉଷ୍ଣ ଆବେଗରେ ତତ୍‌କାଳୀନ ମଧପ୍ରଦେଶର ଚିଫ୍ କମିଶନର୍ ସାର୍‌ଜନ୍ ଉଡ୍‌ବର୍ଣ୍ଣ, ସମ୍ବଲପୁରର ଡେପୁଟି କମିଶନର୍ ମିଷ୍ଟର୍ ଆର୍.ଏ.ବି ଚେପ୍‌ମେନ, ସମ୍ବଲପୁରର ନେତୃବର୍ଗ ତଥା ପଶ୍ଚିମ ଓଡ଼ିଶାର ରାଜନ୍ୟବର୍ଗଙ୍କୁ ଏହାର ପ୍ରତିକାରାର୍ଥେ ବିହିତ କାର୍ଯ୍ୟାନୁଷ୍ଠାନ ତଥା ନିରଳସ ପ୍ରଚେଷ୍ଟା କରିବାକୁ ଅନୁରୋଧ, ଉପରୋଧ, କରିବା ସଙ୍ଗେ ସଙ୍ଗେ ସ୍ଥଳେ ସ୍ଥଳେ ବ୍ୟଙ୍ଗର ମୃଦୁ କଷାଘାତ କରିବାକୁ ଛାଡି ନାହାନ୍ତି ଯଥା-

"ଜୟଜୟ ଉତବରନ ଦୟାମୟ ହୃଦୟ
ନ୍ୟାୟ କଳାକାର ସ୍ୱରୂପେ ହୋଇଅଛ ଉଦୟ ।
X X X X X
ଜଗତର କହି ନୁହନ୍ତି ତୁମ୍ଭ ନୟନେ ଅରି
ଅରି ହେଲେ ତୁମ୍ଭ ସକାଶେ ହୁଏ ବାନ୍ଧବ ସରି ।"

ଏହା କହିବା ପରେ ସମ୍ବଲପୁରରେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଯେଉଁମାନେ ଅଗ୍ରଣୀ ଥିଲେ, ସେମାନଙ୍କର ସାକ୍ଷ୍ୟ ନିଆଯାଇପାରେ ବୋଲି ଉଲ୍ଲେଖ କରିଅଛନ୍ତି । ଯଥା-

ବନମାଳୀ ମିଶ୍ର ଅଛନ୍ତି ଆଜି ସାରଙ୍ଗଡ଼ରେ
ମୋହ ପାଇଁ ଦେଇ ପାରନ୍ତି ସାକ୍ଷୀ ପ୍ରାଣପଣରେ ।
ଦୀନବନ୍ଧୁ ପଟ୍ଟନାୟକ ସ୍ୱର୍ଣ୍ଣପୁର ଦେଓ୍ୟାନ
ଉତ୍ତମ ସାକ୍ଷୀ ମୋ ଅଟନ୍ତି, ଅଛନ୍ତି ବର୍ତ୍ତମାନ ।
ଚିନ୍ତାମଣି ବିଦ୍ୟାଭୂଷଣ ବସିଛନ୍ତି ନିଶ୍ଚଳେ,
ପଚାରିଲେ ଟାଙ୍କୁ ମୋ କଥା ସବୁ କହିବେ ଭଲେ ।
ସତ୍ୟବାଦି ପାତ୍ରୀ, ବୈକୁଣ୍ଠ ମିଶ୍ର ଅଛନ୍ତି ରହି,
ହରିବନ୍ଧୁ ପଟ୍ଟନାୟକ ମଧ ପାରନ୍ତି କହି ।
କେଉଁ ଅପରାଧେ କାହିଁକି ଆଜ ହେ ମହାମନୀ,
ମୋତେ ହେଲା ମହାରାଜଙ୍କ ସିଂହଦୁଆର ମନା ?

ସମ୍ବଲପୁରର ଡେପୁଟି କମିଶନର୍ ମିଷ୍ଟର ଚେପ୍‌ମେନଙ୍କୁ କହିଛନ୍ତି-

" ହେ ଡ଼ିପୋଟି କମିଶନର ତୁମ୍ଭେ ଦୟାଳୁବର,
ଆଉବାରେ ମୋର ଗୁହାରି ଯାକ ପ୍ରେରଣ କର ।"

ଏହାପରେ ପଶ୍ଚିମ ଓଡ଼ିଶାର ଜଣାଶୁଣା ରାଜନ୍ୟବର୍ଗଙ୍କୁ ଓ ବିଶିଷ୍ଟ ବ୍ୟକ୍ତିଙ୍କୁ ମୃଦୁ-ଭର୍ତ୍ସନା ସହ ଏଇ କାର୍ଯ୍ୟରେ ଅଣ୍ଟାଭିଡ଼ି ପ୍ରବଳ ପ୍ରଚେଷ୍ଟା ଚଳାଇବାକୁ ଆହ୍ୱାନ ଓ ଉପଦେଶ ଦେଇ କହିଛନ୍ତି-

ସୁତଳଦେବ ହେ ବିବିଧଗୁଣେ ହୋଇ ପଣ୍ଡିତ,
ଉପାଧ୍ୟାଳରେ ନାମକୁ କରିଅଛ ମଣ୍ଡିତ ।

ହୋଇଅଛ ଆଜି ଭାରତେ ରାଜବଂଶର ମୁନି,
ଦେଖି ଦେଖି ମୋର ଏ ଦଶା କିମ୍ପା ହୋଇଛି ତୁନି ?
X X X X X
ରାମଚନ୍ଦ୍ର ଦେଇ ପାଟଣା ମହୀ ମଣ୍ଡଳେଶ୍ୱର
ବାଘ ମାରିବାକୁ ବୁଲୁଛ ବନେ ନିଶିବାସର ।
ଗୁହାଳରେ ପଶି ଶୃଗାଳ ଖାଇ ଯାଉଛି ଗାଈ,
ଏ ଆଡ଼କୁ କିମ୍ପା ତୁମ୍ଭର କିଛି ନଜର ନାହିଁ ?
ଏ ଗାଈଟି ମଲେ ମିଳିବ ନାହିଁ ମଧୁର କ୍ଷୀର'
ଶୃଗାଳ ନ ପଶୁ ଗୁହାଳେ ଆହୋ ଚୌହାନବୀର !
ଦେଖ କିନା ରଘୁକିଶୋର କଳାହାଣ୍ଡି ଭୁପତି,
ଘର ଭାତହାଣ୍ଡି ନୁହେଁ କି ମୁଁ ଉତ୍କଳ-ଭାରତୀ ?
ସେହି ଭାତହାଣ୍ଡି ଆଗରେ ତୁମ୍ଭ ଯାଉଛି ଫୁଟି
ଖାଇବାକୁ ଏବେ ପଡ଼ିବ ଶୁଖା କର୍କଶ ରୁଟି ।
\+ + + + +
ସ୍ୱର୍ଣ୍ଣପୁର ପତି ବସିଛ ସ୍ୱର୍ଣ୍ଣମୟ ଆସନେ,
ସଂସ୍କୃତେ ମାତିଛେ, ମୋ କଥା କାହିଁ ପଡ଼ିବେ ମନେ !
\+ + + + +
ହରିହର ସିଂହ ତୁମ୍ଭେ କିଛି କହିବ ନାହିଁ।,
କହିଲେ ଅବା ଉପାଧିଟି ରାଜେ ନେବେ ଛଡାଇ ।
X X X X X
ଏହା ଉତ୍ତାରେ ସମ୍ବଲପୁରର ସୁଯୋଗ୍ୟ ସନ୍ତାନ ତଥା ଭାଷା ଆନ୍ଦୋଳନର ଅନ୍ୟତମ ନେତୃବର
ଧରଣୀଧର ମିଶ୍ରଙ୍କୁ ସମ୍ବୋଧନ କରି କହିଛନ୍ତି-
ନ ଘୁଅ, ନ ହୁଅ ନିରାଶ ବାପ ଧରଣୀଧର,
ଅବଶ୍ୟ ସୁଫଳ ଫଳିବ, ଲାଗି ଯତନ କର ।
ସେହିରୂପ ସବୁ ସମ୍ଭ୍ରାନ୍ତ ଲୋକ ମିଳି କରନ୍ତୁ
ମୋହୋ ହୃଦୟରୁ ସନ୍ତାପ ନିଚୟକୁ ହରନ୍ତୁ ।
ନିର୍ବାସନ ହେବା ପାଇଁକି ଅଛି ଜନନୀ ଭାଲେ

ମାତୃହୀନ ଦଶା ଘଟିବା ଅଛି ଆମ୍ଭକପାଳେ !
ଭବିତବ୍ୟ ଯାହା ତା ଘଟୁ ବିଧି ଆୟତସିନା,
ବୋଲି କାପୁରୁଷ ହୁଅ ମୂଳୁଁ ଉଦ୍‌ଯୋଗ ବିନା ।

ସମ୍ବଲପୁରରେ ଓଡ଼ିଆ ଭାଷାର ବିଲୋପୀକରଣ ସମ୍ବାଦରେ କବିଙ୍କର ଉତ୍କଳ-ପ୍ରାଣ ହୃଦୟ କିପରି ବ୍ୟଥିତ ମଥିତ ହୋଇଛି ଏବଂ ତାର ପ୍ରତିକାର ସକାଶେ କିପରି ବ୍ୟଗ୍ର ଓ ଆତୁର ହୋଇ ଉଠିଛନ୍ତି, ତାର ଜ୍ୱଳନ୍ତ ପ୍ରମାଣ ମିଳେ କବିଙ୍କର ଏହି କବିତାମାନଙ୍କରେ । ଉପକୂଳ ଅଞ୍ଚଳର ଭାଷା ସଙ୍କଟ ସମୟରେ ମହାଶୟ ଜନ୍ ବିମସ୍ ଙ୍କ ପରି ସମ୍ବଲପୁରର ଏତାଦୃଶ ଭାଷ ସଙ୍କଟ କାଳରେ ଲୋକବନ୍ଧୁ ମିଷ୍ଟର ଏଣ୍ଡ୍ର ଫ୍ରେଜର ପରମ ସହାୟକ ଭାବରେ ଦଣ୍ଡାୟମାନ ହୋଇଥିଲେ । ଏହି ମହାଶୟ ଅନୁମାନିକ ସନ୍ ୧୮୭୭-୮୭ରେ ନିଜର ପ୍ରଥମ ଯୌବନରେ ନୂତନ ଆଇ.ସି.ଏସ୍ ଭାବରେ ବରଗଡ ସବ୍‌ଡିଭିଜନର ମୁଖ୍ୟ କର୍ମଚାରୀ ସ୍ୱରୂପ ଯୋଗ ଦେଇଥିଲେ । ସେତେବେଳେ ସମ୍ବଲପୁର ବାସୀଙ୍କର ସରଳ ସ୍ୱଭାବ, ଭଦ୍ର ବ୍ୟବହାର, ଭାଷା ଓ ଚାଲିଚଳଣ ସମ୍ବନ୍ଧରେ ସେ ବେଶ୍ ଧାରଣା କରିପାରିଥିଲେ । ସନ୍ ୧୯୦୦ ମସିହାରେ ଲର୍ଡ କର୍ଜନ ଭାଇସରାୟ ହୋଇ ଓଡ଼ିଶାରେ ପ୍ରଥମ ପଦାର୍ପଣ କରିଥିଲେ । ଏହା ପରବର୍ଷ ଅର୍ଥାତ୍ ସନ୍ ୧୯୦୧ରେ ଜନଗଣନା କାର୍ଯ୍ୟ ସମ୍ବଲପୁରରେ ଆରମ୍ଭ ହେଲା । ଏହି କାର୍ଯ୍ୟର ଦାୟିତ୍ୱରେ ଥିଲେ ଦେଶର ହିତୈଷୀ ବୈକୁଣ୍ଠ ନାଥ ପୁଜାରୀ । ଏହି ମହାଶୟଙ୍କର ଜନ୍ମ ସନ୍ ୧୮୭୭ ରେ ବରଗଡରେ ହୋଇଥିଲା । ଏତିକି ବେଳେ ତାଙ୍କର ପିତୃଦେବ ଦାଶରଥି ପୂଜାରୀ ଯୁବକ ଆଇ.ସି.ଏସ୍ ଅଫିସର ଏଣ୍ଡ୍ରୁ ଫେଜରଙ୍କ ଅଧିନରେ କାର୍ଯ୍ୟ କରୁଥିଲେ । ଏହି ଫ୍ରେଜର୍ ସାହେବ ସମ୍ବଲପୁରର ପୌରସଭାକୁ ସନ୍ ୧୯୦୧ରେ ଜନଗଣନା ସମୟକୁ ମଧ ପ୍ରଦେଶର ଚିଫ୍ କମିସନର୍ ରୂପେ ନିଯୁକ୍ତ ପାଇଥାନ୍ତି ।

ସମ୍ବଲପୁରର ସୁଯୋଗ୍ୟ ସନ୍ତାନ ୰ ବୈକୁଣ୍ଠ ନାଥ ପୁଜାରୀଙ୍କ ଅକ୍ଲାନ୍ତ ପରିଶ୍ରମ ଏବଂ ସମ୍ବଲପୁରର ପରମବନ୍ଧୁ ସାର ଏଣ୍ଡ୍ରୁ ଫ୍ରେଜରଙ୍କ ସହାନୁଭୁତି ଓ ରିପୋର୍ଟ ସମ୍ବଲପୁର ଭାଷା ଆନ୍ଦୋଳନ ସାଫଲ୍ୟ ଆଣି ଦେଇଥିଲା । ଏଥି ସକାଶେ ସନ୍ ୧୯୦୨ ରେ ସମ୍ବଲପୁରରେ ଫ୍ରେଜର ପ୍ରେସ ଓ ସନ୍ ୧୯୦୫ରେ ଫ୍ରେଜର କ୍ଲବ ସ୍ଥାପନ କରି ସମ୍ବଲପୁରବାସୀ ତାଙ୍କ ପ୍ରତି ଗଭୀର କୃତଜ୍ଞତା ପ୍ରଦର୍ଶନ କରିଛନ୍ତି ।

ସନ୍ ୧୯୦୨ ମସିହାରେ ପ୍ରକାଶିତ ସରକାରୀ ଘୋଷଣା ଅନୁଯାୟୀ ସମ୍ବଲପୁର ଜିଲ୍ଲାରେ ହିନ୍ଦୀଭାଷା ବଦଳରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନର ନିଷ୍ପତ୍ତି ପ୍ରକୃତରେ କାର୍ଯ୍ୟକାରୀ ହେଲା

୧୯୦୩ ମସିହାରେ । ବର୍ତ୍ତମାନ ଏ ଜିଲ୍ଲାରେ କର୍ମ କରୁଥିବା ଅଣ ଓଡ଼ିଆ ଲୋକଙ୍କୁ ଘୋର ଅସୁବିଧାର ସମ୍ମୁଖୀନ ହେବାକୁ ହେଲା । ସେମାନେ ଏହାକୁ ଏକ Penal District ବା ଦୁଃଖଦାୟକ ଜିଲ୍ଲା ମନେ କରୁଥିଲେ । ଏପରି ପରିସ୍ଥିତିରେ ଏ ଅଞ୍ଚଳର ଜନସାଧାରଣଙ୍କ ମନରେ ଓଡ଼ିଆ ସହିତ ମିଶ୍ରଣ ପ୍ରଶ୍ନ ସ୍ୱଭାବତଃ ଉଦ୍ରେକ ହେଲା । ଏହା ପୂର୍ବରୁ ସେମନେ ଜିଲ୍ଲାରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଦାବୀ ପତ୍ରରେ ଲେଖିଥିଲେ- "If it was impossible to have Oriya as the language of one district of the central province, they would prefer to be transferred to Orissa"

ସୁତରାଂ, ସମ୍ବଲପୁରର ଜିଲ୍ଲା ଓଡ଼ିଶା ଡିଭିଜନ୍ ସହିତ ମିଶ୍ରଣ ନେଇ ସମ୍ବଲପୁର ବାସୀ ସେମାନଙ୍କର ଉଦ୍ୟମ ଅବ୍ୟାହତ ରଖିଥିଲେ । ଏ ସଂକ୍ରାନ୍ତରେ ମଧ କବିବର ଗଙ୍ଗାଧରଙ୍କ ଉତ୍କଳ ସମ୍ମିଳନୀ ଉପଲକ୍ଷେ ରଚିତ ଏକ କବିତାରେ ତାର ଏକ ସୁନ୍ଦର ଓ ଯଥାର୍ଥ ପ୍ରତିଧ୍ୱନି ଆମେ ଶୁଣିବାକୁ ପାଇଥାଉଁ । ସେହି କବିତାର ଦୁଇ ତିନିପଦ ଏଠାରେ ଉଦ୍ଧାର କରି ଦେଉଅଛୁଁ । ଜନ୍ମଭୂମିର ଗଭୀର ମମତାରେ ଉଦ୍‌ବୁଦ୍ଧ କବି ଲେଖିଥିଲେ-

ନିଜ ଘରେ ବସି ନିର୍ବାସନ ଦୁଃଖ
ଆମ୍ଭ କି ଲଲାଟ ଲିଖନ
ମାତୃଭାଷା-ମନା ଭାଇ ସଙ୍ଗ ବିନା
ବିକଳ ହେଉଛି ଜୀବନ ।।୦ ।।
ଗୁହାରିଲେ ଦୁଃଖ ନୃପତି ଆଗରେ
ତଡ଼ି ଦେଉଛନ୍ତି ଛାମୁରୁ ରାଗରେ
ନୁହେଁ ତାଙ୍କ ଦୋଷ, ବୁଝନ୍ତି ନାହିଁ ସେ
ଆମ୍ଭର କଥିତ ବଚନ ।।୧ ।।
ବିଦେଶୀ ସଦସ୍ୟଛନ୍ତି ନିକଟରେ
କହି ଦେଉଛନ୍ତି ଶ୍ରବଣ ପଟରେ;
ହସୁଛନ୍ତି ବୋଲି ବୁଝାଉ ଅଛନ୍ତି
କରୁଅଛୁ ଯେତେ ରୋଦନ ।।୨ ।।

X X X X X X

ଆସିଅଛ ବଡ ସୋଦର ସକଳ,

ଦେଖି ଦଶା କର ବୁଦ୍ଧି କଉଶଳ;
କୋଟି କଣ୍ଠେ ଗୋଟି ସ୍ୱରେ ଉଚ୍ଚେ ଡାକ
କମ୍ପିଯାଉ ରାଜ-ସଦନ ।।୫।।
ଇତ୍ୟାଦି, ଇତ୍ୟାଦି ।

ଏହି କବିତାଟି ସମ୍ଭବତଃ, ୧୯୦୨/୧୯୦୩ ମସିହାର ଉତ୍କଳ ସମ୍ମିଳନୀ ଉପଲକ୍ଷେ ରଚିତ ହୋଇଥିଲା । ଏ କବିତାରେ ଉଲ୍ଲିଖିତ 'ବିଦେଶୀ ସଦସ୍ୟ' ଭାବରେ ଅଣଓଡ଼ିଆ ଅଧସ୍ତନ କର୍ମଚାରୀମାନଙ୍କୁ ଲକ୍ଷ୍ୟ କରାଯାଇଅଛି । ଏହି ଦେଶ ମିଶ୍ରଣ ଆନ୍ଦୋଳନ ମଧ୍ୟ ସାଫଲ୍ୟ ଲାଭ କଲା ୧୯୦୫ ମସିହା ଅକ୍ଟୋବର ମାସ ୧୬ ତାରିଖରେ । ସେ ଦିନ ସମ୍ବଲପୁର ଜିଲ୍ଲାକୁ ସରକାରୀ ଭାବେ ଓଡ଼ିଶା ଡିଭିଜନ ସହିତ ମିଶାଇ ଦିଆଗଲା । ବସ୍ତୁତଃ ଏକ ସ୍ୱସ୍ତିର ନିଃଶ୍ୱାସ ମାରିଲା ପରି ଏହାପରେ "ବିଦ୍ୟାରତ୍ନଙ୍କ ହିତୈଷିଣୀ" କବିତାରେ କବି ଲେଖିଛନ୍ତି-

"ହେବାରୁ ସମ୍ବଲପୁର ନେତ୍ର ଉନ୍ମୀଳିତ
କଷ୍ଟକୁ ନ ଗଣି ହେଲା ଉତ୍କଳେ ମିଳିତ ।
ହିନ୍ଦୀର ଗ୍ରାସର ହେଲା କି କଷ୍ଟେ ଉଦ୍ଧାର
ରାହୁ କବଳରୁ ସୁଧାକର କରକାର ।
ଗୁଣିଗଣ ଥିଦେ ଯାହା ଅପ୍ରକାଶ ଲୋକେ
ମୁହଁ ତୁହାଁତୁହିଁ ହେଲେ ନିର୍ମଳ ଆଲୋକେ ।
ଇତ୍ୟାଦି ।

କେବଳ ସେତିକି ନୁହେଁ, ଏତଦ୍‌ବ୍ୟତୀତ ଅଖଣ୍ଡ ଓ ମହିମାନ୍ୱିତ ଉତ୍କଳର ମଧୁର ସ୍ୱପ୍ନ ତାଙ୍କର 'ଉତ୍କଳ-ଲକ୍ଷ୍ମୀ' କାବ୍ୟ ଏବଂ ଭାରତ ମୁକ୍ତିର ଉଗ୍ର ଆକାଂକ୍ଷା । 'ଭାରତୀ ଭବନା' ଆମ୍ଭମାନଙ୍କୁ ପ୍ରଦାନ କରିଥାଏ । ସୁତରାଂ, ମହାନ୍ କବି ଗଙ୍ଗାଧର କେବଳ ମଣିଷକୁ ଆଦର୍ଶ କରି ଗଢ଼ିବାର ସ୍ୱପ୍ନ ଦେଖି ନାହାନ୍ତି, ଦେଖିଛନ୍ତି ମଧ୍ୟ ଏ ଦେଶ, ଏ ଜାତି, ଏଇ ଭାଷାକୁ ସର୍ବଜନାଦୃତ, ମହତ୍, ଉଚ୍ଚସ୍ତରାଶ୍ରିତ କରିବାର ଏକ ଉଚ୍ଛଳ, ଦୁର୍ବାର ସ୍ୱପ୍ନ ତାଙ୍କର ବହୁ ଖଣ୍ଡ କବତା ପଂକ୍ତିରେ । ଦେଶ ଓ ଜାତିର ନିରନ୍ତର ଉପଚିକୀର୍ଷୁ ଏହି କବିଙ୍କୁ ଦେଶ ତେଣୁ ବାରମ୍ବାର ବିନମ୍ର ଶ୍ରଦ୍ଧାଞ୍ଜଳି ଏ ଯାବତ୍ ଅର୍ପଣ କରିଆସୁଅଛି ।



# ଗଙ୍ଗାଧରଙ୍କ ରଚନାବଳୀରେ ପଶ୍ଚିମାଞ୍ଚଳୀୟ-ଓଡ଼ିଆ-ଉପଭାଷାର ଶାବ୍ଦିକ ପ୍ରଭାବ

ପ୍ରମୋଦ କୁମାର ଦାସ

ଆଧୁନିକ ଓଡ଼ିଆ କାବ୍ୟଜଗତରେ ଏକାନ୍ତ ବିସ୍ମୟକର ପ୍ରତିଭା ରଂଗାଜୀବ ଗଙ୍ଗାଧର ପଶ୍ଚିମ ଓଡ଼ିଶାର ବରପାଲିରେ ଜନ୍ମଗ୍ରହଣ କରି ଆପଣାର ସାହିତ୍ୟ ସୃଷ୍ଟି ମାଧ୍ୟମରେ ସମଗ୍ର ସାହିତ୍ୟ ମୋଦୀ ଓଡ଼ିଆ ପାଠକ ଗୋଷ୍ଠୀଙ୍କୁ ଆକର୍ଷିତ କରି ପାରିଥିଲେ, ସେହି ମହା ସ୍ରଷ୍ଟାଙ୍କ ସୃଷ୍ଟି ସମ୍ଭାରକୁ ସାହିତ୍ୟିକ ଦୃଷ୍ଟିକୋଣରୁ ନୁହେଁ, ଭାଷାତତ୍ତ୍ୱ ଦୃଷ୍ଟିକୋଣରୁ ବିଚାର କରିବା ଏ ପ୍ରବନ୍ଧର ପ୍ରଧାନ ଲକ୍ଷ୍ୟ ।

ଲୋକ ପ୍ରଚଳିତ ଭାଷାରେ ସାହିତ୍ୟ ସୃଷ୍ଟି ହେଲେ, ସେ ସାହିତ୍ୟ ସାଧାରଣ ପାଠକର ନିକଟବର୍ତ୍ତୀ ହୁଏ ବୋଲି ସମାଲୋଚକ ମାନେ କୁହନ୍ତି । ଏହି ନ୍ୟାୟରେ ଫକୀର ମୋହନ ହିଁ ଅଗ୍ରଣୀ ସ୍ରଷ୍ଟା ଯେ କି ତାଙ୍କ କାଳରେ ଓଡିଆ ଜାତିର କଥିତ ଭାଷାକୁ ସାରସ୍ୱତ ସଂସଦର ସିଂହାସନରେ ଅଧିଷ୍ଠିତ କରିଥିଲେ । ଓଡିଆ ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରାଇବାରେ ଫକୀର ମୋହନଙ୍କ ଦାନ ଅନବଦ୍ୟ/ଅତୁଳନୀୟ । ଫକୀର ମୋହନଙ୍କ ପରମ୍ପରାର ଉତ୍ତର ଦାୟାଦ ଭାବରେ ଅନେକ ଓଡ଼ିଆ ଗଦ୍ୟ ଓ ପଦ୍ୟ ସାହିତ୍ୟ ସ୍ରଷ୍ଟା ପରବର୍ତ୍ତୀ ସମୟରେ ତାଙ୍କ ମାର୍ଗର ଅନୁଗାମୀ ହୋଇଥିଲେ । ଫକୀର ମୋହନଙ୍କ କିଞ୍ଚିତ ପରବର୍ତ୍ତୀ ସ୍ୱଭାବକବି ଗଙ୍ଗାଧରଙ୍କ ରଚନାବଳୀ ପ୍ରତି ଦୃଷ୍ଟିପାତ କଲେ ଆମେ ଦେଖି ପାରିବା ଯେ ତାଙ୍କ କାବ୍ୟମାନଙ୍କରେ ସ୍ପଷ୍ଟ ନହେଲେ ହେଁ ତାଙ୍କର କ୍ଷୁଦ୍ର କ୍ଷୁଦ୍ର କବିତାରେ କବି ବହୁ ଆଞ୍ଚଳିକ ଶବ୍ଦର ପ୍ରୟୋଗ କରିଥିବା ବିଷୟ ଦୃଷ୍ଟିକୁ ଆସେ ।

ଲେଖକ ଉପରେ ତା'ର ଆଞ୍ଚଳିକ ପରିବେଶ ଓ ଭାଷାର ପ୍ରଭାବ ନିଶ୍ଚିତ ରୂପେ ରହିବହିଁ ରହିବ । କଥାକାର ଫକୀର ମୋହନଙ୍କ ରଚନାବଳୀରେ ଉତ୍ତର ଓଡ଼ିଆ-ଉପଭାଷା ଓ ଉତ୍ତର ଓଡ଼ିଶାର ପ୍ରାକୃତିକ ଶୋଭା ବର୍ଣ୍ଣନା ତାଙ୍କ ପ୍ରତିଭାକୁ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ କରିଛି । ଏ ସବୁ ଦୃଷ୍ଟିରୁ ପଶ୍ଚିମ ଓଡ଼ିଶାର ପାଣି ପବନରେ ପରିପୁଷ୍ଟ ତଥା ସେ ଅଞ୍ଚଳର ଭାଷା ଓ ପରିବେଶ

ରେ ଲାଳିତ-ବର୍ଦ୍ଧିତ ଗଙ୍ଗାଧରଙ୍କ ରଚନାରେ ପଶ୍ଚିମାଞ୍ଚଳୀୟ କଥିତ ଭାଷା ମଧ୍ୟ ସ୍ୱକୀୟ ଚମତ୍କାରିତା ନେଇ ଫୁଟି ଉଠିଛି । ଯେଉଁ କବି ତପସ୍ୱିନୀ, ପ୍ରଣୟବଲ୍ଲରୀ, କୀଚକବଧ, ଇନ୍ଦୁମତୀ ଆଦି କାବ୍ୟ ରଚନା କରି ପଣ୍ଡିତ ସମାଜ ଦ୍ୱାରା ଆଦୃତ ସେ ପୁଣି " କୃଷକ ସଙ୍ଗୀତ " ରଚନାକରି ଅଶିକ୍ଷିତ/ସ୍ୱଳ୍ପଶିକ୍ଷିତ କୃଷକ ମାନଙ୍କ ପାଇଁ ଆଦର୍ଶ ହୋଇ ପାରିଛନ୍ତି । ତାଙ୍କ ରଚନାରେ ପଶ୍ଚିମାଞ୍ଚଳୀୟ-ଉପଭାଷାର ପ୍ରୟୋଗ ସ୍ୱଳ୍ପ ହେଲେ ମଧ୍ୟ ତାହା ମେହେର ଲେଖନୀର ଯାଦୁ ସ୍ପର୍ଶରେ ମହିମାନ୍ୱିତ । ନିରବଚ୍ଛିନ୍ନ ସାଧନାର ମୂର୍ତ୍ତ ପ୍ରତୀକ କବି ଗଙ୍ଗାଧର, ପଶ୍ଚିମାଞ୍ଚଳୀୟ ଉପାଦାନ ମାନଙ୍କର ବର୍ଣ୍ଣନା ମଧ୍ୟରେ ଅଧିକ ଆପଣାର ଓ ଅତିବାସ୍ତବ ମନେହୁଅନ୍ତି । ୱାର୍ଡସୱାର୍ଥ, ହେବେଲ୍ ଆଦି ଇଂରେଜ କବି ନିଜର ସ୍ଥାନୀୟ ଭାଷାରେ କବିତା ଲେଖିବାରେ ଲୋକ ପ୍ରଚଳିତ ଭାଷା ପ୍ରତି ସାଧାରଣ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିଥିବା ବିଷୟ ଏ ପରିପ୍ରେକ୍ଷୀରେ ଉଲ୍ଲେଖ ଯୋଗ୍ୟ ।

ରାଧାନାଥ ଯୁଗର ସଚେତନ କଳା ଶିଳ୍ପ ଗଙ୍ଗାଧରଙ୍କ ସମସ୍ତ ବିଶିଷ୍ଟ କୃତି ଗୁଡିକ ପ୍ରାମାଣିକ (Standard) ଓଡିଆ ଭାଷାରେ ଲିଖିତ ହୋଇଥିଲେ ହେଁ, ସମାଜର ଅବହେଳିତ କୃଷକ ସମାଜ ପ୍ରତି ସମ୍ମାନ ପ୍ରଦର୍ଶନ ପୂର୍ବକ କବି ଆପଣାର କ୍ଷୁଦ୍ର କ୍ଷୁଦ୍ର ରଚନା (କୃଷକ ସଂଗୀତ) ମାନଙ୍କରେ ସେହି ଅଞ୍ଚଳର କୃଷକ ମୁଖରେ ପ୍ରଚଳିତ ବହୁ ଆଞ୍ଚଳିକ, ଶବ୍ଦକୁ ଉଲ୍ଲେଖ କରି ସ୍ୱୟଂ-ସୃଷ୍ଟି-ମାନସର ଏକ ବିଶିଷ୍ଟ ଦିଗକୁ ଆଲୋକିତ କରି ଅଛନ୍ତି ।

ଭାରତର ସର୍ବବୃହତ ତଥା ସର୍ବପ୍ରଥମ ଭାଷା-ସର୍ବେକ୍ଷଣ ପୁସ୍ତକ "Linguistic Survey of India" ପୁସ୍ତକର ପ୍ରଣେତା ସାର ଜର୍ଜ ଆବ୍ରାହମ ଗ୍ରୀୟରସନ୍ ଓଡ଼ିଆ ଭାଷା ସମ୍ପର୍କରେ ଯେଉଁ ମନ୍ତବ୍ୟ ପ୍ରଦାନ କରିଥିଲେ, "Oriya language is free from dialective variation"s (୧) ଅର୍ଥାତ ଓଡ଼ିଆ ଭାଷାର ଔପଭାଷିକ ରୂପାନ୍ତର/ ଉପଭାଷାଗତ ବିଭିନ୍ନତା ନାହିଁ । ତାହା କିନ୍ତୁ ପରବର୍ତ୍ତି ସମୟରେ ଭ୍ରାନ୍ତ ପ୍ରମାଣିତ ହୋଇ ସାରିଛି । ବିଭିନ୍ନ ସମ୍ପ୍ରଦାୟ ଦ୍ୱାରା କଥିତ ଭାଷା ବ୍ୟତୀତ ଭୌଗଳିକ ଦୃଷ୍ଟିକୋଣରୁ ଓଡ଼ିଆ ଭାଷାକୁ ତିନିଗୋଟି ଭାଗରେ ବିଭକ୍ତ କରାଯାଇଛି । ଯଥା:- ଉପକୂଳାଞ୍ଚଳୀୟ, ପଶ୍ଚିମାଞ୍ଚଳୀୟ ଓ ଦକ୍ଷିଣାଞ୍ଚଳୀୟ ।

ପଶ୍ଚିମାଞ୍ଚଳୀୟ-ଉପଭାଷା ଅନ୍ୟ ଉପଭାଷାମାନଙ୍କ ମଧ୍ୟରେ ଏକ ବଳିଷ୍ଠ ଉପଭାଷା ବିଶେଷତଃ ସମ୍ବଲପୁର, ବଲାଙ୍ଗୀର, ବଉଦ, ସୁନ୍ଦରଗଡ଼ ଓ କଳାହାଣ୍ଡି ଆଦି ଅଞ୍ଚଳରେ ବ୍ୟବହୃତ ହୁଏ ବୋଲି କହିଥାଉ । ଏହି ସମସ୍ତ ଅଞ୍ଚଳର ଭାଷାର ନାମ 'ସମ୍ବଲପୁରୀ ଭାଷା' ରଖାଯାଇଥାଏ ।

ଏବେ ଗଙ୍ଗାଧରଙ୍କ ରଚନା ଗୁଡ଼ିକୁ ଅନୁଶୀଳନ କରି ମିଳିଥିବା ପଶ୍ଚିମ ଓଡ଼ିଆ-ଉପଭାଷାର ଶବ୍ଦ ଗୁଡ଼ିକର ତାଲିକା ନିମ୍ନରେ ପ୍ରଦତ୍ତ କରିବା ପୂର୍ବରୁ କହି ରଖୁଛି ଯେ ନିମ୍ନଲିଖିତ ଶବ୍ଦ ଗୁଡିକ ଅନୁସନ୍ଧାନ କରିବା ପାଇଁ ଦାସବ୍ରଦର୍ସଙ୍କ ଦ୍ୱାରା ପ୍ରକାଶିତ 'ଗଙ୍ଗାଧର ମେହେର ଗ୍ରନ୍ଥାବଳୀ ୨ୟ ସଂସ୍କରଣକୁ ଅନୁସରଣ କରାଯାଇଛି ।

| ପଶ୍ଚିମାଞ୍ଚଳୀୟ ଶବ୍ଦ | ଅର୍ଥ | ପଶ୍ଚିମାଞ୍ଚଳ ଶବ୍ଦ | ଅର୍ଥ |
|---|---|---|---|
| ଅଥା | କ୍ଲାନ୍ତ/ଅଥୟ, ପୃ ୩୮୧ | ଗୁଆର | ଗିଆଁର (ଶିଉ) ପୃ ୩୯୭ |
| ଅପୁଛା | ବିନା କୁହାପୋଛାରେ, ପୃ ୩୮୬ | ଘଣା | ଆଖୁ ପେଶା କଳ, ପୃ ୩୮୩ |
| ଆଡି | ହିତ, ପୃ ୩୮୩ | ଘାରି | ତଳି ଜମି, ପୃ ୩୮୬ |
| ଆଟ | ଡ଼ିପାଜମି,ପୃ ୩୮୪ | ଚାଞ୍ଚୀ | ପକ୍ଷୀ ବିଶେଷ (ଠିଣ୍ଡିଶୀ)ପୃ ୨୨ |
| ଆଟଦାନ | ଉଚ୍ଚଜମିରେ ବୁଣାଯିବା ଧାନ,ପୃ ୩୮୭ | ଚମ୍ପା | ସମରକାଳୀନ ପକ୍ଷୀ, ପୃ ୩୬ |
| ଆଗଡ଼ | ଚରଷପରବର୍ତ୍ତୀ ବର୍ଷ, ପୃ ୩୮୬ | ଚଉକ | ଚାରି ଆଙ୍ଗଳି ପରିମିତ, ପୃ ୩୯୩ |
| ତଳି | ଓଲ, ପୃ ୩୯୦ | ଚାଣ୍ଟି | ପିମ୍ପୁଡ଼ି, ପୃ ୩୯୩ |
| ଓଲ | ଓଲିଅ, ପୃ ୩୮୮ | ଚାଞ୍ଚର | ଚାଞ୍ଚଡା, ପୃ ୩୯୩ |
| କୁଷାରି | ଆଖୁ, ପୃ ୩୮୧ | ଛିର | ଚିର, ପୃ ୪୦୪ |
| କାନ୍ଦୁଲ | ଏକ ପ୍ରକାର ହରଡ଼ ପୃ ୩୮୩ | ଛାଦ | ଛାଟ୍, ପୃ ୩୯୫ |
| କପ | ଗତଆରେ ଶୁଖିଲା ଖଣ୍ଡଖଣ୍ଡ ପଙ୍କ, ପୃ ୩୮୬ | ଜୂତା | ଯୋତା, ପୃ ୩୯୮ |
| କପର | ମଇ, ପୃ ୩୮୬ | ଜଗାଇବା | ପୋତି ଯନ୍‌ନେବା, ପୃ ୩୯୦ |
| କନ୍ଦା | ଇନ୍ଦ ମୂଳ, ପୃ ୩୮୭ | ଝାଞ୍ଚତା | ଜଞ୍ଚଲା, ପୃ ୩୮୭ |
| କନ୍ଦ | ପୁଆ, ପୃ ୩୮୮ | ଝୁନାଙ୍ଗ | ଝୁଡଙ୍ଗ, ପୃ ୩୯୭ |
| କାସ | ଥର/ଓଡ଼/ଘିଆର, ପୃ ୩୯୬ | ଝସାଇ | ଲମ୍ଫଦେଇ, ପୃ ୪୦୩ |
| କାଦମାଟି | କାଦୁଅ ମାଟି, ପୃ ୩୯୩ | ଟବକା ବତୁରି | ବତୁରା ଧାନକୁ ପାଣି ଜମି ରହିଥିବା କର୍ଷିତ ଜମିରେ ବୁଣିବା ପୃ ୩୮୬ |
| କୋଦାଳି | କୋଦାଳ, ପୃ ୩୯୧ | ଡୁହୁରି | କିଆରି/ପଟାଳି, ପୃ ୩୮୧ |
| କଡ଼ାଇ | ଉପାଡି, ପୃ ୩୯୬ | ଡୋଲି | ଡଙ୍ଗାଭୂମୀ, ପୃ ୩୮୬ |
| କପା | ଦେବକପା, ପୃ ୩୯୯ | ତରା | ତାରା, ପୃ ୪୦୦ |
| କରା | କୁଆ ପଥର, ପୃ ୪୦୧ | ତଲା | ତଳି/ଚାରା, ପୃ ୩୯୩ |
| ଖାରି | ଟଁର ମଇଲା ବର୍ଷପାଣି, ପୃ ୩୮୫ | ଦଳ | ଗଜାପତ୍ର, ପୃ ୩୮୨ |
| ଖାର | ଚାଉଁଶ, ପୃ ୩୯୪ | ଦାଲି | ଡାଲି, ପୃ ୩୮୩ |
| ଖାଡି | ହରୁବତା, ପୃ ୪୦୦ | ଦାଇବା | କାଟିବା, ପୃ ୩୮୬ |
| ଖଡ | ଛଣ/ନଡା/ପୁରୁଣା ଛାଅଣିନଡା, ପୃ ୪୦୦ | ଦଉରା | ଦଉଡା/ଦଉଡି, ପୃ ୩୯୮ |

| | | | |
|---|---|---|---|
| ଖରସି କୁତୁଲା | ଘସି ଧୂଆଁ, ପୃ ୪୦୩ | ଧଣ୍ଡ | ସଣ୍ଡା, ପୃ ୩୯୦ |
| ପଶ୍ଚିମାଞ୍ଚଳୀୟ ଶବ୍ଦ | ଅର୍ଥ | ପଶ୍ଚିମାଞ୍ଚଳ ଶବ୍ଦ | ଅର୍ଥ |
| ଗୁଡ଼ି | ପରଘରେ ଚୁକ୍ତିବଦ୍ଧ ମୂଲିଆ, ପୃ ୩୮୭ | ଧଣ୍ଡିଚା | ଧନିଚା, ପୃ ୪୦୦ |
| ଚାଡ଼ି | ପୋଡି, ପୃ ୪୦୦ | ଧସାରୋଗ | ଉଦ୍ଭିଦ ବା ଶସ୍ୟର ରୋଗ,ପୃ ୪୦୧ |
| ପୂଆଳ | ପାଳ,ପୃ ୩୭୮ | ମଣ୍ଡୁଆ | ମଣ୍ଡପ, ପୃ.୩୯୫ |
| ପଲ୍‌ହା | ବହୁଶାଖ ବିଶିଷ୍ଟ | ମଡ଼ାଇ | ବେଙ୍ଗଲା ପକାଇ ପୃ ୩୯୬ |
| | | | ଚାରଗଛପୃ ୩୮୬ |
| ମାୟା | ପିଜୁଳି, ପୃ ୪୦୧ | ପେସାଆରି ଧାନ | ଏକ ଧାନ୍ୟ ବିଶେଷ |
| ଯୋଡି | କର୍ଷଣ କରି, ପୃ ୩୮୬ | ଯୋଡି ଦେବା | କର୍ଷିତ କରିବା, ପୃ ୩୮୬ |
| | (ପେସାରି ଓ:) ପୃ ୩୮୭ | | |
| ପଲ୍‌ହାକୁ ଲଗିବା | ଡଳି ରୋଇବା ପୃ ୩୮୬ | ରସାଉନ | ଏକ ପ୍ରକାର ଫଳ, ପୃ ୪୦୧ |
| ପୁତୁଚ | ଶସ୍ୟ ପରିମାଣ, ପୃ ୩୯୬ | ସିମୂଳି | ଏକ ପ୍ରକାର କନ୍ଦମୂଳ,ପୃ ୩୮୭ |
| ସନସି ତୃଣ | ଏକ ପ୍ରକାର ଘାସ, ପୃ ୪୦୦ | ସିମୁଳି | କଲମ କନ୍ଦମୂଳର ଚାରାଗଛ, ପୃ ୩୮୮ |
| ପାନର କଲମ | ପାନ ଗଣ୍ଡିଥିବା ପବ, ପୃ ୪୦୧ | ସିଆର ଲଣ୍ଡ | ଏକ ପ୍ରକାର ବିଦେଶୀକପା, ପୃ ୩୯୯ |
| ଫେସି | ପେସି (ତେଲବୀଜ) ପୃ ୪୦୪ | ହରଜ | ଧ୍ୱଂସ/କ୍ଷତି/ନାଶ,ପୃ ୪୦୦ |
| ବାହଲ | ଜଳଭୂମି, ପୃ ୩୮୪ | ବେରଣ | ଅଳ୍ପଜଳଭୂମି, ପୃ ୩୮୪ |
| ବରଛା | କିଆରି,ପୃ ୩୮୫ | ବଣ୍ଡୁଆ | ଘାସର ଦଉଡି, ପୃ ୩୯୮ |
| ବରଖୀ | 'ଉତ୍ତରୀୟ' ବିଶେଷ ପୃ ୩୯୮ | ବଡ଼ିଆଳ | ଅାତ, ପୃ ୪୦୧ |
| ମୁଗଫଳି | ଚିନାବାଦାମ,ପୃ ୩୮୭ | | |

ଉପରୋକ୍ତ ଉଦାହରଣମାନଙ୍କରେ ଗଙ୍ଗାଧରଙ୍କ ରଚନାବଳୀରୁ ପ୍ରାୟତଃ ଅଧିକାଂଶ ପଶ୍ଚିମାଞ୍ଚଳୀୟ ବ୍ୟବହାରିକ ଶବ୍ଦକୁ ଚିହ୍ନଟ କରିବାକୁ ଯଥାସାଧ ଉଦ୍ୟମ କରାଯାଇଛି । ପରବର୍ତ୍ତୀ ସମୟରେ ପଶ୍ଚିମ ଓଡ଼ିଆ ଉପଭାଷା ସଂପର୍କୀୟ ଅଧିକ ଆଲୋଚନା ବାସନା ରହିଲା ।



# ପଶ୍ଚିମ ଓଡ଼ିଶାର ଭକ୍ତକବି ଚୈତନ୍ୟ ଦାସ

ମାଗୁଣି ଦାସ

ଯେଉଁ କେତେଜଣ ଅଲୌକିକ ପ୍ରତିଭା ସମ୍ପନ୍ନ ଭକ୍ତକବି ଓ ସାଧକ ଓଡ଼ିଶାରେ ଜନ୍ମ ଗ୍ରହଣ କରି ନିଜର ଅସାଧାରଣ ପ୍ରଭାବ ଦ୍ୱାରା ଅନ୍ୟମାନଙ୍କୁ ଭକ୍ତି ମାର୍ଗରେ ପ୍ରଭାବିତ କରି ପାରିଥିଲେ- ସେମାନଙ୍କ ମଧ୍ୟରେ ପଶ୍ଚିମ ଓଡ଼ିଶାର ସ୍ୱନାମ ଧନ୍ୟ ଭକ୍ତକବି ଚୈତନ୍ୟ ଦାସ ଅନ୍ୟତମ।

କବି ଚୈତନ୍ୟ ଦାସ କଳାହାଣ୍ଡି ଜିଲ୍ଲା ଖଡିଆଲ ନିକଟବର୍ତ୍ତୀ ବଡମୂଳ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ। ନିଜର ଜନ୍ମପରିଚୟ ଦେବାକୁ ଯାଇ ସେ ସ୍ୱରଚିତ ନିର୍ଗୁଣ ମହାତ୍ମ୍ୟ ବହିର ଷୋଡ଼ଶ ଛାନ୍ଦରେ ଉଲ୍ଲେଖ କରିଛନ୍ତି।

"ଶୁଦ୍ରକୂଳେ ମୋ ଅବତାର
ଜାତିରେ ମୋହର ମାଳାକାର।
ଯେ ମୋତେ ଦେଲା ଜନ୍ମ କର୍ମ
କହିବି ମାତା ପିତା ନାମ।।
ଦାଦିଙ୍କ ନାମ ଧର୍ମୋତ୍ତର
ପିତାଙ୍କ ନାମ ବୁଦ୍ଧେଶ୍ୱର।
ମାତାଙ୍କ ନାମ ମେଘାବତୀ
ସେ ମୋତେ ଜନ୍ମ କଲେ କ୍ଷିତି।।
X X X X X
ଏଗୀତ ଭକତ ଯହିଁରେ
ନାମ ବଡ଼ମୂଳ ଗ୍ରାମରେ।
ଭାଗୀରଥୀ ବାବୁଙ୍କ ଦେଶ
ତହିଁରେ ମୋର ଗୃହବାସ।
ରଖିଲେ ମୋତେ ଶ୍ରଦ୍ଧାପାଇ

ପଞ୍ଚବାଟୀ ଯେ ଭୂମି ଦେଇ ।"

ଉପରୋକ୍ତ ପଂକ୍ତିରୁ କବି ଜାତିରେ ମାଳାକାର ବା ମାଳୀ ହୋଇଥିବା ଏବଂ କବିଙ୍କ ଦାଦି ଅର୍ଥାତ୍ ପିତାମହଙ୍କ ନାମ ଧର୍ମୋତ୍ତର, ପିତାଙ୍କ ନାମ ବୁଦ୍ଧେଶ୍ୱର, ମାତାଙ୍କ ନାମ ମେଘାବତୀ ହୋଇଥିବା ସ୍ପଷ୍ଟ ସୂଚି ହୋଇଛି । ଖଡ଼ିଆଳ ଅଞ୍ଚଳରେ ପିତାମହ ବା ଅଜାଙ୍କୁ ଦାଦି କହନ୍ତି । ଉକ୍ତ ଅଞ୍ଚଳରେ ମାଲାକାର ବା ମାଳୀ ମାନଙ୍କର ପଟେଲ ଉପାଧି ପ୍ରଚଳିତ । କବିଙ୍କ ପିତାମହ ଧର୍ମୋତ୍ତର ପଟେଲ ଏବଂ ପିତା ବୁଦ୍ଧେଶ୍ୱର ପଟେଲ ନାମରେ ପରିଚିତ ଥିବା ବଡ଼ମୂଳ ଓ ସନ୍ନିକଟବର୍ତ୍ତୀ ସାଲେବରଟ ଗ୍ରାମରେ ଅଦ୍ୟାବଧି ବାସ କରୁଥିବା କବିଙ୍କ ବଂଶଧର ମାନଙ୍କଠାରୁ ପ୍ରକାଶ ।

ବଡ଼ମୂଳ ଗ୍ରାମ ଖଡିଆଳ ଠାରୁ ପ୍ରାୟ ପାଞ୍ଚ ମାଇଲ ଦୂର ବଲାଙ୍ଗୀର ସୀମାରେ ଅବସ୍ଥିତ । କବି ବଡ଼ମୂଳ ଗ୍ରାମରେ ରହୁଥିବା ଓ ବଡ଼ମୂଳ ଗ୍ରାମର ଜମିଦାର ୰ଭାଗୀରଥି ବାବୁ ତାଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କୁ ପାଞ୍ଚବାଟୀ ଜମି ଦେଇ ଉକ୍ତ ଗ୍ରାମରେ ଥଇଥାନ କରାଇଥିବା କଥା କବି ସ୍ୱରଚିତ ବହିରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । ୰ଭାଗୀରଥି ବାବୁଙ୍କ ବଂଶଧରମାନେ ଅଦ୍ୟାବଧି ବଡ଼ମୂଳ ଗ୍ରାମରେ ବାସ କରନ୍ତି ।

କବି ଚୈତନ୍ୟ ଦାସ ଖଡ଼ିଆଳ ରାଜା ୰ପ୍ରତାପରୁଦ୍ରଙ୍କ ସମୟରେ ବିତିଥିବା ତାଙ୍କର ନିମ୍ନଲିଖିତ ପଂକ୍ତିରୁ ସ୍ପଷ୍ଟ ସୂଚିତ ହୁଏ ।

"କହିବି ରାଜ୍ୟର ଭାବନା
ନାମ ଟା କାଉଁରୀ ପାଟଣା
ପ୍ରତାପରୁଦ୍ର ରାଜା ଦେଶ
ନଗ୍ର ଖଡ଼ିଆଳ ବିଶେଷ ।।
ନିର୍ଗୁଣ ମାହାତ୍ମ୍ୟ ପୁସ୍ତକ
ସେ ରାଜ୍ୟ ହୋଇଲା ଉଦିତ ।"

କବି ରାଜ୍ୟର ନାମ କଉଁରୀ ପାଟଣା ବୋଲି ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି, ବଲାଙ୍ଗୀର ପାଟଣାରୁ ରାଜ୍ୟକୁ କାଉଁରୀ ପାଟଣା ମଧ କୁହାଯାଉଥିବା ଇତିହାସରୁ ଜଣାପଡେ । ବଲାଙ୍ଗୀର ପାଟଣା ଅତୀତରେ ଯାଦୁବିଦ୍ୟା ରେ ବିଶେଷ ପାରଦର୍ଶିତା ଲାଭ କରିଥିଲା । ବଲାଙ୍ଗୀର ଜିଲ୍ଲାରେ ଅବସ୍ଥିତ ରାଣୀପୁର ଝରିଆଲରେ ଥିବା ଚଉଷଠୀ ଯୋଗିନୀ ମନ୍ଦିର ତାର ବଳିଷ୍ଠ ପ୍ରମାଣ । ଯାଦୁବିଦ୍ୟାକୁ କାଉଁରୀ ବିଦ୍ୟା ମଧ କହନ୍ତି । ସେଇ ଦୃଷ୍ଟିରୁ ବଲାଙ୍ଗୀର ପାଟଣା ରାଜ୍ୟ କାଉଁରୀ ପାଟଣା ନାମରେ ମଧ ସୁପରିଚିତ ଥିଲା ।

ଖଡିଆଳ ରାଜବଂଶ ବଲାଙ୍ଗୀର ପାଟଣା ରାଜବଂଶର ଏକ ଅଂଶ ବିଶେଷ। ୧୫୯୦ ମସିହାରେ ବଲାଙ୍ଗୀର ପାଟଣା ରାଜବଂଶର ଗୋପାଳ ରାଏ ନାମକ ଜଣେ ରାଜପୁତ୍ର ନିଜର ବୈମାତ୍ରେ ଭ୍ରାତା ଦ୍ୱିତୀୟ ବିକ୍ରମାଦିତ୍ୟଙ୍କ ସହିତ ସିଂହାସନ ପାଇଁ ଆତ୍ମଗୋପନ କରି ରହିଲେ। କିଛିଦିନ ପରେ ଉକ୍ତ ଗୋପାଳରାଏ ଜୟପୁର ରାଜଜେମାଙ୍କ ପାଣି ଗ୍ରହଣ କରି ଯୌତୁକ ସ୍ୱରୂପ ଖଲିଆପାଲି (ଆଧୁନିକ ଖଡିଆଳ) ରାଜ୍ୟକୁ ପାଇ ସେଠାରେ ରାଜ୍ୟ ସ୍ଥାପନ କରିଥିଲେ। ଖଡିଆଳ ରାଜା ପ୍ରତାପରୁଦ୍ର ହେଉଛନ୍ତି ଉକ୍ତ ରାଜବଂଶର ନବମରାଜା। ସେ ଖ୍ରୀ ୧୭୯୩ ଠାରୁ ଖ୍ରୀଷ୍ଟାବ୍ଦ ୧୮୧୮ ଯାଏଁ ସିଂହାସନ ଆରୋହଣ କରିଥିଲେ। ଏହାଙ୍କ ସମୟରେ ଖଲିଆପାଲି ନାମ ପରିବର୍ତ୍ତିତ ହୋଇ ରାଜ୍ୟର ନାମ ଖଡିଆଳ ରଖାଗଲା। ସପ୍ତର୍ଷି ୨ୟ ବର୍ଷ ପ୍ରଥମ ସଂଖ୍ୟା ୧୦ ପୃଷ୍ଠା ଦ୍ରଷ୍ଟବ ଖଡିଆଳ ରାଜବଂଶ ବଲାଙ୍ଗୀର ପାଟଣା ଚୌହାନ ରାଜବଂଶର ଗୋଟିଏ ଅଂଶ ହୋଇଥିବାରୁ ଅତୀତରେ ଖଡିଆଳକୁ ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ଭାବରେ ମଧ ଲୋକେ ଧରି ନେଇଥିଲେ। ଏଇ ଦୃଷ୍ଟିରୁ କବି କାଉଁରୀ ପାଟଣା ନାମ ଉଲ୍ଲେଖ କରିଅଛନ୍ତି।

କବି ଚୈତନ୍ୟ ଦାସଙ୍କ ଜନ୍ମସ୍ଥାନ ମଡମୂଳ ଖଡିଆଳ ନିକଟରେ ଅବସ୍ଥିତ ହେଲେହେଁ ତାହା ବଲାଙ୍ଗୀର ପାଟଣା ରାଜ୍ୟ ଅନ୍ତର୍ଭୁକ୍ତ ଥିଲା। ଅଦ୍ୟାବଧି ତାହା ବଲାଙ୍ଗୀର ଜିଲ୍ଲାରେ ଅବସ୍ଥିତ। ସାମାଜିକ ଆର୍ଥିକ ଓ ସାଂସ୍କୃତିକ ଦୃଷ୍ଟିରୁ ଦେଖିଲେ ବଡମୂଳ ଗ୍ରାମ ଖଡିଆଳ ସହିତ ବିଶେଷ ଭାବେ ସଂପୃକ୍ତ। ଏହିସବୁ ଦୃଷ୍ଟିରୁ ମଧ କବି କାଉଁରୀ ପାଟଣା ଖଡିଆଳ, ଓ ପ୍ରତାପ ରୁଦ୍ରଙ୍କ ନାମ ଉଲ୍ଲେଖ କରିଅଛନ୍ତି।

ଓଡ଼ିଶାର ସୁପରିଚିତ ସାହିତ୍ୟିକ ତଥା ସମାଲୋଚକ ସ୍ୱର୍ଗୀୟ ଆର୍ତ୍ତବଲ୍ଲଭ ମହାନ୍ତି କବି ଚୈତନ୍ନ ଦାସଙ୍କ ଜନ୍ମ କଟକ ଜିଲ୍ଲାରେ ବୋଲି ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ ନିର୍ଗୁଣ ମହାତ୍ମ୍ୟ ବହିର ମୁଖବନ୍ଧରେ ଉଲ୍ଲେଖ କରିଅଛନ୍ତି। କବି ଚୈତନ୍ୟ ଦାସଙ୍କ ବର୍ଣ୍ଣିତ ପ୍ରତାପ ରୁଦ୍ରଙ୍କୁ ପୁରୀର ଗଜପତି ପ୍ରତାପ ରୁଦ୍ର ବୋଲି ଉଲ୍ଲେଖ କରି କବି ଚୈତନ୍ୟ ଦାସ ଗଜପତି ପ୍ରତାପ ରୁଦ୍ରଙ୍କ ସମୟର ଲୋକବୋଲି ପ୍ରମାଣିତ କରିବାକୁ ପ୍ରୟାସ କରିଅଛନ୍ତି। ପୁଣି କବିଙ୍କ ଲିଖିତ ବଡମୂଳ ଗ୍ରାମକୁ କଟକ ଜିଲ୍ଲାର ସାଇଲୋ ପ୍ରଗଣାର ଏକଗ୍ରାମ, କାଉଁରୀ ପାଟଣାକୁ ଆଧୁନିକ କଅଁରପୁର, ଖଡିଆଳକୁ ଖଡବିଲ୍ଲ ଇତ୍ୟାଦି ସଂଶୟାତ୍ମକ ନାମ ଉଲ୍ଲେଖ କରିଅଛନ୍ତି। କିନ୍ତୁ ଏହା ନିତାନ୍ତ ଅମୂଳକ ଓ ଅଯୌକ୍ତିକ। ପୁରୀର ଗଜପତି ପ୍ରତାପ ରୁଦ୍ର ୧୫୦୪ ଠାରୁ ଖ୍ରୀ ୧୫୩୩ ଯାଏଁ ଓଡ଼ିଶାର ସିଂହାସନ ଆରୋହଣ କରିଥିଲେ। ତାଙ୍କରି ରାଜତ୍ୱରେ ସ୍ୱନାମଧନ୍ୟ ଭକ୍ତକବି ବଳରାମ, ଅଚ୍ୟୁତ, ଯଶୋବନ୍ତ ଓ ଅନନ୍ତ ଏଇ ପଞ୍ଚସଖା ନିଜ଼ର ରଚନା ମାଧ୍ୟମରେ ବେଶ୍ ସୁଖ୍ୟାତି ଅର୍ଜନ

କରିପାରିଥିଲେ । ଉକ୍ତ ପଞ୍ଚସଖାଙ୍କ ମଧ୍ୟରୁ ଅଚ୍ୟୁତାନନ୍ଦ ଦାସ, ବଳରାମ, ଜଗନ୍ନାଥ, ଯଶୋବନ୍ତ ଓ ଅନନ୍ତ ଚାରିଜଣ ଭକ୍ତକବିଙ୍କ ବିଷୟରେ ସ୍ୱରଚିତ ବହିରେ ଉଲ୍ଲେଖ କରିଅଛନ୍ତି । କିନ୍ତୁ ଚୈତନ୍ୟ ଦାସଙ୍କ ସମ୍ବନ୍ଧରେ ପଦେହେଲେ ସେ ଉଲ୍ଲେଖ କରି ନାହାନ୍ତି । ଏଥିରୁ ଜଣାପଡେ କବି ଚୈତନ୍ୟ ଦାସ ପଞ୍ଚସଖା ପୂର୍ବରୁ ବା ସମସାମୟିକ ନୁହନ୍ତି । ପଞ୍ଚସଖାଙ୍କ ବହୁବର୍ଷ ପରେ ଚୈତନ୍ୟ ଦାସ ଜନ୍ମ ଗ୍ରହଣ କରିଥିଲେ ।

କବି ଚୈତନ୍ୟ ଦାସ ଯେଉଁ ମହାପୁରୁଷଙ୍କ ଠାରୁ ମନ୍ତ୍ର ଉପଦେଶ ଗ୍ରହଣ କରି ଜଣେ ସାଧକ ତଥା ଯୋଗୀ ହୋଇ ପାରିଥିଲେ ପାଠକମାନେ ନିର୍ଗୁଣ ମହାତ୍ମ୍ୟ ବହିର ନିମ୍ନଲିଖିତ ପଂକ୍ତିରୁ ସେ ମହାଶୟଙ୍କ ସମ୍ବନ୍ଧରେ ବିଶଦ୍ ଭାବେ ଜାଣିପାରିବେ ଏବଂ କବି ଚୈତନ୍ୟ ଦାସଙ୍କ ସମୟ ସମ୍ବନ୍ଧରେ ମଧ୍ୟ ଉପଯୁକ୍ତ ଧାରଣା କରି ପାରିବେ ।

"ଗୁରୁଙ୍କ ନାମ ଧାନ ଦାସ  
ସେ ଦେ[illegible] [illegible] ଉପଦେଶ  
ମୋ କର୍ଣ୍ଣ ଗୁରୁ ସେ ଗୋସାଇଁ  
ବ୍ରହ୍ମ ବିଦ୍ୟାହିଁ ଦେଲେ କହି ।।  
ଗୃହ ବେପାର ତ୍ୟାଗକରି  
ବାଲୁତ-କାଳୁ ଦିଗମ୍ବରୀ ।  
ମୋଠାରେ ଥିଲେ ଛତମାସ  
ପୁଣି ସେ ଦିଗ କଲେ ବାସ ।।  
ମୋ କର୍ଣ୍ଣ ଉପଦେଶ ଦିନ  
ମୋ ନାମ ଦେଲେ ଚଇତନ ।।"

ଖଡିଆଳ ତଥା ବଡମୂଳ ଗ୍ରାମ ନିକଟ ଟୁଗୁଲା ଗ୍ରାମର ବାବୁବଳି ରାଏଙ୍କ ପିତାମହ ଚମାର ରାଏ ପ୍ରଥମେ ମହିମା ଧର୍ମ ଗ୍ରହଣ କରି ଧାନଦାସ ନାମରେ ପରିଚିତ ହେଲେ । ପରେ ପରେ ଚମାର ରାଏଙ୍କ ଅନ୍ୟାନ୍ୟ ଭାଇମାନେ ମଧ୍ୟ ମହିମା ଧର୍ମ ଗ୍ରହଣ କରିଥିଲେ । ଚମାର ରାଏ ଓରଫ୍ ଧାନଦାସଙ୍କ ଅନେକ ଶିଷ୍ୟଙ୍କ ମଧ୍ୟରୁ ଚୈତନ୍ୟ ଦାସ ଅନ୍ୟତମ । ଧାନଦାସ ବାଲ୍ୟକାଳରୁ ଦିଗମ୍ବର ସନ୍ନ୍ୟାସୀ ଥିଲେ । ସେ ଚୈତନ୍ୟ ଦାସଙ୍କ ଗୃହରେ ଛମାସ ରହି ତାଙ୍କୁ ବ୍ରହ୍ମବିଦ୍ୟା ଉପଦେଶ ଦେଇଥିଲେ । କିନ୍ତୁ ଉପଦେଶ ଦିନଠାରୁ କବି ଚୈତନ୍ୟ ଦାସ ନାମରେ ଅଭିହିତ ହେଲେ । ତା ପୂର୍ବରୁ ତାଙ୍କ ନାମ କଣଥିଲା କବିଙ୍କ ରଚିତ "ଦେବଦର୍ଶନ" ପୁରାଣ ବ୍ୟତୀତ ତାଙ୍କର ଅନ୍ୟ

କୌଣସି ରଚନାରେ ଉଲ୍ଲେଖ ନାହିଁ । ଦେଚଦର୍ଶନ ପୁରାଣର ଉପସଂହାରରେ କବି ଲେଖିଛନ୍ତି:-

"ଗୁରୁଙ୍କ ଦୟାରେ ପୁରାଣ ହୋଇଲା ସମ୍ପୂର୍ଣ୍ଣ ।
ତାଙ୍କ ନାମ ଗମ୍ଭୀର ମୋ ନାମ ଚଇତନ ।।
ପ୍ରଥମ ନାମ ମୋହର ଆନନ୍ଦ ବୋଲି କହି ।
ଦ୍ୱିତୀୟ ନାମ ମୋହର ମର୍ଦୀରା ବୋଲାଇ ।।
ତୃତୀୟ ନାମ ମୋହର ଶୁଣ ସାଧୁଜନ ।
କର୍ଣ୍ଣଗୁରୁ ଦେଲେ ମୋତେ ଚଇତନ୍ୟ ନାମ ।"

କବିଙ୍କ ଜନ୍ମିତ ନାମ ଆନନ୍ଦ,ତାପରେ ସେ ମର୍ଦୀରା ନାମରେ ପରିଚିତ ହେଲେ । ମନ୍ତ୍ର ଉପଦେଶ ଗ୍ରହଣ କଲାପରେ ଚଇତନ୍ୟ ନାମରେ ନାମିତ ହୋଇଥିବା ଉପରୋକ୍ତ ପଂକ୍ତିରୁ ଜଣାପଡେ । ନିର୍ଗୁଣମାହାତ୍ମ୍ୟ ବହିରେ କବି ଗୁରୁଙ୍କ ନାମ ଧାନଦାସ ବୋଲି ଉଲ୍ଲେଖ କରିଅଛନ୍ତି । କିନ୍ତୁ ଦେବଦର୍ଶନ ପୁରାଣରେ ଗୁରୁଙ୍କ ନାମ ଗମ୍ଭୀର ବୋଲି ଉଲ୍ଲେଖ କରିଅଛନ୍ତି । ଧାନଦାସଙ୍କର ଦ୍ୱିତୀୟ ନାମ ଗମ୍ଭୀର ହୋଇ ଥାଇପାରେ ।

କବି ଗୁରୁ ଧାନଦାସଙ୍କ ଉତ୍ତରାଧିକାରୀ ଶ୍ରୀ ରାଧାମୋହନ ସିଂହଙ୍କ ବୟସ ବର୍ତ୍ତମାନ ୬୦ ବର୍ଷ । ଚମାର ରାଏ ଓରଫ ଧାନଦାସ ଓ ରାଧାମୋହନ ସିଂହଙ୍କ ମଧରେ ତିନିପୁରୁଖ ମାତ୍ର ବ୍ୟବଧାନ । ଖଡିଆଳ ରାଜା ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳକୁ ଗଣନା କଲେ ଧାନଦାସ ତାଙ୍କର ଦାୟାଦ ରାଧାମୋହନ ସିଂହଙ୍କ ମଧରେ ପ୍ରାୟ ୧୮୦ ବର୍ଷ ମାତ୍ର ବ୍ୟବଧାନ । ଅତଏବ କବି ଚୈତନ୍ୟ ଦାସ ଆଜକୁ ପ୍ରାୟ ୨୦୦ ବର୍ଷ ପୂର୍ବେ ଜନ୍ମ ଗ୍ରହଣ କରିଥିବା ଏଇଥିରୁ ଜଣାପଡେ । କବି ଯେଉଁ ସାଲରେ ଜନ୍ମ ଗ୍ରହଣ କରିଥିଲେ ତାର କୌଣସି ପ୍ରମାଣ ଗ୍ରନ୍ଥ ଗୁଡିକରେ ମିଳେ ନାହିଁ ।

କବି ଚୈତନ୍ୟ ଦାସ ଖଡିଆଳ ଅଞ୍ଚଳ ଅଧିବାସୀ ହୋଇଥିବାରୁ ନିଜ ରଚନାଗୁଡିକରେ ଗୁଲିଚା, ଖେଦି, ଚିଆଁ, ମାଁସ, ହେଜା, ଏହାଦ, ମୁହୁତା, ଚୋପକ, ପାରୁ, ଲାଲର, ଚଅଁରିଆ, ସୁନାରୀଗୋକ, ଭକବକୁ, ତେଲାଇଣୀ ଇତ୍ୟାଦି ଖଡିଆଳ ଅଞ୍ଚଳରେ ବ୍ୟବହୃତ ଆଞ୍ଚଳିକ ଶବ୍ଦଗୁଡିକ ପ୍ରୟୋଗ କରିଅଛନ୍ତି । ଓଡ଼ିଶାର ଉପକୂଳଅଞ୍ଚଳରେ ବାସ କରୁଥିବା ସାହିତ୍ୟିକମାନେ ଏପରି ଭାଷା ବ୍ୟବହାର କରିବା ତ ଦୂରର କଥା ସେମାନଙ୍କର ସୃତିଗୋଚର ହୋଇଥିବ କି ନା ସନ୍ଦେହ ।

କେହି କେହି ଆଲୋଚକ ତଥା ସମାଲୋଚକ କବି ଚୈତନ୍ୟ ଦାସ ନିଜ ରଚନାରେ କାଉଁରି ପାଟଣା ନାମ ଉଲ୍ଲେଖ କରିଥିବାରୁ କବି ବଲାଙ୍ଗୀର ପାଟଣା ରାଜବଂଶର ପ୍ରତାପରୁଦ୍ରଙ୍କ ସମୟର

ଲୋକ ବୋଲି ଉଲ୍ଲେଖ କରିଅଛନ୍ତି । ଡ: ନବୀନ କୁମାର ସାହୁଙ୍କ ଦ୍ୱାରା ସଂପାଦିତ ବଲାଙ୍ଗୀର ଜିଲ୍ଲା ଗେଜେଟି ଅର ପାଠକଲେ ଜଣଯାଏ ଯେ ଖ୍ରୀ. ୧୪୬୫ ଠାରୁ ଖ୍ରୀ.୧୪୮୦ ଯାଏଁ ବଲାଙ୍ଗୀର ପାଟଣା ରାଜବଂଶରେ ପ୍ରତାପରୁଦ୍ର ନାମରେ ଜଣେ ରାଜାରାଜତ୍ୱ କରୁଥିଲେ । ପୁରୀର ଗଜପତି ପ୍ରତାପରୁଦ୍ରଙ୍କ ରାଜତ୍ୱର ୨୪ ବର୍ଷ ପୂର୍ବରୁ ଏ ରାଜା ରାଜତ୍ୱ କରୁଥିଲେ । ଚୈତନ୍ୟ ଦାସ ଯଦି ବଲାଙ୍ଗୀର ରାଜା ପ୍ରତାପରୁଦ୍ରଙ୍କ ସମୟର ଲୋକ ହୋଇଥାନ୍ତେ ପଞ୍ଚସଖାଙ୍କ ପୂର୍ବବର୍ତ୍ତୀ ବା ସମସାମୟିକ କବି ଭାବରେ ସେମାନଙ୍କ ରଚିତ ଗ୍ରନ୍ଥମାନଙ୍କରେ ନିଶ୍ଚୟ ସ୍ଥାନ ପାଇଥାନ୍ତେ । ତେଣୁ ବଲାଙ୍ଗୀର ରାଜା ପ୍ରତାପରୁଦ୍ରଙ୍କ ସମୟର ଲୋକ ବୋଲି ଧରିନେବା ସମିଚୀନ ନୁହେଁ ।(*)

ଓଡ଼ିଶାର ସୁବିଖ୍ୟାତ ସାହିତ୍ୟିକ ତଥା ସମାଲୋଚକ ଶ୍ରୀଯୁକ୍ତ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ "ଓଡ଼ିଆ ସାହିତ୍ୟର ଇତିହାସ" ତୃତୀୟଭାଗ ୬୨୨ ପୃଷ୍ଠାରେ କବି ଚୈତନ୍ୟ ଦାସ ଯଥାର୍ଥରେ ଖଡିଆଳ ରାଜା ପ୍ରତାପରୁଦ୍ର ସମସାମୟିକ ଥିବା ପ୍ରମାଣିତ କରିଛନ୍ତି ।

୧୯୩୪ ମସିହାରେ ଶ୍ରୀ ଭାଗୀରଥି ମହାପାତ୍ରଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ "ରତ୍ନକୋଷ ବା ବିବିଧ ସଂଗ୍ରହ" ବହିର ୧୪୩ ପୃଷ୍ଠାରେ ଚୈତନ୍ୟ ଦାସ ଖଡିଆଳ ଷ୍ଟେଟ ଅନ୍ତର୍ଗତ ବଡବୂଳ ଗ୍ରାମର ଅଧିବାସୀ ବୋଲି ସ୍ପଷ୍ଟ ଉଲ୍ଲେଖ କରାଯାଇଛି । ଅତଏବ ଚୈତନ୍ୟ ଦାସ ଯେ ପଶ୍ଚିମ ଓଡ଼ିଶାର ନିଜସ୍ୱ କବି ଏଥିରେ ସନ୍ଦେହର ଅବକାଶ ନାହିଁ । ପଶ୍ଚିମ ଓଡ଼ିଶା ଏପରି ଜଣେ ମହାତ୍ମାକୁ ଜନ୍ମ ଦେଇ ଧନ୍ୟା ହୋଇଅଛି । କବି ଚୈତନ୍ୟ ଦାସ ଶୁଦ୍ରକୂଳରେ ଜନ୍ମ ଲାଭ କରିଥିଲେ ମଧ୍ୟ ସେ ଅଲୌକିକ ଶକ୍ତିର ଅଧିକାରୀ ହୋଇପାରିଥିଲେ । ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଲ୍ୟକାଳରୁ ତାଙ୍କ ବୁଦ୍ଧି ବଡ ପ୍ରଖର ଥିଲା । ଯେ କୌଣସି ଶାସ୍ତ୍ର ପୁରାଣ ଶୁଣି ସେ ଭଲଭାବେ ମନେରଖି ପାରୁଥିଲେ । ସେ ପ୍ରଥମେ ଗୃହସ୍ଥାଶ୍ରମ କରିଥିଲେ ଏବଂ ପରେ ତାହା ନିରର୍ଥକ ଭାବି ତ୍ୟାଗକରି ଗୁରୁ ଉପଦେଶ ଗ୍ରହଣ କରି ଯୋଗାଭ୍ୟାସରେ ମନୋନିବେଶ କରିଥିଲେ । ସେ ଜଣେ ପରମଯୋଗୀ ଓ ସାଧକଥିଲେ । ତାଙ୍କର ନିର୍ଗୁଣ ଉପାସନା ବେଦାନ୍ତ ମତରେ ସଂପୂର୍ଣ୍ଣ ଅନୁକୂଳ ଥିଲା । ସେ ଜଣେ ପରମାର୍ଥ ବୌଦ୍ଧ ବୈଷ୍ଣବ ଥିଲେ । ସରଳ ନିରାଡ଼ମ୍ବର ଭାଷାରେ ହୃଦୟର ଗଭୀରତମ ଭକ୍ତିଭାବକୁ ସେ ନିଜ ରଚନା ଗୁଡ଼ିକରେ ପ୍ରକାଶ କରି ଜନମନକୁ ବିଶେଷ ଭାବେ ଆକୃଷ୍ଟ କରିପାରିଥିଲେ । କବି ବୈଷ୍ଣବ ଜନୋଚିତ ବିନୟଭାବ ପ୍ରକାଶ କରି ଭବକଲୁଷ ବିନାଶ ଓ ନିର୍ଗୁଣ ପ୍ରାପ୍ତି ତାଙ୍କର ଲକ୍ଷ୍ୟ ଥିବା କଥ ନିଜ ରଚନା ଗୁଡ଼ିକରେ ବ୍ୟକ୍ତ କରିଅଛନ୍ତି ।

ସେ ଜଣେ ଦୂରଦ୍ରଷ୍ଟା ସାଧୁ ଓ ଭବିଷ୍ୟତ୍ ଜ୍ଞାତା ମହାପୁରୁଷ ଥିଲେ । ତାଙ୍କର ଅଲୌକିକ ପ୍ରଭାବ ବିଷୟରେ ଖଡିଆଳ ଅଞ୍ଚଳରୁ ବହୁତ କଥା ଶୁଣିବାକୁ ମିଳେ । ପ୍ରବାଦ ଅଛି ଥରେ କବି କଳାହାଣ୍ଡି ରାଜସଭାରେ ବସିଥିବା ବେଳେ ହଠାତ୍ ହାତକୁ ହଲାଇ ହଲାଇ " ଓ ହୋ ଓ ହୋ

ଜଗନ୍ନାଥଙ୍କ ଚାନ୍ଦୁଆ ପୋଡି ଯାଇଛି" ବୋଲି କହି ଚିତ୍କାର କରି ନିଆଁ ଲିଭାଇବା ଛଳନା କରିଥିଲେ । ରାଜା ଆଶ୍ଚର୍ଯ୍ୟ ହୋଇ 'ପାଗଳ ପରି ଏପରି କାହିଁକି ହେଉଛ' ବୋଲି ପ୍ରଶ୍ନ କରିବାରୁ "ପୁରୀ ଜଗନ୍ନାଥଙ୍କ ମସ୍ତକ ଉପରେ ଥିବା ଚାନ୍ଦୁଆରେ ନିଆଁ ଲାଗିଯିବାରୁ ଲିଭାଉଥିଲି ବୋଲି କହିଥିଲେ । ଏତେ ଦୂରରେ ଥାଇ କିପରି ଜାଣିଲେ ବୋଲି ରାଜା ପଚାରିବାରୁ ସତ୍ୟାସତ୍ୟ ପରୀକ୍ଷା କରନ୍ତୁ" ବୋଲି ସେ କହିଥିଲେ । କିଛିଦିନ ପରେ ରାଜା ଏହା ସତ୍ୟାସତ୍ୟ ବୁଝି ପ୍ରକୃତ ଘଟଣା ହୋଇଥିବା ହୃଦୟଙ୍ଗମ କରି କବିଙ୍କ ଦୂର-ଦର୍ଶିତା ଯୋଗୁଁ ଆଶ୍ଚର୍ଯ୍ୟ ହୋଇଥିଲେ ।

କବି ଚୈତନ୍ୟ ଦାସ ନିର୍ଗୁଣ ମାହାତ୍ମ୍ୟ ଓ ବିଷ୍ଣୁ ଗର୍ଭ ପୁରାଣର ଲେଖକ ଭାବରେ ସୁପରିଚିତ । କବିଙ୍କ ଆଉ ଗୋଟିଏ ଉତ୍କୃଷ୍ଟ ରଚନା "ଦେବଦର୍ଶନ ପୁରାଣ" ଏ ପର୍ଯ୍ୟନ୍ତ ଓଡ଼ିଶାର ସାହିତ୍ୟିକମାନଙ୍କ ଦୃଷ୍ଟିରୁ ଆସିପାରି ନାହିଁ । ଉକ୍ତ ବହି ଖଣ୍ଡିକ ୰ ଅବଧୂତ ଚନ୍ଦ୍ରମଣି ବାବାଙ୍କ ଦ୍ୱାରା ସାଲେବରଟ ଗ୍ରାମ ଅଧିବାସୀ କବିଙ୍କ ବଂଶଧର ଶ୍ରୀ ଟଙ୍କଧର ପଟେଲଙ୍କ ଠାରୁ ସଂଗୃହୀତ ହୋଇ ଖ୍ରୀ ୧୯୫୦ ରେ ପ୍ରକାଶିତ ହୋଇଅଛି । ଏହି ଗ୍ରନ୍ଥରେ ଦେବତା ଦର୍ଶନର ମାହାତ୍ମ୍ୟ ବିଷଦଭାବେ ବର୍ଣ୍ଣିତ ହୋଇଅଛି । ଯୋଗ ସାଧନ ସହିତ ଅଲେଖ ପରଂବ୍ରହ୍ମଙ୍କ ତତ୍ତ୍ୱ ହୃଦୟଙ୍ଗମ କରି ପାରିଲେ ବ୍ରହ୍ମଜ୍ଞାନ ଲାଭ ହୁଏ । ଏହାହିଁ ମିଶ୍ରିତ ଭକ୍ତିରେ ଦେବତା ଦର୍ଶନ ଓ ମୁକ୍ତି ମିଳେ । ଏହାହିଁ ଦେବ ଦର୍ଶନ ପୁରାଣର ପ୍ରତିପାଦ୍ୟ ବିଷୟ । କବି ସରସ୍ୱତୀ ଓ ଗଣେଶଙ୍କୁ ବନ୍ଦନା କରି ପୁଣି ଆରମ୍ଭ କରିଛନ୍ତି । ଏଥିରେ ଚଉଦଟି ଅଧ୍ୟାୟ ଅଛି । ପୁରାଣ ବି ଚଉଦ ଅକ୍ଷରୀ ବୃତ୍ତରେ ଲିଖିତ ।

କବିଙ୍କ ରଚିତ ନିର୍ଗୁଣ ମାହାତ୍ମ୍ୟ ଗୋଟିଏ ଭକ୍ତିରସଶ୍ରିତ ଅମୂଲ୍ୟଗ୍ରନ୍ଥ । କବି ନିର୍ଗୁଣ ମାହାତ୍ମ୍ୟ ବହିର ଲେଖା ବଡମୂଳ ଗ୍ରାମରେ ଆରମ୍ଭ କରି କାଉଁରୀ ପାଟଣା ରାଜ୍ୟରେ ପ୍ରତାପରୁଦ୍ର ରାଜାଙ୍କ ଦେଶ ଖଡିଆଳ ନଗରରେ ବହିଟିର ରଚନା ଶେଷ କରିଥିବା ନିର୍ଗୁଣ ମାହାତ୍ମ୍ୟ ବହିର ଉପସଂହାରରେ ଉଲ୍ଲେଖ କରିଅଛନ୍ତି ।

କବି ନିର୍ଗୁଣ ମାହାତ୍ମ୍ୟ ବହିରେ କର୍ଦ୍ଦମ ଓ ଦେବହୁତି ଉଭୟଙ୍କୁ କପିଳଙ୍କ ମୁଖରୁ ତତ୍ତ୍ୱ ଶୁଣାଇଛନ୍ତି ଓ ପିତାମାତାଙ୍କ ଅନୁରୋଧରେ କପିଳଙ୍କୁ ଗୃହସ୍ଥ କରାଇ ଅବଧୁତଙ୍କୁ ତାଙ୍କ ପୁତ୍ର ରୁପରେ ଦର୍ଶାଇଛନ୍ତି ।

କବି ସରସ୍ୱତୀ, ଗଣେଶ, ବିଷ୍ଣୁ, ଏଇତିନି ଦେବତାଙ୍କ ପ୍ରସାଦରେ ଗ୍ରନ୍ଥ ରଚନା କରିଥିବା ଉଲ୍ଲେଖ କରିଛନ୍ତି । ଗ୍ରନ୍ଥଟି ନଅ ଅକ୍ଷରୀ ବୃତ୍ତରେ ଲେଖା । ଷୋହଳଟି ଛୋଟ ଛୋଟ ଅଧ୍ୟାୟରେ କବି କର୍ମ, କର୍ମଫଳ, ଆତ୍ମଜ୍ଞାନ, ନିର୍ଗୁଣ ବ୍ରହ୍ମ, ବ୍ରହ୍ମଙ୍କ ସୃଷ୍ଟି ସର୍ଜନା, ଧ୍ୟାନ, ନିର୍ଗୁଣଭକ୍ତି ପ୍ରଭୃତି ବହୁ ବିଷୟରେ ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି । କର୍ମ ହେଉଛି ଜୀବର ବନ୍ଧନ, ସକଳ କର୍ମ

ତ୍ୟାଗ କରିବା ହେଉଛି ମୋକ୍ଷ ଏବଂ ଏଇ ମୋକ୍ଷ ଆତ୍ମଜ୍ଞାନରେ କେବଳ ସମ୍ଭବ । ଏଇତତ୍ତ୍ୱଗୁଡ଼ିକ ଋତ୍ତ-ପୌରାଣିକିଙ୍କ ମଧ୍ୟରେ ପ୍ରଶ୍ନୋତ୍ତର ଛଳରେ କବି ବିସ୍ତୃତ ଭାବେ ନିର୍ଗୁଣ ମହାତ୍ମ୍ୟରେ ପ୍ରତିପାଦିତ କରିଅଛନ୍ତି । ଭଗବତ୍ ଗୀତାର ଜ୍ଞାନଯୋଗରେ ସାରତତ୍ତ୍ୱ ସହିତ ନିର୍ଗୁଣ ମହାତ୍ମ୍ୟର ମୂଳତତ୍ତ୍ୱର ସାମଞ୍ଜସ୍ୟ ଥିବା ଜଣାଯାଏ ।

କବିଙ୍କ ବିଷ୍ଣୁଗର୍ଭ ପୁରାଣ ଗୋଟିଏ ଉତ୍କୃଷ୍ଟ ଉପାଦେୟ । କବିଙ୍କ ଅନ୍ୟ ଦୁଇଟି ରଚନା ନିର୍ଗୁଣ ମହାତ୍ମ୍ୟ ଓ ଦେବଦର୍ଶନ ପୁରାଣ ଅପେକ୍ଷା ଏହା ଆକାରରେ ଟିକିଏ ବୃହତ୍ତର । ଏଥିରେ ତେରଟି ଅଧ୍ୟାୟ ଅଛି । ଗ୍ରନ୍ଥଟି ଚଉଦ ଅକ୍ଷରୀ ବୃତ୍ତରେ ଲେଖା ପ୍ରଥମେ ସରସ୍ୱତୀ ଓ ଗଣେଶଙ୍କୁ ବନ୍ଦନା କରି କବି ଗ୍ରନ୍ଥାରମ୍ଭ କରିଛନ୍ତି । ଏଥିରେ ଅଲେଖ ଧର୍ମ ସମ୍ବନ୍ଧରେ ଅତି ମୂଲ୍ୟବାନ ଲେଖା ଦେଖିବାକୁ ମିଳେ । ସୌନକ ଓ ସୌନକାଦିଙ୍କ ମଧ୍ୟରେ ପ୍ରଶ୍ନୋତ୍ତର ଛଳରେ ଅଲେଖ ମହିମା, ଅଲେଖ ପ୍ରକାଶ ସ୍ୱରୂପ ଓ ଅବସ୍ଥାନ, ବ୍ରହ୍ମମାହାତ୍ମ୍ୟ ଜ୍ଞାନଯୋଗ, ଯୋଗସାଧନ, କର୍ମଫଳ ବିଚାର ଆତ୍ମଜ୍ଞାନ, ମୋକ୍ଷମାର୍ଗ ପ୍ରଭୃତି ଗୁଢ଼ ତତ୍ତ୍ୱ ଗୁଡ଼ିକ ସେ ସରଳ ଭାବରେ ବୁଝାଇଛନ୍ତି ।

ଚଉରାଅଶି ବ୍ରହ୍ମାଣ୍ଡର ଉତ୍ପତ୍ତି ବିବରଣ, ବିଷ୍ଣୁଙ୍କ ଅବତାର, ଅଲେଖଙ୍କଠାରୁ ସବୁ ସୃଷ୍ଟିର ଆରମ୍ଭ ଏଇ ଅଲେଖବିଧାତା, ବିଷ୍ଣୁ ଧର୍ମ ପ୍ରଭୃତି ଅନେକ ଆକାର ଧାରଣ କଲେ ମଧ ସେ ପ୍ରକୃତରେ ନିରାକାର । କବି ଅଲେଖଙ୍କଠାରୁ ସୃଷ୍ଟିର କ୍ରମ ସୁନ୍ଦର ଭାବେ ବର୍ଣ୍ଣନା କରିଅଛନ୍ତି ।

ଉପରୋକ୍ତ ରଚନା ଗୁଡ଼ିକ ଛଡା 'ଜ୍ଞାନ କବାଟ' ନାମରେ କବିଙ୍କର ଅନ୍ୟ ଏକ କ୍ଷୁଦ୍ର ତତ୍ତ୍ୱ ଗ୍ରନ୍ଥଥିବା ଜଣାଯାଏ । ଏହା ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ପାରିନାହିଁ ।

ଏକ୍ଷୁଦ୍ର ପ୍ରବନ୍ଧରେ କବିଙ୍କ ରଚନା ଗୁଡ଼ିକର ଉତ୍କୃଷ୍ଟତା ଓ ଉପାଦେୟତା ବିଷୟରେ ଧାରଣା ଦେବା ଏକ ଧୃଷ୍ଟତା ମାତ୍ର । କବିଙ୍କ ଲେଖା ଗୁଡ଼ିକର ପୃଥକ ପୃଥକ ଆଲୋଚନା ଓ ସମାଲୋଚନା କରାଗଲେ ବହୁ ଉପାଦେୟତା ବିଷୟ ଲୋକ ଲୋଚନକୁ ଅଣାଯାଇପାରିବ । ଓଡ଼ିଶାର ସୁଧୀସାହିତ୍ୟିକ, ସମାଲୋଚକ ତଥା ଗବେଷକମାନେ ଏ ଦିଗରେ ଯତ୍ନବାନ ହେଲେ ଓଡ଼ିଆ ସାହିତ୍ୟ ଭଣ୍ଡାର ଯେ ସମୃଦ୍ଧ ହୋଇ ପାରିବ ଏଥିରେ ସନ୍ଦେହର ଅବକାଶ ନାହିଁ ।



# ପଶ୍ଚିମ ଓଡ଼ିଶା ଲୋକଗଳ୍ପ ବା 'କଥାନି' ର ରୂପରେଖ, ଏକ ବିହଙ୍ଗାବଲୋକନ

ପୁଷ୍ପ କୁମାର ମେହେର

ସମାଜ ଓ ସଂସ୍କୃତି ପରସ୍ପର ପରିପୂରକ । ପରସ୍ପର ଏପରି ଅଙ୍ଗାଙ୍ଗୀ ଭାବରେ ଜଡିତ ଯେ ଗୋଟିକର ବ୍ୟତିରେକେ ଅନ୍ୟ ସ୍ୱରୂପକୁ ଉନ୍ମୋଚନ କରିବା ଏକାନ୍ତ ଭାବରେ ଅସମ୍ଭବ । ବାସ୍ତବରେ ସମାଜ ହୁଏ ଯଦି ଗୋଟିଏ ପିଣ୍ଡ ସଂସ୍କୃତି ହେଉଛି ତା'ର ଚଳନ ଶକ୍ତି ବା ପ୍ରାଣ । କୌଣସି ଦେଶ ବା କାଳର ସମାଜକୁ ମାପିବାକୁ ହେଲେ ତା'ର ସଂସ୍କୃତିକୁ ନ ଚିହ୍ନି ଏହାର ଓଜନ କରାଯାଇ ନପାରେ । ସଂସ୍କୃତି, ତା'ର ରୂପ ପରିଗ୍ରହଣ ଧାରଣକରେ ବିଭିନ୍ନ ପର୍ବ ପର୍ବାଣୀ, ଯାନିଯାତ୍ରା, ଲୋକଗୀତ ଲୋକ କାହାଣୀ ଓ ନାନା ଧର୍ମୀୟ ବିଶ୍ୱାସ ମାଧ୍ୟମରେ; ଯାହାରକି ଆରମ୍ଭ କେବେଠୁ ଏବଂ କେଉଁଠି ତା'ର ଖିଅଖୋଜି ମଣିଷ ବାହାର କରିପାରେ ନାହିଁ । ତାହା ଏକ ପାରମ୍ପାରିକ, ବର୍ଦ୍ଧିଷ୍ଣୁ ଏବଂ ପରିବର୍ତ୍ତନ ଶୀଳ ବ୍ୟାପାର । ସମାଜର ଗତି ସହିତ ସମତାଳ ଦେଇ ସଂସ୍କୃତିର ବିଭିନ୍ନ ଲକ୍ଷ୍ୟଣ ଗୁଡିକ ପରିବର୍ତ୍ତନ ହୋଇ ଯାଉଥାଏ । ତନ୍ମଧ୍ୟରୁ ଲୋକଗୀତ ଓ ଲୋକ କାହାଣୀକୁ ସଂସ୍କୃତିର ବାସ୍ତବ ସଂରକ୍ଷିକା କହିଲେ ଅତ୍ୟୁକ୍ତି ହେବା ନାହିଁ । ଲୋକଗୀତ ହେଉଛି ଆଦିମ ମାନବର ସ୍ୱତଃ ସ୍ଫୁର୍ତ୍ତତାର ଅଭିବ୍ୟକ୍ତି ଓ ଲୋକକଥା ତା'ର କଳ୍ପନା ପ୍ରବଣତାର ସାର୍ଥକ ପ୍ରତିଲିପି । ଲୋକଗୀତ ମାନବର ହୃଦୟକୁ ପ୍ଲାବିତ କରେ ଅଥଚ ମାନସାନୁରଞ୍ଜନ ନିମିତ୍ତ ଲୋକକଥା ହେଉଛି ଉତ୍କୃଷ୍ଟ ମାଧ୍ୟମ ।

କେଉଁ ଏକ ସୁଦୂର ଅନାଦି କାଳରୁ ମଣିଷ ଦିନେ ପ୍ରକୃତି କ୍ରୋଡରେ ପାଳିତ ହେଉଥିଲା । ପ୍ରକୃତିର ଆତ୍ମ ପ୍ରକାଶ କରିବାର ଲକ୍ଷଣ ଦେଖି ସେ ଶିଖିଥିଲା କଥା କହି ଆଉ ବନର ଆବେଗକୁ ନେଇ ଗାଇଥିଲା ଗୀତ । ଠିକ୍ ସେହିପରି ଭାବରେ କଥା ବା କାହାଣୀ ଶୁଣିବା ହେଉଛି ମଣିଷର ଆଦିମ ପିପାସା ଯଦି ପୃଥିବୀର ପ୍ରାୟ ପ୍ରତ୍ୟେକ ଭାଷାର ଆଦ୍ୟଲିଖିତ ରୂପହୁଏ କାବ୍ୟ ବା କବିତା ତା'ର ଆଦ୍ୟ କଥିତ ବା ମୌଖିକ ସାହିତ୍ୟ ହେଉଛି କଥା ବା କାହାଣୀ, ଯେଉଁ ଠାରୁ କି ଗଦ୍ୟର ଉଦ୍ଭବ ଓ ବିକାଶ । ସାଧାରଣତଃ ପ୍ରାକ୍ କାଳରେ ମଣିଷ ତା'ର ପ୍ରତ୍ୟକ୍ଷ ଅନୁଭୁତି ବା ଭାବରାଶିକୁ ଗୀତ ମାଧ୍ୟମରେ ପ୍ରକାଶ କରୁଥିଲା ବେଳେ, ଯେଉଁକାର୍ଯ୍ୟ ତୁଲାଇବା ତା'ର ଶକ୍ତିର ବହିର୍ଭୁତ

ହେଉଥିଲା କଳ୍ପନାର ଆଶ୍ରୟ ନେଇ ତାକୁ କାହାଣୀ ଆକାରରେ ଅନ୍ୟ ଆଗରେ ପ୍ରକାଶ କରି ଅତୃପ୍ତ ଆତ୍ମାର ତୃପ୍ତି ବିଧାନ କରୁଥିଲା । ଏହି କାଳ୍ପନିକ କାହାଣୀ ଅନେକ ସ୍ରଷ୍ଟା ବା କଥକର ତୃପ୍ତି ବିଧାନ କରୁଥିଲା ତା' ନୁହେଁ ଏହା ସହିତ ଶ୍ରୋତାକୁ ମଧ୍ୟ ଆନନ୍ଦର ଢେଉରେ ଭସାଇ ଦେଉଥିଲା । ପୁଣି ସେହି କାହାଣୀ ମାନବ ସୃଷ୍ଟି ହୋଇଥିବା ଯୋଗୁଁ ସେଠାରେ କେବଳ ନିଖିଳ କଳ୍ପନା ନ ଥାଇ ସୁଖ ଦୁଃଖ ପୂର୍ଣ୍ଣ ମାନବ ଜୀବନର ଆଶା, ଆକାଂକ୍ଷା, ଅନୁଭୁତି, ଆଦର୍ଶ ବିଚାର ଇତ୍ୟାଦିର ନୈସର୍ଗିକ ରୂପାୟନ ମଧ୍ୟ ହୋଇଅଛି । କେତେକ ପ୍ରାଚ୍ୟ ଗବେଷକଙ୍କ ମତରେ ଏହି ଲୋକ କଥା ବା କାହାଣୀର ଧାରା ଅବାରିତ ସ୍ରୋତରେ ଗତିକରି ବେଦରେ ପ୍ରବେଶ କରିଛି ଏବଂ ପରେ ବେଦ ଲିଖିତ ରୂପ ଧାରଣ କରିବାରୁ ଭାରତୀୟ ଆର୍ଯ୍ୟଙ୍କର 'ଋଗ୍' ବେଦହିଁ ହେଉଛି ପ୍ରଥମ ଲିଖିତ କାହାଣୀ । ସମୟାନୁକ୍ରମେ ଅନେକ ପରିବର୍ତ୍ତନ ଶୀଳ କାହାଣୀ ବେଦ, ଉପନିଷଦ, ବ୍ରାହ୍ମଣଗ୍ରନ୍ଥ, ଜାତକ କଥା ଇତ୍ୟାଦିରେ ନିର୍ଦ୍ଦିଷ୍ଟ ଭାବରେ ରୂପଲାଭ କରି ତା'ର ପରିବେଶରୁ ମୁକୁଳି ଆସି ଆନ୍ତର୍ଜାତ୍ୟାଭିମୁଖୀ ହୋଇଛି । କିନ୍ତୁ ଯେଉଁ କଥା ବା କାହାଣୀ ଗୁଡିକ କୌଣସି ନିର୍ଦ୍ଦିଷ୍ଟ ସାହିତ୍ୟିକ ପୃଷ୍ଠଭୂମି ଉପରେ ସ୍ଥାନ ଲାଭ କରିପାରି ନାହିଁ । ତାହା ସମୟର ସ୍ରୋତ ସଙ୍ଗେ ସମତାଳ ଦେଇ ମାନବର ମୁଖରେ ରହିଅଛି ଏବଂ କେତେକ ବିସ୍ମୃତି ଗର୍ଭରେ କେବେଠୁ ଲୀନ ହୋଇ ଯାଇଛନ୍ତି । ଅଧୁନା କେତେକ ଗବେଷକ ତଥା ସଂଗ୍ରାହକ ଏହି କଥିତ କାହାଣୀ ବା ଲୋକଗୀତ ଗୁଡିକୁ ଲିଖିତ ରୂପଦେଇ ତାର ପରିବର୍ତ୍ତନଶୀଳତାରେ ଗୋଟିଏ ପୂର୍ଣ୍ଣଚ୍ଛେଦ ପକାଉଥିଲେ ସୁଦ୍ଧା ତାଙ୍କ ଠାରେ ଆମେ ଚିରକୃତଜ୍ଞ ହୋଇ ରହିବା; କାରଣ ଯେଉଁ ଲୋକ କାହାଣୀ ଗୁଡିକ ଭବିଷ୍ୟତରେ ବିସ୍ମୃତି ଗର୍ଭରେ ଲୀନ ହେବାର ସଂଭାବନା ଅଛି ସେମାନଙ୍କ ଲେଖନୀ ମୁନରେ ସ୍ଥାୟୀରୂପ ଧାରଣ କରି ଭବିଷ୍ୟତ ପାଇଁ ଗନ୍ଥାଘରରେ ଗଚ୍ଛିତ ହୋଇ ରହୁଛି ।

ଲୋକ କାହାଣୀର ବିବର୍ତ୍ତନ ଧାରାପ୍ରତି ଦୃଷ୍ଟି ନିକ୍ଷେପ କଲେ ଏହାର ସଂଜ୍ଞା ନିରୂପଣ କରି ଆମେ ଶେଷ ସିଦ୍ଧାନ୍ତ ରେ ଉପନୀତ ହୋଇ କହିପାରିବା ଯେ ଲୋକମାନଙ୍କ ଦ୍ୱାରା ଲୋକମାନଙ୍କ ପାଇଁ ସୃଷ୍ଟି ଏବଂ ଲୋକମାନଙ୍କ ଭିତରେ ପରଂପରାକ୍ରମେ ମୌଖିକ ରୀତିରେ ପ୍ରଚଳିତ କାହାଣୀ ଗୁଡିକହିଁ ହେଉଛି 'ଲୋକ କଥା' ବା 'ଲୋକ କାହାଣୀ' । ଭାରତ ତଥା ପୃଥିବୀର ବିଭିନ୍ନାଞ୍ଚଳରେ ପ୍ରଚଳିତ କେତେକ କାହାଣୀ ଗୁଡିକରେ କେନ୍ଦ୍ରବିନ୍ଦୁ ଏକ ହୋଇଥିଲେ ହେଁ ଏହାର ବାହ୍ୟ ରୂପରେ ଏବଂ ପାର୍ଶ୍ୱ ଘଟଣା ବିନ୍ୟାସରେ ସ୍ଥାନାଦିକ୍ରମେ ଭିନ୍ନ ଭିନ୍ନ ରୂପ ଧାରଣ କରିଥାଏ । ଏପରି କେତେ 'ଲୋକକାହାଣୀ' ଅଛି ଯାହାକି ପରଂପରା କ୍ରମେ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ରହି ଆସିଛି ଏବଂ ତାହା ଅନ୍ୟ ସ୍ଥାନକୁ ଏପର୍ଯ୍ୟନ୍ତ ବି ସଂକ୍ରମିତ ହୋଇ ପାରି ନାହିଁ । ଠିକ୍ ଏହିପରି ଓଡ଼ିଶାରେ ପ୍ରଚଳିତ ବିଭିନ୍ନ କଥା ବା କାହାଣୀ ଗୁଡିକର ସ୍ୱରୂପ ଏକ ହୋଇଥବା ସତ୍ତ୍ୱେ ସ୍ଥାନାଦିକ୍ରମେ ଭିନ୍ନତା ପରିଲକ୍ଷିତ

ହୋଇଥାଏ । ତନ୍ମଧ୍ୟରୁ ପଶ୍ଚିମ ଓଡ଼ିଶାରେ ପ୍ରଚଳିତ ଲୋକକଥା, ଲୋକକାହାଣୀ, 'କଥାନି' ବା 'କଥୋନ' ଅନ୍ୟତମ । ଏହାର ଗଠନ କୌଶଳ, କଥନଶୈଳୀ ଇତ୍ୟାଦି ଓଡ଼ିଶାର ବିଭିନ୍ନାଂଚଳରେ ପ୍ରଚଳିତ ଲୋକ କାହାଣୀଠାରୁ କ୍ୱଚିତ ଭିନ୍ନ ଅଟେ ।

ପଶ୍ଚିମ ଓଡ଼ିଶାରେ ପ୍ରଚଳିତ 'ଲୋକ କାହାଣୀ' ବା 'କଥାନି' ଗୁଡିକ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇପାରେ, ୧. ଧାର୍ମିକ, ୨.କାଳ୍ପନିକ, ୩.କିମ୍ବଦନ୍ତୀମୂଳକ ବା 'ଲକ୍‌ଠକ୍ ପୁରାଣ' ତଥା ଧାର୍ମିକ କାହାଣୀ ଗୁଡିକର କଥାବସ୍ତୁ ପ୍ରଧାନତଃ ବିଭିନ୍ନ ଦେବାଦେବୀଙ୍କର ବିଶ୍ୱାସ ଉପରେ ପ୍ରତିଷ୍ଠିତ । ଏହା ପ୍ରଚଳିତ ଓଷା, ବ୍ରତ, ତିହାର୍ ବାହାର୍' ଇତ୍ୟାଦି ଦେବଦେବୀ ପୂଜାନୁଷ୍ଠାନ ସହିତ ଜଡିତ । ଉଦାହରଣ ସ୍ୱରୁପ ନାଗୁଣୀ ଚଉଠି ବ୍ରତ, ଷଠୀ ଅଷ୍ଟାରୀବ୍ରତ, ପୁଅ ଜୀଉଁତିଆ ଓଷା, କଳାସୀ, କରମସାନୀ ବା 'କରମା' ଇତ୍ୟାଦି ପ୍ରଧାନ । ପ୍ରତ୍ୟେକ ଓଷା ବ୍ରତ ବା ଦେବଦେବୀ ପୂଜାନୁଷ୍ଠାନ ପଶ୍ଚାତରେ ଗୋଟିଏ ଗୋଟିଏ ଲୋକ କାହାଣୀ 'କଥନି' ସଂପୃକ୍ତ ଅଛି । ଏତଦ୍ ବ୍ୟତୀତ ଆହୁରି ଅନେକ ଓଷା, ବ୍ରତ ବା ଦେବଦେବୀ ପୂଜା ଓ ଧର୍ମାନୁଷ୍ଠନ ସଂପର୍କିତ କଥା ବାକାହାଣୀର ପ୍ରଚଳନ ଅଛି, ଯାହାକି ଓଡ଼ିଶାର ପ୍ରାୟ ସର୍ବତ୍ର ପରିଲକ୍ଷିତ ହୁଏ । ତଥାପି ପୂର୍ବୋକ୍ତ ଓଷା ବ୍ରତ ବା ନାନା ପୂଜାକର୍ମର 'ପୁଅ ଜୀଉଁତିଆ' ଓଷା ବ୍ୟତିତ ସମସ୍ତ ନିଛକ ପଶ୍ଚିମ ଓଡ଼ିଶାରୁ ସୃଷ୍ଟି ବୋଲି ମନେ ହୁଏ । ପୁଅଜୀଉଁତିଆ ଓଷାଟି ଓଡ଼ିଶାର ଅନେକାଞ୍ଚଳରେ ପାଳିତ ହେଉଥିଲେ ହେଁ ପଶ୍ଚିମ ଓଡ଼ିଶାରେ ଏହାର ଯେତେ ପ୍ରାଧାନ୍ୟ ଅଛି ତାହା ଅନ୍ୟଠାରେ ଦୁର୍ଲଭ । ତେଣୁ ଏହା ମଧ ପଶ୍ଚିମ ଓଡ଼ିଶାରୁ ସୃଷ୍ଟି ବୋଲି ମନେହୁଏ ।

ଧାର୍ମିକ କଥାବସ୍ତୁ ସ୍ଥିତି କାହାଣୀ ମଣିଷମନରେ ଯେତେ ପ୍ରଭାବ ପକାଇ ପାରେ କାଳ୍ପନିକ କାହାଣୀ ତା'ଠୁ ବଳି ଅଧିକ ପ୍ରଭାବ ପକାଇବା ପାଇଁ ସକ୍ଷମ ହୋଇଥାଏ । କୌଣସି ଧର୍ମ ସଂପର୍କିତ ବା ଦେବଦେବୀ ସଂପର୍କିତ କାହାଣୀକୁ ମଣିଷ ଅକ୍ଷୈକିକ ଚରିତ୍ର ଗୁଡିକର ମରାମତି ବୋଲି ଧରିନେଲାବେଳେ କାଳ୍ପନିକ କଥା ବସ୍ତୁଭିତ୍ତିକ କାହାଣୀ ଶୁଣି ସେ ନିଜପ୍ରତି ସଚେତନ ଶୀଳ ହୁଏ । ଏଣୁ କାଳ୍ପନିକ କାହାଣୀ ହେଉଛି ମଣିଷର ଖୁବ୍ ପ୍ରିୟ ଏବଂ ଏହା ତା'ଉପରେ ଯୁଗେ ଯୁଗେ ପ୍ରଭାବ ପକାଇ ଆସୁଅଛି । ଏହି କାଳ୍ପନିକ କାହାଣୀ ମଧରେ ସ୍ରଷ୍ଟା ବାସ୍ତବତାର କିଛିଟା ଆଭାସ ଦେଇ ଶ୍ରୋତା ମନରେ ହର୍ଷ, ଆନନ୍ଦ ଓ ତନ୍ମୟର ରେଖା ଅଙ୍କନ କରି ନୀତିବାଣୀ ଶୁଣାଇ ଥାଏ । ଏଗୁଡିକର ସାଧାରଣତଃ ଉପଦେଶ, ଭୁତପ୍ରେତ, ଚୋର ଡକେଇତ, ଠକଶଠ , ପଶୁପକ୍ଷୀ, ରାଜାପୁଅ, ମନ୍ତ୍ରୀପୁଆ ବା ସାଧାରଣ ସ୍ତରରେ ନରନାରୀଙ୍କୁ ନେଇ ଗଠିତ ହୋଇଥାଏ । ଏଠାରେ ମାନବତାର ଚରିତ୍ର ଗୁଡିକ ମଧ ପରସ୍ପର ଭାବ ବିନିମୟ କରିବା ସଙ୍ଗେ ସଙ୍ଗେ ମଣିଷ ସହିତ ଭାବ ବିନିମୟ କରି ତାକୁ ଆଦର୍ଶ ମାର୍ଗର ପଥିକ ହେବାକୁ ଦର୍ଶାଇ ଥାନ୍ତି । 'ଅରକ୍ଷିତଙ୍କୁ ଦଇବ

ସାହା' (୧) ଶୀର୍ଷକ ସମ୍ବଲପୁର ଲୋକଗଳ୍ପରେ ଦୁଃଖୀ ବିଭିନ୍ନ ପ୍ରକାରର ମାନବତାର ଚରିତ୍ର ଯଥା ଗାଈ, କପାଗଛ, ଡିମିରଗଛ, 'ବାଂଜିବୁଟା' ଇତ୍ୟାଦିର ସହିତ ମାନବୋଚିତ କଥାବାର୍ତ୍ତା କରିଛି ତତ୍ ସଙ୍ଗେ ସଙ୍ଗେ ସେମାନେ ଦଃଖୀକୁ ସାହାଯ୍ୟ କରିଛନ୍ତି । 'ସରବଜାନ୍' (୨) 'କଥାଥି' ଟିରେ ମଧ ବୁଢ଼ା 'ପାଏନ ଛିଇଁଲା ବେଲ୍‌କେ' ବେଙ୍ଗମାନଙ୍କର କଥାବାର୍ତ୍ତା ଶୁଣିପାରିଛି ଏବଂ ତାହା ତା'ର ଭବିଷ୍ୟତ ଜୀବନରେ ସୁଯୋଗ ଆଣିଦେଇଛି । ଉକ୍ତ 'କଥାନି' ଦ୍ୱୟ ସମେତ; ଏକ ଶୀର୍ଷକ ବିହୀନ ଲୋକଗଳ୍ପ' ରେ (୩) ମଣିଷ ଜୀବନର ସୁଖଦୁଃଖ ପୂର୍ଣ୍ଣ କାହାଣୀ ଲିପିବଦ୍ଧ ହୋଇଛି । ଏହିପରି ବିଭିନ୍ନ ଲୌକିକ ଓ ଅଲୌକିକ କାହାଣୀର ସମାହାର ଆମ ପଶ୍ଚିମ ଓଡ଼ିଶାର ଲୋକଗଳ୍ପରେ ଦେଖିବାକୁ ମିଳେ ।

ସମ୍ବଲପୁରୀ ଲୋକ କାହାଣୀ ତୃତୀୟ ବିଭାଗଟି ହେଉଛି କିମ୍ବଦନ୍ତୀମୂଳକ କାହାଣୀ ବା 'ଲକ ଠକ୍ ପୁରାଣ' କଥା । ପୃଥିବୀର ପ୍ରାୟ ଅଧିକାଂଶ ତୀର୍ଥସ୍ଥାନ, ମନ୍ଦିର, ଦେବଦେବୀ ବା କୌଣସି ବିଶିଷ୍ଟ ନାମଧାରଣ କରିଥିବା ସ୍ଥାନ ଗୁଡିକ ସହିତ ଗୋଟାଏ ଗୋଟାଏ କିମ୍ବଦନ୍ତୀ ମୂଳକ କାହାଣୀ ସଂଶ୍ଳିଷ୍ଟ ଅଛି; ଯେଉଁ କିମ୍ବଦନ୍ତୀ ଯୋଗୁଁ କି ସେହି ସ୍ଥାନର ପବିତ୍ରତା ସହିତ ସେଠାକାର ଅଧିବାସୀମାନେ ଦେବଦେବୀ ବା ମନ୍ଦିରର ଅଲୌକିକ ମହିମା କୀର୍ତ୍ତନ କରିଥାନ୍ତି । ଏହାଦ୍ୱାରା ସେଠାକାର ମହତ୍ତ୍ୱ ପ୍ରଖ୍ୟାପିତ ହେବା ସଙ୍ଗେ ସଙ୍ଗେ ଲୋକ ମୁଖରେ ସଂପୃକ୍ତ କିମ୍ବଦନ୍ତୀ ସାଧାରଣତଃ ପୌରାଣିକ, ଦେବଦେବୀ ବିଷୟକ ଏବଂ ଐତିହାସିକ ଭାବରେ ବିହ୍ନିତ । ଏହି ପରିପ୍ରେକ୍ଷୀରେ ସମ୍ବଲପୁର ତଥା ପଶ୍ଚିମ ଓଡ଼ିଶାର ଦୁଇତିନୋଟି କିମ୍ବଦନ୍ତୀ ମୂଳକ ଲୋକ କଥାକୁ ଏଠାରେ ଉଦ୍ଧାର କରାଯାଇପାରେ । ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମା' ସମଲାଇ ଓ ସମଲେଶ୍ୱରୀ । ଏହାଙ୍କ ସମ୍ବଲପୁରର ଆବିର୍ଭାବ ପଶ୍ଚାତ୍‌ରେ ଏକ ପୌରାଣିକ କିମ୍ବଦନ୍ତୀ ମୂଳକ କାହାଣୀ ଜଡିତ ଅଛି । ରାମାୟଣ କଥା ବସ୍ତୁରେ ମହୀରାବଣ ଯେତେବେଳେ ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ନେଇ ଲଙ୍କାଗଡର ଅଧିଷ୍ଠାତ୍ରୀ ଦେବୀ ଲଙ୍କେଶ୍ୱରୀଙ୍କ ନିକଟରେ ବଳି ଦେବା ନିମିତ୍ତ ଏମାନଙ୍କୁ ମୁଣ୍ଡିଆ ମାରିବାକୁ କହିଛି ସେତେବେଳେ ହନୁମାନରେ କୌଶଳକ୍ରମେ ରାମଲକ୍ଷଣ ଆମ୍ଭେ ରାଜପୁତ ମୁଣ୍ଡିଆ ମାରି ଜାଣୁନାହିଁ ବୋଲି କହିଲେ । ଫଳରେ ମହୀରାବଣ ତାର ନମୁନା ଦେଖାଇବା ପାଇଁ ମୁଣ୍ଡିଆ ମାରିବାକୁ ହନୁମାନ ଲଙ୍କେଶ୍ୱରୀ ଦେବୀଙ୍କୁ ପଦାଘାତ କରି ଏବଂ ମହୀରାବଣକୁ ଅସ୍ତ୍ରାଘାତ କରି

୧. ଗବେଷକ ଶ୍ରୀଯୁକ୍ତ ନିମାଇଁ ଚରଣ ପଣ୍ଡାଙ୍କ ଦ୍ୱାରା ସଂଗୃହୀତ ଓ 'ହୀରାଖଣ୍ଡ' ଦୈନିକ ପତ୍ରିକାରେ ପ୍ରକାଶିତ ।

୨/୩. ଶ୍ରୀଯୁକ୍ତ ନିମାଇଁ ଚରଣ ପଣ୍ଡାଙ୍କ ଦ୍ୱାରା ସଂଗୃହୀତ ଓ 'କୋଶଳ' ଦୈନିକ ପତ୍ରିକାରେ ପ୍ରକାଶିତ ।

ରାମଲକ୍ଷ୍ମଣଙ୍କୁ ନେଇ ପଳାଇ ଆସିଛି । ଏହି ଅପମାନ ସହ୍ୟ କରି ନ ପାରି ଲଙ୍କେଶ୍ୱରୀ ସେହିସ୍ଥାନ ତ୍ୟାଗକରି ସମଲେଶ୍ୱରୀ ନାମ ଧାରଣ କରି ସମ୍ବଲପୁରରେ ଅଧିଷ୍ଠାନ କଲେ । ସେହିପରି ହୁମାର ମହେଶ୍ୱର ମନ୍ଦିର ସ୍ୱୟଂ ବିଶ୍ୱକର୍ମାଙ୍କ ତିଆରି ବୋଲି କିମ୍ବଦନ୍ତୀ ଏ ପର୍ଯ୍ୟନ୍ତ ବି ପ୍ରଚଳିତ । ଉକ୍ତ ମନ୍ଦିରର ଯେଉଁ ପାର୍ଶ୍ୱକୁ ନିରୀକ୍ଷଣ କଲେ ତେରଛା ଦେଖାଯିବାର ପ୍ରମାଣ ଏ ପର୍ଯ୍ୟନ୍ତ ବି ବିଦ୍ୟମାନ । ଉକ୍ତ ମନ୍ଦିରର ନିର୍ମାତା 'ହୋତା' ବଂଶଙ୍କ ବିନାଶ ଏବଂ ମନ୍ଦିର ନିକଟରେ ଥିବା ପ୍ରସ୍ତରର ମାଛବିକାଳି ନାରୀ ମୂର୍ତ୍ତିଟି ସହିତ ମଧ୍ୟ ଏକ କିମ୍ବଦନ୍ତୀମୂଳକ କାହାଣୀ ସଂପୃକ୍ତ ଆଖଣ୍ଡଳମଣୀ ଗାଈ ପରି ଏହି ମନ୍ଦିର ତିଆରି ହେବା ପୂର୍ବରୁ ଗୋଟାଏ ଗାଈ ପାରି ହୋଇ ଲିଙ୍ଗ ଉପରେ ଦୈନନ୍ଦିନ କ୍ଷୀରଦାନ କରୁଥିବା କିମ୍ବଦନ୍ତୀ ଏବେବି ଲୋକମୁଖରେ ଜୀବିତ ।

ପଶ୍ଚିମ ଓଡ଼ିଶାର ବିଭିନ୍ନ ଗଡ଼ଜାତ ଅଞ୍ଚଳ ତଥା ଜମିଦାରୀ ଅଞ୍ଚଳ ଗୁଡ଼ିକ ସହିତ ଅନେକ ଐତିହାସିକ କିମ୍ବଦନ୍ତୀମୂଳକ କାହାଣୀ ବା 'କଥାନି' ଏ ପର୍ଯ୍ୟନ୍ତ ବି ଲୋକ ମୁଖରେ ପ୍ରଚଳିତ ଅଛି । ଏତଦ୍ ଭିନ୍ନ ପଶ୍ଚିମ ଓଡ଼ିଶାର ବାର ପାହାଡ ନୃସିଂହନାଥ, ବୁଢ଼ାରଜା, ପପଙ୍ଗା ପ୍ରଭୃତି ପାହାଡ ସହିତ ମଧ୍ୟ କେତେକ ଐତିହାସିକ କିମ୍ବଦନ୍ତୀ ରହିଛି । ତାହା କୌଣସି ସଂଗ୍ରହ ବା ପ୍ରକାଶର ବହିର୍ଭୁକ୍ତ ହେଲେ ସୁଦ୍ଧା ଏଠାରେ ଉପସ୍ଥାପନ କରିବା ବୋଧହୁଏ ଅପ୍ରାଙ୍ଗିକ ହେବନାହିଁ । ବର୍ଗୀଲୁଣ୍ଠନ ସମୟରେ ବା ଇଂରେଜମାନଙ୍କ ସହିତ ପଶ୍ଚିମ ଓଡ଼ିଶାର ବୀରସନ୍ତାନ ବୀର ସୁରେନ୍ଦ୍ର ସାଏଙ୍କ ଲଢ଼େଇ ସମୟରେ ରାଜା ଜମିଦାରମାନେ ଏକଜୁଟ ହୋଇ ପପଙ୍ଗା ପାହାଡର ଶୀର୍ଷ ଦେଶରେ ଶହ ଶହ ମହଣ ଓଜନର ପ୍ରସ୍ତର ଖଣ୍ଡଗୁଡିକ ଶକ୍ତିଶାଳୀ ଲତା ମାନଙ୍କଦ୍ୱାରା ଦୃଢଭାବରେ ଅଟକାଇ ରଖୁଥିଲେ ଏବଂ ଶତ୍ରୁ ପାହାଡର ନିକଟବର୍ତ୍ତୀ ହେଲେ ଟାଙ୍ଗିଆ ସାହାଯ୍ୟରେ ଏକା ସାଥୀରେ ଅନେକ ପଥରରେ ବନ୍ଧା ଲତାଗୁଡିକୁ କାଟି ଦେଉଥିଲେ ଫଳରେ ପଥର ଗଡିଗଡି ଆସି ଶତ୍ରୁମାନଙ୍କୁ ଚୂର୍ଣ୍ଣୀ ଭୂତ କରିଦେଉଥିଲା ।

ଉକ୍ତ କିମ୍ବଦନ୍ତୀ ମୂଳକ କଥା ଗୁଡିକ ଲୋକ ମାନଙ୍କ ମୁଖରେ ଏତେ ଜୋର୍‌ରେ ପ୍ରଭାବ ପକାଇଥାଏ ଯେ କେତେ ବ୍ୟକ୍ତି ଏହା କୌଣସି ପୁରାଣରେ ଥିବା କଥାବସ୍ତୁ ବୋଲି ମଣିଥାନ୍ତି । କିନ୍ତୁ କୌଣସି ଶାସ୍ତ୍ର ବା ପୁରାଣରେ ଏହାର ପ୍ରମାଣ ମିଳି ନ ପାରିବାରୁ ପଶ୍ଚିମ ଓଡ଼ିଶାର କେତେକ ଚୁର ବ୍ୟକ୍ତିମାନେ ତାକୁ 'ଲକ୍‌ଠକ୍ ପୁରାଣ' ବୋଲି ଆଖ୍ୟା ଦେଇଥାନ୍ତି । ତେଣୁ ପଶ୍ଚିମ ଓଡ଼ିଶାରେ କିମ୍ବଦନ୍ତୀ ମୂଳକ କାହାଣୀ ବୋଲି କିଛି ନଥିଲା ତାହା କେଉଁ ଅନାଦି କାଳରୁ 'ଲକ୍‌ଠକ୍ ପୁରାଣ' କଥା ନାମରେ ନାମିତ ହୋଇ ଆସୁଛି ।

ପୃଥିବୀର ପ୍ରତ୍ୟେକ ସ୍ଥାନରେ ଲୋକଗଳ୍ପ ପାଖ ନୁହେଁ ମୁଖ୍ୟତଃ ଏହା କାବ୍ୟ । ତଥାପି

ସାହା' (୧) ଶୀର୍ଷକ ସମ୍ବଲପୁର ଲୋକଗଳ୍ପରେ ଦୁଃଖୀ ବିଭିନ୍ନ ପ୍ରକାରର ମାନବତାର ଚରିତ୍ର ଯଥା ଗାଈ, କପାଗଛ, ତିମିରଗଛ, 'ବାଂଜିବୁଟା' ଇତ୍ୟାଦିର ସହିତ ମାନବୋଚିତ କଥାବାର୍ତ୍ତା କରିଛି ତତ୍ ସଙ୍ଗେ ସଙ୍ଗେ ସେମାନେ ଦଃଖୀକୁ ସାହାଯ୍ୟ କରିଛନ୍ତି । 'ସରବଜାନ୍' (୨) 'କଥାଥି' ଟିରେ ମଧ ବୁଡ୍ଡା 'ପାଏନ ଛିଇଁଲା ବେଲ୍‌କେ' ବେଙ୍ଗମାନଙ୍କର କଥାବାର୍ତ୍ତା ଶୁଣିପାରିଛି ଏବଂ ତାହା ତା'ର ଭବିଷ୍ୟତ ଜୀବନରେ ସୁଯୋଗ ଆଣିଦେଇଛି । ଉକ୍ତ 'କଥାନି' ଦ୍ୱୟ ସମେତ; ଏକ ଶୀର୍ଷକ ବିହୀନ ଲୋକଗଳ୍ପ' ରେ (୩) ମଣିଷ ଜୀବନର ସୁଖଦୁଃଖ ପୂର୍ଣ୍ଣ କାହାଣୀ ଲିପିବଦ୍ଧ ହୋଇଛି । ଏହିପରି ବିଭିନ୍ନ ଲୌକିକ ଓ ଅଲୌକିକ କାହାଣୀର ସମାହାର ଆମ ପଶ୍ଚିମ ଓଡ଼ିଶାର ଲୋକଗଳ୍ପରେ ଦେଖିବାକୁ ମିଳେ ।

ସମ୍ବଲପୁରୀ ଲୋକ କାହାଣୀ ତୃତୀୟ ବିଭାଗଟି ହେଉଛି କିମ୍ବଦନ୍ତୀମୂଳକ କାହାଣୀ ବା 'ଲକ ଠକ୍ ପୁରାଣ' କଥା । ପୃଥିବୀର ପ୍ରାୟ ଅଧିକାଂଶ ତୀର୍ଥସ୍ଥାନ, ମନ୍ଦିର, ଦେବଦେବୀ ବା କୌଣସି ବିଶିଷ୍ଟ ନାମଧାରଣ କରିଥିବା ସ୍ଥାନ ଗୁଡିକ ସହିତ ଗୋଟାଏ ଗୋଟାଏ କିମ୍ବଦନ୍ତୀ ମୂଳକ କାହାଣୀ ସଂଶ୍ଳିଷ୍ଟ ଅଛି; ଯେଉଁ କିମ୍ବଦନ୍ତୀ ଯୋଗୁଁ କି ସେହି ସ୍ଥାନର ପବିତ୍ରତା ସହିତ ସେଠାକାର ଅଧିବାସୀମାନେ ଦେବଦେବୀ ବା ମନ୍ଦିରର ଅଲୌକିକ ମହିମା କୀର୍ତ୍ତନ କରିଥାନ୍ତି । ଏହାଦ୍ୱାରା ସେଠାକାର ମହତ୍ତ୍ୱ ପ୍ରଖ୍ୟାପିତ ହେବା ସଙ୍ଗେ ସଙ୍ଗେ ଲୋକ ମୁଖରେ ସଂପୃକ୍ତ କିମ୍ବଦନ୍ତୀ ସାଧାରଣତଃ ପୌରାଣିକ, ଦେବଦେବୀ ବିଷୟକ ଏବଂ ଐତିହାସିକ ଭାବରେ ଚିହ୍ନିତ । ଏହି ପରିପ୍ରେକ୍ଷୀରେ ସମ୍ବଲପୁର ତଥା ପଶ୍ଚିମ ଓଡ଼ିଶାର ଦୁଇତିନୋଟି କିମ୍ବଦନ୍ତୀ ମୂଳକ ଲୋକ କଥାକୁ ଏଠାରେ ଉଦ୍ଧାର କରାଯାଇପାରେ । ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମା' ସମଲାଇ ଓ ସମଲେଶ୍ୱରୀ । ଏହାଙ୍କ ସମ୍ବଲପୁରର ଆବିର୍ଭାବ ପଶ୍ଚାତ୍‌ରେ ଏକ ପୌରାଣିକ କିମ୍ବଦନ୍ତୀ ମୂଳକ କାହାଣୀ ଜଡିତ ଅଛି । ରାମାୟଣ କଥା ବସ୍ତୁରେ ମହୀରାବଣ ଯେତେବେଳେ ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ନେଇ ଲଙ୍କାଗଡର ଅଧିଷ୍ଠାତ୍ରୀ ଦେବୀ ଲଙ୍କେଶ୍ୱରୀଙ୍କ ନିକଟରେ ବଳି ଦେବା ନିମିତ୍ତ ଏମାନଙ୍କୁ ମୁଣ୍ଡିଆ ମାରିବାକୁ କହିଛି ସେତେବେଳେ ହନୁମାନରେ କୌଶଳକ୍ରମେ ରାମଲକ୍ଷଣ ଆମ୍ଭେ ରାଜପୁତ ମୁଣ୍ଡିଆ ମାରି ଜାଣୁନାହିଁ ବୋଲି କହିଲେ । ଫଳରେ ମହୀରାବଣ ତାର ନମୁନା ଦେଖାଇବା ପାଇଁ ମୁଣ୍ଡିଆ ମାରିବାକୁ ହନୁମାନ ଲଙ୍କେଶ୍ୱରୀ ଦେବୀଙ୍କୁ ପଦାଘାତ କରି ଏବଂ ମହୀରାବଣକୁ ଅସ୍ତ୍ରାଘାତ କରି

୧. ଗବେଷକ ଶ୍ରୀଯୁକ୍ତ ନିମାଇଁ ଚରଣ ପଣ୍ଡାଙ୍କ ଦ୍ୱାରା ସଂଗୃହୀତ ଓ 'ହୀରାଖଣ୍ଡ' ଦୈନିକ ପତ୍ରିକାରେ ପ୍ରକାଶିତ ।

୨/୩. ଶ୍ରୀଯୁକ୍ତ ନିମାଇଁ ଚରଣ ପଣ୍ଡାଙ୍କ ଦ୍ୱାରା ସଂଗୃହୀତ ଓ 'କୋଶଳ' ଦୈନିକ ପତ୍ରିକାରେ ପ୍ରକାଶିତ ।

ରାମଲକ୍ଷ୍ମଣଙ୍କୁ ନେଇ ପଳାଇ ଆସିଛି । ଏହି ଅପମାନ ସହ୍ୟ କରି ନ ପାରି ଲଙ୍କେଶ୍ୱରୀ ସେହିସ୍ଥାନ ତ୍ୟାଗକରି ସମଲେଶ୍ୱରୀ ନାମ ଧାରଣ କରି ସମ୍ବଲପୁରରେ ଅଧିଷ୍ଠାନ କଲେ । ସେହିପରି ହୁମାର ମହେଶ୍ୱର ମନ୍ଦିର ସ୍ୱୟଂ ବିଶ୍ୱକର୍ମାଙ୍କ ତିଆରି ବୋଲି କିମ୍ବଦନ୍ତୀ ଏ ପର୍ଯ୍ୟନ୍ତ ବି ପ୍ରଚଳିତ । ଉକ୍ତ ମନ୍ଦିରର ଯେଉଁ ପାର୍ଶ୍ୱକୁ ନିରୀକ୍ଷଣ କଲେ ତେରଛା ଦେଖାଯିବାର ପ୍ରମାଣ ଏ ପର୍ଯ୍ୟନ୍ତ ବି ବିଦ୍ୟମାନ । ଉକ୍ତ ମନ୍ଦିରର ନିର୍ମାତା 'ହୋତା' ବଂଶଙ୍କ ବିନାଶ ଏବଂ ମନ୍ଦିର ନିକଟରେ ଥିବା ପ୍ରସ୍ତରର ମାଛବିକାଳି ନାରୀ ମୂର୍ତ୍ତିଟି ସହିତ ମଧ୍ୟ ଏକ କିମ୍ବଦନ୍ତୀମୂଳକ କାହାଣୀ ସଂପୃକ୍ତ ଆଖଣ୍ଡଳମଣୀ ଗାଈ ପରି ଏହି ମନ୍ଦିର ତିଆରି ହେବା ପୂର୍ବରୁ ଗୋଟାଏ ଗାଈ ପାରି ହୋଇ ଲିଙ୍ଗ ଉପରେ ଦୈନନ୍ଦିନ କ୍ଷୀରଦାନ କରୁଥିବା କିମ୍ବଦନ୍ତୀ ଏବେବି ଲୋକମୁଖରେ ଜୀବିତ ।

ପଶ୍ଚିମ ଓଡ଼ିଶାର ବିଭିନ୍ନ ଗଡ଼ଜାତ ଅଞ୍ଚଳ ତଥା ଜମିଦାରୀ ଅଞ୍ଚଳ ଗୁଡ଼ିକ ସହିତ ଅନେକ ଐତିହାସିକ କିମ୍ବଦନ୍ତୀମୂଳକ କାହାଣୀ ବା 'କଥାନି' ଏ ପର୍ଯ୍ୟନ୍ତ ବି ଲୋକ ମୁଖରେ ପ୍ରଚଳିତ ଅଛି । ଏତଦ୍ ଭିନ୍ନ ପଶ୍ଚିମ ଓଡ଼ିଶାର ବାର ପାହାଡ ନୃସିଂହନାଥ, ବୁଢ଼ାରଜା, ପପଙ୍ଗା ପ୍ରଭୃତି ପାହାଡ ସହିତ ମଧ୍ୟ କେତେକ ଐତିହାସିକ କିମ୍ବଦନ୍ତୀ ରହିଛି । ତାହା କୌଣସି ସଂଗ୍ରହ ବା ପ୍ରକାଶର ବହିର୍ଭୁକ୍ତ ହେଲେ ସୁଦ୍ଧା ଏଠାରେ ଉପସ୍ଥାପନ କରିବା ବୋଧହୁଏ ଅପ୍ରାଙ୍ଗିକ ହେବନାହିଁ । ବର୍ଗୀଲୁଣ୍ଠନ ସମୟରେ ବା ଇଂରେଜମାନଙ୍କ ସହିତ ପଶ୍ଚିମ ଓଡ଼ିଶାର ବୀରସନ୍ତାନ ବୀର ସୁରେନ୍ଦ୍ର ସାଏଙ୍କ ଲଢ଼େଇ ସମୟରେ ରାଜା ଜମିଦାରମାନେ ଏକଜୁଟ ହୋଇ ପପଙ୍ଗା ପାହାଡର ଶୀର୍ଷ ଦେଶରେ ଶହ ଶହ ମହଣ ଓଜନର ପ୍ରସ୍ତର ଖଣ୍ଡଗୁଡିକ ଶକ୍ତିଶାଳୀ ଲତା ମାନଙ୍କଦ୍ୱାରା ଦୃଢଭାବରେ ଅଟକାଇ ରଖୁଥିଲେ ଏବଂ ଶତ୍ରୁ ପାହାଡର ନିକଟବର୍ତ୍ତୀ ହେଲେ ଟାଙ୍ଗିଆ ସାହାଯ୍ୟରେ ଏକା ସାଥୀରେ ଅନେକ ପଥରରେ ବନ୍ଧା ଲତାଗୁଡିକୁ କାଟି ଦେଉଥିଲେ ଫଳରେ ପଥର ଗଡିଗଡି ଆସି ଶତ୍ରୁମାନଙ୍କୁ ଚୂର୍ଣ୍ଣୀ ଭୂତ କରିଦେଉଥିଲା ।

ଉକ୍ତ କିମ୍ବଦନ୍ତୀ ମୂଳକ କଥା ଗୁଡିକ ଲୋକ ମାନଙ୍କ ମୁଖରେ ଏତେ ଜୋର୍‌ରେ ପ୍ରଭାବ ପକାଇଥାଏ ଯେ କେତେ ବ୍ୟକ୍ତି ଏହା କୌଣସି ପୁରାଣରେ ଥିବା କଥାବସ୍ତୁ ବୋଲି ମଣିଥାନ୍ତି । କିନ୍ତୁ କୌଣସି ଶାସ୍ତ୍ର ବା ପୁରାଣରେ ଏହାର ପ୍ରମାଣ ମିଳି ନ ପାରିବାରୁ ପଶ୍ଚିମ ଓଡ଼ିଶାର କେତେକ ଚତୁର ବ୍ୟକ୍ତିମାନେ ତାକୁ 'ଲକ୍‌ଠକ୍ ପୁରାଣ' ବୋଲି ଆଖ୍ୟା ଦେଇଥାନ୍ତି । ତେଣୁ ପଶ୍ଚିମ ଓଡ଼ିଶାରେ କିମ୍ବଦନ୍ତୀ ମୂଳକ କାହାଣୀ ବୋଲି କିଛି ନଥିଲା ତାହା କେଉଁ ଅନାଦି କାଳରୁ 'ଲକ୍‌ଠକ୍ ପୁରାଣ' କଥା ନାମରେ ନାମିତ ହୋଇ ଆସୁଛି ।

ପୃଥିବୀର ପ୍ରତ୍ୟେକ ସ୍ଥାନରେ ଲୋକଗଳ୍ପ ପାଖ ନୁହେଁ ମୁଖ୍ୟତଃ ଏହା କାବ୍ୟ । ତଥାପି

ଏହାର ଗଠନ କୌଶଳର ଗୋଟାଏ ନିର୍ଦ୍ଦିଷ୍ଟ ବିଧିବଦ୍ଧ ଆରମ୍ଭ, ଆଗ୍ରେହ, ଶୀର୍ଷ ଓ ଗ୍ରନ୍ଥିମାନେ ଥାଏ; ଯାହାକି ଲିଖିତ କାହାଣୀ ବା ଗଳ୍ପର ଏକ ପ୍ରଧାନ ବୈଶିଷ୍ଟ୍ୟ । ବୋଧହୁଏ ଲୋକଗଳ୍ପରେ ଏଇ ଗଠନ କୌଶଳଠାରୁ ପରବର୍ତ୍ତୀ ଉପନ୍ୟାସ ବା ଗଳ୍ପର ଜନ୍ମ ହୋଇଛି । ଲୋକଗଳ୍ପ, ଉପନ୍ୟାସ ବା କ୍ଷୁଦ୍ରଗଳ୍ପ ପରି ଗୋଟାଏ କଥାବସ୍ତୁକୁ କେନ୍ଦ୍ରକରି ଗୋଟାଏ ନିର୍ଦ୍ଦିଷ୍ଟ ଦିଗକୁ ଧାବିତ ହେଉଥିଲେ ମଧ୍ୟ ସ୍ଥାନେ ସ୍ଥାନେ ତାର ଗତିର ମୋଡ଼ ବଦଳାଇ ଦେଇ କେତେକ ଅପ୍ରାସଙ୍ଗିକ କଥାର ଉପସ୍ଥାପନା କରିଥାଏ ଶ୍ରୋତା, ସଚେତନ ବ୍ୟକ୍ତିନ ହେଲେ ତାହା ସହଜରେ ଧରି ନପାରି ଗଳ୍ପର ସୁଅରେ ନିଜକୁ ଭସାଇ ଦେଇଥାଏ । ପୃଥିବୀର ପ୍ରାୟ ସମସ୍ତ ଲୋକଗଳ୍ପର ଗଠନ କୌଶଳରେ ସାଦୃଶ୍ୟ ପରିଦୃଷ୍ଟ ହେଲେ ମଧ୍ୟ ଏହାର କଥନ ଶୈଳୀରେ ସ୍ଥାନାଦିକ୍ରମେ ବୈଭିନ୍ନ ଦେଖାଯାଇଥାଏ । ଓଡ଼ିଆ ଲୋକକଥା ଏବଂ ପଶ୍ଚିମ ଓଡ଼ିଶାର ଲୋକକଥା ବା ସମ୍ବଲପୁରୀ ଗଳ୍ପରେ ସେହି ବୈଭିନ୍ନ ପରିଲକ୍ଷିତ ହୋଇଥାଏ ।

ଓଡ଼ିଶାରେ ସାଧାରଣତଃ ସନ୍ଧ୍ୟାସମୟରେ ଶୀତଋତୁର ପ୍ରଚଣ୍ଡ ଶୀତରେ ଆଇମା' ଉହ୍ନେଇ ଚତୁପାର୍ଶ୍ୱରେ ନିଜର ଛୋଟ ଛୋଟ ନାତି ନାତୁଣୀମାନଙ୍କୁ ବସାଇ ଗପ ବା କଥାନି' କହିବାରେ ଅଭ୍ୟସ୍ତ ଥାଏ । ଯାହା ଫଳରେ କି ଶିଶୁମାନେ ପରସ୍ପର କଳିକଳିଆ ନକରି ଅତ୍ୟନ୍ତ ଉତ୍କଣ୍ଠା ଓ ଆବେଗର ସହ ଶୀତକୁ ଭୁଲିଯାଇ ଅପେକ୍ଷା କରିଥାନ୍ତି ଗପର ପରବର୍ତ୍ତୀ ଘଟଣାକୁ ଶୁଣିବା ପାଇଁ କେବଳ ଶିଶୁ ନୁହନ୍ତି ଆବାଳ ବୃଦ୍ଧ ବନିତା ମଧ୍ୟ ଏହାର ଶ୍ରୋତା ହେବାପାଇଁ ଉତ୍କଣ୍ଠିତ । ଏହି ପରିପ୍ରେକ୍ଷୀରେ ଶ୍ରୋତାର ଚିତ୍ତକୁ ଆଲୋଡ଼ିତ କରିପାରିବା ଭଳି କଥକର ବାଗ୍ମିତା ଓ ବଳିଷ୍ଠ ବ୍ୟକ୍ତିତ୍ୱ ଥିବାର ଦରକାର । କଥକକୁ ଏକାଧାରରେ କଥକ, ଗାୟକ, ଅଭିନେତା, ବାଦକ ଇତ୍ୟାଦି ସାଜିବାକୁ ପଡ଼ିଥାଏ । ଗପର ଚରିତ୍ର ଗୁଡ଼ିକ ଶତକଡ଼ା ଏକଶତ ଭାଗ ମନ୍ଦ କରି ଚିତ୍ରଣ କରିବା ଦକ୍ଷତା ତା'ର ଥାଏ । କଥକର ପ୍ରକାଶଭଙ୍ଗୀ ଶ୍ରୋତା ମାନଙ୍କର ପ୍ରାଣରେ ହସ, କାନ୍ଦ, ହର୍ଷ, ବିଷାଦ ଆନନ୍ଦ, ବିସ୍ମୟ ଆଦି ରସ ଭରିଦିଏ । ଅଭ୍ୟସ୍ତ ଶିଶୁମାନେ ଯେତେବେଳେ ସମୟ ଉଣ୍ଡି ବୁଢ଼ୀମା'ଙ୍କୁ କାହାଣୀ କହିବାକୁ ଅନୁରୋଧ କରନ୍ତି ଆଇମା' କହେ- 'ସୁଖ କହିବି କି ଦୁଃଖ କହିବି, ନା, ଯାହା ଅଙ୍ଗେ ନିଭେଇଛି ତାହା କହିବି ? ଠିକ୍ ସେହିପରି ପଶ୍ଚିମ ଓଡ଼ିଶର 'କଥାନି'ର ଆରମ୍ଭ ହୁଏ କଥକର ମନର ଗୋଟାଏ ଆବେଗକୁ ନେଇ । ଏଇଠି ମଧ୍ୟ କଥକ ପ୍ରଥମେ ଶ୍ରୋତାକୁ ପଚାରେ 'ସୁଖ୍ କହେମି, କି ଦୁଃଖ୍ କହେମି ?'' ଉକ୍ତ ପ୍ରାରମ୍ଭିକ ଆତ୍ମସ୍ୱୀକାରୋକ୍ତିରେ ମନେହୁଏ ସତେ ଯେପରି କଥକ ଯାହା କହିବାକୁ ଯାଉଛି ନିଜକୁ ଗୋଟିଏ ସୂତ୍ରଧର ଭାବରେ ଉପସ୍ଥାପନ କରି ବକ୍ତବ୍ୟ ଆରମ୍ଭ କରୁଛି । ତା'ପରେ ଶ୍ରୋତାଙ୍କ ନିର୍ଦ୍ଦେଶାନୁଯାୟୀ ଆରମ୍ଭ ହୁଏ ଯେ କୌଣସି

ଗୋଟାଏ ପ୍ରକାରର କାହାଣୀ ବା କଥାନି' ପ୍ରାୟତଃ ପ୍ରତ୍ୟେକ କାହାଣୀର ଆରମ୍ଭ ଗୋଟିଏ କଥା ପଦ୍ୟାକାରର ଆବୃତ୍ତି କରାଯାଇଥାଏ-

"କଥାଟିଏ କହୁଁ କଥାଟିଏ କହୁଁ,
କି କଥା ? ବେଙ୍ଗୁଲି କଥା.........

X X X

ଏହି ପ୍ରାରମ୍ଭିକ ପଦ୍ୟ ଶୈଳୀକୁ ପଶ୍ଚିମ ଓଡ଼ିଶାର କଥକ ସରଳ ତରଳ ମର୍ମସ୍ପର୍ଶୀ ଭାବରେ ପ୍ରଥମେ ଶ୍ରୋତାଙ୍କୁ ଆହ୍ୱାନ ଜଣାଇ ଗାଇଉଠେ-

'ଆସରେ ପିଲେ ! କହେମି କଥେ,
କାଏଁ କଥା ? ବେଙ୍ଗଲଥା,
କାଏଁ ବେଙ୍ଗ ? ତଡ଼ା ବେଙ୍ଗ

X X X ।'ଇତ୍ୟାଦି।

ପ୍ରୋକ୍ତ ପ୍ରାରମ୍ଭିକ ପଦ୍ୟକୁ ନିରୀକ୍ଷଣ କଲେ ଜଣାଯାଏ ଯେ ଲୋକ କାହାଣୀ ସହିତ ଲୋକଗୀତର ଏକ 'ନାନାବାୟାଗୀତ' ଭଳି ଗୀତର ସ୍ପର୍ଶ ରହିଛି। ଏପରି ଅନେକ ଗଳ୍ପ ଅଛି ଯାହା ଗଦ୍ୟ ବ୍ୟତୀତ ପଦ୍ୟରେ ମଧ୍ୟ ପ୍ରକାଶ କରାଯାଇଥାଏ।

ଅନ୍ୟାନ୍ୟ ଗଳ୍ପ ପରି ପଶ୍ଚିମ ଓଡ଼ିଶାର 'କଥାନି'ର ବିଷୟବସ୍ତୁ ବିଭିନ୍ନ ପ୍ରକାରରେ ଆରମ୍ଭ ହୋଇଥାଏ, ଯଥା- କୌଣସି ଗୋଟିଏ ଢଗ ଢମାଳି ବା ପ୍ରବଚନ ଠାରୁ ଗୋଟିଏ ରୋମାଞ୍ଚକର ଘଟଣା ଠାରୁ ବା ସାଧାରଣ କଥାବସ୍ତୁଠାରୁ। କଥକ ସମୟ ବିଶେଷରେ ଗୋଟିଏ ନିର୍ଦ୍ଦିଷ୍ଟ ଢଗ ଢମାଳି ବା ପ୍ରବଚନ ଠାରୁ କଥାବସ୍ତୁ ଆରମ୍ଭ କରେ। ଏଠାରେ ଶ୍ରୀ ପଣ୍ଡାଙ୍କ ସଂଗୃହୀତ ଏକ ଶୀର୍ଷକ ହୀନ ଲୋକ ଗଳ୍ପ'କୁ ଉଦାହରଣ ସ୍ୱରୂପ ଅଣାଯାଇପାରେ। ଉକ୍ତ 'କଥାନି' କହିବା ପୂର୍ବରୁ କଥକ କହି ରଖିଛି-

"ତୋର ମା'କି ମୋର ମା'
ସଖାଲ୍ ପାଏଲେଁ ଜାନ୍ ମା।"

ଗୋଟିଏ ଗୋଟିଏ 'କଥାନି'ର ଆରମ୍ଭରେ ଶ୍ରୋତାର ଉତ୍କଣ୍ଠାକୁ ବହୁଗୁଣିତ କରିବା ପାଇଁ କଥକ ଗୋଟାଏ ରୋମାଞ୍ଚକର ଘଟଣାର ଉପସ୍ଥାପନା କରିଥାଏ, ଠିକ୍ 'ଅବୋଲକରା' କାହାଣୀରେ ଅବୋଲକରା କୌଣସି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ଦେଖିଆସି ଗୋସାଇଁଙ୍କୁ ତାହାର କଥାବସ୍ତୁ

କହିବା ପାଇଁ ଜିଦ୍ ଧରି ବସିଥାଏ । ସାଧାରଣ ଶୈଳୀରେ କଥିତ କାହାଣୀ ବା 'କଥାନି' ଗୁଡ଼ିକର ଆରମ୍ଭ ହୁଏ ଗୋଟାଏ ପ୍ରଧାନ ଚରିତ୍ରର ଅବସ୍ଥିତି କୁ ନେଇ ଯଥା- "ଗୁଟେ ରାଇଜେ ଗୁଟେ ରଜାଟେ ଥିଲା ।' ବା ଛପନସାଲେ ଗୁଟେ ଗାଁଥି ବୁଡ଼ାବୁଡ଼ୀ ଯୁ'ଡ଼େ ଥିଲେ ।" ସ୍ଥାନେ ସ୍ଥାନେ ସ୍ଥାନ କାଳର ସୂଚନା ନଦେଇ ସିଧାସଳଖ କେବଳ ଚରିତ୍ରର ଉପସ୍ଥାପନା ମଧ୍ୟ କରାଯାଇଥାଏ । "ଦୁଃଖୀ ସୁଖୀ ଯୁଡ଼େ ବହେନ୍ ଥିଲେ ।' ତା' ପରେ ଉତ୍କଣ୍ଠା ଓ ଆବେଗତ ସହ ଗୋଟାଏ ପରେ ଗୋଟାଏ ଘଟଣାକୁ ସଂଯୋଜିତ କରି କାହାଣୀ ଆଗକୁ ଗତି କରିଥାଏ । ମଝିରେ ବିଭିନ୍ନ କୌତୁହଳ ପ୍ରଶ୍ନ ଏବଂ ସମସ୍ୟା ସମାଧାନ ହୋଇଥାଏ ଘଟଣା କ୍ରମେ ରାଜକୁମାରୀକୁ ବାହାହେବା ପାଇଁ ଆସୁଥିବା ରାଜକୁମାର ଗୁଡ଼ିଙ୍କୁ ବିଭିନ୍ନ କୌତୁହଳ ପ୍ରଶ୍ନ ପଚାରେ ରାଜା ବା ରାଜକୁମାରୀ ଯେଉଁମାନେ କହି ପାରନ୍ତି ନାହିଁ ସେମାନଙ୍କ ମୁଣ୍ଡ କାଟ ହୁଏ । ଶେଷରେ ବିଭିନ୍ନ ବିପଦ ଅତିକ୍ରମ କରି କୌଶଳ କ୍ରମେ ଜଣେ ରାଜକୁମାରୀକୁ ବାହାହୁଏ । କେତେକ ସ୍ଥଳରେ ଜଣେ ନିଷ୍ଠାପର ଲୋକ ବି ହାରିଯାଇ ଜଣେ କର୍ମକୋଡ଼ୀ ଭୋକର ମୁଣ୍ଡ ଉପରେ ସଫଳତା ଆପେ ଆପେ ଆସି ପହଞ୍ଚି ଯାଏ। ବିଭିନ୍ନତା ବୃକ୍ଷଲତା, ପଶୁ ପକ୍ଷୀ, ତାର ଲକ୍ଷ୍ୟ ସ୍ଥଳକୁ ପହଞ୍ଚିବା ପାଇଁ କିପରି ସାହାଯ୍ୟ କରିଥାନ୍ତି କିମ୍ବା ପ୍ରତିବନ୍ଧକ ସୃଷ୍ଟି କରିଥାନ୍ତି ଇତ୍ୟାଦି ଘଟଣାକୁ ସମ୍ବଳିତ କରି କାହାଣୀଟି ଆଗକୁ ଗତି କରେ । କଥା ମଝିରେ ପ୍ରସଙ୍ଗକ୍ରମେ କେତେ ହାସ୍ୟୋଦ୍ଦୀପକ କଥା କହି କଥକ ଶ୍ରୋତାମାନଙ୍କ ମନକୁ ଲଘୁ କରିଥାଏ । ପୂର୍ବୋକ୍ତ ' ସରବଜାନ୍' 'କଥାନି' ରେ ବୁଢ଼ାଙ୍କୁ ସର୍ବଜ୍ଞ ମନେକରି ଯେତେବେଳେ ରାଜାଙ୍କ ସମୀପକୁ ନିଆଯାଇଛି ସେ ବେଙ୍ଗମାନଙ୍କଠାରୁ ସଂଗ୍ରହ କରିଥିବା କଥାଟି କହି ବିଜୟୋଲ୍ଲାସରେ ରାଜାଙ୍କଠାରୁ ପୁରସ୍କାର ନେଇ ଫେରିଛି । କିଛିଦିନ ପରେ ରାଣୀର ଗୋଡ଼ରେ ଗୋଟିଏ 'ବେଦେନ୍' ବାହାରିବାରୁ ବୁଢ଼ାକୁ ପୁଣି ଡକାଯାଇଛି ସେ ରାଣୀଙ୍କ ପାଖରେ ଏକାକୀ ବସି ମନ୍ତ୍ର ଫୁଙ୍କିଛି- "ବୁଢ଼ୀ ପୁଡ଼ାଲା କୁଡ଼ାଁ ପିଠା । ଫାଲେ ଫାଲେ ଖାଏଲୁଁ ଫୁ....ଫୁ.../ ଆର୍ ଫାଲେକେ ରାତିମୁଇଁ ଏକଲା ଖାଇ ଦେଲିଁ/ସକାଳୁ ବୁଢ଼ୀ ଘନ୍‌ଲେତ ମାରି କୁଦାବା ବଲିଭାଗଲି ଫୁ...ଫୁ; ରଜାର ହାତେ ପଡ଼ଲି..ଫୁ....ଫୁ ।" ରାଣୀ ଇରକମର ମନ୍‌ତର୍ ଶୁନି କରିତ ହଁସି ଦେଲା ହଁସିଟେ ଯେ ତାର ସୁଖେଁ 'ବେଦେନ୍'ଟା ଫାଟି କରି ପୋଜ ରକତ୍ ବାହାରି ପଡ଼ସୀ" ଇତ୍ୟବସରରେ ବୁଢ଼ାର ବୋକାମି ସତ୍ତ୍ୱେ ତାର ବିଜୟତାକୁ ଲକ୍ଷ୍ୟକରି ଶ୍ରୋତାମାନେ ହସିବା ଆରମ୍ଭ କରିଦେଇଥାନ୍ତି । ଶ୍ରୀଯୁକ୍ତ ପଣ୍ଡାଙ୍କର ତଦୃପ ସଂଗୃହୀତ ଓ 'କୋଶଳ' ପତ୍ରିକାରେ ପ୍ରକାଶିତ ଅନ୍ୟ ଏକ 'କଥାନି' 'ଜୀବନ ଗଲୁ' ରେ ମଧ୍ୟ ତଦୃପ ଘଟଣା ବର୍ଣ୍ଣିତ । ସେଠି ମଧ୍ୟ ବୁଢ଼ା ରାଜକୁମାରୀର ମାଲି ହଜିଲା ବେଳେ ସେହିପରି ଗୋଟାଏ ମନ୍ତ୍ର ଫୁଙ୍କୁଛି-

"ବୁଢ଼ୀ ପୁଡ଼ଲା କୁଡ଼ାଁପିଠା ବୁଢ଼ା ଖାଏଲା ଫାଲ୍
ରଜାର ହାତେ ଗଲୁରେ ଜୀବନଇଟା ହେଲା କାଲ୍ ।"

ଇତ୍ୟବସରରେ ସେହି ମାଲି ଚୋରି କରିଥିବା 'ଜୀବନ' ନାମକ ଏକ ଭଣ୍ଡାରୀ ତାହା ଶୁଣୁଥିଲା ଏବଂ ବୁଢ଼ା ସର୍ବଜ୍ଞ ଭାବି ନିଜ ଦୋଷ ବୁଢ଼ା ଆଗରେ ସ୍ୱୀକାର କରିଛି । ଏତଦ୍ ବ୍ୟତୀତ ଲିଖିତକାରରେ ଅପ୍ରକାଶିତ ପଶ୍ଚିମ ଓଡ଼ିଶାର ପ୍ରାୟ ସର୍ବତ୍ର ପ୍ରଚଳିତ 'ବଉଁଶବୁଢ଼ା ଉନଜା' ବା 'ମାଛି' 'କଥାନି'ର ନାୟକମାନଙ୍କ କର୍ମକୃତିଗୁଡ଼ିକ ମଧ୍ୟ ଶ୍ରୋତା ମନରେ ହାସ୍ୟ ସଂଚାର କରିଥାଏ । ଉଦାହରଣ ସ୍ୱରୂପ 'ମାଛି' ଗଳ୍ପ ନାୟକ ମାଛି ଯେତେବେଳେ ଗୁଡ଼ିଆ ଦୋକାନରେ ପହଞ୍ଚିଛି ଓ ସେଠାକାର ଥାଳିରୁ ମିଠେଇ ଖାଇ ବସିଛି ମିଠା ଜଗିଥିବା ପିଲାଟି ଘର ଭିତରେ ଥିବା ତା' ମା'ପ୍ରତି ଲକ୍ଷ୍ୟ କରି କହିଛି "ଏ ମାଁ ଆଦେ ମାଛି ଆମର ମିଠେଇ ଖାଉଛେ.... ।" ସେତେବେଳେ ମା' ଗୋଟାଏ ସାଧାରଣ ମାଛି ଭାବି ଜବାବ୍ ଦେଇଛି " ଖାଇଦେ ନିଜେ ସେ କେତେ ଖାଏବା ।" ଏହାଶୁଣି ମାଛି ନାମକ ବ୍ୟକ୍ତିଟି ପେଟପୂରା ଖାଇ ଗାମୁଛାରେ କିଛି ମିଠେଇ ଧରି ଚାଲି ଆସିଛି ।

କାହାଣୀ କହିବା ବେଳେ ସ୍ଥଳବିଶେଷରେ ଯେଉଁଠି କୌଣସି ନାୟକ ବା ନାୟିକାର ବେଦନା ବୋଧକୁ ଅଙ୍କିତ କରିବାକୁ ହେଉଥାଏ କଥକ ତାକୁ ପଦ୍ୟରେ ଗାଇ ଯାଇ ଥାଏ । 'ସୁଶୀଳା' 'କଥାନି' ରେ ସାଧବ ବୁଢ଼ାର ସାତୋଟି ପୁଅ ବିଦେଶ ବାଣିଜ୍ୟରୁ ଫେରି ଆସନ୍ତି ବହୁ ଧନ ରତ୍ନ ନେଇ । ସବା ସାନ ପୁଅ ତା'ର ସ୍ତ୍ରୀ 'ସୁଶୀଳା' କୁ ଭାରି ଭଲ ପାଏ କିନ୍ତୁ ସେତେବେଳେ ଆସି ଦେଖିଛି ଯେ ସୁଶୀଳା ଘରେ ନାହିଁ, ଅନ୍ୟ ଯା'ମାନେ ତାକୁ ମାଡ଼ଦେଇ ଘରୁ ତଡ଼ିଦେଇଛନ୍ତି ସେତେବେଳେ ସେ ଘରର ଅନ୍ୟମାନଙ୍କୁ ଜଣ ଜଣ କରି ବ୍ୟଥା ବେଦନାଭରା ମନରେ ପଦ୍ୟଛନ୍ଦରେ ପ୍ରଶ୍ନ ପଚାରିଛି । ପ୍ରଥମେ ମା'କୁ କହିଛି-

"ମାଁ ଗୋ ମାଁ ବୋଲେ ତେ ତେ ଯେ
ରାଇଜର ମାଁ ତୁଇ ଯେ
ସୁଶୀଳା କାହିଁ ଗଲା କହ ତ ମାଁ ... ହୁଁ ତ ?"

ଏହି ପ୍ରତ୍ୟେକ ପ୍ରଶ୍ନ ଦ୍ୱାରା କଥକ ଶ୍ରୋତା ମନକୁ ବେଦନାରେ ଦ୍ରବିଭୁତ କରି ଦେଇଥାଏ । ଯେତେବେଳେ କଥକ ବିଭିନ୍ନ ଅଦ୍ଭୁତ ପ୍ରାଣୀ ବା ଅସୁର ଅସୁରିଣୀମାନଙ୍କ କଥା କହି ଶ୍ରୋତାମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିବା ସଙ୍ଗେ ସଙ୍ଗେ ଭୟଭୀତ କରାଇଥାଏ । କଥକ ନିଜେ ଜଣେ ପ୍ରତ୍ୟକ୍ଷ ଦ୍ରଷ୍ଟା ପରି ବର୍ଣ୍ଣନା କରି କହେ- " କାଣ! କହେବିରେ ପିଲେ ସେ ଅସୁରର ଏଡ଼େ ଏଡ଼େ ନଖ୍, ଏଡ଼େ ଏଡ଼େ ଦାଁତ ଲମ୍ୱା ଲମ୍ୱା ହାତ୍ ଗୋଡ଼୍ ଜାର ମହାଉପରକେ ହାତ୍ ଯାଏସି, ତାଲ ଗଛକେ କାଠି

କର୍‌ସି ବଂଧର ପାଏନକେ ପୁଚକେ କର୍‌ସି, ସମୁଦର ଭିତରେ ଚାଲି ଚାଲି ଯାଏସି.... ।"ଇତ୍ୟାଦି ବର୍ଣ୍ଣନା ଶୁଣିଲେ ଶିଶୁଗୁଡ଼ିକ ଭୟଭୀତ ହୋଇ ପରସ୍ପରକୁ ଜାବୁଡ଼ି ଧରି କିଛିକ୍ଷଣ ରହିଯା'ନ୍ତି ଏବଂ ପରକ୍ଷଣରେ ଯଦି କୌଣସି ଶିଶୁ ଅମାନିଆ ହୁଏ ତା'ର ମା' କିମ୍ବା ଆଈମା' ସେହି 'କଥାନି'ର ଅସୁର ଅସୁରୁଣୀ ବା ଅଦ୍ଭୁତ ଜୀବ 'କୋକୋମିନା' ର କଥା କହି ତାକୁ ଡ଼ରେଇଥାନ୍ତି । କଥକ କହିବା ବେଳେ ଏପରି ହସ ଚାଳନା କରି କହିଥାଏ ଯେ ସତେ ଯେପରି ସେ ଜୀବମାନଙ୍କର ପ୍ରତ୍ୟକ୍ଷ ଦ୍ରଷ୍ଟା ଓ ସେହି ଜୀବନମାନଙ୍କ ସଂଶର୍ଗରେ ଆସିଛି ।

ଏହିପରି କାହାଣୀ ଖିଅ ଲମ୍ବ ଚାଲିଥାଏ । କେତେକ କାହାଣୀ ଗୋଟାଏ ନିର୍ଦ୍ଦିଷ୍ଟ ସମୟ ଘଣ୍ଟାଏ ବା ଦେଢ଼ ଘଣ୍ଟା ଭିତରେ ଶେଷ ହୋଇ ଜିବାବେଳେ କେତେ କାହାଣୀ ଏହିପରି ଅବସର ସମୟରେ ପ୍ରତିଦିନ କହିବା ପାଇଁ ଅନିର୍ଦ୍ଦିଷ୍ଟ ଦିନ ନେଇଥାଏ । ଓଡ଼ିଶା ଭା ବାରତର କୌଣସି ଅଞ୍ଚଳରେ ଏପରି ଦୀର୍ଘ ଲୋକ କାହାଣୀ ପ୍ରାୟତଃ ଦେଖାଯାଇ ନଥାଏ । ଏହି ପରି ଦୀର୍ଘ 'କଥାନି' ଗୁଡ଼ିକରେ ଅନେକଗୁଡ଼ିଏ ଛୋଟ ଛୋଟ 'କଥାନି' ଜଡ଼ିତଥିବା ସତ୍ୱେ ତା'ର ନାୟକ ଓ ନାୟିକା ଗୁଡ଼ିକ ଅପରିବର୍ତ୍ତୀ ହୋଇଥାନ୍ତି । ଏହି ଦୀର୍ଘତା ହେଉଛି ପଶ୍ଚିମ ଓଡ଼ିଶାର ଲୋକଗଳ୍ପ ବା 'କଥାନି' ଏକ ବୈଚିତ୍ର୍ୟ । ଓଡ଼ିଶାର ଅନ୍ୟ ଗଳ୍ପପରି ପଶ୍ଚିମ ଓଡ଼ିଶାର କାହାଣୀରେ ଘଟଣା ବିନ୍ୟାସ ବର୍ଣ୍ଣିତ ହେଉଥିଲେ ମଧ ଏଠାରେ କିଛିଟା ନୂତନତା ପରିଲକ୍ଷିତ ହୁଏ । ପ୍ରାୟତଃ ଅନେକ କଥାନିର ଶେଷରେ କଥନ ଯେଉଁ ବକ୍ତବ୍ୟଟି ଦିଏ ତଦ୍ୱାରା ମନେହୁଏ ଯେପରି କଥକ ନିଜେ ମଧ ସେହି କାହାଣୀ ସହିତ ସଂପୃକ୍ତ ଥିଲା ଏବଂ ସର୍ବଶେଷରେ ଆତ୍ମ ପ୍ରକାଶ କଲା । ସାଧାରଣତଃ ଅନେକ ଲୋକ କାହାଣୀର ପରିଣତି ମିଳନାତ୍ମକ ହୋଇଥାଏ । ଶେଷରେ କୌଣସି ଏକ ମିଳନାତ୍ମକ ସୁଦିନ ବା ସୁଘଟଣାର ପରିବେଶ ବର୍ଣ୍ଣନା କରାଯାଇଥାଏ ଯଥା- ରାଜକୁମାରୀଙ୍କ ବିବାହ ଉପଲକ୍ଷେ ପାଳିତ ଭୋଜି, ଜଣେ ନିଜର ହୁତ ସଂପତ୍ତି ଫେରି ପାଇଥିବା ଘଟଣା ବା ଜଣେ ଦୁଃଖି ସୁଖି ହେବା ଘଟଣା/ ଏହି ପରିପ୍ରେକ୍ଷୀରେ କଥକ ନିଜକୁ 'କଥାନି' ସହିତ ସଂଯୋଜିତ କରି କହେ "ଭୁଜିଦିନେ ଏଡ଼େ ବଡ଼ ବଡ଼ ଗୁଆଘିଅର କାକରାପିଠା, ମିଠେଇ, ରସଗୁଲା, ପକେଇ ଉଡ଼େଇ କରି ଖାଏଲେ; ହେଲେ ମୁଇଁ ଗଲିଁ ଯେ ପକାଲାଟାଭି ଗୁଟେ ନାଇଁ ଦେଲେ ।" ବା "ବୁଢ଼ା ବୁଢ଼ୀ ସେ ଗାଁର ଗଁଡ଼ିଆ ଗଁଡ଼ିଏନ୍ ହେଇ କରି ସୁଖେ ହେଲେ, ମୁଇଁ ଗଲି, ଭାଇ ଟିକେ ମାଗଲିଁ ଯେ ଗଲେ ନାଇଁ ଦେଲେ ।"

ପ୍ରତ୍ୟେକ ଗଳ୍ପ ବା 'କଥାନି' ର ଆରମ୍ଭରେ ଯେପରି ଗୋଟାଏ ପଦ୍ୟାତ୍ମକ ସ୍ପର୍ଶ ନେଇ ବୋଲା ଯାଇଥାଏ ସେହିପରି ଶେଷରେ ପ୍ରତ୍ୟେକ ଓଡ଼ିଆ ଗଳ୍ପପରି ଗୋଟାଏ ନିର୍ଦ୍ଦିଷ୍ଟ ଗୀତରେ ପଶ୍ଚିମ ଓଡ଼ିଶାର 'କଥାନି' ର ମଧ ପରିସମାପ୍ତି ଘଟିଥାଏ । ତାହା ହେଲା-

"ମୋର କଥାଟା ସର୍‌ଲା
ଫୁଲ ଗଛଟା ମଲା
ତୁଇ କାଏଁ ହେଲା ଯେ ଫୁଲଗଛ ମଲୁ
ମୋତେ ଗଉତେନ୍ ପାଏନ୍ ନାଇଁ ଦେଲା

X X X ।"

ଏହିପରି ଭାବରେ ଯୁଗେ ଯୁଗେ ପଶ୍ଚିମ ଓଡ଼ିଶାର ଲୋକଗଳ୍ପ ଆନ୍ତର୍ଜାତିକ ଲୋକକଥା ବା ଲୋକ କାହାଣୀ ସମତଳରେ ଗଳିକରି ଆସୁଛି ତା'ର ପ୍ରମାଣ ଦେବା ପାଇଁ ଏ ପର୍ଯ୍ୟନ୍ତ ସଂପୂର୍ଣ୍ଣ ସଫଳତାର ସମୟ ଆସନାହିଁ। ଅଦୂର ଭବିଷ୍ୟତରେ ଏହା ପ୍ରକଟିତ ହେବ ବୋଲି ଆଶା ଓ ପ୍ରତୀକ୍ଷା।



# ସମ୍ବଲପୁରୀ ଲୋକସଙ୍ଗୀତରେ ଗଣ-ହସକାନ୍ଦର ବ୍ୟଞ୍ଜନା

ରାଜକିଶୋର ମେହେର

ଲୋକ ବା ଗଣ ନିସୃତ ଗୀତ ହିଁ ଲୋକଗୀତ ବା ଗଣଗୀତ । ଏଇ ଲୋକଗୀତ କେଉଁ ଆଦିମ କାଳରୁ ତାହା ଲୋକ ବା ଗଣର ମୁଖରେ ହିଁ ଜୀବିତ । ଅନ୍ୟ କଥାରେ କହିଲେ ହେବ ମଣିଷ ସୃଷ୍ଟିର ଦିନଠାରୁ ଏହାହିଁ ପ୍ରଚଳିତ ।

"ସମଲେଇ ମାଁ ପାହେଁ      ପଡୁଛେଁ ତତେ
କତେନେି କେତେ      ଛୁଆପୁତା ତୋର
ଭୁଲିଯିବୁ ନାହିଁ ମତେ ।।

ମହାନ ଏଦଟା ବୁହିଆସେ ତାର କଲା ମିଶି ମିଶି ପାଏନ୍ (ତୋର) ଦୁଇ ପାହାଡେ ଧୂଇ ନେଉଛେ କରିଛେ କେତେ ମାଏକ୍

ଫର୍ ଫର୍ ତୋର ଧଜା ଉଡୁଥିଲେ
ଦମ୍ ଲାଗସି କେତେ ।। ୧

ଅର୍ଥାତ୍, ଏହା ମସ୍ତିଷ୍କ ଅନୁରୂପ ଧ୍ୱନି ଶବଦ ସମୁହ ନୁହେଁ, ହୃଦୟର ବାଣୀ । ଯୁଗେ ଯୁଗେ ଲୋକଗୀତ ଲୋକମାନଙ୍କର ଅନ୍ତରର ନିଗୁଢ ସତ୍ୟରଙ୍ଗ ବା ଅନୁରଙ୍ଗ କଥାଟି କହି ଆସିଛି । ଯେପରି ପ୍ରକ୍ଷାପକ ଭାବରେ ସେ ତାର ମାଧମ ଗ୍ରହଣ କରି ନେଇଛି । ତାର ଚିନ୍ତା ଓ ଚେତନା, ହସ କାନ୍ଦ ଆଦିର ଏକ ବିର୍ବାଧ ଆତ୍ମ ପ୍ରକାଶ ରୂପରେ ଏହା ସବୁ ଦିନେ ଲୋକ ସମାଜର ଦୈନନ୍ଦିନ ଜୀବନ ଓ ଯୁଗ ଯନ୍ତ୍ରଣାକୁ ତାର ସହଜ, ସରଳ, ନିରାଡ଼ମ୍ବର ମଧୁର ସଙ୍ଗୀତ ମାଧମରେ ହିଁ ରୂପାୟିତ କରିବା ପାଇଁ ସାହାଯ୍ୟ ଲୋଡ଼ିଛି । ସବୁ ଦେଶରେ ଆଉ ପ୍ରତିଟି ଯୁଗରେ । ରଚିତ ସମ୍ବଲପୁରୀ 'କବିତା' ଗୁଡ଼ିକରେ ସଂଗୀତକଳା ଭରପୁର ହୋଇ ରହିଥାଏ, ତେଣୁ ସେ 'କବିତା' କୁ 'ଗୀତ' ବା ସଙ୍ଗୀତ' ନାମରେ ମଧ ଅବିହିତ କରାଯାଇପାରେ । ଉ. ସ୍ୱରୂପ:-

---

୧. ମାଳାଞ୍ଚ (୧୯୭୦) ଶ୍ରୀ ମଙ୍ଗଳୁ ଚରଣ ବିଶ୍ୱାଳ - ପୃ ୭୯ (ପରମାନ୍ଦପୁର)

"ଉଡ଼ିଯାରେ କୁଆ ଛାନି ପିରିଡ଼ରେ ନାଇଁକର କାଆ କାଆ ଖିରିପୁରି ଖାଇ ଶୁଭ କଥା କହିଯା' ଉଡ଼ିଯା'ରେ ଯାଆ । ଡେବିର୍ ଆଖି ମୋର ଡେଗୁଛେ ସକାଲୁତ ଫର୍ ଫର୍

ହାତୁହିଟି ପଡେ ମାଜିଲା ଲକିଲୋ ଥର ଥର କେତେଥର
ଭୁଡେନାଇଁ କିଛି ଯିଏ ଜାଣୀ ଦେଲେ କହି କହି ଖାଆ ଖାଆ ।।" ୨

ପଶ୍ଚିମ ଓଡ଼ିଶାର ଲୋକଗୀତ ମୁଖ୍ୟତଃ ସମ୍ବଲପୁରୀ ଲୋକଗୀତ ନାମରେ ପରିଚିତ । ଏଇ ଓଡ଼ିଶାର ଲୋକ ସଂସ୍କୃତିର ଅବାଧ ଓ ଅନ୍ତରଙ୍ଗ ପରି ପ୍ରକାଶର ଲୋମ ଲୋକ ମାଧମ ହେଉଛି ସମ୍ବଲପୁରୀ ଲୋକଗୀତ । ତେଣୁ ସମାଲୋଚକ ଶ୍ରୀକୁମାର ସରଦାର ହସନ'କର ମତ ଏଠାରେ ସର୍ବଦୋ ସ୍ମରଣୀୟ । "ସମ୍ବଲପୁରୀ ଲୋକଗୀତ ହେଉଛି ଏକ ହରରଙ୍ଗୀ ପେନିସ୍ ଫୁଲ । ଗୋଟିଏ ଲତାରୁ ଫୁଟି ଥିଲେହେଁ ବହୁ ଏହା ବର୍ଣ୍ଣରେ ବର୍ଣ୍ଣାଢ୍ୟ ଓ ବହୁ ସୁରଭିରେ ମହନିୟ । ପୁଣି ଏହା ଏକ ଫିନିକସ ପକ୍ଷୀ ଯାହା ବିଜ୍ଞାନର ଅଗ୍ରଗତିର ନିଆଁରେ ଦଗ୍ଧ ହୋଇ ମୁଠାଏ ପାଉଁଶ ହୋଇଯାଏ । ପୁଣି ସେଥିରୁ ନବ ଜନମ ନେଇ ପକ୍ଷଛାଟି ଉଠିବାକୁ ଚେଷ୍ଟାକରେ ମତୁଆଲା ହୋଇ । ଏଣୁ ପାରିପାର୍ଶ୍ୱିକ ଅବସ୍ଥା କ୍ରମେ ଗୋଟାଏ ଲୋକଗୀତ ବିଭିନ୍ନ ଅଞ୍ଚଳରେ, ନାନା ମୁଖରେ ନାନାରୂପ ଗ୍ରହଣ କରେ । ଏ ଲୋକଗୀତ ମାନ ହେଉଛି ଏକ ସଦା ବହାର ଅମରୀଲତା । ଦେଶ କାଳପାତ୍ର କ୍ରମେ ନବ୍ୟ ବିଜ୍ଞାନର ତୀବ୍ର ଆଲୋକରେ ଏହାର ଗୋଟିଏ ଗୋଟିଏ ଡାଳ ଶୁଖି ଯାଉଛି ସତ, କିନ୍ତୁ ତାର ଝରା ପତ୍ରର ଉର୍ବର ହାଲୁକା ମାଟିରେ ତାର ଚେର ପୁଣି ନୂଆ ପାଣି ପବନରେ ଗଜୁରି ଉଠି ତାର ସ୍ୱକୀୟ ବାସ୍ନାରେ "ମଲ୍ଲୀ ଓ କୁରେଇଫୁଲ" ପରି ଜନ ଜୀବନରେ ମହକିତ କରି ଚାଲିଛି । ପଶ୍ଚିମାଞ୍ଚଳ ସମ୍ବଲପୁରର ଗିରି ଅରଣ୍ୟ କାନ୍ତର ପରି ଲୋକ ଜୀବନରେ ନିଘଞ୍ଚ, ସବୁଜ ଆଉ ବଣ ଝରଣା ପବନ ପରି ଚିର ଚଞ୍ଚଳ ପ୍ରଖର ଆଉ କଳକଳ-ଛଳଛଳ ଏହି ଗୀତ ସବୁ ।।" (୩) ଏଥିରୁ ସମ୍ବଲପୁରୀ ଅଞ୍ଚଳର ଲୋକଗୀତ ଯେ ବେଶ୍ ଲୋକପ୍ରିୟ ତଥା ଜନଶ୍ରୁତି ମଧୁର ନ ହୋଇ ପାରିଛି ଏହା କୁହାଯାଇ ନ ପାରେ । ସେ ଯାହାହେଉ ଏଇ ସଂକ୍ଷିପ୍ତ ପ୍ରବନ୍ଧରେ ସମ୍ବଲପୁରୀ ସଙ୍ଗୀତରେ ଗଣ ଚିନ୍ତା ଓ ଚେତନା ସୁଖ ଓ ଦୁଃଖର କିଭଳି ଅଭିବ୍ୟଂଜିତ ହୋଇଛି ବା ସଂଘଟିତ ହୋଇଛି ତାହାହିଁ ଆଲୋକ ପାତ କରିବାର ଏହାର ପ୍ରଧାନ ଲକ୍ଷ୍ୟ ।।

'ଲୋକଗୀତ' ଯେହେତୁ 'ଗଣ'ର ସେହେତୁ ତାହା ଲୋକଙ୍କର ବା ଗଣର ଦୁଃଖ ସୁଖର କାହାଣୀ ପ୍ରତିଫଳିତ ହେବା କିଛି ଅସ୍ୱାଭାବିକ ନୁହେଁ । ଏହି ଦୁଃଖ ସୁଖର ମୁର୍ଚ୍ଛନା ଭାଷାର

---

୨. ସମ୍ବଲପୁରୀ ଭାଷା ଛନ୍ଦ ଓ ସଙ୍ଗୀତ ପୃଷ୍ଠା ୧ (ସମ୍ବଲେଶ୍ୱରୀ ସ୍ତୁତି)

୩. ସମ୍ବଲପୁରୀ ଲୋକଗୀତରେ ସାମାଜିକ ଚିତ୍ର ଓ ଚେତନା - କୁମାର ହସନ (ବସୁନ୍ଧରା)

ସଙ୍ଗୀତକତା ମାଧ୍ୟମରେ ହିଁ ଅତ୍ୟଧିକ ସକରୁଣ ହୋଇ ଉଠେ । ଶ୍ରୀ ନରସିଂହ ପ୍ରସାଦ ଗୁରୁଙ୍କର ରଚିତ "କୁଆଁତାରା" ପୁସ୍ତିକାର ପ୍ରଥମାଂଶ ପଦେଅଧେ' ରେ ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଶିକ୍ଷାବିତ୍ ତଥା ସମାଲୋଚକ ପ୍ରାଧ୍ୟାପକ ଶ୍ରୀ ତ୍ରିଲୋଚନ ମେହେର ଦୁଃଖ ସୁଖର ଅଭିବ୍ୟକ୍ତି କି ଭଳି ଏହାର ସଂଗୀତ ମାଧ୍ୟମରେ ଅତ୍ୟଧିକ ସକରୁଣ ଆକାର ଧାରଣା କରିଛି, ଏହାର ଉପରେ ଏକ ଆଲୋକପାତ କରି କହନ୍ତି- 'ଓଡ଼ିଶାର ପଶ୍ଚିମାଞ୍ଚଳ ପଲ୍ଲୀ ଜୀବନକୁ ସମ୍ବଲ କରି ସେମାନଙ୍କର ହର୍ଷ ବିଷାଦ ଆନନ୍ଦ ଅଶ୍ରୁକୁ ଭିତ୍ତିକରି ପଶ୍ଚିମାଞ୍ଚଳର କଥିତ ଭାଷାରେ ପୁଣି କେତେଗୋଟି ଜନପ୍ରିୟ ରାଗ ରାଗିଣୀରେ 'କୁଆଁତାରା'ର ଏହି ପଲ୍ଲୀଗୀତ ଗୁଡ଼ିକ ରଚିତ । ଆଞ୍ଚଳିକ ଲୋକପ୍ରିୟ ସ୍ୱର ମୂର୍ଚ୍ଛନା କବିତା ଗୁଡ଼ିକର ପ୍ରାଣବିନ୍ଦୁ ଓ ରସସୃଷ୍ଟି ଓ ରସପୁଷ୍ଟ ସାଧନ ଦିଗରେ ସହାୟକ ହୋଇଛି ।" (୪)

'ରସରକେଲୀ' ଲୋକଛନ୍ଦର ରଚିତ ଏକ ସଙ୍ଗୀତରେ କିଛି ଅଂଶ ନେଇ ପରୀକ୍ଷା କରାଯାଉ- ଉ: ସ୍ୱରୂପ:-

"କୁମ୍ ନା ଝାରି ଖେତୁଁ ଧରି ଆନୁ ଲିଝିମୋ ଝୁରି/ହେଁତୁଆ ସାନି ପୁରୁଗି ଦେବୁ ବନେନୁକୋ କରି/ବେଲ୍ ଟଲାଳେ ଦେବୁ ବାର୍‌ହି ବଉଲ/ ସତେ ହେବା କେତେ ଘାରି/ତୁଇ ମୋର୍ ମଳଇ ଗଜରା/ତତେ ନାଇଁ ଦେଖଲେ ଲାଗସି ନୁରା/ତୁଇ ମୋର ମଲୀ ଗଜରା ।" (୫)

ଉପରୋକ୍ତ ସଙ୍ଗୀତରେ ଯେପରି ସଙ୍ଗୀତର କାଉଁରୀ ସ୍ପର୍ଶ ରହିଛି, ତତ୍‌ସଙ୍ଗେ ସଙ୍ଗେ ମଧ୍ୟ ଦାରିଦ୍ର୍ୟ-ସର୍ପର ଦଂଶନରେ ଦଂଶିତ ହୋଇ, ସେ କିପରି ଦୁଃଖ ମଧ୍ୟରେ ସୁଖର ସନ୍ଧାନ କରି ସ୍ମରଣ କରିଛି ତାର ସ୍ୱପ୍ନର ରାଣୀ "ମଲ୍ଲୀ ଗଜରାକୁ ।"

ତତ୍‌ପରେ "ସଜନୀ" ଜନପ୍ରେମକୁ କିଭଳି ଗଣ ପ୍ରେମରେ ରୂପାୟିତ କରିଛି ଏ ଯୁଦ୍ଧ ଦଗଧ ପୃଥିବୀରେ ଏବଂ ପ୍ରେମର ମହାନତା ପ୍ରତିପାଦନ କରିଛି । ତାହାର ଏକ ଉଦ୍ଧୃତ ମଧ୍ୟ ସଂଗ୍ରହ କରାଯାଇପାରେ । "x x ମହାଜନର ସେଜିଖାର/ସଂସାର ମଧ୍ୟରେ ପିରତୀ ସାରରେ/ ଧନ ଘର ହୋଇଗଲା ଦୂରରେ ଗଳାର ।"

'ରସରକେଲୀ', 'ମାଇଲାଜଡ଼' ଓ 'ଝୁମ କୁଝୁମ' ଆଦି ଲୋକନୃତ୍ୟ ଗୁଡ଼ିକ ଠିକ୍ ତାଲଖାଇ ଭଳି ଅନୁଷ୍ଠିତ ହେଉଥିଲେ ସୁଦ୍ଧା ଗୀତ, ବାଦ୍ୟ ଓ ନୃତ୍ୟର ଶୈଳୀ ତଥା ଛନ୍ଦବିନ୍ୟାସରେ ସାମାନ୍ୟ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଏହା ଆଦିବାସୀ ସଂପ୍ରଦାୟରେ ବିବାହାଦି ଉତ୍ସବମାନଙ୍କରେ ସାଧାରଣତଃ ଦେଖିବାକୁ ମିଳେ । ଯେପରି:-

---

୪. 'କୁଆଁତାରା' ଅଧେପଦେ ପୃଷ୍ଠା -୧; ୫. ତୁଇ ମୋର୍ ମଲୀ ଗଜରା - ପୃ. ୨

(୧) "ରସରକେଲୀ"-/ ଲିପିଗଲି ପୁଛିଗଲି ବେଟି ଗଲି ଗୁଡ଼/ଏତ୍‌କି ସୁନ୍ଦର୍ ପାରାଯୁଡ଼ି ଯାଉ ଅଛନ୍ ଉଡ଼ି। ଆସ ଆସ ପରାଯୁଡ଼ି ମୋର୍‌କୁଳରେ ବସ୍/ଖାଇବାକୁ ଦେମି କପରେ ନାଗସାପର ବିଷ/x x x।"(୬)

(୨) "ଜଡ଼ର କଥା ଲଡ଼ବଡ଼ରେ ମାଇଲାଜଡ଼/ ଜଡ଼କେ ନେତି ବରଗଡ଼ରେ ମାଇଲାଜଡ଼/ ତୋର ସୁନା ମୋର ସୁନା ଶାଗଧୁଆ ଛଟନା/ ତୋର ମୋର ପଲେଇଯିବା କୁଆଁରୀ ପାଟନା/ କୁଆଁରୀ ପାଟନା ଗଲେ କି ଖାଇ ବଞ୍ଚିମା/ହାତେ ଅଛେ ଜିରା ମୁଦି ଭଣ୍ଡାଇ ଖାଇମା/ x x।।"(୭)

(୩) "ଇଆଡ଼େ ପର୍ବତ ଯେରେ ସେଆଡ଼େ ପର୍ବତ/ ମଝିରେ ପର୍ବତେ ଯେରେ ଭାଲୁଣୀର ଘର/କପଟା ଖେଁତେ ଶୁଖାଇଲି ଅଛି ଦରକାର/କପଟା କଲି ଦେଇ ଗଲିରେ ମାଲୁ ମୁହିଁ ମହନିପତରରେ/ଝୁମୁକୁଝୁମାରେ। ଝୁମୁ କୁ ପାହାଡ଼ ପକା ଗାତ ଶୁଆ ବୁକା। x x।।"(୮)

ଉପରୋକ୍ତ ସୂକ୍ଷ୍ମ ଅନୁଶୀଳନ କଲେ ଜଣାଯାଏ ଯେ ଗଣ ସୁଖ ଓ ଦୁଃଖ ମଧ୍ୟରେ ଥିବା କୁସ୍ତ କଳାଚାତୁରୀ ଓ ପାରମ୍ପରିକ ମୁଗ୍ଧ ହେବାକୁ ହିଁ ପଡ଼ିଥାଏ।

ସମାଜର ଗରିବ ଶ୍ରେଣୀର ଗୀତ ଏ ଲୋକଗୀତ। ଦରିଦ୍ରର ନିଜ ଭାଷାରେ ଏ ଚିତ୍ର ମଧ୍ୟ ଫୁଟିଉଠେ। ଅନେକ ସମୟରେ ଲୋକେ ଗାଁରେ କାମ ନ ପାଇ, ଚାଲି ଆସନ୍ତି ସହରକୁ ପେଟ ଚାଖଣ୍ଡ ପାଇଁ କିନ୍ତୁ ପେଟ ଚାଖଣ୍ଡର ବନ୍ଦୋବସ୍ତ ହୋଇଗଲେ ଯେ ଜୀବନର ସବୁ ହୋଇଗଲା ଏହା କୁହାଯାଇ ନ ପାରେ। ତେଣୁ ମା' ମାଟିର ମୋହ, ସ୍ତ୍ରୀ/ ସଂସାରୀ ମୋହ ତାଙ୍କ ମନକୁ ତ଼ହଳ ବିକଳ ମେଧି ଦୋହଲାଇ ଦିଏ। ଏହାକୁ ଭାଗ୍ୟବୋଲି ଆଦରି ନେଲାବେଳେ ସ୍ତ୍ରୀ ସ୍ୱାମୀକୁ ବୁଝାଏ-

"x x x ସମ୍ବଲପୁରର ପାତଳ ଘଁଟା
ମୋତେ ଛଡ଼ିକରି ଯାଉଛ ଟାଟା ହୋ
ଧନ, ମନ ନ କରିବ ଖଟା ହୋ ନାଗରx x x ।।"

ଦରିଦ୍ର ମଫସଲିଆ ଲୋକଙ୍କ ନିକଟରେ ବିବାହ ଏକ ସମାଜିକ ବ୍ୟାଧି। ଗାଁର ନିପଟିଆ ପ୍ରଜା ତା' ଝିଅର ବିଭା, ଯାନି ଯୌତୁକ, ଜାତିଭୋଜି ପ୍ରଭୃତି ତା ପକ୍ଷରେ ଏକ ଚଡ଼କ ସଦୃଶ। ଏଥିପାଇଁ ସଂଖ୍ୟାଧିକ କନ୍ୟା କୁମାରୀବ୍ରତ ହିଁ ଆଦରି ନେଇଥାନ୍ତି। ସେ କେଉଁ କଳ୍ପନାତିତ ନଗରୀର ରାଜ କୁମାରର ସ୍ୱାତ୍-ପ୍ରତୀକ୍ଷା ସ୍ମୃତି ତର୍ପଣରେ। ଅନେକ ବିଭା ନ ହୋଇ ମଧ୍ୟ ରହିଯାନ୍ତି-

୬. ରସରକେଲୀ ଗୀତ, ୭. ମାଇଲାଜଡ଼ର କିଞ୍ଚିତ ଅଂଶ। ୮. ଝୁମୁକୁଝୁମା ଗୀତ।

ଆଜୀବନ। ତେଣୁ ସେ ସମାଜ ପରମ୍ପରା ବିଧି ତାକୁ 'ଉଦଳିଆ ବିଭାକରିବାକୁ ବାଧ କରେ। ଆଉ ତା ହୁଏ ତାରି ଜୀବନର ଏକମାତ୍ର ପାଥେୟ। ଝିଅ ସେପରି ସମାଜକୁ ପଦାଘାତ କରି ପଠାଇ ଯିବାକୁ ଇଚ୍ଛାକରେ-

" x x ଡ଼ବା ଘର ରାଉଁ ଝାଉଁ
ନନୀର୍ ମନ ବୁଲୁଛେ ପଲାଇ ଯାଉଁ ହୋ
ବାବୁ ଜାତିର ଭୋଜ ଦେମା କାହୁଁରେ ନାଗର।
x x x।।"

ବିଶେଷତଃ ବାହା ପରେ ଝିଅ ବିଦାୟ ଯେ ସ ଜୀବନର ଏକ କରୁଣ ଅଧ୍ୟାୟ। ସେ ଲୋତକର ବିଦାୟ ସତେ କେତେ଼ କରୁଣ ଆଉ ଦୁଇ ଓଷ୍ଠ କମ୍ପନର ଭାଷା ସତେ ଯେପରି ଏ ଦୁଃଖରେ ପ୍ରକୃତିର ହୃଦୟ ମଧ ବିଚଳିତ ହୋଇଯାଇଛି-

ସବୁଠୁଁ ବେଶୀ କରୁଣ ହୋଇଉଠେ ଆମେ ଯେତେ ବେଳେ ଶୁଣୁ କିମ୍ବା ଆଡ଼ୁଁ ହଳିଆ ଗୀତ। ସେଇ ହଳିଆ ମୂଳିଆର ଜୀବନର ଅଶ୍ରୁଳ କାହାଣୀରେ ଉବୁଟୁବୁ ଏ ହଳିଆ ଗୀତ ମାନ। ଗୋତିର ଅତ୍ୟାଚାର ଜର୍ଜରିତ କରୁଣ କାହାଣୀ ମଧ ସେଥିରେ ପ୍ରତିଭାତ। ହଳିଆ ଗୀତରେ ମଧ ସମାଜର ଦୁଃଖ ସୁଖର ଚିତ୍ର ସ୍ପଷ୍ଟ ମୂର୍ତ୍ତିମାନ।

"ବଏଲାରେ ରାମ ଲଇକ୍ଷଣ ଯେ ଦୁଗୋଟି ଭାଇ
କେ ଫାନ୍ଦେ ଲଙ୍ଗଳ ଯେ କି ଫାନ୍ଦେ ଆଉମଈ
କାଦୋ କରିଅଛନ୍ତି ଗଜବାହାଲେ
ବାହାଲେ, ସୀତୟା ଯିବେ ରୁଇ ହୋଓଓ x ।।"

ଉପରୋକ୍ତରୁ ଏତିକି କହିଲେ ହେବ ଏହା ପୁରାଣର ବାକ୍ୟ କିମ୍ବା ଉପାଖ୍ୟାନର ବିଷୟ ସର୍ବସ୍ୱ କଦାପି ନୁହେଁ କି ଚିତ୍ର ମଧ ନୁହେଁ. ଏଥିରେ ତେଣୁ ଅଛି ସାଂପ୍ରତିକ ପଲ୍ଲୀଜୀବନ ହସ ଆଉ କାନ୍ଦର। ଯେପରି କି ଶ୍ରୀକୁମାର ହସନଙ୍କର ମତରେ - 'ଭଗବାନ ହିଁ ଏଠାରେ ତେଲ ଲୁଣର ସଂସାରୀ ମଣିଷ।'

ସର୍ବୋପରି ମଙ୍ଗଲୁ ଚରଣ ବିଶ୍ୱାଳଙ୍କ ରଚିତ 'ମାଳଞ୍ଚ' ରୁ କେତୋଟି ସମ୍ବଲପୁର ଅଞ୍ଚଳର ଦୈନନ୍ଦିନ ପରିବେଶ ତଥା ଚଳଣିର କେତେଗୋଟି ଉଦାହରଣ ଲୋଭ ସମ୍ବରଣ କରି ନ ପାରି ଏଇ ପ୍ରବନ୍ଧର ଶେଷରେ ତାହା କ୍ରମେ ଉଲ୍ଲେଖ କରାଯାଇପାରେ।

"ଦାଲି ବସାଇଲି ଲେକସୁନ ଘରଚି ଘର ପିଛାଲର ଚୁହ୍ଲୀ କୁଆ କାଆ କଲା ଛାନି ପିରିତାରେ ଆଉଥବବେ କିଏ ବୁଲି । ଉଡ଼ି ଉଡ଼ି ଗଲା ଚଟିଆ ଚରେଇ ସାନ ସାଡ଼ ତାର ଡ଼ୋଲା ବାଲୁତ ପୁଅକୁ କେତେ ମାରି ମଳିକାଏଁ ହେଲା ଆଏରେନା କଷ ଲାଉ ଦେଇ ଖରଡ଼ିବି ବଲି କେନା ଶାଶଗତୁଲି ।।"

ପରିଶେଷରେ ଏତିକି କହିଲେ ହେବ, ସମ୍ବଲପୁରୀ ସଙ୍ଗୀତର ସାଙ୍ଗୀତିକତା ଲାଗି ଯେପରି ଆଜି ଆବାଳ ବୃଦ୍ଧବନିତା ସମସ୍ତଙ୍କର ପାଖରେ, ସମସ୍ତଙ୍କର କଣ୍ଠରେ, ସମସ୍ତଙ୍କର ମୁହଁରେ ଆଜି ବଞ୍ଚିରହିଛି ଆଉ ପହଞ୍ଚିପାରିଛି । ସେପରି ମଧ୍ୟ ତତ୍ ସଙ୍ଗେ ସଙ୍ଗେ ଶ୍ରୀ ତ୍ରିଲୋଚନ ମେହେରଙ୍କର ମତରେ ଏକମତ ହୋଇ ସମସ୍ୱରରେ କହିବାକୁ ପଡ଼େ ଯେ ଏହି ଲୋକଗୀତରେ ଯେପରି ସାଙ୍ଗୀତିକତାର ଅଙ୍ଗଲଗ୍ନ ପ୍ରବାହର ଧାରାର ସୁଅ ଛୁଟାଇଛି ଗଣ ଜୀବନର ହର୍ଷ, ବିଷାଦ, ଆନନ୍ଦ ଦୁଃଖ ସୁଖର ଭିତ୍ତି ସେପରି ସମ୍ବଲପୁରୀ ସଙ୍ଗୀତର ଭିତ୍ତିପ୍ରସ୍ତରକୁ ସୁଦୃଢ଼ କରି ପକାଇ ପାରିଛି । ଏହା ନିସନ୍ଦେହ ଏବଂ ସର୍ବଜନାଦୃତ । ଆଉ ସ୍ୱାଭାବିକତାର ବିଷୟ୍ ।



# ପଶ୍ଚିମାଞ୍ଚଳୀ ଉପଭାଷା-ଏକ ଭାଷାଗତ ଆବେଦନ

ମୀନକେତନ୍ ଛୁରୀଆ

ପଶ୍ଚିମାଞ୍ଚଳୀ ବା ସମ୍ବଲପୁରୀ ଉପଭାଷା କହିଲେ ଏହା ପଶ୍ଚିମ-ଓଡ଼ିଶା ଭୂଖଣ୍ଡ ଅନ୍ତର୍ଗତ ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର, ଫୁଲବାଣୀ, କଳାହାଣ୍ଡି ଓ ମଧ୍ୟପ୍ରଦେଶ ଅନ୍ତର୍ଗତ ଫୁଲଝର୍ ଆଦି ଅଞ୍ଚଳର ଲୋକମୁଖର କଥିତ ଭାଷାକୁ ନିର୍ଦ୍ଦେଶ କରେ । ତଦବିଦ୍‌ଗଣ ଏହି ଆଞ୍ଚଳିକ ଭାଷା ଉପରେ ଆଲୋକପାତ ନ କରି ଏହି ଭାଷାକୁ ଶୁଦ୍ଧ ଓଡ଼ିଆ ଭାଷାର ଏକ ଉପଭାଷା ମାତ୍ର କହି ନୀରବ ହୋଇଥାନ୍ତି । ମାତ୍ର ପ୍ରକୃତରେ ଏକ ଭାଷା-ତାତ୍ତ୍ୱିକ ଦୃଷ୍ଟିକୋଣରୁ ପର୍ଯ୍ୟବେକ୍ଷଣ କଲେ ଏହି ଆଞ୍ଚଳିକ ଭାଷା, ଭାଷୀ ଓ ଉପଭାଷା ମଧ୍ୟରେ ଥିବା ସଂପର୍କୀତ ମାତ୍ରା ଓ ପ୍ରକାର ଦୃଷ୍ଟିରୁ ଶୁଦ୍ଧ ଲିଖିତ ଓଡ଼ିଆ କିମ୍ବା ପୂର୍ବାଞ୍ଚଳୀ କଥିତ ଓଡ଼ିଆ ଭାଷା ସହିତ ସେତେ ପରିମାଣରେ ସଂପୃକ୍ତ ନୁହେଁ । ଏହା ଯେତେ ପରିମାଣରେ ଶୁଦ୍ଧ ଓଡ଼ିଆ ବା ପୂର୍ବାଞ୍ଚଳୀ ଓଡ଼ିଆ ଭାଷା ସହିତ ସଂପୃକ୍ତ ତଦପେକ୍ଷା ବେଶୀ ମାତ୍ରାରେ ସ୍ୱକ୍ରୀୟ ବୈଶିଷ୍ଟ୍ୟ ତଥା ଅନ୍ୟ ଭାଷାଗତ ପ୍ରଭାବ ଦୃଷ୍ଟିରୁ ଅସଂପୃକ୍ତ । ଏହି ଦୃଷ୍ଟିରୁ ଏହି ଆଞ୍ଚଳିକ ଭାଷା ବଳିଷ୍ଠ ଭାବରେ ନ ହେଲେ ମଧ୍ୟ ତଥାପି ଏକ ଭାଷା ଗତ ସ୍ୱାତନ୍ତ୍ର୍ୟ ଦାବୀ କରେ । ବର୍ତ୍ତମାନ ଏହିସବୁ ସ୍ୱାତନ୍ତ୍ର୍ୟର କାରଣ ଓ ରୂପରେଖ ଭୌଗୋଳିକ ଐତିହାସିକ, ସମାଜତତ୍ତ୍ୱ, ସାଂସ୍କୃତିକ ତଥା ରୂପତତ୍ତ୍ୱ, ଧ୍ୱନିତତ୍ତ୍ୱ, ବ୍ୟାକରଣ ଓ ଅନ୍ୟ ଭାଷାଗତ ପ୍ରଭାବ ଦୃଷ୍ଟିରୁ ଆଲୋଚନା କରାଯାଇପାରେ ।

ଯେ କୌଣସି ଦେଶରୁ ସଂସ୍କୃତି ହିଁ ଭାଷା ଏକ ବଳିଷ୍ଠ ରୂପ ଦାନ କରିଥାଏ । ପଶ୍ଚିମ ଓଡ଼ିଶାର ସଂସ୍କୃତି ଯେ ସୁପ୍ରାଚୀନ ଏହା ଐତିହାସିକ ଓ ପତ୍ନତାତ୍ତ୍ୱିକ ମତସନ୍ମତ । କଳାହାଣ୍ଡି ଜିଲ୍ଲାର ଗୁଡହାଣ୍ଡି ପର୍ବତର ଦରୀ-ଗୃହଚିତ୍ର ଓ ସମ୍ବଲପୁର ଜିଲ୍ଲା ଅନ୍ତଃଗତ ବେଲପାହାଡ଼ ନିକଟବର୍ତ୍ତୀ ବିକ୍ରମ ଖୋଲର ଲିପି-ଚିତ୍ର ଏହି ଭୂଖଣ୍ଡରେ ପ୍ରାଚୀନ ସଂସ୍କୃତିକୁ ପ୍ରମାଣ କରେ । ପଣ୍ଡିତମାନେ ମତ ପ୍ରଦାନ କରିଛନ୍ତି- ଏହା ହେଉଛି ହରପା ମହେଞ୍ଜୋଦାରୀୟ ସଂସ୍କୃତି ସଂପୃକ୍ତ ପ୍ରାମାଣିକ କଳାକୃତି । ସୁତରାଂ ଏହି ପାର୍ବତ୍ୟ ପଶ୍ଚିମାଞ୍ଚଳରେ ସୁପ୍ରାଚୀନ କାଳରେ ଜନବସତିର ସ୍ଥିତିଥିଲା । ତତ୍ ସଙ୍ଗେ ଏକ ଭାବଙ୍ଗୀ

ସଂସ୍କୃତି ମଧ ତିଷ୍ଠିରହିଥିଲା । ତେଣୁ ସେମାନଙ୍କର ଯେ ନିଶ୍ଚିତ ଭାବେ ଏକ ଭାଷା (ମୌଖିକ) ଥିଲା କହିବା ନିଷ୍ପ୍ରୟୋଜନ ।

ବର୍ତ୍ତମାନ ପ୍ରଶ୍ନ ଉଠେ ସେମାନଙ୍କର ଭାଷା କ'ଣ ଥିଲା ? ତାହା କଣ ଏବେର ଲିଖିତ ଓଡ଼ିଆ ? ବର୍ତ୍ତମାନର ଓଡ଼ିଆ କ'ଣ ସେହି ଭାଷାସ୍ରୋତ ପ୍ରବାହର କ୍ରମୋନ୍ନତି ଫଳ ? ପ୍ରକାଶ ଥାଉକି କେବଳ ପଶ୍ଚିମ ଓଡ଼ିଶା କାହିଁକି ପୂର୍ବ ଓଡ଼ିଶାର ମଧ ଏହି ସମୟରେ ଏହିପରି ସମଶ୍ରେଣୀରୁ ସଂପର୍କ ଛିନ୍ନ କରିଦେଲା ଓ ଆହରଣ ଗତ ବୈଶିଷ୍ଟ୍ୟ ହେଲା । ଏହାପରେ ଆଲୋଚନା କରାଯିବ ।

ବର୍ତ୍ତମାନ, ଏହି ଶୁଦ୍ଧ ଓଡ଼ିଆ ଭାଷା ସହିତ ପଶ୍ଚିମାଞ୍ଚଳୀ ଭାଷାର ସଂପର୍କ କେଉଁ ଦୃଷ୍ଟିରୁ ରହିଛି ତାହା ବିଚାର୍ଯ୍ୟ । ଏହି ସଂପର୍କର ମୂଳସୂତ୍ର ତଥା ପରିମାଣ ଓ ପ୍ରକାର ଭେଦରେ ହିଁ ଏହି ଆଞ୍ଚଳିକ ଭାଷାର ସ୍ୱାତନ୍ତ୍ର୍ୟ ନିର୍ଭର କରେ ।

ଓଡ଼ିଆ ଭାଷା ଅର୍ଦ୍ଧମାଗଧୀ-ଅପଭ୍ରଂଶରୁ ଜନ୍ମଲାଭ କରିଛି । ଏହା ପୂର୍ବରୁ ଉଡ୍ର ଭୂଖଣ୍ଡରେ ଭାରତ (ଖ୍ରୀ: ପୂ: ୮ମ ଶତାବ୍ଦୀ) ଓ ମାର୍କଣ୍ଡେୟଙ୍କ ମତରେ ରହିଥିଲା । ଉଡ୍ରଜାପ୍ରାକୃତ । ଏହି ପ୍ରାଚୀନ କାଳରୁ ସ୍ଥିତ ଉଡ୍ରଜା- ପ୍ରାକୃତ ପରେ ଅର୍ଦ୍ଧ-ମାଗଧୀ ପ୍ରାକୃତ ସହିତ ଓ ଶବର ତଥା ଦ୍ରାବିଡ ଗୋଷ୍ଠୀର ଭାଷା ସହିତ ତ୍ରିବେଣୀ ଧାରା ପରି ମିଶ୍ରିତ ହୋଇ ବର୍ତ୍ତମାନର ସମୃଦ୍ଧଭାଷା ରୂପେ ରୂପରେଖ ନେଇଛି । ପୁନଶ୍ଚ ଉତ୍ତର ଭାରତରୁ ଆଗତ ଆର୍ଯ୍ୟ ସକ୍ରିୟ୍ ଓ ବ୍ରାହ୍ମଣ ମାନଙ୍କର ସଂସ୍କୃତିଗତ ଆନ୍ଦୋଳନ ଫଳରେ ତଥା ସେମାନଙ୍କ ଚେଷ୍ଟାକୃତ ସଂସ୍କୃତାୟିକ ହୋଇ ପଡ଼ିଛି । ମାତ୍ର ପଶ୍ଚିମ ଓଡ଼ିଶାର ପରିସ୍ଥିତି ଭିନ୍ନ । ଏହା ଭୌଗୋଳିକ ସୀମା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥଳ । ଦକ୍ଷିଣପଟରୁ ଯେପରି ରହିଛି ଦ୍ରାବିଡ଼ ଭାଷାର ପ୍ରଭାବ ଉତ୍ତରପଟୁ ସେପରି ପ୍ରଭାବ ଆସିପାରି ନାହିଁ । କେବଳ ଅର୍ଦ୍ଧମାଗଧୀର ସ୍ରୋତ ମିଶ୍ରିତ ହୋଇଛି ପରୋକ୍ଷ ଭାବରେ । ତେଣୁ ସୌଭାଗ୍ୟ ହେଉ ବା ଦୁର୍ଭାଗ୍ୟ ହେଉ ଏହି ଆଞ୍ଚଳିକ ଭାଷା ପରିବାର ଗୋଷ୍ଠୀଦ୍ୱାରା ସେତେ ପ୍ରଭାବିତ ନୁହେଁ । ଯେଉଁ ପରିମାଣରେ ପ୍ରଭାବିତ ହୋଇ ପୂର୍ବାଞ୍ଚଳୀ ଓଡ଼ିଆ ଭାଷା ତା'ର ମୌଳିକ ସତ୍ତା ହରାଇ ଦେଇଛି । ତଥାପି ଏହାପରେ ବଳିଷ୍ଠ ଓଡ଼ିଆ ଭାଷାର ଚାପରେ ଶେଷକୁ ନିଜର ସତ୍ତାକୁ ଦୁର୍ବଳ କରି ପକାଇଛି । ପୁନଶ୍ଚ ଆହୁରି କେତେକ କାରଣ ମଧ ଏହାର ଅବିକଶିତ ହେବାର ଦୁର୍ବଳ ରୂପାପାଇଁ ଦାୟୀ । ଏହି ପ୍ରସଙ୍ଗ ଆଲୋଚନା କଲେ ହୁଏତ ଅବାନ୍ତର ହେବା ନାହିଁ । କାରଣ ପ୍ରଶ୍ନ ଉଠିପାରେ ଯଦି ଏହା ଏକ ମୌଳିକ ଭାଷା ତେବେ ଏହାର ବିକଶିତ ରୂପା କାହିଁ ? ତେବେ ଏହି ପ୍ରଶ୍ନ ପାଇଁ ଏକ ଆଲୋଚନା ମୂଳକ ଉତ୍ତର ଦିଆଯାଇପାରେ ।

ଗୋଟିଏ ଆଞ୍ଚଳିକ ଭାଷା ଗୋଟିଏ ଶୁଦ୍ଧମାନ ସଂପନ୍ନ ଭାଷାରେ ପରିଣତ ହୁଏ ଯଦି ତାହା ସାଂସ୍କୃତିକ ପ୍ରବାହମାନ ଚେତନାକୁ ଧରିରଖି ଥାଏ । ପୂର୍ବାଞ୍ଚଳୀ ଓଡ଼ିଆ ଭାଷା ପୂର୍ବରୁ କଥିତ ଯେ ତାହା ଉତ୍ତରରୁ ଆନୀତ ଚେଷ୍ଟାକୃତ ସଂସ୍କୃତ ଭାଷା ଚେତନା ଦ୍ୱାରା ପ୍ରଭାବିତ ହେବାରୁ ତାହା ସଂସ୍କୃତି-ପ୍ରିୟ ସମାଜର ସେହି ସାଂସ୍କୃତିକ ବାତାବରଣର ଭାବ ପ୍ରକାଶ କରିବା ପାଇଁ ସକ୍ଷମ ହୋଇପାରିଲା । 'ରାଜା ବୋଲି ପୁଣି ଏକ ଶାସକ ଗୋଷ୍ଠୀ ଶାସନ କରିଛନ୍ତି ପୂର୍ବ ଓଡ଼ିଶାକୁ । ସେମାନେ ପୁଣି ପୃଷ୍ଠପୋଷକତା କରିଛନ୍ତି ସଂସ୍କୃତ ସାହିତ୍ୟର । ଶାସ୍ତ୍ରଗତ ଚର୍ଚ୍ଚା ଯେଉଁ ବ୍ରାହ୍ମଣ ଗୋଷ୍ଠୀର ତଥାକଥିତ ଜନ୍ମଗତ ଅଧିକାର ସେମାନେ ରାଜ ଆଶ୍ରୟରେ ସାଂସ୍କୃତିକ ସମାଜରେ ଭାଷାଗତ ପରିବର୍ତ୍ତନକୁ ଇନ୍ଧନ ଯୋଗାଇ ଭାଷାକୁ ସଂସ୍କୃତାୟିତ କରିଛନ୍ତି । ସାହିତ୍ୟ କ୍ଷେତ୍ରରେ ମଧ ସେହି ଅବସ୍ଥା । ମୌଳିକ ଓଡ଼ିଆ ଭାଷାର ସାହିତ୍ୟ ସାରଳା ଯୁଗରେ ସୃଷ୍ଟି ହୋଇପାରେ । ନୈଷଧପରାଏ ଘେନ ଆଦର୍ଶରେ ରୀତିଯୁଗରେ ସଂସ୍କୃତାୟିତ ହୋଇ ପଡ଼ିଛି । ପଶ୍ଚିମ ଓଡ଼ିଶାର ସାମାଜିକ ଇତିହାସ ଭିନ୍ନ ପରିସ୍ଥିତିରେ ଗତିଶୀଳ । ଏହି ଅଞ୍ଚଳରେ ସଂସ୍କୃତ ଭାଷାର ପ୍ରତ୍ୟକ୍ଷ ପ୍ରବେଶ କରିବା ପାଇଁ କୌଣସି ଅନୁକୂଳ ପରିସ୍ଥିତି ନଥିଲା । ଦୁର୍ଦ୍ଦଶ ଶକାର ଆଭୀର ଚଣ୍ଡାଳ-ଦ୍ରାବିଡ଼ ଅଧୁଷିତ ଏହି କୋଶଳ ଖଣ୍ଡରେ ଛୋଟ ଛୋଟ ମଣ୍ଡଳରେ ବିଞ୍ଝାଲ ଗଣ୍ଡ ତଥା ଭଏନା ଆଦି ପାର୍ବତ୍ୟ ଜାତି ଗୁଡ଼ିକ ଶାସକ ହୋଇ ଶାସନ କରୁଥିଲେ । ସେମାନଙ୍କର ରାଜନୈତିକ ସ୍ଥିରତା ନଥଲା । ତେଣୁ ସେମାନେ ଆଉ ପୂର୍ବାଞ୍ଚଳୀ ଗଜପତି ମାନଙ୍କ ପରି ସଂସ୍କୃତିର ପୃଷ୍ଠପୋଷକ ନଥିଲେ । ପୁନଶ୍ଚ ସଂସ୍କୃତି ଧର୍ମ ସହିତ ସଂପର୍କ ରଖି ତିଷ୍ଠି ଉଠିଥାଏ । ଧର୍ମ ଯେଉଁ ଦିଗରେ ପ୍ରଚାରିତ ହୁଏ, ଧର୍ମୀୟ ସାହିତ୍ୟ (ଶୁଦ୍ଧ) ସେହିପଟେ ବ୍ୟାପ୍ତହୋଇ ଭାଷାଗତ ଉପାଦାନକୁ ବଳିଷ୍ଠ କରିଥାଏ । ସେହି ଦୃଷ୍ଟିରୁ ଦେଖିଲେ ଧର୍ମର ସେପରି ପ୍ରବେଶ ଏହି ଭୁଖଣ୍ଡରେ ନଥିଲା । ତେଣୁ ସେହି ସୂତ୍ରରେ ଭାଷାଗତ ଫାଇଦା ଉଠାଇବା ଏହି ଅଞ୍ଚଳରେ ସମ୍ଭବ ହୋଇନାହିଁ । ତଥାପି ବହୁ ବିଳମ୍ବରେ ହେଲେ ମଧ ଏହି ଅଞ୍ଚଳର ସହଜଯାନୀ ସାଧକଗଣ ଚର୍ଯ୍ୟାପଦରେ କେତେକ ଆଞ୍ଚଳିକ ଶବ୍ଦ ବ୍ୟବହାର କରିଛନ୍ତି ଯଥା :- ମାର୍‌ମି, ଲେମି, ଇତ୍ୟାଦି । ଏହି ଶବ୍ଦ ଏବେ ମଧ ବ୍ୟବହୃତ ହେଉଛି ଏହି ଆଞ୍ଚଳିକ ଭାଷାରେ । ଭବିଷ୍ୟତ କାଳରେ ଓଡ଼ିଆରେ ଇବ ପ୍ରତୟ ଲାଗେ ମାତ୍ର ଏହି ଆଞ୍ଚଳିକ ଭାଷାରେ ପ୍ରଥମ ପୁରୁଷ ଏକବଚନ, ଓ ବହୁବଚନରେ ଇମ/ଇମା ପ୍ରଭୃତି ଲାଗିଥାଏ । ଯଥା :-

ମୁଇଁ ଖାଏମି — ଶୁଦ୍ଧ ଓଡ଼ିଆ : ମୁଁ ଖାଇବି

ଆମ୍‌ହେ ଖାଏମା — ଶୁଦ୍ଧ ଓଡ଼ିଆ : ଆମ୍ଭେ ଖାଇବା ।

ତଥାପି ଏହି ଭାଷାରେ ଲିଖିତ ସାହିତ୍ୟର ସତ୍ତା ଅଛି କହିଲେ ଭୁଲ୍ ହେବ, ଏଥିପାଇଁ ହୁଏତ

ସାଂସ୍କୃତିକ ଅଥର୍ବତାହିଁ ଦାୟୀ । ତେଣୁ ଭାଷା ଏକ ବିକଶିତ ରୂପ ପ୍ରାପ୍ତ ହେବାପାଇଁ ଯେଉଁ ଉପାଦାନ ଦରକାର କରେ ତାହା ଏହି ଆଞ୍ଚଳିକ ଭାଷାର ଭାଗ୍ୟରେ ଘଟିନାହିଁ । ତେଣୁ ଏହି ଅଞ୍ଚଳର ଅଧିବାସୀ ସଂସ୍କୃତିଗତ ଉଚ୍ଚ ଜଟିଳ ଭାବର ଆଦାନ ପ୍ରଦାନ ପାଇଁ ଯେଉଁ ଶବ୍ଦ ଭଣ୍ଡାର ଦରକାର ସେଥିରୁ ବଞ୍ଚିତ ହେବାରୁ ଭାଷା କେବଳ ବ୍ୟାବହାରିକ ସ୍ତରରେ ରହିଗଲା । ଉଦାହରଣ ସ୍ୱରୂପ 'ଭଦ୍ର' ହେଉଛି ଏକ ତତ୍ସମ ଶବ୍ଦ । ଏହି ଶବ୍ଦ ପ୍ରକୃତରେ ଅପଭ୍ରଂଶ ହୋଇ ଓଡ଼ିଆରେ 'ଭଲ'ରେ ପରିଣତ ହୋଇଛି । ତଥାପି ଓଡ଼ିଆରେ ଉଭୟ ଶବ୍ଦ ବ୍ୟବହାର କରାଯାଏ । କାରଣ 'ଭଦ୍ର'ର ଉଚ୍ଚାଙ୍ଗ ଅର୍ଥ ସମୀଚିନତା 'ଭଲ'ରେ ନାହିଁ । 'ଭଲ' ଶବ୍ଦଟି ଗୋଟିଏ ବସ୍ତୁପ୍ରତି ମୁଖ୍ୟତଃ ପ୍ରଜୁଯ୍ୟ । ମାତ୍ର 'ଭଦ୍ର' ଶବ୍ଦ କେବଳ ବ୍ୟକ୍ତିର ଗୁଣପ୍ରତି ପ୍ରଜୁଯ୍ୟ । ଓଡ଼ିଆରେ 'ଭଦ୍ର' ଶବ୍ଦର ଉଚ୍ଚଅର୍ଥ 'ଭଲ' ଶବ୍ଦ ହେବା ବେଳକୁ ବ୍ୟାହତ ହୋଇଛି । ମାତ୍ର ସଂସ୍କୃତି ବିମୁଖତା ଯୋଗୁଁ ଏହି ଆଟବିକ ଅଞ୍ଚଳରେ ସେପରି ଶବ୍ଦ ଯଥା 'ଭଦ୍ରକ୍ଷ ଭଳି ଶବ୍ଦର ଅର୍ଥବହନ କରୁଥିବା ପ୍ରତିଶବ୍ଦ ନାହିଁ । ଯାହାବା ଅଛି ତାହା ନିକଟବର୍ତ୍ତୀ ଅର୍ଥପ୍ରକାଶ କରିବାପାଇଁ ସୁଦ୍ଧା ଅକ୍ଷମ ଯଥା - ନୁକୋ, ଅଏନ୍ ବନେ ଇତ୍ୟାଦି ଶବ୍ଦ । ଏହି ପ୍ରସଙ୍ଗରେ ସୁବିଧା ଦୃଷ୍ଟିରୁ ଭାଷାକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ ଯଥା ୧ - ନିତ୍ୟ ବ୍ୟବହାର୍ଯ୍ୟ ଘରୋଇ ଚଳଣୀର ଓ ସାଂସ୍କୃତିକ । ୨ . ଚେଷ୍ଟାକୃତ ଧରାବନ୍ଧା ଆଭିଜାତ୍ୟ ପୂର୍ଣ୍ଣ ଭାଷାଗତ ସ୍ତରର । ଏହି ଦ୍ୱିତୀୟ ସ୍ତରର ଭାଷାପାଇଁ ବ୍ୟାକରଣ ନିର୍ଦ୍ଧାରିତ ନିୟମାନୁଯାୟୀ ସାବଧାନତା ଦରକାର ପଡ଼ିଥାଏ । ପ୍ରଥମ ସ୍ତରର ଭାଷା ବ୍ୟାକରଣ ସମ୍ମତ ହେଲେ ଦ୍ୱିତୀୟ ସ୍ତରକୁ ଉନ୍ନୀତ ହୋଇଥାଏ । ତେଣୁ ଓଡ଼ିଆ କଥିତ ଭାଷାର ଗଦ୍ୟ ଏକ ବଳିଷ୍ଠ ରୂପ ଲାଭକରିବା ପୂର୍ବରୁ ବିକୃତ ରୂପରେ ଖୋଦିତ ବା ଲିପିବଦ୍ଧ ହୋଇଛି ।

ପ୍ରାଥମିକ ସ୍ତରର ଅର୍ଥାତ୍ ନିତ୍ୟ ବ୍ୟବହାରିକ ବସ୍ତୁ ଓ ଭାବଚିତ୍ର ଓ ତଦ୍‌ଗତ ପରିପ୍ରେକ୍ଷୀରେ ଯେଉଁ ଭାବ ବିନିମୟ ପାଇଁ ଶବ୍ଦଭଣ୍ଡାର ଓ ଶୈଳୀ ଦରକାର ତାହା ଏହି ପଶ୍ଚିମାଞ୍ଚଳୀ ଭାଷାରେ ଯଥେଷ୍ଟ ମାତ୍ରାରେ ପରିପୂର୍ଣ୍ଣ ରହିଛି ଏବଂ ଏହି ପରିପ୍ରେକ୍ଷୀରେ ଏହି ଆଞ୍ଚଳିକ ଭାଷାର ଭାଷାଗତ ଆବେଦନ ଯାହା ରହିଛି ତାହା ଶୁଦ୍ଧ ଓଡ଼ିଆ ଭାଷାରେ କସ୍ମିନ୍ କାଳେ ସେତେ ସମପରିମାଣରେ ବଳିଷ୍ଠ ଭାବ ଦ୍ୟୋତକିତ ଭାବେ ପରିଲକ୍ଷିତ ହୋଇନାହିଁ । ଉଦାହରଣ ସ୍ୱରୂପ :-

"ଚରେଇ ଟାକେ ଜୁଏନ ଝୁରିନେ, ତାହେଁରୁ ପୁତାର୍ କେ ଦନା ପୁର୍‌ଗା କରି ଖାଏମା ।"

ଏହି ବାକ୍ୟ ଅନ୍ତର୍ଗତ 'ଝୁରିବା' ହେଉଛି ଏକ କ୍ରିୟା । ଏହା ଦେଶଜ (ରୁଢ଼ି) । ଏହାର ପ୍ରତିଶବ୍ଦ ସଂସ୍କୃତ କି ଓଡ଼ିଆରେ ବିରଳ ଯାହାକି ଠିକ୍ ଏହି ଶବ୍ଦର ଅଭିପ୍ରେତ ଉପଯୁକ୍ତ ଅର୍ଥ ବହନ କରିପାରିବେ । 'ଝୁରିବା'ର ଅର୍ଥ ହେଉଛି ସାମାନ୍ୟ ମାତ୍ର ପୋଡେଇବା । ଚରେଇ (ପକ୍ଷୀ)ଟାକୁ

ନିଆଁରେ ଝୁରିଦେଲେ ତା'ର ପରମାତ୍ର ପୋଡିଯାଏ ମାତ୍ର ମାଂସ ପୋଡେ ନାହିଁ । ଏହି ଅର୍ଥପାଇଁ ଓଡ଼ିଆ ଭାଷାର ଦରପୋଡା ଶବ୍ଦ ବ୍ୟବହାର କରାଗଲେ ମଧ ତାହା ସେତେ ସଠିକ୍ ନୁହେଁ, 'ଦରପୋଡା' ଶବ୍ଦ ମଧ ମୌଳିକ ନୁହେଁ, ଏହା ଏକ ଯୌଗିକ ଶବ୍ଦ । ସେହିପରି 'ଦନାପୁର୍‌ଗା' କହିଲେ ଦନା (ପତ୍ରଠୋଲା)ରେ ମାଂସରଖି ନିଆଁରେ ଶୁଦ୍ଧ କରାଯିବା କ୍ରିୟାକୁ ବୁଝାଏ । ଏହା ଠିକ୍ ଭାବେ ପାତ୍ରରେ ଶୁଦ୍ଧ କରିବା ଅନୁରୂପ ହୋଇଥାଏ । 'ଦନାପୁର୍‌ଗା'ର ସାଙ୍କେତିକ ପ୍ରତିଶବ୍ଦ ଓଡ଼ିଆ ଭାଷାରେ ନାହିଁ । ଯଦି ଦରକାର ପଡେ ତେବେ ଓଡ଼ିଆ ଶୁଦ୍ଧଭାଷାରେ ବର୍ଣ୍ଣନାତ୍ମକ ଶବ୍ଦାବଳୀ ବା ବାକ୍ୟ ହିଁ ଏହି ଶବ୍ଦର ଅଭାବ ପୂରଣ କରିପାରେ । ଏହିପରି ଅନେକ ଦେଶଜ ଶବ୍ଦ ଓ କ୍ରିୟାପଦ ରହିଛି ଯାହାକି ଏହି ଭାଷାକୁ ସମୃଦ୍ଧ କରି ରଖିଛି କେବଳ ନିତ୍ୟ ବ୍ୟବହାର୍ଯ୍ୟ ଭାଷାଗତ ପରିପ୍ରେକ୍ଷୀରେ ।

ତେଣୁ ଉପରୋକ୍ତ ପ୍ରସଙ୍ଗରୁ ଏହା ପ୍ରମାଣିତ ଯେ, ଯେହେତୁ ଏହା ପୂର୍ବାଞ୍ଚଳୀ ସଂସ୍କୃତି ସହିତ ବିଚ୍ଛିନ୍ନ ହୋଇ ପଡ଼ିଲା ସେହେତୁ ଏହା ଏକ ମାର୍ଜିତ ସଂସ୍କୃତିଗତ ଭାବଦ୍ୟୋତକ ଭାଷାରୂପେ ବିକଶିତ ହୋଇପାରିଲା ନାହିଁ । ପୁନଶ୍ଚ ସେହି ପ୍ରମାଣର ପ୍ରବାହରେ ଆଉ ଏକ ତଥ୍ୟ ସାହାଯ୍ୟରେ ଏହାର ଅବିକଶିତ ହେବାର କାରଣ ବଦଳାଇ ଦିଆଯାଇପାରେ ଯେ, ଏହି ଭାଷାର ବିକଶିତ୍ ହେବାର ମାର୍ଗ ରୁଦ୍ଧ ହୋଇଥିଲା, ଓଡ଼ିଆ ଭଳି ସାଂସ୍କୃତିକ ଚେତନା ଜଡ଼ିତ ଭାଷା ସଂପର୍କରେ ଆସି ଏହି ଓଡ଼ିଆ ଶୁଦ୍ଧ ଭାଷାରେ ଭାଷାଗତ ଶକ୍ତିର ସ୍ରୋତଥିଲା ପ୍ରଚୁର । ତେଣୁ ଏହି ଭାଷା ପଶ୍ଚିମାଞ୍ଚଳୀ ଭାଷାକୁ କିଛି ପରିମାଣରେ ଚପେଇ ଦେଇଛି । ଏହି ଭାଷାର ଶବ୍ଦ ମଧ ପଶ୍ଚିମାଞ୍ଚଳୀରେ ପ୍ରବେଶ କରିଛି । ତେଣୁ ଏବେର ପଶ୍ଚିମାଞ୍ଚଳୀରେ ଓଡ଼ିଆ ଭାଷାର ପ୍ରାଣ-ପ୍ରବାହ କିଛି ମିଶିଯିବାରୁ ଅନେକ ଅଞ୍ଚଳ ଆପାତଃ ଧାରଣ ଜନ୍ମିଥାଏ ଯେ ଏହି ଭୂଖଣ୍ଡର ଭାଷାଥିଲା ଓଡ଼ିଆ, ପରେ ୧୮୯୬ ମସିହାରେ ଏହି ଅଞ୍ଚଳରେ ହିନ୍ଦୀ ଏକ ସରକାରୀ ଭାଷାରୂପେ ପ୍ରଚଳିତ ହେବାରୁ ତାହା ଏବର ସମ୍ବଲପୁରୀ ରୂପରେ ରୂପ ପରିଗ୍ରହଣ କରିଛି । ମାତ୍ର ପ୍ରକୃତରେ ୧୮୯୬ ପୂର୍ବରୁ ଏହି ଭାଷାରେ ଲୋକ ସାହିତ୍ୟ ରଚିତ ହୋଇଥିଲା । ସେତେବେଳର ପଶ୍ଚିମାଞ୍ଚଳୀ କ'ଣ ଶୁଦ୍ଧ ଓଡ଼ିଆ ? ନିଶ୍ଚିତ ଭାବରେ ନୁହେଁ, ଏହି ଭାଷାର ପ୍ରାଚୀନତା ପାଇଁ ଅନେକ ସନ୍ଦେହ କରନ୍ତି କାରଣ ଲିଖିତ ସାହିତ୍ୟ ତମ୍ବାପଟ ବା ସନନ୍ଦ ଏହି ଭାଷାରେ ଖୋଦିତ ହୋଇନାହିଁ । କାରଣ ପାର୍ବତ୍ୟ ଉପଜାତିର ଶାସକଗଣ ସେହିଭଳି ସାଂସ୍କୃତିକ ଚେତନାର ଧାର ଧରିବା ଶିଖି ନଥିଲେ । ଯେତେବେଳେ ଆର୍ଯ୍ୟ କ୍ଷତ୍ରିୟ ଗୋଷ୍ଠୀ ଆସିଛନ୍ତି ସେତେବେଳେ ସେମାନେ ତମ୍ବାପଟାଦି ସଂସ୍କୃତରେ ଖୋଦନ କରିଛନ୍ତି ।

ଏହି ପ୍ରସଙ୍ଗରେ ଆଉ ଏକ ତଥ୍ୟ ସଂପର୍କରେ ଆଲୋକପାତ କରାଯାଇପାରେ । ଏହି ଅଞ୍ଚଳରେ ଶୁଦ୍ଧ ଓଡ଼ିଆ ଭାଷା ନଥାଇ କିପରି ଚୈତନ୍ୟ ଦାସ 'ନିର୍ଗୁଣ ମହାତ୍ମ୍ୟ' ଭଳି ଶୁଦ୍ଧ ଓଡ଼ିଆରେ ଗ୍ରନ୍ଥ ରଚନା କଲେ । ଏହିଭଳି ତଥ୍ୟପ୍ରତି ଦୃଷ୍ଟିରଖି ଅନେକ ଏହି ଅଞ୍ଚଳର ଭାଷା ଓଡ଼ିଆ ବୋଲି କହିଥାନ୍ତି । ମାତ୍ର ପୂର୍ବରୁ କଥିତ ଯେ ବଳିଷ୍ଠ ଆତ୍ମପ୍ରତୀୟର ଅଭାବ ତଥା ସାଂସ୍କୃତିକ ଚେତନା ଏହି ଭାଷାର ଶକ୍ତି ହୀନତା ହିଁ ଏଥିପାଇଁ ମୁଖ୍ୟତଃ ଦାୟୀ । ତେବେ ଚୈତନ୍ୟ ଦାସ ଓ ତାଙ୍କଭଳି କବି ଯେଉଁ ସାହିତ୍ୟ ସୃଷ୍ଟି କଲେ ସେଥିରେ ଶୁଦ୍ଧ ଓଡ଼ିଆ ଭାଷାର ସ୍ଥିତି ଆସିଲା କିପରି ? ଏହି ପ୍ରସଙ୍ଗରେ ଏହା କୁହାଯାଇ ପାରେ ଯେ ଧର୍ମ ବୋଲି ଯେଉଁ ମାଦକ ଦ୍ରବ୍ୟ ତାହା ଶାସ୍ତ୍ରପୁରାଣରେ ପ୍ରକାଶିତ ହେଉଥିବାରୁ ଏହି ପଶ୍ଚିମାଞ୍ଚଳରେ ଘରେ ଘରେ ତାହା ପଠିତ ହେଉଥିଲା । ତାହା କିନ୍ତୁ ଲିଖିତ ହୋଇଥିଲା ପୂର୍ବାଞ୍ଚଳୀ ଓଡ଼ିଆ ମାନଙ୍କ ଦ୍ୱାରା । ଶାସ୍ତ୍ରର ଅଭାବ ଦୂରପାଇଁ ଯଦି ଅଭ୍ୟାସ ବଶତଃ ଭାଷାଜ୍ଞାନ ଶିଖିଥିବ । ପଶ୍ଚିମାଞ୍ଚଳୀ ପ୍ରତିଭା ଯଦି ଶୁଦ୍ଧ ଓଡ଼ିଆ ଭାଷାରେ ଶାସ୍ତ୍ର ସୃଷ୍ଟିକରେ ତେବେ ଆଉ ଆଞ୍ଚଳିକ ଭାଷାରେ ସାହିତ୍ୟ ସୃଷ୍ଟି କରାଯିବା ପାଇଁ ଚେଷ୍ଟା କରାନଯିବା ଏକ ସ୍ୱାଭାବିକ ବ୍ୟାପାର । ତେଣୁ ଚେଷ୍ଟାକୃତ କୃତ୍ରିମ ପରମ୍ପରାରୁ ଏ ଅଞ୍ଚଳର ସ୍ରଷ୍ଟା ସାହିତ୍ୟ ସୃଷ୍ଟି କରିଛନ୍ତି ଓଡ଼ିଆ ଶୁଦ୍ଧ ଭାଷାରେ । ତେବେ ସାହିତ୍ୟ ଏହି ଭାଷାରେ ନାହିଁ ବୋଲି କହିବା ଭ୍ରମାତ୍ମକ ହେବ । ଯେ କୌଣସି ସାହିତ୍ୟ ସୃଷ୍ଟିର ଆଦି ପର୍ଯ୍ୟାୟ ହେଉଛି ମୌଖିକ ବା ଲୋକସାହିତ୍ୟ । ପଶ୍ଚିମାଞ୍ଚଳୀ ଭାଷାରେ ରହିଥିବା ଲୋକସାହିତ୍ୟ ଅତି ଉତ୍କୃଷ୍ଟ । ଦଣ୍ଡନୃତ୍ୟ ଗୀତ, ବାଣ୍ଡିବୁତଳ, ଡାଲଖାଇ, ମାଏଲା ଜଡ, ରସରକେଲି, ବଉଳ ଗୀତ, ହୁମୋ ଗୀତ, ଲୋକଗଳ୍ପ ଓ ଢ଼ଗଢ଼ମାଳୀ ଆଦି ଏହି ଅଞ୍ଚଳରେ ସାହିତ୍ୟିକତ ଆବେଦନ ବଳିଷ୍ଠ ଭାବେ ବହନ କରେ । ଏହି ଭାଷାର ମୌଳିକତା ଏହି ପର୍ଯ୍ୟାୟର ସାହିତ୍ୟରୁ ସ୍ପଷ୍ଟ । ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ଲିଖିତ ସାହିତ୍ୟ ସୃଷ୍ଟି ହୋଇନାହିଁ ଏହି ଆଞ୍ଚଳିକ ଭାଷାରେ । ଏହାର କାରଣ ଲିପି ଇତିହାସକୁ ପର୍ଯ୍ୟାଲୋଚନା କଲେ ଜଣାଯିବ । ଲିପିର ବିକାଶ ପରେହିଁ ସଠିକ୍ ଭାବେ ଓଡ଼ିଆ ଭାଷାର ଲିଖିତ ସାହିତ୍ୟ ସୃଷ୍ଟି ହୋଇ ପାରିଛି । ଏହି ଲିପି ପୂର୍ବାଞ୍ଚଳୀ ଓଡ଼ିଆ ଭାଷାର ସାହିତ୍ୟ ମାଧମରେ ହିଁ ପଶ୍ଚିମାଞ୍ଚଳରେ ପ୍ରବେଶ କରିଛି । ଲିପି ସହିତ ଶୁଦ୍ଧ ଓଡ଼ିଆ ଭାଷାର ସଂପର୍କ ଅବିଚ୍ଛେଦ୍ୟ ହୋଇପଡିଛି । ସୁତରାଂ ଲେଖିବାର ମାନେ ହେଉଛି ଶୁଦ୍ଧ ଓଡ଼ିଆରେ ଲେଖିବା । ପ୍ରକାଶ ଥାଉଁକି ପଶ୍ଚିମାଞ୍ଚଳର ନରସିଂହନାଥର ଶିଳାଲେଖ ଏହିଲିପିର ବିକାଶ ପର୍ଯ୍ୟାୟର ସମକାଳରେ ଓ ସମରୂପରେ ଖୋଦିତ ହୋଇଛି ମାତ୍ର ଯାହାକି ପୂର୍ବାଞ୍ଚଳୀ ପ୍ରଭାବରେ ସୃଷ୍ଟି । ତେଣୁ ଉପରୋକ୍ତ କାରଣ ଗୁଡ଼ିକ ଯୋଗୁଁ ଏହି ଭାଷାରେ ଲିଖିତ ସାହିତ୍ୟ ସୃଷ୍ଟି ହୋଇ ପାରିନାହିଁ । ଚେଷ୍ଟାକଲେ ମଧ ଖାଣ୍ଟି ପଶ୍ଚିମାଞ୍ଚଳରେ ପରିସ୍ଥିତିର

ଆବଶ୍ୟକାନୁସାରେ ଲିଖିତ ସାହିତ୍ୟ ସୃଷ୍ଟି ହୋଇପାରିବ ନାହିଁ । ଯଦି କରାଯାଏ ତାହା ବ୍ୟାବହାରିକ ସ୍ତରରେ ହୋଇ ପାରିବ ମାତ୍ର କାରଣ ପୂର୍ବରୁ ସୂଚିତ ଯେ ଉଚ୍ଚଭାବ ସୂଚକ ଶବ୍ଦାବଳୀର ଏହି ଆଞ୍ଚଳିକ ଭାଷାରେ ରହିଛି ଘୋର ଅଭାବ ।

ଭାଷା ଯଦି ଜନନୀ ହୁଏ ତେବେ ଉପଭାଷା କନ୍ୟା ଭାବରେ ଆଖ୍ୟାତ ହୋଇଥାଏ । ପଶ୍ଚିମାଞ୍ଚଳୀୟ ଉପଭାଷାତ୍ୱ ଦିଗଟି ଏହି ତାହାର ଗୋଟିଏ ଦିଗ ସର୍ବୋତ ଭାବେ ନୁହେଁ । ଏହାର କାରଣ ସ୍ୱରୂପ କେତେକ ସ୍ୱତନ୍ତ୍ର ରୂପତତ୍ତ୍ୱ ଓ ଦେଶଜ ଶବ୍ଦର ପ୍ରାଚୁର୍ଯ୍ୟ ଇତ୍ୟାଦି ହିଁ ଦାୟୀ ଯାହାକି ଏହି ଆଞ୍ଚଳିକତ ଭାଷାର ମୌଳିକତାକୁ ପ୍ରତିପାଦନ କରିଥାଏ । ପୁନଶ୍ଚ ହିନ୍ଦୀ ଦ୍ରାବିଡ଼ ଭାଷା ତଥା ଶବର ଭାଷା ପ୍ରଭାବରେ ଶୁଦ୍ଧ ଓଡ଼ିଆ ଭାଷାଠାରୁ ଯେଉଁ ଦୂରତ୍ୱ ଏହି ଆଞ୍ଚଳିକ ଭାଷା ରକ୍ଷା କରିପାରିଛି ତାହା ଭାଷା ଉପଭାଷାଗତ ଦୂରତ୍ୱ ଠାରୁ ଯଥେଷ୍ଟ ବେଶୀ । ଅଧିକାଂଶ ସମୟରେ ଏପରି ସମସ୍ୟା ଆସେ ଯାହାଦ୍ୱାରା କି ଓଡ଼ିଆ ଓ ପଶ୍ଚିମାଞ୍ଚଳୀ ଭାଷା ମଧ୍ୟରେ ଆକାଶ-ପାତାଳ ଭେଦ ଦୃଷ୍ଟିଗୋଚର ହୋଇଥାଏ । ଏଥିପାଇଁ ରୂପତତ୍ତ୍ୱ-ଗତ ଶବ୍ଦ ଗତ ସ୍ୱାତନ୍ତ୍ୟ ହିଁ ମୁଖ୍ୟତଃ ଦାୟୀ । ନିମ୍ନଲିଖିତ ଉଦାହରଣ ଏହା ସ୍ପଷ୍ଟହେବ ।

"ଟାଲ୍ ତୁଲିନର ଦୁଏଲ୍‌ନୁଁ କୁଲିହାଟେ କାହାରି କିଛି ମତେ ରୁଥିଆନ୍‌ଲା ଯେ ମୁଇଁ-ହୁର୍‌ମୁଖିଆ ପଲାଲିଁ ।"

ଉକ୍ତ ବାକ୍ୟରୁ ପୂର୍ବାଞ୍ଚଳୀ ଶୁଦ୍ଧ ଭାଷାଭାଷୀ ଜଣେ ବ୍ୟକ୍ତି କେଉଁ ଅର୍ଥ ପାଇବେ ତାହା କହିବା କଷ୍ଟସାଧ । ବର୍ତ୍ତମାନ ବାକ୍ୟଟିକୁ ବିଶ୍ଳେଷଣ କରାଯାଉ ।

ଟାଲ୍=ବାହାଲ୍ ଜମିକୁ ବର୍ଷାପାଣିରେ ତୋଡ଼ପଶି ନ ଯିବାକୁ ଦୁଇପାର୍ଶ୍ୱରେ ବଡ଼ଆଡ଼ି ଦିଆ ହୋଇଥିବା ଅପର ପାର୍ଶ୍ୱର ସୀମାନ୍ତବର୍ତ୍ତୀ କିଆରୀ ସମୂହ ।

ତୁଲି=କିଆରୀ ଦୁଏଲ୍=ଗାତ ନୁଁ=୫ମୀ ବିଭକ୍ତି ଚିହ୍ନ (ରୁ) ଭାବରେ ବ୍ୟବହୃତ । କୁଲିହା-ଶୃଗାଳ ରୁଥିଆନ୍‌ଲା= ଦ୍ରୁତଗତିରେ ଆକ୍ରମଣ କରିବା ପାଇଁ ପଶ୍ଚାଦ୍ଧବନ କରିବା । ମୁଇଁ-ସର୍ବନାମ 'ମୁଁ' ରେ 'ଇ' ର ଆଗମ । ହୁର୍‌ମୁଖିଆ-ଲକ୍ଷ୍ୟହୀନ ଭାବେ । ଅଡ଼ଛା ମୁହାଁ ।

ବର୍ତ୍ତମାନ ପଶ୍ଚିମାଞ୍ଚଳୀ ଭାଷାର ଯେଉଁ ସ୍ୱାତନ୍ତ୍ୟ ରହିଛି ସେହି ପର୍ଯ୍ୟାୟରେ ତାହାର କେତୋଟି ବୈଶିଷ୍ଟ୍ୟ ସଂପର୍କରେ ଆଲୋକପାତ କରାଯାଇ ପାରେ । ପ୍ରଥମତଃ ଦେଶଜ ଶବ୍ଦର ପ୍ରାଚୁର୍ଯ୍ୟ ଏହାର ଏକ ବଳଶାଳୀ ବିଭାବ । ଏହା ଶାବର ବା ଦ୍ରାବିଡ଼ ମୂଳ ହୋଇ ପାରେ । ଏହା ଅବଶ୍ୟ ଗବେଷଣାର ଅପେକ୍ଷା ରଖେ ନିମ୍ନରେ ସେଥିରୁ କେତେ ଗୁଡ଼ିଏ ସାର୍ଥ ପ୍ରଦତ୍ତ ହେଲା ।

କହର- ସୁଗନ୍ଧ
କୁମ୍‌ନା=ପୋଲୁହ
ଙ୍କଳିରିବାରଟା-ବୁଲିବ
କାଶ-ଓଡ଼ ହଳକରିବାର ପରିମାଣ
କରିଆ-ଉତ୍ତରୀୟ
କଁପର-ମଇ
କୁର୍ମି-ପଲା
କୁଟ୍‌ନୀ-ବ୍ୟବସାୟୀ(ସ୍ତ୍ରୀ)
କୁଚିଆ- କଳାବଜାର
କୁଶେର୍- ଆଖୁ
ଛଟ୍‌ନବାରଟା-ହାଣ୍ଡିରେ ଫଟାଦା ସୃଷ୍ଟିଦେବ। ଫିମ୍ପି ମାରିବା
ଛାର୍‌ରୀ- ଛାଡ଼ପତ୍ର ପ୍ରାପ୍ତାନାରୀ
ଛିନ୍‌ବାର୍‌ଟା-ଉପରୁ ପତତ ଦ୍ରବ୍ୟ ଧରିବା
ଛେକ୍‌ବାର୍‌ଟା- ବାଟ ଓଗାଳିବା
ଜୋର୍, ଦୂରି-କନ୍ଧ ଶବ୍ଦ- ନଈ, ଝରଣା
ଦୁଗ ରାବାର୍‌ଟା-ଭର୍ତ୍ତିକରିବା
ଜୁଲି-ସାଙ୍ଗ,
ସମଧର୍ମି ଗୋଟିଏ ଝୁଡ଼ିରେ ଆଉ ଗୋଟିଏ ଝୁଡ଼ି ରହିପାରୁଥିବା ଉଭୟ ଝୁଡ଼ିଙ୍କ ନାମ
ଝୁରୀ-ମାଛ
ଝୁମରା-ନିଦ
ଝର୍‌ମରା-ଅସୁବିଧା
ବୁଥା-ଧରହୀନତା
ବୁରୋ- ବରକୋଳୀ
ବାହାନୀ- ସ୍ତ୍ରୀର ଋତୁରକ୍ଷାକାରୀ ବସ୍ତ୍ର
ଖର-ଛପର (କୁଟାରୀ ଚଞ୍ଚଳ ସ୍ୱଭାବ)
ଖୁଏଲ୍- ଗାଁ ଦାଣ୍ଡ
ଖଲ୍ ହେଇ- ମାଛରଖା ବଂଶପାତ୍ର
ଖଲିହା-ମଟଲା

ଖର୍‌ସି- ଗୋବର

ଗାଲିଦେବା- ଶସ୍ୟ ପାଣି ପାଇଁ ୨ ।୩ ଦିନର ଗଜାଦେବା

ଗଣ୍ଡିଆ-ମାଇଚିଆ

ଗୁନ୍‌ଚି- ଅଣ୍ଟାସୂତା

ଗାଡଡ଼ୀ- ବତାଶ

ଗୁଣ୍ଡରାଇବାର୍‌ଟା- ରାଗରେ ଗର୍ଜିବା ଦାରା; ବସା, ମହୁବସା

ଗାଇର ସ୍ତନ

ଠୁଁଠୀ-ଆପୁତ୍ରିକ

ଠେଙ୍ଗୁଆ- ଅଭିଆତା

ଟଙ୍ଗରା- ଏଣ୍ଡୁଅ

ଟୁରୀ ଟୁକୁଲୀ- ମା' ଚାପ ଛେଉଣ୍ଡ ଝିଅ

ଝିର୍‌କା- ଖଟା

ଟିଙ୍ଗାଲୀ-ଫୁଟାଣିଆ

ତୁଟ୍‌- ମଝିବଖରା

ଦଲଦଲୀ- ଅତିଶୟେ କର୍ଦ୍ଦମ ଭୂମି

ପେଁଠୀ (ଶାବର)- ବାଂଟ ଛେଳି

ପର୍‌ଟନା- ଛୁଙ୍କିବା (ତିଅଣ)

ଫସଲି- ଠକ

ପଟକିବା- ଆଲିଙ୍ଗନ କରିବା

ଭାଜି- ଶାଗ

ଦେଲକା-ମୁଗଧ, ଚକିତ ଲୋକ ମର୍‌ହା, ରୁଗୁଣ ସ୍ୱାସ୍ଥ୍ୟ ଲୋକ

ଏହିପରି ଅନେକ ଦେଶଜ ଶବ୍ଦ ଉଦାହରଣ ଦିଆଯାଇ ପାରେ ସେ ଗୁଡ଼ିକ ଶକ୍ତିଶାଳୀ ଅର୍ଥ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ଶୁଦ୍ଧ ଓଡ଼ିଆ ଭାଷାରେ ଏହି ଶବ୍ଦ ଗୁଡ଼ିକ ସ୍ଥାନ ପାଇଲେ ଭାଷା ଯେ ଚଳିଷ୍ଣୁରେ ହୁଅନ୍ତା ସନ୍ଦେହ ନାହିଁ ।

କେତେକ ଶବ୍ଦ ଏହି ଆଞ୍ଚଳିକ ଭାଷାରେ ଅଛି ଯାହାକି ଆଗାମୀ ଭାଷାରେ ମାତ୍ର; ଓଡ଼ିଆ ବା ବଙ୍ଗଳାରେ ନାହିଁ ଯଥା:- କର୍‌ଚାଲି (ladle) ଘୁଇ (fire) ଫାଲ୍‌ (side)ଓଲଗ୍‌ (bowing down)ଇତ୍ୟାଦି । ପୁନଶ୍ଚ ସୂକ୍ଷ୍ମ ଭାବର ଓ କାର୍ଯ୍ୟର ଭେଦରେ କେତେକ ଶବ୍ଦ

ଏହି ଭାଷାରେ ରହିଛି ଯାହାକି ଆଣୁବୀକ୍ଷଣୀକ ନିର୍ଦ୍ଦିଷ୍ଟତା କୁ ବୁଝାଇଥାଏ, ଧୋପାତ ଗୋଟିଏ କାର୍ଯ୍ୟପାଇଁ ବହୁପ୍ରକାର ଯଥା:- 'ଦେଖିବା' କ୍ରିୟା ପାଇଁ ବହୁ କରମର ଶବ୍ଦ ବ୍ୟବହୃତ ହୋଇଥାଏ । ଉଦାହରଣ ସ୍ୱରୂପ:-

ଟେର୍‌ଚେଇବା-to see squintingly.

ଏଣ୍ଟ ରେଇବା-to look angrily.

ଗୁଣ୍ଡ ରେଇବା-to look grumblingly.

ଫେଁର୍‌ରେଇବା-to lok disappointly.

ଦେଖିବା କ୍ରିୟାର ଭିନ୍ନଭେଦ ଏହି ପର୍ଯ୍ୟାୟରେ ଭିନ୍ନ ଭାବ ପାଇଁ କିପରି ପ୍ରକାଶିତ ତାହା ଲକ୍ଷଣୀୟ୍ ବିଷୟ୍ ।

ବର୍ତ୍ତମାନ ବ୍ୟାକରଣ ରୂପତତ୍ୱ ଓ ପ୍ରୟୋଗ ଦୃଷ୍ଟିରୁ ଏହି ଆଞ୍ଚଳିକ ଭାଷାରେ କେତେକ ବୈଦେଷ୍ଟ୍ୟ ବିଷୟରେ ଆଲୋଚନା କରାଯାଉ । ରୂପତତ୍ତ୍ୱ ଧ୍ୱନିତତ୍ତ୍ୱ ତଥା ବ୍ୟାକରଣ ଦୃଷ୍ଟିରୁ ଯେଉଁ ସୂତ୍ରରେ ମଧ ପଶ୍ଚିମାଞ୍ଚଳୀର ସ୍ଥିତି । ବହୁ କ୍ଷେତ୍ରରେ କେତେକ ସ୍ୱାତନ୍ତ୍ର୍ୟ ନେଇ ଏହା ଏକ ବୈଶିଷ୍ଟ୍ୟ ରକ୍ଷା କରି ପାରିଛି ଏହିସବୁ ସ୍ୱାତନ୍ତ୍ର୍ୟ ବିସ୍ତୃତାକାରରେ ଆଲୋଚନା କରିବା ପ୍ରବନ୍ଧର କଳେବର ଦୃଷ୍ଟିରୁ ଅସୁବିଧା ହେବାରୁ ସଂକ୍ଷିପ୍ତ ଆଲୋକପାତ କରାଯାଇପାରେ ।

ଓଡ଼ିଆ ଭାଷାର କ୍ରିୟାପ୍ରତ୍ୟୟ 'ଇବା ହେଉଛି ଶାବର ମୂଳ 'ଜିବା' ର ରୂପାନ୍ତର । ଯଥା- କନ୍ଧ ଭାଷାର ନେବା-ନେଇଯିବା ଏହା ଓଡ଼ିଆରେ 'ନେ' ବଦଳରେ ନେବା ରୂପରେ ବ୍ୟବହୃତ । ଏହି 'ଇବା' ପ୍ରତ୍ୟୟ୍ କାଳବାଚୀ ରୂପେ ଏହି କ୍ଷେତ୍ରରେ ବ୍ୟବହୃତ ନହୋଇ, ହୋଇଛି ଧାତୁର ଉଚ୍ଚାରଣ ଗତ ସୌକାନୁସାରେ । ଏଣୁ ପଠ୍, କର୍ ଧାତୁ ପରି ଓଡ଼ିଆରେ 'ପଢ଼ିବା' 'କରିବା' ଧାତୁରୂପ ବ୍ୟବହୃତ ହୋଇ ରୂପ ବଦଳି ଯାଇଛି । ଏହି ପ୍ରସଙ୍ଗରେ ଦେଖିବା କଥା ପଶ୍ଚିମାଞ୍ଚଳୀ ଭାଷାରେ ଧାତୁଗତ କ୍ରିୟା ପ୍ରତ୍ୟୟ୍ କିପରି ସ୍ୱତନ୍ତ୍ର । ଓଡ଼ିଆ ପ୍ରତ୍ୟୟ୍ 'ଇବା' ଏହି ଭାଷାରେ 'କବାର' ରୂପେ ବ୍ୟବହୃତ ଯଥା :-

ଓଡ଼ିଆ - ଖାଇବା = ଇବା - ତୁମେ ଖାଇବା କଥା; ପଶ୍ଚିମାଞ୍ଚଳୀ - 'ଖାଏବାର' = ଇବାର - ତୁମ୍‌ହେ ଖାଏବାର୍ କଥା ।

ବର୍ତ୍ତମାନ ପଶ୍ଚିମାଞ୍ଚଳୀ ଭାଷାରେ କ୍ରିୟା ପ୍ରତ୍ୟୟର କାଳବାଚକ ରୂପତତ୍ତ୍ୱ ଅବସ୍ଥା ସଂପର୍କରେ ଆଲୋକପାତ କରାଯାଉ । ବର୍ତ୍ତମାନ କାଳ ସମସ୍ତ କାଳ ପରି ବହୁପ୍ରକାର । ଯଥା - ଶୁଦ୍ଧ ସଂପୃକ୍ତ

ଆନୁମାନିକ ସମ୍ଭାବ୍ୟ ସର୍ବକାଳୀନ ଓ ବିଧ୍ୟର୍ଥକ । ଏହି ବର୍ତ୍ତମାନ କାଳର ସର୍ବକାଳୀନ (Simple Present) ଗତ ରୂପଭେଦ ପଶ୍ଚିମାଞ୍ଚଳୀ ଭାଷାରେ ବଡ଼ ବିଚିତ୍ର । ବର୍ତ୍ତମାନ କାଳର ଅନ୍ୟସବୁ କ୍ରିୟାରୂପ ଧ୍ୱନିଗତ ଦୃଷ୍ଟିରୁ କିଛି ବୈଷମ୍ୟ ଭେଦରେ ଶୁଦ୍ଧ ଓଡ଼ିଆ କାଳଗତ କ୍ରିୟାରୂପ ସହିତ ସମାନ୍ତରାଳ ଭାବେ ରହିଥାନ୍ତି । ମାତ୍ର ବର୍ତ୍ତମାନ କାଳର କ୍ରିୟାରୂପ ଏକ ସ୍ୱାତନ୍ତ୍ର୍ୟ ନେଇ ସ୍ଥିତିଶୀଳ । ତୁଳନାତ୍ମକ ଭାବରେ ଉଭୟ ଭାଷାର ସର୍ବକାଳୀନ ବର୍ତ୍ତମାନ (Simple Present) ଭେଦରେ କ୍ରିୟାପଦର କାଳଗତ ରୂପଭେଦ ନିମ୍ନରେ ପ୍ରଦତ୍ତ ହେଲା ।

| **ଶୁଦ୍ଧ ଓଡ଼ିଆ** | **ଏକବଚନ** | **ବହୁବଚନ** |
|---|---|---|
| ୧ମ ପୁରୁଷ | ମୁଁ କରେଁ | ଆମେ କରୁଁ |
| ୨ୟ ପୁରୁଷ | ତୁମେ କର | ତୁମେମାନେ କର |
| | ତୁ କରୁ | |
| ୩ୟ ପୁରୁଷ | ସେ କରେ | ସେମାନେ କରନ୍ତି |
| **ପଶ୍ଚିମାଞ୍ଚଳ** | **ଏକବଚନ** | **ବହୁବଚନ** |
| ୧ମ ପୁରୁଷ | ମୁଇଁ କର୍‌ସିଁ | ଆମ୍‌ହେ କର୍‌ମୁଁ |
| ୨ୟ ପୁରୁଷ | ତୁମ୍‌ହେ କର୍‌ସ | ତୁମ୍‌ହେମାନେ କର୍‌ସ |
| | ତୁଇଁ କର୍‌ସୁ | |
| ୩ୟ ପୁରୁଷ | | ହେ କର୍‌ସି |

ଶୁଦ୍ଧ ଓଡ଼ିଆ ଭାଷାରେ ଉପରେ ଯେଉଁ କ୍ରିୟା ପ୍ରତ୍ୟୟ ଗୁଡ଼ିକ ବ୍ୟବହୃତ ହୋଇଥିବାର ଉଦାହରଣ ଦିଆଯାଇଛି ତାହାହେଲା ଏ,ଉ,ଏ,ଅ, ଯାହାକି ଶୁଦ୍ଧ ଅନାଶ୍ରିତ ଅର୍ଥାତ୍ କାହାରି ଆଶ୍ରିତ ନହୋଇ ଧାତୁସହିତ ମିଳିତ ହୋଇଛନ୍ତି ଯଥା - କର୍ +ଏକର୍ +ଉଁ । କେବଳ ତୃତୀୟ ପୁରୁଷ ବହୁବଚନ ବେଳକୁ ଏହା ଶୁଦ୍ଧ ଆଶ୍ରିତ ଅର୍ଥାତ୍ ଅନାଶ୍ରିତ ପ୍ରତ୍ୟୟରୁ ସ୍ୱରର ଆଶ୍ରୟ ନେଇ ପ୍ରଯୁକ୍ତ ହୋଇଛି ଯଥା - କର୍+ଅ+ନ୍ତି । ମାତ୍ର ଏହି କାଳ ପାଇଁ ପଶ୍ଚିମାଞ୍ଚଳୀ ଭାଷାରେ ଯେଉଁ କ୍ରିୟା ପ୍ରତ୍ୟୟ ବ୍ୟବହୃତ ହୋଇଛି ତାହା ବ୍ୟଞ୍ଜନ ବର୍ଣ୍ଣର ଯଥା - ସି, ସ, ସନ, ଇତ୍ୟାଦି । ଏହି ପ୍ରତ୍ୟୟ ଆଶ୍ରିତ ନ ହେବା ମୂଳରେ ଅଛି ଏହାର ଧାତୁ ଗୁଡ଼ିକର ବ୍ୟଞ୍ଜନାନ୍ତକ ଭାବରେ ବ୍ୟବହାର । ଏହି ଭାଷାରେ ଏହି ପ୍ରତ୍ୟୟଗତ ବୈଶିଷ୍ଟ୍ୟ ଏକ ବିଚିତ୍ର ସ୍ୱାତନ୍ତ୍ର୍ୟ । ପ୍ରକାଶ ଥାଉକି ଏହି କ୍ରିୟା ପ୍ରତ୍ୟୟ 'ସ' ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଦେଖିବାକୁ ମିଳେ । ମାତ୍ର ତାହା ବର୍ତ୍ତମାନ କାଳରେ ବିଧ୍ୟର୍ଥକ ବର୍ତ୍ତମାନ କାଳରେ ବ୍ୟବହୃତ ହେଉଥିଲା । ଯଥା :-

"ଶ୍ରୀକୃଷ୍ଣ କହନ୍ତି ଶୁଣସି ଗୋ ମାଏ,
ପୁତ୍ରକଇ ଚରୁ କରଲି ମହାମୁନି ।"

ବିଭକ୍ତି କ୍ଷେତ୍ରରେ ଓଡ଼ିଆ ଭାଷା ଆର୍ଯ୍ୟ ଦ୍ରାବିଡ଼-ଶାବର ଭାଷା ପ୍ରଭାବିତ । ସମ୍ବଲପୁରୀରେ ମଧ୍ୟ ଏହି ଲକ୍ଷଣ ଲକ୍ଷିତ । ତଥାପି କେତେକ ବିଭକ୍ତ ଚିହ୍ନ ସ୍ୱତନ୍ତ୍ର ଭାବରେ ବ୍ୟବହୃତ ହୋଇଥାଏ । ଏହି ଭାଷାରେ ସଂକ୍ଷିପ୍ତରେ କେତେକ ସୂଚନା । ସେହି ଦିଗରେ ନିମ୍ନରେ ପ୍ରଦତ୍ତ ହେଲା ।

୩ୟା ଏକ ବଚନ - ବୁଟେଁ । (ଓ: ଦ୍ୱାରା) - ତୁମର୍ ବୁଟେଁ ଇଟା ନାଇଁ ହଇପାରେ ।

୪ର୍ଥୀ - ଲାଗି (ଓ: ନିମିତ୍ତ) (ପାଇଁ) - ମୁତର୍ ଲାଗି ମୁଇଁ କଲମ ଟେ ଆନଲିଁ ।

୫ମୀ - ନୁ, ଠାନୁ, ଉଁ (ଓ: ରୁ, ଠାରୁ ଠୁଁ) - ତୁମର୍ ନୁଁ ମୁଁଇଁ ଇଟା ଜାନ୍‌ଲିଁ ।
ଗଛୁଁ (ଗଛାରୁ) ଆମ୍ ଟେ ପଡ୍‌ଲା

୭ମୀ - ନ, ଠାନେ, ହେନ, ଥି (ରେ, ଠାରେ, ଠାଇଁ) - ମୋର୍ ଠାନେ ବହି ନାଇଁନ ।
ନଏଦ୍ ଥିଁ ଝୁରୀ ନାଇଁନ ।

ଏହି ବିଭକ୍ତ ଚିହ୍ନ ଗୁଡ଼ିକର ମୂଳସୂତ୍ର ଓ କ୍ରମ ବିକାଶ ଗବେଷଣାର ଅପେକ୍ଷା ରଖେ ।

'ନାହିଁ'ର ପ୍ରୟୋଗ ଏହି ଆଞ୍ଚଳିକ ଭାଷାରେ କ୍ରିୟାର ପୂର୍ବରୁ ହୋଇଥାଏ । ତାହାର ହିନ୍ଦୀ ବାକ୍ୟ ଗଠନ ଦ୍ୱାରା ପ୍ରଭାବିତ ଯଥା -

ସଂ. - ମୁଇଁ ନାଇଁ ଯାଏଁ, ଓଡ଼ିଆ - ମୁଁ ଯିବିନାହିଁ, ହିନ୍ଦୀ - ମେ ନେହିଁ ଯାଉଙ୍ଗା ।

ଏହି 'ନାହିଁ'ର ପ୍ରୟୋଗ ପୁଣି କ୍ରିୟାସହିତ କିପରି ସମ୍ବନ୍ଧାନ୍ୱିତ ଏହି ଭାଷାରେ ଦେଖିବାର କଥା ।

ସର୍ବକାଳୀନ ବର୍ତ୍ତମାନ (Simple Present) କାଳରେ ଓଡ଼ିଆ ବାକ୍ୟରେ ନାହିଁ ସହିତ କ୍ରିୟା ବ୍ୟବହୃତ ହୋଇ ନ୍ୟସ୍ତର୍ଥକ ଅର୍ଥ ପ୍ରକାଶ କରେ : ଯଥା - ମୁଁ ଯିବି ନାହିଁ । ମାତ୍ର ଏଥିରୁ 'ନାହିଁ'ଟା ବାଦ୍‌ଦେଲେ ବାକ୍ୟଟି ଅସ୍ତ୍ୟର୍ଥକ ଅର୍ଥ ପ୍ରକାଶ କରେ ଓ ବାକ୍ୟଟି ଶୁଦ୍ଧହୋଇ ରହିଯାଏ, ମାତ୍ର ସମ୍ବଲପୁରୀରେ 'ନାଇଁ'ଟା ।କଟି ଉଡାଧ ଦେଇ ଅସ୍ତର୍ଥକ କରିବାକୁ ହେଲେ କ୍ରିୟା ସହିତ । ସିଁ ଯୋଗ କରିବାକୁ ହୁଏ ଏବଂ ଏହି 'ସିଁ' ପୁରୁଷ ଓ ବଚନ ଭେଦରେ ଭିନ୍ନରୂପ ଗ୍ରହଣ କରେ । ଯଦି ନ୍ୟସ୍ତର୍ଥକ କରିବାକୁ କେବଳ 'ନାଇଁ'ଟାକୁ କାଟିଦେଇ ଆଉକିଛି କ୍ରିୟା ରୂପର ପରବର୍ତ୍ତନ ନ କଲେ ବାକ୍ୟଟି ଅଶୁଦ୍ଧ ହୋଇଯାଏ । ଯଥା -

ସଁ - ମୁଁ ନାଇଁ ଯାଏଁ - ନ୍ୟସ୍ତର୍ଥକ। ମୁଇଁ ଯାଏସିଁ - ଅସ୍ତର୍ଥ୍ୟକ ମାତ୍ର ଓଡ଼ିଆରେ ମୁଁ ଯାଏଁ, ଭଳି ସମ୍ବଲପୁରୀ ମୁଇଁ ଯାଏଁ - ହୁଏନାହିଁ, ହୁଏ ମୁଁଇଁ ଯାଏସିଁ।

ଏହିପରି ଭାବରେ ବହୁ ସ୍ୱାତନ୍ତ୍ୟ ରହିଛି। ଏହି ଭାଷାରେ ସର୍ବତ୍ର 'ଲ'ର ପ୍ରୟୋଗ ବ୍ୟଞ୍ଜନଲୋପ ଧ୍ୱନି ଗୁଡ଼ିକର ବ୍ୟଞ୍ଜନାତ୍ମକତା ଇତ୍ୟାଦ ବହୁ ବିଭାଗ ଉପରେ ଆଲୋକପାତ କରାଯାଇପାରେ। ଭାଷା ବିଜ୍ଞାନ ଦୃଷ୍ଟିରୁ ଏହି ଭାଷାର ସଂପର୍କରେ ଆଲୋକପାତ ହେଲେ ବହୁ ଭାଷାଗତ ତଥ୍ୟ ମିଳିପାରେ।

ତେଣୁ ଉପସଂହାରରେ ଏତିକି କୁହାଯାଇ ପାରେ ସେ ଭାଷା ଉପଭାଷାଗତ ସଂପର୍କ ଠାରୁ ଓଡ଼ିଆ ଭାଷା ସାହିତ୍ୟ ଏହାର ସଂପର୍କ ଯେତିକି ଭାଷା ଭାଷାଗତ ସ୍ୱାତନ୍ତ ମଧ ସେତିକି। ଓଡ଼ିଆ ଭାଷାରେ ଏହାର ଉପଭାଷାଗତ ସ୍ଥାନଥିଲେ ଏହି ଭାଷାର ବିଭିନ୍ନ ବିଭାବ ଦୃଷ୍ଟିରୁ ପ୍ରବେଶ ହୋଇପାରନ୍ତା। ସେହି ଭାଷା ସହିତ ଯେହେତୁ ଶୁଦ୍ଧ ଓଡ଼ିଆରେ ଗର୍ଭୀଭୁତ ହୋଇପାରୁ ନାହିଁ। ଯଦି ଏହି ଭାଷାର ଅନ୍ତତଃ କେତୋଟି ଶବ୍ଦମାତ୍ର ଓଡ଼ିଆରେ ପ୍ରବେଶ କରନ୍ତା ତେବେ ଓଡ଼ିଆ ଭାଷା ଯଥେଷ୍ଟ ଶକ୍ତିଶାଳୀ ହୁଅନ୍ତା ସନ୍ଦେହ ନାହିଁ। ଅନ୍ତତଃ, ସବୁ କ୍ଷେତ୍ରରେ ନ ହେଲେ ମଧ ବ୍ୟବହାରିକ କ୍ଷେତ୍ରରେ ଏହି ଆଞ୍ଚଳିକ ଭାଷାର ଶକ୍ତି ରହିଛି ତାହା ଯଥେଷ୍ଟ ଶକ୍ତିଶାଳୀ। ଏହି ଆଞ୍ଚଳିକ ଭାଷାର ସ୍ୱରୂପ ଓ ଜନ୍ମଜାତକ ପାଇଁ ଏହା ଯେ ଗବେଷଣାର ଅପେକ୍ଷା ରଖେ କହିବା ବାହୁଲ୍ୟ ମାତ୍ର।



# ପଶ୍ଚିମ ଓଡ଼ିଶାର ଲୋକକଥା ଏବଂ ଲୋକଗୀତରେ ସମାଜ ଚିତ୍ର

**ବି: କଲ୍ୟାଣୀ**

ମଣିଷର ଆତ୍ମା ଚାହେଁ ଆନନ୍ଦ । ତାର ଦୁଃଖ ହେଉବା ସୁଖ ହେଉ ସେ ନିଜେ ଏକା ଅନୁଭବ କରିବାକୁ ଚାହେଁନା । ସେ ଯେତେବେଳେ ତା ମନର କଥା ନିଜ ଅତି ଆପଣାର ଏବଂ ପରିଚିତ ମାନଙ୍କୁ କହିଦିଏ ସେତେବେଳେ ଅନୁଭବ କରେ ପରମାନନ୍ଦ । କାରଣ ସମ୍ମୁଖ ଲୋକଟି ସହଯୋଗ କରେ ଆନନ୍ଦ ବଢ଼ାଇବା ପାଇଁ ଏବଂ ଦୁଃଖ ଉପଶମ କରାଇବା ପାଇଁ । ସେଥିରେ ଶୁଣାଇବା ଲୋକ ତନ୍ମୟ ହୋଇ ଉଠେ । କାରଣ ତ ଜଣାଶୁଣା, ମାନବ ପ୍ରତି ମାନବର ସମବେଦନା ପ୍ରକାଶ ହିଁ ହେଉଛି ଉନ୍ମାଦନାର କାରଣ । ଏହି କହିବା, ଶୁଣାଇବାରେ ତ ରହିଛି ଲୋକଗଳ୍ପର ଆତ୍ମା । ଏଥିରେ ମାନବ ଏତେ ଆଗ୍ରହୀ ହୁଏ କାହିଁକି ? କାହିଁକି ନିଜକୁ ହଜାଇ ଦିଏ ଗଳ୍ପ ଶୁଣୁ ଶୁଣୁ ? ତାହା ଅତି ସହଜ, ମଣିଷ ଚାହେଁ ମଣିଷର ବ୍ୟଥା ଏବଂ ମଣିଷର କଥା ଶୁଣିବା ପାଇଁ । ସେ ଭଲପାଏ ନିଜ ଜୀବନକୁ । ମାନବ ଅଙ୍ଗେ ନିଭେଇ ଥିବା କଥାଶୁଣି ନିଜେ ନିଜକୁ ଅନୁଭବୀ ମନେକରେ ଏବଂ ସେ କ୍ଷେତ୍ରରେ ନିଜକଥା, ତା ସମାଜ କଥା, ତା ଦେଶକଥା ଶୁଣିବାରେ ଆକୁଳାୟିତ ହୁଏ ।

ଅବଶ୍ୟ ଓଡ଼ିଶାର ପଶ୍ଚିମ ଅଞ୍ଚଳରେ ଲୋକକଥା ଏବଂ ଲୋକଗୀତର ଅନେକାଂଶ ଆଧାତ୍ମିକ ଏବଂ ମନସ୍ତାତ୍ତ୍ୱିକତାରେ ପ୍ରକାଶ ପାଇଥାଏ, କିନ୍ତୁ ସେହି ଆଧାତ୍ମିକତା ଏବଂ ମନସ୍ତତ୍ତ୍ୱ ବିଶ୍ଳେଷଣରେ ସମାଜକୁ ଗ୍ରହଣ ନ କରିଛି କୌଣସି କଥା କୁହାଯାଇ ପାରିବ ନାହିଁ । ପ୍ରତ୍ୟେକ କ୍ଷେତ୍ରରେ ସେ ସମାଜକୁ ମୁଖ୍ୟରୂପ ଦେବାକୁ ବାଧ ହୋଇଥାଏ । ତେଣୁ ସାମାଜିକ ଚିତ୍ର ପୂର୍ଣ୍ଣ ଲୋକକଥା ଏବଂ ଲୋକଗୀତ ସୁଖ୍ୟାତି ଅର୍ଜନ କରେ ।

ଓଡ଼ିଆ ଭାଷାର ଲୋକକଥା ଏବଂ ପଶ୍ଚିମ ଓଡ଼ିଶାର ଲୋକକଥାରେ ଯଦିଓ ଅଧିକ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ ନାହିଁ ତଥାପି ପଶ୍ଚିମ ଓଡ଼ିଶାର ଲୋକକଥା ବଖାଣି ବସେ ମନ ଲୋଭାଣିଆ ସରଳ ନିଷ୍କପଟ ମଣିଷ ସମାଜର କଥା । ପଶ୍ଚିମ ଓଡ଼ିଶାର ଲୋକକଥା ଏବଂ ଲୋକଗୀତ ପ୍ରବଚନ ବଖାନୀ ଏବଂ କିମ୍ବଦନ୍ତୀକୁ ନେଇ ଗଠିତ ଲୋକ ସାହିତ୍ୟ ପରିଦୃଷ୍ଟ ।

ପଶ୍ଚିମ ଓଡ଼ିଶାରେ ମଧ୍ୟ ଆଈ ବୁଢ଼ୀ ମାଁ ମାନେ ଛୋଟ ଛୁଆଙ୍କ ମେଳରେ ଗଳ୍ପ କହନ୍ତି ସେହପରି ଝିଅ ହେଉ ବା ପୁଅ ପ୍ରତ୍ୟେକ ଗୋଷ୍ଠୀଗତ ହୋଇ ପଦ୍ୟାନ୍ତର ନୃତ୍ୟରତ ଭାବରେ କରନ୍ତି ସେଥିରେ ତାଙ୍କ ମନଗଢ଼ା କଥା ଥାଏ, ପରସ୍ପରର ମନକଥା ଥାଏ । କିନ୍ତୁ ଗୋଟିଏ କଥା ଏହା ଯେ ଏସବୁର କୌଣସି ଲେଖକ ନାହାନ୍ତି । ଏସବୁର ରଚନା ପଶ୍ଚିମ ଓଡ଼ିଶାର ଆଈ ବୁଢ଼ୀମାଁ, କୃଷକ, କୁମାରୀ, ଖେଳରତା ଶିଶୁ ଏବଂ ଯୌବନରେ ଉନ୍ମତ୍ତ ପୁରୁଷ ହିଁ କରିଅଛନ୍ତି ।

ଲୋକକଥାର ମୂଳଗଠନ ଏବଂ ବିକାଶ କ୍ଷେତ୍ରରେ ତାହାର ସାରଲ୍ୟ ସତ୍ତ୍ୱେ ତାହା ମଧ୍ୟରେ ଜାତିର ସଂସ୍କୃତି ଅଙ୍କିତ । ଲୋକକଥା ଭାବରେ "ଛେଳିଛୁଆର ଦିଆଲୀ" କଥାରେ ଛେଳିଛୁଆ ଏବଂ ମାଁ ଛେଳି ଉପରେ ମଣିଷ ପଣିଆ ଆରୋପ କରି ସମାଜରେ ମଣିଷ ପ୍ରତିଛବି ଉପଭୋଗର ଉତ୍ସୁକତା ପ୍ରକାଶ ପାଇଛି । ଛେଳିଛୁଆ ମାଁକୁ ପଚାରେ କେବେ ଦିଆଲୀ ଆସିବ ଏବଂ ତା ପାଇଁ ନୂଆ ଜାମା ତିଆରି ହେବ, ସେ ଦୀପଜାଳି ବାଣ ଫୁଟାଇବ । ସେତେବେଳେ ମାଁ ଛେଳିର ଉତ୍ତରରେ ଦଶହରାର ନରବଳି ଆଶଂକା କରି ପରବର୍ତ୍ତୀ ଦୀପାବଳୀ ପର୍ବର ଆଗମନ ସୂଚାଇବା ଏବଂ ତାହାର ଅଳ୍ପ ଅପେକ୍ଷା କରିବା କଥାରେ ରହିଛି ଦୈନନ୍ଦିନ ଦୈନ୍ୟ ଏବଂ କିଛି କାଳପରେ ସୁବିଧା ସୁଯୋଗ ଦେଖି ଜାମା ତିଆରି କରି ଦେବାର ପ୍ରତିଶ୍ରୁତି ମଣିଷର ଦୁଃଖ ଦୈନ୍ୟରେ ସମସ୍ତ ବାହିଦା ପୂରଣ ନକରି ପାରିବା ଚିତ୍ର ଏଥିରେ ପ୍ରତିଫଳିତ ।

ଏହି ପଶ୍ଚିମାଞ୍ଚଳ ଭାଷାବାସୀଙ୍କର ରହିଛି ପ୍ରକୃତି ପ୍ରାଣତା ଏବଂ ତାଙ୍କ ମଧ୍ୟରେ ପଶୁମାନଙ୍କ ପ୍ରତି ଭେଦହୀନ ଦୟାଳୁ ମନୋଭାବ ମଧ୍ୟ ପ୍ରକାଶ ପାଇଛି । ମଣିଷ ବେଳେ ବେଳେ ହୋଇଯାଏ ସିଂହ ପରାକ୍ରମୀ ଏବଂ ବେଳେ ବେଳେ ସାଜେ ତାର ଛାଗ । ସେ ବେଳେ ବେଳେ ପଶୁମାନଙ୍କ ସାହାଯ୍ୟ ମଧ୍ୟ ଆବଶ୍ୟକ ମନେକରେ । ସେ ସ୍ନେହ ପ୍ରକାଶ କରି ମଣିଷ ବାର୍ତ୍ତାକରେ ପଶୁ ସହିତ । ସେଇ ନିଜ ସଖା ଭଳି ବ୍ୟବହାର ବା କେତେ ଅଞ୍ଚଳରେ ଦେଖାଯାଏ ? 'ଯାର ବାପ ଚଢ଼େ ଘୁଡ଼ା' ଗଳ୍ପରେ ରାଜାପୁଅ ମୟୁର ସହିତ କଥାବାର୍ତ୍ତା ଏବଂ ବରାହ ରାଜକୁମାରୀକୁ ହଜାର ପରିମାଣରେ ବରାହ ଶକ୍ତିର ସାହାଯ୍ୟ, ଇତ୍ୟାଦି ମାନବ ସହିତ ପଶୁର ଘନିଷ୍ଠତା ପ୍ରକାଶ କରେ ।

ସେହିପରି ନାରୀ ଯେ ମାନବ ସମାଜର ଲକ୍ଷ୍ମୀ, ତା ବିନା ପୁରୁଷ ଯେ ଚଳି ପାରେନା, ଏହି କଥା ଉଦ୍ଧାର କରାଯାଏ, 'ଯେମିତି କର୍ମ ସିମିତି ଫଳ' ଗଳ୍ପରେ ଛଅ ସାଧବ ବୋହୁଙ୍କର କରମା ନୃତ୍ୟରେ ଯୋଗ ଦେବାରୁ ସାଧବ ପୁଅଙ୍କ କ୍ରୋଧରେ କବଳିତ ହୋଇ ନିର୍ବାସିତ ହେବା ଏବଂ ସାଧବପୁଅଙ୍କର ସର୍ବହରା ହୋଇ ଲକ୍ଷ୍ମୀଛଡା କାଙ୍ଗାଳ ହୋଇ ଦୁଃଖ ପାଇବାଦ୍ୱାରା ପ୍ରମାଣିତ ପଶ୍ଚିମ ଓଡ଼ିଶାରେ ନାରୀର ମର୍ଯ୍ୟାଦା । ଏଥିରେ ସେ ଲକ୍ଷ୍ମୀ ପୁରାଣର ଅନୁକରଣ ରହିଛି ଏଥିରେ

ଟାଙ୍କ ସମାଜରେ ସେମାନେ ନାରୀର ସମ୍ମାନ ହାନି ନିଜର ଦାରିଦ୍ର୍ୟର କାରଣ ବୋଲି ସ୍ୱୀକାର କରନ୍ତି । ପଶ୍ଚିମାଞ୍ଚଳର ଭାଲୁକୁଣୀ ଗଳ୍ପରେ ମଣିଷର ଆଦର୍ଶ ଜୀବନର କଥା କୁହାଯାଇଛି । ତା ଦୈନନ୍ଦିନ ଜୀବନର ବାସ୍ତବତା ସାଗ ଲୁଣ ଲଙ୍କା ସହିତ ପଖାଳ ଖାଇବାରେ ପ୍ରମାଣିତ ।

ଆଉ ଏକ ବହୁ ପ୍ରଚଳିତ ପୁଅ ଜୀଉଁତିଆ ଏବଂ ଭାଇ ଜୀଉଁତିଆ ଓଷାବ୍ରତରେ ମଧ ମାତୃ ଏବଂ ଭଗିନୀ ହୃଦୟର ରକ୍ତ ସଂପର୍କିତ ପ୍ରେମଛଟା ତାଙ୍କ ଦେଢ଼ଦିନ ଧରି ନିର୍ବିକାର ନିଷ୍ଠାପୂର୍ଣ୍ଣ ଉପବାସରେ ରହିଛି ଐଶ୍ୱରୀୟ କାମନା ଏବଂ ଆଶୀର୍ବାଦ । ଏହି ଓଷା ସାଧାରଣତଃ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରେ ଦୁତୀବାହନ ଏବଂ ଦୁର୍ଗାଷ୍ଟମୀ ନାମରେ କରାଯାଏ । କିନ୍ତୁ ପଶ୍ଚିମାଞ୍ଚଳରେ ଯେପରି କର୍ମ ପରାୟଣ ନିଷ୍ଠାଭାବରେ କରାଯାଏ ସେପରି କୌଣସି ଠାରେ କରାଯାଏ ନାହିଁ । ଏହି ଉଭୟ ଗଳ୍ପରୂପୀ ଓଷାରେ ଶହେ ଆଠ ଦୁର୍ବାଦଳ ପ୍ରତ୍ୟେକ ପୁତ୍ର ଏବଂ ଭାତୃର ମଙ୍ଗଳ କାମନା କରି ତାଙ୍କ ନିମନ୍ତେ ଦୁର୍ଗାଙ୍କ ଆଶୀର୍ବାଦ କାମନା କରନ୍ତି । ଏଥିରେ ଯେ କେତେ ତ୍ୟାଗ ଏବଂ ସ୍ୱର୍ଗୀୟ ଉଲ୍ଲାସ ରହିଛି କିଏ କହି ପାରିବ !

ସେହିପରି ପଶ୍ଚିମ ଓଡ଼ିଶାର ଲୋକଗୀତରେ ରହିଛି ଧାଙ୍ଗଡା ଧାଙ୍ଗଡୀଙ୍କ ତନ୍ମୟତା । ଏଥିରେ ନାହିଁ ଦୁଃଖ, ରହିଛି ଅଶ୍ରୁପୂର୍ଣ୍ଣ ଉଚ୍ଛ୍ୱାସ, ଆନନ୍ଦ ବେଳା ନୃତ୍ୟଭଙ୍ଗୀ ସେଇଥିରେ କୁମାରୀର ଭେଷଭୂଷା, ସମାଜରେ ନାରୀମାନେ ପୁରୁଷକୁ ଅକ୍ତିଆର କରି ରଖିବା ପାଇଁ ମୋହିନୀ ଔଷଧ ବ୍ୟବହାର କରିବା, ବିବାହ ପରେ ନାରୀର ମାଁ ଘରେ ରହିବାର ଅଭିଳାଷ ଇତ୍ୟାଦି ପ୍ରକାଶିତ ନିମ୍ନୋକ୍ତ ପଂକ୍ତି ଗୁଡ଼ିକରୁ

..........ଗଞ୍ଜାରୁ ଗଞ୍ଜାକୁ ଫୁଲ ବିଛଣା
ନାକ ତଲେ ଦଣ୍ଡିଗୁଣା
କେତେ ହଲାଉଛୁ ନାକର ଗୁଣା...

ଏହାଛଡା ଏହି ଅଞ୍ଚଳର ଝିଅ ନୃତ୍ୟ ସମୟରେ ଗଳାରେ ପୋହଳାମାଳ ଏବଂ ଫୁଲମାଳ ଗଭାରେ ପୁଷ୍ପ, ଗୋଡରେ ପାଉଁଜୀ ଇତ୍ୟାଦି ଧାରଣ କରନ୍ତି ।

ଡାଲଖାଇ ଲୋକଗୀତରେ ସେହିପରି

.....ବାଟର ଖଜୁର ବୁଟ ଲମ ଲମ କଟା
ଶାସ୍ ଘରକେ ଯିମିବଲି ସାଜିଥିଲି ଅଁଟା
ମାଁ ଘର୍‌କେ ଯିମିବଲି ସାଜିଥିଲି ଫେରି....

ଏଇପରି ନାରୀର ଅନେକ ଅଭିଳାଷ କିନ୍ତୁ କ୍ଷଣସ୍ଥାୟୀ । ସମୟେ ସମୟେ ତାର ମନୋବୃତ୍ତି ନାନା ପ୍ରକାର । ସେ ପୁରୁଷକୁ ନିଜର କରିବା ପାଇଁ ଥରେ ଥରେ ପ୍ରୟାସୀ ହୋଇଥାଏ -

ସତେ ବଉଳ ସୁଖାଥି ରଖ ମହନୀ
ଟମର ଖୁଆ ଟଲେ ଭ୍ରମର ବୁଲେ
ଭ୍ରମର ବୁଲିଲେ ଟ, ଖଜା ଅଛି ବଲି ନୁରେ ।

ଏହିକଥା ଯେ ସଖୀମାନେ ନବ ବିବାହିତାକୁ ପ୍ରରୋଚନା ଦିଅନ୍ତି ଯେପରି କି ସତେ ପୁରୁଷମନ କିଣିବାରେ ନାରୀର ସାର୍ଥକତା ।

ଏହି ଆଲୋଚନା ପରିସର ଦୀର୍ଘ ନ ହେବାରେ ଉଦ୍ଧୃତିର ପରିମାଣ କମ୍ କରାଯାଇଛି କିନ୍ତୁ ଏଥିରେ ରହିଛି ପଦଲାଳିତ୍ୟ, ଗୁଢ଼ଭାବ, ଗାମ୍ଭୀର୍ଯ୍ୟ ଏବଂ ବର୍ଣ୍ଣନା ଚାତୁରୀ । ଏହାରି ମାଧ୍ୟମରେ ମଣିଷ ମନ କିଣାସମାନ ଚିତ୍ର ପ୍ରକାଶିତ ।

ତେଣୁ ଲୋକଗୀତ, ଲୋକଗଳ୍ପ ମାନବ ସମାଜର ମୁକୁର । ଆଜିର ଚାକଚକ୍ୟ ହୁଏତ ତାର ସରଳତାକୁ ପସନ୍ଦ କରି ନପାରେ । କିନ୍ତୁ ମଣିଷର ଚାକଚକ୍ୟ ରାତ୍ରିର ଅନ୍ଧକାରରେ ଲୋଲୁପ ହୋଇ ମଧ ଦିନେ ଆଲୁଅରେ ଝଲସି (ପୋଡି)ଯାଏ, କିନ୍ତୁ ସରଳ ସହଜ ଜୀବନ ସର୍ବଦା ତେଜିୟାନ, ନିତ୍ୟ ସୁନ୍ଦର ।



# ପଶ୍ଚିମ ଓଡ଼ିଶାର ଲୋକଗୀତ ଓ କବି ଭୀମଭୋଇ

ଅଶ୍ୱିନୀ କୁମାର ରାୟ

ଲୋକଗୀତର କବି ବାସ୍ତବତାରପୂଜାରୀ, ସେ କଳ୍ପନା ବିଳାସୀ ନୁହେଁ । ମାଳଅଁ ପୃଥିବୀର ନଙ୍ଗଲା ମଣିଷର ଫୁଙ୍ଗୁଲା ଭାଷାରେ ରଚିତ ତା ସାହିତ୍ୟ ପୁଣି ତା କର୍ମଶ୍ରମ କ୍ଳାନ୍ତ ଜୀବନରେ 'ଡ୍ରିମଗାର୍ଲ' ବା କୋଉ ଉର୍ବଶୀ, ରମ୍ଭା, ମେନକାର ନୃତ୍ୟଛଟା ବା ମଖମଲି ସ୍ୱପ୍ନ ଦେଖିବାକୁ ସେତେ ଅବସର ବା କାହିଁ ? ପୁଷୁମାସିଆ ଜାଡ଼ରେ ନାଲିପାଣି ମୁନ୍ଦେ ଟେକିଦେଇ କୁଙ୍କୁରି କାଙ୍କୁରି ହୋଇ ନହେଲେ ଙ୍ଗସାଏ ଖଟା ଆମ୍ବିଳା ତୋରାଣି ଢ଼କ ଢ଼କ କରି ପିଇଦେଇ ହଳ ଯୋବିଲା ବେଳେ ହାତୁଆ ପାଟିରୁ ସ୍ୱତଃ ଝରିପଡେ - "ରାମ ଯେ ଗଲେ ଲଇକ୍ଷଣ ମାରି ହେ".... ଭେରିଅର ଏଲଓ୍ୱିନଙ୍କ ମତରେ - "ଲୋକଗୀତତ ଲୋକମାନଙ୍କ ସମ୍ପତ୍ତି । ଚଷାଭୂଷାଙ୍କ ଭିତରେ ପ୍ରତିଭାଶାଳୀ ବ୍ୟକ୍ତିଦ୍ୱାରା ଏହା ସୃଷ୍ଟି । ସେମାନେ ନିଜ ରଚନା ବିଷୟରେ ସଚେତନ ନୁହନ୍ତି । ମୌଖିକ ସୃଷ୍ଟିକୁ ନିଜସ୍ୱ ବୋଲି ଦାବୀ କରେ ନୃତ୍ୟର ଉତ୍ତେଜନାରେ ଗୀତ ସୃଷ୍ଟି ହୁଏ । ରଚୟିତା ନିଜ ସୃଷ୍ଟିର ମହତ୍ତ୍ୱ ହୃଦୟଙ୍ଗମ କରିବା ପୂର୍ବରୁ ଏହା ସାଧାରଣଙ୍କ କୋଠ ସମ୍ପତ୍ତି ହୋଇ ପାରିଥାଏ ।" ଅଧ୍ୟାପକ କିଟିରିଡ୍ ଓ ଜେମ୍ସ ଶ୍ରୀମ୍ପଙ୍କ ମତରେ - "ଜନସମୂହ ହିଁ ଲୋକଗୀତର ନିର୍ମାଣ କର୍ତ୍ତା ।" କାଡ୍ୱେଲଙ୍କ ମତରେ - "ପ୍ରକୃତି ସହ ସଂଗ୍ରାମ କରୁ କରୁ ମନୁଷ୍ୟର ସାମୁହିକ ଚେତନାର ଉଦ୍‌ଭବ ହେଲା ପ୍ରାକୃତିକ ବିପଦରୁ ଆତ୍ମରକ୍ଷା କରିବା ଲାଗି । ଏହି ଚେତନାର ପ୍ରୟୋଜନ ହୋଇଥିଲା ପ୍ରକୃତି ଉପରେ ବିଜୟ ଲାଭ କଲାପରେ ମନୁଷ୍ୟର ତତ୍କାଳୀନ ମନୋଭାବ ସାମୁହିକ ଗୀତ ଓ ନୃତ୍ୟର ଅଭିବ୍ୟକ୍ତି ହେଲା ।

ମହାକାବ୍ୟରେ ଯେଉଁ ଅଷ୍ଟଧାତୁର ଅଭାବ ଥାଏ । ଲୋକ କବି ତାକୁ ଯତନ୍‌ରେ ସାଉଁଟି ରଖିଥାଏ । ମହାକବି ଯାହାକୁ ନିତାନ୍ତ ହେୟ, ନଗଣ୍ୟ ଅସଂକ୍ଷେୟ ଭାବି ବେଖାତିର ଭାବେ ଛାଡି ଦେଇଥାଏ, ଲୋକକବି ଦାଣ୍ଡର ଗୁଗୁଟିଆ, ପୋଖରୀ ହୁଡାର ଭେଜି ବାଇଗଣ କଣ୍ଟା, ହିତର କୋଇଲି ଖିଆ, ଯିଡ଼ାର ବୁଡ଼ା ପୋଇଖଣ୍ଡ, କଇଁଚ କୋଳି, ଅରମା ତିହର କୁଆ ମଇତା, ନଣ୍ଡା ବରଗଛର ଛାଇ, ବାଉଁଶ ପତ୍ରର, ବେଶୀ ତୋଟାଚ ବଙ୍କା ଆୟତାହି, ନୂଆ ପୋଖରୀର ପାଣି,

ଖଇଁଚି ପେଟରେ ମୀନ, ବାଡ଼ିର କଳା ହାଣ୍ଡିଆ ଡାଳ, ବୁଦି ବୁଦି ପିତାଶାଗ, ପୋଖରୀ ତୁଠର ଦୁବ ଆଦିର ବର୍ଣ୍ଣନାରେ ତାହା ଅତି ଜୀବିତ ଓ ମାର୍ମିକ ଭାବରେ ଫୁଟି ଉଠିଥାଏ । ମୋଟ ଉପରେ କେବଳ ସମାଜର ଚିତ୍ର ନୁହେଁ ମାଳଞ୍ଚ ପୃଥିବୀର ସବୁଜିମା ବେଶ୍ ପରିମାଣରେ ବିଛୁରିତ । ଆଦ୍ୟ ଆଷାଢ଼ର ପ୍ରଥମ ବାରିପାତରେ ଭିଜିଲା ମାଟିର ଉତ୍ତପ୍ତ ଗନ୍ଧକୁ ଶୁଣ୍ଢ ମେଲାଇ ଝିଣ୍ଟିକା ପୋକଟା ଶୋଷି ନେଲା ପରି ଲୋକକବି ଏଇ କଞ୍ଚା ମାଟିର ଗନ୍ଧରୁ ରସ ଶୋଷି ତା ସାହିତ୍ୟର ଫୁଲ ଫୁଟାଉ ଥାଏ ।

ଓଡ଼ିଶାର ଅନ୍ୟାନ ଅଞ୍ଚଳର ଲୋକଗୀତ ଠାରୁ ପଶ୍ଚିମାଞ୍ଚଳର ଲୋକଗୀତ ଏକ ଭିନ୍ନ ଓ ଅନନ୍ୟ ସାଧାରଣ । ଏହାର ସାହିତ୍ୟିକ ମୂଲ୍ୟ ଅନସ୍ୱୀକାର୍ଯ୍ୟ ।

- "ପଶ୍ଚିମ ଓଡ଼ିଶାର ଲୋକଙ୍କ ଭିତରେ ବିଶେଷତଃ ଗାଁ ଗହଳିରେ ଗିରିଜନ, ହରିଜନ ଓ ଇତର ଜନଙ୍କ ମଧ୍ୟରେ ଲୋକଗୀତର ବ୍ୟବହାର ପରିସର ଏପରି ଗଭୀର ଓ ବ୍ୟାପକ ଯେ ମନେହୁଏ ସେମାନଙ୍କର ଜୀବନ ଯନ୍ତ୍ରଣାର ନିତ୍ୟ ସହଚର ଓ ଏକ ଅବିଚ୍ଛେଦ୍ୟ ଅଂଶ ହେଉଛି ଗୀତ । ଏହି ଗୀତ ଗୁଡ଼ିକର ବିଷୟ ବସ୍ତୁ ପୁଣି ବିଚିତ୍ର ଓ ବ୍ୟାପକ । ଉଭୟରେ ସ୍ଥାନ ପାଇଛି ମନୁଷ୍ୟ ମନର ଆଦିମ ଯୌନ କାମନା । କେଉଁଟିରେ ଅଙ୍କିତ ହୋଇଛି ଆନନ୍ଦ ବେଦନା ସମ୍ବଳିତ ଜୀବନର ଗଭୀର ଅନୁଭୂତି ଏବଂ ସାଧାରଣ ମାନବର ଦୁଃଖ, ଦୁର୍ଦ୍ଦଶା, ଆଶା, ନିରାଶା, ସାମାଜିକ ବିଶ୍ୱାସ ଏବଂ ସଂସ୍କାରର ଚିତ୍ର ।"-

ପଶ୍ଚିମାଞ୍ଚଳରେ ବିଶେଷକରି ବଉଦ, ସୋନପୁରାଦି ମାଳଞ୍ଚଳରେ ଡାଲଖାଇ, ରସରକେଲିତ, କରମା, ସଜନୀ, ମାଏଲାଜଡ଼, ଚଇତିନଉଳ, ହଳିଆଗୀତ, ଛିଲୋଲାଇ, ଦୁମୋ, ବାଙ୍କିଝୁଲଙ୍କ ଓ ଜାଇଫୁଲ ଆଦି ଲୋକଗୀତ ଖୁବ୍ ସରଗରମ ଭାବେ ପ୍ରଚଳିତ । ଏଗୁଡ଼ିକର ପ୍ରଚାର ତଥା ପ୍ରସାର କେନ୍ଦ୍ର ସହର ମାନଙ୍କରେ ଯଥା ସମ୍ବଲପୁର, ବରଗଡ଼ ଆଦି ସ୍ଥାନ ମାନଙ୍କରେ କେତେକାଂଶରେ ଆସ୍ତେ ଆସ୍ତେ ଶୀଥିଳ ପଡି ଯାଉଥିବାର ଅନୁଭୂତି ହୁଏ । ଏହାର କାରଣ ହୋଇପାରେ ପଲ୍ଲୀ ଓ ସହର ମଧ୍ୟରେ ଥିବା ବିରାଟ ତଫାତ୍ କିମ୍ବା ସଭ୍ୟ ଜନପଦରେ ରହୁଥିବା ଶିକ୍ଷିତ ସମ୍ପ୍ରଦାୟ ଚାକଚକ୍ୟ, ଆଭିଜାତ୍ୟ କାଳିନ୍ୟର ମୋହରେ ତାର ବଂଶର ପରମ୍ପରାକୁ ଅସ୍ୱୀକାର କରିବାର ନିରାଟ ଛଳନା, ଯେ କି ତା'ର ଅତି ଆପଣାର ଥିଲା । କେବଳ ସେ ଶୁଣୁଥିଲା ବେଳେ ତାର ଆଈ ମୁହଁରୁ ଶୁଣୁ ନଥିଲା ତାର ଜେଜେର, ଜେ ମୁଣ୍ଡରେ ଆମ୍ବ ଜାମୁ ଡାଳ ଖୋସି ଅଣ୍ଟାରେ ହାତଦେଇ ନାଚୁଥିବାର ମଧ୍ୟ ସେ ଦେଖୁଥିଲା । ଓଡ଼ିଆ ଜାତିକୁ, ତାର ସାହିତ୍ୟ ଜଗତକୁ ସମଗ୍ର ଜନ ସମକ୍ଷରେ ଛିଡା କରିବାର ପ୍ରାଥମିକ ଉଦ୍ୟମକୁ ନାଟି ସ୍ୱାଗତ ଜଣାଇଥିଲା । କିନ୍ତୁ ଆଜି ସହରୀ ସଭ୍ୟତା, ଶିକ୍ଷିତ ବୋଲାଉଥିବା ଯୁବକଗୋଷ୍ଠୀ ପାଶ୍ଚାତ୍ୟାନୁକରଣରେ ତା' ଘରର

ସାତପୁରୁଷର ପାଟକନାରେ ବନ୍ଧାଇବା ସାହିତ୍ୟ ସଂସ୍କୃତିକୁ କେବଳ ଉଜୁଡେଇ ଦେଇନି ନାକବି ଟେକୁଛି, ଘୃଣାବି କରୁଛି । ଧ୍ୱଂସ ପାଇ ଆସୁଛି ଧିରେ ଧିରେ ତା' ଘରର ଇତିହାସ । କର୍ପୂର ଉଡି ତାର କନା ମଧ ପୋତିଦେବାକୁ ବସିଛି ନବ ଶିକ୍ଷିତ ସଭ୍ୟତା ଗୋଷ୍ଠୀ । ସେଇଥିପାଇଁ ବୋଧେ ସଭ୍ୟ ଜନପଦରେ ହିଂସ୍ର ବ୍ୟାଘ୍ରକୁ ସଂସ୍କୃତି ପୋଡା ଲୋକକୁ ମୁଣ୍ଡା, ସାଂତାଳ, କନ୍ଧ ଦେଖିଲେ ଘୃଣା କରୁଛି । ନିଜ ସାତପୁରୁଷର ସାହିତ୍ୟ ସଂସ୍କୃତିକୁ ଉଜୁଡେଇବାର ବ୍ୟର୍ଥ ଆମ୍ ପ୍ରଚେଷ୍ଟା ଭିତରେ ଶରବ୍ୟ ହୋଇ ଆଧୁନିକ ସହରୀ ଜନ୍ତୁ ବଞ୍ଚୁଛି ଏକ ତହଳ ଜୀବନ ନେଇ ସହରରେ ଯେ ଦିନେ ଏହାର ସୟଳେ ପତନ ଘଟିବ ନିଃସନ୍ଦେହ । ଏଇ ଦୃଷ୍ଟିରୁ କନ୍ଧ ସମାଜର ଜାଗ୍ରତ ପ୍ରହରୀ । ପଶ୍ଚିମ ଓଡ଼ିଶାର ଲୋକଗୀତରେ ଶ୍ରେଷ୍ଠ ଦିଶାରୀ, ଦିବ୍ୟ ଦିବ୍ୟ ଦ୍ରଷ୍ଟା ଭୀମଭୋଇଙ୍କୁ ବଛାଯାଇପାରେ । ପ୍ରଥମେ ତାଙ୍କ ସାହିତ୍ୟ ସାଧନାର 'ଆଦ୍ୟ କଣ୍ଟକ' ରୂପେ 'ରସରକେଲୀ' ଚଉତିଶାକୁ ମପାଯାଇ ପାରେ । ଯଦିଓ ସେଥିରେ ତାଭ୍‌କର ଆଦ୍ୟ ଯୌବନର ରସୋଛଳ ପ୍ରାଣର ଚରମ ପରିପ୍ରକାଶ ଘଟିଛି ରାଧାକୃଷ୍ଣ ନାମ୍ନି ଯୁବକ ଯୁବତୀ ମାଧମରେ । ତଥାପି ଅନ୍ତତଃ ସଲିଲା ଫଲଗୁ ପରି ଏହାର ସାଙ୍ଗିତିକ ମୂଲ୍ୟ (Sonic value)କୁ ଅସ୍ୱୀକାର କରିହୁଏନା । ଯେଉଁ ସାଙ୍ଗୀତିକତାର କାଉଁରୀ ସ୍ପର୍ଶରେ ଗୋପାଳ କୃଷ୍ଣ ବନମାଳୀ ଏପରିକି ରୀତିଯୁଗର ସ୍ରଷ୍ଟା ଭଞ୍ଜଙ୍କ "ଆଜ କି ଦେଖି-ଲିରେ ନବୀନ ବୟସୀ ବାଳା" କିମ୍ବା ରଥଙ୍କ "କହିତ ନୁହଁଇ ଭାରତୀରେ" ସାଙ୍ଗୀତିକ ଉଛଳତା(Larical sincereity) ଭୀମଭୋଇଙ୍କ ଯେ କୌଣସି କାବ୍ୟ, ବୋଲି ବା ଗୀତରେ ପଦପଂକ୍ତିରେ ନୁପୁର ଝଙ୍କାର ଶୁଣିବାକୁ ମିଳିବ । ହୋଇପାରେ କେଉଁ ଏକ ମାଳଞ୍ଚ ପୃଥିବୀର କୋଳରେ ବଢ଼ିଥିବା ଉନ୍ମତ୍ତ କନ୍ଧ ଯୁବକର କୌଣସି ଏକ ପ୍ରମତ୍ତ ପ୍ରେମିକା ପ୍ରତି ପରୋକ୍ଷ ଇଙ୍ଗିତ (Indirect comment) ଯାହାକୁ କି ରାଧାକୃଷ୍ଣଙ୍କ ନାମରେ ପାଣି ଛଡାଇ ଦିଆଯାଇଛି ମାତ୍ର ପ୍ରେମପାଗଳିନୀ ରାଧିକା ପ୍ରେମିକ ପ୍ରବର କୃଷ୍ଣଙ୍କ ପାଖକୁ ଏକ ଭାବବିହ୍ୱଳିତ ଆବେଦନ ପତ୍ରରେ ଲେଖିଛନ୍ତି.....

"ଜାନୁ ଯୌବନ ମୁଁ ସାଜିଥିଲି ଯନ୍‌କରି
ଏ ଯୁବା ବୟସେ ମୋର ଫୁଲ ସଙ୍ଗେ ସରି
ଯୌବନ ଦେହକୁ ମୋର ନାଶାର
କେତେ ଥିବି ଧରି ରସ ଯା'ଚାଲିଯାରେ.....(୧)

ରସରାଜ କୃଷ୍ଣଙ୍କ ଅସମ୍ଭାଳ ଭକ୍ତି
ଟାଣୁ ଅଛି ପଞ୍ଚଶର ଅନଙ୍ଗ ପିଡୁଛି
ଟଳମଳ ପିଣ୍ଡମୋର ଟଳି ପଡୁଅଛି

ଝିଅକୁ ଟାକିବା ଯାଏ ନାଗରୀ
ଜୀବ ଯାଉଅଛି ରସ ଯା' ଚାଲିଯାରେ...(୨)

'ରସରକେଲି' ଆଦି କେତେକ ଲୋକଗୀତରେ ଉଲଗ୍ନ ଯୌନାଦିର ଏକ ଆବିଳ, ପଙ୍କିଳ, ଆଇଁଷିଆ (super flimity) ଭାଷାର ବ୍ୟବହାର ହୋଇଥାଏ । ଏହାର କାରଣ ହୋଇପାରେ ଯେହେତୁ ଏହା ପ୍ରଥମେ ଅଶିକ୍ଷିତ, ବନ୍ୟ ଗିରିଜନାଦିଙ୍କଠାରୁ ସୃଷ୍ଟ ସେହେତୁ ଏହା ସମ୍ଭବ ହୋଇ ପାରିଥିବ ଏବଂ ଅଶିକ୍ଷିତ ତଥା ନୀଚ ଜାତି ଲୋକର ମୁଖର ଭାଷା ଏହାକୁ ଆହୁରି ନୀରସ କରି ଦେଇଥିବ । ତଥାପି ଏହାର କେତେକ ତାଜା ଗରମ ଶବ୍ଦକୁ ଯୁବକ ପ୍ରାଣକୁ କେବଳ ନୁହେଁ ଯେ କୌଣସି ପାଠକକୁ ବେଶ୍ ମତୁଆଲା କରିଦିଏ । କୋମଳାଙ୍ଗୀ ରାଧିକାଙ୍କ ଉକ୍ତିରେ 'ଯ' ଓ 'ଜ' ବହୁଳ ବ୍ୟବହାର ଏବଂ ରସରାଜ କୃଷ୍ଣଙ୍କ ପ୍ରତ୍ୟୁତ୍ତରରେ ବାରମ୍ବାର ରୁକ୍ଷ କର୍କଶ ଶବ୍ଦ 'ଟ'ର ବହୁଳ ବ୍ୟବହାର ପାଠକକୁ ଅଯଥା ରୌଦ୍ରଦଗ୍ଧ ମଧ୍ୟାନ୍ତର କ୍ଲାନ୍ତି ଆଣି ଦିଏନା ଅଧିକନ୍ତୁ ଚମ୍ପୁର 'ଟ' ଛାନ୍ଦ କଥା ମନେ ପକାଇ ଦିଏ । କିନ୍ତୁ 'ଚମ୍ପୁ' ଦୁର୍ବହ ଶବ୍ଦାଡ଼ମ୍ବର (High Pomposity) ରେ ପାଠକ ଅଣନିଶ୍ୱାସୀ ହୋଇ ପଡିଲା ବେଳକୁ ଭୋଇଙ୍କ ଲୋକଗୀତ ତାଙ୍କୁ ବେଶ୍ ଆସ୍ୱସ୍ତି ଦିଏ । ଜଣେ ସମାଲୋଚକଙ୍କ ଭାଷାରେ - "ସୌନ୍ଦର୍ଯ୍ୟ; ମାଧୁର୍ଯ୍ୟ ଓ କାବ୍ୟ କବିତାର ତ୍ରିବେଣୀ ସଙ୍ଗମ ଘଟିଛି ପଶ୍ଚିମାଞ୍ଚଳ ଓଡ଼ିଶାର 'ରସରକେଲି' ସଙ୍ଗୀତା ବଳୀରେ xxxx ପଞ୍ଚଶର ଗତିବିଧି ସର୍ବବ୍ୟାପି ଓ ଅପ୍ରତିହତ । ସେହି ମନୋଭେଦି ପଞ୍ଚଶାୟକରେ ନିରଙ୍କୁଶ ଶାସନର ମଞ୍ଜୁଳ ଚିତ୍ର ଆମେ ପାଉଁ 'ରସରକେଲି' ଗୀତାବଳୀରେ ।

'ଚଉତିଶା ପୋଥି'ରେ ମଧ ଅନୁରୂପ ବର୍ଣ୍ଣନା ସିନ୍ଧୁର ନମସ୍ୟ ଠାକୁର ଠାକୁରାଣୀ ନାମରେ ପାଣି ଛତାଇଛନ୍ତି ।

"ରସର କେଲିରେ - କରୁଣା ସାଗର ହରି କହୁ ଚକ୍ରପାଣି ।
କର ଧରି ରାଧିକାକୁ କହେ ଚକ୍ରପାଣି
କଦମ୍ବ ମୂଳରେ ବସି ନାଗର କରେ ବଂଶୀଧ୍ୱନି - ରସ ଯା' ଚାଲିଯାରେ ।
କରତି ହେଉଛି ଛାତି କାମନା କାତିରେ
କଲବଲେ ଦିନ ବଞ୍ଚୁଅଛି ମୁଁ ରାତିରେ
କରୁଣା ନୋହୁଚି କିମ୍ପା ନାଗରୀ ତୋ ହୃଦ ଭିତରେ ।
ରସ ଯା'ଚାଲିଯାରେ...."

ଠାରୁ ଆରମ୍ଭ କରି -

*"କ୍ଷମା ନିଧି କହୁଛନ୍ତି ହରଷେ ଗୋବିନ୍ଦ ।     ଖେଡ ଘଟରେ ରାସକଲେ ଚଉଷଟି ବନ୍ଧ ।*

ଆଦିପଦ ପଂକ୍ତିମାନରେ କେବଳ ଯୁବକ ସୁଲଭ ରସିକିମୀଆ ଛଡା ଅନ୍ୟ କୌଣସି ସାହିତ୍ୟିକ ସତ୍ତା ନାହିଁ । ଏ ପ୍ରେମ ପୁଣି କଳୁଷକାଳିମାରେ ପୂର୍ଣ୍ଣ । ଏଥିରେ ଦେହକୁ ଛାଡି ଦେହାତୀତର ବର୍ଣ୍ଣନା ନାହିଁ । ଇନ୍ଦ୍ରିୟରୁ ଅତୀନ୍ଦ୍ରିୟ ଜଗତକୁ ଯାଇପାରି ନାହିଁ । କେବଳ ଟିକେର ସିକର ଉଷ୍ଣ ଉତ୍ତାପ ନେଇ ବଞ୍ଚିରହିଛି ଲୋକଗୀତ ସାହିତ୍ୟରେ ।

"ଲୋକଗୀତ ଅଧିକାଂଶ ଲୋକଙ୍କ ବିଶ୍ୱାସ, ଚିନ୍ତନ ଓ ଅନୁଭୂତିର ପ୍ରତିନିଧିତ୍ୱ କରେ । ସାରା ପୃଥିବୀର ଲୋକ ହୃଦୟ ଏକ ଓ ଅଭିନ୍ନ ତେଣୁ ଏକ ଅଖଣ୍ଡ ମାନବ ସମାଜର ବିଶ୍ୱସ୍ତ ଚିତ୍ର ଆମେ ଏଥିରୁ ପାଉଁ । ଜାତୀୟ ବା ଆଞ୍ଚଳିକ ବୋଧରେ ଏହି ମହାବିଶ୍ୱ ଜନତା କ୍ଷୁର୍ଣ୍ଣ, ଖଣ୍ଡିତ ହୋଇନାହିଁ । ସ୍ନେହ, ପ୍ରେମାଦି ମୌଳିକ ଭାବପ୍ରକାଶରେ ଲୋକକବି ଏଭଳି କୃତିତ୍ୱ ଦେଖାଇ ଅଛି ଯେ, ତାର ଗୀତ ଅନୁବିଦିତ ହେଲେ ପୃଥିବୀର ଯେ କୌଣସି ଦେଶରେ ଆଦୃତ ହେବ ।"

'ଜାଇଫୁଲ' ପଶ୍ଚିମ ଓଡ଼ିଶାର ଲୋକଗୀତ ମାନଙ୍କ ମଧ୍ୟରେ ଅନ୍ୟତମ । ପଶ୍ଚିମ ଓଡ଼ିଶାର ମାଳାଞ୍ଚଳ ପୃଥିବୀର ବାସିନ୍ଦା ରସିକ କବି ଭୀମଭୋଇଙ୍କର ବୋଲିକୁ ଅନୁଧ୍ୟାନ କରାଯାଇ ପାରେ ।

*"- କିସ ମୁଁ କହିବି ତୋତେ କରଧରି ହୂତ କହୁଚି ଏତେ ଯାଇଫୁଲ ।*
*କୃଷ୍ଣ ଆଣିଦେବୁ ମୋତେ 'ଜାଇଫୁଲ'*
*ଖଞ୍ଜିଛି ତ୍ରିବେଣୀ ଶୋଭା, ସେହି ନନ୍ଦ କାହ୍ନୁ ଅଟନ୍ତି ପରା 'ଜାଇଫୁଲ"*

'ଚଉତିଶା ମଧୁବନ୍ଧ'ରେ

*"-ତ଼ାଙ୍କୁଣୀ ଘୋଡାଇ ଦେବି, ଯହିଁ ବସାଇଲେ ତହିଁ ବସିଚି ଜାଇଫୁଲ । ତୁମ୍ଭ ବଚନ ପାଳିବି ।*
*ଅନୁକ୍ଷଣେ ଥିବି ସାଙ୍ଗେ; ଭାବି ହେଉଥିବି ତାହାରି ଅଙ୍ଗେ ଜାଇଫୁଲ । ବସାଇବି ଜାନୁଜଙ୍ଘେ ।*
*ତୈଳ ମୁଁ ଲଗାଇ ଦେବି । ଭୁଜରେ ଭିଡ଼ି ପଲଙ୍କେ ଶୋଇବି ଜାଇଫୁଲ । ପ୍ରେମରସ ତୁମ୍ଭାଇବି ।*
*ଥନ ଦୁଇ ଦେବି ପୋତି, ବସି ଜାତଜଙ୍ଘେ ରାତି ପାହାନ୍ତି ଜାଇଫୁଲ । ଚଉଷଠି ବନ୍ଧେ ପ୍ରୀତି,*
*ଜାଇଫୁଲ....*

ମାଘମାସିଆ କନିକିନିଆ ଜାଡ଼ରେ କୁଙ୍କୁରି କାଙ୍କୁରୀ ହୋଇ ପାହାନ୍ତିଆ ପ୍ରହରରେ ତେଲମାଖି ୬୪/୬୫ ବନ୍ଧରେ ରାଧାକୃଷ୍ଣ ରତିପ୍ରୀତି ବଡ଼ କଥା ନୁହେ । ଗ୍ରାମୀଣ ଭାଷା (Rustic Language)ରେ ଯେଉଁ ସରଳ ତରଳ ଛନ୍ଦରେ (Symentry)ରେ ମା ଶିଶୁର ପାଟିରେ ମହୁ ଚଖାଇ ଜିଭ ମିଠାକରି ଔଷଧ ଖୁଆଇଲା ପରି ଲୋକଗୀତ ମାଧ୍ୟମରେ କବିତା ସୃଷ୍ଟି କରିବାର ଆପ୍ରାଣ ପ୍ରଚେଷ୍ଟା; ସାଧୁ ଉଦ୍ୟମ ଯେ ତାଙ୍କୁ ଦିନେ 'ସ୍ତୁତି ଚନ୍ତାମଣି ଲେଖିବାର' ଦିବ୍ୟ ଦ୍ରଷ୍ଟା ଆସନରେ ଆସୀନ କରାଇବାର ପ୍ରେରଣା ଆଣି ଦେଇଛି ଭୁଲିବାର ନୁହେଁ । ତୈଳ ଲଗାଇ ଥନ

ପୋତି ପାହାନ୍ତିଆ ଜାଡ଼ରେ ପ୍ରେମ କରୁ କରୁ ପ୍ରାଣୀଙ୍କ ଆରତରେ ହୃଦୟ ଫାଟି ପଡ଼ିଛି । ନିଜର ଜୀବନକୁ ନର୍କରେ ପକାଇ ଜଗତ ଉଦ୍ଧାର ହେବାର ଯେଉଁ କାବ୍ୟିକ ଗୌରବ ତଥା ଜଣେ ଅନ୍ଧ ଯୁବକର 'ରାଣ୍ଡି ପୁଅ ଅନନ୍ତା' ପରି ସମଗ୍ର ବିଶ୍ୱକୁ ଉଦ୍ଧାର କରିବାର ଯେଉଁ ଉଦାର ହୃଦୟ, ତାଙ୍କୁ ଯେ କେବଳ ଦିବ୍ୟଦ୍ରଷ୍ଟା, ମହାମନୀଷୀ ଭାବରେ ସାନ୍ତ ଅଞ୍ଚଳ, କି ଓଡ଼ିଶାର ଭୂଖଣ୍ଡ ଭିତରେ ଆବଦ୍ଧ କରି ରଖିନାହିଁ ସମଗ୍ର ବିଶ୍ୱ ସାହିତ୍ୟରେ ଯେଉଁ ହିସାବରେ ଫେଜରଙ୍କର 'Golden Baugh' ଉପନ୍ୟାସ ବିଶ୍ୱବିଖ୍ୟାତ ଉପନ୍ୟାସ ଭାବରେ ସମାଦାର ଲାଭ କରିଛି । ସେହି ହିସାବରେ 'ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧାର ହେଉ'ର କବି ବିଶ୍ୱ ବରେଣ୍ୟ ମହାକବି ଭାବେ ଚିହ୍ନିତ ଓ ପୂଜିତ ହେବା ଉଚିତ୍ । ସେଇଥି ଲାଗି ବୋଧେ ଏବେ ଦିଲ୍ଲୀ 'ଜାତୀୟ ସଂଗ୍ରାହାଳୟ'ରେ ନାଲିଧାତି ଭିତରେ ଝିକ୍ ଝିକ୍ କରୁଛି 'ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧାର ହେଉ' ତାଙ୍କର କବି ଜୀବନର ଅୟମାରମ୍ଭ ହୋଇଥିଲା ଜଣେ ଲୋକକବି ହିସାବରୁ । ଯେଉଁ କବିର କେବଳ ଗଭୀର ଅନୁଭୂତି (deeper sensibility)ଥାଏ । ତାରି କାବ୍ୟରେ କେବଳ ଲଳୀତ ସଙ୍ଗୀତ ଅମୀୟ ଝଙ୍କାର ଫୁଟିଉଠେ । ରସିକ କବି ଭୀମଭୋଇଙ୍କ କାବ୍ୟରେ, ଲୋକଗୀତରେ ଜ୍ଞାନ ଗର୍ଭିତ ଭାଷା (cognitive language) ଅପେକ୍ଷା ଗ୍ରାମୀଣ (Colloquial) ଭାଷାର ପ୍ରାବଲ୍ୟ ବେଶୀ, ବସ୍ତୁତଃ ତାଙ୍କରି କାବ୍ୟର ଚରମସୀମା (Climax) 'ସ୍ତୁତି ଚିନ୍ତାମଣି'ରେ ଘଟିଛି । ସୁକ୍ଷ୍ମ, ସ୍ୱଚ୍ଛ, ସରଳ ତରଳ ପଦନିର୍ଯ୍ୟାସ (Symentry) ଅଭିବ୍ୟକ୍ତି ଘଟିଛି ତାଙ୍କର ପ୍ରାଥମିକ ସୃଷ୍ଟି 'ରସରକେଲି', ଡାଲଖାଇ ଆଦି ବୋଲି ମାନଙ୍କରେ....ଯାହାକି ଉନ୍ମତ୍ତ ପାହାଡ଼ି କନ୍ୟା ଝରଣାପରି ସ୍ୱତଃସ୍ଫୁର୍ତ୍ତ (Spontaniously) ଭାବେ ପଶ୍ଚିମାଞ୍ଚଳର ପ୍ରତିକୋଣେ ଅନୁକୋଣେ ଝିରପଡିଛି । ତାର ଏକ ପ୍ରତୀକ ମାତ୍ର ଦିବ୍ୟଦ୍ରଷ୍ଟା ଭୀମଭୋଇ । ଏବେ ବି ରେଢ଼ାଖୋଲ ସୋନପୁର ଅଞ୍ଚଳର ବୁଢ଼ା ବୁଢ଼ୀ ସନ୍ଧ୍ୟାବେଳେ ଲୋକକବି ଭୀମଭୋଇଙ୍କୁ ଝୁରି ହୁଅନ୍ତି - ହେ ଅନ୍ଧ କେନଆଡ଼େ ଯାଉଛି । ଗୁଟେ ଡାଲଖାଇ ଓ ରସର୍କେଲି ଗୀତ ଲେଖିଦେ ଆମେ ଗାଏମୁଁ । ଏଥିରୁ ଲୋକକବିର ଜନପ୍ରିୟତା (Popularity) ବେଶ୍ ଅନୁଭବ୍ୟ ।

'ଡାଲଖାଇ' - ଏହି ଗୀତ ଗୁଡିକ ନୃତ୍ୟ ଓ ବାଦ୍ୟ ସମାଶ୍ରିତ ହୋଇ ଆଦିମ ମନର ନିଃସଙ୍କୋଚ ଭାବ ପ୍ରବଣ ଓ ରସଚର୍ଚ୍ଚାକୁ ଅବାଧ ଅଭିବ୍ୟକ୍ତି ପ୍ରଦାନ କରିଥାନ୍ତି । ଭୀମଭୋଇଙ୍କର ଯୁବକସୁଲଭ ପ୍ରାଣର ଉତ୍ତପ୍ତ, ଉଲଗ୍ନ ଯୌନପ୍ରବୃତ୍ତି ଅତି ଉଚ୍ଛୃଙ୍ଖଳିତ ଭାବେ ଫୁଟି ପଡିଛି ଏଇ 'ଡାଲଖାଇ' ଲୋକଗୀତରେ । ଯାହାକି ତାଙ୍କୁ ଜଣେ ରସିକ କବି (A poet of humour)ର ଆସନରେ ଉପବିଷ୍ଟ କରିଛି । ଲୋକକବି ଭୀମଭୋଇ କେବଳ 'ଡାଲଖାଇ', 'ରସରକେଲି' ଲେଖୁନଥିଲେ । ଦଣ୍ଡନୃତ୍ୟ, କରମା, ଡାଲଖାଇ ଆଦି କେଉଁ ଗ୍ରାମରେ ହେଉଥିବାର ଶୁଣିଲେ

ଅନ୍ଧକବି ବାଡି ଠୁକୁ ଠୁକୁ କରି ସେଠାକୁ ଯାଇ ନିଜେ ନାଚୁଥିବାର ପ୍ରମାଣ ମିଳେ । ଏଥିରୁ ତାଙ୍କ ଚୟସର ଗୁରୁ ବୋଝ ତଳେ ଶାରୀରିକ ଅକ୍ଷମତାକୁ ଏଡ଼ାଇ ରସିକିଆମୀ କେମିତି ଉଛୁଳି ପଡିଛି ତାହା ସ୍ୱତଃ ବାରି ହୋଇପଡେ ।

'ବଉଳ ବୋଲି'ରେ ମଧ ଶବ୍ଦିକ ଆତମ୍ୟତର ସହ ସାଙ୍ଗୀତିକ ପଦଯୋଜନା (Musical metronome)ର ମଣିକାଞ୍ଚନ ସଂଯୋଗ ଘଟିଛି । ଏଥିରେ ବ୍ୟବହୃତ କାମ, ଖଣା, କିମ୍ବା, ଖପରଆଦି ଚୁମ୍ୱକୀୟ ଶବ୍ଦମାନ ଯେ କୌଣସି ମାନବ ପ୍ରାଣରେ ଏପରି କି ପଉଷରେ ଝଡୁଥିବା ପତରଟି ଭିତରେ ମଧ ସଉକ ଖେଳାଇ ଦେବ କହିବା ବାହୁଲ୍ୟ ମାତ୍ର, ତାଙ୍କରି ଆଖିରେ କୃଷ୍ଣ ହିଁ ନିଜେ କାମଦେବ ।

"- କୃଷ୍ଣ ଯାହାକୁ କହନ୍ତି କାମଦେବ ସେହି,
କରାଉଛି କର୍ମ ଜାଣରେ ବଉଳ
କାମ କଳ୍ପନା ଭିଆଇ
ଖଣାରେ ବିମ୍ୟରେ ସବୁ ପଡି ବହିଗଲା
ଖପର ସେହି ଅଟଇରେ ବଉଳ,
ସ୍ତ୍ରୀରି ପଦ୍ମକୁ କହିଲାରେ ବଉଳ... ।"

ଏହାର ପଦସଂକ୍ତିରେ ଚଉତିଶାର ନିୟମ କେତେକାଂଶରେ ଅନୁଭୂତି 'କ' ପରେ 'ଖ' ପଦସଂଯୋଜନା (Syntex) ଏହାକୁ ଯେତେ ପରିମାଣରେ ରସୋଦ୍ଦିପ୍ତ କରିନାହିଁ, ତା'ଠାରୁ ଅଧିକ ସାଂଗୀତିକ କୋମଳତା (Melody) ଏହାକୁ ସ୍ୱାତନ୍ତ ଦେଇଛି ଏହା ମାନିବାକୁ ପଡିବ । ଯଦିଓ ଏହାର ଅର୍ଥବ୍ୟଞ୍ଜନା ଭିତରେ ସେଇ ଆଦମ୍-ଇଭ୍‌ର ବିକଳ ଅନ୍ଧାରୀ ଇଲାକା ରାଜୁତି କରେ । ଅନ୍ଧାରୀ ଯୁଗର ସେଇ ତୋମ୍ୱୀ, ସହଜସୁନ୍ଦରୀ କଥା ମନେ ପକାଇ ଦିଏ । ତଥାପି ଦୀନକୃଷ୍ଣ, ଅଭିମନ୍ୟୁ, ଉପେନ୍ଦ୍ରଙ୍କ କାବ୍ୟ ସୁନ୍ଦରୀ ଚଉଷଠି ବନ୍ଧ ରତିଠାରୁ ଏହା କୌଣସି ଗୁଣରେ ନ୍ୟୁନ ନୁହେଁ । ସର୍ବୋପରି ଆଙ୍ଗିକ ତଥା ଆତ୍ମିକ ବିଭବରେ କିମ୍ବା ସାଙ୍ଗୀତିକତାରେ ଗୋପାଳକୃଷ୍ଣ, ବନମାଳୀ ଠାରୁ ନ୍ୟୁନ ନୁହେଁ ଏକଥା ସର୍ବବାଦୀ ସମ୍ମତ । ଏହା ଲୋକକବି ଭୀମଭୋଇଙ୍କର ଲୋକଗୀତରୁ ମର୍ମେ ମର୍ମେ ଅନୁଭବ କରିହୁଏ ।



ପୋତି ପାହାନ୍ତିଆ ଜାଡ଼ରେ ପ୍ରେମ କରୁ କରୁ ପ୍ରାଣୀଙ୍କ ଆରତରେ ହୃଦୟ ଫାଟି ପଡ଼ିଛି । ନିଜର ଜୀବନକୁ ନର୍କରେ ପକାଇ ଜଗତ ଉଦ୍ଧାର ହେବାର ଯେଉଁ କାବ୍ୟିକ ଗୌରବ ତଥା ଜଣେ ଅନ୍ଧ ଯୁବକର 'ରାଣ୍ଡି ପୁଅ ଅନନ୍ତା' ପରି ସମଗ୍ର ବିଶ୍ୱକୁ ଉଦ୍ଧାର କରିବାର ଯେଉଁ ଉଦାର ହୃଦୟ, ତାଙ୍କୁ ଯେ କେବଳ ଦିବ୍ୟଦ୍ରଷ୍ଟା, ମହାମନୀଷୀ ଭାବରେ ସାନ୍ତ ଅଞ୍ଚଳ, କି ଓଡ଼ିଶାର ଭୂଖଣ୍ଡ ଭିତରେ ଆବଦ୍ଧ କରି ରଖିନାହିଁ ସମଗ୍ର ବିଶ୍ୱ ସାହିତ୍ୟରେ ଯେଉଁ ହିସାବରେ ଫେଜରଙ୍କର 'Golden Baugh' ଉପନ୍ୟାସ ବିଶ୍ୱବିଖ୍ୟାତ ଉପନ୍ୟାସ ଭାବରେ ସମାଦାର ଲାଭ କରିଛି । ସେହି ହିସାବରେ 'ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧାର ହେଉ'ର କବି ବିଶ୍ୱ ବରେଣ୍ୟ ମହାକବି ଭାବେ ଚିହ୍ନିତ ଓ ପୂଜିତ ହେବା ଉଚିତ୍ । ସେଇଥି ଲାଗି ବୋଧେ ଏବେ ଦିଲ୍ଲୀ 'ଜାତୀୟ ସଂଗ୍ରାହାଳୟ'ରେ ନାଳିଧାତି ଭିତରେ ଝିକ୍ ଝିକ୍ କରୁଛି 'ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧାର ହେଉ' ତାଙ୍କର କବି ଜୀବନର ଅୟମାରମ୍ଭ ହୋଇଥିଲା ଜଣେ ଲୋକକବି ହିସାବରୁ । ଯେଉଁ କବିର କେବଳ ଗଭୀର ଅନୁଭୂତି (deeper sensibility)ଥାଏ । ତାରି କାବ୍ୟରେ କେବଳ ଲଳୀତ ସଙ୍ଗୀତ ଅମୀୟ ଝଙ୍କାର ଫୁଟିଉଠେ । ରସିକ କବି ଭୀମଭୋଇଙ୍କ କାବ୍ୟରେ, ଲୋକଗୀତରେ ଜ୍ଞାନ ଗର୍ଭିତ ଭାଷା (cognitive language) ଅପେକ୍ଷା ଗ୍ରାମୀଣ (Colloquial) ଭାଷାର ପ୍ରାବଲ୍ୟ ବେଶୀ, ବସ୍ତୁତଃ ତାଙ୍କରି କାବ୍ୟର ଚରମସୀମା (Climax) 'ସ୍ତୁତି ଚିନ୍ତାମଣି'ରେ ଘଟିଛି । ସୁକ୍ଷ୍ମ, ସ୍ୱଛ, ସରଳ ତରଳ ପଦନିର୍ଯ୍ୟାସ (Symentry) ଅଭିବ୍ୟକ୍ତି ଘଟିଛି ତାଙ୍କର ପ୍ରାଥମିକ ସୃଷ୍ଟି 'ରସରକେଲି', ଡାଲଖାଇ ଆଦି ବୋଲି ମାନଙ୍କରେ....ଯାହାକି ଉନ୍ମତ୍ତ ପାହାଡ଼ି କନ୍ୟା ଝରଣାପରି ସ୍ୱତଃସ୍ଫୁର୍ତ୍ତ (Spontaniously) ଭାବେ ପଶ୍ଚିମାଞ୍ଚଳର ପ୍ରତିକୋଣେ ଅନୁକୋଣେ ଝିରପଡିଛି । ତାର ଏକ ପ୍ରତୀକ ମାତ୍ର ଦିବ୍ୟଦ୍ରଷ୍ଟା ଭୀମଭୋଇ । ଏବେ ବି ରେଢ଼ାଖୋଲ ସୋନପୁର ଅଞ୍ଚଳର ବୁଢ଼ା ବୁଢ଼ୀ ସନ୍ଧ୍ୟାବେଳେ ଲୋକକବି ଭୀମଭୋଇଙ୍କୁ ଝୁରି ହୁଅନ୍ତି - ହେ ଅନ୍ଧ କେନଆଡ଼େ ଯାଉଛି । ଗୁଟେ ଡାଲଖାଇ ଓ ରସର୍କେଲି ଗୀତ ଲେଖିଦେ ଆମେ ଗାଏମୁଁ । ଏଥିରୁ ଲୋକକବିର ଜନପ୍ରିୟତା (Popularity) ବେଶ୍ ଅନୁଭବ୍ୟ ।

'ଡାଲଖାଇ' - ଏହି ଗୀତ ଗୁଡିକ ନୃତ୍ୟ ଓ ବାଦ୍ୟ ସମାଶ୍ରିତ ହୋଇ ଆଦିମ ମନର ନିଃସଙ୍କୋଚ ଭାବ ପ୍ରବଣ ଓ ରସଚର୍ଚ୍ଚାକୁ ଅବାଧ ଅଭିବ୍ୟକ୍ତି ପ୍ରଦାନ କରିଥାନ୍ତି । ଭୀମଭୋଇଙ୍କର ଯୁବକସୁଲଭ ପ୍ରାଣର ଉତ୍ତପ୍ତ, ଉଲଗ୍ନ ଯୌନପ୍ରବୃତ୍ତି ଅତି ଉଚ୍ଛୃଙ୍ଖଳିତ ଭାବେ ଫୁଟି ପଡିଛି ଏଇ 'ଡାଲଖାଇ' ଲୋକଗୀତରେ । ଯାହାକି ତାଙ୍କୁ ଜଣେ ରସିକ କବି (A poet of humour)ର ଆସନରେ ଉପବିଷ୍ଟ କରିଛି । ଲୋକକବି ଭୀମଭୋଇ କେବଳ 'ଡାଲଖାଇ', 'ରସରକେଲି' ଲେଖୁନଥିଲେ । ଦଣ୍ଡନୃତ୍ୟ, କରମା, ଡାଲଖାଇ ଆଦି କେଉଁ ଗ୍ରାମରେ ହେଉଥିବାର ଶୁଣିଲେ

ଅନ୍ଧକବି ବାଡି ଠୁକୁ ଠୁକୁ କରି ସେଠାକୁ ଯାଇ ନିଜେ ନାଚୁଥିବାର ପ୍ରମାଣ ମିଳେ । ଏଥିରୁ ତାଙ୍କ ବୟସର ଗୁରୁ ବୋଝ ତଳେ ଶାରୀରିକ ଅକ୍ଷମତାକୁ ଏଡ଼ାଇ ରସିକିଆମୀ କେମିତି ଉଚ୍ଛୁଳି ପଡିଛି ତାହା ସ୍ୱତଃ ବାରି ହୋଇପଡେ ।

'ବଉଳ ବୋଲି'ରେ ମଧ ଶବ୍ଦିକ ଆଡମ୍ୱରର ସହ ସାଙ୍ଗୀତିକ ପଦଯୋଜନା (Musical metronome)ର ମଣିକାଞ୍ଚନ ସଂଯୋଗ ଘଟିଛି । ଏଥିରେ ବ୍ୟବହୃତ କାମ, ଖଣା, କିମ୍ୱା, ଖପରଆଦି ଚୁମ୍ୱକୀୟ ଶବ୍ଦମାନ ଯେ କୌଣସି ମାନବ ପ୍ରାଣରେ ଏପରି କି ପରଷରେ ଝଡୁଥିବା ପତରଟି ଭିତରେ ମଧ ସଉକ ଖେଳାଇ ଦେବ କହିବା ବାହୁଲ୍ୟ ମାତ୍ର, ତାଙ୍କରି ଆଖିରେ କୃଷ୍ଣ ହିଁ ନିଜେ କାମଦେବ ।

"- କୃଷ୍ଣ ଯାହାକୁ କହନ୍ତି କାମଦେବ ସେହି,
କରାଉଛି କର୍ମ ଜାଣରେ ବଉଳ
କାମ କଳ୍ପନା ଭିଆଇ
ଖଣାରେ ବିମ୍ୱରେ ସବୁ ପଡି ବହିଗଲା
ଖପର ସେହି ଅଟଇରେ ବଉଳ,
ଶ୍ରୀରି ପଦ୍ମକୁ କହିଲାରେ ବଉଳ... !"

ଏହାର ପଦପଂକ୍ତିରେ ଚଉତିଶାର ନିୟମ କେତେକାଂଶରେ ଅନୁଭୂତି 'କ' ପରେ 'ଖ' ପଦସଂଯୋଜନା (Syntex) ଏହାକୁ ଯେତେ ପରିମାଣରେ ରସୋଦ୍ଦିପ୍ତ କରିନାହିଁ, ତା'ଠାରୁ ଅଧିକ ସାଂଗୀତିକ କୋମଳତା (Melody) ଏହାକୁ ସ୍ୱାତନ୍ତ୍ର ଦେଇଛି ଏହା ମାନିବାକୁ ପଡିବ । ଯଦିଓ ଏହାର ଅର୍ଥବ୍ୟଞ୍ଜନା ଭିତରେ ସେଇ ଆଦମ୍-ଇଭ୍‌ର ବିକଳ ଅନ୍ଧାରୀ ଇଲାକା ରାଜୁଡି କରେ । ଅନ୍ଧାରୀ ଯୁଗର ସେଇ ଡୋମ୍ୱୀ, ସହଜସୁନ୍ଦରୀ କଥା ମନେ ପକାଇ ଦିଏ । ତଥାପି ଦୀନକୃଷ୍ଣ, ଅଭିମନ୍ୟୁ, ଉପେନ୍ଦ୍ରଙ୍କ କାବ୍ୟ ସୁନ୍ଦରୀ ଚଉଷଠି ବନ୍ଧ ରତିଠାରୁ ଏହା କୌଣସି ଗୁଣରେ ନ୍ୟୁନ ନୁହେଁ । ସର୍ବୋପରି ଆଙ୍ଗିକ ତଥା ଆତ୍ମିକ ବିଭବରେ କିମ୍ୱା ସାଙ୍ଗୀତିକତାରେ ଗୋପାଳକୃଷ୍ଣ, ବନମାଳୀ ଠାରୁ ନ୍ୟୁନ ନୁହେଁ ଏକଥା ସର୍ବବାଦୀ ସମ୍ମତ । ଏହା ଲୋକକବି ଭୀମଭୋଇଙ୍କର ଲୋକଗୀତରୁ ମର୍ମେ ମର୍ମେ ଅନୁଭବ କରିହୁଏ ।



# ପଶ୍ଚିମ ଓଡ଼ିଶାର ଆଦିବାସୀ ସଂସ୍କୃତି

**ହାଡିବନ୍ଧୁ ମିର୍ଦ୍ଧା**

ପୂର୍ଣ୍ଣାଙ୍ଗ ଓଡ଼ିଶା ୧୯୩୬ରେ ଗଠିତ ହେଲା ପରେ ଓଡ଼ିଶାର ଯେଉଁ ଅଞ୍ଚଳଗୁଡ଼ିକ ଐତିହ୍ୟ-ଇତିହାସର ପ୍ରତୀକ ଭାବେ ଯୁଗ ଯୁଗ ଧରି ପରିଚିତ ଥିଲା, ତାହା ବିସ୍ତୃତ ହୋଇ ଗୋଟିଏ ଓଡ଼ିଶା କୋଟିଏ ସନ୍ତାନକୁ ନେଇ ବଞ୍ଚି ରହିଲା । ମାତ୍ର ଏକଦା ଓଡ଼ିଶାବାସୀ ଓଡ଼ିଆ ଭାଷା କହୁଥିଲେ ମଧ କୋଶଳ, କଳିଙ୍ଗ, ଉତ୍କଳ ଭାବେ ସ୍ୱତନ୍ତ୍ର ରାଜ୍ୟରେ ରହି ବିଭିନ୍ନ ରାଜାଙ୍କ ଶାସନାଧୀନ ଥିଲା । ବାସ୍ତବିକ ଓଡ଼ିଆ ଭାଷା ଥିଲା ସମଗ୍ର ଓଡ଼ିଶା ରାଜ୍ୟର ରାଷ୍ଟ୍ରଭାଷା । ଆଉ ଆଦିବାସୀ ତଥା ଅନ୍ୟାନ୍ୟ ଆଞ୍ଚଳିକ ଭାଷା ଥିଲା ଉପଭାଷା । ଯେଉଁ ଓଡ଼ିଶାର ତେର ଜିଲ୍ଲାର ପରମ୍ପରା, ଚଳଣୀ, ଭାଷା ଉପରେ ଆଲୋକପାତ କଲେ ଜଣାଯାଏ ଯେ "ଦେଶକେ ଫାଙ୍କ ନଈକେ ବାଙ୍କ" ପରି ଆମର ଚଳଣୀ, ଭାଷା ମଧରେ ଢେର ପାର୍ଥକ୍ୟ ରହିଛି । ପୂର୍ବ ଓଡ଼ିଶା, ପଶ୍ଚିମ ଓଡ଼ିଶା, ଦକ୍ଷିଣ ଓଡ଼ିଶା, ଉତ୍ତର ଓଡ଼ିଶାର ଚଳଣୀରେ ଯେପରି ଉନ୍ନତ ରହିଛି । ସେପରି ଭାଷା-କଥା-ରୀତିରେ ଅସାମାଜିକତା ରହିଛି । ତଥାପି ହିନ୍ଦୀ ଭାଷା ଯେପରି ସମଗ୍ର ଦେଶର ମୁହଁକୁ ନୂତନତା ଦେବାରେ ପ୍ରୟାସ କରିଛି । ସେମିତି ବହୁକାଳରୁ ଜାତି, ଅଜାତି, ହରିଜନ, ନଗରଜନ ମଧରେ ଓଡ଼ିଆ ଭାଷା ଭାବ ବିନିମୟର ମହାନ କାର୍ଯ୍ୟ ସାଧନ କରି ଅନ୍ୟ ଜାତି ଗୋଷ୍ଠୀର ଶ୍ରେଣୀର ପରମ୍ପରା । ସଂସ୍କୃତି ଆଦର୍ଶ ତଥା ଧର୍ମ ଧାରଣାକୁ ମଧ ନିଜର ଚିନ୍ତା ବ୍ୟବହାରରେ ଗର୍ବିତ କରିପାରିଛି । ତେଣୁ ଗୋଟିଏ ଜାତି ଯେତେବେଳେ ଅନ୍ୟର ସଂସ୍କୃତି ଆଦର୍ଶକୁ ଆପଣାର କରି ଆପଣାକୁ ହଜାଇ ଦିଏ । ସେତେବେଳେ ଆଉ ପାର୍ଥନା ଦେଇପାରେ ନାହିଁ । ସମୁଦ୍ର ସହିତ ନଦୀର ମିଳନରେ ନିଜସ୍ୱ ଭୂଲି ଏକଲା ହୋଇଯାଏ । ମାତ୍ର ଗବେଷଣାତ୍ମକ ମନୋଭାବ ନେଇ ଅନ୍ୱେଷଣ କଲେ ପୁନରାୟ ଆମେ ସିଦ୍ଧାନ୍ତରେ ଉପନୀତ ହେଉ ।

ଆଜିର ଯୁଗର କଥା ଯଦି ବିଚାର କରାଯାଏ । ତେବେ ଏ ଦେଶର କେତେ ଶାସକ, ପରିବ୍ରାଜକ ଆସି ନିଜର ଧର୍ମ ସଂସ୍କୃତିର ପ୍ରଭାବ ବିସ୍ତାର କରିଗଲେ । ପୁଣି ନେଇ ବି ଗଲେ । ଧନ

ଯେପରି ଦେଇଯାଏ, ନେଇଯାଏ, ସେପରି ସଂସ୍କୃତି ମଧ୍ୟ ମଣିଷ ମନରେ ଛାପ ପରି ଲାଲ ରହି ନିଜର ସଂସ୍କୃତି ଧର୍ମ ପ୍ରଚାର-ପ୍ରସାର କରି ଯାହା ରୁଚିକରି ଉପାଦେୟ ଦେଇ ମଧ୍ୟ ଯାଏ । ଇଂରେଜ ଶାସନ ସମୟର ଧର୍ମ, ଶାସନ, ସଂସ୍କୃତ ଓ ଦେଶ, ଜାତି ,ସଂସ୍କୃତିକୁ ଏପରି ଭାବରେ ଗ୍ରାସ କରିଛି ଯେ ତାକୁ ଛାଡିବା ଏଯାଏ ସମ୍ଭବପର ହୋଇନାହିଁ । ଗୋଟିଏ କଥା ପକାଇଲେ ଯଥେଷ୍ଟ ହେବ, ଆମେ ଗ୍ରହଣ କରିନେଇଛୁଁ ଗଣନା ପାଇଁ ଖ୍ରୀଷ୍ଟାବ୍ଦ' ଆଉ ଅବସର ଦିବସ 'ରବିବାର' । ଏହା ସହଜରେ ଭାରତୀୟ ଏକତା ପ୍ରାଦେଶିକ ଜନଜୀବନକୁ ପରିବର୍ତ୍ତିତ ହେବ ।

ସେ ଦୃଷ୍ଟିରୁ ବିଚାର କଲେ ଯୁଗ ଯୁଗରୁ ହିରିଜନ, ନଗରଜନ ମଧ୍ୟରେ ରହି ଆସିଥିବା ସଦ୍‌ଭାବ ସମ୍ପର୍କ ଏକାନ୍ତ ଭାବେ ନିବିଡ଼ତର । "ଗା ଭିନ୍ନ ଭିନ୍ନ ମନୁଷ୍ୟ ଏକା" ନୀତି ସାର୍ବଜନୀନ ହୋଇଛି । ତେଣୁ ଏକଦା କୋଶଳ ସାମ୍ରାଜ୍ୟ ଆଦିର ପଶ୍ଚିମ ଓଡ଼ିଶା । ପଶ୍ଚିମ ଓଡ଼ିଶା ଆଦିବାସୀ ବହୁଳ ରାଜ୍ୟ । ଘଞ୍ଚ ବନାନୀର ବନବାସୀ କୁଳୁ କୁଳୁ ପ୍ରବାହିତ ନିର୍ଝରିଣୀର ସଂଗୀତ ମୂର୍ଚ୍ଛନାରେ ଭାବ ବିହ୍ୱଳ ଜାତିକତାରେ ଜନପଦ ସୃଷ୍ଟି କରେ । ଫଳ, ମୂଳ, ସଂଗ୍ରହ କରି, କାଳକ୍ରମେ ଚାଷ, ଗୃହ-ପଶୁ ଜୀବିକାରେ ଧନ-ଜୀବନ ପରିପୃଷ୍ଟ କରି ନିଜର ସଂସ୍କୃତି, ପରମ୍ପରା, ଧର୍ମ ସୃଷ୍ଟି କରି ସରଳ ନିରାଡମ୍ବର ଓ ଅମାୟିକ ଜୀବନଯାତ୍ରା ନିର୍ବାହ କରି ଚାଲିଛି । ତାର ଆଦର୍ଶ, ନୀତି, ଧର୍ମ କ୍ରମେ କ୍ରମେ ଶିକ୍ଷିତ - ସଭ୍ୟ ମଣିଷକୁ ଆକୃଷ୍ଟ କରିଛି, ଯେହେତୁ ଯେଉଁ ଜାତିର ସାଂସ୍କୃତିକ-ସାମାଜିକ ଜୀବନ ଯେତେ ଉନ୍ନତ ପରିମାର୍ଜିତରେ ଯେତେ ମହାନ୍ ସେ ସେତେ ଗୌରବାବହ । ମଣିଷ ପ୍ରଗତିଶୀଳ । ସେ ହେଉଛି ଚେତନଶୀଳ । ସେ ଜୀବ ଜଗତ ବା ବୃକ୍ଷଜଗତ ପରି ସ୍ଥିର ରହି ପାରେନା । ମଣିଷର ବିକାଶ ଅଛି । ସେ ବୁଦ୍ଧି ବିବେକର ସଂପର୍କ ମଧ୍ୟରେ କିଛି ସନ୍ଧାନ କରେ । ଲୁପ୍ତ ଗୌରବ - ସ୍ମୃତି ଗୌରବକୁ ସାଉଁଟି ଆଣେ । ତେଣୁ ସେ ମଣିଷ । ମନୀଷା-ମୋଧା ପ୍ରତିଭା ନେଇ ଦୁର୍ଲ୍ଲଭ ପ୍ରାଣୀ ଭାବେ ପରିଚିତ । ସେ ଯେଉଁ ସଂସ୍କୃତି-ବ୍ୟକ୍ତି-ଧର୍ମକୁ ଗ୍ରହଣୀୟ ବୋଲି ସ୍ଥିର ମନରେ ବିଚାର କରେ, ତାକୁ ଆରାଧ ବୋଲି ନିର୍ବିବାଦରେ ଗ୍ରହଣ କରିନିଏ ଏବଂ ତାର ପୂଜକ-ଉଜକ ମନ ମଧ୍ୟରେ ନିମଜ୍ଜିତ ରହେ ।

ସୁତରାଂ ଆଦିର ସଂସ୍କୃତି ବ୍ରାହ୍ମଣର ଅଥବା ହରିଜନର ସାଧାରଣ ବ୍ୟକ୍ତି କହି ପାରିବନି । ଆବଶ୍ୟକ ଗବେଷଣା ତଥା ଅନୁଶୀଳନ ନ ହେବା ଯାଏ କେହି ମୋର ବା ତାର କହି ପାରିବ ନି । ତେବେ ଐତିହାସିକ, ପ୍ରତ୍ନତତ୍ତ୍ୱାବିତ୍ ତଥା ନୃତତ୍ତ୍ୱବିତ୍ ମାନଙ୍କର ମତ ଦ୍ୱାରା ଆଜି ଆମେ ସଂପୂର୍ଣ୍ଣ ଭାବରେ ଅବଗତ ହେଉ ଯେ ଓଡ଼ିଶାର ଯେଉଁ ଧର୍ମ-ସଂସ୍କୃତିର ବିଜୟ ଡିଣ୍ଡିମ ବାଜି ଉଠୁଛି ସମଗ୍ର ମାନବ ଜାତିର ମାନସ ସରୋବରରେ ତାହା ହେଉଛି, ଆଦିବାସୀ ଜାତିତର । କାରଣ ସେମାନେ

ଆଷ୍ଟ୍ରୀକ ବା ଅଗ୍ରଜ ଜାତି ଭାବେ ସମ୍ମାନିତ । ସେମାନେ ମୂଳରୁ ରାଜା-ଜମିଦାର-ନେତା ଭାବେ ନିଜର ପ୍ରତିଷ୍ଠା ପାଇଁ ଚାଲିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଆଶ୍ରମାବାସୀଙ୍କର ହାତରେ ଶିକାର ହୋଇ ଭୁଲୁଛି ତ, ଆଉ ଲୁଣ୍ଠିତ ହୋଇଛନ୍ତି; କେତେକ ସର୍ବସ୍ୱାନ୍ତ ହୋଇ ଯେଣତେଣ ପ୍ରକାରେଣ ବନ୍ୟ-ପାହାଡ଼ ଝରଣାକୁ ଆଶ୍ରୟ କରି ଚଳୁଥିଲେ, ଚଳୁଛନ୍ତି ମଧ୍ୟ । ଅବଶ୍ୟ ସେମାନଙ୍କର ବୀରତ୍ୱ ଶୌର୍ଯ୍ୟ-ତେଜ, ପୁରାଣ ଇତିହାସରେ ଉତ୍କୀର୍ଣ୍ଣ ହୋଇ ରହିଛି । ଆଉ ସେମାନଙ୍କ ସଂସ୍କୃତି-ପର୍ବ-ପର୍ବାଣୀ ସାମାଜିକ ଆଦର୍ଶ ସଭ୍ୟ ଜଗତକୁ ପ୍ରତିଧ୍ୱନିତ କରିଛି । କାରଣ ସେହିମାନଙ୍କର ସଂସ୍କୃତି-ଧର୍ମ ଓ ସାମାଜିକ ଆଦର୍ଶ ପରିମାର୍ଜିତ ରୂପ ଗ୍ରହଣ ପରେ ସର୍ବଜନପ୍ରିୟ ହେବା ସ୍ୱାଭାବିକ । ଯେତେବେଳେ ଯେଉଁ ବ୍ୟକ୍ତି, ଶ୍ରେଣୀ, ଗୋଷ୍ଠୀ ନିଜକୁ ଶକ୍ତି, ବଳବାନ କରି ଗଢ଼ିତୋଳେ, ଧନ-ଜ୍ଞାନର ମହିମାରେ ଗରୀୟାନ ହୋଇ ଉଠେ, ସେ ସେତେବେଳେ ତାର ପଡ଼ୋଶୀ, ଆଶ୍ରିତକୁ ମଧ୍ୟ ହେୟଜ୍ଞାନ କରେ । ହିଟଲର ଜର୍ମାନ ଜାତକୁ ଆର୍ଯ୍ୟ କହି, 'ଇହୁଦୀ' ମାନଙ୍କୁ ଅନାର୍ଯ୍ୟ କହି ପଶୁପରି ହତ୍ୟା କଲେ - ପଶୁପରି ତଡ଼ିବାରେ ଲାଗିଲେ । ଆଜି ବି ଗୋରା, ନିଗ୍ରୋମାନଙ୍କୁ ପଶୁ ତୁଲ୍ୟ ଜ୍ଞାନ କରେ । ମାତ୍ର ଏତିକି ଗୌରବର କଥା ଯେ ଅଣଆଦିବାସୀ- ଆଦିବାସୀକୁ ସାଦରେ ସ୍ୱାଗତ କରି 'ମିତ୍ର କରେ' । ଏହାହିଁ ନିମ୍ନ ଦରବାରକୁ ଓଡ଼ିଆ ଜାତିର ମୈତ୍ରୀ ସଂହତି । ସହାବସ୍ଥାନର ମହାନ୍ ଦାନ । ତେବେ ଏହି ଯେଉଁ ମହାନ୍ ଦାନ - ତାର ସୃଷ୍ଟିର ମୂଳ ଉତ୍ସ ହେଉଛି ପଶ୍ଚିମ ଓଡ଼ିଶା । କାରଣ ଜଗନ୍ନାଥ ସଂସ୍କୃତିର ଶୈବ-ଶାକ୍ତର ଏ ହେଉଛି ପ୍ରାଚୀନ ପୀଠ । ଆଦିବାସୀର ପ୍ରାଗ ଐତିହାସିକ ଯୁଗର ସଂକେତ ବହନ କରି ଚାଲିଛି, ସମ୍ବଲପୁରର ବିକ୍ରମଖୋଲ, ଉଷାକୋଠି, କଳାହାଣ୍ଡିର ଗୁପ୍ତହାଣ୍ଡି । ଏହାକୁ ତ କେହି ଅସ୍ୱୀକାର କରିବେଟି । ଯେତେବେଳେ ଆଧୁନିକ ମାନବ ସଭ୍ୟତାର ଉଲ୍ଲେଖ ହୋଇ ନଥିଲା । ସେତିକିବେଳେ ଏହି ପ୍ରାଚୀନ ସଭ୍ୟତା ଆଜି ମାନବର ଭାଷାର ଆମକୁ ନବଦିଗନ୍ତ ଉଦ୍‌ଘାଟନ ପାଇଁ ପାଥେୟ ଯୋଗାଇ ଦିଏ । ପୁଣି କଳାହାଣ୍ଡିର ଅସୁରଗଡ ସଭ୍ୟତା । ନୃସିଂହନାଥର ପୌରାଣିକ ତଥ୍ୟ ସମ୍ବଳିତ ସ୍ମୃତିପୁଞ୍ଜ, ରାଣୀପୁର ଝରିଆଳ (ଖଡ଼ିଆଳ)ର ତାନ୍ତ୍ରିକ ସାଧନା ପୀଠ । ହରିଶଙ୍କରର ଶୈବ-ବୈଷ୍ଣବ ଧର୍ମ ଧାରଣା ଆଦି ଅନେକ ସ୍ମୃତି ପଥାରୂଢ଼ ହୋଇ ତତ୍କାଳୀନ ଗର୍ବ-ଗୌରବ ବକ୍ଷକୁ ସ୍ଫୀତ କରେ ।

ଏହାର ମୂଳରେ ରହିଛନ୍ତି ତତ୍କାଳୀନ ସରଳ ବିଶ୍ୱାସୀ ଧର୍ମପ୍ରାଣ ତଥା ସଂସ୍କୃତିପ୍ରେମୀ ଆଦିବାସୀମାନେ ଆଦି ମାନବର ଦାୟାଦ ଭାବେ ଆଦି ସଂସ୍କୃତିର ବିକାଶ, ପ୍ରକାଶ ଗ୍ରହଣରେ ମତେ ଯେପରି ସେମାନେ ଉଚିତ୍ ସଚେତନ । ବା'ଷଠି ପ୍ରକାର ଆଦିବାସୀ ଭାଷାଭାଷୀ ଲୋକଥିଲେ ମଧ୍ୟ ସେମାନଙ୍କର ଧର୍ମ ଧାରଣା ଓ ପାରିବାରିକ, ସାମାଜିକ ଜୀବନ ଧାରଣ ମଧ୍ୟରେ

ଫଲ୍‌ଗୁଧାରା ପରି ସଂଜୀବିତ ରହି ସାମଞ୍ଜସ୍ୟ ବଜାୟ ରହିଥିବା ଆମେ ଲକ୍ଷ୍ୟ କରୁ । ଭାଷା କେବଳ ଭାବ ବିନିମୟ ପାଇଁ ଉଦ୍ଦିଷ୍ଟ । ଅର୍ଥ କେବଳ ଖାଦ୍ୟ ବଦଳ ପାଇଁ ଯେମିତି ଆବଶ୍ୟକ । ତେଣୁ ଭାଷା ଅଲଗା ହେଲା ବୋଲି ପର୍ବ-ପର୍ବାଣୀ ବା ଗୋଷ୍ଠୀଗତ ପ୍ରଥାର ପାର୍ଥକ୍ୟ ବିଶେଷ ଭାବେ ପରିଲକ୍ଷିତ ହୋଇନି । ଅବଶ୍ୟ ବିଭିନ୍ନ ସମାଜ ଶ୍ରେଣୀର ସମାନତାରେ ଆସି ସେମାନେ ସ୍ଥାନୀୟ ଲୋକ ବା ଶାସନର ଆଦର୍ଶକୁ ମାନି ଚଳିଲେ । ଆଦିବାସୀମାନେ ଯେପରି ବିପ୍ଳବୀ, ସେପରି ନିଶ୍ଚିନ୍ତ, ନିର୍ବିକାର ପୁରୁଷ ମଧ୍ୟ । କୌଣସି କଥା ମନକୁ ନ ପାଇଲେ ଶତସିଂହର ଗର୍ଜନ । ଗର୍ଜନ କରି ବିରୋଧ କରିବା ଆଉ ବ୍ୟାଘ୍ରପରି ଲଢ଼ିବା ଆଉ ଯଦି କୌଣସି କଥା ତାର ମନକୁ ଛୁଇଁଲା, ଭୟ ଲାଗିଲା । ସେ ବିନା ଦ୍ୱିଧାରେ ସ୍ୱାଗତ କରିବ । ତା'ଠି ଜାତି ବା ଧର୍ମର ଭେଦଭାବ ନାହିଁ । ତେଣୁ ସିନା ଜଗନ୍ନାଥ ଧର୍ମ, ବୌଦ୍ଧଧର୍ମ, ବୈଷ୍ଣବ ଧର୍ମ - ମହିମା ଧର୍ମ, ଖ୍ରୀଷ୍ଟଧର୍ମ ଆଦି ଗ୍ରହଣ କରି ନିର୍ବିବାଦରେ ପରଧର୍ମ ସଂସ୍କୃତିକୁ ନିଜର ଧର୍ମ ସଂସ୍କୃତି ବୋଲି ଗ୍ରହଣ କରି ଯାହା ଭଲ ଘର ସହିତ କୁଳକୁ ମିଶାଇ ଦେଇଛି । ଅବଶ୍ୟ ବେଳେବେଳେ ସରଳତାର ଶିକାର ହୋଇ ଚାଲାକର ଚକତଳେ ପେଷି ହୁଏ । ତାର ଧର୍ମ-ପର୍ବକୁ ଯେପରି ଅନ୍ୟମାନେ ଗ୍ରହଣ କରି ନେଲେ ସେ ବି ଆର୍ଯ୍ୟମାନଙ୍କ ଧର୍ମ ପର୍ବକୁ ମାନି ନେଇଛି । ସେ ପଡିଆ ବା ଝାଡୁଆ ମନୋଭାବାପନ୍ନ ନୁହେଁ ।

ସେ ଯାହାହେଉ ଆଜିର ପଶ୍ଚିମ ଓଡ଼ିଶାରେ ଯେଉଁ ପର୍ବପର୍ବାଣୀ ହେଉଛି, ତାହା ମୁଖ୍ୟଭାବେ ଆଦିବାସୀଙ୍କର ପର୍ବ ଯାତ୍ରା ବିହାର । ସମସ୍ତ ପର୍ବପର୍ବାଣୀ ପୁଣି କୃଷି ଭିତ୍ତିକ ଓ ଶ୍ରମଭିତ୍ତିକ ମଧ୍ୟ ।

ପୁରାଣ କହେ, ଇତିହାସ ବି ପ୍ରତିପାଦନ କରି ସାରିଛି ଯେ ମଧ୍ୟପ୍ରଦେଶ ସ୍ଥିତ ପୋ୯ ନଦୀ ଉପକଣ୍ଠରେ 'ଶବରୀ-ନାରାୟଣ' ଐତିହ୍ୟ ପୀଠ ଆଦି ବି ଧର୍ମପ୍ରାଣ ମନରେ ଚେତନା ସୃଷ୍ଟିକରେ । ଏବଂ ସାରଳା ମହାଭାରତରେ ଶବରୀ ନାରାୟଣର ମହିମା ଓ ମହତ୍ୱ ଉତ୍‌ବୀର୍ଣ୍ଣ । ତେଣୁ ପଶ୍ଚିମ ଓଡ଼ିଶାର ଘରେ ଘରେ ପୁରେ ପୁରେ 'ଜଗନ୍ନାଥ' ମହିମାର ପ୍ରତିଷ୍ଠା । ସେହି ଠାକୁର ଦେବତା ସମଗ୍ର ଓଡ଼ିଶାର ଜାତୀୟ ଦେବତା । ଯିଏ ଦିନେ ଜନ୍ମ୍‌ଲେ ବା ଦାରୁ ଦେବତା ରୂପେ ପୂଜିତ ହେଉଥିଲେ । ସେ ହେଉଛି ଆଦିବାସୀର ଆରାଧ୍ୟ ଦେବତା । ଜଗତର ନାଥ ସେ । ଜନତାଜନାର୍ଦ୍ଦନର ଦୁଃଖ ସୁଖର ସାଥୀ । ବିଶ୍ୱାବସୁ ଶବରର କନ୍ୟା ଲଳିତାର ସହଚର୍ଯ୍ୟରେ ବିଦ୍ୟାପତି ଜଗନ୍ନାଥଙ୍କୁ ଠାବ କରିବା ପରେ କାଳକ୍ରମେ ନୀଳାଚଳର ପବିତ୍ର ପୀଠରେ ସେ ପ୍ରତିଷ୍ଠିତ ହେଲେ । ନୀଳ ସାଗର ବଙ୍ଗୋପସାଗର ଉପକଣ୍ଠରେ ସେ ବିରାଜମାନ ରହି ଯୁଗେ ଯୁଗେ ଶବର ଓ ବ୍ରାହ୍ମଣ ସଂସ୍କୃତିର ସଂହତି ଭାତୃତ୍ୱର ମହିମା କଲୋଳିତ ହେଉଛି । ମନେ ହୁଏ ଦୁଇଟି ଜାତିର ସେତୁ ହିଁ ଦେଶକୁ ଉଦ୍ଧାର କରିବ । ବ୍ରାହ୍ମଣ କୁମାର ବିଦ୍ୟାପତି ଓ ସୁଶ୍ରୀ ଲଳିତା ଯାବତ୍‌ଚନ୍ଦ୍ରାର୍କେ ବରେଣ୍ୟ ।

ଧର୍ମର ଉଦ୍ଧାର ପାଇଁ ଜାତିର ଉତ୍‌ଥାନ ପାଇଁ ସଂସ୍କୃତିର ପ୍ରଚାର ପାଇଁ ପ୍ରକୃତିର ପୁରୁଷ ଅର୍ଥାତ୍ ନାରୀ-ପୁରୁଷର ଅପୂର୍ବ ମିଳନ ହିଁ ବିଶ୍ୱ ସୃଷ୍ଟିରେ ଚିରନ୍ତନତା ଆଣେ । ସେଇଠି ଜାତି ବା ଭାଷା ପ୍ରତିବନ୍ଧକ ନୁହେଁ । ଭୀମଭୋଇ ସେପରି ଧର୍ମ ସଂସ୍କୃତି ଓ ମଣିଷ ଜାତିର ଦୁଃଖ-ଦୈନ୍ୟ ତଥା ନବ ଜାଗରଣ ପାଇଁ ବ୍ରାହ୍ମଣୀ କନ୍ୟାର ପାଣି ଗ୍ରହଣ କରି ଜାତୀୟ ସଂସ୍କୃତିର ମହତ୍ତ୍ୱକୁ ଆହୁରି ପ୍ରତିଷ୍ଠା ଦେଇଗଲେ । ବାସ୍ତବିକତା ବ୍ରାହ୍ମଣ ହେଉ ବା ଆଦିବାସୀ ହେଉ ସେହି ଶବ୍ଦ ସମ୍ଭାର ଗୁଡିକ ଉପାଧି ମାତ୍ର । ମାନବ ଜାତିର ପ୍ରଗତିରେ ପରପନ୍ଥୀ ନୁହେଁ । ଆଜିର ଏହି ଜଗନ୍ନାଥ ସଂସ୍କୃତି ଯାହା ଆଜି ମାନବ ସଂପନ୍ନ ଆଦିବାସୀର ସମଗ୍ର ବିଶ୍ୱକୁ ମୈତ୍ରୀ ଓ ପ୍ରୀତିର ବାନା ଉଡାଇ ଓଡ଼ିଶାକୁ ଗୌରବମୟ କରିଛି । ତେଣୁ ପଶ୍ଚିମ ଓଡ଼ିଶାର ଆଦିବାସୀ କେବଳ ନୁହେଁ ଅଣ ଆଦିବାସୀ ମଧ୍ୟ ରଥଯାତ୍ରା ବେଳେ, ପ୍ରତିଦିନ ସକାଳେ ଜଗନ୍ନାଥଙ୍କର ଧ୍ୟାନ-ପୂଜନ କରି ନିଜର ଜନ୍ମ ଜୀବନକୁ ସାର୍ଥକ କରି 'ଜଗନ୍ନାଥ ଜଣାଣ' ମାଧ୍ୟମରେ ଆତ୍ମ ନିବେଦନ କରୁଛି । ସୁତରାଂ ଜଗନ୍ନାଥ ସଂସ୍କୃତି ଦାନରେ ଆଦିବାସୀର ଗୌରବ ଅତୁଳନୀୟ ।

ସେପରି ନବାନ୍ନ ବା ନୂଆଖାଇ ପର୍ବ । ଆଦିବାସୀହିଁ ଆଦ୍ୟ ଚାଷୀ । ସେ ଦେଶର ଜନପଦରେ ରହି ପ୍ରଥମେ ଚାଷ କରି ଶିଖିଛି । ଫଳ ସଂଗ୍ରହ କରି ପୁଲକିତ ହୋଇଛି । ବର୍ଷ,ମାସ, ଖରା, ବର୍ଷା ସହି ନୂତନ ଫସଲ ଦେଖିଲେ ନୁଆଁ ସଙ୍ଗନ ଦେଖିଲା ପରି ମନେକରେ । ଆନନ୍ଦରେ ତାର ଛାତି କୁଣ୍ଢେମୋଟ ହୁଏ । ସେ ଭାଦ୍ରବମାସ ଦିନଟି ଯେତେବେଳେ ଶ୍ୟାମଳ ଶସ୍ୟ କେଦାରରେ ସୁନେଲି ରୂପନେଇ ଆଖି ଝଲସାଇ ଦିଏ, ସେତେବେଳେ ମାଟି ମାତା ଗ୍ରାମ୍ୟ ଦେବତା, ଗୃହ ଦେବତା, ଆକାଶ ଦେବତା ସୂର୍ଯ୍ୟଙ୍କୁ ଦେଖାଇ ପ୍ରତ୍ୟକ୍ଷ ଜଣାଇ କୃତଜ୍ଞ ରଖେ । ଲକ୍ଷ୍ମୀଙ୍କୁ ସ୍ୱାଗତ ଜଣାଇ ନୂଆଶସ୍ୟ କେଣ୍ଡା ଘରକୁଆଣି ନୂଆ ଭାବେ ଘର ସଜାଇ, ପୁରୁଣା ପୋଷାକ ବଦଳାଇ, ଘରଦ୍ୱାର ସଫା କରି ନୂଆ ଧାନର କ୍ଷୀରିକରେ । ଦେବାଦେବୀଙ୍କୁ ଅର୍ପଣ କରି ବନ୍ଧୁ ଆତ୍ମୀୟଙ୍କୁ ପ୍ରସାଦ ବାଣ୍ଟେ । ସେ ଦିନର ପୁଲକ, ଆନନ୍ଦ ବର୍ଣ୍ଣନାତୀତ । ଅନୁଭବୀ ହିଁ କେବଳ ଅନୁଭବ କରିବ । ସାଧାରଣ ବିଧବା ନାରୀ ମଧ୍ୟ ବୈଧବ୍ୟର ଯନ୍ତ୍ରଣା ଭୁଲି ନୁଆଖାଏ । ଗୀତ ଗାଏ ଆଉ ପଲ୍ଲୀବାଳା ପଲ୍ଲୀ ଯୁବକର ନୃତ୍ୟଗୀତରେ ସାମିଲ ହୁଏ । ସହଯୋଗ କରେ । ଉପଭୋଗ ବି କରେ । ଯେ ଅନେକ ଦିନର ମନୋମାଳିନ୍ୟ, କଳିତକରାଳ ବିସ୍ମରି ଯାଇ ଶତ୍ରୁକୁ ମିତ୍ର କରେ । ପ୍ରକୃତରେ ଯାନି ଯାତ୍ରା, ପର୍ବ ପର୍ବାଣୀ ମୈତ୍ରୀ ଚେତନାର ଏକ ଅପୂର୍ବ ଉତ୍ସ । କିଏ କେତେ ଦିନ ବଞ୍ଚିବ । ଅନ୍ତତଃ ଏପରି ଖୁସି ଅବସରରେ ସମସ୍ତଙ୍କୁ ଆଲିଙ୍ଗନ କରିବା ମାନବିକ କର୍ତ୍ତବ୍ୟ ବୋଲି ମଣିଷ ବିଚାର କରେ । ତେବେ ସେ ଯାହା ହେଉ, ନବାନ୍ନ ଆଦିବାସୀ ପ୍ରାଣେରେ କେବଳ ନବ ଜାଗରଣ, ନବ

ଉନ୍ମାଦନା, ନବ ଉତ୍ସାହ ଜାଗ୍ରତ କରେ ତାହା ନୁହେଁ ପଶ୍ଚିମାଞ୍ଚଳର ଜନ ସାଧାରଣ ଜାତି ଧର୍ମ ନିର୍ବିଶେଷରେ ଦେବାଦେବୀ ଅଷ୍ଟଦେବୀ ଅର୍ଥାତ୍ ସୋମଲେଶ୍ୱରୀ, ପାଟଣେଶ୍ୱରୀ, ମାଣିକେଶ୍ୱରୀଙ୍କୁ ପ୍ରଥମେ ଭୋଗରାଗ ଦେଇ ପରେ ନିଜର ଗୃହକୁ ହର୍ଷ ମୁଖରିତ କରିଥାନ୍ତି । ତାଙ୍କର ସେଦିନ ଆନନ୍ଦ ସୀମାତୀତ । ସେ ପ୍ରତିଘରେ ନୂଆଧାନ କେଣ୍ଡା ଦେଇ କିଛି ଉପହାର ପାଏ । ଦେବୀଙ୍କୁ ପ୍ରଥମେ ପୂଜାକରି ସାର୍ବଜନୀନ ପର୍ବ ସମସ୍ତଙ୍କର ହୁଏ ଜାତୀୟ ପର୍ବ । ଏହି ଜାତୀୟ ପର୍ବ ସମଗ୍ର ଓଡ଼ିଆ ଜାତିକୁ ବାନ୍ଧିରଖିଛି ଭ୍ରାତୃତ୍ୱର ଅପୂର୍ବ ବନ୍ଧନରେ । ଦୀନ-ଧନୀ ସେଦିନ ସମସ୍ତେ ସମାନ । ପରସ୍ପରକୁ ଭେଟି ଦେଇ ଭେଟନ୍ତି । ନୂଆଜୀବନ ଯେପରି ଫେରି ଆସିଛି । କାରଣ କାଳର କରାଳବେ ଦିନେ ମଣିଷ କବଳିତ ହେବ । ସେଇଥିପାଇଁ ସମସ୍ତଙ୍କୁଦେଖି ସୁଖଦେଇ ଖୁସୀ ମନାସେ । ସେବାହିଁ ମନ ପ୍ରାଣର ଉଦାରତା, ସହାନୁଭୁତି ଆଉ ପ୍ରୀତି ମମତା ।

ତା'ପରେ ଧରା ଧାମରେ ଅବତୀର୍ଣ୍ଣ ହୁଏ ଶାରଦୀୟ ମହୋତ୍ସବ । କାଇଁଶର ତୋଫା ହସ ସହିତ ଜହ୍ନର ରଜତ ଜ୍ୟୋତ୍ସ୍ନା ଝରଣାର କୁଳୁ କୁଳୁ ତାନ ପ୍ରକୃତିର ଶାନ୍ତ ସବୁଜ ତଥା ସୁନେଲି ପରିବେଶ ଆଦିବାସୀଙ୍କର ଜୀବନ-ଯାତ୍ରାକୁ ଫୁଲକିତ କରେ । ଆଉ ସର୍ବ ମୁଖରିତ କରେ ଧାଙ୍ଗଡା ଓ ଧାଙ୍ଗଡ଼ୀ ସମୂହକୁ । ସେମାନଙ୍କ ମନରେ ଆଶାର ଆଲୋକ ଝଲସି ଉଠେ । ସମସ୍ତେ ଦଶହରା ପୂଜା ପାର୍ବଣରେ ମଜ୍‌ଗୁଲ୍ ହୋଇ ଉଠନ୍ତି । ମଙ୍ଗଳା ଦେବୀଙ୍କ ପୂଜା ଘରେ ଘରେ ହୁଏ । 'ମା' କରେ ପୁଅ ଜୀଁତିଆ ବା ପୁତ୍ରବ୍ରତ, ଭଉଣୀ କରେ ଭାଇ ଜୀଁତିଆ ବା ଭାଇବ୍ରତ । ନାରୀମାନେ ପୁତ୍ର, ଭାଇର ଶୁଭ ମନାସି ଆନନ୍ଦ ଲାଭ କରନ୍ତି । ଏହାହିଁ ସ୍ୱର୍ଗୀୟ, ପୁତ୍ର ତଥା ଭ୍ରାତୃତ୍ୱ ପ୍ରେମ । 'ଡାଲଖାଇ' ପଶ୍ଚିମ ଓଡ଼ିଶାର ଅନ୍ୟତମ ନୃତ୍ୟ । ଏହି ନୃତ୍ୟ ବା ନାଚ ଆଦିବାସୀ ମାନଙ୍କର ଅତିପ୍ରୀୟ । ଝିଅ ବୋହୁମାନେ ଏହି ନୃତ୍ୟରେ ମଜଗୁଲ ରହନ୍ତି । ଭାଇ ଜୁଁତିଆ ବିଶେଷତଃ ଦୁର୍ଗାପୂଜା ବେଳେ ବ୍ରତୋପାସନା କରି ନାଚନ୍ତି । ଦେବୀର ସମ୍ମୁଖରେ ଭାଇର ଦୀର୍ଘାୟୁ କାମନା କରନ୍ତି । ବାସ୍ତବିକ ଏହା ଏକ ନିର୍ଜଳ ଉପବାସ । ଯେପରି ଦଶହରା ତଥା ଏକାଦଶୀ ଦିନ କର୍ମା ନାଚ ହୁଏ । କର୍ମଶାନି ନାମକ ଗଛର ଡାଳ ନେଇ ରାତି ସାରା ନାଚ ଗୀତ ଗାଇ ପୂଜା କରନ୍ତି । ମାଦଳର ତାଳେ ତାଳେ ତାଳଦେଇ ଭକ୍ତି ପ୍ରୀତିର ପୂର୍ଣ୍ଣ ସଙ୍ଗୀତ ଆଦିବାସୀର ପୁର ପ୍ରାନ୍ତର ପୁଲକିତ କରନ୍ତି । ହୋମଧ୍ୟ ଜଗନ୍ନାଥ ଦାରୁ ଦେବାର ପରି ଦାରୁ ପୂଜାର ପ୍ରତୀକ । ମଣିଷର ବିଶ୍ୱାସରେ 'ପଥର' ବି ଦେବତା ହୁଏ । ହାରି ଗୁହାରୀ ଶୁଣେ ଏବଂ ସେମାନଙ୍କର ବାଞ୍ଛା ପୂର୍ଣ୍ଣ ହୁଏ । ସେ ସେହି 'କରମ୍‌ଶାନୀ' ପୂଜା ଅଣ ଆଦିବାସୀଙ୍କ ମଧରେ ବିଶେଷତଃ ସମ୍ବଲପୁର ଅଞ୍ଚଳର କର୍ମାନାଚର ବହୁଳ ପ୍ରସାର ବୈଶିଷ୍ଟ୍ୟ ବେଶି ଦୃଷ୍ଟି ଆକର୍ଷଣ କରେ । ତେଣୁ ପଶ୍ଚିମ ଓଡ଼ିଶାର ଆଦିବସୀ କୃଷି

ଦ୍ୱାରା ଓଡ଼ିଶାର ସଂସ୍କୃତି ପାରାକୁ ସ୍ଥାନ ଦେଲା । ଏହା ଗରବି ଧାରାରେ ପାଳିତ, ଏହି ଅଞ୍ଚଳର ଶବର ତଥା ଆଦିବାସୀ ମାନେ ଏହି ବିଦ୍ୟାରେ ଧୁରନ୍ଧର । ପ୍ରମାଣ ସ୍ୱରୂପ ଏକଦା ବଲାଙ୍ଗିର ଜିଲ୍ଲାକୁ କାଉଁରୀ ପାଟଣା କୁହାଯାଉଥିଲା । ଲକ୍ଷ୍ମୀକରା ଆଦି ଗଣିତ ବିଦ୍ୟାର ପ୍ରତିଷ୍ଠାନ । ଏବେ ବି ପଶ୍ଚିମ ଓଡ଼ିଶାର ଆଦିବାସୀ ମାନଙ୍କର ତନ୍ତ୍ର ବିଦ୍ୟା ସାଧନ ରହିଛି । କାଳକ୍ରମେ ଏହି ବିଦ୍ୟାର ଯାଦୁକରୀ ଆକର୍ଷଣରେ କେବଳ ଓଡ଼ିଶା ନୁହେଁ ସୁଦର ଆସାମ ବି ଆକର୍ଷିତ ହୋଇଛି । ମଙ୍ଗଳା ମଧ ଶବର ଓ ସମୃଦ୍ଧି । ଆଦିବାସୀମାନେ ପୃଥିବୀକୁ ମା' ପରି ଆକଶକୁ ପିତା ପରି ଗ୍ରହଣ କରନ୍ତି । ଫଳରେ ତାଙ୍କ ମତରେ କର୍ମା ରୂପୀ ସ୍ୱାମୀ ସହିତ ପୃଥ୍ୱୀରୂପୀ ପ୍ରକୃତି ସହିତ ମିଳନରେ ହିଁ ସୃଷ୍ଟି ସମ୍ଭବ ଏବଂ ସୂର୍ଯ୍ୟ ହେଉଛି ଧର୍ମ ଦେବତା । ସତ୍ୟ ନ୍ୟାୟର ପ୍ରତୀକ । ଏମାନେ ପଶ୍ଚିମ ସଂସ୍କୃତିର ପୃଷ୍ଠପୋଷକ । ସେଥିପାଇଁ ଫସଲ ଉତ୍ପାଦନ ପାଇଁ କନ୍ଧ ଆଦି ପ୍ରଥା ଗ୍ରହଣ କରନ୍ତି । ଏମାନେ ହିଁ ଶସ୍ୟ କେଣ୍ଡାର, ହଳଦୀ କିଆରୀରେ ନରବଳୀ ନିଷ୍ଠୁର ପ୍ରଥା ଅବଲମ୍ବନ କରିଥିଲେ । ଅବଶ୍ୟ ସେ ସ୍ଥାନରେ ପଶୁପଳି ଅର୍ଥାତ୍ ମହିଷ, ଛେଳି, କୁକୁଡା, ଆଦିବାସୀଙ୍କ ଦ୍ୱାରା ପୂଜିତ ହୁଏ । ଘରେ ବା ଗ୍ରାମ ପ୍ରାନ୍ତରରେ ମଙ୍ଗଳା କୋଠି ଥାଏ । ସେଇଠି ଦେବୀଙ୍କର ପୂଜାହୁଏ । ମଙ୍ଗଳା ହିଁ ତାନ୍ତ୍ରିକ ଦେବୀଙ୍କର ପ୍ରତିମା । ପୁଣି ଜଗନ୍ନାଥ ମଧ ଭୈରବ ଭାବେ ପୂଜିତ । ତେଣୁ ଜଗନ୍ନାଥ ମନ୍ଦିରରେ ବିମଳାଙ୍କର ଠାରେ ମାଛ ମାଂସ ମଦର ଅର୍ଘ୍ୟଥାଳୀ ଅର୍ପଣର ପରମ୍ପରା ରହିଛି । ତା'ଙ୍କଠାରେ ପ୍ରସାଦ ଲାଗିଲେ ଭଗବାନଙ୍କ ଠାରେ ମହାପ୍ରସାଦ ବା ନିର୍ମାଲ୍ୟରେ ପରିଣତ ହୁଏ । ଜଗନ୍ନାଥଙ୍କଠାରେ ଅନ୍ନ ନାଁରେ ମାଂସ, ପଇତ ନାଁରେ ମଦ ଓ ମୈଥୁନ ହିଁ ଅଶ୍ଳୀଳ ମୂର୍ତ୍ତି । ସେ ଯାହା ହେଉ, ଏପରି ପରମ୍ପରା, ଧର୍ମ ବିଶ୍ୱାସ, ସଂସ୍କୃତି ସମସ୍ତ ଧର୍ମଭୀରୁ ମାନବ ସମାଜକୁ ଆକୃଷ୍ଟ କରିଛି । ସାତ୍ତ୍ୱିକ ପୂଜା ସହିତ ତମୋଗୁଣ ସମ୍ପନ୍ନ ପୂଜାର ପରମ୍ପରା ଯେପରି ବିସ୍ମୟ ଜନକ ସେପରି ପ୍ରଣିଧାନ ଯୋଗ୍ୟ । ସବୁରି ମୂଳରେ ଆଦିବାସୀର ରୀତି, ଆଦର୍ଶ ବିହିତ ।

ଭୁବନେଶ୍ୱର ଠାରେ ଲିଙ୍ଗରାଜ ମନ୍ଦିରରେ 'ହରିହର'ଙ୍କ ପୂଜା ଆଗରୁ ବୋଧହୁଏ ପଶ୍ଚିମ ଓଡ଼ିଶାରେ ହରିଶଙ୍କରଠାରେ ଶୈବ-ବୈଷ୍ଣବ ଧର୍ମ ଘୋଷନା ପ୍ରଚଳିତ । କଳା ଧଳାର ମିଳନ ହିଁ ସକାଳ ସନ୍ଧ୍ୟାର ମିଳନ ପରି । ରୂପ ନୁହେଁ, ଗୁଣ ହିଁ ମଣିଷର ମହିମା ବଢ଼ାଏ ।

ମଣିଷ ଧର୍ମ ବିଶ୍ୱାସୀ । ସେ କାଳୀ, ସମଲେଶ୍ୱରୀ, ମାଣିକେଶ୍ୱରୀ, ବାଟ ମଙ୍ଗଳା, ଆଦି ନାନା ନାମ ଦେଇ ପୂଜା କରେ । କଳାହାଣ୍ଡି ଠାରେ ମାଣିକେଶ୍ୱରୀଙ୍କ ପ୍ରତିଷ୍ଠା ଓ ପ୍ରଭାବ ସାର୍ବଜନୀନ । ଦଶହରା ଦିନ ମଣିଷ ବଳି ଦିଆଯାଏ । ସାଧାରଣ ଲୋକ ପଶୁ, କୁକୁଡ଼ା ବଳି ଦେଇ ଜୀନବର ଶୁଭ ମନାସୀ ଥାନ୍ତି । ସେହି ଯାତ୍ରା ଛତର ଯାତ୍ରା ଭାବରେ ସୁପରିଚିତ । ଖୁବ୍ ଉତ୍ସାହ, ଆନନ୍ଦ ବିଶ୍ୱାସର ସହିତ ନାନା ବାଦ୍ୟ ବିଶେଷତଃ ଘୁମୁରା ନୃତ୍ୟର ଗୁମୁ ଗୁମୁ ବୀରବାଦ୍ୟ ମଧ୍ୟରେ

ସହର-ପୁର-ପ୍ରକୃତି ପ୍ରତିଧ୍ୱନିତ ହୋଇ ଉଠେ । ଏପରି ପଶ୍ଚିମ ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ଦେବୀ ଉପାସନା ହୋଇଥାଏ । ଧରିତ୍ରୀ ରକ୍ତ ରଞ୍ଜିତ ହୋଇ ଉଠେ । ବିପୁଳ ଜନମାନସରରେ ଭବିଷ୍ୟତର ସୁନେଲି ଆଶା ନେଇ ରଙ୍ଗୀନ ସନ୍ଧ୍ୟା ପରି ଆଶାୟୀ ହୋଇ ଉଠେ ନୂତନ ଭାଷାର ଆଗମନୀ ପାଇଁ ଆକାଂକ୍ଷିତ ଥାଏ ।

ବାସ୍ତବିକ ଆଦିବାସୀର ଉଦାର ନୀତି-ସାତ୍ତ୍ୱିକ ଚେତନା ସହିତ ନିଷ୍ଠୁର ବଳିପ୍ରଥା ଆଦିରେ ମଣିଷ ବିସ୍ମୟାଭିଭୂତ ହୋଇ ବୈଜ୍ଞାନିକ ଦୃଷ୍ଟିକୋଣରେ ଅନାଇଁ ରହେ । ଯିଏ 'ବସୁଧୈବ କୁଟୁମ୍ବକମ୍'ର ବିଶ୍ୱାସୀ । ଯିଏ 'ଜୀବେ ଦୟା ନାମେ ଭକ୍ତି'କୁ ବିଶ୍ୱାସ କରେ, ଯେଉଁଠି ସମସ୍ତ ଧର୍ମ ପ୍ରଚାରକ, ମହାପୁରୁଷଙ୍କ ବାଣୀର ଆଦର୍ଶ ଶୁଣନ୍ତି, ସେଠାରେ ପୁଣି ଯେତେ ଆଦର୍ଶ ଯିଏସରଳ, ସିଏ କୁଟିଳ ପୁଣି । ସମ କଣ୍ଠରେ ଗାଇ ଉଠେ -

"ପ୍ରଣିପତ୍ୟ ଜଗନ୍ନାଥଂ<br>ସର୍ବଜୀନ ବରାର୍ଚ୍ଚିତଂ<br>ସର୍ବ ବୁଦ୍ଧମୟଂ ସିଦ୍ଧି<br>ବ୍ୟପିନ୍ୟ ଗଗନୋପମମ ।"

ବାସ୍ତବିକ ଆଦିବାସୀ ସତ୍ୟ-ଶିବ-ସୁନ୍ଦର ଉପାସକ ଏବଂ ତନ୍ତ୍ର ମନ୍ତ୍ର ମଣ୍ତ୍ରାଗାର ବି ପୃଷ୍ଠପୋଷକ । କୃଷି, କୃଷ୍ଟ, ଜୀବନ ସୃଷ୍ଟିକୁ ମଧୁମର କରିବା ପାଇଁ ଅନେକ ପର୍ବ-ପର୍ବାଣୀ ସୃଷ୍ଟି କରିଛି । ପୁଷ୍ପୁନି ପର୍ବ ବା ତିହାର୍ ଏହା ପଶ୍ଚିମ ଓଡ଼ିଶାର ସାର୍ବଜନୀନ ପର୍ବ । ପୂଜା ଯହିଁ ରହିଛି ଖୁସିରେ ଖାଇ ମଉଜ୍ କରିବା । କାହାର ପୂଜା ନାହିଁ, ପିଠା-ମାଂସ ଖିରି ଖାଇ ଆନନ୍ଦିତ ହୁଏ । ସେପରି ଆଦିବାସୀଙ୍କର ବସନ୍ତ ଉତ୍ସବ, ଚଇତି ପର୍ବ, ଶୀତଳଷଷ୍ଠୀ ଆଦି ବାରମାସକୁ ତେରଟି ପର୍ବ ପାଳନ କରି ଜୀବନ ପର୍ବକୁ ମହିୟାନ କରି ତୋଳେ । ଜୀବନକୁ କରେ ମଧୁମୟ । ତେଣୁ ପଶ୍ଚିମ ଓଡ଼ିଶା ସବୁ ଦିଗରୁ ଗୌରବମୟ । ଭାଷା ସଂସ୍କୃତି ଧର୍ମର ଆଦି ଉତ୍ସ ।



# ସମ୍ବଲପୁରର ପର୍ବପର୍ବାଣୀ ପରିପ୍ରେକ୍ଷୀରେ ନୂଆଖାଇ

**ବାଳକୃଷ୍ଣ ମିଶ୍ର**

ପୁଣ୍ୟଭୂମି ଓଡ଼ିଶା ଏକ ପର୍ବ ବହୁଳ ରାଜ୍ୟ । ନାନା ପର୍ବ ପର୍ବାଣୀ, ଯାନି ଯାତ୍ରା ଭିତରେ ଏ ଦେଶବାସୀ ବାରମାସରେ ତେର ପର୍ବ ପାଳନ କରି ଜୀବନରେ ବଞ୍ଚିବାର ଉନ୍ମାଦନା ପାଇଥାନ୍ତି ।

ପଶ୍ଚିମ ଓଡ଼ିଶା, ଓଡ଼ିଶା ରାଜ୍ୟର ଏକ ପ୍ରଧାନ ଅଂଶ । ସାଧାରଣତଃ ସମ୍ବଲପୁର, ସୁନ୍ଦରଗଡ, ବଲାଙ୍ଗିର ଇତ୍ୟାଦି ଅଞ୍ଚଳ ଗୁଡ଼ିକୁ ନେଇ ପଶ୍ଚିମ ଓଡ଼ିଶା ଗଠିତ । ଏହି ବିରାଟ ଅଞ୍ଚଳରେ ନାନା ପର୍ବ ପର୍ବାଣୀ, ଯାନିଯାତ୍ରା ଓ ବ୍ରତୋତ୍ସବ ଏ ଅଞ୍ଚଳର ସାମାଜିକ ଜୀବନକୁ ଏକ ଅଭିନବ ରଙ୍ଗରେ ରଞ୍ଜିତ କରିଅଛି । ଏହାର ପର୍ବ ପର୍ବାଣି ସାମାଜିକ ରୀତିନୀତି ଓ ଭାଷାର ଏକ ବିଶେଷ ସ୍ୱାତନ୍ତ୍ର୍ୟ ରହିଅଛି ଯାହା ଅଧୁନାତନ ଶିକ୍ଷାବିତ୍, ଗବେଷକ, କବି, ସାହିତ୍ୟିକ, ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିପାରିଛି । ଧର୍ମନୀତି ଓ ରାଜନୀତି ଦୃଷ୍ଟିକୋଣରୁ ବିଚାରକଲେ ସମସ୍ତ ଉତ୍କଳଭୂମି ଏକ ଓ ଅଖଣ୍ଡ ହେଲେ ରୀତିନୀତି, ଚାଲିଚଳଣ, କଥା ଭାଷା, ପ୍ରତ୍ୟେକ କ୍ଷେତ୍ରରେ ପଶ୍ଚିମ ଓଡ଼ିଶାର ସ୍ୱାତନ୍ତ ଆମେମାନେ ଲକ୍ଷ କରିଥାଉଁ । ଉତ୍କଳର ଘରେ ଘରେ ବାର ମାସରେ ତେର ପର୍ବ ପାଳନ ବିଧି ଯେପରି ରହି ଆସିଛି ଏ ଅଞ୍ଚଳରେ ମଧ୍ୟ ଅନେକ ପର୍ବ ପର୍ବାଣି ପାଳିତ ହୋଇ ଆସୁଛି । କିନ୍ତୁ ଭୌଗୋଳିକ ତଥା ସାମାଜିକ ପରିବେଶକୁ ଦୃଷ୍ଟି ଆଗରେ ରଖି ବିଚାର କଲେ ଉପଲବ୍ଧ କରାଯାଏ ଯେ, ପଶ୍ଚିମ ଓଡ଼ିଶାରେ ଏପରି ଅନେକ ପର୍ବ ପାଳିତ ହୁଏ, ଏପରି ଅନେକ ଯାନିଯାତ୍ରା ଏ ଭୂମିକୁ ଉତ୍ସବ ମୁଖରିତ କରିଥାଏ ଯାହା ଓଡ଼ିଶାର ଅନ୍ୟତ୍ର ପରିଦୃଷ୍ଟ ହୁଏନାହିଁ । ସେହି ସବୁ ପର୍ବ ପର୍ବାଣି ଯାନିଯାତ୍ରା ମଧ୍ୟରେ 'ନୂଆଁଖାଇ', 'ଗୁଣିଖାଇ', 'ବଳିଯାତ୍ରା', 'ତୀଜ', 'ଭାଇ ଜିଁତିଆ', 'ତାଲଖାଇ', 'ଧନୁଯାତ୍ରା', 'କର୍‌ମା', 'ଘୁମ୍‌ରା', 'ଚାଁଡି ନାଚ' ଇତ୍ୟାଦି ଉଲ୍ଲେଖ ଯୋଗ୍ୟ । ଏସବୁ ସାମାଜିକ ପର୍ବପର୍ବାଣି ଏକ ସ୍ୱତନ୍ତ ସ୍ଥାନ ହାସଲ କରିପାରିଛି । 'ନୂଆଁଖାଇ' ଏ ପ୍ରବନ୍ଧର ମୁଖ୍ୟ ଆଲୋଚ୍ୟ ବିଷୟ ହୋଇଥିବାରୁ ଅନ୍ୟାନ୍ୟ ପର୍ବପର୍ବାଣି ଓ ଯାତ୍ରା ବିଷୟ ଏଥିରେ ଆଲୋଚନା ଅବକାଶ କରିବାର ଅନୁଭବ କରାଯାଇ ନାହିଁ ।

'ନୂଆଁଖାଇ' ପଶ୍ଚିମ ଓଡ଼ିଶାର ସବିଶେଷ ସ୍ୱାତନ୍ତ୍ର ରକ୍ଷା କରି ଆସିଛି । ଏଇ ପର୍ବର ଏ ଅଞ୍ଚଳର ଜାତୀୟ ପର୍ବ ରୂପେ ଗୃହୀତ ହୋଇ ଆସିଅଛି । ଏହି ଜାତୀୟ ପର୍ବଟି ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତ ପଶ୍ଚିମ ଓଡ଼ିଶାବାସୀ ମହା ଆନନ୍ଦରେ ପାଳନ କରି ଆସୁଛନ୍ତି । 'ନୂଆଁଖାଇ' ପର୍ବ କେଉଁ ଯୁଗରୁ ଚଳି ଆସୁଛି ତାହାର ସଠିକ ଭାବେ କାଳ ନିର୍ଣ୍ଣୟ କରିବା ସମ୍ଭବ ନ ହେଲା ପରି ମନେହୁଏ । କିନ୍ତୁ, 'ନୂଆଁଖାଇ' ପର୍ବର ମୂଳ ଦର୍ଶନକୁ ଭିତ୍ତିକରି ଆଲୋଚନା କଲେ କୁହାଯାଇ ପାରେ ଯେ, ନୂତନ ଶସ୍ୟ ଆଗମନରେ ଆନନ୍ଦ ବିହ୍ୱଳିତ ହୋଇ ନୂତନ ଶସ୍ୟକୁ ଏ ଅଞ୍ଚଳର ଜାତୀୟ ଅଧିଷ୍ଠାତ୍ରୀ ଦେବୀ ତଥା ଇଷ୍ଟଦେବୀଙ୍କୁ ଅର୍ପଣ କରି ନୂଆ ଚାଉଳର ନବାନ୍ନ ଭକ୍ଷଣ କରିବାର ବିଧି ବିଧାନ ରହିଅଛି । ତେଣୁ, ଏ ଅଞ୍ଚଳରେ ମାନବ ସମାଜର ସୃଷ୍ଟି ହେଲା ଦିନଠାରୁ ଏ ପର୍ବ ପାଳିତ ହୋଇ ଆସୁଅଛି । କାରଣ 'ନୂଆଁଖାଇ' ଏକ କୃଷିଭିତ୍ତିକତ ପର୍ବ ଓ କୃଷି ସହିତ ଜଡିତ । ଏକଥା କାହାକୁ ଅବିଦିତ ନୁହେଁ ଯେ ମନୁଷ୍ୟ ବଣ ଜଙ୍ଗଳରେ, ବୃକ୍ଷ ବା ପଥର କ୍ରୋଟରରେ ଆଦିମ ମାନବ ରୂପେ କାଳାତିପାତ କରୁଥିଲା । ଜଙ୍ଗଲରେ ରହି କଞ୍ଚାଫଳ ମୂଳ ଭକ୍ଷଣ କରୁଥିଲା । ଧୀରେ ଧୀରେ ବିବର୍ତ୍ତନର ନିୟମ ଅନୁସାରେ ତାହାର ଜୀବନ ଧାରଣ ପ୍ରଣାଳୀରେ ପରିବର୍ତ୍ତନ ଆସିଥିଲା ଓ ଫଳତଃ ମଣିଷ ଗୋଷ୍ଠୀ ଜୀବନ ଓ ପରେ ପରେ ସାମାଜିକ ଜୀବନ ଧାରାରେ କାଳାତିପାତ ପସନ୍ଦ କଲା । ସୁସ୍ଥ ମାନସିକ ଶକ୍ତି ଅଭିବୃଦ୍ଧି ସଙ୍ଗେ ସଙ୍ଗେ ସେ ନୂତନ ନୂତନ ଶସ୍ୟର ଆବିଷ୍କାର କଲା । ବୋଧହୁଏ ଜଙ୍ଗଲରେ ଅନ୍ୟାନ୍ୟ ଗଛ ବୃକ୍ଷମାନଙ୍କ ପରି ଧାନଗଛ ବି ଥିଲା । ତାହାର ଶସ୍ୟ ମନୁଷ୍ୟକୁ ଅତ୍ୟନ୍ତ ତୃପ୍ତି ଦାନ କରିଥିବ । ତେଣୁ, ସେହି ବୃକ୍ଷର ରକ୍ଷଣା ବେକ୍ଷଣ କରି ସେ ଉତ୍ପାଦନ କରିଥିବ । କାଳକ୍ରମେ ବିବର୍ତ୍ତନ ଚକ୍ରର ପ୍ରଭାବରେ ପ୍ରଭାବିତ ହୋଇ ବଣ ଜଙ୍ଗଲ ସଫାକରି ମନୁଷ୍ୟ ନିଜ ବୁଦ୍ଧି ବଳରେ ଏହି ପୁଷ୍ଟିକର ଓ ତୁଷ୍ଟିକର ସୁସ୍ୱାଦୁ ଶସ୍ୟ ବହୁଳ ପରିମାଣରେ ଚାଷ କରି ଥିବ । ତାହାର ଶ୍ରମଦାନ ଫଳରେ ଯେଉଁ ଅମୂଲ୍ୟ ଶସ୍ୟ ସମ୍ପଦ ସେ ଆଦାୟ କରି ଘରକୁ ଆଣିଥିବ ତାହା ପ୍ରଥମେ ଏଇ ଦେଶର ଧର୍ମପ୍ରାଣ ମନୁଷ୍ୟ ନିଜର ଇଷ୍ଟଦେବୀଙ୍କୁ ଭକ୍ତିପୂତ ହୃଦୟରେ ଅର୍ପଣ କରି ବନ୍ଧୁ, କୁଟୁମ୍ବ ପରିଜନ ମାନଙ୍କ ସମାବେଶରେ ବେଜାତ ଅନ୍ନ ବ୍ୟଞ୍ଜନ ଗ୍ରହଣ କରିଥିବ ଏବଂ କାଳକ୍ରମେ ସେହି ଆନନ୍ଦ ଉତ୍ସବଟିକୁ 'ନୂଆଁଖାଇ' ନାମରେ ନାମିତ କରିଥିବ । ତେଣୁ, ଏହି ଦୃଷ୍ଟିରୁ ବିଚାର କଲେ ନବାନ୍ନ ପର୍ବର ସୃଷ୍ଟି ନୂତନ ପଥର ଯୁଗରୁ ଆର୍ଯ୍ୟଭୂମି ଭାରତରେ ପାଳିତ ହୋଇ ଆସୁଥିବ ଏବଂ ପଶ୍ଚିମ ଓଡ଼ିଶାର ମଧ ଏହି ପର୍ବ 'ନୂଆଁଖାଇ' ନାମରେ ସର୍ବଜନାଦୃତ ହୋଇଥିବ । ଅନ୍ୟ ଏକ ଦୃଷ୍ଟି କୋଣରୁ ବିଚାର କଲେ ପର୍ବପର୍ବାଣି ମଧରେ 'ଶସ୍ୟପୂଜା' କଥା ନୂତନ 'ଅନ୍ନପୂଜା' ଅତି ପ୍ରାଚୀନତମ । ପ୍ରାଣ ଧାରଣ ପାଇଁ ମନୁଷ୍ୟ ଶସ୍ୟ

ଉପରେ ନିର୍ଭର କରି ଆସୁଛି । ଏହି ଦୃଷ୍ଟିରୁ ସୃଷ୍ଟିକର୍ତ୍ତାଙ୍କତ ପ୍ରତି ମଣିଷ ମନରେ କୃତଜ୍ଞତା ପ୍ରକାଶ ପାଇବା ସ୍ୱାଭାବିକ । ପୃଥିବୀର ବିଭିନ୍ନ ସ୍ଥାନରେ 'ଶସ୍ୟଦେବତା ପୂଜା' ଓ 'ଶସ୍ୟ ପୂଜା'ର ବିଧି ପ୍ରଚଳିତ ହୋଇ ଆସୁଛି । ପାଳନ ବିଧି ହୁଏତ ଭିନ୍ନ ଭିନ୍ନ ହୋଇ ଥାଇପାରେ, କିନ୍ତୁ, ମୂଳଭିତ୍ତି ଅଭିନ୍ନ । ଭାରତ ଏକ ପ୍ରାଚୀନତମ ବୈଦିକ ଦେଶ । ତେଣୁ ଏହି ପୃଡଭୂମିରେ ଅନ୍ନ, ଆନନ୍ଦ ଓ ଆତ୍ମାର ପ୍ରାଧାନ୍ୟ ନିଶ୍ଚିତ ଭାବରେ ପ୍ରତିଷ୍ଠିତ ହୋଇ ଆସିଅଛି । ଅନ୍ନ, ଆନନ୍ଦ ଓ ଆତ୍ମା ଏହି ତିନିଗୋଟି ମଣିଷକୁ 'ସୂତ୍ରେ ମଣି ଗଣାଇବ' ଗ୍ରଥିତକର ତୈତ୍ତିରୀୟ ଉପ-ଉପନିଷଦ୍‌ରେ ମହର୍ଷି ଗାଇଥିଲେ :-

*"ଅନ୍ନ ବ୍ରହ୍ମେତି ବ୍ୟଜନାତ୍*
*ଅନ୍ନାଦେବ ଖଲ୍ୱିମାନି ଭୁତାନି ଜାୟନ୍ତେ,*
*ଅନ୍ନେନ ଜାତାନି ଜୀବନ୍ତି*
*ଅନ୍ନଂ ପ୍ରୟନ୍ତ୍ୟଭିସଂ ବିଶନ୍ତୀତି ॥"*

ଅନ୍ନର ଅନ୍ୟନାମ ବ୍ରହ୍ମ । ବ୍ରହ୍ମ ହିଁ ଈଶ୍ୱର । ତେଣୁ ଅନ୍ନହିଁ ଈଶ୍ୱର । ପ୍ରତିଟି ଜୀବ ଅନ୍ନରୁହିଁ ଜାତ । ଅନ୍ନ ଜୀବନ ଧାରଣର ଏକମାତ୍ର ଶକ୍ତି ଅଟେ । ଜୀବ ମୃତ୍ୟୁପରେ ଅନ୍ନ ହୋଇ ଅନ୍ୟମାନଙ୍କ ପାଇଁ ଯାଇଥାଏ । ତେଣୁ ଜୀବନର ଏପରି କୌଣସି ସୋପାନ ନାହିଁ ଯେଉଁଠିକି ଅନ୍ନର ଗୁରୁତ୍ୱ ଉପଲବ୍ଧ ନୁହେଁ । ଭୌତିକ ହେଉ ଅଥବା ଅଧିଭୌତିକତା ହେଉ ଅନ୍ନର ଗୁରୁତ୍ୱ ଅପରିହାର୍ଯ୍ୟ । ତେଣୁ 'ଅନ୍ନ ଜୀବନ ଧାରଣର ମାଧମ, ଆନନ୍ଦର ଉତ୍ସ ଏବଂ ଆତ୍ମାର ଅଙ୍ଗ ।' ତୈତିରୀୟ ଉପନିଷଦ୍‌କୁ ଅଧ୍ୟୟନ ଅନୁଧ୍ୟାନ କଲେ ଜାଣିବାକୁ ମିଳେ :-

*"ଅହମନ୍ନ ମହମନ୍ନ ମହମନ୍ନ ମ...*
*ଅହମନ୍ନାଦୋ.... ଃଅହମନ୍ନାଦୋଃଅହମାନ୍ନଦ...*
*ଅହମନ୍ନ ମନ୍ନ ମଦନ୍ତମା... ଦ୍ମି.... "*

ସ୍ୱୟଂ ପରଂବ୍ରହ୍ମ କହିଛନ୍ତି, 'ମୁଁ ଅନ୍ନ-ମୁଁ ଅନ୍ନ-ସେହି ଅନ୍ନର ମୁହିଁ ଉପଭୋକ୍ତା-ମୁହିଁ ଉପଭୋକ୍ତା- । ଯିଏ ନିଜ ନିଜର ଅନ୍ନ ଗ୍ରହଣ କରେ ମୁଁ ମଧ ସେହି ଅନ୍ନଗ୍ରହଣ କରିଥାଏ ।' (*)

ସେହ ଭାବରେ ଭଗବାନ ଶ୍ରୀକୃଷ୍ଣ ଭଗବତ୍ ଗୀତାରେ ଅର୍ଜୁନଙ୍କୁ କହିଛନ୍ତି :-

*"ଅନ୍ନଭବନ୍ତି ଭୁତାନି ପର୍ଜନ୍ୟାଦନ୍ନ ସମ୍ଭବଃ*
*ଯଜ୍ଞା ଭବନ୍ତି ପଜନ୍ୟୋ ଯଜ୍ଞକର୍ମ ସମୁଦ୍ଭବ*

*. ଓଡ଼ିଶାର ପର୍ବ-ପର୍ବାଣୀ ଓ ଯାନିଯାତ୍ରା ।

*କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି ବ୍ରହ୍ମାକ୍ଷର ସମୁଦ୍ଭବମ୍*
*ତସ୍ମାତ୍ ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍ ॥" (୧)*

ଅନ୍ନରୁ ପ୍ରାଣୀଙ୍କର ସୃଷ୍ଟି । ବର୍ଷାରୁ ଅନ୍ନର ଉଦ୍ଭବ ଯଜ୍ଞରୁ ବର୍ଷାର ଉତ୍ପତ୍ତି । କର୍ମ ବ୍ରହ୍ମରୁ ଉତ୍ପତ୍ତି ଓ ବ୍ରହ୍ମ ଅକ୍ଷର ଅଟନ୍ତି । ତେଣୁ ଯଜ୍ଞରେ ସମସ୍ତ ପ୍ରତିଷ୍ଠିତ । ଏହି ଯଜ୍ଞ କ'ଣ ହୋଇପାରେ । ଯଜ୍ଞର ଅନ୍ୟନାମ କର୍ମ ସାଧନା । ତେଣୁ, ଅନ୍ନ କୃଷିରୁ ଉତ୍ପତ୍ତିତ ହେଉଥିବାରୁ କୃଷିକର୍ମ ଦ୍ୱାରା ଅନ୍ନ ଉତ୍ପାଦନ କରିବା ହିଁ ମାନବୀୟ ଧର୍ମ ।

ସେହିପରି ମନୁସ୍ମୃତିରେ ଲେଖା ଅଛି ଯେ :-

*"ଅଗ୍ନୌ ପାସ୍ତାହୁତିଃ ସମ୍ୟଗାଦିତ୍ୟମୁ ପ୍ରତିଷ୍ଠତେ*
*ଆଦିତ୍ୟ ଦ୍ଜାୟତେ ବୃଷ୍ଟି ବୃଷ୍ଟେରନ୍ନଂ ତତଃ ପ୍ରଜାଃ ॥"(୨)*

ତେଣୁ ଅନ୍ନକୁ ଈଶ୍ୱରଙ୍କ ରୂପ ଓ ତାଙ୍କର ଅତୁଳନୀୟ ଦାନ ରୂପେ କଳ୍ପନା କରାଯାଇଅଛି । ସାଂସାରିକ ଜୀବନ ଜଞ୍ଜାଳରେ ମଣିଷ ସର୍ବଦା ଲହୁଲୁହାଣ । ତଥାପି ଏ ଯନ୍ତ୍ରଣାର ଆବର୍ତ୍ତ ମଧ୍ୟରେ ରହିବି ସେ ଚାହେଁ ଭଗବତ୍ ପ୍ରେମ ଓ ସ୍ଥିର ଚିତ୍ତରେ ସେହି ଭଗବତ୍ ଶକ୍ତିର ସମ୍ମିଳିତ ହେବା ପାଇଁ । ଏହି ଆଶାର ବଶବର୍ତ୍ତୀ ହୋଇ ମଣିଷ ଖୋଜେ ଉପାୟ । ପର୍ବପର୍ବାଣିରେ ଓ ପୂଜା ଉପାସନା, ବ୍ରତୋତ୍ସବ ମାଧମରେ ଭଗବତ୍ ପ୍ରାପ୍ତିର ଉପାୟ ପାଇବା ପାଇଁ ସୃଷ୍ଟି କରେ ପର୍ବପର୍ବାଣି ବ୍ରତୋତ୍ସବ । କାଳକ୍ରମେ ବ୍ରତୋତ୍ସବ ପର୍ବପର୍ବାଣି ସବୁ ବ୍ୟକ୍ତି ଓ ସାମାଜିକ ସ୍ତରକୁ ଅବତରଣ କରିଅଛି ଏବଂ ଏହି ମହାନ୍ ଦର୍ଶନ ଉପରେ ପଶ୍ଚିମ ଓଡ଼ିଶାର 'ନୂଆଁଖାଇ' ପର୍ବଟି ପ୍ରତିଷ୍ଠିତ ଏଥିରେ କୌଣସି ସନ୍ଦେହ ନାହିଁ । ଭାରତର ବିଭିନ୍ନ ସମାଜରେ, ବିଭିନ୍ନ ସ୍ଥାନରେ, ବିଭିନ୍ନ ଧର୍ମରେ ନୂଆଁଖାଇ ପର୍ବ ପାଳିତ ହୁଏ । ହେଲେ ପଶ୍ଚିମ ଓଡ଼ିଶାରେ ଏହା ଯେପରି ସାମୁହିକ ଭାବରେ ପାଳିତ ହୁଏ ଅନ୍ୟତ୍ର ତାହା ପରିଦୃଷ୍ଟ ହେଉନାହିଁ ।

ଭାରତର ବିଭିନ୍ନ ଅଂଶରେ ଯେପରି ନବାନ୍ନ ପାଳିତ ହୁଏ । ଓଡ଼ିଶାର ବିଭିନ୍ନ ଅଂଶର ମଧ୍ୟ ନବାନ୍ନକୁ ଈଶ୍ୱରଙ୍କୁ ସମର୍ପଣ କରିବା ପରେ ଗ୍ରହଣ କରିବାର ରୀତି ରହି ଆସିଅଛି । ତଥାପି ଏ ଅଞ୍ଚଳର 'ନୂଆଁଖାଇ' ବହୁଭାବରେ ସେ ସମସ୍ତ ଅଞ୍ଚଳରୁ ଭିନ୍ନ ।

ବୈଦ୍ୟର ଗୁହ୍ୟ ସୁତ୍ର ଅନୁଧାନ କଲେ ଅନ୍ନ ପାଇଁ 'ପଞ୍ଚଯଜ୍ଞ'ରୁ 'ପର୍ଯ୍ୟାୟଣ ଯଜ୍ଞ' ପରେ ଅନ୍ୟତ୍ର ନବାନ୍ନ ଗ୍ରହଣ କରାଯାଏ ବୋଲି ଜଣାଯାଏ । ଆଞ୍ଚଳିକ ଭେଦରେ କୌଣସି କୌଣସି

୧. ଶ୍ରୀମଦ୍ଭଗବତ୍ ଗୀତା - ୩ୟ ଅଧ୍ୟାୟ (୧୪/୧୫) ୨. ମନୁସ୍ମୃତି (୩/୧୬) ।

ସ୍ଥାନରେ ଦୀପାବଳୀ ଅମାବାସ୍ୟା, ଅନ୍ୟ କେତେକ ସ୍ଥାନରେ ଏହି ସମୟ ମଧ୍ୟରେ ଥିବା ଶୁଭଦିନ ସ୍ଥିର କରି ନବାନ୍ନ ଭକ୍ଷଣ କରାଯାଉଥିବାର ପରିଲକ୍ଷିତ ହୁଏ । କିନ୍ତୁ ଏ କ୍ଷେତ୍ରରେ ପଶ୍ଚିମ ଓଡ଼ିଶାର ଏକ ସ୍ୱତନ୍ତ୍ର ବିଧି ପ୍ରଣିଧାନର ଯୋଗ୍ୟ । ଏହି ବିରାଟ ଭୂଖଣ୍ଡରେ ଭାଦ୍ରବ ମାସରେ ହିଁ 'ନୂଆଁଖାଇ' ପର୍ବ ପାଳନ କରାଯାଇ ଥାଏ । ଏହାର ସପକ୍ଷରେ ଅନେକ ଯୁକ୍ତି ବଢ଼ାଯାଇ ପାରେ ।

ଭାଦ୍ରବ ମାସ ବେଦୋକ୍ତ 'ପଲବନ ଯଜ୍ଞ' (ପ୍ରଥମ ଧାନ କାଟିବା) ହୋଇ ନଥାଏ । କେବଳ ଧାନ ଫଳ ଧରିବା ଆରମ୍ଭ କରିଥାଏ । ତଥାପି ଏହି ଭାଦ୍ରବ ମାସରେ 'ନୂଆଁଖାଇ' କାହିଁକି ପାଳିତ ହୁଏ - ପ୍ରଣିଧାନର ଯୋଗ୍ୟ । କୁହାଯାଇ ପାରେ ଯେ, ଚାଷୀ ତାର ଅକ୍ଳାନ୍ତ ପରିଶ୍ରମ ଜନୀତ ଶସ୍ୟ ପକ୍ଷୀ, ପଶୁ ମାନଙ୍କ ଦ୍ୱାରା କୌଣସି ମତେ ଉଚ୍ଛିଷ୍ଟ ହେବା ପୂର୍ବରୁ ତାର ଇଷ୍ଟଦେବ ଦେବୀଙ୍କୁ ସଭକ୍ତି ଅର୍ପଣ କରିବା ଉଦ୍ଦେଶ୍ୟରେ ନୂଆ ଧାନଫଳ ଧରିବା ସଙ୍ଗେ ସଙ୍ଗେ ନୂଆଁଖାଇ ପର୍ବ ପାଳନ କରିଥାଏ । ଅନ୍ୟ ଏକ ଦୃଷ୍ଟିରୁ ବିଚାର କଲେ ଭାରତରେ ମାଟିର ଉର୍ବର ଗୁଣ ଦୃଷ୍ଟିରୁ ଭୂମିକୁ ତିନି ପ୍ରଧାନ ଭାଗରେ ବିଭକ୍ତି କରାଯାଇଥାଏ । ସେଗୁଡ଼ିକ ହେଲା 'ଉର୍ବରା' 'ଅପସ୍ୱତି' ଓ 'ଅର୍ଥନା' (ଏହାର ପ୍ରମାଣ ଋଗ୍‌ବେଦରେ ମିଳିଥାଏ) ଅର୍ଥାତ୍ 'ଅନୁପ', 'ଜାଙ୍ଗଳ' ଓ 'ସାଧାରଣ' । ତେଣୁ, ଜଳବାୟୁର ତାରତମ୍ୟତା ଦୃଷ୍ଟିରୁ ପଶ୍ଚିମ ଓଡ଼ିଶାର 'ମାଲ୍‌ଧାନ' ଏହି ଭାଦ୍ରବ ମାସ ବେଳକୁ ହୋଇ ଯାଇଥାଏ । ତେଣୁ, ନୂତନ ଧାନ ଫସଲକୁ ଦେବତାଙ୍କୁ ସମର୍ପଣ କରିବା ଗୁରୁତ୍ୱପୂର୍ଣ୍ଣ ମନେକରି ଭାଦ୍ରବ ମାସରେ ନୂଆଁଖାଇ ମହାସମାରୋହରେ ପାଳିତ ହୋଇ ପାରିଥାଏ ।

ତୃତୀୟତଃ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଭାଦ୍ରବ ମାସଟି ସିଂହ ମାସ (ରାଶିଚକ୍ର ଅନୁଯାୟୀ) । ଏହି ସିଂହ ମାସରେ ରବି ବା ସୂର୍ଯ୍ୟ ସିଂହରାଶି ସ୍ଥିତ । ରବି ପ୍ରାଣର କାରଣ । ଅନ୍ନ ପ୍ରାଣ ଶକ୍ତିର ସଂଚାରକ । ତେଣୁ, ସିଂହ ମାସରେ ନୂଆଁଖାଇ ପାଳନ ବିଧି ଅଧିକ ଯୁକ୍ତି ସମ୍ମତ ।

ତଥାପି ଭାଦ୍ରବ ମାସରେ 'ନୂଆଁଖାଇ' ପାଳନ ବିଧି ମୂଳରେ ଥିବା ଦର୍ଶନ ଅଦ୍ୟାବଧି ବିବାଦମାନ ପରିସ୍ଥିତିରେ ଅଛି । କିନ୍ତୁ, ଏକ ରୀତିନୀତି ଓ ମନର ବିଶ୍ୱାସକୁ ନେଇ ଏହି ମହତ୍ ପର୍ବଟି ପଶ୍ଚିମାଞ୍ଚଳରେ ଭାଦ୍ରବ ମାସରେ ହିଁ ପାଳିତ ହୋଇ ଆସୁଅଛି ।

ସର୍ବଜନ ସମ୍ମତ କ୍ରମେ ଭାଦ୍ରବ ମାସର ଗୋଟିଏ ଦିନରେ ନୂଆଁଖାଇ ପାଳନ କରିବାର ବିଧାନ ଏ ଅଞ୍ଚଳରେ ପ୍ରଚଳିତ ହୋଇ ଆସୁଅଛି । ଏହି ନିର୍ଦ୍ଦିଷ୍ଟ ଦିନଟି କରିବାର ମଧ୍ୟ ଦୁଇଟି ପ୍ରଣାଳୀ ରହିଅଛି । ପ୍ରଥମତଃ ଗୋଟିଏ ଅଞ୍ଚଳର ଇଷ୍ଟଦେବୀଙ୍କ ନାମରେ ଓ ଅନ୍ୟଟି ପୂର୍ବତନ

ଶାସକଙ୍କ ଜାତକ ସିଦ୍ଧି ଅନୁସାରେ ମୁହୂର୍ତ୍ତ ଗ୍ରହଣ କରାଯାଇ ଥାଏ । ସାଧାରଣତଃ ଏ ଅଞ୍ଚଳର ଇଷ୍ଟଦେବୀଙ୍କ ନାମାନୁସାରେ ମୁହୂର୍ତ୍ତ ଗ୍ରହଣ କରଯାଇ ଥାଏ । ତେଣୁ, ପଶ୍ଚିମ ଓଡ଼ିଶାର ଜାତୀୟ ଦେବୀ ମା ସମଲେଇଙ୍କ ନୂଆଁଖାଇ ମୁହୂର୍ତ୍ତକୁ ସର୍ବସମ୍ମତି କ୍ରମେ ନବାନ୍ନ ଲଗ୍ନ ହିସାବରେ ଗ୍ରହଣ କରାଯାଇ ଥାଏ ଓ ଏହି ନିର୍ଦ୍ଦିଷ୍ଟ ଦିନଟିରେ ସବୁ ଜାତିର ହିନ୍ଦୁ ଲୋକମାନେ ନବାନ୍ନ ଗ୍ରହଣ କରନ୍ତି ।

କେତେକଙ୍କ ମତରେ ନୂଆଁଖାଇର ପୂର୍ବଦିନରୁ ନୂଆଁ ଧାନ ବା ଚାଉଳ ସଂଗ୍ରହ କରାଯାଏ । ନୂଆଁଖାଇ ଦିନ ପ୍ରାତଃକାଳରେ ଘରର ବୋହୂମାନେ ସ୍ନାନାଦି ନିତ୍ୟକର୍ମ ସମାପନ କରି ଘରଦ୍ୱାର ସଫା କରନ୍ତି । ନିଜର ଶକ୍ତି ଅନୁସାରେ ପିଠା, ପଣା, କ୍ଷୀରି ଓ ଅନ୍ୟାନ୍ୟ ବ୍ୟଞ୍ଜନ ପାକ କରି ପୂଜା ସାମଗ୍ରୀ ପ୍ରସ୍ତୁତ କରନ୍ତି । ପ୍ରଥମେ ଇଷ୍ଟଦେବୀଙ୍କୁ ତଥା ଆପଣା ଗୃହରେ ମହାଲକ୍ଷ୍ମୀଙ୍କୁ ଅର୍ପଣ କରନ୍ତି । ଦେବଦେବୀ ପୂଜା ପରେ ପରିବାରରେ ସମସ୍ତେ ଏକତ୍ର ବସି ନୂଆଚାଉଳର କ୍ଷୀରି ପ୍ରସାଦ ସେବନ କରନ୍ତି ଓ ତା'ପରେ ଅନ୍ୟାନ୍ୟ ବ୍ୟଞ୍ଜନ ଆନନ୍ଦ ମନରେ ଭୋଜନ କରନ୍ତି ।

ଐତିହାସିକ ୰ ଶିବ ପ୍ରସାଦ ଦାଶଙ୍କ ମତରେ; ଭାଦ୍ରବ ମାସ ଶୁକ୍ଳ ପକ୍ଷରେ ନବାନ୍ନ ଭକ୍ଷଣ ସମ୍ବଲପୁର ଓ ତଦଧିନ ଗଡ଼ ତଥା କଳାହାଣ୍ଡିକୁ ଛାଡି ଏହି ପର୍ବ ଅନ୍ୟତ୍ର ପାଳିତ ହୁଏ । ପରିବାରର ଯେ ଯହିଁ ଥାଆନ୍ତୁ, ଏଦିନ ସମସ୍ତେ ଘରକୁ ଫେରନ୍ତି ଏବଂ ନୂଆଁଖାଇରେ ଯୋଗ ଦିଅନ୍ତି । ଗ୍ରାମତର ସମସ୍ତ ଛାଉଣୀ ଏକାଦିନ ନୂଆଁ ଖାଆନ୍ତି । କିନ୍ତୁ ଭିନ୍ନ ଭିନ୍ନ ଗ୍ରାମରେ ବା ଅଞ୍ଚଳରେ ଲୋକେ ସୁବିଧା ଅନୁସାରେ ଶୁଭଲଗ୍ନ ଥିବା ବିଭିନ୍ନ ଦିନମାନଙ୍କରେ ନୂଆଁଖାଇର ସୁବିଧା କରନ୍ତି । ପୂର୍ବ ରାତ୍ରରେ ଗ୍ରାମରେ ଝାଙ୍କର ସମ୍ବଲେଶ୍ୱରୀଙ୍କୁ ନୂଆଁ ଲଗାଏ ଓ ସକାଳୁ ଗ୍ରାମର ପ୍ରତି ଘରେ ଘରେ ନୂଆଁ ଧାନ ବାଣ୍ଟିଦିଏ । ପ୍ରତି ଘରର ଗୃହସ୍ଥ ଓ ଗୃହିଣୀମାନେ ଯଥାକ୍ରମେ ପିତୃପୁରୁଷ ଓ କୂଳଦେବତାଙ୍କୁ ତଥା ଅନ୍ୟାନ୍ୟ ଦେବଦେବୀଙ୍କୁ ଯଥା ସମୟରେ ନୂଆଁ ଚାଉଳ ଓ ଅନ୍ନ ବ୍ୟଞ୍ଜନ ଲଗାନ୍ତି । ତା'ପରେ ପରିବାରର ପୁରୁଷ ସ୍ତ୍ରୀ ସମସ୍ତେ ଏକତ୍ର ବସି ନୂଆଁ ଚାଉଳ ସେବା କରନ୍ତି ।" (୩)

ନୂଆଁଖାଇ ଦିନ ନୂଆଁଖାଇ ସାରିଲା ପରେ ଦେବ ଦର୍ଶନ ଏ ଅଞ୍ଚଳର ଅନ୍ୟତମ ବିଶେଷତ୍ୱ । ଦେବ ଦର୍ଶନ କରି ଲୋକେ ଅନ୍ନ ଓ ଆପଣାର ସମୃଦ୍ଧି ପାଇଁ ଈଶ୍ୱରଙ୍କ ନିକଟରେ କୃତଜ୍ଞତା ଜଣାଇବା ସଙ୍ଗେ ସଙ୍ଗେ ଭଗବତ୍ ଚିନ୍ତନର ସୁଯୋଗ ପାଇପାରି ଥାଆନ୍ତି ।

"ସୁପୋଷାଃ ପୋଷୈଃ (ଋଗ୍‌ବେଦ), ଅର୍ଥାତ୍ ଆମକୁ ପୁଷ୍ଟିଯୁକ୍ତ ଖାଦ୍ୟରେ ସମୃଦ୍ଧ କର ।"

*"ଆବହନ୍ତି ବିତନ୍ୱାନା କୁର୍ବଣା ଚିର ମାତ୍ମନଃ*

---

୩. ସମ୍ବଲପୁର ଇତିହାସ - ୰ ଶିବ ପ୍ରସାଦ ଦାଶ (ପୃ. ୪୧୮)

*ବାସାଂସି ମମ ଗାବଶ୍ଚ ଅନ୍ନପାଚେନ ସର୍ବଦା- "*

(ମୋତେ ସେହି ସଂପଦ ଦାନକର ଯାହା ମୋ ପାଖରେ ସର୍ବଦା ବୃଦ୍ଧି ହେଉଥିବ । ମୋର ଗାଈ ଗୋରୁ ଇତ୍ୟାଦି ଗୃହପାଳିତ ପଶୁ, ଅନ୍ନ, ଲୁଗା, ଓ ଜଳ ସର୍ବଦା ମିଳୁଥିବ ।)

ନବାନ୍ନ ଭକ୍ଷଣରେ ସାନବଡ କ୍ରମେ ସମସ୍ତେ ସମସ୍ତଙ୍କର ଚରଣ ଧୂଳି ଗ୍ରହଣ କରନ୍ତି । କନିଷ୍ଠମାନେ ଜ୍ୟେଷ୍ଠମାନଙ୍କୁ ଦଣ୍ଡ ପ୍ରଣାମ କରନ୍ତି । ଏହି ଦଣ୍ଡ ପ୍ରଣାମ ବା ପଦଧୂଳି ଗ୍ରହଣ କୌଣସି ଦେଖାଣିଆ ଚଳଣି ନୁହେଁ । ବରଂ ଖୁବ୍ ଗଭୀର ଅର୍ଥପୂର୍ଣ୍ଣ । ଏହାର ଯେଉଁ ଅନ୍ତର୍ନିହିତ ଅର୍ଥ ରହିଅଛି । ତାହା ପ୍ରଣିଧେୟ । ଦଣ୍ଡ ପ୍ରଣାମ କରିବା ଦ୍ୱାରା ମନରୁ ସମସ୍ତ ବିଦ୍ୱେଷକୁ ଦୂରକରି ସ୍ୱ ସ୍ୱ ଦାୟିତ୍ୱରେ ଚେତନାସିକ୍ତ ହେବା ଉଚିତ୍ । ପାରିବାରିକ ସମ୍ବନ୍ଧକୁ ଦୃଢ଼ତର ଭିତ୍ତିଭୂମିରେ ପ୍ରତିଷ୍ଠିତ କରାଯିବା ଉଚିତ । ଏହି ଦଣ୍ଡ ପ୍ରଣାମ ଏକ ପାରିବାରିକ ଚଳଣି ନୁହେଁ ବରଂ ଭାରତୀୟ ସଭ୍ୟତା ଓ ସଂସ୍କୃତିର ସ୍ୱାକ୍ଷର ବହନକାରୀ ଅଟେ । ସଂସ୍କୃତି ପ୍ରତି ମନର ସ୍ୱୀକାର । ଅର୍ଥବ ବେଦକୁ ଅଧ୍ୟୟନ କଲେ ଜଣାଯାଏ-

*'ମା ଭ୍ରାତା ଭ୍ରାତରଂ ଦ୍ୱିକ୍ଷନ୍*
*ମୋ ସ୍ୱସାରମୁତ୍ତଂସ୍ୱସା,*
*ସମ୍ୟଞ୍ଚ ସବ୍ରତା ଭୂତ୍ୱ ବାଚଂ ବଦତ ଭଦ୍ରୟା X*
*ସଂଜ୍ଞାନଂ ପୁରୁଷେଭ୍ୟ.... ସମାନୀ,*
*ପ୍ରପାସହ ବୋଽନ୍ନଭାବଃ X X X ।'*

ଅର୍ଥାତ୍ ଭାଇ ଭାଇକୁ ଦ୍ୱେଷ ନକରୁ । ଭଉଣୀ, ଭଉଣୀକୁ ଘୃଣା ନକରୁ ସମସ୍ତେ ନିର୍ମଳ ଚିତ୍ତ, ଏକବ୍ରତ ହୋଇ ଭଦ୍ରବାଣୀ ଉଚ୍ଚାରଣ କର । ସବୁ ମଣିଷର ମନରେ ସଦ୍‌ଜ୍ଞାନ ଜାତ ହେଉ । ଅନ୍ନ ଓ ଜଳର ସାମଗ୍ରୀ ସମାନ ହେଉ ।

ପରିବାର ମଧ୍ୟରେ ଥିବା ବିଦ୍ୱେଷ ମନୋମାଳିନ୍ୟକୁ ସଂପୂର୍ଣ୍ଣ ରୂପେ ଭୁଲିଯାଇ ନବାନ୍ନ ଭକ୍ଷଣରେ ଘରୁ ବାହାରକୁ ଆସିଲେ ଲୋକେ ନାନା ଆନନ୍ଦ ଉତ୍ସବରେ ଲୀନ ହୁଅନ୍ତି । ଅନେକ ଏକତ୍ର ବସି ପୁରାଣପାଠ, ଭାଗବତ ଆବୃତ୍ତି, ଗୀତବାଦ୍ୟ ଓ ନୃତ୍ୟ କ୍ରୀଡ଼ା କୌତୁକ, ଖେଳକୁଣ୍ଡି ପ୍ରଭୃତି ନାନା ପ୍ରକାର ଆମୋଦ ଉତ୍ସବରେ ଦିନଟି ଯାପନ କରନ୍ତି ଓ ତତ୍ ପୂର୍ବରୁ 'ଜୁହାର ଭେଟି' ହୁଅନ୍ତି । ଏହା ଏକ ସୁସ୍ଥ ସାମାଜିକ ପରମ୍ପରାର ପରିଚାୟକ । ଫଳତଃ ଏହି 'ଜୁହାର ଭେଟି' ଗୋଷ୍ଠୀଗତ ସଂକୀର୍ଣ୍ଣତା ଓ ସ୍ୱାର୍ଥଜନୀତ ଦୋଷକୁ ଦୂରୀଭୂତ କରାଯାଇ ଥାଏ । ତେଣୁ, ସମ ସ୍ତର ମଣିଷ, ମଣିଷ ଭିତରେ ଯେଉଁ ଦର୍ଶନ ଓ ନୀତି ରହିଥାଏ ତାହାର ସ୍ୱାକ୍ଷର ବହନ କରିଥାଏ

'ନୂଆଁଖାଇ' ।

'ନୂଆଁଖାଇ' ଏକ ଶପଥ ଦିବସ ରୂପେ ଗୃହିତ ହୋଇଥାଏ । ଏହିଦିନ ଜୁହାର କରିବା ସମୟରେ ଲୋକେ କହିଥାନ୍ତି 'ଜୀଇଁ ଜାଗିଥିଲେ ବର୍ଷେ' ଏହି ସାଧାରଣ କଥନ ଅସାଧାରଣ ଅର୍ଥ ବହନ କରିଥାଏ । ଆଗାମୀ ବର୍ଷ ପୁଣି ନୂତନ ଉତ୍ସାହ ଓ ପ୍ରେରଣାର ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣରେ ଜୀବନ ପଥରେ ଅଗ୍ରଗତି କରି ନୂତନ ଫସଲ ଉତ୍ପାଦନ କରି ପୁନର୍ବାର ଏଇ ମହାନ୍ 'ନୂଆଁଖାଇ' ଉତ୍ସବର ପାଳନ ପାଇଁ ଚାଷୀମାନଙ୍କର ଏକ ସଂକଳ୍ପ । ଏହି ପୃଷ୍ଠଭୂମିରେ ମଧ୍ୟ ଭାରତୀୟ ସଂସ୍କୃତି ଓ ଦର୍ଶନର ନିଦର୍ଶନ ମିଳିଥାଏ ।

*'ଅନ୍ନଂ ନ ନିନ୍ଦାତି - ତଦ୍ ବ୍ରତମ୍*
*ଅନ୍ନଂ ନ ପରିଚକ୍ଷୀତ-ତଦ୍ ବ୍ରତମ୍*
*ଅନ୍ନଂ ବହୁ କୁର୍ବୀତ୍ - ତଦ୍ ବ୍ରତମ୍ ।'* (ତୈତ୍ତିରୀୟ ଉପନିଷଦ)

ଅର୍ଥାତ୍, 'ଅନ୍ନକୁ ନିନ୍ଦା କରନାହିଁ । ଅନ୍ନ ନଷ୍ଟ କରନାହିଁ । ଅନ୍ନ ବହୁ ପରିମାଣରେ ଉତ୍ପାଦନ କର ।'

'କୃଷିଂ ଇତ୍ କୃଷସ୍ୱ' - ନିଜ ଜମି ନିଜେ ଚାଷକର । ଏହା ତୁମର ବ୍ରତ ହେଉ । 'କୁଶଳାନ୍ନ ପ୍ରମଦିତବ୍ୟମ୍' - ସାମାଜିକ ଅର୍ଥନୀତିର ପ୍ରଗତିରେ କାର୍ଯ୍ୟ କରିପାରିବ ।' ଇତ୍ୟାଦି ବେଦୋକ୍ତ ମହତ୍‌ବାଣୀ ପ୍ରତି ଦୃଷ୍ଟିଦେଇ ବିଚାର କଲେ ପ୍ରକୃତରେ ଅନ୍ନ ଓ ନବାନ୍ନ ଅର୍ଥାତ୍ ନୂଆଁଖାଇରେ ଉପରୋକ୍ତ ମହତ୍‌ବାଣୀ ଅଧିକ ମହୀୟାନ ହୋଇ ଉଠେ ।

ଉପସଂହାରରେ ଏତିକି ମାତ୍ର କହିଲେ ଯଥେଷ୍ଟ ହେବ ଯେ, କୃଷି ବିନା ସଂସ୍କୃତି ସଂପୂର୍ଣ୍ଣ ହୋଇ ନପାରେ । ଏହି ପରିପ୍ରେକ୍ଷୀରେ ସ୍ୱଭାବ କବି ଗଙ୍ଗାଧରଙ୍କ କୃଷି କବିତା ପ୍ରଣିଧାନର ଯୋଗ୍ୟ ।

*"ଅନ୍ନ ଯେ ନରହି ଅଛି ଅଖିଳ ସଂସାର*
*ଅନ୍ନ ବିନା ଜଗତେ ଉଠେ ହାହାକାର*
*ଅନ୍ନ ଘେନି ମାନବ ଗୃହ ସୁଖମୟ*
*ଅନ୍ନ ହୀନ ଗୃହଟି ଦୁଃଖର ନିଳୟ ।*
*ଅନ୍ନ ଘେନି ପରଜା ଅନ୍ନ ଘେନି ରାଜା*
*ଅନ୍ନ ଘେନି ବାଜଇ ଆନନ୍ଦରେ ବାଜା ।*
*ଅନ୍ନ ଦେବା ନିମନ୍ତେ ରହିଅଛି ଧାରା*
*ଅନ୍ନ ଦେବା ନିମନ୍ତେ ଲାଗୁଅଛି ଖରା ।*

*ଅନ୍ନ ଦେବା ନିମନ୍ତେ ମେଘ ବରଷଣ,*
*ଅନ୍ନ ଦେବା ନିମନ୍ତେ ବହୁଛି ସମୀରଣ ।"*

ଏବଂ ଏହି ଅନ୍ନ କୃଷିରୁ ହିଁ ଉତ୍ପତ୍ତି ହୋଇଥାଏ । ତେଣୁ 'ନୂଆଁଖାଇ'ର ପୃଷ୍ଠଭୂମିରେ କୃଷି ସଭ୍ୟତାର ଗୁରୁତ୍ୱ ରହିଅଛି । କବି ମୁକ୍ତ କଣ୍ଠରେ କହିଛନ୍ତି :-

*"କୃଷି ସିନା ସଂସାରେ ସଭ୍ୟତାର ମୂଳ*
*କୃଷି ଏକା ସକଳ ଜୀବିକାର ଚୂଳ ।"*

ଅତଃ, ପଶ୍ଚିମ ଓଡ଼ିଶାର ମହାନ୍ ଜାତୀୟ ପର୍ବ 'ନୂଆଁଖାଇ' କୃଷି ସଭ୍ୟତାର ସ୍ୱାକ୍ଷର କରି। ସଙ୍ଗେ ସଙ୍ଗେ ଏକ ଉନ୍ନତ ପ୍ରଗତିଶୀଳ ସାମାଜିକ ଜୀବନଯାପନ କରିବାପାଇଁ ପ୍ରେରଣାର ଏକ ପ୍ରତୀକ ଅଟେ । ସାମ୍ୟ, ମୈତ୍ରି, ଏକତା ଓ ସୌହାର୍ଦ୍ଦ୍ୟର ମହାନ୍ ପ୍ରତୀକ ଏଇ 'ନୂଆଁଖାଇ' ପର୍ବ । ପୁରପଲ୍ଲିରୁ ଆରମ୍ଭ କରି ନଗରୀ ପର୍ଯ୍ୟନ୍ତ ସମସ୍ତଙ୍କ ଜୀବନରେ ସରସତା ଭରିଦେଇ କୃଷିପ୍ରଧାନ ରାଜ୍ୟ ସମ୍ବଲପୁର ତଥା ସମସ୍ତ ପଶ୍ଚିମ ଓଡ଼ିଶା ଭୂଖଣ୍ଡର ମାନବ ଜୀବନରେ ସମାରୋହ ପୂର୍ଣ୍ଣ ନବାନ୍ନ ସେବା ବା 'ନୂଆଁଖାଇ' ଗୁରୁତ୍ୱପୂର୍ଣ୍ଣ ଅଟେ ।



# ସମ୍ବଲପୁରୀ ଭାଷାରେ 'ବଚନ' ପ୍ରୟୋଗ ବିଧି

ଦୟାନିଧି ଆଚାର୍ଯ୍ୟ

ମନୁଷ୍ୟର ମୁଖନିସୃତ ଧ୍ୱନିସମୂହ ଯାହା ସହଜ ଓ ସ୍ୱାଭାବିକ ଭାବେ ନିଜକୁ ଅନ୍ୟପାଖରେ ପ୍ରକାଶକ୍ଷମ କରାଏ, ତାହାହିଁ ଭାଷା। ଭାଷାର ଦୁଇଟି ରୂପ; କଥିତ ଓ ଲିଖିତ। କଥିତ ଭାଷା ହେଉଛି ଉଚ୍ଚାରିତ ଭାଷା। ଉଚ୍ଚାରିତ ଭାଷା ଜୀବନ୍ତ; ମାତ୍ର ଲିଖିତ ଭାଷା ନିଃଶବ୍ଦ ସଙ୍କେତ ମାନଙ୍କର ସମାହାର ମାତ୍ର। ପୁସ୍ତକ ଲିଖିତ ନିଃଶବ୍ଦ ଅକ୍ଷରଗୁଡ଼ିକ ମୃତ। ଉଚ୍ଚାରଣ ଦ୍ୱାରା ସେମାନଙ୍କୁ ଜୀବନ୍ୟାସ ଦେଲେ, ସେମାନେ ଭାଷାର ପରିଣତ ହୁଅନ୍ତି। ଏଣୁ ସମ୍ବଲପୁରୀ ଭାଷାର ଲିଖିତ ରୂପ ଅପେକ୍ଷା କଥିତ ରୂପ ହିଁ ଜନପଦର ଜୀବନ୍ତ ଭାଷା, ଏଥିରେ ଦ୍ୱିରୁକ୍ତି ନାହିଁ। ସମସ୍ତ ବାଦବିସମ୍ବାଦର ଊର୍ଦ୍ଧ୍ୱରେ ରହି ଏକ ଜୀବନ୍ତ ଭାଷାର ଆଲୋଚନା ଓଡ଼ିଆ ସାହିତ୍ୟ ପାଇଁ ନିହାତି ଜରୁରୀ। ଏହି ପରିପ୍ରେକ୍ଷୀରେ ସମ୍ବଲପୁରୀ ଭାଷାର 'ବଚନ' ପ୍ରୟୋଗ ବିଧି ଏହି କ୍ଷୁଦ୍ର ପ୍ରବନ୍ଧରେ ଆଲୋଚ୍ୟ।

୧. ଶବ୍ଦାର୍ଥର ସଂଖ୍ୟା ଯାହାଦ୍ୱାରା ଜଣାଯାଏ, ତାହାକୁ ବଚନ (y) କହନ୍ତି।

(କ) ଶବ୍ଦଟିଏ କୌଣସି ବସ୍ତୁ ବା ବ୍ୟକ୍ତିକୁ ବୁଝାଉଥିଲେ, ତାହା ଏକବଚନ ହୁଏ।

ଏଠାରେ 'ପକାଘରଟା' 'ପିଲାଟା' ନିର୍ଦ୍ଦିଷ୍ଟତା ଯୋଗୁଁ ଏକବଚନ ହେବ।

(ଖ) ବହୁବଚନରେ 'ଇ ଗାଁଥି ପକାଘରମାନେ ଅଛେ।' 'ପିଲାମାନେ ଦୌଡୁଛନ୍।'

'ପକାଘରମାନେ' 'ପିଲାମାନେ' ଏଠାରେ ଅଧିକ ସଂଖ୍ୟା ନିର୍ଦ୍ଦେଶ କରୁଥିବାରୁ ବହୁବଚନ ହେବ।

(୨) ସମ୍ବଲପୁରୀ ଭାଷାର ଏକବଚନ ପାଇଁ କୌଣସି ପ୍ରତ୍ୟୟ ଯୋଗ ହୁଏନାହିଁ। ଏକ ନିର୍ଦ୍ଦିଷ୍ଟ ଶବ୍ଦ ହିଁ ଏକବଚନକୁ ପ୍ରକାଶ କରିଥାଏ। ଉଦାହରଣ ସ୍ୱରୂପ :-

(କ) ଆମ୍ ଗୁଟେ ଖାଏଲିନ।

(ଖ) ଉଷୋ ଗୁଟାରଙ୍ଗେ ଗିଲିଦେବୁ।

(ଗ) ଏକ୍‌ଲା ବାଟ୍ ଚାଲ୍‌ବାକେ ହଦ୍‌ରା ଲାଗ୍‌ସି ।

(ଘ) ଇଟା ଆମର ଘର ।

ଏଠାରେ ଗୁଟେ/ଗୁଟା/ଏକ୍‌ଲା/ଇଟା ଆଦି ଶବ୍ଦ ପ୍ରତ୍ୟୟବିହୀନ ଭାବେ ଏକବଚନରେ ବ୍ୟବହୃତ ହୁଏ । କିନ୍ତୁ ଅନେକ ସମୟରେ 'ଏ', 'ଆ', 'ଓ', 'ଉ' ପ୍ରତ୍ୟୟ ସ୍ୱରାନ୍ତରେ ରହି ଏକବଚନକୁ ନିର୍ଦ୍ଦିଷ୍ଟ କରାଏ । ଯଥା :-

(କ) ସେ ସାଇକଲ୍ ମୋର୍‌ଟା ।

(ଖ) କେନ୍‌କେ ଯାଉଛୁ ବୋ

(ଗ) ଫୁଲ୍‌ମାଲେ ସମ୍‌ଲେଇକେ ଚଢ଼େଇଦେବୁ ।

(ଘ) ଏ ବାବ୍ ଏକ୍‌ଲା କାହିଁ ଯାଉଛୁ ?

(ଙ) ଦଶପଏସି ଧରିଛୁ ?

ଉପରୋକ୍ତ ବାକ୍ୟରେ ରେଖାଙ୍କିତ ଶବ୍ଦମାନ ପ୍ରତ୍ୟୟଯୁକ୍ତ ଏକବଚନ । ଏହିପରି ଆହୁରି ଅନେକଶବ୍ଦ ଏକବଚନକୁ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ କରିବା ପାଇଁ ପ୍ରୟୋଗ ହୋଇଥାଏ । ଯଥା :- ଗୋ, ବେ, ରେ, ହୋ ଇତ୍ୟାଦି ।

(କ) ସମ୍ବୋଧନାର୍ଥେ 'ଗା': 'ହଏଗା' (କେବଳ ସ୍ୱାମୀ ସ୍ତ୍ରୀଙ୍କୁ)

(ଖ) ଆତ୍ମୀୟ ଓ ବିରୋଧ ସୂଚକ ଭାବେ 'ବେ':

(i) ହଏବେ କଥା କେନ୍ତା ନାଇଁବୁଝୁ, ତୁଇ ମୁଇଁ ପରେ ପିଲାଦିନର୍ ସାଙ୍ଗ୍ ।

(ii) ହଏବେ କଥା କେନ୍ତା ନାଇଁ ମାନ୍‌ବାର ।

(ଗ) ସମ୍ବୋଧନ, ବିରୋଧ ସ୍ନେହର ଅତିଯୋକ୍ତିର 'ରେ' ପ୍ରୟୋଗ :-

(i) ହଏରେ ଆମର ଘରକେ ବୁଲିଆସବ ।

(y) ହଏରେ ତୋର୍‌କଥା ମୁଇଁ ନାଇଁଜାନି ।

(y) ହଏରେ ନାନୀ ମୁଇଁ କାଣା କର୍‌ମି ଗା ।

(ଘ) ସମ୍ବୋଧନ ଓ ବିସ୍ମୟ ସୂଚକ ଅର୍ଥରେ 'ହୋ'ର ପ୍ରୟୋଗ :

(y) ଚାଲ ହୋ ସଭେ ଯିମା ।

(y) ଇଟା କାଣା ହୋ ।

ବହୁବଚନ ବୋଧକ ନାନାବିଧ ପ୍ରତ୍ୟୟାନ୍ତ ଶବ୍ଦ ସମ୍ବଲପୁରୀ ଭାଷାରେ ବ୍ୟବହୃତ ହୋଇଥାଏ

ଏବଂ ଅନେକ ସମଷ୍ଟି ବାଚକ ଶବ୍ଦରେ ମଧ୍ୟ ଏହା ପ୍ରତୀୟମାନ।

ବହୁବଚନ ସୂଚକ ପ୍ରତ୍ୟୟାନ୍ତ ଶବ୍ଦର ପ୍ରୟୋଗ :

(କ) ସେମାନେ ଇହାଦେକା ଫିରି ଆଏବେ।

(ଖ) ଗାଁ ବାଲେ ଜୋଟ୍ ହେଇଛନ୍, ସେବାଟେ ନାଇଁ ଯିବୁ।

(ଗ) ତୁମେମାନେ କଥା ନାଇଁ ବୁଝ ବୋ।

ସମଷ୍ଟି ବାଚକ ଶବ୍ଦର ବହୁବଚନରେ ପ୍ରୟୋଗ :

(କ) ସଭେ ଏକ୍‌ମେଲ୍ ହେଲେ, ଇଟାକାଏଁ କାମର୍ କାମ୍।

(ଖ) ହଏଜାଥ୍ ଇଗାଁର୍ ଲୋକ୍ ପର୍ଛା ହେଇଗଲେ।

(ଗ) ଚୋର୍ ପଶି କରି ସଫା କରି ଦେଇଛେ।

(ଘ) ସବୁ ଅଡୁଆ ତୋର୍ ଠାନେ।

୩. ଶବ୍ଦର ପୂର୍ବରେ ସଂଖ୍ୟାବାଚକ ବିଶେଷଣ ରହିଲେ, ବହୁବଚନ ହୁଏନାହିଁ। ଦଶ୍‌ଲୋକ, ପାଞ୍ଚଲୋକ, ଶହେଲୋକ ଆଦି। ବେଳେବେଳେ ସଂଖ୍ୟାବାଚକ ପଦ ବିଶେଷ୍ୟରେ ପରେ ବସେ। ଯଥା :- ଲୋକ ଶହେ, ଟଙ୍କା ଶହେ ଇତ୍ୟାଦି।

୪. ସର୍ବନାମର ପୁନରାବୃତ୍ତି ବହୁବଚନର କାର୍ଯ୍ୟ କରେ। ଯଥା :-

(କ) କେନ୍‌ମାନେ ମୋର ସାଙ୍ଗେ ଯିବ।

(ଖ) କିଏ କିଏ ତାକେ ପିଟ୍‌ଲେ ବୋ।

୫. ବହୁବଚନ ବୋଧକ ପ୍ରତ୍ୟୟ ପ୍ରୟୋଗ :-

(କ) 'ଏ' ପ୍ରତ୍ୟୟ ସ୍ୱରାନ୍ତ ଶବ୍ଦରେ ଲାଗେ।

(i) ଏ ପିଲେ କାହିଁ ଯାଉଛ ବୋ ?

(ii) ଗାଁ ବାଲେ ବିଡ଼ିଓ କେ ଘେର୍‌ଉ କରିଛନ୍।

(iii) ତୁମର ଘରେ ନାଇଁନ କାଏଁ ବୋ ?

ଏହି ବହୁବଚନ ସୂଚକ 'ଏ' ପ୍ରତ୍ୟୟର ପ୍ରୟୋଗ ହିନ୍ଦୀ/ମରହଟ୍ଟୀ ଓ ବଙ୍ଗଳା ଭାଷାରେ ମଧ ଦେଖାଯାଏ। ଛାତେ/ଆଣ୍ଡେ ଇତ୍ୟାଦି ଏହାର ପ୍ରକୃଷ୍ଟ ଉଦାହରଣ।

(ଖ) 'ମାନେ ଶବ୍ଦର ବ୍ୟବହାର ସମ୍ବଲପୁରୀ ଭାଷାରେ ବହୁଳ ଭାବେ ଦେଖାଯାଏ। ଏହିଶବ୍ଦ ବହୁବଚନର ପ୍ରତ୍ୟୟ ରୂପେ ବ୍ୟବହୃତ ହୁଏ। ଛତିଶଗଡ଼ି ଭାଷ ରେ ଏହା 'ମନ୍' ପ୍ରତ୍ୟୟ

ରୂପରେ, ଆସାମି ଭାଷାରେ ଅବିକଳ 'ମାନେ' ରୂପରେ ଏବଂ ବଙ୍ଗଳା ଓ ବିହାରର କେତେକ ଉପଭାଷାରେ ଧ୍ୱନିଗତ ବିକୃତି ସହ 'ମାନେ' ଶବ୍ଦ ବ୍ୟବହୃତ ହୁଏ । ଏହିମାନେକୁ ଯୌଗିକ ବହୁବଚନ ଚିହ୍ନ ବୋଲି କୁହାଯାଇ ପାରେ ।

୬. ଦ୍ୱିରୁକ୍ତି ଦ୍ୱାରା ମଧ ବେଳେବେଳେ ବହୁବଚନ ପ୍ରକାଶିତ ହୋଇଥାଏ । ଯଥା :-

(କ) ଘରେଘରେ ପିଠାପନା ଚାଲିଛେ ।

(ଖ) ବଜାର୍ ବଜାର୍ ବୁଲିକରି ହାଟ୍ ବାଟ୍ କର୍ମି ।

(ଗ) ଇ ଗଛର ଫଲ୍ ଛୋଟ୍ ଛୋଟ୍ ହେଇଛେ ।

ଉପରୋକ୍ତ ତୃତୀୟ ବାକ୍ୟରେ ବିଶେଷଣର ଦ୍ୱିରୁକ୍ତିଦ୍ୱାରା ବହୁବଚନ ପ୍ରକାଶିତ ।

୭. ସମ୍ବଲପୁରୀ ଭାଷାରେ ଅନେକ ସମୟରେ ଦ୍ୱିବଚନର ବ୍ୟବହାର ଦେଖିବାକୁ ମିଳେ । ଯଥା

(କ) ସେତ ଦୁଇପାଖିଆ ଜଙ୍ଘ୍ଟେ ।

(ଖ) ଦୁଇମୁହାଁ ଶାଡ଼ୀଗୁଟେ ଘିନି ଆନ୍‌ବୁ ।

(ଗ) ଦୁଇଜୁତା ପାଏନ୍ ଆନ୍‌ବାକେ କେତେବେଲ୍ ଲଗାଲୁନ ।

(ଘ) କାଠ୍ ଫାଲ୍‌କେ ଦୁଇଫାଲ୍ କର୍‌ବାର ତାକତ୍ ନାଇଁନ ।

୮. ସଞ୍ଜ୍ଞାବାଚକ ବିଶେଷ୍ୟ ଗୋଟିଏ ଗୋଟିଏ ବ୍ୟକ୍ତିକୁ ବା ପଦାର୍ଥକୁ ବୁଝାଇଥାନ୍ତି, ଏଣୁ ଏମାନଙ୍କର ବହୁବଚନ ହୁଏନାହିଁ । ଯଥା :- ହରି, ମଧୁ, ଘନ, ଇସ୍କୁଲ ଇତ୍ୟାଦି । ମାତ୍ର ଗୋଟିଏ ନାମ ବା ସଞ୍ଜ୍ଞାଦ୍ୱାରା ଏକାଧିକ ବ୍ୟକ୍ତି ବା ପଦାର୍ଥକୁ ବୁଝାଇଲେ, ତାହା ବହୁବଚନ ହୁଏ । ଯଥା :-

(କ) ଆମର ଗାଁଥି ଦୁଇଟା ଇସ୍କୁଲ୍ ଅଛେ ।

(ଖ) ଇ ଇସ୍କୁଲେ ତିନ୍‌ଟା ହରି ଅଛନ୍ ।

୯. ଦ୍ରବ୍ୟ ବାଚକ ବିଶେଷ୍ୟ ସଂଖ୍ୟାକୁ ନ ବୁଝାଇ ପରିମାଣକୁ ବୁଝାଉଥିବାରୁ, ଏମାନଙ୍କର ବହୁବଚନ ହୁଏନାହିଁ । ଯଥା ସୁନା/ଲୁଗା/ପଥର୍ ଆଦି । କିନ୍ତୁ ଦ୍ରବ୍ୟମାନଙ୍କର ସଂଖ୍ୟା ବୁଝାଇଲେ, ଏମାନଙ୍କର ବହୁବଚନ ହୁଏ । ଯଥା :- ପାଞ୍ଚଟା ପଥର୍/ଦୁଇଖଣ୍ଡ ଲୁହା/ଦୁଇଭରି ସୁନା ।

୧୦. ବହୁତ୍ୱବୋଧକ ବିଶେଷଣରେ ବ୍ୟବହୃତ ବିଶେଷ୍ୟର, ବହୁବଚନ ଚିହ୍ନ ନଥାଏ । ଯଥା : ତିନ୍‌ଟା ଲୋକ/ଗୁର୍‌ଦୁ ଟଙ୍କା/ କେତ୍‌ନିକେତେ ମାଛ ।

୧୧. ଜୁଡ଼ି/ସାର୍/ଭାରେ, ଇତ୍ୟାଦି ଶବ୍ଦ ଏକବଚନରେ ବ୍ୟବହୃତ ହୁଏ । ଯଥା :-

(କ) ଭାରେ ପାଏନ୍‌କେ ଦୁଇଟଙ୍କା ଦାମ୍ ।

(ଖ) ବଲଦ୍ ଜୁଡି କେତେ ଟଙ୍କା ଦେଲୁ ?

(ଗ) ସାରେ ଲାଲି ଘିନି ଆନ୍‌ଲ ।

ଏହିଭଳି ଏକବଚନରେ ବ୍ୟବହୃତ ହେଉଥିବା ଅନ୍ୟାନ୍ୟ ଶବ୍ଦର ବହୁଳ ପ୍ରୟୋଗ ସମ୍ବଲପୁରୀ ଭାଷାରେ ଦେଖାଯାଇ ଥାଏ । ଯଥା :- ଥୁତେ/ମୁଠେ/ମୁନେ/ମାଳେ/ଅତେ/ଆଗୁ/କରେ ଇତ୍ୟାଦି ।

୧୨. କେତେକ ସର୍ବନାମ ବିଶେଷଣରେ ବ୍ୟବହାର ଦ୍ୱାର ବହୁବଚନ ସୂଚିତ ହୋଇଥାଏ । ଯଥା:- କେତେଲୋକ/ ସବ୍‌ମୁନୁଷ୍/ ସବୁ ଘର ଇତ୍ୟାଦି ।

୧୩. ଅନେକ ସ୍ଥଳରେ ସମ୍ବଲପୁରୀ ସଂଖ୍ୟାବାଚକ ଶବ୍ଦମାନ ଏକବଚନର ବ୍ୟବହୃତ ହୋଇଥାଏ । ଯଥା:- ତିନ୍‌ପଟ/ତିନ୍‌କୁଡ଼ି/ଛ'ସାର୍ ଇତ୍ୟାଦି ।

ଏଠାରେ ସମଷ୍ଟିବାଚକ ଶବ୍ଦମାନ ଏକବଚନରେ ପ୍ରକାଶ ହୋଇଥାଏ । ଉଦାହରଣ ସ୍ୱରୂପ - ଛ'ଅତା/ଆଠ୍‌ଭୁଗା/ନ'ପେଟା/ତିନ୍‌କେରା ଆଦି ।

୧୪. ସମ୍ବଲପୁରୀ ଭାଷାରେ 'ଗୋ' ଓ 'ବୋ' ବର୍ଣ୍ଣଦ୍ୱୟକୁ ପୃଥକ୍ ପୃଥକ୍ ବ୍ୟବହାର କରି, ପ୍ରତ୍ୟୟଟିକୁ ପ୍ରାୟ ଆଠପ୍ରକାର ପ୍ରୟୋଗ କରାଯାଇ ଏକବଚନରେ ପ୍ରକାଶ କରାଯାଇଥାଏ । ନିମ୍ନରେ କେବଳ 'ଗୋ' ବର୍ଣ୍ଣର ଉଦାହରଣ ଦିଆଗଲା ।

(କ) ସମ୍ବୋଧନାତ୍ମକ : କାହିଁ ଯାଉଛ ଗୋ ?

(ଖ) ବିସ୍ମୟ ସୂଚକ : ଦେଖତ ଗୋ କାଣା ଗୁଟେ ଯେ !

(ଗ) ନିର୍ଦ୍ଦେଶାତ୍ମକ : ସେଠାନ୍‌କେ ଯ ଗୋ ।

(ଘ) ବିରକ୍ତି ସୂଚକ : ଏନ୍ତାକଥା ନାଇଁ କହେବ ଗୋ ।

(ଙ) ପ୍ରଶ୍ନ ବାଚକ : କେନ୍‌କେ ଯାଇଥିଲ ଗୋ ?

(ଚ) ଅସ୍ତି ବାଚକ : ଇଟା ଗୁଟେଟ ଗୋ ।

(ଛ) ନାସ୍ତି ବାଚକ : ସେଟା ନୁହେଁ ସେ ଗୋ ।

(ଜ) ଅବେଗ ସୂଚକ : ଚାଲ ଗୋ ଚାଲ ମଯର ପଲେଇ ଯିବା ।

ଏହିଭଳି ଭାବରେ 'ବୋ'ର ବ୍ୟବହାର ମଧ ହେବ ।

୧୫. କୌଣସି ଏକ ଦ୍ୱିତୀୟ ପୁରୁଷକୁ ଉଦ୍ଦେଶ୍ୟକରି - ତାରି, ତା'ପରି ଦୁଇଜଣଙ୍କର ଓ ଅନେକ ବ୍ୟକ୍ତିଙ୍କର କାର୍ଯ୍ୟକଳାପ, ଚିନ୍ତା, ମାନସିକ ପ୍ରତିକ୍ରିୟା, ଅଭିବ୍ୟକ୍ତିତ ପ୍ରଭୃତିରେ ସଜ୍ଞାମୂଳକ ପରିପ୍ରକାଶ ପାଇଁ ଓ ବସ୍ତୁନିର୍ଦ୍ଦେଶାତ୍ମକ ପରିସ୍ଫୁଟନ ପାଇଁ ସହାର୍ଥ ବୋଧକ ବାକ୍ୟର ବ୍ୟବହାରରେ

'ଗୋ' ଓ 'ବୋ'ର ପ୍ରୟୋଗ କରାଯାଇ ଥାଏ । ଯଥା :-

(ଏକ ଦ୍ୱିତୀୟ ପୁରୁଷକୁ ଉଦ୍ଦେଶ୍ୟ କରି) (ସହାର୍ଥ ବୋଧକ ବାକ୍ୟ)

ପ୍ରଥମ ବାକ୍ୟ (୧) ତୁଇ ଜାନିଛୁ କାଏଁ ବୋ ସେମାନେ କାହିଁ ଗଲେ ଯେ ? (ଜଣକ ପାଇଁ ଉଦ୍ଦିଷ୍ଟ)।

ଦ୍ୱିତୀୟ ବାକ୍ୟ (୨) ହଏଗୋ, ସେମାନେ କହୁଥିଲେ ତାଙ୍କର ଘର୍‌କେ ଯିବାର ଲାଗି । (୨ଜଣ ପାଇଁ)

ତୃତୀୟ ବାକ୍ୟ (୩) ହଏବୋ ଦଦା, ତତେ କେତେକରି କହିଥିଲି ସେମାନଙ୍କର ପାଲେ ପତ୍‌ବୁ ନାହିଁ, ଫେର୍ ତାଙ୍କର କଥା ଶୁନ୍‌ଲୁ ! (୩ଜଣ କିମ୍ବା ଅଧିକ ଲୋକଙ୍କ ପାଇଁ)

ଚତୁର୍ଥ ବାକ୍ୟ (୪) କାଣା କର୍‌ମି ଗୋ, ତୁମ୍‌କୁ କହେଲି, ତାଙ୍କେ କହେଲି, ମୋର୍ କଥା କେଇଏ ନାଇଁ ଶୁନ୍‌ଲ, ଇହାଦେକା କାଣା କରୁଛ ଯେ କର ।

୧୬. ଅଭିସାର ବୋଧକ କୌଣସି ନିର୍ଦ୍ଦିଷ୍ଟ (ସଙ୍କେତ) କ୍ଷେତ୍ରକୁ ପହଞ୍ଚିବା ପାଇଁ, ସମ୍ବୋଧନର ଆବେଗକୁ ନେଇ, 'ଗୋ' ଓ 'ବୋ'ର ପ୍ରୟୋଗ :-

(କ) ଏକାନ୍ତ ଅଭିସାର : ମୋତେ ଭୁଲିନାଇଁ ଯାଅତ ଗୋ, ଆମର ଦେଖା ଇନେନ ହେବା, ଫେରଘାଏ ।

(ଖ) ସଙ୍କ୍ଷା ସୂଚକ ଅଭିସାର : ହଏଗୋ ନାନୀ, କଥା ଯେନ୍ତା ଆମର ଭିତ୍‌ରେ ରହେବା ।

(ଗ) ନିର୍ଦ୍ଦେଶ ଓ ଉଦ୍ଦେଶ୍ୟ ମୂଳକ ଅଭିସାର : ହଏଗୋ, ଇ କଥାଟା ମନେ ରଖିଥ, କାହାର୍‌ନେ କହେବ ନାଇଁ, ମୁଇଁ ଯେନ୍ତା କହିଲି ସେନ୍ତା କର୍‌ବ ।



# ସମ୍ବଲପୁରୀ ଭାଷା ଓ ସାହିତ୍ୟ ଏବଂ ଶ୍ରୀ ନରସିଂହ ପ୍ରସାଦ ଗୁରୁ

**ରାଧାଗୋବିନ୍ଦ ଦାସ**

ସମ୍ବଲପୁରୀ ଗୀତ କହିଲେ ଆଗେ ଲୋକେ ଘୃଣାରେ ନାସିକାକୁଞ୍ଚନ କରୁଥିଲେ । ପଶ୍ଚିମ ଓଡ଼ିଶାର ଲୋକପ୍ରିୟ ଡାଲଖାଇ, ରସରକେଲି, ମାଇଲା ଜଡ ଆଦି ରସରସିଆ ଗୀତଗୁଡ଼ିକ ସାଧାରଣତଃ ଅଶ୍ଳୀଳତା ଦୋଷରେ ଶିକ୍ଷିତ ଓ ସୁରୁଚି ସମ୍ପନ୍ନ ଲୋକଙ୍କ ଦ୍ୱାରା ସମାଲୋଚିତ ହୋଇଥିଲା । ତେଣୁ ଶ୍ରୀ ନରସିଂହ ପ୍ରସାଦ ଗୁରୁ ସମ୍ବଲପୁରୀ ଗୀତକୁ ପରିମାର୍ଜିତ ରୂପ ଦେଇ ସୁରୁଚି ସମ୍ପନ୍ନ କରିବା ପାଇଁ ମନୋନିବେଶ କଲେ । ଆଧ୍ୟାତ୍ମିକ ଭାବେଦ୍ୟୋତକ, ଭକ୍ତିମୂଳକ, ଦେଶାତ୍ମବୋଧ, ଉଦ୍‌ବୋଧନାମୂଳକ ତାଙ୍କର ଶତାଧିକ ସମ୍ବଲପୁରୀ ଗୀତ ୧୯୭୦ରୁ ଆକାଶବାଣୀ ସମ୍ବଲପୁର, କଟକ ଓ ଜୟପୁର କେନ୍ଦ୍ରରୁ ପ୍ରଚାରିତ ହେଉଅଛି । ଆକାଶବାଣୀର ସେ ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର ଭାବରେ ସମ୍ମାନିତ ହୋଇଛନ୍ତି ।

୧୯୭୫ରେ କବିଙ୍କର ପ୍ରଥମ ଗୀତିଗୁଚ୍ଛ 'କୁଆଁତାରା' ପ୍ରକାଶିତ ହୁଏ । ପଶ୍ଚିମ ଓଡ଼ିଶାର ପଲ୍ଲୀଜୀବନକୁ ଭିତ୍ତିକରି ସମ୍ବଲପୁରୀ ଭାଷାରେ ଏହି ପଲ୍ଲୀ ଗୀତଗୁଡ଼ିକ ରଚିତ । ଜନପ୍ରୀୟ ରାଗ ରାଗେଣୀରେ ସମ୍ବଲପୁର ଅଞ୍ଚଳର ପଲ୍ଲୀବାସୀଙ୍କର ହର୍ଷ, ବିଷାଦ, ଆନନ୍ଦ ଅଶ୍ରୁର ନିଖୁଣ ଚିତ୍ର ଏହି କବିତା ମାନଙ୍କରେ ସମାବେଶିତ ହୋଇଅଛି । କବିତା ମାନଙ୍କରେ ଶବ୍ଦବିନ୍ୟାସ, ଶବ୍ଦତା ବ୍ୟଞ୍ଜକତା, ରସପରିପୋଷକ ଓ ବର୍ଣ୍ଣନାଶୈଳୀ ଏକାନ୍ତ ରୁଚିକର ହୋଇଛି । 'କୁଆଁତାର ଉଇଁ ଆଏଲାନ' କବିତାଟି ହୋଇଛି ଅତ୍ୟନ୍ତ ହୃଦୟସ୍ପର୍ଶୀ । ଶୀତକାଳୀନ ପ୍ରଭାତ ଆଗମନର ସୂଚନା ଦେଇ କବି କୁକ୍କୁଟରବ ଠାରୁ ଆରମ୍ଭ କରି ପ୍ରଭାତକାଳୀନ ପଲ୍ଲୀଜୀବନର ନିଖୁଣ ଚିତ୍ର ଏଥିରେ ଅଙ୍କନ କରୁଛନ୍ତି । "ଆମେ ସଭେ ଗୁଟେ ଦେଶର ଛୁଆ" ଏକ ଦେଶାତ୍ମବୋଧକ ଗୀତ । କବିତାଟି ଆବେଗ ପରିପୋଷକ ଏବଂ ତାହା ବିଶ୍ୱଭାତୃତ୍ୱ ପ୍ରଚାର କରେ । "ମାଟିର ଭଗବାନ" କବିତାରେ ଉକ୍ତ ଅଭିଯୋଗର ଅଭାସ ମିଳେ । "ଗଜରା" କବିତାରେ ପଲ୍ଲୀ ଜୀବନର ଏକ ଜୀବନ୍ତ ଚିତ୍ର ପ୍ରତିଫଳିତ ହୋଇଛି । କବିଙ୍କର ଏହି ପ୍ରଥମ ସମ୍ବଲପୁରୀ କବିତା ପୁସ୍ତକ ଅତ୍ୟନ୍ତ ଲୋକପ୍ରିୟ

ହେବାରୁ ସେ ଉତ୍ସାହିତ ହୋଇ ୧୯୭୫ରେ ତାଙ୍କର ଦ୍ୱିତୀୟ ଗୀତିଗୁଚ୍ଛ "କୁରେ ଫୁଲର ଝୁଁପା" ପ୍ରକାଶ କଲେ ।

"କୁରେ ଫୁଲର ଝୁଁପା" କବିତା ପୁସ୍ତକରେ ଶ୍ରୀ ଗୁରୁଙ୍କର ସମ୍ବଲପୁର ଆକାଶବାଣୀରୁ ପ୍ରଚାରିତତ ୫୧ଟି କବିତା ସ୍ଥାନ ପାଇଛି । ଏହି କବିତା ଗୁଡ଼ିକରେ ପଲ୍ଲୀଜୀବନର ହର୍ଷ, ବିଷାଦ, ସୁଖ ଦୁଃଖର ଜୀବନ୍ତ ଚିତ୍ର ରସ ପ୍ରାଚୁର୍ଯ୍ୟର ମଧୁରତା ନେଇ ପ୍ରାଣବନ୍ତ ହୋଇ ପାରିଛି । ସହର ମଖାପେକ୍ଷୀ ଗ୍ରାମର ନୂତନ ବଂଶଧର ମାନଙ୍କ ଭିତରେ ମାଟି ପ୍ରତି ମମତା ଓ ଆକର୍ଷଣ ସୃଷ୍ଟି କରି ନୂତନ ପ୍ରେରଣାରେ ଇଙ୍ଗିତ ଏଥିରେ ପ୍ରଦାନ କରାଯାଇଛି । ଗ୍ରାମ୍ୟଜୀବନର ନିଖୁଣ ଚିତ୍ର ଯେପରି ଏଥିରେ ହୋଇଛି ତାହା ଅତ୍ୟନ୍ତ ବିରଳ । ତାଙ୍କର "ଗାଁ ଗଲିର ବାବୁ ହୋ", "ଭଲ୍‌କେ କହେଲେ ଭେଲୁଆଁ ଲାଗ୍‌ସି" ପ୍ରଭୃତି କବିତା ଗୁଡ଼ିକ ଯେପରି ହାସ୍ୟରସାତ୍ମକ ହୋଇଛି "ପଞ୍ଚ ଦେବତା ବନ୍ଦନା", "ହରିନାମ ପେଟ୍ ପୁରନୁ", "ଇ ମନ୍‌ଟା ବୃନ୍ଦାବନ୍" ପ୍ରଭୃତି କବିତା ଗୁଡ଼ିକ ହୋଇଛି ସେତିକି ଭକ୍ତିଭାବ ଉଦ୍ଦୀପକ । "ଇ ମାଟିର ଛୁଆ ଆମେଁ", "ସବୁ ଦେଶନୁ ସୁନ୍ଦର ଦେଶ" କବିତା ଦୁଇଟି ଅତି ଉଚ୍ଚ କୋଟିର ଦେଶାତ୍ମବୋଧକ ସଙ୍ଗୀତ । ଗ୍ରାମ୍ୟଜୀବନର ସରଳ ନିରାଡ଼ମ୍ବର ଓ ପ୍ରାକୃତିକ ଚିତ୍ରଣ କବିଙ୍କର ମାଟି ପ୍ରତି ମମତା ସୃଷ୍ଟି କରାଉଥିବ । କବିତାଗୁଡ଼ିକ ଅତ୍ୟନ୍ତ ସୁନ୍ଦର କରି ପାରିଛି । ପଶ୍ଚିମ ଓଡ଼ିଶାର ସୁପ୍ରସିଦ୍ଧ ଡାଲଖାଇ, ରସରକେଲି, ନଚନିଆ, ଦଣ୍ଡନାଟ, ଲୋକଧ୍ୱନି, ମାଏଲାଜଡ, ଆଦି ରାଗରେ ରଚିତ ଢ଼ାପଗୀତ, ମର୍ଦ୍ଦଳ ଗୀତ, କରମା ଗୀତ, ଦେଶାତ୍ମବୋଧକ ତଥା ଭକ୍ତିସଙ୍ଗୀତ ପ୍ରଭୃତି ଏହି କବିତା ଗୁଚ୍ଛରେ ସ୍ଥାନ ପାଇଛି । ଚିରାଚରିତ୍ର ଅଶ୍ଳୀଳତା କବଳରୁ ଡାଲଖାଇ, ରସରକେଲି, ମାଇଲାଜଡ, ଲୋକଧୁନ ତଥା ଦଣ୍ଡନାଟ ପ୍ରଭୃତିକୁ ମୁକ୍ତିକରି କବି ଶ୍ରୀ ଗୁରୁ ଏକ ନୂତନ ମାର୍ଗ ପ୍ରଦର୍ଶନରେ ସମର୍ଥ ହୋଇଛନ୍ତି । ତାଙ୍କ କବିତା ଗୁଡ଼ିକୁ ପାଠ କଲେ ମନେହେବ ଯେପରି ସମ୍ବଲପୁରୀ ଗୀତ ଏକ ଲମ୍ଫରେ ଆଧୁନିକ ଯୁଗରେ ପଦାର୍ପଣ କରିଛି ।

କବି ଶ୍ରୀ ଗୁରୁଙ୍କର ତୃତୀୟ କବିତା ଗୁଚ୍ଛ "ଢ଼ୋଲ୍ ମହୁରୀ"ର ପ୍ରକାଶକାଳ ୧୯୮୦ । ଆକାଶବାଣୀ ଓ ଟେଲିଭିଜନ ମାଧ୍ୟମରେ ବିଭିନ୍ନ ସମୟରେ ପ୍ରଚାରିତ ସମ୍ବଲପୁରୀ ଗୀତିଗୁଚ୍ଛ ମଧ୍ୟରୁ ୫୦ ଗୋଟି ଗୀତ ଏହି ସଂକଳନରେ ସ୍ଥାନ ପାଇଛି । "ଶିବ ବନ୍ଦନା", "ମାଁ ମାହେଶ୍ୱରୀ ଗୋ" ଓ "ମହାଲିଁଖୀ ଗୋ" ପ୍ରଭୃତି ଅତି ଉଚ୍ଚକୋଟୀର ଭକ୍ତି ସଂଗୀତ । "ରେ ଭୁଲାମନ କବିତାରେ ଚରମ ଜୀବନ ଦର୍ଶନ ପ୍ରତିଫଳିତ ହୋଇଛି । କବି ପାଠକ ଓ ଶ୍ରୋତା ମାନଙ୍କୁ ସଂସାର ଜାଲରେ ଆବଦ୍ଧ ନରଖି ଭଗବାନଙ୍କ ପ୍ରତି ଆକୃଷ୍ଟ ହେବାପାଇଁ ଆହ୍ୱାନ ଜଣାଇଛନ୍ତି । ଅନ୍ୟାନ୍ୟ

କବିତା ମଧ୍ୟରେ "ଆମେ ଦୁଇ ଆମର ଦୁଇ" କବିତାଟି ପରିବାର ଯୋଜନା ଉଦ୍ଦେଶ୍ୟରେ ଲିଖିତ ।

ଗୀତିଗୁଚ୍ଛ 'ଲବଙ୍ଗ ଲତା'ର ପ୍ରକାଶକାଳ ଅଗଷ୍ଟ ୧୯୮୨ । ଏଥିରେ ସନ୍ନିବେଶିତ ୩୦ ଗୋଟି ଗୀତ ଆକାଶବାଣୀ ସମ୍ବଲପୁର କେନ୍ଦ୍ରର ପ୍ରଚାରିତ ହୋଇଥିଲେ ମଧ୍ୟ କେତେକ ଆକାଶବାଣୀ କଟକ ଓ ଜୟପୁର କେନ୍ଦ୍ରରୁ ବିଭିନ୍ନ ସମୟରେ ପ୍ରଚାରିତ ହୋଇଛି । କଲିକତାର ଇଣ୍ଡିଆନ୍ ରେକର୍ଡ; କମ୍ପାନୀ । "ମନେ ମନେ କେତେ ହେଉଛି ଭାଲିରେ ମୋର୍ ଗଲାର ମଲୀ' ଦ୍ୱୈତ୍ୟ ସଙ୍ଗୀତଟିକୁ ରେକର୍ଡ କରିଛନ୍ତି ।

ଶ୍ରୀ ଗୁରୁଙ୍କର ବହୁମୁଖୀ କେବଳ ସମ୍ବଲପୁରୀ କବିତା ମଧ୍ୟରେ ସୀମିତ ରହିନାହିଁ । ସମ୍ବଲପୁରୀ ସାହିତ୍ୟକୁ ପୁଷ୍ଟ କରିବା ପାଇଁ ସେ ସୃଷ୍ଟି କରିଛନ୍ତି ଦୁଇଟି ଉପନ୍ୟାସ, ଦୁଇଟି ନାଟକ, ଅନେକ ପ୍ରବନ୍ଧ ଓ ଶିଶୁ ସାହିତ୍ୟ ପ୍ରଭୃତି । ତୁଳସୀ ଦୁଇ ପତ୍ରର ବାସିଲା ପରି ଶ୍ରୀଗୁରୁଙ୍କ ବହୁମୁଖୀ ପ୍ରତିଭା ଛାତ୍ରାବସ୍ଥାରୁ ବିକଶିତ ହୁଏ । କଲେଜ ଜୀବନର ଲିଖିତ କଳା ଓ ସଂସ୍କୃତି ସମ୍ପର୍କୀୟ ଅନେକ ପ୍ରବନ୍ଧ କଲିକତାର 'ଆସନ୍ତାକାଲି' ତଥା ବ୍ରହ୍ମପୁର (ଗଞ୍ଜାମ)ରୁ ପ୍ରକାଶିତ 'ସିନେ ଓଡ଼ିଶା'ରେ ପ୍ରକାଶିତ ହୋଇଛି ।

ତାଙ୍କ ସମ୍ବଲପୁରୀ ଗୀତ ପୁସ୍ତକାକାରେ ପ୍ରକାଶିତ ହେବା ଆଗରୁ ରାଜେନ୍ଦ୍ର କଲେଜର ମୁଖପତ୍ର 'ଉଦ୍‌ଯୋଗ' ଓ ସମ୍ବଲପୁରରୁ ପ୍ରକାଶିତ ସାହିତ୍ୟ ସଙ୍କଳନ 'ଅକ୍ଷର' ପ୍ରଭୃତିରେ ତାଙ୍କ ରଚିତ ସମ୍ବଲପୁରୀ କବିତାମାନ ପ୍ରକାଶିତ ହୋଇଛି । ତାଙ୍କ ପ୍ରଣୀତ 'ତୀର୍ଥମାଟି' ଏବଂ 'ମାଟି ଓ ଆକାଶ ଉପନ୍ୟାସ ଦୁଇଟି ଉଚ୍ଚକୋଟୀର । ଏହି ଉପନ୍ୟାସ ଦୁଇଟି ସମ୍ବଲପୁରୀ ଭାଷାରେ ଲେଖା ହୋଇ ନଥିଲେ ମଧ୍ୟ ସେଥିରେ ବହୁତ ସମ୍ବଲପୁରୀ ଶବ୍ଦ ବ୍ୟବହୃତ ହୋଇଛି । "ମାଟି ଓ ଆକାଶ" ଉପନ୍ୟାସର ଶେଷରେ ଉପନ୍ୟାସିକ ଶ୍ରୀ ଗୁରୁ ତାଙ୍କ ଦ୍ୱାରା ବ୍ୟବହୃତ ପ୍ରାୟ ତିନିଶହ ଟି ସମ୍ବଲପୁରୀ ଶବ୍ଦର ଅର୍ଥ ବର୍ଣ୍ଣନାନୁକ୍ରମିକ ଭାବରେ ପ୍ରଦାନ କରିଛନ୍ତି । କେବଳ ସମ୍ବଲପୁରୀ ଭାଷାରେ ଉପନ୍ୟାସ ଲେଖିବା ବର୍ତ୍ତମାନ ସମୟରେ ସମ୍ଭବ ନୁହେଁ । କୌଣସି ପ୍ରକାଶକ ନିଶ୍ଚୟ ସେଥିପାଇଁ ଆଗ୍ରହ ପ୍ରକାଶ କରିବ ନାହିଁ । ତେଣୁ ଶ୍ରୀଗୁରୁ ସମ୍ବଲପୁରୀ ଭାଷାରେ ଉପନ୍ୟାସ ନଲେଖି ପଶ୍ଚିମ ଓଡ଼ିଶାର ପଲ୍ଲୀଜୀବନ ଅବଲମ୍ବନରେ ଏବଂ ସମ୍ବଲପୁରୀ ଶବ୍ଦର ବହୁଳ ବ୍ୟବହାର କରି ଉପନ୍ୟାସ ଦୁଇଟି ସୃଷ୍ଟି କରିଛନ୍ତି ।

'ତୀର୍ଥମାଟି' ଓ 'ମାଟି ଓ ଆକାଶ' ଉପନ୍ୟାସ ଦୁଇଟିର ପ୍ରକାଶ କାଳ ଯଥାକ୍ରମେ ୧୯୬୫ ଓ ୧୯୭୯ । ଦ୍ୱିତୀୟ ଉପନ୍ୟାସଟି ରାଜ୍ୟ ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗରୁ ଅର୍ଥ ସାହାଯ୍ୟ ପାଇ ପ୍ରକାଶିତ ହୋଇଛି । ଉପନ୍ୟାସ ଦ୍ୱୟରେ ସେ ପଶ୍ଚିମ ଓଡ଼ିଶାର ଜନଜୀବନ,

ରୀତିନୀତି ଓ ସଂସ୍କୃତିର ଅପୂର୍ବ ବିନ୍ୟାସ କରିବା ସଙ୍ଗେ ସଙ୍ଗେ ପ୍ରଚଳିତ ଶତାଧିକ ମୌଳିକ ସମ୍ବଲପୁରୀ ଶବ୍ଦର ଉପଯୁକ୍ତ ପ୍ରୟୋଗ କରି ଓଡ଼ିଆ ଭାଷାକୁ ଶ୍ରୀମଣ୍ଡିତ କରି ପଶ୍ଚିମ ଓଡ଼ିଶାର ସମ୍ବଲପୁରୀ ଭାଷାଭାଷୀ ଲୋକଙ୍କ ସମାଜର ସାଫଲ୍ୟ ଚିତ୍ର ପ୍ରଦର୍ଶନ କରିଛନ୍ତି । ସାଂସ୍କୃତିକ ପରମ୍ପରା ବୁନିଆଦି ଏବଂ ଭାବ ବିନିମୟର ସ୍ୱତନ୍ତ୍ର ଶୈଳୀ ଭିତରେ ଥିବା ଐକ୍ୟର ନିଖୁଣ ଚିତ୍ର ଅଙ୍କନ କରିବାରେ ଅଭୁତପୂର୍ବ ଭାବରେ ସେ ସମର୍ଥ ହୋଇଛନ୍ତି । ନୀରବଚ୍ଛିନ୍ନ ହର୍ଷ ବିଷାଦ ଓ ଉତ୍ଥାନ ପତନ ଭିତରେ ସେ ପଶ୍ଚିମ ଓଡ଼ିଶାରେ ସାଂସ୍କୃତିକ ଜୀବନରେ ଯେଉଁ ଐକ୍ୟ ତାହା ଭଗବାନଙ୍କ ଆଶୀର୍ବାଦ ଭଳି ସର୍ବସାଧାରଣଙ୍କ ଶକ୍ତି ଓ ସାହାସ ଯୋଗାଇ ଆଗେଇ ନେବାରେ କିପରି ସାହାଯ୍ୟକ ତାହା ଲେଖକ ବିଭିନ୍ନ ଚରିତ୍ର ମାଧ୍ୟମରେ ପ୍ରକାଶ କରିବାରେ କୃତକାର୍ଯ୍ୟ ହୋଇଛନ୍ତି । "ମାଟି ଓ ଆକାଶରେ" ଆମରଣ ଜୀବନ ସଂଘର୍ଷରେ ଚ୍ୟତିବ୍ୟସ୍ତ ଚମାରୁ ଚରିତ୍ରକୁ ସାହିତ୍ୟ ସମ୍ରାଟ ପ୍ରେମଚାନ୍ଦଙ୍କ ଅମର ଉପନ୍ୟାସ 'ଗୋଦାନ'ର ହୋରି ସହିତ ତୁଳନା କରାଯାଇ ପାରେ ।

ଏହି ଉପନ୍ୟାସଟିକୁ ପଶ୍ଚିମାଞ୍ଚଳ ଓଡ଼ିଆ ସଂସ୍କୃତିର ମହାକାବ୍ୟ କୁହାଯାଇ ପାରେ । ସମ୍ବଲପୁରୀ ଭାଷାରେ ଲିଖିତ ଶ୍ରୀ ଗରୁଙ୍କର ଶିଶୁଗଳ୍ପ ଓ କବିତାଦି ଓଡ଼ିଶାରେ ବିଭିନ୍ନ ଶିଶୁ ସାହିତ୍ୟ ପତ୍ରିକାମାନଙ୍କରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଛି । ତନ୍ମଧ୍ୟରୁ 'ସରଗ୍ ପୁରୀର କଥା', 'ବଣ ରାଇଜ କଥା', 'ବୁଦ୍ଧି ଯାହାର ବଳ ତାହାର' । 'ଚାର୍‌କାନୁ ଛ କାନ୍' ତଥା 'ଆ ଜହ୍ନମାମୁଁ ସରଗ ଶଶୀ' ପ୍ରଭୃତି ଉଲ୍ଲେଖ ଯୋଗ୍ୟ ।

ଶ୍ରୀ ଗୁରୁ ଜଣେ କୃତି ଶିକ୍ଷକ ହୋଇଥିବାରୁ ସ୍କୁଲ ସମସ୍ୟା ଉପରେ ଆଧାରିତ କେତୋଟି ନାଟକ ଓ ନାଟିକା ରଚନା କରିଛନ୍ତି । ସ୍କୁଲ ସମସ୍ୟାକୁ ଭିତ୍ତି କରି ରଚିତ ବେତାର ନାଟିକା 'ସଫଳ ସୈନିକ' ୧୯୭୦ ମସିହାରେ ଆକାଶବାଣୀ ସମ୍ବଲପୁର କେନ୍ଦ୍ରରୁ ପ୍ରଚାରିତ ହୋଇଛି । ତାଙ୍କ ରଚିତ 'ଉତ୍ତର-ପୁରୁଷ' ନାଟିକା ମଧ୍ୟ ସ୍କୁଲ ସମସ୍ୟା ଉପରେ ଆଧାରିତ । ଏହି ନାଟିକାଟି ୧୯୭୩ ମସିହାରେ ଅନୁଷ୍ଠିତ ଜିଲ୍ଲାସ୍ତରୀୟ ନାଟକ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ଲାଭ କରିଥିଲା । ନାଟିକାର ପାଞ୍ଚଗୋଟି ଚରିତ୍ର ମଧ୍ୟରୁ ଗ୍ରାମ୍ୟ କୃଷକ ତାର ସମସ୍ତ ବକ୍ତବ୍ୟ ସମ୍ବଲପୁରୀ ଭାଷାରେ କରିଥିବାରୁ ନାଟିକାଟି ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଛି ।

ତାଙ୍କର ପ୍ରକାଶିତ ଅନେକ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଛି । ଏହି ପ୍ରବନ୍ଧ ଗୁଡ଼ିକ ତାଙ୍କୁ ସଫଳ ପ୍ରାବନ୍ଧିକର ସମ୍ମାନ ଦେବାରେ ସମର୍ଥ ହୋଇଛି । ତନ୍ମଧ୍ୟରେ 'ପଶ୍ଚିମ ଓଡ଼ିଶାର ଲୋକନୃତ୍ୟ', 'ପଶ୍ଚିମ ଓଡ଼ିଶାର ଲୋକଗୀତ', 'ସମ୍ବଲପୁରୀ ଶବ୍ଦାବଳୀର ଆଳଙ୍କାରିକ ପ୍ରୟୋଗ', 'ସାହିତ୍ୟ କଳା କୀର୍ତ୍ତି ମଞ୍ଜୁଳ ବଲାଙ୍ଗିରୀର', 'ବଲାଙ୍ଗିର

ଜିଲ୍ଲାର ଲୋକନୃତ୍ୟ ଓ ଗୀତ', 'ବିଧୁଭୂଷଣ କୁରୁ' ଓ 'ଶୁଳଖା ଯାତ୍ରା' ପ୍ରଭୃତି ଉଲ୍ଲେଖଯୋଗ୍ୟ।

ଶ୍ରୀଗୁରୁଙ୍କର ପ୍ରକାଶିତ ଗ୍ରନ୍ଥ 'ସମ୍ବଲପୁରୀ ଢ଼ଗ-ଢ଼ମାଳି ଓ ପ୍ରବଚନ', 'ସମ୍ବଲପୁରୀ ଭାଷା ଓ ସଂସ୍କୃତି' ଏବଂ 'ଶତାବ୍ଦୀର ଆର୍ତ୍ତନାଦ' ପ୍ରଭୃତି ଖୁବ୍ ଶୀଘ୍ର ପ୍ରକାଶିତ ହେବବୋଲି ଆଶା କରାଯାଏ। ସମ୍ବଲପୁରୀ ଭାଷା ଓ ସାହିତ୍ୟକୁ ଶ୍ରୀ ଗୁରୁଙ୍କର ଅବଦାନ ଅତ୍ୟନ୍ତ ପ୍ରଶଂସନୀୟ। ଓଡ଼ିଆ ସାହିତ୍ୟରେ ଉପଯୁକ୍ତ ସମ୍ବଲପୁରୀ ଶବ୍ଦର ବ୍ୟବହାର ପାଇଁ ଶ୍ରୀଗୁରୁ ଅତ୍ୟନ୍ତ ଆଗ୍ରହୀ। ପଶ୍ଚିମ ଓଡ଼ିଶାରେ ଚୈତନ୍ୟ ଦାସ, ଭୀମଭୋଇ, ପ୍ରହ୍ଲାଦ ଦୁବେ, ଗଙ୍ଗାଧର ମିଶ୍ର ଓ ଗଙ୍ଗାଧର ମେହେର ପ୍ରଭୃତି ବହୁ ପଣ୍ଡିତ ଓ କବି ଅତୀତରେ ଜନ୍ମଲାଭ କରି ଆମ ସାହିତ୍ୟକୁ ଉନ୍ନତ ଓ ପରିପୁଷ୍ଟ କରିଅଛନ୍ତି। କିନ୍ତୁ ସେମାନେ କେହି ସମ୍ବଲପୁରୀ ଶବ୍ଦ ପ୍ରୟୋଗ ଦିଗରେ ସଚେଷ୍ଟ ହୋଇ ନାହାନ୍ତି। କବିକୂଳ ତିଳକ ଗଙ୍ଗାଧର ମେହେର 'ଟାକି ଟାକି', 'ନିଛି' ପ୍ରଭୃତି ଅତି ଅଳ୍ପ କେତୋଟି ସମ୍ବଲପୁରୀ ଶବ୍ଦ ତାଙ୍କର କାବ୍ୟ କବିତା ମାନଙ୍କରେ ବ୍ୟବହାର କରିଛନ୍ତି। ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଯଥେଷ୍ଟ ସମ୍ବଲପୁରୀ ଶବ୍ଦର ଅର୍ଥ ପ୍ରଦତ୍ତ ହୋଇନାହିଁ। ମାତ୍ର ଶ୍ରୀଗୁରୁ ତାଙ୍କ ପ୍ରଣୀତ ସାହିତ୍ୟରେ ସମ୍ବଲପୁରୀ ଭାଷା ଓ ଶବ୍ଦର ବହୁଳ ବ୍ୟବହାର କରି ସମ୍ବଲପୁରୀ ଭାଷା ଓ ସାହିତ୍ୟର ଜଣେ ନିଷ୍ଠାପର ପୃଷ୍ଠପୋଷକ ହୋଇଛନ୍ତି। ତାଙ୍କର ବଳିଷ୍ଠ ଲେଖନୀରୁ ଭବିଷ୍ୟତରେ ଆହୁରି ଅଧିକ ସୁସାହିତ୍ୟ ସୃଷ୍ଟି ହେବ ଏଥିରେ ସନ୍ଦେହ ନାହିଁ।



# ସମ୍ବଲପୁରୀ ଲୋକଗୀତରେ ସୌନ୍ଦର୍ଯ୍ୟ ଚେତନା ତଥା ଗୀତିଧର୍ମ

ଡ଼. ଆଦିକନ୍ଦ ସାହୁ

ସମ୍ବଲପୁରୀ ଲୋକ ଗୀତରେ ବସ୍ତୁତଃ ଏକ ମହତ୍ତର ବ୍ୟଞ୍ଜନା ମାତ୍ର ଯେ ଅଛି ତାହାନୁହେଁ, ବରଂ ରହିଛି ଏକ ଅନନ୍ୟ ସାଙ୍ଗୀତିକତାର ଗୁଣ । ଏହି ସାଙ୍ଗୀତିକତାର ଗୁଣ (Sonic Value) ସମ୍ବଲପୁରୀ ଲୋକଗୀତର ଅନ୍ୟତମ ମୌଳିକ ବୈଶିଷ୍ଟ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ସାହିତ୍ୟ ଯେ ସଙ୍ଗୀତ ସମନ୍ୱିତ ହେଲେ ଅଧିକ ହୃଦ୍ୟ ଓ ସ୍ୱାଦ୍ୟ ହୋଇପାରେ, ତା'ର ଅତ୍ୟନ୍ତ ସଫଳ ଓ ଚମତ୍କାର ନମୂନା ହେଉଛି ପ୍ରକୃତରେ ସମ୍ବଲପୁରୀ ଲୋକଗୀତ । ବିଭିନ୍ନ ପ୍ରକାରର ସମ୍ବଲପୁରୀ ଲୋକଗୀତ ରହିଛି । ଏହି ଗୀତର ଲାଳିତ୍ୟ ଅତ୍ୟନ୍ତ ପ୍ରାଣସ୍ପର୍ଶୀ । ରସରକେଲୀ ଓ ଡାଲଖାଇ ପ୍ରଭୃତି କେତେକ ସମ୍ବଲପୁରୀ ଗୀତର ସାହିତ୍ୟିକ ତଥା ସାଙ୍ଗୀତିକ ମୂଲ୍ୟ ଯେ ଅତୁଳନୀୟ ଏହା ନିଃସନ୍ଦେହରେ କୁହାଯାଇ ପାରେ । ଲୋକଗୀତର ବ୍ୟଞ୍ଜନା ମଣିଷର ରସଚେତନାକୁ ନିବିଡ଼ ଭାବରେ ସ୍ପର୍ଶକରେ । ଲୋକଗୀତ ପ୍ରକୃତରେ ଗ୍ରାହସ୍ଥ୍ୟର ସଙ୍ଗୀତ । ସନ୍ୟାସୀର ଗୀତ ନୁହେଁ (୧) ସମ୍ବଲପୁରୀ ଲୋକଗୀତରେ ଏକ ରସ ନିବିଡ଼ ଅନୁଭୂତିର ଆନ୍ତରିକ ଅଭିବ୍ୟକ୍ତି ଦେଖିବାକୁ ମିଳେ । ଆଦିମ ଜୀବନର ଉଦ୍ଦିପ୍ତ ଅନୁଭବ ମଧ ରସୋଜ୍ଜ୍ୱଳ ଅଭିବ୍ୟକ୍ତି ଭିତରେ ଚମତ୍କାର ସାହିତ୍ୟିକ ବ୍ୟଞ୍ଜନା ସୃଷ୍ଟି କରିଛି । ଡାଲଖାଇର 'ନାନା ରକମେ ଗୀତ ଗାଇଲେ ନାନା ରକମେ ଗୀତ ଗାଇ/ ଡୁଲ କୁଦ୍ ଅଁରେ ରହିଲା ଡୁଲକୁଦୁ ଅଛେଁ/ ଏତେ ରଜାର ଝିଅ ହୋଇ କାଁଏ ଏତେ ରଜାର ଗେହ୍ଲେଇ ହେଇ/ କି ଗୀତ ଗାଉଛେରେ ରଇଲାକି ନାଚ ନାଚ଼ରେଁ/ ଡାଣ୍ଡରେ ନାଚୁଛେ ଝିଅ କାଏଁ ଡୁଲକୁଦୁ ଅଛେଁ ।" ଆଦି ଧାଡ଼ି ଗୁଡ଼ିକ ଭିତରେ ସେହି ସଂସାରର ନିବିଡ଼ ଗୃହକର୍ମର ମନୋଭାବ ଚିହ୍ନିତ । ଗୀତ ସହିତ ନୃତ୍ୟ ବିଶେଷ ଭାବେ ସମନ୍ୱିତ ହୋଇ ଏକ ଅପୂର୍ବ ପ୍ରଭାବ ସୃଷ୍ଟି କରିଥାଏ । ଏହାହିଁ ସାମଗ୍ରିକ ଭାବେ ସମ୍ବଲପୁରୀ ଲୋକଗୀତର ବୈଶିଷ୍ଟ୍ୟ । ସମାଜ ବିବର୍ଜ୍ଜିତ କୌଣସି ଅନୁଚିନ୍ତା ଉଦ୍‌ବର୍ତ୍ତିତ ଭାବବେଗର ଆବେଗିକ ପାରିପୂର୍ଯ୍ୟ (Emotional Introspective) ଭିତରେ ସାଧାରଣତଃ ସମ୍ବଲପୁରୀ ଲୋକଗୀତରେ ଏକାନ୍ତ ଆନ୍ତରିକ

୧. ଡ଼ଃ କୁଞ୍ଜବିହାରୀ ଦାଶ, ଓଡ଼ିଆ ଲୋକଗୀତ ଓ କାହାଣୀ, ବିଶ୍ୱଭାରତୀ, ଶାନ୍ତିନିକେତନ ୧୯୫୮ ।

ଅଭିବ୍ୟକ୍ତି ଲାଭ କରିଥାଏ । ସମ୍ବଲପୁରୀ ଲୋକଗୀତ ବରଂ ଲୋକର ବ୍ୟାବହାରିକ ପୃଥିବୀର ପରିଚିତ ଅନୁଭୂତିର ଗୀତ, ଯାହା ପ୍ରାଣକୁ ଅତି ସହଜରେ ସ୍ପର୍ଶକରେ ।

ସମ୍ବଲପୁରୀ ଲୋକଗୀତରେ ନରନାରୀ ସଂଳାପ ଭିତରେ ଯେଉଁ ଆଦିମ ଯୌନ ଇଙ୍ଗିତ ରହିଛି, ତାହା ବସ୍ତୁତଃ ଉଲଗ୍ନ ଅଶ୍ଳୀଳତା ନୁହେଁ; ବରଂ ତାର ଏକ ବିଶେଷ ସୌନ୍ଦର୍ଯ୍ୟ ତାତ୍ତ୍ୱିକ ମୂଲ୍ୟ ରହିଛି । ରାଧାକୃଷ୍ଣ ଈଶ୍ୱରପାର୍ବତୀ ଅବା ରାମସୀତାର ଜୀବନ ଆଙ୍ଗିକରେ ସମ୍ବଲପୁରୀର କେତେକାଂଶ ଲୋକଗୀତ ରଚିତ ହୋଇଛି । ସମ୍ବଲପୁରୀ ଲୋକଗୀତରେ ମଧ ଏ ନୃତାତ୍ତ୍ୱିକ ବିଶ୍ଳେଷଣ (Anthropocentric discourse) ପରିଲକ୍ଷିତ ହୁଏ । ନିମ୍ନୋକ୍ତ ଗୀତରେ ସୃଷ୍ଟିତତ୍ତ୍ୱର ବ୍ୟାଖ୍ୟା ହୋଇଛି । ଯଥା - 'ସର୍ଗ ମଞ୍ଚ ପାତାଳପୁର ଯେତେଥିଲେ ଦେବୀ-ଦେବତା/ ବରଣ ତ କଲେ ନାରଦ ଗୁଁଡାକିତ ଦେଲେ/ଶୂନ୍ୟ ଶୂନ୍ୟ କି ମହାଶୂନ୍ୟ ଗୋ ଶୂନ୍ୟ ଶୂନ୍ୟ ମହାଶୂନ୍ୟ/ ଶୂନ୍ୟ କିତଥିଲେ ପୁରଥୀ ଗୋ ଶୂନ୍ୟ କିତ ଥିଲା, / ନଥିଲେରେ ଗୋତ ଚନ୍ଦ୍ର ସୂର୍ଯ୍ୟ ଗୋ ନଥିଲେ ମୋର ଦିବାକର / ଜଳମଧ୍ୟେ ଥିଲା ଗୋ ପୁରଥୀ କାଏଁ ଜଳମଧ୍ୟେ ଥିଲା/ ଅଣାକର ଯେ ପ୍ରଭୁ ତହିଁ ଗୋ ନିରାକାର ଯେ ପ୍ରଭୁ ତହିଁ/ ଶୂନ୍ୟେ ଆସନ କରିଥିଲେ/ ସୃଷ୍ଟି କରିମି ବଇଲେ ଗୋ ସୃଷ୍ଟିତ କରିଥିଲେ ।'

ସମ୍ବଲପୁରୀ ଲୋକଗୀତରେ ଲୋକକବିର ଜୀବନର ବହୁବିଧ ଅଭିଜ୍ଞତା ଲେଖାଯାଇଛି । ସେ ସବୁଗୀତ ମାନଙ୍କରେ ବ୍ୟକ୍ତି ଅନୁଭବର ସ୍ୱର ଅପେକ୍ଷା ନିଖିଳର ଅନୁଭବ ଅଧିକ ସମୁଚ୍ଚ ଅଭିବ୍ୟକ୍ତି ଲାଭ କରିଛି । ଏହି ଗୀତର ଭାବ ଆବେଦନ ଏକାନ୍ତ ବ୍ୟକ୍ତିନିଷ୍ଠ ମନେହେଲେ ହେଁ ଏହାର ବିନ୍ୟାସଗତ ରୂପ ଓ ଗୁଣ ବହୁଭାବରେ ବସ୍ତୁନିଷ୍ଠ । ବ୍ୟକ୍ତିର ସମସ୍ତ ଅନୁଭବ ଗୋଷ୍ଠୀ ଚେତନାରେ ବରଂ ଅଧିକ ପ୍ରସାରିତ ଅଭିବ୍ୟକ୍ତି ଲାଭ କରିଛି । ଆଲୋଚିତ ଲୋକଗୀତରେ ଭାଗବତ ଉପଲବ୍ଧି ଏକାନ୍ତ ଉତ୍ସର୍ଗୀକୃତ ବିଭୁ ଚେତନା ପ୍ରକୃତି ପ୍ରୀତି, ପରଂପରା ପ୍ରତି ଶ୍ରଦ୍ଧା ଓ ସମ୍ମାନ ବୋଧ ଦେଶାତ୍ମକତା ଆଦି ବହୁ ବିଷୟ ଚମତ୍କାର ତର୍କଣା ଭିତରେ ଅଭିବ୍ୟକ୍ତି ଲାଭ କରିଅଛି । ଏହି ଦୃଷ୍ଟିରୁ ନିର୍ଦ୍ଦିଷ୍ଟ ଭାବେ ବିଚାର କଲେ ସମ୍ବଲପୁରୀ ଗୀତର ଏକ ବିଶେଷ ସାଙ୍ଗୀତିକ ତଥା ସୌନ୍ଦର୍ଯ୍ୟ ତାତ୍ତ୍ୱିକ ବୈଶିଷ୍ଟ୍ୟ ରହିଛି । ସମ୍ବଲପୁରୀ ଲୋକଗୀତରେ ସଙ୍ଗୀତ (Music) ଧ୍ୱନୀ (Sound) ଯତି (Alliteration) ଛାନ୍ଦ (Rhythm) ଆଦି ବହୁ ଉପାଦାନର ବୈଜ୍ଞାନିକ ବିଶ୍ଳେଷଣ ଏଯାବତ୍ ହୋଇନଥିଲେ ହେଁ ସମ୍ବଲପୁରୀ ଲୋକଗୀତରେ ସାମଗ୍ରିକ ପ୍ରଭାବକୁ ତଥା ତାର ସାଙ୍ଗୀତିକ ମାଧୁର୍ଯ୍ୟକୁ କେହି ଅସ୍ୱୀକାର କରିପାରିବେ ନାହିଁ ଲୋକର ଆଞ୍ଚଳିକ ବିଶ୍ୱାସ ଓ ବୈଶିଷ୍ଟ୍ୟ ମଧ ଆଲୋଚିତ ଲୋକଗୀତରେ ଅନ୍ୟତମ ପ୍ରତିପାଦନ । ସମ୍ବଲପୁରୀ

ଲୋକଗୀତରେ ଏକ କୃଷି ଭିତ୍ତିକ ସମାଜର ଅବସ୍ଥା ଓ ତାର ମୂଲ୍ୟବୋଧ ପ୍ରଦତ୍ତ ହୋଇଛି । ଅତ୍ୟଧିକ କଳ୍ପନା ଅପେକ୍ଷା ଅଧିକ ବାସ୍ତବତାର ଚିତ୍ର ଦ୍ୱାରା ଆଲୋଚିତ ଲୋକଗୀତ ଗୁଡ଼ିକ ବେଶୀ ପୃଷ୍ଟ ଓ ପ୍ରସାରିତ ହୋଇଅଛି । ନରନାରୀ ମଧ୍ୟରେ ବିରହ-ମିଳନର ତୀବ୍ରତର ଅନୁଭୂତି ମଧ୍ୟ ଅତି ବିସ୍ତୃତଭାବେ ଏହି ଲୋକଗୀତ ଗୁଡ଼ିକରେ ବର୍ଣ୍ଣିତ ହୋଇଅଛି ।

ସମ୍ବଲପୁରୀ ଲୋକଗୀତରେ ଯେଉଁ ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଅଭିବ୍ୟଞ୍ଜନା ରହିଛି, ତାହା ସମ୍ବଲପୁରୀ ଗୀତର ବିଶେଷ ସ୍ୱର ମାଧୁର୍ଯ୍ୟ ଭିତରେ ସାଙ୍ଗୀତିକତା ସମନ୍ୱୟ ହୋଇ ଅଭିବ୍ୟକ୍ତି ଲାଭ କରିଥିବାରୁ ତାହା ବହୁଳ ଭାବରେ ସମସ୍ତଙ୍କ ଦ୍ୱାରା ହୃଦ୍ୟ ହୋଇଥାଏ । ଉଚ୍ଚଶିକ୍ଷିତ ମାନେ ମଧ୍ୟ ଏହି ଲୋକଗୀତର ସଙ୍ଗୀତ ଦ୍ୱାରା ପ୍ରଲୋଭିତ ହୋଇଥାନ୍ତି । ନୂତନତାର ବିଶ୍ୱାସ କରୁଥିବା ବ୍ୟକ୍ତି ମାତ୍ର ବି ଏହି ମାନବୀୟ ଭାବଆଦର୍ଶ ଉପରେ ଆଧାରିତ ଲୋକଗୀତ ଦ୍ୱାରା ମଧ୍ୟ ଉଦ୍‌ବୋଧିତ ହୋଇଥାନ୍ତି ଲୋକର ପ୍ରଚଳିତ ବିଶ୍ୱାସକୁ ବିଶେଷ ଭାବେ ଅନୁମତି ଦେଇଥିବା ଏହି ଲୋକଗୀତ ଗୁଡ଼ିକ ଗୋଟିଏ ଭୌଗୋଳିକ ସୀମା ଭିତରେ ସମାନ ଆବେଦନ ଗ୍ରହଣ କରିଥାଏ । ସମ୍ବଲପୁରୀ ଭାଷାର କେତେକ ଲୋକଗୀତର ବିଷୟବସ୍ତୁ (ଦିଗ) ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳର ପ୍ରଚଳିତ ଲୋକଗୀତର ବିଷୟବସ୍ତୁ ସହିତ ପ୍ରାୟ ସମାନ । ଏକ ପ୍ରକାର ଧ୍ୱନି ଗର୍ଭିତ ଭାଷା ଶୈଳୀ ହିଁ ସମ୍ବଲପୁରୀ ଲୋକଗୀତର ଏକ ବିଶେଷ ସ୍ୱାତନ୍ତ୍ର୍ୟକୁ ଚିହ୍ନିତ କରିଥାଏ । ଉଦାହରଣ ସ୍ୱରୂପ "ସିନ୍ଦୁର ଫରୁଆ ଗୋଟି କୁଆ ଚେଡ଼ିପୋ ନେଲା/ କୁଆ ଚେଡ଼ିପୋ ହାତ ଗୋଡ଼ ଦେଉଳ ତୋଳାଇଲା/ ଦେଉଳର ଚାରିପଟେ କଉଡି ଗଣାଇଲା/ କଉଡିର କଡ଼େ ଉଣା ହେବାକରୁ ମଇଁଷି ବିକେଇଲା/ ମଇଁଷିର ନାଁ କଣ ନା ଭୁଣ୍ଡା ଓଲେଇ/ ବାପ ମା ଯାଇଛନ୍ତି କନିଆଁ ମୁଲେଇ/ କନିଆଁର ବଳା ଦି ମୁଠି ଝୁମ୍ପୁରୁ ଝୁମ୍ପୁରୁ ବାଜେ ବରର ପଇତା ବି ତାର ଦୁଇହାତକୁ ସାଜେ" ଆଦି ଏକ ଲୋକଗୀତର ଧାଡ଼ି ଗୁଡ଼ିକ ବାଲେଶ୍ୱରରେ ଯାହା ପ୍ରଚଳିତ ସେହି ଅନୁରୂପ ଚିତ୍ରଥାଇ ସମ୍ବଲପୁରର ନିମ୍ନୋକ୍ତ ଗୀତଟି ଏକ ବିଶେଷ ଧ୍ୱନି । ପ୍ରବାହମାନତା ଭିତରେ ଅଧିକ ସରସ ହୋଇଛି । ସମ୍ବଲପୁରୀର ଲୋକଗୀତଟି ଏହିପରି "ରଅ ରଅରେ ଛେଲିଏନ ଟୁରୀ ତେତୋ ବିଭା କରମୁ/ କଉଡି ପଟେ ପାଇତୁ ହେଲେ ମଏଁଷ ପଟେ କିନତୁ/ ମଏଁଷର ନାଁ କାଏଁନାରେ ଭଲାଉ ଦୁଲାଇ/ ମାଆ ପୋ - ଯାଇଛନ୍ କନିଆ ମୁଲାଇ/ କନିଆ ଟୁକୁଲୀର ମାଟି ଚୁରକି ଝୁମ୍ ଝୁମ୍ ବାଜେ/ ବର ପିଲାର ଗୁଆ ପଇତା ଲଶଲ ମୁକୁଟ ସାଜେ ।" ସମ୍ବଲପୁରୀ ଲୋକଗୀତର ଯେଉଁ ବିଶେଷ ସାଙ୍ଗୀତିକତାର ଗୁଣ ଓ ତାର ପ୍ରକାଶ ଲୋକଗୀତର ଉଭୟ ଭାବ ଓ ଭାଷାରେ ପ୍ରକଟିତ । ଏକ ବିଶେଷ ଛନ୍ଦପାଦ ଓ ସ୍ୱରାଘାତ ଭିତରେ ସମ୍ବଲପୁରୀ ଗୀତରେ କବି ଆତ୍ମା

ଅତ୍ୟନ୍ତ ରସନିବିଡ଼ ତଥା ଆନ୍ତରିକ ଅଭିବ୍ୟକ୍ତି ଲାଭ କରିଛି । ସେ ଲୋକକବି ହେଉଛି ସାଧାରଣ ଲୋକ। ପ୍ରାଣର ଗଭୀର ଅବବୋଧ ନାନା ପ୍ରତୀକ ଚିତ୍ର ସାହାଯ୍ୟରେ ସମ୍ବଲପୁରୀ ଗୀତମାନଙ୍କରେ ପରିଦୃଷ୍ଟ ହୁଏ । ସାଂପ୍ରତିକ ଓଡ଼ିଆ ସାହିତ୍ୟ ବିଶେଷତଃ କବିତା ବିଶେଷ ଭାବେ ସଙ୍ଗୀତ ବିବର୍ଜିତ ହୋଇଛି । କିନ୍ତୁ ସମ୍ବଲପୁରୀ ଲୋକଗୀତ କେତେବେଳେ ବି ସଙ୍ଗୀତ ବିବର୍ଜିତ ନୁହେଁ । ସେଥିପାଇଁ ମଧ୍ୟଯୁଗୀୟ ସାହିତ୍ୟ ଅଧିକ ଲୋକପ୍ରିୟ ଓ ହୃଦ୍ୟହେବା କାରଣ ଯାହା ସେହି କାରଣ ପରିପୂର୍ଣ୍ଣ ଭାବେ ସମ୍ବଲପୁରୀ ଗୀତରେ ପରିଦୃଷ୍ଟ ହୁଏ । ସମ୍ବଲପୁରୀ ଭାଷାର କେବଳ ବାକ୍‌ଭଙ୍ଗୀ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳଠାରୁ ଭିନ୍ନ ଏବଂ ଏହି ଭିନ୍ନତା ହିଁ ସମ୍ବଲପୁରୀ ଲୋକଗୀତର ଅନ୍ୟତମ ବୈଶିଷ୍ଟ୍ୟ । ସମ୍ବଲପୁରୀ ଲୋକଗୀତର ଭାଷାକୁ ମୁଖ୍ୟତଃ ଛନ୍ଦ ଓ ସଙ୍ଗୀତପ୍ରଧାନ । ସମ୍ବଲପୁରୀ ଲୋକଗୀତର ଭାଷାକୁ ମୁଖ୍ୟତଃ ଛନ୍ଦପ୍ରଧାନ ଭାଷା ଏହି ଛନ୍ଦପ୍ରଧାନକୁ ବାଦ୍‌ଦେଲେ ଅବଶିଷ୍ଟାଂଶ ଯାହା ବାକିରହେ, ତାହା ହୁଏତ ସେତେ ଉତ୍‌କୃଷ୍ଟ ଧାଡ଼ିର ବ୍ୟଞ୍ଜିତ ଗୁଣଯୁକ୍ତ ହୋଇପାରି ନଥାଏ । ପରବର୍ତ୍ତିତ ସମୟ ଓ ସଭ୍ୟତାରେ ସମ୍ବଲପୁରୀ ଲୋକଗୀତର ମହତ୍ତ୍ୱ କ୍ରମେ ବିଭିନ୍ନ କାରଣରୁ ହ୍ରାସ ପାଉଅଛି ଯାହା ହୁଏତ ବହୁ କାରଣରୁ ସ୍ୱାଭାବିକ । (୨)

ସମ୍ବଲପୁରୀ ଲୋକଗୀତ ଚିତ୍ତବିନୋଦନ ପାଇଁ କେବଳ ଉଦ୍ଦିଷ୍ଟ ନୁହେଁ ଲୋକର ସାମାଜିକ ଦାୟିତ୍ୱ ଆଧାତ୍ମିକ ଅଭିଲିପ୍‌ସା ବ୍ୟକ୍ତି ଜୀବନର ନୈତିକ ଶୁଦ୍ଧତା ପରି ପୂରଣ ଦିଗରେ ଏହାର ନିଶ୍ଚିତ ଓ ନିର୍ଦ୍ଦିଷ୍ଟ ଭୂମିକା ରହିଛି । ବୌଦ୍ଧିକସାହିତ୍ୟ ବା ବିଦଗ୍ଧ ସାହିତ୍ୟ ଅପେକ୍ଷା ଲୋକଗୀତରେ ଏହି ଦିଗଟି ଅଧିକ ଉଜ୍ଜ୍ୱଳ । ଲୋକଗୀତରେ ଲୋକର ସହଜ ଓ ସରଳ ମନର ପ୍ରକାଶ ହିଁ ହୋଇଥାଏ । ଏହା ଅକୃତ୍ରିମ ସୌନ୍ଦର୍ଯ୍ୟର ବିଷୟ । ଲୋକଗୀତର ମହତ୍ତ୍ୱ ପ୍ରତିପାଦନ କରି ପେଟରସନ୍ କହନ୍ତି - ବିଦଗ୍ଧ ସାହିତ୍ୟ ଭିତରେ କବି ପ୍ରାଣର ଅକୃତ୍ରିମ ପ୍ରକାଶ ହୋଇପାରେ ନାହିଁ ବରଂ ହୋଇଥାଏ ଲୋକସାହିତ୍ୟରେ । (୩) ଫ୍ରେଜରଙ୍କ 'Golden Bough' ଗ୍ରନ୍ଥରେ ସମାଲୋଚନା ଲେଖିବା ପରିପ୍ରେକ୍ଷୀରେ ଜଣେ ଇଂରାଜୀ ସମାଲୋଚକ ଏହାକୁ ଲୋକବିଶ୍ୱାସର ଏକ ସାଙ୍କେତିକ ପ୍ରକାଶ ବୋଲି ଯାହା କହିଥିଲେ ସେହିଭାବେ ସମ୍ବଲପୁରୀ ଲୋକଗୀତ ସଂସ୍ଥାପିତ ନୃତାତ୍ତ୍ୱିକ ତଥା ସମାଜତାତ୍ତ୍ୱିକ ମୂଲ୍ୟ ଅବଧାରଣା କରାଯାଇପାରେ । ସମ୍ବଲପୁରୀ ଲୋକଗୀତର .

---

୨. **Urban Condition's sophi siantion civilization rapid charge and mingling up cultures have destroyed the old rhythem and habits and nothing adequete has taken thier place (Ed. John. E. Geordon. (Questions of Raeteric U.S. 197) P. 213.**

୩. **Standard Dictionary of Folklore, Vol.II, Riddles, P. 938.**

ଭାଷାତାତ୍ତ୍ୱିକ ଆଲୋଚନା ହିଁ ସାମଗ୍ରିକ ଭାବେ ଏହି ଲୋକଗୀତ ଗୁଡ଼ିକର ସାହିତ୍ୟିକ ତଥା ସୌନ୍ଦର୍ଯ୍ୟ ତାତ୍ତ୍ୱିକ ମୂଲ୍ୟ ଅବଧାରଣା କରିବା କ୍ଷେତ୍ରରେ ନାନା ସୂତ୍ର ଉଦ୍‌ଘାଟନ କରିପାରେ । ଓଡ଼ିଶାର ପଣ୍ଡିତ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଶର୍ମା ପ୍ରଥମ କରି ଯେଉଁ ଗାଉଁଲି ଗୀତ ସଂଗ୍ରହ କରିଥିଲେ ସେଥିରେ ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଯେତେ ଲୋକଗୀତ ସଂଗ୍ରହର ଉଦ୍ୟମ ହୋଇଛି ସେ ସବୁ କେବଳ ସଂଗ୍ରହରେ ମାତ୍ର ସିମୀତ ହୋଇରହିଛି । ସଂଗୃହୀତ ଲୋକଗୀତ ଗୁଡ଼ିକର ସାଙ୍ଗୀତିକ ତଥା ସାହିତ୍ୟିକ ମୂଲ୍ୟ ଅବଧାରଣର ବିଧିବଦ୍ଧ ବୈଜ୍ଞାନିକ ଅଧ୍ୟୟନ ହୋଇନାହିଁ । ଯାହାଫଳରେ ସମ୍ବଲପୁରୀ ଲୋକଗୀତ ଭିତରେ ଯେଉଁ ଛାନ୍ଦନିକ ତୀବ୍ରତା (Lyrical Intencity) ରହିଛି ତାହା ଏ ଯାବତ୍ ପ୍ରକୃତିଭାବେ ଚିହ୍ନିତ ହୋଇ ପାରିନାହିଁ । ଲୋକଗୀତ ବିଶେଷତଃ ସମ୍ବଲପୁରୀ ଲୋକଗୀତରେ ବ୍ୟକ୍ତିର ମନୋଭାବ ଅଭିବ୍ୟକ୍ତି ଲାଭ ନ କରି ଗୋଷ୍ଠୀର ସାମୁହିକ ଭାବଚେତନା ରୂପାୟିତ ହୋଇଅଛି, ଯାହା ଅପାଂକ୍ତେୟ ତାହା ଭିତରେ ଲୋକ କବି ନିଖିଳର ପ୍ରାଣକୁ ଅନୁଭବ କରିଛି । ଏଠାରେ 'ହୁମୁଁ' ବା ବଉଲି ଗୀତର ଉଦାହରଣ ଦିଆଯାଇପାରେ । ବାପଘରର ଝିଅ ଶାଶୁଘରେ କିପରି ଅତ୍ୟାଚାରିତ ହୋଇଥାଏ ତାର ସାଙ୍କେତିକ ଚିତ୍ର ଏଠାରେ ପ୍ରଦତ୍ତ ହୋଇଛି । 'ଧାନଫୁଲ ଅଧମାନ ବଉଲୀରେ ଧାନ ଫୁଲ ଅଧମାନରେ,/ ମାଆଘରେ ଝିଅ କର୍ପୂର ପାନ, ମାଆଘରେ ଝିଅ କର୍ପୂର ପାନ/ ଶାଶୁଘରେ ହୀନିମାନ ବଉଲୀରେ ଶାଶୁଘରେଁ ହୀନିମାନରେ ।'

ପ୍ରକୃତି ଓ ପୁରୁଷ ମଧ୍ୟରେ ପୁଣି ଯେଉଁ ଯୌନତାର ସମ୍ବନ୍ଧ ରହିଛି ନରନାରୀର ସେଇ ସମ୍ବନ୍ଧକୁ ସମ୍ବଲପୁରୀ ଲୋକକବି ଅଧିକ ସରସ ଭାବଭଙ୍ଗୀ ଭିତରେ ଅଶେଷ କବି ତର୍କଣା ସଂଯୋଗ କରି ପ୍ରକାଶ କରିଛି । ସମ୍ବଲପୁରୀ ଲୋକନୃତ୍ୟର ନରନାରୀଙ୍କ ମଧ୍ୟରେ ଯୁଗ୍ମ ସଙ୍ଗୀତର ଏକ ସ୍ୱକୀୟ ବୈଶିଷ୍ଟ୍ୟ ରହିଛି । ସେ ସବୁ ଗୀତର ସାଙ୍ଗୀତିକତା ଉଲ୍ଲିଖିତ ବୈଶିଷ୍ଟ୍ୟର ଏକ ବଡ଼ ଦିଗ । ପୁରୁଷ ନୃତ୍ୟ ସହିତ ଗୀତମେଳି ତା'ର ପ୍ରଣୟିନୀ ସନ୍ଧାନରେ ଅଶେଷ ବ୍ୟାକୁଳତା ପ୍ରକାଶ କରୁଛି । ନାଗରର ଆବର୍ତ୍ତମାନରେ ନାଗରୀ ତା'ର ଦୁରନ୍ତ ଅଭିମାନର ବଶବର୍ତ୍ତୀ ହୋଇଛି । ନିଜ ନାଗରର ବୁଦ୍ଧିବୃତ୍ତି ପରୀକ୍ଷା କରିବା ଛଳରେ ସେ ଗାଇବ - "କଳା ଚାରିଜାତି କହରେ ନାଗର, କଳା ଚାରିଜାତି କହ/ କଳା ଚାରିଜାତି ନକହି ପାରିଲେ ନାଗରରେ ଗୋହାଳ ପୁଛିବୁ ରହ ।" (ବିଛଣା ପାରିବୁ ରହ) ନାଗରୀର ଏ ପ୍ରଶ୍ନରେ ନାଗର ମଧ୍ୟ ସରସ ଉତ୍ତର ପ୍ରଦାନ କରିଛି - 'କାଉ ତ ଯେ କଳା, କୋଇଲି ବି କଳା କଳା ମହାନଦୀ ପାଣି/ ଆହୁରି କଳାଏ କି କହିବି ନାଗରୀଲୋ, ତୋହରି ମଥାର ବେଣୀ ।' ଏହି ଆଙ୍ଗିକରେ ସମ୍ବଲପୁରୀ ଅନେକ ଲୋକଗୀତ ରଚିତ ହୋଇଛି । ନୃତ୍ୟର ତାଳେ ତାଳେ ନାଗର ନାଗରୀମାନଙ୍କ ସରସ ଉକ୍ତି ପ୍ରତ୍ୟୁକ୍ତି ସମସ୍ତଙ୍କ ଦ୍ୱାରା ବିଶେଷ ଭାବେ ଉପଭୋଗ୍ୟ ହୋଇଥାଏ । ସଙ୍ଗୀତ ହେଉଛି ପ୍ରକୃତରେ ଭାବର ବିଷୟ ।

ଜୀବନର ଗଭୀରତମ ଉପଲବ୍ଧିର ବିଷୟ କେବଳ ସଙ୍ଗୀତ ଭିତରେ ହିଁ ଗୀତ ହୋଇଥାଏ । To see deep enough to see musicaly. [୪] ସମ୍ବଲପୁରୀ ଲୋକଗୀତରେ ଭାବର ସମୁଚ୍ଚବିସ୍ତାର ହୋଇଛି । ଛନ୍ଦ ବା ସଙ୍ଗୀତ ଭିତରେ ଆତ୍ମାର ଅକୃତିମ ତଥା ପରିବ୍ୟାପ୍ତ ଅଭିବ୍ୟକ୍ତି ଘଟିଥାଏ । ପ୍ରକୃତିର ସମସ୍ତ ବ୍ୟାପ୍ତି ଓ ବିଶାଳତାକୁ ଲୋକକବି ତା'ର ବ୍ୟାବହାରିକ ପୃଥିବୀର ଦୃଶ୍ୟମାନ ପ୍ରତିଟି ବିଷୟ ଭିତରେ ଦେଖିଥାଏ । ଇଂରେଜ କବି ବ୍ଲେକଙ୍କ 'The World in a gain of sand./And heaven in a wild flower/Hold intinity in palm of your hand and eternity in an hour' ଆଦି ଧାଡ଼ି ଗୁଡ଼ଇକର ଅନୁଭବ କମବେଶୀରେ ସମ୍ବଲପୁରୀ ଲୋକକବିର ଜିଜ୍ଞାସାରେ ପରିଲକ୍ଷିତ ହୁଏ । ପ୍ରାଣର ଏହି ଆଧାତ୍ମିକ ଉପଲବ୍ଧିକୁ ଆହୁରି ସରସ ପୁଲକରେ ଲୋକକବି ଗାଇଛି ।

ନୃତ୍ୟ ଓ ବାଦ୍ୟ ସଂଯୋଜିତ ହୋଇ ନରନାରୀଙ୍କ ମଧ୍ୟରେ ରସ ଇଙ୍ଗିତ ଆହୁରି ରସ ନିବିଡ଼ ଅଭିବ୍ୟକ୍ତି ଲାଭ କରିଛି ଯାହା ସାଧାରଣତଃ ବ୍ୟକ୍ତିଗତ, ପାରିବାରିକ କିମ୍ବା ଆଞ୍ଚଳିକ ଜୀବନକୁ ଭିତ୍ତିକରି ଲିଖିତ ହୋଇଥାଏ । (୫) ଏହି ପ୍ରସଙ୍ଗରେ ନିମ୍ନୋକ୍ତ ଧାଡ଼ିଗୁଡ଼ିକ ଉଲ୍ଲେଖ ଯୋଗ୍ୟ ।

ପୁରୁଷ :-
ବାଳିଆ ମାଛର କଣ୍ଟା
କିଣି ଦେଇଥିବି ଟସରି ମଠା
ଟସରି ମଠାଲୋ, ଭାଙ୍ଗି ବାଲୁଥିବୁ ଅଣ୍ଟା ।'

ସ୍ତ୍ରୀ :-
କଥାରେ କହୁଛୁ କେତେ
ମଠାଶାଢୀ ଆମ୍ଭେ ପିନ୍ଧିଛୁ କେତେ
ପିନ୍ଧିଛୁ କେତେ ହେ, ମଠାଶାଢୀ ପରିଯନ୍ତେ ।

X X X

ରସର୍ କେଲି ବୋ .....
ରସକୁ ରସିଆ କିରେ ଧାନଫୁଲ କସିଆ
ମନକଲେ ଘିନିଦେମି ସୁନାର ଫାସିଆ
ସୁନାର୍ ଫାସିଆ ନଜି ହଜି ନସି ଯିବା
ଅଣ୍ଟାକୁ ଗୁନ୍‌ଚି ଦେଲେ

୪. -Ed- John E. Jordon - Questions of Rhetoric - USA-1971, P.213

୫. ଶ୍ରୀ ବୀରକିଶୋର ଦାସ, ସାହିତ୍ୟ ସ୍ୱରୂପ, ସାରସ୍ୱତ ପୁସ୍ତକ ଭଣ୍ଡାର, ସମ୍ବଲପୁର, ପୃ-୪୪

ଛଇଲୀ ଯୁଗେ ଯୁଗେ ଯିବା, ରସ ନେ ନର ହେଇବୋ ।'

X X X

'ଇଚିଡ଼ି ମିଚିଡ଼ି
ଜାମୁ ଚିଡ଼ି ଚିଡ଼ି
ପିଲେ ମାଇଲେ ତୋଲ
ଆଲୁ ଖଣ୍ଡି ଖଣ୍ଡି ପିଚିକା ପାଣି ବୋଉଲ ଏ ଗୋଡ଼ ଖଣ୍ଡି ମୋର ।

X X X

'ଝଲକା ଦଣ୍ଡୀ ଚଉଁରୀ ମୁଣ୍ଡି ଅଙ୍ଗେଗଲା ଜଡ଼ି
ଭେଣ୍ଡିଆ ପିଲା ମାର ପହଡ଼ି ଦିଶତା ଧରୁ ଭିଡ଼ି ।
କାଉ ବସା ମିଆକିରେ ଶୁଖି ଯାଇଛି ହିୟା
କାଁ କରୁଛୁ ବାବୁର୍ ମା, ଧୀରେ ଚାଲିଆ
କରତି ଦେଉଛି ଛାଡ଼ି
ଆସ ରସବତି !'

ଉଲ୍ଲିଖିତ ଲୋକଗୀତର ଧାଡ଼ିଗୁଡ଼ିକ ଅନୁଧାନ କଲେ ମାନବୀୟ ସୁଖ ଦୁଃଖ, ବିରହ ମିଳନର ତୀବ୍ର ଅନୁଭବ (anthro-pocentric-emotion)* ବିପୁଳ ଭାବେ ପରିଲକ୍ଷିତ ହୁଏ, ଯେଉଁଥିପାଇଁ ସେ ଗୁଡ଼ିକ ପାଠକ ବା ଶ୍ରୋତାର ରସ ଚେତନାକୁ ଅଧିକ ଆଦ୍ର ଓ ଉଦ୍ରିକ୍ତ କରେ ।

ସମ୍ବଲପୁରୀ ଢଗ ଢମାଳୀ (Proverb) ରେ ମଧ ଏକ ବିଶେଷ ଅଭିବ୍ୟଞ୍ଜନା ତଥା ସାହିତ୍ୟିକ ମୂଲ୍ୟ ତଥା ସାଙ୍ଗୀତିକ ମୂଲ୍ୟ ରହିଛି ।ସମ୍ବଲପୁରୀ ରୁଢି (Idioms) ର ଏକ ବିଶେଷ ସାହିତ୍ୟିକ ମୂଲ୍ୟ ମଧ ରହିଛି । ଏହି ସମସ୍ତ ଢଗ ଢମାଳୀ ପ୍ରବଚନ ତଥା ରୁଢି ପ୍ରୟୋଗର ଯେଉଁ ବୈଶିଷ୍ଟ୍ୟ ରହିଛି ସେ ସାମଗ୍ରିକ ଭାବେ ସମ୍ବଲପୁରୀ ଭାଷା ସାହିତ୍ୟକୁ ଜୀବନ୍ତ କରି ରଖିଛି । ଉଲ୍ଲିଖିତ ଢଗ ଢମାଳୀର ବ୍ୟାବହାରିକ ମୂଲ୍ୟ ସହିତ ତାର ସାହିତ୍ୟିକ ମୂଲ୍ୟ ମଧ ସ୍ୱୀକୃତ । (୬) 'ଆଷାଢେ ରୁଏଁ ବଲ୍‌କେ/ଶ୍ରାବନେ ରୁଏଁ ଫଲକେ/ ଭାଦ୍ରବେ ରୁଏଁ ଟୁଷକେ/ ଆଶ୍ୱିନେ ରୁଏଁ

*. କଅଁଲି ବଏସୀର ମନ ଛନ ଛନ ଲୋ/ହାଆଦେ ଉଦିଲା ଜହ୍ନ/ଉଦିଆରେ ଜହ୍ନ ଭେଟେଁ କାଏଁ ସପନ/ତାରା ରାତି ମିଲେ ଦରଶନ/(ସେନ୍ଦୁର ଫରୁଆ) କାହିଁ ମହନି ଲଗେଇ ଦେଲୁ ପଗରୀ ମରହି ଝୁରିଝୁରି/ରେ ମୋର ସରଗ ମଲୀ' (ଲବଙ୍ଗଲତା)

୬. 'କୁସେର୍ ଜଗାଦି ଚିକିର୍ ପୋ/ କବା ଜଗାସି ବାପର ପୋ ।'

କମ୍‌କେ ର  ଯେପରି ତଥ୍ୟ କଥନର ଗୁରୁତ୍ୱ ରହିଛି । ସେହିପରି ଧାଡ଼ି ଗୁଡ଼ିକର ସନ୍ନିକରଣ ଭିତରେ ଏକ ବିଶେଷ ଶୃଙ୍ଖଳା ଗତ ସାଙ୍ଗୀତିକତା ରହିଛି ।

ସମ୍ବଲପୁରୀ ଗୀତରେ ଲୋକ କବିର ନିଜସ୍ୱ ଉପଲବ୍ଧି ଅତ୍ୟନ୍ତ ସାଧୁ ନିଷ୍ଠାପର ଭାବରେ ଅଭିବ୍ୟକ୍ତି ଲାଭ କରିଥାଏ । ଏଠାରେ ପ୍ରାସଙ୍ଗିକ ଭାବେ କୁହା ଯାଇ ପାରେ ଯେ, ବଙ୍ଗଳା ତଥା ଅସମୀୟାଁ ଭାଷାର ଉଚ୍ଚାରଣଗତ ବୈଭିନ୍ନ ଯାହା ଯେଉଁଥିପାଇଁ ଅସମୀୟାଁ ଭାଷାର ଉଚ୍ଚାରଣରେ ଅଧିକ ଆପଣାର ଭାବ ରହିଛି ପରି ମନେହୁଏ ସେହି ବୈଶିଷ୍ଟ୍ୟ ଓଡ଼ିଆ ସହିତ ସମ୍ବଲପୁରୀ ଲୋକଭାଷାର ତୁଳନା କଲେ ଦେଖିବାକୁ ମିଳେ । ସମ୍ବଲପୁରୀ ସାହିତ୍ୟରେ ହୁଏତ ଅଶେଷ ତର୍କଣା ଥାଇପାରେ ମାତ୍ର ସାମାନ୍ୟତମ କୃତ୍ରିମ ଭଙ୍ଗୀ ପ୍ରଧାନତା ନାହିଁ । ଏ ପ୍ରସଙ୍ଗରେ ବଙ୍ଗଳା ପ୍ରଦେଶର କଲିକତାର ବିଶୁଦ୍ଧ ବଙ୍ଗଳା ସହିତ ପଦ୍ମାନଦୀ କୂଳର ବଙ୍ଗଳାକୁ ତୁଳନା କରାଯାଇପାରେ । ପଦ୍ମାନଦୀ କୂଳର ବଙ୍ଗଳା ଅଧିକ ଆପଣାର ପରିଚିତ ଭାବକୁ ସହଜ ଭାଷା ଅଭିବ୍ୟକ୍ତି ଭିତରେ ପ୍ରକାଶ କରିଥାଏ ।

ୟୁଲିୟମ୍ ବଟଲର ୟେଟ୍ସ Irish dialect କୁ ଏକ ମର୍ଯ୍ୟାଦାବନ୍ତ ସାହିତ୍ୟିକ ଭାଷା ଗୌରବ ଆଣି ଦେବା ପାଇଁ ଯେଉଁ ପ୍ରସିଦ୍ଧ 'Celtic Movement' କରିଥିଲେ ତାହାର ପଶ୍ଚାତରେ ୟେଟ୍ସଙ୍କର ଯେଉଁ ମନୋଭାବ ଥିଲା ସେହି ମନୋଭାବର ବିଶ୍ଳେଷଣ ହିଁ ସମ୍ବଲପୁରୀ ଲୋକଭାଷା ଓ ଉପଭାଷାର ମହତ୍ତ୍ୱ ପ୍ରତିପାଦନ କରିବ । ଉପଭାଷା ବରଂ ମାନକ ଭାଷା ଅପେକ୍ଷା ଅଧିକ ଅର୍ଥଗଭା ଓ ସାହିତ୍ୟିକ ଏଥିରେ ସନ୍ଦେହ ନାହିଁ । ୟେଟ୍ସଙ୍କ ପରି କବି ଇଲିୟଟ୍ ଆଞ୍ଚଳିକ ଉପଭାଷାର ପ୍ରୟୋଗ କରିଛନ୍ତି । ଇଂରାଜୀରେ ତମର, ରିଚାର୍ଡସନ, ଥମାସ ହାର୍ଡି ପ୍ରମୁଖ ଲେଖକମାନେ ଉପାନ୍ତର ପ୍ରଚଳିତ ଉପଭାଷାକୁ ସେମାନଙ୍କ ରଚନାରେ ଅତ୍ୟନ୍ତ ମର୍ଯ୍ୟାଦାବନ୍ତ ବ୍ୟବହାର କରିଛନ୍ତି । ଏହି ପରିପ୍ରେକ୍ଷୀରେ ସମ୍ବଲପୁରୀ ଲୋକଭାଷା ବା ଆଞ୍ଚଳିକ ଭାଷାର ମହତ୍ତ୍ୱ ଉପଲବ୍ଧି କରାଯାଇପାରେ । 'ସୂକ୍ଷ୍ମ ଭାବେ ଅନୁଧ୍ୟାନ କଲେ ବର୍ତ୍ତମାନ ଆମେ କୌଣସି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଭାଷାକୁ ଓଡିଶାର ମାନକ ଭାଷା ରୂପେ ଗ୍ରହଣ କରି ପାରିବା ନାହିଁ । ବାଲେଶ୍ୱରୀ; କଟିକୀ, ସମ୍ବଲପୁରୀ ଓ ଗଞ୍ଜାମୀ ଏହି ଚାରୋଟି ମୁଖ୍ୟ ଉପଭାଷାର ସ୍ଥୂଳ ରୂପ ହିଁ ଓଡିଆ ଭାଷା । ତେଣୁ କୌଣସି ଆଞ୍ଚଳିକ ସଂକୀର୍ଣ୍ଣତାରେ ଭାବ ପ୍ରବଣ ନ ହୋଇ ଆମେ ଯଦି ବିଚାର କରୁ, ତେବେ ଜାଣି ପାରିବା ଯେ, ଉଲ୍ଲିଖିତ ଉପଭାଷାଗୁଡିକ ଓଡିଆଭାଷାର ଶାଖା ବିଶେଷ ନୁହନ୍ତି ବରଂ ଏ ଉପଭାଷାଗୁଡିକ ଓଡିଆ ଭାଷାର ମୂଳପିଣ୍ଡ' । ତେଣୁ ଏ ବିଷୟରେ ବିବାଦ ନ କରି ସମ୍ବଲପୁରୀ ଲୋକ ଭାଷାର ରଚିତ ସାହିତ୍ୟର ସାହିତ୍ୟିକ ତଥା ସାଙ୍ଗୀତିକ ମୂଲ୍ୟ ନିର୍ଦ୍ଧାରଣ କରିବା ଉଚିତ ଏବଂ ମୂଲ୍ୟ ନିର୍ଦ୍ଧାରଣ ଭାଷା ତାତ୍ତ୍ୱିକ ଅଧ୍ୟୟନ ଭିତ୍ତିରେ ହେଲେ ତାହା ଅଧିକ ବୈଜ୍ଞାନିକ ଓ

ପ୍ରମାଣିକ ହେବ, ଯାହା, ଏ ପର୍ଯ୍ୟନ୍ତ ଆଶଜନକ ଭାବେ ହୋଇ ନାହିଁ । ଏ ପ୍ରସଙ୍ଗରେ ମାକ୍ସମୁଲର ମଧ କହିଛନ୍ତି 'Dialects are the feeders of the language'

'ଏ.... ଦୂରର ବିଚିନା ତାରକି ଉଠେ ମହୁ/ ଆଘାର ପାନିଟି ନା ଘରର ବହୁ/ ଫୁଲଦାନେ ଦେମି ଗୋ ପାନିଟି/ମୋ ଘରେ ଛନେ ରହୁ/ ଛନେରହୁ ରହୁ ଗା ଛମାସ ରହିଲା/ ତାର ମାଁ ଘର ଚିଣ୍ଡା ପଦର/ କେମତେ ମୁରୁଛି ଲାର ଗୀତର ଧାଡ଼ିଗୁଡ଼ିକ ଶଗଡରେ ବସି ଦୂରଗାଁକୁ ଗଲାବେଳେ ଶଗଡ଼ିଆ ଯେପରି ବିଳମ୍ବିତ ସ୍ୱର ଲହର ଭିତରେ ଗୀତ ମେଲିଥାଏ, ତାର ତୁଳନା ନାହିଁ । ବାସ୍ତବ ଜୀବନର ସୁଖ ଦୁଃଖ ତଥା ଭଲ ମନ୍ଦର ଘଟଣାଗୁଡ଼ିକୁ ଏଠାରେ ସେ ନିଷ୍ପାପର ଭାବରେ ପାଇଛି । 'ହୁମୋ' ଗୀତରେ ସେହି ସୁଖ ଦୁଃଖର ତୀବ୍ରତର ଜୀବନାନୁଭୂତି ଅଭିବ୍ୟକ୍ତି ଲାଭ କରିଛି । ନୃତ୍ୟ ସହିତ ଗୀତ ସଂଯୋଜିତ ହୋଇ ଅଧିକ ଅର୍ଥନ୍ୱିତ ହୋଇଛି, ଯେପରି ସମ୍ଭୋଗାତ୍ମକ ସେହିପରି ମଧ ଉନ୍ନତ ବ୍ୟଞ୍ଜନାଧର୍ମୀ ଏଠାରେ ପ୍ରାସଙ୍ଗିକ ଭାବେ 'ହୁମୋ' ଗୀତରୁ କେତୋଟି ଉଦାହରଣ ଦିଆଯାଇ ପାରେ ।

'ହୁମନନ ନନ ଦେଶ ବୋଇଲିରେ/ ହୁମନନ ଦେଶରେ/ ନଖାଉଁ ତୁମର ଗୁଆ ପନସ/ ନ ଯାଉଁ ତୁମର ଦେଶ ବଇଲିରେ/ ନ ଯାଉଁ ତୁମର ଦେଶରେ ।' ତୁମ ଦେଶ ଗଲେ କି କି କରିମୁ/ ତୁଛାଏ ଗଞ୍ଜର ଗଞ୍ଜା/ ଗଞ୍ଜାର ଗଞ୍ଜାକୁ ଫୁଲ ବିଛଣା/ ନାକ ତଳେ ଦଣ୍ଡିଗୁଣା/ କେତେ ହଲାଉଛୁ ନାକର ଗୁଣା/ ମୋଭାଇ କମାନି ସିନା ବଇଲିରେ/ ମୋ ଭାଇ କମାନି ସିନାରେ ।' (ଖ) କୋକିଳ :- 'କୁଶାରୀ ବଙ୍ଗି ଭାସିଲାରେ କୋକିଲ/ କୁଶାରୀ ବଙ୍ଗି ଭାସିଲା/ ନିକୁଞ୍ଜ ବନରେ ଗୁରୀ ଗାଧିଲାରେ ଗୁରୀ ଗାଧିଲା/ ସକାଲୁ ବେଳ ଉଦିଲା କୋକିଲରେ ।' (ଗ) ଛିଲୋଲାଇ :- 'ଛିଲୋଲାଇ ଆଖେଲ୍ ମା ବାଇ/ ଗଲେ ଗୁଷି ଆଗୋ/ ମା ପିଉଷୀ/ କଲା କଲା ବାଇଙ୍ଗନ ରୁଇଗଲି ଧାରେ/ କଲାମୁଖା ମନ ଦିଅର୍ ମାରିଦେଲା ବାରେ/ ଘୁଞ୍ଚିଯାରେ ଘୁଞ୍ଚିଯା ମଚା ତଳକୁ/ ମଚା ତଲର ସିଙ୍ଗ୍ ପାନିଆ ଭୁର୍‌ସି ମୁଡ଼କୁ ।'

ସମ୍ୱଲପୁରୀ ଲୋକ ଭାଷାରେ ରଚିତ ଗୀତର ଏକ ବିଶେଷ ଛନ୍ଦଗିତିକତା ଓ ସାଙ୍ଗୀତିକତାର ଗୁଣ ଯୋଗୁଁ ତାହା ଅଧିକ ପ୍ରାଣସ୍ପର୍ଶୀ ଅର୍ଥ ପ୍ରକଟିତ କରିଥାଏ । ଅଭିଧାନିକ ଅର୍ଥ ଅପେକ୍ଷା ଉଲ୍ଲିଖିତ ଅର୍ଥର ଅପେକ୍ଷା ଉଲ୍ଲିଖିତ ଅର୍ଥର ପରିଧି ଅପେକ୍ଷାକୃତ ଅଧିକ ସଂପ୍ରସାରିତ । ସମ୍ୱଲପୁରୀ ଲୋକଗୀତରେ ସାଧାରଣତଃ ତିନୋଟି ମୁଖ୍ୟ ବିଭାବ ରହିଛି । ସେଗୁଡ଼ିକ ହେଲା ୧ . ପ୍ରତ୍ୟକ୍ଷ ଜୀବନାନୁଭୂତି (The authers experience) ୨ . କବିଙ୍କ ଦାର୍ଶନିକ ତଥା ଆଧ୍ୟାତ୍ମିକ ମତବାଦ (The philosophic or religious ideas) ୩.ନୈତିକ ତଥା ସାମାଜିକ ପ୍ରକ୍ରିୟା । (moral

and social effect) ଉଲ୍ଲିଖିତ ଉପାଦାନ ଗୁଡିକର ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଦିଗ ସମ୍ବଲପୁରୀ ଲୋକ ଗୀତରେ ପରିପୂର୍ଣ୍ଣ ଭାବେ ରହିଛି ।

ସମ୍ବଲପୁରୀ ଭାଷାର ପଦଯୁଗ୍ମ ଗୁଡ଼ିକ କଥିତ ଧ୍ୱନି ଦ୍ୱରା ଅଧିକ ରବାତମ୍ବର । ଭୌଗୋଳିକ ଦୃଷ୍ଟିକୋଣରୁ ଓଡିଆ ଭାଷାକୁ ଯେଉଁ ମୁଖ୍ୟ ତିନିଗୋଟି ଉପଭାଷା ମଣ୍ଡଳରେ ବିଭକ୍ତ କରାଯାଇଛି ସେଗୁଡ଼ିକ ହେଲା ଉପକୂଳ ଅଞ୍ଚଳୀୟ ପଶ୍ଚିମାଞ୍ଚଳୀୟ ଏବଂ ଦକ୍ଷିଣ ପଶ୍ଚିମାଞ୍ଚଳୀୟ । ଏହି ତିନୋଟି ମଣ୍ଡଳର ଧ୍ୱନି ଯେ ଭିନ୍ନ ଭିନ୍ନ ଏଥିରେ ସନ୍ଦେହ ନାହିଁ । ଏହି ଉଚ୍ଚାରଣଗତ ବୈଶିଷ୍ଟ୍ୟ ଭିତ୍ତିରେ ସମ୍ବଲପୁରୀ ଲୋକ ଭାଷାର ସାଙ୍ଗୀତିକ ମହତ୍ତ୍ୱ ଉପଲବ୍ଧ ହେବା ଉଚିତ । ଏହି ପଶ୍ଚିମାଞ୍ଚଳୀୟ ଓଡ଼ିଆ ଭାଷାରେ ବିଭକ୍ତି, ସର୍ବନାମ ଆଦିର ବ୍ୟବହାର ଅପେକ୍ଷାକୃତ ଭିନ୍ନ । ସ୍ୱରଧ୍ୱନିର ବ୍ୟବହାର ମଧ ଅତ୍ୟନ୍ତ ବୈଚିତ୍ର୍ୟ ପୂର୍ଣ୍ଣ । ଉପକୂଳବର୍ତ୍ତୀ ଭାଷା ମଣ୍ଡଳର ବିଶୁଦ୍ଧ ଓଡ଼ିଆ ଓ ପଶ୍ଚିମାଞ୍ଚଳ ଭାଷା ମଣ୍ଡଳର ମଣ୍ଡଳର ଲୋକଭାଷା ମଧରେ ଭାଷାତାତ୍ତ୍ୱିକ ଏକ ତୁଳନାତ୍ମକ ଅଧ୍ୟୟନ କରାଗଲେ ଆଲୋଚିତ ଲୋକଭାଷାର ସାଙ୍ଗୀତିକ ସ୍ୱାତନ୍ତ୍ର୍ୟ ଚିହ୍ନିତ ହୋଇପାରିବ । ପଶ୍ଚିମ ଓଡ଼ଶାର ବହୁଳ ଆଦିବାସୀ ସଂସ୍କୃତି ତାର ଲୋକ ଜୀବନର ଭାଷା ଓ ସାହିତ୍ୟକୁ ମଧ ନାନା ଭାବରେ ପ୍ରଭାବିତ କରିଛି ।

ପଶ୍ଚିମ ଓଡ଼ିଶାର ଆଦିବାସୀମାନଙ୍କ ମଧରେ ଶବର, କନ୍ଧ, ଗଣ୍ଡ, ବିଞ୍ଝାଲ, ଭୁୟାଁ, କୋଲ୍ (କୋଲହ) ପିଷାନ, ଖଡୀୟା, ଓରାଙ୍ଗ ପ୍ରଭୃତି ପ୍ରଧାନ । ଯେଉଁମାନଙ୍କ ବିଶ୍ୱାସ ସାମାଜିକ ସହବସ୍ଥାନ ସୂତ୍ରରେ ଜନପଦକୁ କ୍ରମଶଃ ସମ୍ପ୍ରେଡ଼ିତ ହୋଇଆସିଛି । (୭) ଲୋକ ଜୀବନରେ ବିଶ୍ୱାସ ସମ୍ବଲପୁରୀ ଲୋକଭାଷା ଭିତରେ ଅଧିକ ସଫଳ ଅଭିବ୍ୟକ୍ତି ଲାଭ କରିଛି । ରସରକେଲୀ ଓ ଡାଲଖାଇ ପ୍ରଭୃତି ଗୀତଗୁଡ଼କରେ ଭାବ ବୈଚିତ୍ର୍ୟ ରହିଛି । ପ୍ରାକୃତିକ ତଥା ନିର୍ଧାର୍ଯ୍ୟ ଜଗତ ର ଜୈବିକ ସତ୍ୟର ଅଭିବ୍ୟକ୍ତି ରସରକେଲି ଓ ଡାଲଖାଇ ପ୍ରଭୃତି ଲୋକଗୀତରେ ମୌଳିକ ଉପାଦାନ; ଯେଉଁଥିପାଇଁ ଶ୍ରୋତାମାନଙ୍କୁ ତାହା ଅଧିକ ସ୍ପର୍ଶ କରେ । ଗୀତ ଗୁଡ଼କରେ ସଂଯୋଜିତ ପଦ ଗୁଡ଼ିକର ସଙ୍କୋଚନ, ବର୍ଣ୍ଣର ଲୋପ ବର୍ଣ୍ଣାଗମ, ପ୍ରଶ୍ଳେଷ, ସାଦାମ୍ବର ଶବ୍ଦ ପ୍ରାଚୁର୍ଯ୍ୟ (ଯାହା ଶବ୍ଦ ଗୁଡ଼ିକର ରବାଡ଼ମ୍ବରଣରେ ନୁହେଁ, ଶବ୍ଦସତା କରଣଗତ ସ୍ୱାତନ୍ତ୍ରେ ହିଁ ଚିହ୍ନିତ), (ଲୋକପ୍ରବାଦ ବା ପ୍ରସିଦ୍ଧି) ଆଦି ଲକ୍ଷଣୀୟ ଯାହା ଏକ ଧ୍ୱନିଗତ ବୈଶିଷ୍ଟ୍ୟର କାରଣ । ଏହିସବୁ ଭାଷା ତାତ୍ତ୍ୱିକ ତଥା ଧ୍ୱନି ତାତ୍ତ୍ୱିକ ପ୍ରକ୍ରିୟା ସମ୍ବଲପୁରୀ ଗୀତକୁ ଅଧିକ ଶ୍ରବଣ ସୁଖଦାୟକ କରିଛି । ଏହି ଧ୍ୱନି

---

୭. ଭାଗିରଥି ନେପାକ, ଲୋକନୃତ୍ୟ, ଏକ ବିଶ୍ଳେଷଣ ଓ ପଶ୍ଚିମ [illegible] ଦଣ୍ଡନାଚ (ସପ୍ତର୍ଷି)

ତାତ୍ତ୍ୱିକ ଲାଳିତ୍ୟ ପ୍ରକୃତରେ ପ୍ରତ୍ୟେକ ନିଷ୍ପ୍ରାଣ ବାଦ୍ୟ ଶବ୍ଦକୁ ମଧ୍ୟ ଲଳିତ ଓ କାବ୍ୟିକ କରିଛି । (୮)

"ତାରେ ନାରେ ନାରେ ନାରେ/ନାରେ ନାରେ/ତାରେ ନାରେ ନା ନାରେ ନାନା/ ତୁଇ ହେବୁ ସୁନାଯେ/ମୁଇଁ ହେମି ଟାଙ୍ଗ୍‌ନା/ଆର୍ ହଲଦୀ ପାନିରେ/ଝଲ ଝଲ କରି/ ମାଛ ପରାଏ କି ଛଟକି ଦେବ/ଲାଗିଲେ ନ ଛାଡମି/ ତୁଇ ହେବୁ ଛଁଚାନ ଯେ/ ମୁଇଁ ହେମି ଖଦାନ/ ଆରେ ଧନୁଶର ଧରି ଜଗି ବସିମି/ଲାଗିଲେ ନ ଛାଡ଼ିମି" ଅବା "ଚାଇଁ ଚାଇଁ ମୁଠି/ଚିଡ଼ିଆ ଘରର ଚୁଁଟି/ଆ ଚିଡ଼ିଆ ପାଏନ୍ କେ ଯିମା/ତୋର ମୋର୍ କେନ୍ଦୁ ଖାଏମା/ ତୋର୍ କେନ୍ଦୁଟା ପାଚିଲା/ ମୋର୍ କେନ୍ଦୁଟା କଞ୍ଚା/ ଟିକେ ଟିକେ କରି ଭାଗ୍ କରମା/ହାତୀ କି ଘୁଡ଼ା ।"

ଏହି ଗୀତ ଗୁଡ଼ିକ ନାନ [illegible] ତ, (ନର୍ସରୀ ରାଇମ୍) ଅବା Lullaby ଯେଉଁଥିରେ ଅର୍ଥ ଅପେକ୍ଷା ଧ୍ୱନି ଗର୍ଭିତ ଶବ୍ଦର ପ୍ରଭାବ ବେଶୀ । ଶିଶୁମାନଙ୍କ ମନୋରଞ୍ଜନ ପାଇଁ ଏହି ଗୀତ ଉଦ୍ଦିଷ୍ଟ । ସମ୍ବଲପୁରୀର ଦୂରୀଗୀତ, ପୁନେଇ ଗୀତ, ପାନିଆ ଝୁନିଆ ଗୀତ, ବାରମାସୀ ଗୀତ, ତାଲଖାଇ, ଗୁଞ୍ଜିକୁଟା, ହୁମ, ରସରକେଲି, ଦଣ୍ଡନାଚ ଆଦି ଗୀତ ଗୁଡ଼ିକରେ ପ୍ରଦତ୍ତ ପ୍ରତିଜ୍ଞା ସବୁ ସାଧାରଣ ଜନ ଜୀବନର ଅଭିଜ୍ଞତା ଦ୍ୱାରା ପୁଷ୍ଟ । ଏହି ସବୁ ଗୀତରେ ଏକପ୍ରକାର ତାଳ ମାନ ଓ ଲୟ ଅଛି, ଯାହା ଏ ଗୀତ ଗୁଡ଼ିକୁ ବେଶ୍ ଲୋକପ୍ରିୟ କରିପାରିଛି । ପଲ୍ଲୀ କବି ନନ୍ଦ କିଶୋର ବଳଙ୍କ ଅଧିକାଂଶ କବିତାରେ ଯେଉଁ ଲୋକଗୀତ, ପ୍ରବଚନ, ଢ଼ଗ-ଢ଼ମାଳୀ ପ୍ରଦତ୍ତ ହୋଇଛି, ତାହା ସ୍ଥଳ ବିଶେଷରେ ନିରର୍ଥକ ମନେ ହେଲେ ହେଁ ଅବା ତାର ଏକ ସୁସ୍ପଷ୍ଟ ଆଭିଧାନିକ ଅର୍ଥ ପ୍ରକଟିତ ହୋଇପାରୁ ନଥିଲେ ବି ସେ ସବୁର ମହାତ୍ମ୍ୟ ସାଧାରଣ ଲୋକ ଜୀବନରେ ବହୁତ ବେଶି । (୯)

ସମ୍ବଲପୁରୀ ଲୋକ ଗୀତରେ ସଂଯୋଜିତ ଚିତ୍ର କଳ୍ପ ଗୁଡିକ ମଧ୍ୟ ସାହିତ୍ୟିକ ଅଭିବ୍ୟଞ୍ଜନା ଦୃଷ୍ଟିରୁ ଉଚ୍ଚମାନର ଯେଉଁ ଚିତ୍ର କଳ୍ପ ଗୁଡ଼ିକ ଅତ୍ୟନ୍ତ ନିବିଡ଼ ତଥା କଞ୍ଚା ଅନୁଭବରୁ ହିଁ ସଂପ୍ରେରିତ ହୋଇ ଆସିଛି ରସର କେଲୀ, ମାଇଲା ଜଡ ଝୁମେର ଓ ଡାପ୍ ଗୀତରେ ଉଲ୍ଲିଖିତ ଚିତ୍ର କଳ୍ପର ବହୁଳ ବ୍ୟବହାର ପରିଦୃଷ୍ଟି ହୁଏ । 'ବଖାନି' ଗତ(Popular saying) ପହଲି (Riddle)

---

୮. "Eloquence is the poerty of prose" [Alan warner, A short guide to English style]

୯. ଉଞ୍ଚ ପରବତ ଘୁଞ୍ଚି ଘୁଞ୍ଚିକା/ତହିଁରେ ବସିଛି ତିନି ନଈକା/ତିନି ତିନି ପଣ ଅଠର ପଣ/ଭ ଇଙ୍କୁ ଢ଼କାଇ ଗଣ/ କଉଡ଼ି ଗଣାରେ ଦାହିନା ରତି/କୁଆ ନେଇଚଲା କଜଳ ପାତି/ଷାଠିଏ ଟଙ୍କାର ଚଳନ୍ଦ ମଲା/ଏକ କାଳିଗାଇତ ମଥାନ ଜଳ । (ନନ୍ଦ କିଶୋର ଗ୍ରନ୍ଥାବଳୀ - ନାନାବାୟା ଗୀତ

ଗୁଡ଼ିକରେ ଅନେକ ଉପାଦାନ ରହିଛି ଯଥା- ପୁନୋରକ୍ତି ଚକ୍ତୋଟି, ଯମକ ବିଭିନ୍ନ ପ୍ରକାର ଉପମା ବା ସାଦୃଶ୍ୟ କଥନ ଉପମା, ଅତିଶୟୋକ୍ତି ଶ୍ଳେଷ, ଶ୍ଳେଷାତ୍ମକ କଥା କେତେକ ନିରର୍ଥକ ଅଥଚ ଧ୍ୱନି ଅନୁକୃତ ଶବ୍ଦ, ଗୁଣ ପ୍ରକାଶକ ଶବ୍ଦ ବିଶେଷଣ ଆଦି ବହୁ ବିଷୟ ଭାଷା ତାତ୍ତ୍ୱିକ ଆଲୋଚନା ଜରିଆରେ ସମ୍ବଲପୁରୀ ଗୀତରେ ବିଭିନ୍ନ ବିଭାବରୁ ଚିହ୍ନଟ କରାଯାଇପାରେ ।

ନିଜ ସ୍ୱାମୀର ନାମ ଉଚ୍ଚାରଣ ନ କରିବା ଏକ ସାଧାରଣ ଲୋକାଚାର ବିଷୟ। ସ୍ୱାମୀ ନାଁ କହିବାକୁ ବାଧ ହେଉଥିବା ଜଣେ ନବ ଯୁବତୀ କହିଛି, ଚଉଦ ଚାରି କାଟ ଚାରି ନୂଆଁ ଗାଁ/ସେ କଥା ମୋର ବରର ନାଁ । ଏଠାରେ ଏକ ପ୍ରକାର ଆପାତ ଶ୍ଳେଷପୂର୍ଣ୍ଣ ଶୈଳୀ ବ୍ୟବହୃତ ହୋଇଛି । ଏତଦ୍ ଭିନ୍ନ ଅନେକ ସମ୍ବଲପୁରୀ ଗୀତ ରହିଛି ଯାହା 'ବଖାନି' ଛଳରେ ବା ଆଙ୍ଗିକରେ ବର୍ଣ୍ଣିତ (୧୦) । ସମ୍ବଲପୁରୀର ଅଧିକାଂଶ ଲୋକଗୀତ ନୃତ୍ୟ ସହିତ ସଂଯୁକ୍ତ ହୋଇଥିବାରୁ ତାହା ଅଧିକ ତାଲମାନ ଯୁକ୍ତି ହୋଇ ଅଧିକ ପ୍ରୀତିପଦ ଓ ଚିତ୍ତ ଉଲ୍ଲସକ ହୋଇ ପାରିଛି । (୧୧) ଗାଡ୍ ଭାଲୁକେ ବିଶ୍ୱାସ ନାହିଁ/ରାମୁନୁ ମୁହୁଁକେ ବିଶ୍ୱାସ ନାଇଁ' ଅବା ହାଏଁଡ଼ ଭାଙ୍ଗଲେ ଖପରା/ମନ ଭାଙ୍ଗଲେ ଚୁପ୍‌ରା' ବ୍ରାହ୍ମନର ପଏତା/ ମାଏଝିର ଘଏତା' ଅବା ଆହା ମୋ ବନର ହାତୀ, କାଠରେ ପୀରତି କଦମ୍ବ ଗଛରେ ଫୁଲ ଫୁଟେ ନାନା ଜାତି/ ସେ ଫୁଲ ମାଖି ବିଦେଶୀ/ବୁଲୁଥାଉ ନିଶା ରାତିରେ ବଉଲ/ରାଧିକାର ନାମ ଧର ଦୂତିକାର ନାମ ଧର, ଆଦି ଧାଡ଼ିଗୁଡିକ ନାନା ଅନୁଗମ ଓ ବୈଚିତ୍ର୍ୟ ମଣ୍ଡିତ ଅଭିବ୍ୟଞ୍ଜନୀରେ ଗତିଶୀଳ । ଆଲୋଚିତ ସମ୍ବଲପୁର ଅଞ୍ଚଳର ଲୋକଗୀତଗୁଡ଼ିକ ଅନୁଶୀଳନ କଲେ ଏଗୁଡ଼ିକ ମଧ୍ୟରେ ଗୁଢଭାବ ଗାମ୍ଭିର୍ଯ୍ୟ ଓ ପଦ ଲାଳିତ୍ୟ ତଥା ଅପୂର୍ବ ବର୍ଣ୍ଣନା ଚାତୁରୀର ଜୀବନ୍ତ ଅଭିବ୍ୟକ୍ତ ସୁସ୍ପଷ୍ଟ ରୂପେ ଦୃଷ୍ଟି ଗୋଚର ହୁଏ ।(୧୨) ସମ୍ବଲପୁରୀ ଗୀତ ସଂଯୋଜିତ ବିଶେଷଭାବେ ସାଂଗୀତିକ ଅବଶ୍ୟ ତା'ର ଉଚ୍ଚାରଣ ଭଙ୍ଗୀ ଭିତରେ ଏହାର ଅଧିକ ଲିରିକାଲ ମନେ ହୋଇଥାଏ । ସମ୍ବଲପୁରୀ ଲୋକ ଭାଷାର ଉଚ୍ଚାରଣଗତ ବୈଶିଷ୍ଟ୍ୟ ଯେଉଁ ଭାବରେ ସ୍ୱୀକୃତ, ତା'ର ପ୍ରମାଣିକ ଭାଷାତାତ୍ତ୍ୱିକ ଅଧ୍ୟୟନ ହେଲେ ଏହି ଆଞ୍ଚଳିକ ଭାଷାରେ ରଚିତ ଲୋକ ସାହିତ୍ୟର ବିଭିନ୍ନ ବିଭାଗଗୁଡ଼ିକର ସ୍ୱର ମାଧୁରୀ ଚିହ୍ନିତ ହୋଇପାରିବ । କେତେକ ସାଧାରଣ ବା ଲଘୁ ପଦଯୁଗ୍ମ ଯାହା ଉଚ୍ଚାରିତ ହେବା ପାଇଁ ଅଧିକ ଘୋଷ ଦର୍କାର କରେ ନାହିଁ ତା'ର ବହୁଳ ବ୍ୟବହାର ଆଲୋଚିତ ଲୋକଗୀତର ଧାଡ଼ିଗୁଡିକ ଅଧିକ ଲଳିତ କରିଛି ।

---

୧୦. 'କାହିଁ ଯାଇଥିଲୁ ଝୁପୁରୁ ଝାପୁରୁର୍ ମାଁ/ହାଟ୍ ବସ୍‌ଲା କି ନାଇ ? XXX ଚାର୍‌ହି ଆଡ଼େ ହାଟ୍ ବସିଛେ ମଝା ମୁଝି ନାଇଁ' ।

୧୧. ଡକ୍ଟର କୁଞ୍ଜ ବିହାରୀ ଦାସ 'ଓଡ଼ିଆ ଲୋକଗୀତ ଓ କାହାଣୀ' ବିଶ୍ୱଭାରତୀ - ୧୯୫୮, ପୃ.୯

୧୨. ନରସିଂହ ପ୍ରସାଦ ଗୁରୁ 'ପଶ୍ଚିମ ଓଡ଼ିଶାର ଲୋକଗୀତ' (ସମ୍ପର୍ଣ୍ଣ)

ଭାଷାର ଅପରିସୀମ ଗୁଣ ଦୃଷ୍ଟିରୁ ସମ୍ବଲପୁରୀ ଲୋକ ଭାଷାର ବିଶେଷତଃ ତା'ର ଲୋକ ଗୀତଗୁଡ଼ିକର ପ୍ରାଣବାନ ପ୍ରକାଶ ଓ ତା'ର ଶ୍ରୁତି ମାଧୁର୍ଯ୍ୟକୁ ହିଁ ବୁଝାଇ ଥାଏ । ହ୍ୱିଟ୍ ମେନ (Whitman) ଯଥାର୍ଥରେ କହିଛନ୍ତି- 'The profit of rhyme is that it drops seeds of sweeter and more luxuriant rhyme, and uniformity, that it conveys itself into its own roots out of sight. (preface to leaves of grass.)

ଗଦ୍ୟ ପଦ୍ୟର ଶୃଙ୍ଖଳାଗତ ବୈଭିନ୍ନ୍ୟ ଉର୍ଦ୍ଧ୍ୱରେ କିନ୍ତୁ ଉଚ୍ଚମାନର ସାହିତ୍ୟିକ ଉଚ୍ଚତା ତଥା ସୌନ୍ଦର୍ଯ୍ୟତାତ୍ତ୍ୱିକ ଅଭିବ୍ୟଞ୍ଜନା ପ୍ରକଟିତ । 'who both by precept and example shows, That prose is veres and verse is merely prose (Donald A. Struaffer Nature of Poetry, Page 204.)

ଗୀତଗୁଡ଼ିକର ଟାଂନ ଭଙ୍ଗୀ ମଧ ବିଶେଷ ଭାବେ ଲକ୍ଷ୍ଣଣୀୟ । ଏହି ଗାନ ପ୍ରକୃତରେ ଆମ୍ଭାରୁ ହିଁ ଉତ୍ସାନ୍ତରିତ ହୋଇଥାଏ । ଛନ୍ଦ ହେଉଛି ପ୍ରକୃତରେ ଗାନର ଭାବ ସଙ୍କେତ ।(୧୩)

ସମ୍ବଲପୁରୀ ଲୋକ ଗୀତରେ ଛନ୍ଦ ଲୋକ କବିର ଆର୍ଦ୍ର ରସାନୁଭୂତି ସଂଜାତ; ଯାହା ତା'ର ମାର୍ମିକତାରେ ଅଧିକ ଗତିଶୀଳ । ଏଠାରେ ମିଲଙ୍କ ଅଭିମତ ଏକାନ୍ତ ଉଲ୍ଲେଖଯୋଗ୍ୟ । ମିଲ କହିଛନ୍ତି- 'Ever since man has been all deep and Sustained feeling. has tended to express itself in rhythmical language and deeper the feeling and the more characteristic and decided the rhythm.'(୧୪)

ଆଞ୍ଚଳିକ ଜୀବନରେ ଆୟାରଲ୍ୟାଣ୍ଡର ଆଞ୍ଚଳିକ ଭାଷାରେ ଥିଲେ ଏବଂ ଏହି ଭାଷାକୁ ବିଧିବଧ ଭାବରେ ସାହିତ୍ୟିକ ଭାଷାରେ ପରିଣତ କରିବା ପାଇଁ ଆନ୍ଦୋଳନ କରିଥିଲେ ପୋଲାଣ୍ଡରେ Yehid dialect କୁ ମାତ୍ର ୨୦ ହଜାର ଲୋକ କହନ୍ତି; ଯାହା ଯେ କୌଣସି ପ୍ରକାରର ସାହିତ୍ୟ ସୃଷ୍ଟି କରିବା ସମର୍ଥନ ହୋଇଛି । ସେହିପରି ଇଂଲଣ୍ଡର ଓ୍ୱେଲସ୍ ବିଶ୍ୱ

୧୩. ସେଥିପାଇଁ ଅକ୍ଷର ସଂଖ୍ୟା ଧରି ଗାନ ଭଙ୍ଗୀର ଯେଉଁ ନାଂନ ଦିଆହେଲା, ତା'ର ନାମ ହେଲା ଛନ୍ଦ, ଅର୍ଥାତ୍ ଯାହା ଆଚ୍ଛାଦନ କରେ ବା ଭାବକୁ ଘୋଡ଼ାଇ ରଖେ । ଏହି ଛନ୍ଦ ଯଥାଯଥ ରୂପେ ଭାବର ଭେଦ କରି ପାରିଲେ ଗାନର ଭାବ ସଙ୍କେତ ଧରାଯାଏ । ଅକ୍ଷର ଗଣି ଛନ୍ଦର ନାମଟି କହିଦେଲେ କିଛି ଜଣାଯାଏ ନାହିଁ - 'ଛନ୍ଦ' ଘୋଡ଼ଣୀ ଫିଟାଇବା ଦରକାର ।' (ପଣ୍ଡିତ ନୀଳକଣ୍ଠ ଦାସ - ଓଡ଼ିଆ ଛାନ୍ଦର ଇତିହାସ, ନବଭାରତ ୨ୟ ବର୍ଷ - ୧୮, ୬ୟ ସଂଖ୍ୟା, ଜୁନ୍ ଜୁଲାଇ ୧୯୩୫)।

୧୪. Robin Skelton, A Gnide to Rhyme - The Rhythms of Poetry

ବିଦ୍ୟାଳୟରେ ସମସ୍ତ ଅଧ୍ୟାପନା ତଥା ବିଶ୍ୱ ବିଦ୍ୟାଳୟର ସବୁ କାଗଜପତ୍ର ଏକ ଆଞ୍ଚଳିକ ଭାଷାରେ ହେଉଛି । ସେ ପରିପ୍ରେକ୍ଷୀରେ ତେଣୁ ସମ୍ବଲପୁରୀ ଲୋକ ଭାଷାର ଗୁରୁତ୍ୱ ଓ ତାର ସାହିତ୍ୟିକ ମାନ ବିଷୟ ଉପଲବ୍ଧ କରାଯାଇପାରେ ।

ହିନ୍ଦୀ, ବଙ୍ଗଳା, ଗୁଜରାଟୀ ଆଦି ଭାଷାରେ ରଚିତ ହୋଇଥିବା ଲୋକଗୀତଗୁଡ଼ିକ ମଧ୍ୟରେ ଯେଉଁ ଉଚ୍ଚାରଣଗତ ପାର୍ଥକ୍ୟ ରହିଛି ତାହା ଆଞ୍ଚଳିକ ଭାଷା ଯୋଗୁଁ ହିଁ ହୋଇଛି । ମୈଥିଳୀ, ଭୋଜପୁର, ଛତିଶଗଡ଼ୀ ଆଦି ଲୋକଗୀତ ସହିତ ବୁନ୍ଦେଲ ଖଣ୍ଡି, ରାଜସ୍ଥାନୀ ଚାରଣ, ମରହଟ୍ଟା ଓଜି ଅସମିୟାଁ ବିହୁ, ମାଳବୀ ଆଦି ବିଭିନ୍ନ ଲୋକଗୀତ ମଧ୍ୟ ପରିଦୃଷ୍ଟ ହୁଏ । ଭାଷା ଏକ ନିର୍ଦ୍ଦିଷ୍ଟ ସଂସ୍କୃତି ବା ଚଳଣୀର ଯୋଗାଯୋଗ ମାଧ୍ୟମ; ତେଣୁ ସେହି ଭିତ୍ତିରେ ଆଞ୍ଚଳିକ ଭାଷାର ମହତ୍ତ୍ୱ ସ୍ୱୀକୃତ ହେବା ଉଚିତ । (୧୫)

ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷାର ସ୍ୱରର ପ୍ରାଣଧର୍ମ ଅପେକ୍ଷା ସମ୍ବଲପୁରୀ ଆଞ୍ଚଳିକ ଭାଷାର ସ୍ୱରର ଧର୍ମ ଟିକିଏ ଭିନ୍ନ । ଉଦାହରଣ ସ୍ୱରୂପ ସମ୍ବଲପୁରୀ ଭାଷାର କେତେକ ସ୍ୱର ହ୍ରସ୍ୱ ହୁଅନ୍ତି । ଗାଇବା ପାଇଁ ବ୍ୟବହୃତ ହେଉଥିବା ଶବ୍ଦ ଗୁଡିକ ଯାହା ଦୀର୍ଘ ତାହାର ସାଧାରଣତଃ ହସ୍ୱୀଉଚନ ହୋଇଥାଏ । (୧୬) ଏହି ଦୀର୍ଘ ସ୍ୱର ଗୁଡିକର ହ୍ରସ୍ୱୀଭବନ ପ୍ରକିୟା ସମ୍ବଲପୁରୀ ଲୋକଗୀତରେ ସବୁଠାରୁ ଅଧିକ । ପ୍ରାକୃତରେ ଧ୍ୱନି ପ୍ରକିୟା ସଂସ୍କୃତ ଠାରୁ ଭିନ୍ନ ହେବାର କାରଣ ଆଞ୍ଚଳିକ ବୈଶିଷ୍ଟ୍ୟ । (୧୭) ଗୋଟିଏ ଅଞ୍ଚଳର ଗୋଟିଏ ବିଶେଷ ନାଟକୀୟ ଘଟଣା ଭିତ୍ତିରେ ସୃଷ୍ଟି ହୋଇଥିବା ଧାଡିଟିଏ ଭିତରେ ବି ପ୍ରଚୁର ବ୍ୟଞ୍ଜନା ଥାଏ । 'ଯାଉଛ କି ମଧୁ ବାପା-କଲିକତା ହୋ' ଇତ୍ୟାଦି ର ଭାଷାଭିବ୍ୟକ୍ତି ଯେପରି ସେହିପରି ସମ୍ବଲପୁରୀ ଅଞ୍ଚଳରେ ପ୍ରସାରିତ କେତେକ ବଖାନି ଭିତରେ ସେହି ଯୌନତା ଆପାତ୍ ଜୁଗ୍ ପସାଗତ ଅଭିବ୍ୟଞ୍ଜନା ଭିତରେ ରହିଛି । ସମ୍ବଲପୁରୀ 'ବଖାନି' ରୁ ଅନେକ ଧାଡି ଏ ପ୍ରସଙ୍ଗରେ ଉଦ୍ଧାର କରାଯାଇପାରେ । ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଭୌଗୋଳିକ ପରିବେଶ, ଖାଦ୍ୟପେୟ, ଲୋକବିଶ୍ୱାସ, ତଥା ବୃତ୍ତ ଭେଦରେ ଗଣ ସାହିତ୍ୟର ଭାବ ଭାଷା ବଦଳି ଥାଏ । ସେ ପରିପ୍ରେକ୍ଷୀରେ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଗୀତରେ ଏକ ଏକ ବିଶେଷ ରୁଡ଼ି

---

୧୫. 'Language is a learned, shaved, and arbitrary system of vocal Symbols through human beings in the same speech - Community or Sub culture interact and hence Communicate in terms of their Common Cultural experience and expectatious. (Henry lee smith-)

୧୬. Sukumar Sen, A comparative grammar of middle Enclo -

୧୭. ବୀରେନ୍ଦ୍ର ଶ୍ରୀବାସ୍ତବ, ଅପଭ୍ରଂଶ ଭାଷାକା ଅଧ୍ୟୟନ, ନୂଆଦିଲ୍ଲୀ, ୧୯୬୫

ବା ପ୍ରବଚନର ପ୍ରୟୋଗ ଦେଖିବାକୁ ମିଳିଥାଏ । (୧୮) ଏହି ରୁଢ଼ି ଯେଉଁ ବଣିକ ଛନ୍ଦ ଉପରେ ଆଧାରିତ ତାହା ପୁଣି ଉଲ୍ଲିଖିତ ଆଞ୍ଚଳିକ ଗୁଣ ଯୋଗୁଁ ହିଁ ସମ୍ଭବ । କାରଣ ଛନ୍ଦ ହେଉଛି ଏକ ବିଶେଷ ଅନୁଭବର ସାଙ୍ଗୀତିକ ପ୍ରକାଶ (୧୯)

ସମ୍ବଲପୁରୀ ରସରକେଲୀ, ଡ଼ାଲଖାଇ, ଯାଇଫୁଲ, ଛେର୍‌ଛେରା, ସଜନୀ ଗୀତ ଆଦିରେ ଯେଉଁ ଛନ୍ଦ ପରିଦୃଷ୍ଟ ହୁଏ, ସେ ସବୁ ଅଧିକାଂଶରେ ନର୍ସରୀ ରାଇମ କିମ୍ବା 'Limerick' ଅବା Nonsenseଆଦିର ଅର୍ଥହୀନ ଶବ୍ଦ ପୁଞ୍ଜର ଛନ୍ଦ ଗତିକତା ଭିତରେ ଅଧିକ ସାଂଗୀତିକ । ଏହି ସବୁ ଗୀତ ଗୁଡ଼ିକରେ ଶବ୍ଦ ସନ୍ନୀକରଣ ଏପରି ଭାବରେ ହୋଇଥାଏ ଯେ ଅଧିକ ଶବ୍ଦ ଆଦୌ ପରିଦୃଷ୍ଟ ହୁଏନା ।

ଦ୍ୱିତୀୟତଃ ସମ୍ବଲପୁର ଅଞ୍ଚଳର ସଂସ୍କୃତି ମୁଖ୍ୟତଃ ଏକ ଗଣ ସଂସ୍କୃତି ଯେଉଁଥି ପାଇଁ ଏହି ଅଞ୍ଚଳର ନୃତ୍ୟ ଗୀତରେ ଏକ ପ୍ରକାରର ନିର୍ଦ୍ଦିଷ୍ଟ ଅଭିରୁଚି ରହିଛି । କମ୍ ବେଶୀ ରେ ପୁଣି ଏହା ଜନଜାତିର ସମସ୍ତ ସମ୍ମିଳିତ ହୋଇଥିବାରୁ ଏହି ଅଞ୍ଚଳର ସୃଷ୍ଟି ହୋଇଥିବା ଗୀତ ଅଧିକାଂଶରେ ନୃତ୍ୟ ସମନ୍ୱିତ ହୋଇଛି । ଏହା ବ୍ୟତୀତ ଏହି ଗୀତ ଗୁଡ଼ିକରେ ନରନାରୀର ଆଦିମ ଜୀବନ ବୋଧ ଲେଖାଯାଇଛି । ଉଭୟ ପୁରୁଷ ଓ ନାରୀର ପ୍ରଣୟ ଜୀବନର ନାନା ଭାବ ସଂକେତ ଏ ଗୀତରେ ବର୍ଣ୍ଣିତ ହୋଇଛି । ଗୀତ ଗୁଡିକ ସେ ଦୃଷ୍ଟିରୁ ଭାବୋଦ୍ଦୀପକ ହୋଇଛି  ସେହିପରି ମଧ ମାନବୀୟ ଆବେଗଗୁଡ଼ିକୁ ଅଧିକ ଆର୍ଦ୍ର କରିବା ପାଇଁ ଏହି ଗୀତଗୁଡିକରେ ଏକ ଅନ୍ତର୍ନିହିତ ଗୁଣ ରହିଛି ।

ସମ୍ବଲପୁରୀ ଲୋକଗୀତରେ ପୁଣି କେତେକ ନିରର୍ଥକ ଶବ୍ଦ ଯୋଜନା ଅଛି; ଯାହା ସ୍ପଷ୍ଟ ଅର୍ଥ ପ୍ରକରଣ ହୋଇ ପାରୁଥିବା ଗୀତ କବିତାର ଧାଡ଼ିଗୁଡିକ ଅପେକ୍ଷା ଅଧିକ ଅର୍ଥାନ୍ୱିତ ମନେହୁଏ । କାରଣ ସେହିସବୁ ନିରର୍ଥକ ଶବ୍ଦ ଯୋଜନା ସହିତ ଏକ ବିଶେଷ ଧରଣର ଛନ୍ଦ ଯୋଜନା ସଂଯୁକ୍ତ ହୋଇଥାଏ । ଏଠାରେ ଇଂରାଜୀରୁ ଗୋଟିଏ ନାନାବାୟ୍ଯା ଗୀତ ଉଦାହରଣ ଦିଆଯାଇପାରେ ।

All mimsy were the borogroves
AdJ; Noun

And the mome raths outgrabe
AdJ; Noun Verb

---

୧୮. ଶ୍ରୀ ଗୋପୀନାଥ ମହାନ୍ତି - କଳାଶକ୍ତି ଅଗ୍ରଦୂତ, ୧୯୭୩, ପୃ ୧୭୮ ।

୧୯. 'Rhythm is te musical fow of either prose of Verse, which is, brought about, chief and weaker stress - (Wilton Cole - Sound and sense George Allen and unwin Ltd. - London - 1960 page . 60)

ଅର୍ଥ ନାହିଁ; ମାତ୍ର ଏହି ଦୁଇଧାଡି ଗୀତ ହେଲାବେଳେ ଆପାତତଃ ଏକ ଅର୍ଥ ପ୍ରତିପନ୍ନ ହେଲାଭଳି ମନେହୁଏ । ଉକ୍ତ ଧାଡ଼ିଗୁଡିକରେ ବିଶେଷଣ, ବିଶେଷ୍ୟ ତଥା କ୍ରିୟାପଦ ଏକ ଅନୁମାନ ସିଦ୍ଧ ବିଚାର ଦ୍ୱାରା ଚିହ୍ନଟ କରାଯାଇଛି । ଏହି ପ୍ରକାର ପ୍ରକ୍ରିୟା କୁ Jabbrawakcy ବୋଲି ମଧ୍ୟ କୁହାଯାଏ । ଓଡ଼ିଆରେ ବିଶେଷତଃ ସମ୍ବଲପୁରୀ ଲୋକ ଗୀତରେ ଏହି ନିରର୍ଥକ ଶବ୍ଦ ଯୋଜନା ମଧ୍ୟ ବହୁଳ ଭାବେ ପରିଦୃଷ୍ଟ ହୁଏ । ଯଥା 'ଆମେ ପତର ଲମ ଲମ/ ଘିଚି ଖା ତୋର ପେଟର ଚମ' x x କିମ୍ବା 'ଉଞ୍ଚ ପରଚତ ଘୁଞ୍ଚୁ ଘୁଞ୍ଚୁକା/ ତହିଁରେ ବସିଛି ତିନି ମଞ୍ଚକା/ ତିନି ତିନି ପଣ ଅଠର ପଣ/ ଭାଇଙ୍କୁ ଡକାଇ କଉଡି ଗଣ/ କଉଡି ଗଣାରେ ପାହିଲା ରାତି/ କୁଆ ନେଇଗଲା କଜଳ ପାତି/ ଷାଠିଏ ଟଙ୍କାରେ ବଳଦ ମଲା/ ଏକା କାଳିଗାଇ ମଥାନ କଲା' ଇତ୍ୟାଦି । ସମ୍ବଲପୁରୀ ରସରକେଲି, ଡାଲଖାଇ, ତଥା ଯାଇଫୁଲ ଆଦି ଗୀତମାନଙ୍କର ଏହି ପ୍ରକାର କେତେକ ନିରର୍ଥକ ପଦ ଯୋଜନା ଦେଖିବାକୁ ମିଳେ । (୨୦)

ସହରର ଶୁଦ୍ଧ ଭାଷା ଅପେକ୍ଷା ଏହି ବରଂ ଅଧିକ ଜୀବନ୍ତ । ଏହି Pestoral language କୁ ଅନେକେ Living Language ଭାବେ ଅଭିହିତ କରିଥାନ୍ତି । ଏହି ଆଞ୍ଚଳିକ ଭାଷା ମାନ ନୁହେଁ, କି କୌଣସି ଦୃଷ୍ଟିରୁ କୌଣସି ଭାଷା ଠାରୁ ବଡ ନୁହେଁ । ଗୋଟିଏ ଭାଷା ସହିତ ଆଉ ଏକ ଭାଷାର ତୁଳନା କରି କୌଣସି ଭାଷା କୁ ସାନ ବଡ଼ କହିବା ପ୍ରକୃତରେ ଭ୍ରମାତ୍ମକ । କାରଣ ଗୋଟିଏ ଭାଷା ଅନ୍ୟ ଏକ ଭାଷା ଠାରୁ ବଡ଼ ନୁହେଁ କି ସାନ ନୁହେଁ । ଗୋଟିଏ ଭାଷାରେ ବେଶୀ ସଂସ୍କୃତ ରହିଛି, ଆଦୌ ସଂସ୍କୃତ ନାହିଁ ଏପରି ବିଚାର ଭିତ୍ତିରେ ଭାଷାକୁ ସାନ ବଡ଼ କହିବା ବସ୍ତୁତଃ ଏକ ଅବୈଜ୍ଞାନିକ ଦୃଷ୍ଟିଭଙ୍ଗୀ । ସମ୍ବଲପୁରୀ ରସରକେଲୀ, ଡାଲଖାଇ, ଯାଇଫୁଲ, ସଜନୀ ଗୀତ ଆଦି ଗୁଡ଼ିକରେ ସଂଯୋଜିତ ଶବ୍ଦ ଗୁଡ଼ିକର ଉନ୍ନତିକ୍ରମ ନିର୍ଣ୍ଣୟ କରିବାର ଆବଶ୍ୟକତା ଅପେକ୍ଷା ଏଗୁଡ଼ିକର ସାହିତ୍ୟିକ ମୂଲ୍ୟ ନିର୍ଦ୍ଧାରଣ କରିବା ଅଧିକ ଫଳପ୍ରଦ । ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଦୃଷ୍ଟିରୁ ବିଚାର କଲେ ଉଲ୍ଲିଖିତ ଗୀତଗୁଡ଼ିକ ଅଧିକ ସହଜ ଓ ସରସ ପ୍ରାଣର ଭାଷା ବୋଲି ମନେ

---

୨୦. 'ଭଲ ଭଲ ଭଲ ଭଲ ଗାଧି ଯାଇଛନ୍ତ ଆମର ବା ଭଲରେ/ ତୁମର ଟେ ଯାରେଁ ଦୁବ ଚାଉଳରେ ବଉଲ/ XXX କତରିଆ ବନ୍ଦରିଆ/ ଧାଙ୍ଗ୍ରୀ ବିହ ଧରି ନାହିଁ ହେବୁ ଠଟ ରେ/ ଚଲ କରେ ମୋର ହିୟା, ସଜନୀରେ' (ସଜନୀ ଗୀତ)

X X X X X

ରସରକେଲି ବୋ, ଶବଡ଼ିଆ ବାଡ଼ିରେ ରୋଇଲା ଶଙ୍ଖସାରୁରେ, ରୋଇଲି ଶଙ୍ଖସାରୁ ରୋଇଲି ଶଙ୍ଖସାରୁ/ ବୟସ ହୋଇଲା କିରେ ବାର ବରଷରୁ ତ ବାର ବରଷରୁ/ କିଏ ଦେବ ଭାତ କିଏ ଦେବ ଲୁଗାତ କିଏ ଦେବ ଲୁଗା/ କିଏ ସମ୍ଭାଳିବ ପରେ ସମ୍ଭାଳ, ଟିରି ନବଯୁବ ତ ରସରକେଲି ବୋ' ।

ହେବ । ଏହି ଗୀତ ଗୁଡ଼ିକରେ ନର ନାରୀଙ୍କ ମଧ୍ୟରେ ଯେଉଁ ଶ୍ଳେଷପୂର୍ଣ୍ଣ ଉକ୍ତି ପ୍ରତ୍ୟୁକ୍ତି ବିନିମୟ ହୋଇଛି, ତାହା ସାମଗ୍ରିକ ଭାବେ ନର ନାରୀର ଏକ ଚିରନ୍ତ ପ୍ରେମାନୁଭୁତିକୁ ହିଁ ଲିପିବଦ୍ଧ କରିଛି । ପୂର୍ବରୁ ଉଲ୍ଲିଖିତ ହୋଇଛି ଯେ ଏହି ଯୁଗ୍ମ ସଂଗୀତ ଏହି ପରିପ୍ରେକ୍ଷୀରେ ଅଧିକ ରସଯୁକ୍ତ ମନେହୁଏ । 'ବାଲୁତ କାଲରୁ ମୋର ଲହ ଲହ ବାଲ' 'ଅଜ୍ଞାନ ବେଲର ଭାବ ପୀରତି, କିଛି ନାହିଁ ଜାନିତ' ପଦଗୁଡ଼ିକ ଅଧିକ ଚିତ୍ତ ପ୍ରବୋଧକ । ଏହା ପ୍ରଣୟୀର ପ୍ରାଣକୁ ଅଧିକ ଉଦ୍ଦୀପ୍ତ କରେ ।

ତା'ପରେ ଗୋଟିଏ ଭାଷାର ଯେଉଁ ପରିବେଶରେ; ଯେଉଁ ପ୍ରକାରର ସାମାଜିକ ବ୍ୟବସ୍ଥା ଭିତରେ ପୁଷ୍ଟ ହୋଇଥାଏ ତଦନୁଯାୟୀ ତାର ଶବ୍ଦ ଭଣ୍ଡାର ନିର୍ମିତ ହୋଇଥାଏ । (୨୧) ପ୍ରତ୍ୟେକ ଭାଷାର ଏକ ନିଜସ୍ୱ ଚରିତ୍ର ଅଛି । ଓଡ଼ିଶାର 'ପଖାଳ', 'ମେଣ୍ଢା', 'ଦଣ୍ଡା' ଗଂତ ଆଦି ଶବ୍ଦ ୟୁରୋପର କୌଣସି ଭାଷାରେ ପ୍ରଚଳିତ ନାହିଁ । ପୁଣି ଗୋଟିଏ ଅଞ୍ଚଳର ବିଶେଷ ଘଟଣା ବା ବିଶ୍ୱାସ ନୂତନ ଶବ୍ଦ ଓ ଡଗ-ତମାଳୀ ସୃଷ୍ଟିର କାରଣ ହୋଇଥାଏ । ଏ ବିଷୟରେ ଏକ କ୍ଷୁଦ୍ର ଉଦାହରଣ ଦିଆଯାଇପାରେ । କଳାହାଣ୍ଡିରେ 'ନୁନ୍ ଆନି ଯାଇଚି' (ଲୁଣ ଆଣି ଯାଇଛି) ପ୍ରବାଦଟି ଏକ ବିଶେଷ ଅର୍ଥର ବାହକ । ସେ କାଳରେ ଯେତେବେଳେ ଗୋଟିଏ ଅଞ୍ଚଳରୁ ଅନ୍ୟ ଏକ ଅଞ୍ଚଳକୁ କୌଣସି ଯୋଗାଯୋଗ ନଥିଲା, ସେତେବେଳେ କଳାହାଣ୍ଡିର ଲୋକମାନେ ସୁଦୂର ଗଞ୍ଜାମକୁ ଲୁଣ ଆଣି ଯାଉଥିଲେ ଓ ବ୍ୟାଘ୍ର ଭଲ୍ଲୁକ ଗିରି ସଙ୍କୁଳ ପଥରେ ଯାଇ ନିରାପଦରେ ପ୍ରତ୍ୟାବର୍ତ୍ତନ କରିବା ସର୍ବଦା ଅନିଶ୍ଚିତ ଥିଲେ । ତେଣୁ ଏହି ପ୍ରବାଦଟି କଳାହାଣ୍ଡିର ସାଧାରଣ ଲୋକ ଚେତନାରେ ଯେତିକି ଅର୍ଥାନ୍ୱିତ ଓଡ଼ିଶାର ଅନ୍ୟ ଅଞ୍ଚଳରେ ସେହି ବାକ୍ୟାଂଶଟି ହୁଏତ ନିରର୍ଥକ ମନେ

---

୨୧. ରସର କେଲି ବୋ, କହିଁ ଯାଇ ଥିଲୁରେ ଭରିଆ ନିଦ ବେଲେଁ ରେ ଭରିଆ ନିଦ ବେଲେଁ/ କଠାଁଉ ଥୋଇଲୁ ଭଲା ଭଁଗାପିଡ଼ା ତଲେଁରେ ଭଁଗାପିଡ଼ାଁ ତଲେ ତ ଭଁଗାପିଡ଼ାଁ ତଁଲେ/ ପାନଖିଆ ଟୁଟଁ, ପାନଖିଆ ଟୁଁଟ୍ଁର ଚୁପା ପଡ଼ିଚି ପାନଖିଆ, ଟୁଁଟଁର ଚୁପ ପଡ଼ିଛେ ଶୋଇଲା, ଶେଯରେ ତ ରସରକେଲି ବୋ' (ରସରକେଲି)

X X X X

ଡ଼ାଲଖାଇ ବୋ, ବଁଧଚ ଜଙ୍ଗଲ କି କଁଣ୍ଟାର ଜଙ୍ଗଲ/ ତେଲାନି ଭାଜିଲି ଭେଁଡ଼ି ନାଇଁ ଛାଡ଼େ ଘେଙ୍ଗାଲ /ବାଲୁତ କାଲରୁ ମୋର ଲହ ଲହ ବାଲ/ ଲହ ଲହ ବାଲ ବିରାକ୍ ବାନ୍ଧିଗଲି ବେନି/ ଅଗ୍ୟାଁନ ବେଲେର ଭାବ ପୀରତି କିଛି ନାହିଁ ଜାନିତ ଡ଼ାଲଖାଇରେ' XXX (ଡାଲଖାଇ)

ଯାଇ ଫୁଲରେ ତାଲଗଛ ଉଁଚପିଡ଼ା ଆହା ମୋର ଧନ, ତାଲଗଛ ଉଁଚପିଡା/ ଘସୁଥିବୁ ପଛେ ଗୋବର ନୁଡ଼ା ଘଁସୁଥିବୁ ପଛେ ଗୋବର ନୁଡା ଯାଇଫୁଲରେ ପୁଅକୁ ରଖିଛୁ ଡ଼ିଡ଼ା (ଯାଇଫୁଲ)

୨୧. ଶ୍ୟାମସୁନ୍ଦର ରାଜଗୁରୁ, ପ୍ରବନ୍ଧାବଳୀ (ଓଡ଼ିଆ ଛନ୍ଦ)

ହୋଇପାରେ । ଭାଷାର ପ୍ରବାଦ, ପ୍ରବଚନ, ଲୋକ ବିଶ୍ୱାସ, ଢଗଢମାଳୀ ଆଦି ଅତ୍ୟନ୍ତ ଚଳମାନ ତଥା ଗୁରୁତ୍ୱପୂର୍ଣ୍ଣ ଉପାଦାନ ଯାହା ବ୍ୟତିରେକେ କୌଣସି ଭାଷାର ବିକାଶ ସମ୍ଭବ ହୁଏ ନାହିଁ। ତେଣୁ କଟକୀ ଅପେକ୍ଷା ସମ୍ବଲପୁରୀ କିମ୍ବା ବରହମପୁରୀ ଅପେକ୍ଷା ବାଲେଶ୍ୱରୀ ଭାଷା ସାନ ବଡ଼ ବୋଲି କହିବା କୌଣସି ଦୃଷ୍ଟିରୁ ଠିକ୍ ନୁହେଁ, କିନ୍ତୁ ଗୋଟିଏ ଭାଷାର ଯେଉଁ ଦିଗଟି ଅନ୍ୟାନ୍ୟ ଭାଷା ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହୁଏ ତାର ମୂଲ୍ୟାୟନ କରିବାରେ ବସ୍ତୁତଃ କୌଣସି ବାଧା ନାହିଁ। ସମ୍ବଲପୁରୀ ଭାଷାର କେତେକ ଧ୍ୱନି ଅନୁକୃତ ଶବ୍ଦାବଳୀ ରହିଛି ଯାହାକୁ କୁହାଯାଇପାରେ । (୨୨) ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଗୋଟିଏ ନିର୍ଦ୍ଦିଷ୍ଟ ଶବ୍ଦ ସଂକେତର ଯେ ଅନ୍ତରୀଣ ଅର୍ଥ ରହିଥାଏ, ତାହାକୁ ଅସ୍ୱୀକାର କରିହେବ ନାହିଁ। ଉଦାହରଣ ସ୍ୱରୂପ 'କକୋବାୟା' 'ବାଇଆ କକ', 'ଧୋ ବାଇଆ' ଆଦି ଶବ୍ଦଗୁଡିକ ଏକ ଏକ ଶବ୍ଦ ସଂକେତ ଯାହା ଏକ ଭିତ୍ତିପ୍ରଦ ସ୍ଥୂଳ ଚଳମାନ ସ୍ଥିତିକୁ ହିଁ ବୁଝାଇ ଥାଏ । ଅନ୍ୟ ପକ୍ଷରେ ଗୋଟିଏ ଅଞ୍ଚଳର ଗୋଟିଏ ଶବ୍ଦ କେଉଁ କ୍ରମରେ ବିକୃତ ହୋଇ ଭିନ୍ନ ରୂପରେ ଉଚ୍ଚାରିତ ହୁଏ ଓ ଭିନ୍ନ ରୂପରେ ପ୍ରଚଳିତ ହୁଏ, ସବୁ କ୍ଷେତ୍ରରେ ତାର କୌଣସି ବୈଜ୍ଞାନିକ ଯୌକ୍ତିକତା ନାହିଁ। କଳାହାଣ୍ଡୀର 'ମାନେପୁର' ଶବ୍ଦଟି ଏହି ପ୍ରକାରର । (୨୩)

ସମ୍ବଲପୁରୀ ଲୋକଗୀତର ସୌନ୍ଦର୍ଯ୍ୟ ତାତ୍ତ୍ୱିକ ମୂଲ୍ୟ ବାସ୍ତବିକ ବହୁ ଦୃଷ୍ଟିରୁ ଅନୁପମ । ସରସ ପ୍ରେମ ଜୀବନର ଆର୍ଦ୍ର ଅନୁଭୁତିକୁ ସେହିପରି ମାର୍ମିକ ଭାଷାରେ ବ୍ୟକ୍ତ କରିବାରେ ଲୋକକବିର ପ୍ରତିଭା ଅତୁଳନୀୟ ଥିଲା । ମାତ୍ର ଏବେ ଆକାଶ ବାଣୀରେ ଗୀତ ହେଉଥିବା ସମ୍ବଲପୁରୀ ଗୀତଗୁଡ଼ିକରେ ନରନାରୀଙ୍କ ଭିତରେ ଯେଉଁ ପ୍ରେମ ଓ ମିଳନ ସଂକେତ ଦିଆଯାଉଛି ତାହା ଅପେକ୍ଷାକୃତ ରୁଚିହୀନ ମନେହୁଏ । ଏହା ଦ୍ୱାରା ସମ୍ବଲପୁରୀ ଲୋକଗୀତର ଯେଉଁ ନାନ୍ଦନିକ ଅନୁଭବ ଥିଲା ତାହା ବ୍ୟାହତ ହେଉଛି । ଏ ବିଷୟ ପ୍ରତି ଉଦାସୀନ ହେଲେ ସମ୍ବଲପୁରୀ ଲେକଗୀତର ମହତ୍ତ୍ୱ କ୍ରମଶଃ ହ୍ରାସ ପାଇବ ।

ୱାର୍ଡସୱାର୍ଥଙ୍କ ପ୍ରସିଦ୍ଧ 'Solitary Reaper' କବିତାରେ ଯେଉଁ ବାଳିକାଟି ଗୀତ ଗାଉଥିବାର କୁହାଯାଇଛି, ତାହା ଏକ ଆଞ୍ଚଳିକ ଭାଷାର ତାହା ହେଉଛି Gaelic dialect । ସ୍କଟଲାଣ୍ଡ; ଆଏରଲାଣ୍ଡ ଓ ଫ୍ରାନ୍ସର କେତେକ ଅଞ୍ଚଳରେ ଏହି Gaelic dialect ପ୍ରଚଳିତ;

୨୨. **'Smallest significant unity of the sound' - (Questions of Rhetoric, Ed. John E. Jordan, Holt Rine hart. Inc, 1971, Page-94)**

୨୩. 'ମାନେପୁରର ଭାତ ପିଠା ଲାଗିଲା ନ କାଏଁ' (ମାନେପୁରର ଭାତ ପିଠା ଲାଗିଲାଣି କି ?) (କଳାହାଣ୍ଡିରେ ପ୍ରଚଳିତ ପ୍ରବାଦ)

ଯାହାର ସାହିତ୍ୟିକ ମର୍ଯ୍ୟାଦା କମ୍ ନୁହେଁ । ସେହିପରି Wales ରେ ଯେଉଁ Welsh dialect ପ୍ରଚଳିତ ତାହା ସେ ଅଞ୍ଚଳରେ ସବୁ କ୍ଷେତ୍ରରେ ଏକ ଗୌଣ ଭାଷାର ମର୍ଯ୍ୟାଦା ଲାଭ କରିଛି । ଏହି Wales ଅଞ୍ଚଳରେ ଗାନ କରୁଥିବା ଲୋକମାନେ ଅତୀତରେ ଇଂରାଜୀ ଉଚ୍ଚାରଣରେ British Pronounce ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ; ମାତ୍ର ଏବେ ଇଂରାଜୀ ଉଚ୍ଚାରଣରେ ସେମାନେ ଉଦ୍ଦେଶ୍ୟ ମୂଳକଭାବେ ସେମାନଙ୍କ ନିଜ ଅଞ୍ଚଳର ଆଞ୍ଚଳିକ ଭାଷାର ଉଚ୍ଚାରଣଟାକୁ ଭର୍ତ୍ତି କରୁଛନ୍ତି । ସେ ଦୃଷ୍ଟିରୁ ବିଚାରକଲେ ପୃଥିବୀର ସବୁ ଭାଷା ଆଞ୍ଚଳିକ ଭାଷା । (୨୪) ଆଞ୍ଚଳିକ ଭାଷାର ସ୍ୱାତନ୍ତ୍ୟ ନଷ୍ଟ ହେଲା ଭଳି କୌଣସି ଉଦ୍ୟମ କରିବା ଉଚିତ ନୁହେଁ । ଆଜିର ଶିଳ୍ପାଞ୍ଚଳର ବହି ଜାତି ବହୁ ବର୍ଣ୍ଣର ଲୋକମାନଙ୍କର ଏକତ୍ର ବସବାସ ସଂସ୍କୃତିହୀନତା ତଥା ସହର ସଭ୍ୟତା ପ୍ରକୃତରେ ଆଞ୍ଚଳିକ ଭାଷାର ଆବେଗ, ଉଚ୍ଚାରଣ ତଥା ଛନ୍ଦକୁ ବଦଳାଇ ଦେଇଛି, ଯାହା କୌଣସି ଦୃଷ୍ଟିରୁ ଶୁଭଙ୍କର ନୁହେଁ । ପତ୍ର ପତ୍ରିକାରେ ସ୍ଥାନୀୟ କେତେକ ଲୋକଗୀତକୁ ଲକ୍ଷ୍ୟକଲେ ଏବଂ ଗ୍ରାମାଞ୍ଚଳରେ ସାଧାରଣ ଲୋକମାନଙ୍କ ଦ୍ୱାରା ଗୀତ ହେଉଥିବା ସେ ସବୁ ଗୀତର ମୌଳିକ ରୂପ ସହ ତୁଳନା କଲେ ଏହାର ଭେଦ ଜଣାପଡ଼ିବ । ଏ ପ୍ରସଙ୍ଗରେ ଇଂରାଜୀ ସମାଲୋଚକ ଏଫ.ଆର.ଲେଭିଜ୍ କହିଛନ୍ତି ଯେ ପ୍ରଚଳିତ ସହର ସଭ୍ୟତାର ପରିବେଶ ଭିତରେ ସାହିତ୍ୟରୁ ପାରମ୍ପରିକ ଛନ୍ଦ ନଷ୍ଟ ହୋଇଯାଉଛି । (୨୫) ଲୁଇଜ କେରଲ ଙ୍କ ପରି କବି ପୁରୁଣା ଛନ୍ଦର ସ୍ୱଭାବ ଟାକୁ ଧରି ରଖିବା ପାଇଁ ନାନାବାୟା ଗୀତ ରଚନା କରିଛନ୍ତି । ସମ୍ବଲପୁରୀ ଲୋକଗୀତରେ କେବଳ ଛନ୍ଦ ବା ସଙ୍ଗୀତ ଯାହା ନୃତ୍ୟ ସହିତ ସମନ୍ୱିତ ହୋଇ ଅଭିବ୍ୟକ୍ତି ଲାଭ କରିଛି ତାହା ସହିତ ତାର ସାହିତ୍ୟିକ ମର୍ଯ୍ୟାଦା ମଧ ରହିଛି । ଏହି ସାହିତ୍ୟିକ ମର୍ଯ୍ୟାଦା ବୁଦ୍ଧିଦୀପ୍ତ ବ୍ୟଞ୍ଜନା କିମ୍ବା ଅତିଶୟ କଳ୍ପନା ଅଥବା ଅତ୍ୟଧିକ ଆଳଙ୍କାରିକତା ପ୍ରୟୋଗରେ ପର୍ଯ୍ୟବେସିତ ନୁହେଁ ବରଂ ସହଜ ସ୍ୱାଭାବିକ୍ ଜୀବନବୋଧର ଅନୁଭବକୁ ନେଇ ଏହା ଗତିଶୀଳ । ସମ୍ବଲପୁରୀ ଲୋକ ଗୀତରେ ଯେଉଁ ସ୍ୱରଲହର ରହିଛି, ଯାହା ନୃତ୍ୟର ତାଳେ କେବଳ ଗୀତ ହୋଇଥାଏ ତାହା ମଧ ଅଧିକ ଅର୍ଥ ଦ୍ୟୋତକ । କାରଣ ଏହି ସଂଗୀତ, ପ୍ରଲମ୍ବନରେ ମଧ ଏକ ପ୍ରକାର ମହତ୍ତ୍ୱର ଅର୍ଥ ପ୍ରକଟିତ ହୋଇଥାଏ ଯେଉଁଥିପାଇଁ ସମାଲୋଚକ କୁକ୍ 'Music is a language' ବୋଲି ମତବ୍ୟକ୍ତ କରିଛନ୍ତି । ପେଟେରସନ୍ (W.M. Patterson) ମଧ ଅନୁରୂପ ଅଭିମତ ଦେଇ କହିଛନ୍ତି 'The

୨୪. Ed. J.B. Pride and Janet Holmes, Socio Lingustics - (Penguin Education, 1972, Page. 97)

୨୫. 'Urban conditions, a sophisticated Civilization, rapid change and mingling of cultures have destroyed the old rhymes and habits and nothing adequate has taken their place' (Questions of Rhetoric - Ed John E. Jordan U.S.A. 1971, P.23)

sound echoing the sense' (୨୬) ମୌଖିକ ରୀତି ସହିତ କାବ୍ୟରୀତିର ଚମତ୍କାର ସମନ୍ୱୟର ରସରକେଲୀ, ତାଲଖାଇ ସଜନୀ ଗୀତ, ଦଣ୍ଡନାଚ ଯାଇ ଫୁଲ ଆଦି ଗୀତଗୁଡ଼ିକରେ ପରିଲକ୍ଷିତ ହୁଏ । ସଙ୍ଗୀତ ଯାହା ଉଲ୍ଲିଖିତ ଗୀତଗୁଡ଼ିକରେ ଏକ ଗୁରୁତ୍ୱପୂର୍ଣ୍ଣ ବିଭାବ ଯାହା ବସ୍ତୁତଃ ପାଠକର ରସଚେତନାକୁ ଶୀଘ୍ର ଆର୍ଦ୍ର କରିଦିଏ, ତାହା ଏକ ପ୍ରକାର ଅର୍ଥ ପ୍ରକାଶ କରିଥାଏ । ଏହି ସଂଗୀତର ଅର୍ଥ ପ୍ରକରଣ ଦିଗ୍‌ବଳୟ ବା ପରିଧି ଅଧିକ ବିସ୍ତୃତ । ଏହି ସାଙ୍ଗୀତିକ ଛନ୍ଦ ଆବୃତ୍ତି ଭିତରେ ଅଧିକ ପ୍ରସାରଣଶୀଳ । ଏହି ଗୀତଗୁଡ଼ିକରେ ଗଦ୍ୟ ସଂଳାପ ସଂଯୋଜିତ ହୋଇ ଅଧିକ ପ୍ରସାରଣଶୀଳ ମୁକ୍ତ ଛନ୍ଦ ବୋଲି କହିଛନ୍ତି, ତାହା ସମ୍ବୋଧନମୂଳକ ଲୋକଗୀତ ମାନଙ୍କରେ ସ୍ଥାନେ ସ୍ଥାନେ ପରିଲକ୍ଷିତ ହୁଏ । ଲୋକଗୀତରେ ସଂଯୋଜିତ ଭାବ ମଧ ତାର ଭାଷାକୁ ସ୍ୱତଃ ସାଙ୍ଗୀତିକ କରିଛି । ମଣିଷର ଗଭୀର ଜୀବନାନୁଭୂତି ସହିତ ଏହି ସାଙ୍ଗୀତିକତାର ସମ୍ପର୍କକୁ ଅସ୍ୱୀକାର କରିହେବ ନାହିଁ । ଯେଉଥିପାଇଁ ଜଣେ ସାହିତ୍ୟ ଛାତ୍ର କହିଛନ୍ତି, ' That all composers whose music has a tonal basis have used the same, or closily similar melodic phrases, harmonics and rhythms to express and evoke the same emotions-Music is a Language, not merely in a vague general sense, but in the detailed sense that we can identify idioms and draw up a list of meanings' (୨୭) ସମ୍ବଲପୁରୀ ଲୋକଗୀତରେ ପୁଣି ବାକ୍‌ସ୍ୱର ଅପେକ୍ଷା ଗୀତିସ୍ୱର ସ୍ଥୂଳତଃ ଅଧିକ ପରିଲକ୍ଷିତ ହୁଏ । ଏହି ଗୀତି ସ୍ୱର ପ୍ରାଣରେ ଯେଉଁ ଅଭୁଲା ଗଭୀର ଅନୁଭବ ଜାଗ୍ରତ କରେ ତାହା ପୂର୍ବୋକ୍ତ ସ୍ୱରର ଗୀତ କରିପାରେ ନାହିଁ । ନୃତ୍ୟର ତାଳେ ତାଳେ ଗୀତଗୁଡ଼ିକ ଯେତେବେଳେ ଦୂର ଦିଗନ୍ତରୁ ଭାସି ଆସୁଥାଏ, ତହା ଅତ୍ୟନ୍ତ ମନୋମୁଗ୍ଧକର ।

ଆଞ୍ଚଳିକ ଭାଷା ଲୋକ ଜୀବନର ଅକୃତ୍ରିମ ଅନୁଭବକୁ ବ୍ୟକ୍ତ କରିଥାଏ ଆଜି କେତେଜଣ ବ୍ୟକ୍ତି ସହର ସଭ୍ୟତାର ପରିବେଶ ଓ ତାର ମନସ୍ତତ୍ତ୍ୱକୁ ସମ୍ବଲପୁରୀ ଭାଷାରେ ବ୍ୟକ୍ତତ କରିବାକୁ ଯାଇ ପରିଣତିରେ ଏହି ଭାଷାର ସୌନ୍ଦର୍ଯ୍ୟ ନଷ୍ଟ କରୁଛନ୍ତି । ପୃଥିବୀର ସବୁ ଲୋକ ସବୁକାଳରେ ସେମାନଙ୍କ ଅଞ୍ଚଳର ଭାଷାରେ ହିଁ ମାନକ ଭାଷା ବରଂ ଗୌଣ । ବ୍ୟକ୍ତିର ଦୈନନ୍ଦିନ ଜୀବନରେ ଏହି ଆଞ୍ଚଳିକ ଭାଷା ହେଉଛି ମୁଖ୍ୟ ହୋଜେନ (E. Haugen) କହନ୍ତି 'A Language is the medium of communication between speakers of different dialects'

୨୬. **W.W. Patterson, The Rhythm of prose, Columbia University studies in English No. 27, Newyork 1916, P. 38)**

୨୭. **Musical and Human experience, Lowis Arnand Reid, I. Litt**

(୨୮) ପୃଥିବୀରେ ହଜାର ହଜାର କଥିତ ଭାଷା ରହିଛି, ଏପରି ପୃଥିବୀରେ କୌଣସି ଲୋକ ନାହିଁ ଯେ ତା ଆଞ୍ଚଳିକ ଭାଷାରେ କଥା ନ କହି ଶୁଦ୍ଧ ସାହିତ୍ୟିକ ଭାଷାରେ କଥା କହିଥାଏ, ଅବଶ୍ୟ ତାର ବ୍ୟକ୍ତିଗତ ତଥା ତାର ସାଧାରଣ ସାମାଜିକ ଜୀବନରେ । Abelam, Wosera, Doric, Doma, Veneto, Brahmin, Stati, Yaviyufa, Tukano, Triestino, ଆଦି ହଜାର ହଜାର dialect ରହିଛି ଯେଉଁଥିରେ ପୃଥିବୀର ସବୁ ଦେଶର ଲୋକ କଥା କହନ୍ତି । dialect କୁ ସାନ ବୋଲି ମନେ କରିବା କୌଣସି ଦୃଷ୍ଟିରୁ ଉଚିତ ନୁହେଁ, ଯେହେତୁ dialect ହିଁ ଯେ କୌଣସି ଭାଷାର ଶକ୍ତି ଓ ସୌନ୍ଦର୍ଯ୍ୟର କାରଣ । ଆଲୋଚିତ ସମ୍ବଲପୁରୀ dialect ର ଲୋକଗୀତ ଗୁଡ଼ିକର ସାହିତ୍ୟିକ ତଥା ସାଙ୍ଗୀତିକ ମୂଲ୍ୟ ସେହି ପରିପ୍ରେକ୍ଷୀରେ ସ୍ୱୀକାର୍ଯ୍ୟ ।



୨୮. Ed.J.B. Pride 2 Janet Holmes, Socio linguistics, Penguine Education, 1972, P. 102.

# ପଶ୍ଚିମ ଓଡ଼ିଶାର ଯାତ୍ରା ପରଂପରା

# ପାଟଖଣ୍ଡା ଯାତ୍ରା

**ଡ଼.କୁମୁଦ ରଞ୍ଜନ ପାଣିଗ୍ରାହୀ**

ସାଧାରଣତଃ ପରିଲକ୍ଷିତ ହୁଏ ଯେ ଲୋକ ଦେବତା ହିଁ ଯାତ୍ରାର ମୁଖ୍ୟ କେନ୍ଦ୍ର ବିନ୍ଦୁ ହୋଇ ରହିଥାନ୍ତି । ' ଯାତ୍ରା' ମୂଳତଃ ଲୋକ-ଉତ୍ସବ ଏବଂ ଲୋକ ନାଟକର ପ୍ରାଚୀନ ସ୍ୱରୂପ । ଏହା ମଧ ଦେଖାଯାଏ ଯେ, 'ଯାତ୍ରା'ର ମୂଳ ଆଧାର ହେଉଛି ଧର୍ମୀୟ ବିଶ୍ୱାସ । ଏଭଳି କୌଣସି ଲୋକ ଯାତ୍ରା ନାହିଁ, ଯେଉଁଥିରେକି ଲୋକ-ଦେବତା ବା ଲୋକ ଧର୍ମୀୟ ବିଶ୍ୱାସ ନାହିଁ । ଯାତ୍ରା ଲୋକ ମନରେ ଯେତେଭାବରେ ଭକ୍ତି-ଭାବ ଉଦ୍ରେକ କରେ, ସେତେ ପରିମାଣରେ ଆନନ୍ଦ-ଭାବ ମଧ ସୃଷ୍ଟି କରିଥାଏ- ସର୍ବୋପରି ଯାତ୍ରାରେ ଲୋକ-ମାନସ ଅତ୍ୟନ୍ତ ସ୍ପଷ୍ଟ ଭାବରେ ରହିଥାଏ । ଲୋକର ପାରଂପରିକ ଆଦିମତା ହିଁ ଯାତ୍ରାର ଏକ ମୁଖ୍ୟ ବିଭାବ ।

ଏହି ପ୍ରବନ୍ଧରେ ଏଭଳି ଏକ ଯାତ୍ରା ସମ୍ବନ୍ଧରେ ଆଲେଚନା କରାଯିବାର ପ୍ରୟାସ ରହିବ, ଯେଉଁଥିରେକି ଉପରୋକ୍ତ ମତକୁ ସମର୍ଥନ କରିହେବ । ଏହି 'ଯାତ୍ରା'ରେ ଦେବତା ଲୋକଙ୍କ ହାରିଗୁହାରୀ ଶୁଣେ ଓ ପ୍ରତିକାରର ଉପାୟ କହେ ଏବଂ, ଏହା ବ୍ୟତୀତ ଆହୁରି ଦୁଇଟି କାମ ବିଶେଷ ଭାବରେ କରିଥାଏ, ବନ୍ଧ୍ୟାନାରୀଙ୍କୁ ସନ୍ତାନ ଦାନ ଓ ପାଗଳ ବ୍ୟକ୍ତିଙ୍କୁ ଆରୋଗ୍ୟ କରିବା । ଏହି ଦୁଇଟି କାର୍ଯ୍ୟ, ମୁଖ୍ୟତଃ ବୈଦ୍ୟ ବା ଡ଼ାକ୍ତରଙ୍କର । ମାତ୍ର ଏହି ଯାତ୍ରା ସମୟରେ ଦୂରଦୂରାନ୍ତରୁ ବନ୍ଧ୍ୟା ନାରୀମାନେ ଓ ପାଗଳମାନଙ୍କୁ ନେଇ ସମ୍ପର୍କୀୟ ବ୍ୟକ୍ତିମାନେ ଏଠାକୁ ଆସିଥାନ୍ତି । ଦେବତାଙ୍କର ଏହି କାର୍ଯ୍ୟକ୍ରମ ଅତ୍ୟନ୍ତ କୌତୂହଳପୂର୍ଣ୍ଣ । ଏହି ଯାତ୍ରାର ନାମ 'ପାଟଖଣ୍ଡା ଯାତ୍ରା' । ଯାତ୍ରା ଦଶହରା ବିଜୟା ଦଶମୀରୁ ଆରମ୍ଭ ହୋଇ ପୂର୍ଣ୍ଣିମା ପର୍ଯ୍ୟନ୍ତ ଚାଲେ ।

ବଲାଙ୍ଗୀର ସହରଠାରୁ ଦେଗାଁ (ଟିଟିଲାଗଡ ରାସ୍ତାରେ) ଏବଂ ସେଠାରୁ ଜାରାସିଂହା ଯିବାକୁ ହୁଏ । ଏହି ଜରାସିଂହାରେ ପାଟଖଣ୍ଡା ଯାତ୍ରା ଅନୁଷ୍ଠିତ ହୋଇ ଥାଏ । ଜରାସିଂହା ପାଟଣା ରାଜ୍ୟର ଏକ ଗଡ ଥିଲା ଏବଂ ସେଠାରେ ଜଣେ ଜମିଦାର (ରାଜା) ରହୁଥିଲେ । ଜରାସିଂହାର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ' ବୁଢ଼ୀଆଈ' । ମାତ୍ର ଏଠାରେ 'ପାଟଖଣ୍ଡା' ଦେବତା ଅତ୍ୟନ୍ତ ଲୋକପ୍ରିୟ ଏବଂ ତାଙ୍କ ନାମରେ ଅନୁଷ୍ଠିତ 'ଯାତ୍ରା' ମଧ ଆଖପାଖ ବହୁ ଅଞ୍ଚଳରେ ଲୋକପ୍ରିୟ ଯାତ୍ରା ।

ଏହି ଯାତ୍ରା ସଂପର୍କରେ ଜାଣିବା ପୂର୍ବରୁ ପାଟଖଣ୍ଡା ଦେବତା ସମ୍ପର୍କରେ ରହିଥିବା ଲୋକ କଥା ବା କିମ୍ବଦନ୍ତୀ ସମ୍ବନ୍ଧରେ କିଛିଟା ଜାଣିବା ଆବଶ୍ୟକ ।

ପାରଳାଖେମୁଣ୍ଡି (ଗଞ୍ଜାମ ଜିଲ୍ଲାନ୍ତର୍ଗତ) ର ସାନ ଖେମୁଣ୍ଡି ଅଞ୍ଚଳରେ ଜଣେ କନ୍ଧ ଦମ୍ପତି ଏକ ଜଙ୍ଗଲ ଭିତରେ ବାସ କରୁଥିଲେ । ସେ ଦୁଇ ପ୍ରାଣୀ ଜଙ୍ଗଲରୁ ଫଳମୂଳ ଓ କାଠ ସଂଗ୍ରହ କରି ଜୀବିକା ଅର୍ଜନ କରି ସୁଖଦୁଃଖରେ ଚଳୁଥିଲେ । କନ୍ଧ ଜଣେ ସାହୁକାରଠାରୁ କିଛି ଅର୍ଥ ଋଣ ସୂତ୍ରରେ ଆଣିଥିଲା ଏବଂ ସେ ଅସୁଲି ନିମିତ୍ତ ଜଙ୍ଗଲସ୍ଥ କନ୍ଧର କୁଡ଼ିଆକୁ ଆସିଲା । ସେତେବେଳେ କନ୍ଧ ଦମ୍ପତି ଜଙ୍ଗଲକୁ ଫଳମୂଳ ସଂଗ୍ରହ କରିବାକୁ ଚାଲିଯାଇଥିଲେ । କୁଡ଼ିଆ ସମ୍ମୁଖରେ ଥିବା ଏକ ବଡ଼ ମହୁଲ ଗଛ ତଳେ ସୁନ୍ଦର ଛାଇ ଥିବାରୁ, ସାହୁକାର ସେଠାରେ ଠିଆ ହୋଇ କନ୍ଧକୁ କିଛି ସମୟ ଅପେକ୍ଷା କରିବ ବୋଲି ଠିକ୍ କଲା । ଗଛ ତଳେ ବିଶ୍ରାମ ନେଇଥିବା ବେଳେ ତାର ଦୃଷ୍ଟି କୁଡ଼ିଆ ଭିତରକୁ ପଡ଼ିବାରୁ ସେ ଏକ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ପାଇଲା ।

ଚାଳରେ ଗୋଟାଏ ଖଳେଇ ଝୁଲୁଥାଏ । ଖଲେଇର ଠିକ୍ ତଳେ ଗୋଟଏ ପନଖି ଥୁଆ ହୋଇଥିଲା । ଖଲେଇ ଭିତରୁ ଗୋଟିଏ ମାଛ ଡେଇଁପଡ଼ି ସିଧା ଯାଇ ପନଖିରେ ପଡୁଥିଲା । ଏବଂ ପଡ଼ିବା ସଙ୍ଗେ ସଙ୍ଗେ ତିନି ଗତ ହୋଇ ତଳେ ପଡୁଥିଲା ଓ ଉଭେଇ ଯାଉଥିଲା । ଏଭଳି ଗୋଟିକ ପରେ ଗୋଟିଏ ହୋଇଚାଲିଥାଏ । ସାହୁକାର ଏହି ଅଦ୍ଭୁତ ଦୃଶ୍ୟ ଦେଖି ବିସ୍ମିତ ହେଲା ଏବଂ ମନେ ମନେ ସିଦ୍ଧାନ୍ତ କରିନେଲା ଯେ ପନକିର ନିଶ୍ଚୟ କିଛି ଗୋଟାଏ ଅଲୌକିକ ଶକ୍ତି ରହିଛି ।

ଏହି ସମୟରେ କନ୍ଧ ଦମ୍ପତି ଫେରିବାରୁ ସେଇ ଅଦ୍ଭୁତ କାର୍ଯ୍ୟଟି ବନ୍ଦ ହୋଇଗଲା । କନ୍ଧ ଦମ୍ପତି ସାହୁକାରକୁ ଗଛ ମୂଳେ ଠିଆ ହୋଇଥିବା ଦେଖି ବ୍ୟସ୍ତ ହୋଇପଡ଼ିଲେ ଏବଂ ଦୁଃଖ ପ୍ରକାଶ କଲେ । ସାହୁକାର ସେମାନଙ୍କୁ ଆଶ୍ୱାସନା ପ୍ରଦାନ କରି କହିଲା, ତୁ ଯଦି ମୋତେ ଗୋଟାଏ ଜିନିଷ ତୋ ଘରୁ ଦେବୁ, ତା' ହେଲେ ମୁଁ ତୋର ଋଣ ମାଫ୍ କରିଦେବି ।

କନ୍ଧ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲା, ମୋ ଘରେ କଣ ଅଛି ସାହୁକାର, ଯେ ତୁମକୁ ଦେବି ? ଯାହା ନେବାକୁ ଚାହୁଁଛ ନେଇଯା । ସାହୁକାର ପନିକିଟିକୁ ନେବାକୁ କହିବାରୁ ଆନନ୍ଦରେ କନ୍ଧ ରାଜି ହୋଇଗଲା । ପନିକିଟି ନେଇ ସାହୁକାର ତା'ର ଘରକୁ ଫେରି ଆସିଲା ।

ସେଇ ରାତିରେ ସାହୁକାର ସ୍ୱପ୍ନ ଦେଖିଲା ଯେ ପନକିଟି ହେଉଛି 'ପାଟଖଣ୍ଡା' ଦେବତା ଏବଂ ସେହି ଦେବତା ସ୍ୱପ୍ନରେ ଆଦେଶ ଦେବାରୁ, ସକାଳୁ ସାହୁକାର ପନକିଟିକୁ ଧରି ଦେବତାଙ୍କ ନିର୍ଦ୍ଦେଶିତ ଦିଗରେ ଏକମୁହାଁ ହୋଇ ବାହାରିଲା । ସେ କୋଟଗଡ (ଫୁଲବାଣୀ ଜିଲ୍ଲା) ଦେଇ ବଲାଙ୍ଗୀର ଜିଲ୍ଲାକୁ ପ୍ରବେଶ କଲା । ରତାଖଣ୍ଡି, ଭୂତାପଡା, ଚାଟିପଦର, କପସିଲା ଗ୍ରାମ ଦେଇ ଜରାସିଂହା ନିକଟରେ ପ୍ରବାହିତ 'ସୁନ୍ ଟଡ' ନଦୀକୂଳରେ ପହଞ୍ଚିଲ । ନଁ ଗାଁ ଓ ସାଲେପାଲି

ନାମକ ଦୁଇଟି ଗ୍ରାମର ମଧ୍ୟବର୍ତ୍ତି ନଦୀ କୂଳରେ ପହଞ୍ଚି ସାହୁକାର ପନକିଟିକୁ ରଖିଦେଇ ସ୍ନାନାର୍ଥେ ପାଣି ଭିତରକୁ ପ୍ରବେଶ କଲା । ସ୍ନାନ ସମାପ୍ତ କରି ସେ କୂଳକୁ ଆସି ଦେଖିଲା ଯେ ପନକିଟି ନାହିଁ । ବହୁତ ଖୋଜା ଖୋଜି ପରେ, ଏହା ଦେବତାର ମାୟା ବୋଲି ମନେ କରି ସେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲା । ସେତେବେଳେ ସୁନଗଡ଼ ନଦୀର ଉପକୂଳ ଅଞ୍ଚଳ ଘଞ୍ଚ ଅରଣ୍ୟରେ ପରିପୂର୍ଣ୍ଣ ଥିଲା । ଏହି ଅରଣ୍ୟର ନାମ 'ଦେବାରଣ୍ୟ' ବା 'ଦେଝାର' । ଏହି 'ଦେଝାର' ରେ ହିଁ ପାଟଖଣ୍ଡା ସାହୁକାରର ଦୃଷ୍ଟିରୁ ଅଦୃଶ୍ୟ ହୋଇଯାଇଥିଲେ ।

ସେହି ରାତିରେ ପାଟଖଣ୍ଡା ଜରାସିଂହାର ଜମିଦାରଙ୍କୁ କହିଲେ ରାଜା ! ମୁଁ ପାଟଖଣ୍ଡା ବନଖଣ୍ଡୀ । ସାନଖେମୁଣ୍ଡିରୁ ଆସି ତୋ ରାଜ୍ୟରେ ପ୍ରବେଶ କରିଛି । ତୁ ମୋର ପୂଜାର ବ୍ୟବସ୍ଥା କର, ତୋର ମଙ୍ଗଳ ହେବ ।

ରାଜା କହିଲେ, ଏହି ରାଜ୍ୟର ଇଷ୍ଟଦେବୀ ହେଉଛନ୍ତି 'ବୁଢ଼ୀ ଆଈ' ଦେବୀ । ତାଙ୍କର ବିନା ଅନୁମତିରେ ତୋତେ ମୁଁ ପୂଜା କରିପାରିବି ନାହିଁ । ସେ ଯଦି ରାଜି ହୋଇ ତୋତେ ଏହି ପୂଜାରେ ସ୍ଥାନ ଦେବେ, ତା'ହେଲେ ମୁଁ ନିଶ୍ଚୟ ତୋର ପୂଜାର ବ୍ୟବସ୍ଥା କରିବି । ତୁ 'ବୁଢ଼ୀ ଆଈ' ଠାରୁ ଅନୁମତି ଆଣ ।

ପାଟଖଣ୍ଡା 'ବୁଢ଼ୀ ଆଈ' ଦେବୀଙ୍କ ନିକଟକୁ ଯାଇ ନିଜର ଉଦ୍ଦେଶ୍ୟ ଜଣାଇଲେ । ଦେବୀ କହିଲେ, ମୁଁ ହେଉଛି ପାଟଣେଶ୍ୱରୀଙ୍କ ସାମନ୍ତ ଦେବୀ । ମୁଖ୍ୟ ଦେବୀ ହେଉଛନ୍ତି ପାଟଣାର ପାଟଣେଶ୍ୱରୀ । ତାଙ୍କଠାରୁ ଯାଇ ଅନୁମତି ଆଣ, ଏଠାରେ ସ୍ଥାନ ଦେବାପାଇଁ ମୋର କୌଣସି ଆପତ୍ତି ନାହିଁ ।

ପାଟଖଣ୍ଡା 'ପାଟଣେଶ୍ୱରୀ'ଙ୍କ ନିକଟକୁ ଯାଇ ଜରାସିଂହା ଅଞ୍ଚଳରେ ରହିବା ପାଇଁ ଅନୁମତି ଲୋଡ଼ିଲେ । ପାଟଖଣ୍ଡା ଦେବତାଙ୍କ ସମସ୍ତ ବୃତ୍ତାନ୍ତ ଶୁଣି ସାରିବା ପରେ ପାଟଣେଶ୍ୱରୀ କହିଲେ, ତୁ ସାମନ୍ତ ହୋଇ ଜରାସିଂହାରେ 'ବୁଢ଼ୀ ଆଈ' ଯେଉଁଠାରେ ସ୍ଥାନ ଦେବ, ସେଠାରେ ରହ । ତୋର ଯାତ୍ରା ପର୍ବ ଦଶହରାରେ ମୋର ଯାତ୍ରା ସମାପ୍ତିର ପରେ ପରେ ହେବ । ମୋଠାରୁ ସିନ୍ଦୂର ଓ ସମଲେଶ୍ୱରୀଙ୍କଠାରୁ ପାଟଛିଟକନା ତୋ ପାଖକୁ ଯିବ, ତାକୁ ଗ୍ରହଣ କରି ତୁ ଯାତ୍ରାରେ ଜତ ଆବିର୍ଭୁତ ହେବୁ । ସେଇ ଯାତ୍ରା ସମୟରେ ତୋତେ ଆମର ଶକ୍ତି ମଧ ମିଳିବ । ତୁ ଆହୁରି ବଳୀୟାନ ହେବୁ ଓ ଭକ୍ତମାନଙ୍କ ଦୁଃଖ ଦୂର କରିବୁ । ତୁ ଏଠାରୁ ଯିବାବେଳେ ମୋର ଭାଇ 'ବୁଢ଼ା ଡଙ୍ଗର' କୁ ସାକ୍ଷାତ କରିବୁ ଓ ମୋର ନିର୍ଦ୍ଦେଶ କହି, ତାକୁ ସଙ୍ଗରେ ନେଇ 'ବୁଢ଼ୀଆଈ' ପାଖକୁ ଯିବୁ ଓ ମୋର ଆଦେଶ ଶୁଣାଇବୁ । ତୋର ସଙ୍ଗରେ 'ବୁଢ଼ା ଡଙ୍ଗର' ଥିଲେ 'ବୁଢ଼ୀଆଈ' ଆଦୌ ଅବିଶ୍ୱାସ କରିବ ନାହିଁ ।

ପାଟଖଣ୍ଡା ବୁଢ଼ାଡଙ୍ଗରକୁ ସାକ୍ଷାତ କଲେ ଏବଂ ଦେବୀଙ୍କ କଥା କହି ତାଙ୍କୁ ସଙ୍ଗରେ ଧରି ବୁଢ଼ୀଆଇଙ୍କୁ ସାକ୍ଷାତ କଲେ । ବୁଢ଼ୀଆଇ ସବୁକଥା ଶୁଣିସାରି ତାଙ୍କର ଦୁଇପାର୍ଶ୍ୱ ଦେବତା ବିରୂପାଣି ଓ ଜେନା ଦେବତା ସହ ଦେବାରଣ୍ୟ ବା ଦେଝାର ଜଙ୍ଗଲରେ ସ୍ଥାନ ଦେବାର ବ୍ୟବସ୍ଥା କରିଦେଲେ । ପାଟଖଣ୍ଡା ଗୋଟାଏ ବିରାଟ ମହୁଲ ଗଛର କୋରଡ଼ରେ ରହିଲେ ।

ପନକିକୁ ନେଇ ଗୋଟିଏ ମୂର୍ତ୍ତି ଗଢ଼ି ପୂଜା କରିବା ନିମିତ୍ତ ରାଜାଙ୍କୁ ରାତିରେ ସ୍ୱପ୍ନ ହେଲା । ସକାଳୁ ଉଠି ରାଜା ଦେଖିଲେ ଯେ, ତାଙ୍କ ପଲଙ୍କ ନିକଟରେ ଏକ ପନିକି ଥୁଆ ହୋଇଛି । ରାଜା ରାଜ୍ୟର ପ୍ରସିଦ୍ଧ କମାରକୁ ଡାକି ପନିକିରେ ଏକ ମୂର୍ତ୍ତି କରିବା ପାଇଁ ଆଦେଶ ଦେଲେ । କମାର ପନିକିଟିକୁ ନେଇ ଲୁହୁରାଶାଳରେ ତାକୁ ତରଲାଇ ହାତୁଡ଼ିରେ ପିଟିଦେବା ମାତ୍ରକେ, ତାହା ତିନି ଖଣ୍ଡ ହୋଇ ଭାଙ୍ଗିଗଲା । ଭଙ୍ଗା ଲୁହା ତିନିଖଣ୍ଡକୁ ଯେତେ ଚେଷ୍ଟା କଲେ ମଧ କମାର ଆଉ ଯୋଡ଼ି ପାରିଲା ନାହିଁ । ସେ ଭୟଭୀତ ହୋଇ ରାଜାଙ୍କୁ ଏ ସଂବାଦ ଦେଇ ଶରଣ ପଶିଲା । ରାଜା ମଧ ଚିନ୍ତିତ ହୋଇ ପଡ଼ିଲେ । ଅଜଣା ଆଶଙ୍କାରେ ତାଙ୍କର ଶରୀର କମ୍ପିବାକୁ ଲାଗିଲା । ସେ ମନେ ମନେ ଦେବତାଙ୍କୁ ସ୍ମରଣ କରି ଦୋଷ କ୍ଷମା କରିବାକୁ ପ୍ରାର୍ଥନା କଲେ । ରାତିରେ ରାଜା ପୁଣି ସ୍ୱପ୍ନ ଦେଖିଲେ, ପାଟଖଣ୍ଡା କହିଲେ, ରାଜା ! ତୁ ବ୍ୟସ୍ତ ହୁଅ ନାହିଁ । ଆଉ ମୂର୍ତ୍ତି ଗଢ଼ିବା ଦରକାର ନାହିଁ । ସେଇ ତିନି ଖଣ୍ଡକୁ ଦେବାରଣ୍ୟର ସବୁଠାରୁ ବଡ ମହୁଲ ଗଛର କୋରଡରେ ରଖାଇ ପୂଜାର ବ୍ୟବସ୍ଥା କର । ମୋର ଯାତ୍ରା ଦଶହରା ଦଶମୀଠାରୁ ଆରମ୍ଭ ହେବ । ପାଟଣେଶ୍ୱରୀଙ୍କ ଠାରୁ ସିନ୍ଦୂର ସମଲେଶ୍ୱରୀଙ୍କ ଠାରୁ ପାଟକନା ଆସିବ ଓ ବୁଢ଼ୀ ଆଇଠାରୁ ଛତର ଓ କଳଶ ଆସିବ, ତା'ପରେ ଯାଇ ମୋର ଯାତ୍ରା ଆରମ୍ଭ ହେବ । ଯେଉଁ ସମୟରେ ମୁଁ ବରୁଆ ଶରୀରରେ ଆବିର୍ଭୂତ ହେବି, ସେତେବେଳେ ସେଇ ତିନି ଖଣ୍ଡ ଲୁହାକୁ ହାତରେ ଧରି ବାହାରିବି ।

ସେହିଦିନଠାରୁ ଦେବାରଣ୍ୟ ବା ଦେ ଝାରରେ ଥିବା ଏକ ମହୁଲ ଗଛରେ ପାଟଖଣ୍ଡା ରହିଆସୁଛନ୍ତି । ପୁରୁଣା ମହୁଲ ଗଛ ଯଦି କୌଣସି କାରଣରୁ ମରିଯାଏ, ତା' ହେଲେ ଅନ୍ୟ ଏକ ମହୁଲ ଗଛର କୋରଡରେ ଦେବତାଙ୍କୁ ସ୍ଥାପନ କରାଯାଏ । ମହୁଲ ଗଛ ବ୍ୟତୀତ ଅନ୍ୟ କୌଣସି ଗଛରେ ଦେବତା ରହନ୍ତି ନାହିଁ ।

ବର୍ତ୍ତମାନ ଯେଉଁ ତିନିଖଣ୍ଡ ଲୁହା ପାତିଆ ପାଟଖଣ୍ଡା ଦେବତାଙ୍କ ପ୍ରତୀକ ଭାବରେ ପୂଜା ପାଇଥାଏ, ସେଗୁଡ଼ିକର ଲମ୍ବ ତିନିରୁ ଚାରି ଇଂଚ ମଧ୍ୟରେ ହେବ ଏବଂ ଓସାର ଅଧ ଇଂଚରୁ ଏକ ଇଂଚ ମଧ୍ୟରେ ହେବ । ଯାତ୍ରା ସମୟରେ ପ୍ରତ୍ୟେକ ଖଣ୍ଡର ଗୋଟାଏ ପାଖରେ ଏକ ଦହନା ପତ୍ରର ଗୁଛ ବନ୍ଧା ଯାଇ. ସମଗ୍ର ଲୁହା ଖଣ୍ଡରେ ସୂତା ବହୁ ପୂର କରି ଗୁଡାଇ

ଦିଆଯାଏ । ଯେତେବେଳେ ବରୁଆ ଶରୀରରେ ପାଟଖଣ୍ଡା ବିଜେ କରନ୍ତି, ବରୁଆ ନିଶ୍ଚିତ ଭାବେ ଡାହାଣ ହାତରେ ଦୁଇଟି ଓ ବାମ ହାତରେ ଗୋଟିଏ ମୂର୍ତ୍ତି (ଲୁହା ଖଣ୍ଡ) ଧାରଣ କରିଥାଏ । ଅନ୍ୟଥା ବରୁଆକୁ ଦେବତା ଆସେ ନାହିଁ ।

ପାଟଖଣ୍ଡା ଦେବତାଙ୍କ ଆବିର୍ଭାବ ସଂପର୍କରେ ଆଉ ଗୋଟିଏ ଇତିହାସ ଭିତ୍ତିକ ଲୋକ-କାହାଣୀର ପ୍ରଚଳନ ରହିଛି । ଶ୍ରୀ ରାମଚନ୍ଦ୍ର ମଲ୍ଲିକଙ୍କ ରଚିତ ସଂକ୍ଷିପ୍ତ କୋଶଳ ଇତିହାସରେ ବର୍ଣ୍ଣିତ ବସ୍ତର ବିଜୟ ଘଟଣା ସହିତ ଏହି କାହାଣୀ ସଂଶ୍ଳିଷ୍ଟ । କାହାଣୀଟି ଏଭଳି:-

ପାଟଣା ମହାରାଜଙ୍କ ବସ୍ତର ସହିତ ହୋଇଥିବା ଯୁଦ୍ଧ ସମୟର କଥା । ପାଟଣାର ସୈନ୍ୟମାନେ ବସ୍ତର-ଗଡକୁ ଘେରି ଯୁଦ୍ଧ ନିମିତ୍ତ ଅପେକ୍ଷା କରିଥାନ୍ତି । ପ୍ରତି ଦିନ ଜଣେ ବୃଦ୍ଧା ମୁଢ଼ି ବିକ୍ରୀ କରିବାକୁ ଆଣେ ଏବଂ ସେଇ ମୁଢ଼ି ଖାଇ ସୈନ୍ୟମାନେ ମୃତ୍ୟୁ ବରଣ କରନ୍ତି । ମାତ୍ର, ମୃତ୍ୟୁର କାରଣ କେହି ଜାଣିପାରନ୍ତି ନାହିଁ । ମହାରାଜା ପାଟଣାର ଦୁଇଜଣ ପ୍ରସିଦ୍ଧ ଗୁଣିଆ ମଦନ ଓ ହୀରାକୁ ଏହାର କାରଣ ଜାଣିବା ପାଇଁ ଡକାଇଲେ । ଦୁଇ ଗୁଣିଆ ବହୁ ଅନୁସନ୍ଧାନ ପରେ ଜାଣିବାକୁ ପାଇଲେ ଯେ ବୃଦ୍ଧାର ମୁଢ଼ି ଖାଇ ସୈନ୍ୟମାନେ ମୃତ୍ୟୁବରଣ କରୁଛନ୍ତି । ସେମାନେ ଏହା ମଧ୍ୟ ଜାଣିପାରିଲେ ଯେ ସେ ବୃଦ୍ଧା ଜଣକ ବସ୍ତରର ଇଷ୍ଟଦେବୀ 'ବସ୍ତେନ' ବ୍ୟତୀତ ଅନ୍ୟ କେହି ନୁହେଁ । ସେ ଦୁହିଁଙ୍କର ଅନୁରୋଧରେ ମହାରାଜା ବସ୍ତେନ ଦେବୀଙ୍କୁ ସନ୍ତୁଷ୍ଟ କରିଥିଲେ ଏବଂ ପ୍ରତିଶ୍ରୁତି ଦେଇଥିଲେ ଯେ ସେ ପାଟଣା ରାଜ୍ୟର ସର୍ବତ୍ର ବସ୍ତେନ ଦେବୀଙ୍କର ପୂଜାର ବ୍ୟବସ୍ଥା କରିବେ । ଦୁଇ ଗୁଣିଆଙ୍କ କାର୍ଯ୍ୟରେ ମହାରାଜା ଖୁସୀ ହୋଇ ପାଟଣାଗଡରେ ସେ ଦୁହିଁଙ୍କ ନାମରେ ଦୁଇଟି ବନ୍ଧ(ପୋଖରୀ) ମଦନଗଡ଼ିଆ ବନ୍ଧ ଓ ହୀରା ସାଗର ନାମରେ ଖୋଳାଇଥିଲେ । ବସ୍ତର ବିଜୟରୁ ଫେରି ମହାରାଜାଙ୍କ ନିର୍ଦ୍ଦେଶରେ ପ୍ରତ୍ୟେକ ଗ୍ରାମରେ ସ୍ଥାନୀୟ ଗ୍ରାମଦେବୀଙ୍କ ସହିତ 'ବସ୍ତେନ' ମଧ୍ୟ ପୂଜା ପାଇଲେ । ଏହି ବସ୍ତର ଅଭିଯାନ ସମୟରେ ମହାରାଜାଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ପାଟଣେଶ୍ୱରୀ ସ୍ୱୀୟ ଅଙ୍ଗରୁ ପାଟଖଣ୍ଡାକୁ ଜାତ କରି ରାଜାଙ୍କୁ ଅର୍ପଣ କରିଥିଲେ । ରାଜା ସେଇ ଖଣ୍ଡା ସାହାଯ୍ୟରେ ବସ୍ତର ବିଜୟ କରିଥିଲେ । ବସ୍ତର ବିଜୟ ପରେ ପାଟଣେଶ୍ୱରୀଙ୍କ ନିର୍ଦ୍ଦେଶରେ ଜରାସିଂହାର ଦେବୀ 'ବୁଡ୍ରୀ ଆଇ' ସୁନଗଡ ନଦୀ କୂଳସ୍ଥ ଦେବାରଣ୍ୟ ବା ଦେଝାରର ଏକ ମହୁଲଗଛର କୋରଡରେ ପାଟଖଣ୍ଡା ଦେବତାଙ୍କ ରହିବା ଓ ତାଙ୍କର ପୂଜାର ବ୍ୟବସ୍ଥା କଲେ । ପାଟଖଣ୍ଡାଙ୍କ ପୂଜାକୁ ବୀରପୂଜା ସେହି କାରଣରୁ କୁହାଯାଇଥାଏ ।

ଉପରୋକ୍ତ ଦୁଇଟି ଲୋକ-କଥା ମଧ୍ୟରୁ ପ୍ରଥମଟି ଅଧିକ ଲୋକପ୍ରିୟ ଏବଂ ଆଲୋଚନା କଲେ ମଧ୍ୟ ଜଣାଯାଏ ଯେ ପ୍ରଥମଟି ଅଧିକ ଭାବରେ ଲୋକ- ମାନସ ପ୍ରସୂତ । ଦ୍ୱିତୀୟ କାହାଣୀଟି ଅପେକ୍ଷା ପ୍ରଥମଟି ଅଧିକ ବାସ୍ତବ ଭଳି ମନେ ହୋଇଥାଏ ।

ଦଶହରା ଶୁକ୍ଳପକ୍ଷ ନବମୀ ରାତ୍ରିରେ ପାଟଣାଗଡର ପାଟେଶ୍ୱରୀଙ୍କ ସିନ୍ଦୂର ଓ ସମଲେଶ୍ୱରୀଙ୍କ ପାଟଛିଟ କନାର ଏକ ଅଂଶ ଜରାସିଂହାର ଦେହେଲିଆ ମାନଙ୍କ ଦ୍ୱାରା ରାତାରାତି ଜରସିଂହା ପାଟଖଣ୍ଡାଙ୍କ ଉଦ୍ଦେଶ୍ୟରେ ଅଣାଯାଏ । ପାଟସିନ୍ଦୂର ପ୍ରାୟ ରାତ୍ରି ତିନିଟା ବେଳକୁ ଜରାସିଂହାରେ ପହଞ୍ଚେ । ସେତେବେଳେ ଗୋଟାଏ ନିଶାଣ, ଗୋଟାଏ ଢୋଲ ଓ ଗୋଟାଏ ମହୁରୀ ବଜାଇ ତାକୁ ସ୍ୱାଗତ କରାଯାଏ । ପାଟସିନ୍ଦୂର ଜରାସିଂହାରେ ଥିବା 'ପାଟଖଣ୍ଡା' ମନ୍ଦିରରେ ରଖାଯାଏ । ତା'ପରେ 'ପହୁର' (ଛୋଟ ଛୋଟ ଠେକି ରଖାଯାଇଥିବା ଦେବତାଙ୍କ ପାଇଁ ଭୋଗ) ସବୁକୁ 'ସେଲମା' (ଗଉଡ଼ ଜାତିର ସେବକ) ଗୋଟାଏ ଟୋକେଇରେ ସଜାଡ଼ି ରଖେ । ଏହି ପହୁର ସଜାଡ଼ିବା କାମ ଜରାସିଂହାସ୍ଥିତ 'କୁଜଗୁଡ଼ି' ରେ ହୋଇଥାଏ । ଏହି କାମ ସଂପୂର୍ଣ୍ଣ ହେବାପରେ ପାଟଖଣ୍ଡା ମନ୍ଦିରରୁ ପାଟଣାଗଡ଼ରୁ ଆଣି ରଖା ଯାଇଥିବା ପାଟ ସିନ୍ଦୂରକୁ 'କୁଜଗୁଡ଼ି' କୁ ଅଣାଯାଏ ।

କୁଜଗୁଡ଼ିରୁ ବରୁଆ ସିଧା ଦେବାରଣ୍ୟ ଉଦ୍ଦେଶ୍ୟରେ ବାହାରନ୍ତି ତାଙ୍କ ସଙ୍ଗରେ ପାଟସିନ୍ଦୂର ଓ ପହୁର ମଧ ଯାଏ । ବାଟରେ 'ବାରଘରିଆ ଡମ୍' ଦେବତାକୁ ଛେକନ୍ତି । ଡମମାନେ ଦେବତାଙ୍କୁ ସଙ୍ଗରେ ଆଣିଥିବା ପାଟ ପିନ୍ଧାନ୍ତି ଓ ଗୋଟିଏ ବୋଦା ଉପହାର ଦିଅନ୍ତି । କଥିତ ଅଛି ଯେ ଡମ (ହରିଜନ) ମାନେ ସେମାନଙ୍କର ଏକ ଝିଅକୁ ପାଟଖଣ୍ଡାଙ୍କୁ ବିବାହ ଦେଇ ଥିଲେ । ଜ୍ୱାଇଁ ଭାବରେ, ଏଣୁ ସେମାନେ ଦେବତାଙ୍କୁ ସମ୍ମାନ ପ୍ରଦର୍ଶନ କରିଥାନ୍ତି । ଡମମାନେ ଦେଇଥିବା ବୋଦା ଦେବତାର ପଛେପଛେ ଯାଇ ଦେବାରଣ୍ୟରେ ପହଞ୍ଚିଥାଏ ।

ସେହିଦିନ (ବିଜୟା ଦଶମୀ) ଅପରାହ୍ନରେ ପାଟସିନ୍ଦୂର ସହ ପାଟଖଣ୍ଡାର ବରୁଆ, ଓ ବିରୂପାଣି ଅଥବା ଜେନା ଦେବତାର ବରୁଆ ଦେବାରଣ୍ୟସ୍ଥ ମହୁଲ ଗଛ ନିକଟରେ ପହଞ୍ଚି କୋରଡସ୍ଥ ପାଟଖଣ୍ଡାଙ୍କୁ ପୂଜା ଆରାଧନା କରନ୍ତି । ସେହି ସମୟରେ କିଛି ଦୂରରେ ଗୋଟାଏ ନିଶାଣ, ଗୋଟାଏ ଢୋଲ ଓ ଗୋଟିଏ ମହୁରୀ ବାଜୁଥାଏ । ପାଟଖଣ୍ଡା ଦେବତାଙ୍କର ଏହାହିଁ ହେଉଛି ବାଦ୍ୟ । ଏହାଠାରୁ କମ୍ ବା ଅଧିକ ବାଦ୍ୟ ବାଜେ ନାହିଁ । ପୂଜା ସମୟରେ ପାଟଖଣ୍ଡାଙ୍କ ତିନିମୁର୍ତ୍ତିରେ (ତିନି ଖଣ୍ଡ ଲୁହା ପାତିଆ) ପାଟଣାଗଡରୁ ଆସିଥିବା ପାଟଛିଟ କନା ଗୁଡାଯାଏ ଏବଂ ସିନ୍ଦୁର ମଖାଯାଏ । ସେହିଠାରେ ପ୍ରଥମେ ବିରୂପାଣି ଅଥବା ଜେନା ଦେବତା ଜଣେ ବରୁଆ ଶରୀରରେ ପ୍ରବେଶ କରନ୍ତି । ମୁଖ୍ୟ ବରୁଆ ପାଟଖଣ୍ଡାଙ୍କ ତିନୋଟି ମୁର୍ତ୍ତିରୁ ଦୁଇଟିକୁ ଡାହାଣ ହାତରେ ଧରେ ଓ ଅନ୍ୟଟିକୁ ବାମହାତରେ ଧରିବାପରେ, ତା' ଶରୀରକୁ ପାଟଖଣ୍ଡା ଦେବତା ପ୍ରବେଶ କରନ୍ତି ।

ସେଇ ମହୁଲ ଗଛତଳୁ ବିରୂପାଣି କିମ୍ବା ଜେନା ଦେବତା (ଦୁହିଁଙ୍କ ମଧ୍ୟରୁ ଜଣେ, ବର୍ଷେ ବିରୂପାଣି ଦେବତା ତ ଅନ୍ୟ ବର୍ଷେ ଜେନା ଦେବତା ପାଟଖଣ୍ଡା ସହିତ ରହନ୍ତି- ଏହା ବୁଢ଼ୀଆଈଙ୍କ ନିର୍ଦ୍ଦେଶରେ ହୋଇଥାଏ ।) ପାଟଖଣ୍ଡା ଦେବତାଙ୍କୁ ଖେଳେଇ ଖେଳେଇ କିଦ୍ରେଇ କିଦ୍ରେଇ ବାଟ

କଡ଼େଇ ନଦୀ କୂଳକୁ ଆଣନ୍ତି । ଏହି ଦୃଶ୍ୟ ଖୁବ୍ କୌତୂହଳପୂର୍ଣ୍ଣ । ପିଲାମାନେ ଖେଳି ଖେଳି ରାସ୍ତାରେ ଚାଲିବା ଭଳି ମନେ ହେଉଥାଏ । ପାଟଖଣ୍ଡା ଜଣେ ପରଦେଶୀ ଦେବତା ହୋଇଥିବାରୁ, ବୁଢ଼ୀଆଈଙ୍କ ନିର୍ଦ୍ଦେଶରେ ତାଙ୍କର ପାର୍ଶ୍ୱଦେବତା ବିରୂପାଣି ଅଥବା ଜେନାଦେବତା ଯାତ୍ରାପଦ ପର୍ଯ୍ୟନ୍ତ ପାଟଖଣ୍ଡାଙ୍କୁ ବୁଝାଇ ମନାଇ ଅଣିବାର ଦାୟିତ୍ୱ ନେଇଥାନ୍ତି ।

ଜଙ୍ଗଲରୁ ବାହାରି 'ପଦା'ରେ ପ୍ରବେଶ କରିବା ପରେ ଜରାସିଂହାର ଜମିଦାର (ରାଜା) ଗୈରିକ ବସନ କରିଧାନ କରି ସେବକମାନଙ୍କ ସହ ପୂର୍ବନିର୍ଦ୍ଧାରିତ 'ମାଲଚଡା' ସ୍ଥାନରେ ପ୍ରସ୍ତୁତ ହୋଇ ରହିଥାନ୍ତି । ଦେବତା ଯେତେବେଳେ ବିରୂପାଣି ଅଥବା ଜେନାଦେବତା ସହ ଆସି 'ମାଲଚଡା'ରେ ପ୍ରବେଶ ହୁଅନ୍ତି, ରାଜା ଦୟଣା ଓ ମନ୍ଦାରର ମାଳ ପାଟଖଣ୍ଡାଙ୍କ ଗଳାରେ ପିନ୍ଧେଇ ଦିଅନ୍ତି ଏବଂ ମସ୍ତକର କେଶରେ ଦୟଣା ଫୁଲର ଏକ ବଡ଼ ଗୁଛ ବାନ୍ଧି ଦିଅନ୍ତି । ତା'ପରେ ଦେବତା ରାଜାଙ୍କୁ ଆଶୀର୍ବାଦ ଦିଅନ୍ତି, ସେ ଦୁହିଁଙ୍କ ମଧ୍ୟରେ କଥାବାର୍ତ୍ତା ମଧ୍ୟ ହୁଏ ।

ସେଠାରୁ, ଦେବତାଙ୍କୁ ଆଣୁଥିବା ଦୁଇଜଣ ସେବକ (ଦୁଇ ଜଣ ବ୍ୟକ୍ତି ବରୁଆର ଦୁଇ ବାହୁକୁ କାନ୍ଧରେ ରଖି ତାଙ୍କୁ ସମ୍ଭାଳି ଆଣନ୍ତି) ମଧ୍ୟରୁ ଜଣକ ବଦଳରେ ନିଜେ ରାଜା ବରୁଆ (ପାଟଖଣ୍ଡା) ର ବାହୁ ନିଜ କାନ୍ଧରେ ଧାରଣ କରନ୍ତି । ଦେବତାଙ୍କୁ ଗୋଟାଏ ମହୁଲ ଗଛ ତଳକୁ ଅଣାଯାଏ (ଏହି ମହୁଲ ଗଛଟି ନଦୀ କୂଳରେ ରହିଛି ।) ସେହି ମହୁଲ ଗଛକୁ 'ଗଣସନ ମହୁଲ' ବୋଲି କୁହାଯାଏ । ରାଜା ଗଣସିବା ସମୟରେ ପୂର୍ବେ ସେବକଟି ବରୁଆର ହସ୍ତ ଧାରଣ କରିଥାଏ ।

ଗଣସିବା କାର୍ଯ୍ୟ ସଂପନ୍ନ ହେବା ପରେ ଦେବତା ନଦୀ ପାର ହୋଇ 'ଉଚ୍ ବାହାଲି' ଯାତ୍ରା ପଡ଼ିଆକୁ ଆସନ୍ତି । ତେବେ, ବରୁଆ ପାଣି ମାଡ଼ିବା ମନା । ପାଣିର ସ୍ରୋତକୁ ଅତିକ୍ରମ କରିବା ପାଇଁ ଏକ ଉପାୟ କରାଯାଏ । ଢୋଲ ବଜାଉଥିବା ଲୋକ ପାଣି କୂଳରେ ଠିଆ ହୁଏ ଏବଂ ସେବକମାନେ ବରୁଆକୁ ଟେକି ଢୋଲ ଉପରେ ଠିଆ କରାଇ ଦିଅନ୍ତି । ଢୋଲ ଉପରେ ଠିଆ ହୋଇ ଦେବତା ପାଣି ସ୍ରୋତ ଅତିକ୍ରମ କରନ୍ତି । ବାଲି ଉପରେ ଦେବତା ଠିଆ ହେବା ପରେ ଢୁଲିଆ ସେଠାରେ ମୂର୍ଚ୍ଛିତ ହୋଇ ପଡ଼ିଯାଏ । ନଦୀ ପାର ହେବାପରେ ବରୁଆର ହାତରୁ ପାଟଖଣ୍ଡାଙ୍କ ମୂର୍ତ୍ତିତ୍ରୟକୁ କାଡି ନିଅନ୍ତି ସ୍ନାନ କରାଇବା ଉଦ୍ଦେଶ୍ୟରେ । ପାଣି ଭିତରେ ସେହି କାର୍ଯ୍ୟ ପାଇଁ ଏକ ଛୋଟ ମଞ୍ଚା ନିର୍ମିତ ହୋଇଥାଏ । ବରୁଆ ହାତରୁ ମୂର୍ତ୍ତି ନେଇଯିବା ପରେ ସେ ପାଟବରୁଆ ଦେହରୁ ଦେବତା ଚାଲିଯାନ୍ତି । ମୂର୍ତ୍ତି ତ୍ରୟକୁ ସ୍ନାନ କରାଇ ସାରିବା ପରେ ଢୁଲିଆର ଚେତା ଫେରେ ।

ମୂର୍ତ୍ତିତ୍ରୟକୁ ସ୍ନାନ କରାଇ ସାରିବାପରେ ସେବକମାନେ ସେଗୁଡ଼ିକୁ ଆଣି ନଦୀ କୂଳସ୍ଥ ଯାତ୍ରା ପଦାରେ ଥିବା ଗୋଟିଏ ମହୁଲଗଛ ତଳେ ସ୍ଥାପନ କରନ୍ତି । ଏହି ସମୟରେ ବରୁଆ

ଶରୀରରେ ଦେବତା ନଥାନ୍ତି । ପାଟଖଣ୍ଡା ମୂର୍ତ୍ତିତ୍ରୟକୁ ମହୁଲ ଗଛ ତଳେ ସ୍ଥାପନ କରି ସିନ୍ଦୂର, ଚାଉଳ, ବେଲପତ୍ର ପ୍ରଭୃତି ଅର୍ପଣ କରାଯାଇ ପୂଜା କରାଯାଏ । ପୂଜା ଅନ୍ୟ ଦେହୁରୀ କରେ ଏବଂ ବରୁଆ ବିଶ୍ରାମ ନିଏ । ଏଠାରେ ପହଞ୍ଚିବାପରେ ବିରୂପାଣି ବା ଜେନା ଦେବତାଙ୍କ କାର୍ଯ୍ୟ ଶେଷ ହୁଏ ।

ପ୍ରାୟ ଘଣ୍ଟାଏ ଖଣ୍ଡେ ପରେ (ରାତି ୭ରୁ ୮ ଭିତରେ) ପୁଣି ବରୁଆ ଶରୀରରେ ଦେବତାଙ୍କୁ ଆବିର୍ଭୁତ କରାଯାଏ । ଦେବତା ଆସିବା ପୂର୍ବରୁ ବରୁଆ ତ୍ରିମୂର୍ତ୍ତିକୁ ପୂଜା କରେ ଏବଂ ପୂଜାରେ ଜଣେ ଦେହୁରୀ ସାହାଯ୍ୟ କରିଥାଏ । ଏହି ଅବସରରେ ବାଦ୍ୟ ବାଜେ । ପୂଜା ପରେ ପରେ ଜଣେ ସେବକ ଗୋଟାଏ ଧଳା ବୋଦା ଆଣେ ଓ ଅନ୍ୟ ଜଣେ ସେବକ ଖଣ୍ଡାକୁ ଗୋଟାଏ ହାତରେ ଧରି ଏକା ଚୋଟକରେ ବୋଦାର ବେକକୁ କାଟି ପକାଏ । କଟା ଗଣ୍ଡିକୁ ଆଣି ବୋଦାର ରକ୍ତ ତ୍ରିମୂର୍ତ୍ତି ଉପରେ ଢାଳି ଦିଆଯାଏ । ତା'ପରେ ପରେ ଗୋଟାଏ କଳା ବୋଦାକୁ ବଳି ଦିଆଯାଇ ତା'ର ରକ୍ତକୁ ମଧ ପାଟଖଣ୍ଡା ତ୍ରିମୂର୍ତ୍ତି ଉପରେ ଢାଳି ଦିଆଯାଇଥାଏ । ସିନ୍ଦୂର ଓ ରକ୍ତରେ ତ୍ରିମୂର୍ତ୍ତି ଭୟଙ୍କର ଲାଲ ଦେଖାଯାନ୍ତି ।

ଏହାପରେ ପୂଜାରେ ବରୁଆକୁ ସାହାଯ୍ୟ କରୁଥିବା ସେବକ ଦୁଇଟି ମୂର୍ତ୍ତି ଉଠାଇ ଆଣି ବରୁଆର ଡାହାଣ ହାତରେ ଧରାଇ ଦିଏ ଏବଂ ଅନ୍ୟଟିକୁ ବାମ ହାତରେ ଧରାଇଦିଏ । ଏହି ସମୟରେ ବାଦ୍ୟ (ଗୋଟାଏ ନିଶାଣ, ଗୋଟାଏ ଢୋଲ ଓ ଗୋଟାଏ ମହୁରୀ) ଚରମ ଅବସ୍ଥାରେ ବାଜୁଥାଏ । ଧୂପରେ ସେହି ସ୍ଥାନ ଧୂମାୟିତ ହୋଇଉଠେ ଏବଂ ବରୁଆର ମସ୍ତକ ଓ ଶରୀର ଧୀରେ ଧୀରେ କମ୍ପିବାକୁ ଆରମ୍ଭ କରେ । କିଛି ସମୟ ଭିତରେ ବରୁଆ ଶରୀରରେ ଦେବତା ଆବିର୍ଭୁତ ହୁଅନ୍ତି ।

ସେହିଠାରେ (ମହୁଲ ଗଛ ତଳେ) ଦେବତା ତାଙ୍କର ସେବକ ମାନଙ୍କର ହାରିଗୁହାରୀ ଶୁଣନ୍ତି କିଛି ସମୟ, ତା'ପରେ ମହୁଲ ଗଛକୁ ତିନିଥର ପ୍ରଦକ୍ଷଣ କରି 'ରାଜବଖରି' କୁ ଯାଇ ଜମିଦାର (ରାଜା)ଙ୍କ ସହିତ କଥାବାର୍ତ୍ତା କରନ୍ତି । ରାଜବଖରି ସଂପର୍କରେ ଏଠାରେ ସାମାନ୍ୟ ସୂଚାନା ଦେବା ଆବଶ୍ୟକ । ଏହି ଯାତ୍ରା ପଦାର ନାମ 'ଉଚ୍ ବାହାଲି' ଏବଂ ଏହା ଜରାସିଂହା ଠାରୁ ୨ ।୩ କିଲୋମିଟର ଦୂର । ଏଠାରେ ରାଜା ଓ ତାଙ୍କର ପରିବାରଙ୍କ ରହିବାପାଇଁ ତାଳପତ୍ରରେ ଏକ କୋଠରୀ (ବଖରା) ନିର୍ମିତ ହୋଇଥାଏ । ଏହାକୁ 'ରାଜବଖରି' ବୋଲି କୁହାଯାଏ । ରାଜବଖରିରେ ରାଜା ସହିତ ଦେବତା ପ୍ରାୟ ଅଧଘଣ୍ଟାଏ କାଳ ଦୁଃଖ ସୁଖ ହୋଇଥାନ୍ତି । ସେଠାରୁ ବାହାରି ସେବକମାନେ ଯାତ୍ରାରେ ସାହାଯ୍ୟ କରିଥିବା ଲୋକମାନଙ୍କର କାମନା ପୂରଣ କରିବା ସକାଶେ ଦେବତାଙ୍କୁ ସେମାନଙ୍କ ପାଖକୁ ନେଇଥାନ୍ତି । ଶେଷରେ ଦେବତା ସେହି ଦିନର ମୁଖ୍ୟ କାର୍ଯ୍ୟ ଆରମ୍ଭ କରନ୍ତି । ଏହି କାର୍ଯ୍ୟ ଅତ୍ୟନ୍ତ କୌତୁହଳପୂର୍ଣ୍ଣ । ଏହାକୁ 'ଫଲ୍ ଦିଆ ବୋଲି କୁହାଯାଏ ।

ପୂର୍ବୋକ୍ତ ମହୁଲ ଗଛ ନିକଟରେ ଏକ ବଡ଼ ବେଦୀ ନିର୍ମିତ ହୋଇଛି । ତା'ଉପରେ ନିଃସନ୍ତାନ ଦମ୍ପତିମାନେ ଆସି ଭୋଗ, ଧୂପ, ଦୀପ ସହ ଉପବାସ ରହି ଦେବତାଙ୍କର ବରଦାନକୁ ଅପେକ୍ଷା କରିଥାନ୍ତି । ପୂର୍ବରୁ ଉଦ୍ୟୋକ୍ତାମାନେ ବେଦୀରେ ଦମ୍ପତି (ସ୍ୱାମୀ ଓ ସ୍ତ୍ରୀ) ମାନଙ୍କର ବସିବା ପାଇଁ ସୁବିଧା କରିଥାନ୍ତି । ଲୋକ ବିଶ୍ୱାସ ରହିଛି, ପାଟଖଣ୍ଡା ଦେବତା ନିଃସନ୍ତାନ ଦମ୍ପତିଙ୍କୁ ସନ୍ତାନ ପ୍ରଦାନ କରିଥାନ୍ତି । ଏହି ବିଶ୍ୱାସ ପାଟଖଣ୍ଡା ଯାତ୍ରା ଆରମ୍ଭରୁ ରହି ଆସିଛି । ଉଦ୍ୟୋକ୍ତା ମାନଙ୍କର ସୂଚନାରୁ ଜଣାଯାଏ ଯେ ପ୍ରାୟ ଶତକଡ଼ା ଷାଠିଏ ସତୁରି ଭାଗ କ୍ଷେତ୍ରରେ ସଫଳ ହେଉଛି । ଏବର୍ଷ 'ଫଲ୍ ଦିଆ' ରେ ଅଂଶ ଗ୍ରହଣ କରିଥିବା ଦମ୍ପତି ଯଦି ସନ୍ତାନ ଲାଭ କରନ୍ତି, ତା'ହେଲେ ଆସନ୍ତା ଯାତ୍ରା ବେଳକୁ ଦେବତାଙ୍କ ଉଦ୍ଦେଶ୍ୟରେ ଏକ ବଳି ନେଇ ଆସନ୍ତି । ଏଭଳି ଅନେକ ଲୋକ ସନ୍ତାନ ଲାଭ କରି ବଳି ନେଇ ଆସିଥାନ୍ତି । ଯେଉଁମାନେ 'ଫଲ୍ ଦିଆ' ରେ ବସନ୍ତି, ସେମାନଙ୍କର ନାମ ଓ ଠିକଣା ଉଦ୍ୟୋକ୍ତା ମାନଙ୍କଠାରେ ଲେଖା ହୋଇ ରହିଥାଏ ।

ସେହି ରାତି (ଦଶହରା ଶୁକ୍ଳ ଦଶମୀ ରାତି) ସାରା ଦେବତା କ୍ରମାନୁସାରେ ଦୁଇ ତିନୋଟି ପର୍ଯ୍ୟାୟରେ ଫଳଦାନ କରିନ୍ତି । ପ୍ରତ୍ୟେକ ଦମ୍ପତି ପାଖରେ ଦେବତା ପ୍ରାୟ ଦଶ ମିନିଟ ପାଖା ପାଖି ରହନ୍ତି । 'ଫଲ୍ ଦିଆ' କାର୍ଯ୍ୟକ୍ରମ ଅତ୍ୟନ୍ତ କୌତୂହୁଳପ୍ରଦ । ଗୋଟିଏ ଦମ୍ପତିକୁ ଦେବତା ଫଳଦାନ କରିବାପରେ ସେହି ଦମ୍ପତି ଏକମୁହାଁ, ପଛକୁ ନ ଅନାଇଁ, ସିଧା ନିଜ ଗୃହକୁ ଚାଲିଯାଇଥାଏ ବା ଯାତ୍ରାପଦାରୁ ଦୂରକୁ ଚାଲିଯାଏ । ଏହି ଦୃଶ୍ୟ ଦେଖିବା ପାଇଁ ବହୁଲୋକଙ୍କର ସମାଗମ ହୋଇଥାଏ 'ଉଚ୍ ବାହାଲି' ରେ ଅନେକ ଦୋକାନ ମଧ ଲାଗିଥାଏ । ସେଠାରେ ପନ୍ଦର କୋଡ଼ିଏ ହଜାର ଲୋକଙ୍କ ସମାଗମ ହୋଇଥାଏ ।

'ଫଲ୍ ଦିଆ' ସମୟରେ ବରୁଆ ବେଳେ ବେଳେ ପାଟଯାଏ । ପାଟଗଲା ପରେ ବରୁଆ କିଛି ସମୟ ବିଶ୍ରାମ ନିଏ । ପୁଣି କିଛି ସମୟ ପରେ ବରୁଆ ଶରୀରରେ ଦେବତାଙ୍କୁ ଆବିର୍ଭୁତ କରାଯାଏ ଏବଂ ଦେବତା ବାକୀ ଥିବା ଦମ୍ପତିଙ୍କୁ ଫଳ ଦାନ କରିବା କାର୍ଯ୍ୟରେ ଅଂଶ ଗ୍ରହଣ କରନ୍ତି । ଦେବତା ଶରୀରରେ ଥିବା ବେଳେ, ବରୁଆ ଯେଭଳି ଭାବରେ ଶରୀର ସଞ୍ଚାଳନ କରେ ଓ ଚିତ୍କାର କରିଥାଏ, ସେଭଳି ବହୁ ସମୟ ଧରି ସମ୍ଭାଳିବା ମଣିଷର ଶରୀର ପକ୍ଷରେ ଅସମ୍ଭବ । ତେଣୁ ବରୁଆର ଶରୀରକୁ ବିଶ୍ରାମ ଦେବାପାଇଁ, ତାକୁ 'ପାଟ' କରାଇଥାନ୍ତି ।

ପରଦିନ ସକାଳୁ (ଦଶହରା ଶୁକ୍ଳ ଏକାଦଶୀ) ସାତଟା ଆଠଟା ସମୟରେ ପୁଣି ବରୁଆର ଶରୀରରେ ଦେବତା ଆବିର୍ଭୁତ ହୁଅନ୍ତି ଏବଂ ଯାତ୍ରାପଦାରେ (ଉଚ୍‌ବାହଲି) ଲୋକଙ୍କର ହାରିଗୁହାରୀ ଶୁଣନ୍ତି । ସେଠାରେ ବଳି ପ୍ରଦାନ କରାଯାଏ । ଏହା ଅପରାହ୍ନ ତିନିଟା ଚାରିଟା ପର୍ଯ୍ୟନ୍ତ ଚାଲେ । ବଳି ରକ୍ତକୁ ଦେବତା (ବରୁଆ) ନିଜେ ମୁହଁ ଲଗାଇ ପାନ କରନ୍ତି (ଏଭଳି ଦ୍ୱାରସେନୀ ଦେବୀଙ୍କ

ବରୁଆ କରିଥାଏ, ସେ ମୁହଁ ଲଗାଇ ରକ୍ତ ଚୋଷି ଥାଏ- ଦ୍ରଷ୍ଟବ୍ୟ, ଦ୍ୱାରସେହ୍ନୀ ଯାତ୍ରା ) । ବଳି କଟା ହେବାପରେ ବେକର କଟା ଅଂଶରେ ବରୁଆ ଧରିଥିବା ପାଟଖଣ୍ଡାଙ୍କ ତ୍ରିମୂର୍ତ୍ତିକୁ ମାଡ଼ିଦିଏ । ଲୋକ ବିଶ୍ୱାସ ଅଛି ଯେ ମୂର୍ତ୍ତିମାନେହିଁ ରକ୍ତପାନ କରନ୍ତି ।

ଅପରାହ୍ନରେ ଦେବୀ ଉଚ୍‌ବାହାଲି ତ୍ୟାଗ କରି ଛତ୍ର, ଚାମର, ସେବକ ଓ ବାଦ୍ୟକାରମାନଙ୍କ ସହ ସାଲେପାଲି ଗ୍ରାମ ନିକଟବର୍ତ୍ତୀ ଏକ ଯାତ୍ରାପଦାରେ ପହଞ୍ଚନ୍ତି । ଏହି ଯାତ୍ରାପଦାର ନାମ 'ବଅରାପିଟା' ସେଠାରେ ପହଞ୍ଚିବା ପରେ ବରୁଆ ପାଟ ଯାଏ । ରାତିରେ ପୁଣି ବରୁଆକୁ ଦେବତା ଆସେ । ଦେବତା ଆଉ ଗୋଟିଏ ବିଶିଷ୍ଟ କାର୍ଯ୍ୟରେ ଅଂଶ ଗ୍ରହଣ କରନ୍ତି । ତାହା ହେଲା, ପାଗଳ ମାନଙ୍କୁ ସେ ପିଟି ପିଟି ଭଲ କରନ୍ତି । ସେଥି ଯୋଗୁଁ ଏହି ସ୍ଥାନର ନାମ 'ବଅରା ପିଟା' ହୋଇଛି । ପୂର୍ବରୁ ଲୋକମାନେ 'ପାଗଳ' ମାନଙ୍କୁ ଆଣି ଅପେକ୍ଷା କରିଥାନ୍ତି । ଦେବତା ପାଗଳମାନଙ୍କୁ ଲୁହାର ଶିକୁଳୀରେ ପିଟିଥାନ୍ତି । ଏହି କ୍ରିୟାରେ ପାଗଳମାନେ ସୁସ୍ଥ ହୁଅନ୍ତି ବୋଲି ଏକ ବଦ୍ଧମୂଳ ଲୋକବିଶ୍ୱାସ ଏ ଅଞ୍ଚଳରେ ରହିଛି । ଦୂରଦୂରାନ୍ତରୁ ମଧ ବନ୍ଧ୍ୟା ଦୋଷରୁ ଓ ପାଗଳାମୀରୁ ମୁକ୍ତ ହେବା ପାଇଁ ପାଟଖଣ୍ଡା ଯାତ୍ରାକୁ ଲୋକେ ଆସଥାନ୍ତି ।

ତା'ପର ଦିନ ବା ତୃତୀୟ ଦିନ ଦେବତା 'ବଅରା ପିଟା' ସ୍ଥଳୀରୁ ନିଶିଯାତ୍ରା ସ୍ଥଳୀକୁ ଗମନ କରନ୍ତି । ଏହା ସ୍ଥଳୀ ଜରାସିଂହା ନିକଟରେ ଅବସ୍ଥିତ । ନିଶିଯାତ୍ରା ସ୍ଥଳୀରେ ପୂର୍ବରୁ ପତ୍ରକୁଡ଼ିଆ ନିର୍ମିତ ହୋଇଥାଏ । ଦେବତା ସେଠାରେ ପହଞ୍ଚିବା ପରେ ବରୁଆ ପାଟ ଯାଏ ଏବଂ ମୂର୍ତ୍ତିତ୍ରୟକୁ କୁଡ଼ିଆ ଭିତରେ ସ୍ଥାପନ କରାଯାଏ । ସେଠାରେ ପାଟଖଣ୍ଡଙ୍କୁ ପୂଜା କରାଯାଏ । ଏହି କୁଡ଼ିଆକୁ ନିଶିଘର ବୋଲି କୁହାଯାଏ । ପାଟଖଣ୍ଡା ଦେବତା ନିଶିଯାତ୍ରା ପଦାକୁ ପହଞ୍ଚିବା ସମୟରେ ଜରାସିଂହାର ଇଷ୍ଟଦେବୀ 'ବୁଢ଼ୀ ଆଇ' ଙ୍କ ଠାରୁ ତାଙ୍କର 'ଘାଘରା' ଓ 'କଳସୀ' ଆସିଥାଏ । ପାଟଖଣ୍ଡା ଦେବତା ବୁଢ଼ୀଆଇଙ୍କୁ ସମ୍ମାନ ପ୍ରଦର୍ଶନ କରନ୍ତି ଏବଂ ନିଶିଯାତ୍ରା କାର୍ଯ୍ୟକ୍ରମ ଆରମ୍ଭ ହୁଏ ।

ସେଇ ରାତିରେ ବରୁଆ ଦେହରେ ଦେବତା ପୁନଃ ଆବିର୍ଭାବ ହୁଅନ୍ତି ଏବଂ କୁଡ଼ିଆ ବାହାରେ ଲୋକଙ୍କ ହାରିଗୁହାରୀ ଶୁଣନ୍ତି । ନିଶିଗୁଡ଼ି ବା ନିଶିଘରେ ଦେବତା ଥିବାବେଳେ ବଳିପଡେ । ଏଠାରେ ଧଳା 'ପେଠି' (ବନ୍ଧ୍ୟା ଛେଳି) ବଳି ଦିଆଯାଏ ପ୍ରଥମେ । ବେଳେ ବେଳେ ପୋଡ ବଳୀ ମଧ ପ୍ରଦାନ କରାଯାଏ । ନିଶିଘର ବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ଯାତ୍ରା ସମୟରେ ପୋଡ ବଳି ଦେବାର ନିୟମ ନାହିଁ । ଏହି ରାତ୍ରିରେ ପାଟଖଣ୍ଡା ଦେବତା ତାଙ୍କର ଶ୍ୱଶୁର ଘରର ଲୋକ (ହରିଜନ ଜାତିର) - ବନ୍ଧ୍ୟା ନାରୀକୁ ଫଳ୍‌ଦିଆ ବର ପ୍ରଦାନ କରନ୍ତି । ନିଶିଯାତ୍ରା ସ୍ଥଳୀରେ ମଧ ବହୁ ଲୋକଙ୍କର ସମାଗମ ହୋଇଥାଏ ଏବଂ ଦୋକାନ ବଜାର ବସି ଲୋକ ଗହଳିକୁ ସ୍ପଷ୍ଟ କରିଥାଏ ।

ତହିଁ ଆର ଦିନ ପାହାନ୍ତିଆରେ ଦେବତା କୁଡ଼ିଆର ଏକ କ୍ଷୁଦ୍ର ପଥ (ଚୁର୍‌ନୀ ଦୁଆର) ଦେଇ ବାହାରି ମୂଳ ସ୍ଥାନ (ଦେବାରଣ୍ୟ ବା ଦେଝାର)କୁ ଚାଲିଯିବା ପାଇଁ ପ୍ରସ୍ତୁତ ହୁଅନ୍ତି। ଚୁର୍‌ନୀ ଦୁଆର ଦେଇ ସାଧାରଣତଃ ଜଣେ ବ୍ୟକ୍ତି ବାହାରି ପାରେ ନାହିଁ। ଦେବତା ନିଜର ଅଲୌକିକ ଶକ୍ତି ବଳରେ ଅସମ୍ଭବକୁ ସମ୍ଭବ କରିଥାଏ ବୋଲି ଲୋକ ବିଶ୍ୱାସ ରହିଛି। ଚୁର୍‌ନୀ ଦୁଆର ଦେଇ ଦେବତା ବାହାରି ସାରିବାପରେ ଅପେକ୍ଷାରତ ଜମିଦାରଙ୍କ ସହିତ ସାକ୍ଷାତ ହୁଏ। ସେଠାରେ ଉଭୟଙ୍କ ମଧ୍ୟରେ ବିଦାୟକାଳୀନ ସମ୍ଭାଷଣ ହୋଇଥାଏ। ଦୁହେଁ କଥାବାର୍ତ୍ତା କରନ୍ତି ଓ ଆସନ୍ନ ବିଦାୟ ପାଇଁ କ୍ରନ୍ଦନ ମଧ୍ୟ କରନ୍ତି। ଏହି ଦୃଶ୍ୟ ଅତ୍ୟନ୍ତ କାରୁଣ୍ୟପୂର୍ଣ୍ଣ ହୋଇଥାଏ। ମଣିଷ ଓ ଦେବତା ମଧ୍ୟରେ ଥିବା ଅବିଚ୍ଛେଦ୍ୟ ସଂପର୍କର ସୂଚନା ଏଥିରୁ ମିଳିଥାଏ। ଲୋକ ବିଶ୍ୱାସରେ ଦେବତା ଅଲୌକିକ ଶକ୍ତିର ଅଧିକାରୀ ହୋଇଥିଲେ ହେଁ ସେ ସ୍ୱର୍ଗଧାମର ଜୀବ ନୁହେଁ, ଏହି ଧରାଧାମର ଜୀବ ଏବଂ ମଣିଷ ସହିତ ତା'ର ସଂପର୍କ ଏତେ ନିବିଡ଼ ଯେ ସେ ମଣିଷ ଦେହରେ ମଧ୍ୟ ବିଜେ ହୋଇ ମଣିଷକୁ ସାହାଯ୍ୟ କରିଥାନ୍ତି। ଏଣୁ ଲୋକ ବିଶ୍ୱାସରେ ଲୋକ ଦେବତା ମଣିଷକୁ ମୁକ୍ତି ପ୍ରଦାନ ପୂର୍ବକ ସ୍ୱର୍ଗକୁ ନିଏ ନାହିଁ, ବରଂ ଏଇ ପୃଥିବୀରେ, ମଣିଷକୁ ଅସୁବିଧାରୁ ଉଦ୍ଧାର କରି ସାହାଯ୍ୟ କରିଥାନ୍ତି।

ଜମିଦାରଙ୍କ ଠାରୁ ବିଦାୟ ନେଇ ଦେବାରଣ୍ୟ ଉଦ୍ଦେଶ୍ୟରେ ଦେବତା ଯାତ୍ରା ଆରମ୍ଭ କରନ୍ତି। ନିଶିଯାତ୍ରା ପରେ ସାଧାରଣତଃ ମୁଖ୍ୟଯାତ୍ରା ସମାପ୍ତ ହୋଇଥାଏ। ଦେବତାଙ୍କ ପ୍ରତ୍ୟାବର୍ତ୍ତନ କାଳରେ ସାଲେପାଲି ଗ୍ରାମ ନିକଟବର୍ତ୍ତୀ 'କୁଟେଲ ଘାଟ' ଠାରେ ଗୋଟାଏ ଶାଳଗଛ ମୂଳରେ ପୂର୍ବରୁ ଅପେକ୍ଷା କରୁଥିବା ଲୋକମାନେ ଦେବତାଙ୍କ ନିକଟରେ ହାରିଗୁହାରୀ କରନ୍ତି ଏବଂ ଦେବତା ସେମାନଙ୍କୁ ଆଶୀର୍ବାଦ କରନ୍ତି।

ସେଠାରୁ ଦେବତା 'ଉଚ୍‌ବାହାଲି' ରେ ପହଞ୍ଚି ନଦୀ ଭିତରକୁ ପ୍ରବେଶ କରନ୍ତି। ପାଣିସ୍ରୋତକୁ ପ୍ରବେଶ କରିବା ପୂର୍ବରୁ ବଳି ପ୍ରଦାନ କରାଯାଏ ଏବଂ ତାହା ହେଉଛି ଯାତ୍ରାର ଶେଷ ବଳି। ସେଠାରେ ମଧ୍ୟ ଦେବତା ଲୋକଙ୍କର ପ୍ରାର୍ଥନା ଶୁଣନ୍ତି। ସେଠାରେ ହିଁ ବରୁଆର ହସ୍ତରୁ ମୂର୍ତ୍ତିତ୍ରୟକୁ ଅଣାଯାଇ ସ୍ନାନ କରାଯାଏ। ବରୁଆ ମୂର୍ତ୍ତିହୀନ ହେବାପରେ ପାଟ ଯାଏ। ସେ ମଧ୍ୟ ସ୍ନାନ କରେ।

ନଦୀରେ ସ୍ନାନ କରାଇ ସାରିବା ପରେ ମୂର୍ତ୍ତି ତିନୋଟିକୁ ନେଇ ଦେବାରଣ୍ୟସ୍ଥ ମହୁଲ ଗଛର କୋରଡ଼ରେ ସ୍ଥାପନ କରାଯାଏ।

ଏବଂ ପାଟଖଣ୍ଡା ଯାତ୍ରାର ସମାପ୍ତି ଘଟେ।

ପାଟଖଣ୍ଡା ଯାତ୍ରା ବଲାଙ୍ଗୀର ଜିଲ୍ଲା ବିଶେଷତଃ ପାଟଣା ରାଜ୍ୟରେ ଖୁବ୍ ଲୋକପ୍ରିୟ। ପାଟଣା ରାଜ୍ୟ ପରିସର ମଧ୍ୟରେ ପାଟଣେଶ୍ୱରୀ, ସମଲେଶ୍ୱରୀ ପ୍ରଭୃତି ଦେବୀଙ୍କ ପ୍ରାଧାନ୍ୟ

ରହିଥିବା ଦେଖାଯାଏ । କେବଳ ପାଟଣା ନୁହେଁ, ସୋନପୁର, ସମ୍ବଲପୁର, କଳାହାଣ୍ଡି ଅଞ୍ଚଳରେ ମଧ୍ୟ ଦେବୀଙ୍କୁ ନେଇ ହିଁ ଅଧିକ ମାତ୍ରାରେ ଯାତ୍ରା ଅନୁଷ୍ଠିତ ହୋଇଥାଏ । ବଲାଙ୍ଗୀର ଜିଲ୍ଲାର ତିନୋଟି ସ୍ଥାନରେ ତିନୋଟି ଦେବତାଙ୍କୁ ନେଇ ଯାତ୍ରା ଅନୁଷ୍ଠିତ ହୋଇଥାଏ । ଜରାସିଂହାରେ 'ପାଟଖଣ୍ଡା' ଦେବତାଙ୍କୁ ନେଇ ପାଟଖଣ୍ଡା ଯାତ୍ରା, ଲୋଇସିଂହାରେ 'କୁନ୍ଦାଦେଓ' ଦେବତାଙ୍କୁ ନେଇ କୁନ୍ଦାଦେଓ ଯାତ୍ରା ଓ କୁମୁରିଆରେ 'ଶୂଳିଆ' ଦେବତାଙ୍କୁ ନେଇ ଶୁଳିଆଯାତ୍ରା ଅନୁଷ୍ଠିତ ହୋଇଥାଏ ।

ପାଟଖଣ୍ଡା ଦେବତା ଲୋକମାନଙ୍କୁ ଅନ୍ୟାନ୍ୟ ଦେବଦେବୀଙ୍କ ଭଳି ଆଶୀର୍ବାଦ କଲେ ମଧ୍ୟ, ଦୁଇଟି ସ୍ଥଳରେ ବିଶେଷ ବରପ୍ରଦାନ କରିଥାନ୍ତି, ନିଃସନ୍ତାନଙ୍କୁ ସନ୍ତାନ ଓ ପାଗଳକୁ ସୁସ୍ଥ କରିବା, ଯାହାର ସୂଚନା ପୂର୍ବରୁ ପ୍ରଦତ୍ତ ହୋଇସାରିଛି । ଏଭଳି ବିଶେଷ ଆୟୋଜନ ପଶ୍ଚିମ ଓଡ଼ିଶାର ଅନ୍ୟ କୌଣସି ସ୍ଥାନରେ ଦୃଷ୍ଟିଗୋଚର ହୁଏ ନାହିଁ ।



# କରମାର ଦୁଇଦିଗ: କରମ୍‌ସାନୀ ଓ କରମ୍ ରାଜା

**ମିଲନ ମହାନ୍ତ**

ପଶ୍ଚିମ ଓଡ଼ିଶାର କରମ୍‌ସାନୀ ଓ ଉତ୍ତର ଓଡ଼ିଶାର କରମ୍ ରାଜା ଗୋଟିଏ ଧର୍ମ ବିଶ୍ୱାସ କେନ୍ଦ୍ରିତ ଲୋକଦେବତା 'କରମା'ର ଦୁଇଟି ଭିନ୍ନ ରୂପ । ଉଭୟ ଅଞ୍ଚଳର କରମା ପୂଜାରେ କରମା ନାମକ ଡାଳକୁ ପୂଜ୍ୟ ଦେବତାଙ୍କ ପ୍ରତୀକ ଭାବରେ ଗ୍ରହଣ କରାଯାଇଥାଏ । କରମା ଡାଳ ପଶ୍ଚିମ ଓଡ଼ିଶାରେ 'କରମ୍‌ସାନୀ' ଦେବୀଙ୍କ ପ୍ରତୀକ ଏବଂ ଉତ୍ତର ଓଡ଼ିଶାରେ 'କରମ୍‌ରାଜା' ଦେବତାଙ୍କ ପ୍ରତୀକ ।

ଜଣେ ଦେବତା ଦୁଇଟି ରୂପରେ ପୂଜା ପାଉଥିବା ହେତୁ ଉଭୟ ସ୍ଥଳରେ ଅଲଗା ଅଲଗା କିମ୍ବଦନ୍ତୀର ପ୍ରଚଳନ ଅଛି । ତଦନୁଯାୟୀ କରମାର ପୂଜା ସରଞ୍ଜାମ ଓ ପୂଜା ବିଧିରେ ମଧ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

ଉତ୍ତର ଓଡ଼ିଶାରେ ପରମ୍ପରା ଓ ଲୋକ ବିଶ୍ୱାସ ଅନୁଯାୟୀ କରମା ପର୍ବ ସାଧାରଣତଃ କୁଡୁମୀ ସଂପ୍ରଦାୟ ଦ୍ୱାରା ଭାଦ୍ରବ ମାସ ଶୁକ୍ଳ ଏକାଦଶୀ ତିଥିରେ ପାଳିତ ହୁଏ । କୁଡୁମୀ ଲୋକକଥାନୁସାରେ କରମୁ ଓ ଧରମୁ ନାମକ ଦୁଇ ସାଧବ-ପୁତ୍ରଙ୍କ ମଧ୍ୟରୁ ଜଣକର ବୃତ୍ତିଥିଲା ବୈଦେଶିକ ବାଣିଜ୍ୟ ଓ ଅନ୍ୟଜଣେ ଥିଲା ଗ୍ରାମୀଣ କୃଷକାରୀ । ଏକଦା କରମୁ ବାଣିଜ୍ୟ ଉଦ୍ଦେଶ୍ୟରେ ସମୁଦ୍ର ସେପାରି ବିଦେଶକୁ ଗଲା ଏବଂ ଭାଦ୍ରମାସ ଶୁକ୍ଳ-ଏକାଦଶୀ ଦିନ ଅପରିମିତ ଧନଦ୍ରବ୍ୟର ଅଧିକାରୀ ହୋଇ ନିଜ ଗାଁକୁ ଫେରିଲା । ସେତିକିବେଳେ ଅପେକ୍ଷାକୃତ ଧନହୀନ-କୃଷକ ଧରମୁ ନିଜ ଘରର ଝିଅ-ବୋହୂ ତଥା ଗ୍ରାମର ଅନ୍ୟାନ୍ୟ ଯୁବକ-ଯୁବତୀଙ୍କୁ ନେଇ କରମାପୂଜା ଓ ନୃତ୍ୟରେ ମଗ୍ନ ଥିଲା । ଫଳରେ ଗାଁ ମୁଣ୍ଡରେ ଅପେକ୍ଷମାଣ କରମୁକୁ ପାଛୋଟି ନେବାରେ ବିଳମ୍ବ ଘଟିଥିଲା । କ୍ଳାନ୍ତ ଓ କ୍ରୋଧାନ୍ୱିତ କରମୁ ତେଣୁ ଗୋଇଠାମାରି ଧରମୁର ଆରାଧ୍ୟ, ଅଭିଷିକ୍ତ କରମରାଜାକୁ ଫୋପାଡ଼ି ଦେଲା । ପୂଜା ବ୍ୟବସ୍ଥାକୁ ଧ୍ୱସ୍ତ ବିଧ୍ୱସ୍ତ କରିଦେବା ହେତୁ କରମୁର ବିପୁଳ ସମ୍ପତ୍ତି ଜନିତ ଅହଂକାର ଓ କ୍ରୋଧ ଉପଶମିତ ହୋଇଗଲା; କିନ୍ତୁ ଚଣ୍ଡାଲୁଣୀ-ଗୃହ ପ୍ରବେଶ ଦୋଷରେ ଲକ୍ଷ୍ମୀଙ୍କୁ ନିର୍ବାସନ ଦଣ୍ଡ ଦେଇ ବଳରାମଙ୍କୁ ଯେପରି ଅର୍ଥାଭାବ ଓ ଖାଦ୍ୟାଭାବ ଜନିତ

ଦୂରବସ୍ଥା ଭୋଗିବାକୁ ପଡ଼ୁଥିଲା କରମ୍ଙ୍କୁ ସେହିପରି ଦୁର୍ଦ୍ଦଶା ଭୋଗିବାକୁ ପଡ଼ିଲା । କରମ ରାଜାଙ୍କ ପ୍ରଚଣ୍ଡ କ୍ରୋଧ ଫଳରେ ଉଦରଜ୍ୱାଳାରେ ଅସ୍ଥିର ହୋଇ ସେ ସ୍ଥାନକୁ ସ୍ଥାନ ଘୂରିବାକୁ ଲାଗିଲା । ଏହି ସମୟରେ ବିଭିନ୍ନ ଗଛବୃକ୍ଷ ତଥା ଜୀବଜନ୍ତୁଙ୍କ ଦୁଃଖ ଓ ପରାମର୍ଶ ଶୁଣିବାକୁ ପଡ଼ିଛି । ପରିଶେଷରେ ସେ ନିଜର ଭୁଲବୁଝିପାରି କରମରାଜାଙ୍କ ପୂଜା କରିବାକୁ ମନସ୍ଥ କଲା । ଫଳରେ କରମାର ପୂଜା ପଦ୍ଧତି ଓ ନୃତ୍ୟଗୀତ ପୁନପ୍ରତିଷ୍ଠିତ ହେଲା ।

ଆଦିବାସୀ ସଂସ୍କୃତିବିଦ୍ ଭାଗୀରଥି ନେପାକଙ୍କ ମତରେ ଉତ୍ତର ଓଡ଼ିଶାପରି ପଶ୍ଚିମ ଓଡ଼ିଶାର ସମ୍ବଲପୁର ଓ ଢେଙ୍କାନାଳ ଜିଲ୍ଲାରେ ବାସ କରୁଥିବା ପାଉଁଡି ଓ ଭୂୟାଁମାନଙ୍କ କରମା କାହାଣୀରେ ମଧ୍ୟ ଜଣେ ସାଧବଙ୍କର ନୌବାଣିଜ୍ୟ ସ୍ଥାନ ପାଇଛି । ଅନ୍ୟତ୍ର ଏ ପୂଜା ମୂଳରେ ପ୍ରଚଳିତ ଲୋକକଥାନୁସାରେ ଧରମ୍ ଓ କରମ୍ ଜଣେ ଦରିଦ୍ର ବିଧବାର ଦୁଇପୁତ୍ର । ଥରେ ଦୁହେଁ ଅନ୍ନ କଷ୍ଟ ଦୂର କରିବା ପାଇଁ ସାହୁକାର ପାଖରେ କଠିନ ଶ୍ରମ କଲେ । କିନ୍ତୁ ଶେଷରେ ସାହୁକାର ବିନା ପାରିଶ୍ରମିକରେ ଦୁହିଁଙ୍କୁ ତଡ଼ିଦେଲା । ଘରେ ବିଧବା ମାଆର ଦୁର୍ଦ୍ଦଶା ଦେଖି ବଡ଼ ପୁଅ ପୁଣି ଥରେ ଜୀବିକା ଅନ୍ୱେଷଣରେ ବାହାରକୁ ଗଲାବେଳେ ପଥଶ୍ରମ ଓ ଭୋକଜନିତ କ୍ଳାନ୍ତିରେ ପଥ ମଧ୍ୟସ୍ଥ କରମା ଗଛର ଛାଇରେ ଶୋଇ ପଡ଼ିଲା ଓ ନିଦ୍ରାବସ୍ଥାରେ ସ୍ୱପ୍ନ ଦେଖିଲା । ସ୍ୱପ୍ନ- ନିର୍ଦ୍ଦେଶାନୁସାରେ ସେ ନଈ କୂଳରୁ ବଇଁଶୀ, ଗାଈ, ବାଛୁରୀ ଓ ପଗଡ଼ି ନେଇ ଗାଁକୁ ଫେରିଲା ଓ ସେସବୁକୁ ଉପଯୋଗ କରି ସପରିବାର ସୁଖରେ ରହିଲା । କରମା ବୃକ୍ଷର ସ୍ୱପ୍ନାଦେଶ ଓ ଧନ ପ୍ରାପ୍ତି ଦିବସ ଭାଦ୍ର ଶୁକ୍ଳ ଏକାଦଶୀ ହୋଇଥିବା ଯୋଗୁଁ ତା ପରବର୍ଷ ଭାଦ୍ର ଏକାଦଶୀରେ ବୃଦ୍ଧା ମାଆର ପରାମର୍ଶ ଅନୁସାରେ ସେ କରମା ଡାଳ ପୂଜାକଲା ଓ ପରଦିନ ସକାଳେ ନଈ କୂଳେ ନେଇ ପୋତି ଦେଲା । କରମାର କରୁଣାର୍ଦ୍ର ଦାନରେ ପ୍ରୀତ ହୋି ଧରମ ପ୍ରତ୍ୟହ ସକାଳେ ମାଦଳ ଓ ବଇଁଶୀ ଧରି ନଈ କୂଳକୁ ଯାଇ କରମାର ଚାରିପାଖରେ ନାଚିଲା । ପ୍ରତ୍ୟହ ଧରମ୍‌ର ଏ କାଣ୍ଡ ଦେଖି କରମ୍ ବିରକ୍ତ ହେଲା ଓ କରମା ଗଛକୁ ଉପାଡ଼ି ନଈରେ ଫିଙ୍ଗିଦେଲା । ପରିଣାମସ୍ୱରୂପ ଦି ଭାଇଙ୍କୁ କଠିନ ଦୁର୍ଦ୍ଦଶା ଭୋଗିବାକୁ ପଡ଼ିଲା । ସମୃଦ୍ଧ ପରିବାରଟି ପୁନଶ୍ଚ ଧନହୀନ ହୋଇଗଲା । କୌଣସି ଉପାୟ ନପାଇ ଦୁଇଭାଇ ଠିକା ଚାଷ କଲେ; କିନ୍ତୁ କରମା କୋପରେ ଫସଲ ହାନି ହେଲା । କ୍ରୋଧାନ୍ୱିତ କରମ୍-ଧରମ୍ ନିଜ ହାତରେ ଫସଲ ଉଜାଡ଼ି ଦେବାକୁ ମନସ୍ଥ କରି ଜମି ଅଭିମୁଖେ ଅଗ୍ରସର ହେଲା ବେଳକୁ ଜଣେ ଅଜ୍ଞାତ ଓ ଅପରିଚିତ ବୃଦ୍ଧ ତାଙ୍କୁ ସମୁଦ୍ର କୂଳସ୍ଥ କର୍‌ପନ୍ ପର୍ବତସ୍ଥ କରମ୍ ସାଇଁଙ୍କୁ ଦେଖା କରିବାର ପରାମର୍ଶ ଦେଲା । କୃତ ଅପକର୍ମରୁ ନିସ୍ତାର ଲାଭ ଆଶାରେ ଧରମ୍-କରମ୍ କରପନ୍ ଅଭିମୁଖୀ ହେଲେ । ଯିବା ବାଟରେ ସେ ଦୁହେଁ ଯଥାକ୍ରମେ ତିନିଜଣ ଅଜ୍ଞାତ ଲୋକର ପୋଡା ସୁନାର ଦାୟିତ୍ୱରେ ଥିବା ପଣସ ଗଛ, ଗାଈ ଜଗିବା ଦାୟିତ୍ୱରେ ଥିବା ବରଗଛ ଓ ଜମି ଦେଖିବା ଦାୟିତ୍ୱରେ ଥିବା ପିପ୍‌ପଳ ବୃକ୍ଷକୁ ସାକ୍ଷାତ କରିଥିଲେ । ପ୍ରତ୍ୟେକ ଗଛ ଧରମ୍ ଓ

କରମ୍ କରମ ସାଇଁଙ୍କ ଦର୍ଶନ ଉଦ୍ଦେଶ୍ୟ ଯାଉଥିବା କଥା ଜାଣି ନିଜେ କିପରି ଦାୟିତ୍ୱ ମୁକ୍ତ ହେବେ ସେ କଥା କରମ୍ ସାଇଁଙ୍କୁ ପଚାରି ଫେରିବାକୁ କହିଥିଲେ । ଶେଷରେ ଧରମ୍ ଓ କରମ୍ କରମ ସାଇଁଙ୍କୁ କରପନ୍ ପର୍ବତ ଗୁହାରେ ଯଥାବିଧି ନିଜର ଦଇନି ଜଣାଇ ମୁକ୍ତି ଲାଭ କଲେ ଓ ତାଙ୍କରି ଆଦେଶରେ ପୂର୍ବୋକ୍ତ ପଣସ ଗଛର 'ପୁନା', ବରଗଛର 'ଗାଈ ଓ ପିପ୍‌ପଳ ଗଛର ଦାୟିତ୍ୱରେ ଥିବା ଜମିର ଅଧିକାରୀ ହେଲେ । ସେମାନଙ୍କର ପରବର୍ତ୍ତୀ ଜୀବନ ସୁଖମୟ ହେଲା । ଭକ୍ତି ଓ ପ୍ରୀତିରେ କରମା ପୂଜା ମଧ୍ୟ ସେ ଦିନ ଠାରୁ କରାଗଲା ।

ଏହିଭଳି ଉଭୟ ପଶ୍ଚିମ ଓ ଉତ୍ତର ଓଡ଼ିଶାରେ କରମସାନୀ ଓ କରମ ରାଜଙ୍କ ପୂଜା କରିବା ମୂଳରେ ଅଲଗା ଅଲଗା କାହାଣୀ ପ୍ରଚଳିତ ଥିଲେ ମଧ୍ୟ ପ୍ରତ୍ୟେକର ଉଦ୍ଦେଶ୍ୟ ଓ ପରିଣତି ହେଉଛି ଧନ, ମାନ, ଯଶଲାଭ ଏବଂ ପୁତ୍ରକଷ୍ଟ, ରୋଗ ଓ ଦୁଃଖରୁ ମୁକ୍ତି ପ୍ରାପ୍ତି । କରମାରେ ପ୍ରଚଳିତ ଲୋକ-କାହାଣୀଗୁଡ଼ିକରୁ ପାପର କ୍ଷୟ ଓ ଧର୍ମର ଜୟ-ଏ କଥା ସ୍ପଷ୍ଟ ପ୍ରତିପାଦିତ । ଉଭୟ କାହାଣୀରେ କରମସାନୀ ଓ କରମ ରାଜାର ମହିମା ପ୍ରଖ୍ୟାପନ ସହିତ ଲୋକ ଚିତ୍ତ ବିନୋଦନ କରିବା ଭଳି, ଭାବ ଉଦ୍ରେକକାରୀ ଘଟଣା ବର୍ଣ୍ଣିତ । କାହାଣୀ ମଧ୍ୟରେ ବୃକ୍ଷ, ଜୀବଜନ୍ତୁ, ପୁଷ୍କରିଣୀ ଆଦି ଚରିତ୍ର ଭାବେ ଗୃହୀତ । ଲୋକକାହାଣୀର ବୈଜ୍ଞାନିକ ବିଶ୍ଳେଷଣ ଅନୁଯାୟୀ କରମା କାହାଣୀ ଅନ୍ତର୍ଭୁକ୍ତ ବିଭିନ୍ନ ପ୍ରକାର୍ଯ୍ୟ (Function) ଓ ଚରିତ୍ର ଗୁଡ଼ିକ ଯଥାକ୍ରମେ ଗୋଟିଏ ଗୋଟିଏ ଟାଇପ୍ (type) ଓ ମୋଟିଫ୍ (Motif) ଭାବରେ ଗ୍ରହଣ ଯୋଗ୍ୟ । ଏବେ ମଧ୍ୟ ଏହି କାହାଣୀ ମୁଖକୁ ମୁଖ ଗତିଶୀଳ । ଏହାର ଲିଖିତ ରୂପ ପ୍ରଚଳନ ନାହିଁ । ତେଣୁ ଏହା ଏକ ଯଥାର୍ଥ ଲୋକ କାହାଣୀ ।

ପଶ୍ଚିମ ଓଡ଼ିଶାରେ କରମ୍‌ସାନୀ ପୂର୍ବରୁ କେବଳ ସହଁରା, ବିଂଝାଲ ଓ ଗଁଳା ଆଦି ନିମ୍ନ ବର୍ଗର ଲୋକମାନଙ୍କ ଦ୍ୱାରା ପୂଜା ପାଇ ଆସୁଥିଲା । କ୍ରମଶଃ ତାହା ସାର୍ବଜନୀନ ଦେବୀ ଭାବରେ ବ୍ରାହ୍ମଣ, କ୍ଷତ୍ରିୟ ସମେତ ସମସ୍ତ ବର୍ଗର ଲୋକଙ୍କ ଦ୍ୱାରା ପୂଜିତ ହେଉଛି । କରମ୍‌ସାନୀର ପୂଜା ଅବସରରେ ଅନୁଷ୍ଠିତ ହେଉଥିବା ନୃତ୍ୟଗୀତ ଏବଂ ତତ୍‌ଜନିତ ବିନୋଦନ ବା ଆନନ୍ଦବୋଧ ଏ ଅଞ୍ଚଳର ଲୋକ ଚିତ୍ତରେ ଥିବା ଉଚ୍ଚ ନୀଚ ଭେଦ ଦୂର କରି ଆବଳ ବୃଦ୍ଧ ବନିତାଙ୍କୁ ଏକତ୍ର କରିପାରିଛି । ପଶ୍ଚିମ ଓଡ଼ିଶାର ସାଧାରଣ ସମାଜରେ ଜାତି ପ୍ରଥାର କଠୋରତା ଏବେ ବି ତିଷ୍ଠି ରହିଥିବା ସ୍ଥଳେ ନିର୍ଦ୍ଦିଷ୍ଟ ଗୋଟିଏ ମୁହୂର୍ତ୍ତରେ ମାଆଙ୍କ ଆଗରେ ଜାତିଭେଦ ଭୁଲି ଯୁବକ ଯୁବତୀ ଏକତ୍ର ହେବାର ଦୃଶ୍ୟ ଶ୍ରୀ ଜଗନ୍ନାଥଙ୍କ ଆଗରେ ଆବ୍ରାହ୍ମଣ ଚଣ୍ଡାଳର ଭେଦଭାବହୀନ ବିହ୍ୱଳ ସମାଗମ୍ମୁ ସ୍ମରଣ କରାଇଦିଏ ।

ଉତ୍ତର ଓଡ଼ିଶାର କରମ ରାଜାଙ୍କ ପୂଜକ ଗୋଷ୍ଠୀ ସୀମିତ । କୁଡୁମୀ ବ୍ୟତୀତ ଅନ୍ୟ

ସମ୍ପ୍ରଦାୟର ଲୋକେ ଏହି ବିଶ୍ୱାସର ଦୃଢତାକୁ ମାନି କରମା ଡ଼ାଳ ଆଣି ପୂଜା କରିଥାନ୍ତି । କିନ୍ତୁ ଏମାନଙ୍କ କରମ ରାମ ମଧ୍ୟ କୁଡୁମୀଙ୍କ କରମରାଜା ଅନୁରୂପ । ସେମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିବା କରମାଗୀତ, ନୃତ୍ୟାଦି ସମ୍ପୂର୍ଣ୍ଣ ରୂପେ କୁଡୁମୀ ପ୍ରଭାବିତ । ତେଣୁ କରମ ରାଜା ଉତ୍ତର ଓଡ଼ିଶାରେ କୁଡୁମୀ ସମ୍ପ୍ରଦାୟର ଏକାନ୍ତ ନିଜସ୍ୱ ଦେବତା । ପଶ୍ଚିମ ଓଡ଼ିଶାର କରମସାନୀ ପରି ଏହା ଉଚ୍ଚବର୍ଗ ବା କୁଡୁମୀ ଭିନ୍ନ ଅନ୍ୟ ଗୋଷ୍ଠୀର ଲୋକପ୍ରିୟ ଦେବତା ହୋଇ ପାରିନାହିଁ । କାରଣ କରମାରାଜାର ମହିମା ପ୍ରଖ୍ୟାପକ କାହାଣୀ ଓ ତାକୁ କେନ୍ଦ୍ର କରି ଅନୁଷ୍ଠିତ ହେଉଥିବା ଲୋକଗୀତର ଭାଷା କୁରୁମାଳୀ ଅପଭ୍ରଷ୍ଟ ବଙ୍ଗଳା । ତେଣୁ ଏହି ଭାଷା ଓଡ଼ିଆ ଭାଷା ଭାଷୀ ଅନ୍ୟାନ୍ୟ ଗୋଷ୍ଠୀର ଲୋକଙ୍କ ନିକଟରେ ଗ୍ରହଣଯୋଗ୍ୟ ହୋଇପାରିନାହିଁ ।

ପଶ୍ଚିମ ଓଡ଼ିଶାର କରମ୍‌ସାନୀ ପୂଜା ଝାଙ୍କର ନାମକ ପୂଜକ ଗୋଷ୍ଠୀର ପୁରୋହିତ ମାନେ କରିଥାନ୍ତି । କୁଡୁମୀମାନେ କିନ୍ତୁ ଅନ୍ୟ କାହା ଉପରେ ନିର୍ଭର ନ କରି ନିଜେ ନବବସ୍ତ୍ର ପରିଧାନ କରି ଉପାସ୍ୟ କରମ୍ ଦେବତାର ଆବାହନ କରିଥାନ୍ତି । 'ସମ୍ବଲପୁରୀ ଲୋକସାହିତ୍ୟ' ଗ୍ରନ୍ଥରେ କୁମାର୍‌ହସନ୍ କହନ୍ତି- କରମ୍‌ସାନୀଙ୍କ ପୂଜା ଉପଚାରରେ ଚାଉଳ, ମିଠାଦ୍ରବ୍ୟ, ମଦ ପ୍ରଭୃତି ବ୍ୟବହୃତ ହେବା ସହିତ କୁକୁଡ଼ା ବଳି ଦିଆଯାଏ । କୁଡୁମୀ ଜାତି ମଧ୍ୟ କରମା ରାଜାର ଆଦ୍ୟ ପ୍ରତିଷ୍ଠା କାଳରେ ବୋଦାବଳି ଦେବା କଥା ପ୍ରଚଳିତ । ଉଭୟ କ୍ଷେତ୍ରରେ ଏହି ବଳିପ୍ରଥା କରମା ପୂଜକ ଗୋଷ୍ଠୀର ସଂସ୍କାରହୀନତା ଓ ଆଦିବାସୀ ମନସ୍କତାର ପରିଚାୟକ । ଅବଶ୍ୟ ଏବେ ଉଭୟ ଅଞ୍ଚଳରେ ବଳିପ୍ରଥାର ଉଚ୍ଛେଦ ହୋଇଗଲାଣି । ଏହି ପ୍ରଥା କୁଡୁମୀ ଜାତିର କରମ ଦେବତାଙ୍କୁ ବ୍ରାହ୍ମଣ-କ୍ଷତ୍ରିୟ ସ୍ତରରେ ପୂଜ୍ୟ ଦେବତା ନ ହୋଇ ପାରିବାର ଅନ୍ୟ ଏକ କାରଣ ହୋଇପାରେ ।

ପାରମ୍ପରିକ କରମସାନୀ ପୂଜା ଭାଦ୍ରଶୁକ୍ଳ ଏକାଦଶୀ ଦିନ ହୋଇଥାଏ । ଏହା ବ୍ୟତୀତ ଶାରଦୀୟ ଭାଇ ଜୀଉଁତିଆ ବା ପୁଅ ଜୀଉଁତିଆ ପର୍ବ ଅବସରରେ ଅଥବା କାର୍ତ୍ତିକ ମାସରେ ଯେକୌଣସି ଦିନରେ ସାହିବାଲା ମିଶି କରମସାନୀଙ୍କ ପୂଜା ଅନୁଷ୍ଠାନ କରନ୍ତି । ଏହି ପୂଜାର ବ୍ୟୟଭାର ସମଗ୍ର ଗ୍ରାମବାସୀ ବହନ କରନ୍ତି । ଏଥିପାଇଁ ପ୍ରତିଘରୁ କିଛି କିଛି ମାଗଣ ସଂଗ୍ରହ କରାଯାଏ ।

କୁଡୁମୀମାନେ ମଧ୍ୟ ଭାଦ୍ରମାସ ଶୁକ୍ଳପକ୍ଷ ଏକାଦଶୀ ତିଥିକୁ କରମରାଜାର ଆବାହନ ଶୁଭଦିନ ବୋଲି ଗ୍ରହଣ କରି ନେଇଛନ୍ତି । ଏହାଛଡ଼ା ସେମାନେ ଶ୍ରାବଣ ମାସର ଅମାବାସ୍ୟା (ଜୀତୁଆ, ଦଶହରାର ଅଷ୍ଟମୀ, ନବମୀ, ଦଶମୀ ତିଥିରୁ ଯେକୌଣସି ଦିନରେ ଓ ରାସ ପୂର୍ଣ୍ଣିମାରେ କରମା ଡ଼ାଳ ଆଣି ପୂଜା କରନ୍ତି ।

ଉପରୋକ୍ତ ଦିନଗୁଡ଼ିକରେ ବା ତିଥିଗୁଡ଼ିକରେ କରମା ଡ଼ାଳ ପୂଜାପାଏ, ଏହି ଉପଲକ୍ଷେ

ଗୀତ-ନୃତ୍ୟ ମଧ ଅନୁଷ୍ଠିତ ହୁଏ ସତ; ମାତ୍ର ଭାଦ୍ର-ଏକାଦଶୀର ମହିମାହିଁ ପ୍ରଖ୍ୟାପିତ ହୁଏ । କାରଣ ଏହି ଦିନଗୁଡ଼ିକରେ ଭାଦ୍ର-ଏକାଦଶୀରେ ଗାନ କରାଯାଉଥିବା ଗୀତ ହିଁ ଗାନ କରାଯାଏ-

ଯଥା-

"ଯାହୁ ଯାହୁ କରମ୍ ରାଜା ଏହି ଛୟମାସ
ଆଓତ ଭାବର ମାସେ ଆନବଁ ଘୂରାୟ୍ ।"

ଉତ୍ତର ଓଡ଼ିଶାରେ କରମାପୂଜାର ବ୍ୟୟଭାର ସଂପୂର୍ଣ୍ଣ ବ୍ୟକ୍ତିଗତ । ଏହାର ପୂଜା ତେଣୁ ଗ୍ରାମଦାଣ୍ଡରେ ନହୋଇ ସଂପୃକ୍ତ ବ୍ୟକ୍ତିଙ୍କ ଅଗଣାରେ ହୋଇଥାଏ । ତଥାପି ଏ ପର୍ବ ସାର୍ବଜନୀନ । ପ୍ରତି ଘରେ ଆଖଡ଼ା ତିଆରି ନହେଲେ ମଧ ବ୍ରତ ପାଳନ ଓ ନୃତ୍ୟଗୀତରେ ଯେକୌଣସି ଆଗ୍ରହୀ ବ୍ୟକ୍ତି ଅଂଶ ଗ୍ରହଣ କରିଥାନ୍ତି ।

କରମ୍‌ସାନୀଙ୍କ ପ୍ରତୀକ କରମାଡାଳକୁ ଝାଁକର, ମାଦଲିଆ ଓ କସ୍ତାଲିଆ ଦଳକୁ ସାଥୀରେ ନେଇ ସକାଳୁ ଆବାହନ କରିଆଣନ୍ତି । ସେତେବେଳକୁ ଗାଁ ମଝି ଦାଣ୍ଡରେ କୁମାରୀ କନ୍ୟା ମାନେ ଗୋବର ପାଣିରେ ଲିପାପୋଛା କରି କରମ ସାନୀରେ ଆସ୍ଥାନକୁ ପବିତ୍ର କରିଥାଆନ୍ତି । ପ୍ରତି ଘରୁ ମାନସିକ କାରୀ, ଉପାସୀ ଲୋକ ମାଆଙ୍କ ପାଇଁ ଗୋଟିଏ ଲେଖାଏଁ ଆଖୁ (କୁଶେର୍) ଆଣି ବଉତରା ପରି ସଜେଇ ରଖନ୍ତି ଓ ମଝିରେ ଖଟୁଲି ବା ପିତ୍ତଳ ଥାଳି ଉପରେ ନାଲି ଛିଟ ବିଛାଇ କରମସାନୀ (କରମାଡାଳ) ମାତାଙ୍କୁ ରଖାଯାଏ । ସନ୍ଧ୍ୟା ସମୟରେ ସମସ୍ତ ବ୍ରତ କାରିଣୀ ଏକତ୍ରିତ ହୋଇ ଡାଳ ଚାରିପାଖରେ ବସନ୍ତି ଏବଂ ଝାଁକର ପୂଜା କଲାବେଳେ ହୁଳହୁଳି ଦିଅନ୍ତି । ପୂଜା ସମୟରେ ମାଦଲ, କସ୍ତାଲ ମଧ ଆଳତି ସମୟ ଭଳି ବାଜୁଥାଏ । ମାଆ ପାଖରେ ବିଭିନ୍ନ ପ୍ରକାର ଫଳ ଦ୍ରବ୍ୟାଦି ଭୋଗ ଲାଗେ । ପୂଜା ଶେଷରେ ଝାଁକର ଗୀତ ଆରମ୍ଭ କରେ- ତାପରେ ସାରା ରାତି ଗୀତ ନାଚରେ ହିଁ ବିତିଯାଏ ।

କରମ୍‌ସାନୀ ପରି କରମ୍‌ରାଜାର ଆବାହକ ମଧ ତାର ଉଦ୍ୟୋକ୍ତା ଓ ପୂଜକ ।ଏହାର ଅବାହନ କାଳ କିନ୍ତୁ ସନ୍ଧ୍ୟା ସମୟ । କରମ୍ ରାଜାର ପୂଜା ଶେଷରେ ଆଖଡ଼ାରେ ଉପସ୍ଥିତ ଯେକୌଣସି ବ୍ୟକ୍ତି କରମା କାହାଣୀ କହନ୍ତି ଓ ଉପସ୍ଥିତ ବ୍ରତଚାରିଣୀମାନେ ସେ କାହାଣୀ ଶୁଣନ୍ତି । ଫଳରେ ସମସ୍ତଙ୍କ ମନରେ ପବିତ୍ର ଦୈବଭାବ ଜାଗ୍ରତ ହେବା ସହ ପାପ ଓ ଅନ୍ୟାୟ, ଅନୀତି ପ୍ରତି ଭୟଭାବ ସୃଷ୍ଟି ହୋଇଥାଏ । କାହାଣୀ ଶେଷରେ ନୃତ୍ୟ ଓ ଗୀତ ରସିକମାନଙ୍କ ମଧରୁ ନେତୃସ୍ଥାନୀୟ ବ୍ୟକ୍ତି କରମ୍‌ରାଜା ତଥା ଆଖଡ଼ାର ବନ୍ଦନା ଗାନ ପୂର୍ବକ ନାଚଗୀତର ଆସର ଜମାଇବା ଲାଗି ସମସ୍ତଙ୍କୁ ଗୀତ ମାଧମରେ ଆହ୍ୱାନ ଜଣାଇଥାଆନ୍ତି ।

କରମା ପର୍ବର କରମଦେବତାଙ୍କ ସନ୍ତୁଷ୍ଟି ବିଧାନ ନିମିତ୍ତ ଉଦ୍ୟୋକ୍ତା ଓ ଉପାସୀ ତଥା ଗ୍ରାମର ଯୁବକ ଯୁବତୀ ସାରାରାତି ବିନିଦ୍ର ନୃତ୍ୟ କରିଥାନ୍ତି । ଏଥିରେ ଗୀତ ହିଁ ନୃତ୍ୟର ମାଧ୍ୟମ । କାହାଣୀ ବା ଅଭିନୟର ସ୍ଥାନ ନାହିଁ । ନୃତ୍ୟ ସମୟରେ ବାଦ୍ୟର ତାଳ ଓ ଗୀତର ଲହର ହିଁ ମୁଖ୍ୟ ଆକର୍ଷଣ ସୃଷ୍ଟି କରେ ।

ପଶ୍ଚିମ ଓଡ଼ିଶାରେ କରମା ନାଚର ବାଦ୍ୟ ହିସାବରେ ମାଦଲ, ଝାଂଜ (କଂସାଲ) ଓ ବଂଶୀ ବ୍ୟବହୃତ ହୋଇଥାଏ । ସେହିପରି ଉତ୍ତର ଓଡ଼ିଶାରେ ମଧ୍ୟ ବଂଶୀ ଓ ମାଦଲ ବ୍ୟବହୃତ ହେବା ସହିତ ଢୋଲକ ତଥା ନାଗରା (ଧୁମ୍‌ସା) ବାଦ୍ୟ ବ୍ୟବହୃତ ହୁଏ । ଉଭୟ ଅଞ୍ଚଳର କରମା ନୃତ୍ୟ ଗୋଟିଏ ଗୋଷ୍ଠୀ ନୃତ୍ୟ । ନାରୀ ପୁରୁଷ ହାତକୁ ହାତ ଛନ୍ଦି ପରସ୍ପର ଅଣ୍ଟାକୁ ଧରି ସଂଘବଦ୍ଧ ଭାବେ ନୃତ୍ୟ କରନ୍ତି । ନୃତ୍ୟ ସମୟରେ ମାଦଲ ହିଁ ପ୍ରଧାନ ବାଦ୍ୟ ଭାବରେ ଗୃହୀତ ହୋଇଥାଏ ।

ପଶ୍ଚିମ ଓଡ଼ିଶାରେ କରମା ନୃତ୍ୟ କରିବା ସମୟରେ କେବଳ ବାଦ୍ୟ ବାଜେ ଏବଂ ସବୁରି ମୁହଁରୁ ମିଳିତ ଭାବରେ ବାଦ୍ୟର ତାଳେ ତାଳେ 'ହାୟ୍ ହାୟ୍' ଧ୍ୱନି ଉଚ୍ଚାରିତ ହୁଏ । ତା ସଙ୍ଗେ ସଙ୍ଗେ ଛନ୍ଦବଦ୍ଧ ପଦପାତ ଚାଲେ । ନାଚ ଶେଷରେ ଗୀତ ହୁଏ । ଗୀତ ଶେଷ ହେଲେ ପୁଣି ନାଚ ଆରମ୍ଭ ହୁଏ । ଅବିଶ୍ରାନ୍ତ ନୃତ୍ୟ ଗୀତ ସହିତ ବାଦ୍ୟର ତାଳ-ଲୟଯୁକ୍ତ ମଧୁର ଧ୍ୱନିହିଁ ଏ ଉତ୍ସବର ଲୋକପ୍ରିୟତା ବୃଦ୍ଧି ଓ ସାର୍ବଜନୀନ ଆକର୍ଷଣର ମୂଳହେତୁ ।

ଉତ୍ତର ଓଡ଼ିଶାରେ କୁଡୁମୀ ସମ୍ପ୍ରଦାୟର ନାରୀପୁରୁଷ ମଧ୍ୟ କରମା ନୃତ୍ୟ କରିଥାନ୍ତି । ପରସ୍ପର ହାତ ଛନ୍ଦାଛନ୍ଦି ହୋଇ ଅର୍ଦ୍ଧବୃତ୍ତାକାରରେ କରମରାଜାଙ୍କ ଚତୁର୍ଦ୍ଦିଗରେ ଘୂରିଘୂରି ନାଚ କରନ୍ତି । ନୃତ୍ୟ ଆଖଡ଼ାରେ ଜଣେ ଦି ଜଣ ରସିକ ଗାୟକ ଥାଆନ୍ତି । ଏହା ସହିତ ମାଦଳିଆ, ଢୋଲକ ବାଲା, ବଂଶୀବାଲା ମଧ୍ୟ ନୃତ୍ୟଦଳ ଆଗରେ ନର୍ତ୍ତନଶୀଳ ପାଦଗତିରେ ବାଦ୍ୟ ପରିବେଷଣ କରିଥାନ୍ତି । ପଶ୍ଚିମ ଓଡ଼ିଶା ପରି ନୃତ୍ୟ କଲାବେଳେ କୁଡୁମୀ କରମାର ଗୀତ ବନ୍ଦ ରହେ ନାହିଁ । ବରଂ ନର୍ତ୍ତକ ଦଳ ଗାୟକକୁ ଅନୁସରଣ କରି ଗୀତ ସହ ନୃତ୍ୟ କରିଥାନ୍ତି । ଗାୟକ ନିଜର ପ୍ରବୀଣତା ଦେଖାଇ ଗୀତ ଅନୁସାରେ ନାଚ ଦେଖାଉଥାଏ । ଗୀତ ଆରମ୍ଭ କରିବାର ଆଦ୍ୟ ପର୍ଯ୍ୟାୟରେ ଖୁବ୍ ଅଳ୍ପ ସମୟ ପାଇଁ ବାଦ୍ୟ ବନ୍ଦ ରହେ; ପୁନଶ୍ଚ ଘୋଷାପଦ ଗାଇବାବେଳକୁ ବାଦ୍ୟ ଆରମ୍ଭ ହୁଏ ଏବଂ ଘୋଷାପଦ ଧରି ନର୍ତ୍ତକଦଳ ନୃତ୍ୟ ଆରମ୍ଭ କରିଥାନ୍ତି । ଫଳରେ କୁଡୁମୀମାନଙ୍କ କରମା ନାଚରେ ମଧ୍ୟ ମଝିରେ ମଝିରେ ବରତି ଘଟି ଦର୍ଶକମାନଙ୍କର ଉତ୍କଣ୍ଠା ଓ ଆକର୍ଷଣ ବଢ଼ାଇଥାଏ ।

ସେପରି ରସିକତା ନଥିଲେ ବିନିଦ୍ର ରହି ମାଦଳର ତାଳେ ତାଳେ ସାରାରାତି ନାଚିବା କଷ୍ଟକର । କରମା ନଚର ନିରବଚ୍ଛିନ୍ନତା ପାଇଁ ଭାଂଗ, ହାଣ୍ଡିଆ, ମହୁଲି, ଚାଉଳି ବା ଗଂଜାଇ ଆଦି ମାଦକ ଦ୍ରବ୍ୟ ସେବନ କରାଯାଇଥାଏ । ମଦ ନିଶାରେ ହିଁ ଲୋକେ ସାରାରାତି ଉଦଣ୍ଡ

କରମା ନୃତ୍ୟ କରିଚାଲନ୍ତି ।

କରମାନୃତ୍ୟ ଯେହେତୁ ଗୋଟିଏ ଗୋଷ୍ଠୀ ନୃତ୍ୟ, ଗୀତ ମଧ ଗୋଷ୍ଠୀଗତ । ମିଳିତ କଣ୍ଠରେ କ୍ଷୁଦ୍ର କ୍ଷୁଦ୍ର ଗୀତ ଗୁଡ଼ିକ ଗାଇବା ଓ ତାର ଘୋଷାପଦକୁ ବାରବାର ଦୋହରାଇବା ଦ୍ୱାରା ଗୀତର ଅସଲ ସାଙ୍ଗୀତିକ ମାଧୁର୍ଯ୍ୟ ବୃଦ୍ଧିପ୍ରାପ୍ତ ହୁଏ ।

ଲୋକ ବିଧି ସମ୍ମତ କରମା ପୂଜାର ସମାପ୍ତି ପରେ କରମାଙ୍କ ମହିମା ପ୍ରଖ୍ୟାପକ କାହାଣୀ କଥିତ ହୁଏ । କାହାଣୀ ଶେଷ ହେଲେ ଗୀତ ଆରମ୍ଭ ହୋଇଥାଏ । କରମା ପର୍ବର ପ୍ରତି ଯଦି କିଛି ଅନାହତ ଓ ଅକୁଣ୍ଠ ଆଗ୍ରହର କାରଣ ଥାଏ, ତାହା ହେଉଛି ଏହି ଗୀତ ଓ ନୃତ୍ୟ । ଆବାଳବୃଦ୍ଧ ବନିତା ସମସ୍ତେ ଏହି ପର୍ଯ୍ୟାୟରେ ଜୀବନକୁ ନିବିଡ଼ ଭାବେ ଉପଲବ୍ଧି କରନ୍ତି । ଅର୍ଥବହ, ରସଉଦ୍ରେକକାରୀ, ଜୀବନସଂବେଦୀ ଗୀତ ସମସ୍ତଙ୍କ ମନରେ ଉତ୍ସାହ ଓ ପୁଲକ ଭରିଦିଏ ।

କରମାଗୀତ-ଆସରର ଆଦ୍ୟ ପର୍ଯ୍ୟାୟରେ କରମସାନୀ ତଥା ବିଭିନ୍ନ ଦେବାଦେବୀଙ୍କ ବନ୍ଦନା ବା ସ୍ତୁତିମୂଳକ ଗୀତ ହୁଏ । ଗାୟକ ଏହି ଅବସରରେ ଗାନ କ୍ଷମତା-ଲାଭ ପାଇଁ ପ୍ରାର୍ଥନା କରିଥାଏ-

"ଜୁହାର ମା ଗୋ କରମ୍‌ସାନୀ
ଅପୁତ୍ରକେ ପୁତ୍ର ଦାନୀ....." (୧)
"ଗାଏମି କରମାର ଗୀତ ମୂଳନାଇଁ ଆସେ
ଜୁହାର ମାଗୋ କରମ୍‌ସାନୀ ତୋତେ ହୋ
ପରସନ ହୁଅ ମୋତେ- " । (୨)

ପଶ୍ଚିମ ଓଡ଼ିଶାର କରମସାନୀ-ସ୍ତୁତିମୂଳକ-ଗୀତ ଅନୁରୂପ, ସ୍ତୁତିମୂଳକ ଗୀତ ଉତ୍ତର ଓଡ଼ିଶାରେ ମଧ ଗାନ କରାଯାଇଥାଏ । କିନ୍ତୁ ସେଥିରେ କରମରାଜାଙ୍କ ବନ୍ଦନା ସଙ୍ଗେ ସଙ୍ଗେ ଦୁର୍ଗା, ତାରିଣୀ ଦେବୀ ତଥା ଆଖଡ଼ାର ଚତୁର୍ଦ୍ଦିଗ ବନ୍ଦନା କରାଯାଇଥାଏ ।

ଅଧିଷ୍ଠିତ ଦେବାଦେବୀଙ୍କ ସ୍ତୁତିଗାନ ପରେ ଉଭୟ ଅଞ୍ଚଳର କରମାରେ ରାତ୍ରିର ବିଭିନ୍ନ ପ୍ରହର ଅନୁସାରେ ଭିନ୍ନ ଭିନ୍ନ ପ୍ରକାର ରସ ଓ ଅର୍ଥ ଯୁକ୍ତ ହୋଇଥାଏ । ଦୀର୍ଘ ଗୋଟାଏ ବର୍ଷର ଅପେକ୍ଷା ଓ କ୍ଳାନ୍ତି ପରେ ଭାଦ୍ର ଏକାଦଶୀର କରମା କୁ ଫେରିଥାଆନ୍ତି ତରୁଣ-ତରୁଣୀମାନେ । ତେଣୁ ରାତ୍ରିର ପ୍ରଥମ ପର୍ଯ୍ୟାୟରେ ସେମାନେ ପ୍ରେମ, ପ୍ରଣୟ, ବିରହ ଆଦି ଶୃଙ୍ଗାର ରସ ଉଦ୍ରେକ କାରୀ ଗୀତ ମଧରେ ନିଜକୁ ହଜାଇ ଦେବାକୁ ଚାହାନ୍ତି ।

"ମାଘ ଫାଗୁନ ମାସେ
କାଁ ଟା ବାଁ ଶେ ଭମର ପଶେ
ଏହେ ରକମ୍‌ଗେ ଦିଦି ଦୁନିଆଁ ସଂସାରେ
ଆର କି ରହବେ ବାପ୍ ଘାରେ ।"

ଏହି ଗୀତାଂଶର ଅର୍ଥ ହେଲା- ମାଘ, ଫାଲଗୁନ ମାସରେ କଅଁଳ ଫୁଲରେ କେବଳ କାହିଁକି, କଂଟା ବାଉଁଶରେ ମଧ୍ଧ ଭ୍ରମର ଭେଦ କରେ । ଏହାହିଁ ହେଉଛି ସଂସାର ନିୟମ ଯୌବନ କାଳରେ ଯୁବତୀ ତେଣୁ ପିତୃଗୃହରେ ନ ରହିବା କଥା ଗୀତଟିରେ ବନ୍ଦନା ମାଧ୍ୟମରେ ଜଣେ ଯୁବତୀ ଅନ୍ୟଜଣେ ଯୁବତୀକୁ ଇଙ୍ଗିତ ସୁଲଭ ପରାମର୍ଶ ଦେଇଥିବା କଥା ବର୍ଣ୍ଣିତ ।

ରାତ୍ରି କ୍ରମଶଃ ଗଭୀର ହୋଇ ଆସିବା ସମୟରେ ଜୀବନର ନାନା ଅଭିଜ୍ଞତା, ଅନୁଭୂତି ଓ ଲୋକ ଜୀବନ ଦର୍ଶନ ମୂଳକ ଗୀତ ଗାନ କରାଯାଏ । ଏଥିରେ ଜୀବନର ଦୁଃଖ, ଦୁର୍ଦ୍ଦଶା, ପାରିବାରିକ ଅଭାବ ଅସୁବିଧା, ଜନ୍ମ ମୃତ୍ୟୁ ଚିନ୍ତା ଆଦି ପ୍ରକାଶ ପାଇଥାଏ ।

"ଭୂଷା କୁଟଇତେ ନର୍
ବିରଲାୟଁ ହରିହର୍
ହାୟରେ, ନର ଜନମ ବିଧିକାହେ ଦେଲ.... ?"

ଅଥବା

"ତୁଷେର ଅଂଗୁନ
ଜଲିଛେ ଦୁଗୁନ
କି ଦିଲେ କିସେରେ ନିଭାୟ୍
ମରିଲେରେ ଦୁଃଖ
କେ ସଂଗେ ଯାୟ୍ ?"

ଏସବୁ ଗୀତ ମଧ୍ୟରେ ମଣିଷ ଜୀବନର ଅବଚେତନ ମନରେ ଲୁଚିରହିଥିବା ଦୁଃଖ, ଜୀବନର ଅସାରତା, ମାୟାମୋହ ଜଡ଼ିତ ସଂସାରର ଅଳିକତା ଜନିତ ହତାଶା ଆଦିର ଚିତ୍ର ପ୍ରକାଶିତ ।

ଏତଦ୍ ବ୍ୟତୀତ କରମା ରଜନୀର ଅନ୍ତିମ ପ୍ରହରରେ ଉପରୋକ୍ତ ପ୍ରେମ ଓ ଯୌବନର ରସିକ ଦୃଷ୍ଟି ତଥା ଉଦାସ ଚିତ୍ତର ଜୀବନ ଦର୍ଶନ ଆଧାରିତ ଗୀତକୁ ବର୍ଜନ କରି ଲୋକମନ ହାଲୁକା ହେବା ଭଳି ସହଜ ସଚ୍ଛଳ ଗୀତ ଗାନ କରାଯାଇଥାଏ ।

ନୂଆଁଣିଆ ବର୍ଷା ଆଗମନରେ ପଲ୍ଲୀଦାଣ୍ଡରେ ନିର୍ବୋଧ ଶିଶୁର ହାତରେ କହଣିଆଁ

(ମାଛଧରିବା ଲାଗି ବ୍ୟବହୃତ ହେଉଥିବା ଉପକରଣ ବିଶେଷ) ଓ ତାର ମାଛ ଧରିବାର ନିଷ୍ଠୁର ଚିତ୍ର ନିମ୍ନ ଗୀତାଂଶରେ ପ୍ରସ୍ଫୁଟିତ-

"କୁଲ୍‌ହୀଇ କୁଲ୍‌ହୀଇ ଜଲ୍‌ବହେ
ଛାୟଲାର୍ ହାତେ ଘୁଗିରେ
ଦେଖ୍ ଛାୟଲା କତ ମାଛ
ଶୁଧାଇ୍ ବେଙ୍ଗ୍ ଝୁନିରେ-।"

ସେହିପରି ଗ୍ରାମୀଣ କୁକୁଡ଼ା ପାଳନକାରୀ କୃଷକର ଗୃହାଂଗନରେ ସଂଖ୍ୟାଧିକ ଚିଆଁ ସମେତ ଇତସ୍ତତଃ ଭ୍ରମଣରତ ମାଈ କୁକୁଡ଼ାର ଫୁଲଫଟା ଦୃଶ୍ୟ ଏହି କବିତାଂଶରେ ଉଦ୍‌ଭାସିତ-

"ଏକ ମୁଠା କଟରଚି
ତିନ୍ ଗଣ୍ଡା ଚିଆଁରେ
ଗିଦିର୍ ଗିସିର୍ ଗୋଟା ଅଂଗନା...।"

ଏହି ଗୀତ ଗୁଡ଼ିକରେ ଲୋକ ଜଗତର କ୍ଷୁଦ୍ର କ୍ଷୁଦ୍ର ଘଟଣା ଓ କ୍ଷୁଦ୍ର କ୍ଷୁଦ୍ର ଉପାଦାନକୁ ନେଇ ଲୋକ କବିର ସୌନ୍ଦର୍ଯ୍ୟ ଦୃଷ୍ଟି ଫୁଟି ଉଠେ।

ଏହି ପରି ସମଗ୍ର ରଜନୀର କରମା ଗୀତ ମଧ୍ୟରେ ଲୋକ ଜୀବନର ପ୍ରେମ-ପ୍ରଣୟ, ଜୀବନ ଦର୍ଶନ ରୂପ ପାଇବା ସହିତ ତାର ସାମାଜିକ ଓ ରାଜନୀତିକ ଜୀବନ ମଧ୍ୟ ରୂପ ପାଏ। ରାମାୟଣାଦି ପୁରାଣର କାହାଣୀ ମଧ୍ୟ କେବେ କେବେ ଗୀତରେ ପ୍ରକାଶିତ ହୁଏ।

ଦ୍ୱାଦଶୀ ଦିନ ବ୍ରାହ୍ମ ମୁହୂର୍ତ୍ତରୁ କରମା ଡାଳକୁ ନିକଟସ୍ଥ ନଈ, ନାଳ ଅଥବା ଜଳାଶୟରେ ବିସର୍ଜନ କରାଯାଏ। କରମାକୁ ଆବାହନ କରିଆଣିବା, ତାଙ୍କୁ କେନ୍ଦ୍ରକରି କାହାଣୀ କହିବା, ସାରାରାତି ନୃତ୍ୟଗୀତରେ ମାତିବା ଯୋଗୁଁ ଲୋକମାନଙ୍କ ମନ ମଧ୍ୟରେ କରମା ସହ ଏକ ଅଜ୍ଞାତ ଆତ୍ମୀୟତା ପ୍ରତିଷ୍ଠିତ ହୋଇଯିବା ସ୍ୱାଭାବିକ। ବିଭିନ୍ନ ମୁହୂର୍ତ୍ତରେ ପ୍ରତ୍ୟକ୍ଷ ସଂସ୍ପର୍ଶ ଜନିତ ଆତ୍ମୀୟତା ପରେ ସକାଳର ବିସର୍ଜନ ସମୟରେ ଏକ ଦୁଃଖଦ ପରିସ୍ଥିତି ସୃଷ୍ଟି ହୋଇଥାଏ। ଉତ୍ତର ଓଡ଼ିଶାରେ କୁଡୁମୀ କଣ୍ଠରୁ ସ୍ୱତଃ ସ୍ଫୁର୍ତ୍ତି ଝରିଆସେ-

"ଆଜ୍‌ରେ କରମ୍ ରାଜା ଘରେ ଦୁଆରେ
କାଲ୍‌ରେ କରମ୍ ରାଜା କେଶ୍ ନଦୀର୍ ପାରେ
ଆମ୍ ଫାଟୁର ଦାମ୍ ଫାଟୁର ବାଦିଗଲା କପାଳେ
ଆଜ୍‌ରେ କରମ୍ ରାଜା ଚାଲିଯିବ ସକାଳେ....." ଇତ୍ୟାଦି।

ଏସବୁ ସତ୍ତ୍ୱେ ସଂପୂର୍ଣ୍ଣ ହତୋତ୍ସାହିତ ନହୋଇ କୁମାରୀ ମନରେ ଆଶା ଓ ଆଶ୍ୱାସନାର ସ୍ୱର ଫୁଟି ଉଠେ । ସମୟାନ୍ତରରେ ପୁଣି ଥରେ କରମ ରାଜାଙ୍କୁ ଫେରାଇ ଆଣିବାର ସଂକଳ୍ପ ଓ ପ୍ରତିଶ୍ରୁତି ପରିପ୍ରକାଶ ଘଟେ ନିମ୍ନୋକ୍ତି ପଂକ୍ତିରେ -

"ଯାହୁ ଯାହୁ କରମ୍ ରାଜା ଏହ ଛୟ୍ ମାସ୍
ଆଓତ ଭାଦର ମାସେ ଆନବଁ ଘୂରାୟ୍...... ।"

ଏହିପରି ଆନନ୍ଦ ଓ ଉତ୍ସାହର ସହିତ ସ୍ମରଣାତୀତ କାଳରୁ ଓଡ଼ିଶାରୁ କରମା ଦୁଇଟି ରୂପରେ ପୂଜା ପାଇ ଆସୁଛି । ପଶ୍ଚିମ ଓଡ଼ିଶାରେ କରମସାନୀ ଓ ଉତ୍ତରରେ କରମରାଜା । ଦୁଇ ଭୌଗୋଳିକ ସ୍ଥାନର ଅବସ୍ଥିତି ଅସଂଲଗ୍ନ ନୁହେଁ । ଏ ଦୁଇ ଜଗତର ସାଂସ୍କୃତିକ ଐତିହ୍ୟ ମଧ ପରସ୍ପର ସଂପର୍କାନ୍ୱିତ । ତଥାପି ସେଇ ଏକ ଦେବତାର ଦୁଇଭିନ୍ନ ରୂପ ଦେଖିବାକୁ ମିଳେ । ବୋଧହୁଏ, ଗନ୍ଧମାର୍ଦ୍ଧନରେ ଦୁର୍ଗମ ଗିରିପଥ କରମାର କଥାକଥିତ ବିଶ୍ୱାସ ବୋଧ, ପୂଜା ପଦ୍ଧତି, ଗୀତ ଓ ନୃତ୍ୟର ଢଂଗକୁ ବିଛିନ୍ନ କରିଦେଇଛି ।

କରମା ମାଟିର ପିତୁଳା, ପଥର ବା ଆଉ କିଛି ନୁହେଁ- ସାଧାରଣ ଡ଼ାଳଟିଏ । କରମା ନାମକ ଗଛର ଡ଼ାଳକୁ ଆଖଡ଼ା ସ୍ଥଳରେ ପୋତିଦେବା ଚରିତ୍ରର ପ୍ରତିନିଧି ସ୍ୱରୂପ ପୂଜା କରାଯାଉଥିବା ଯୋଗୁଁ ଏହାକୁ କେନ୍ଦ୍ରକରି ଅନୁଷ୍ଠିତ ହେଉଥିବା ପର୍ବକୁ କରମା ପୂଜା ବା କରମା ପର୍ବ କୁହାଯାଏ । ସାଧବ ପୁତ୍ର ଏଇ ଡ଼ାଳ ପୂଜାର ନିର୍ଦ୍ଦେଶ କେଉଁ ସୂତ୍ରରୁ ପାଇଲା ତାର କିଛି ପ୍ରାମାଣିକ ଭିତ୍ତି ନାହିଁ । ପୂଜା ଅବକାଶରେ କଥିତ ହେଉଥିବା କାହାଣୀରୁ ଏହାର ମୂଳ ଉତ୍ସ ସଂପର୍କରେ କୌଣସି ତଥ୍ୟ ମିଳେ ନାହିଁ । ସ୍ୱପ୍ନାଦେଶରୁ ଧରମ୍ ଡାଳ ପୂଜା କରିଥିବାର ସୂଚନା ମାତ୍ର ମିଳିଥାଏ । ତେବେ ମଣିଷ ଜାତିର ସରଳ ବିଶ୍ୱାସକୁ ଅଧ୍ୟୟନ କଲେ ଜଣାଯାଏ ଯେ, ଆଦିକାଳରୁ ସେ ପ୍ରକୃତିକୁ ଈଶ୍ୱର ବୋଲି ମାନି ଆସିଛି । ଏବେ ମଧ ଲକ୍ଷ୍ୟ କଲେ ଆମେ ଜାଣି ପାରିବା ଗଛର ପ୍ରଥମ ଫଳଟିକୁ ସେଇ ବିଶ୍ୱାସର ଶେଷ ନିଦର୍ଶନ ସ୍ୱରୂପ ମଣିଷ କିପରି ତାର ଆରାଧ ଦେବତା ନିକଟରେ ଅକୁଣ୍ଠ ଭାବେ ସମର୍ପି ଦିଏ । Totemism ବା ସଂକେତବାଦ ଅନୁସାରେ ଅଷ୍ଟ୍ରିକ୍ ଭାଷାଗୋଷ୍ଠୀ ତଥା ଅଷ୍ଟ୍ରେଲିଆର ଆଦିମ ଅଧିବାସୀମାନଙ୍କ ମଧରେ ମଧ ଜୀବଜନ୍ତୁଙ୍କ ଛଡ଼ା ବୃକ୍ଷଲତା ଟୋଟେମ୍ ରୂପେ ପ୍ରଚଳିତ । ସମ୍ଭବତଃ ସେଇ ଆଦିମ ବିଶ୍ୱାସକୁ ଆଧାର କରି ଶବର ପୂଜିତ ଜଗନ୍ନାଥଙ୍କ ପରି କରମା ଏବେ ମଧ ପୂଜିତ ହେଉଛି ।

ପ୍ରତ୍ୟେକ ଧର୍ମର ପୂଜା-ଆରାଧନା-ପଦ୍ଧତି ଅଲଗା ହେଲେ ମଧ ଲକ୍ଷ୍ୟ ଏକ ହେଲା ପରି କରମାର ଦୁଇ ଭିନ୍ନ ରୂପ ସତ୍ତ୍ୱେ ଆରାଧନାର ମୂଳ ଉଦ୍ଦେଶ୍ୟ ସମାନ । କରମା ଡ଼ାଳକୁ ପୂଜା କଲେ ପାପ କ୍ଷୟ ହୁଏ, ପୁତ୍ର ପ୍ରାପ୍ତି, ଧନପ୍ରାପ୍ତି ଓ ଯଶପ୍ରାପ୍ତି ଘଟେ- ଅଭାବ ଦୂର ହୁଏ ବୋଲି

ବିଶ୍ୱାସ ରହିଛି । ଧନ ଓ ଐଶ୍ୱର୍ଯ୍ୟର ଦେବୀ ଲକ୍ଷ୍ମୀ କରମା-ଜଗତର ମଣିଷ ନିକଟରେ ଅପୂଜିତ ନୁହଁନ୍ତି । ତଥାପି ଭାଦ୍ରମାସ ଶୁକ୍ଳ ଏକାଦଶୀ ଦିନ, ଦଶହରାର ମହା ସପ୍ତମୀ, ଅଷ୍ଟମୀ, ନବମୀ ଓ ଦଶମୀ ଦିନ ଅଥବା ରାସ ପୂର୍ଣ୍ଣମା ଦିନ ନିଜ ଗୁହାଳକୁ ନୂଆ ବାଛୁରୀଟିଏ ଆସିଲେ କିମ୍ବା ନିଜ ପରିବାର ମଧକୁ ନବଜାତ ଶିଶୁର ଆଗମନ ଘଟିଲେ, ତାହା କରମରାଜାର ଆଶିଷ ବୋଲି ଗ୍ରହଣ କରିନେଇ କୁଡୁମୀ କରମା ପୂଜା କରିଥାଏ । ସେହିପରି ପଶ୍ଚିମ ଓଡ଼ିଶାରେ ମଧ ନିଜର ମାନସିକ ପୂରଣ ହେଲେ କରମା ପୂଜା ଅନୁଷ୍ଠିତ ହୁଏ ।

ଉପାସନା ମୂଳକ ପର୍ବ କରମାର ମୂଳ ଉଦ୍ଦେଶ୍ୟ ଈଶ୍ୱରୀୟ କରୁଣାଲାଭ; ମାତ୍ର ଏହାକୁ କେନ୍ଦ୍ର କରି ଲୋକାମଦ ନିମିତ୍ତ ଅନୁଷ୍ଠିତ ହେଉଥିବା ନୃତ୍ୟ ଓ ଗୀତ ହେଉଛି ପ୍ରଧାନ ଆକର୍ଷଣ । କରମ ସାନୀ ବା କରମ ରାଜା ପ୍ରତି ଭକ୍ତିର ନିଦର୍ଶନ ସ୍ୱରୂପ ସାରାରାତି ଜାଗର ଜାଳିବାର ପରମ୍ପରା ଅଛି । ତଥାପି ତାକୁ କେନ୍ଦ୍ର କରି ବାଦ୍ୟ ଓ ଗୀତର ଝଙ୍କାରରେ ଅନୁଷ୍ଠିତ ହେଉଥିବା ଲୋକନୃତ୍ୟର ଏକ ବଳିଷ୍ଠ ସାଂସ୍କୃତିକ ପରମ୍ପରା ଗଢ଼ିଉଠିଛି । ଏହି ବାଦ୍ୟ-ଗୀତ-ନୃତ୍ୟମୟ ପରମ୍ପରା ନଥିଲେ କରମାର ମହତ୍ତ୍ୱ ସେତେ ଗୁରୁତ୍ୱପୂର୍ଣ୍ଣ ମନେ ହେଉ ନଥାନ୍ତା । ଓଡ଼ିଶାରେ ପାଳନ କରାଯାଇଉଥିବା ନାନା ସାର୍ବଜନୀନ ଓଷାବ୍ରତ ସଦୃଶ ଏହା ଉପବାସପୂର୍ବକ ଦେବାଦେବୀ ପୂଜନରେ ସୀମିତ ରହିଥାନ୍ତା ।

ବସ୍ତୁବାଦୀ ଜଗତରେ ବର୍ତ୍ତମାନ ଈଶ୍ୱର ଦୃଢ଼ତା କ୍ରମଶଃ ଅପସାରିତ ହୋଇ ଯାଉଛି । ସେହି କାରଣରୁ ଧର୍ମୀୟ ଅନୁଷ୍ଠାନକୁ କେନ୍ଦ୍ରକରି ଅନୁଷ୍ଠିତ ହେଉଥିବା କରମା ନୃତ୍ୟ ଓ ଗୀତ ଅଧୁନା କରମା ପୂଜାଠାରୁ ଅଧିକ ଗୁରୁତ୍ୱ ଲାଭ କରିଛି ।



# ପଶ୍ଚିମ ଓଡ଼ିଶାର ଗୀତିକବିତା ଓ ଗୀତିକାର

**ପ୍ରଦୀପ୍ତ କୁମାର ଦାଶ**

ସମାଜ ଜୀବନର ହାସ୍ୟ-ଅଶ୍ରୁ, ସାଫଲ୍ୟ, ସରଳ, ନିରାଡ଼ମ୍ବର ପଲ୍ଲୀ ଜୀବନର ପ୍ରତିଫଳନରେ ଉର୍ଦ୍ଧ୍ୱସ୍ୱଳ ହୋଇ ଗୀତିକବିତା (Lyrics) ପୁଷ୍ଟ ହୋଇଥାଏ। ଲୋକଭାଷାର ପଞ୍ଜର ଭିତରେ ଅମୃତର ଜୀବନର ସାହାନାଇ ବଜାଇ ଲୋକଗୀତରେ ସ୍ଫୁର୍ତ୍ତି ପରିପ୍ରକାଶ ଘଟିଥାଏ। ପଶ୍ଚିମ ଓଡ଼ିଶାର ଗୀତିକା ଗୁଡ଼ିକ ପଶ୍ଚିମ ଓଡ଼ିଶାର ସ୍ୱତନ୍ତ୍ର ଜୀତବନଧାରା, ରୀତିରିତି, ଚାଲିଚଳନ, ପର୍ବ ପର୍ବାଣି ଆଦିକୁ ଉପଜୀବ୍ୟ କରି ସମ୍ବଲପୁରୀ; କଥ୍ୟଭାଷା ଓ ଏ ଅଞ୍ଚଳରେ ପ୍ରଚଳିତ ଢ଼ଗଢ଼ମାଳି ସଂଯୋଜନାରେ ମୂର୍ତ୍ତ ଭାବରେ ଫୁଟିପାରିଛି। ଆକାଶବାଣୀ ସମ୍ବଲପୁର ଏଇ ଗୀତିକା ରଚନାର ପ୍ରକ୍ରିୟାକୁ ଆହୁରି ତ୍ୱରାନ୍ୱିତ କରିଛି। ଉନ୍ନତ ରୁଚିର ଗୀତିକା ରଚନା ପାଇଁ ଶିକ୍ଷିତ ବ୍ୟକ୍ତିମାନେ ଆଗେଇ ଆସିଛନ୍ତି। ସର୍ବଶ୍ରୀ ନରସିଂହ ପ୍ରସାଦ ଗୁରୁ, ୰ସତ୍ୟନାରାୟଣ ବହିଦାର, ବିନୋଦ କୁମାର ପଶାୟତ, ମିତ୍ରଭାନୁ ଗଅଁତିଆ, ଶ୍ରୀପତି ପାଣିଗ୍ରାହୀ, ନେତ୍ରାନନ୍ଦ ବାରିକ, ଗୋପବନ୍ଧୁ ରଥ, ପର୍ଶୁରାମ ଶତପଥୀ ଏବଂ ଆହୁରି ଅନେକ ଗୀତିକାରମାନେ ସ୍ୱତଃସ୍ଫୁର୍ତ୍ତ ଭାବରେ ଲେଖିଚାଲିଛନ୍ତି ସମ୍ବଲପୁରୀ ଲୋକସଙ୍ଗୀତ। ସେଗୁଡ଼ିକର ସଂକ୍ଷିପ୍ତ ପର୍ଯ୍ୟାଲୋଚନା ଏ ପ୍ରବନ୍ଧରେ କରାଯାଇଛି।

**ସ୍ୱର୍ଗତ ବିଧୁଭୁଷଣ ଗୁରୁ-** ସ୍ୱର୍ଗତ ବିଧୁଭୁଷଣ ଗୁରୁ ବଲାଙ୍ଗୀର ଜିଲ୍ଲା ଅନ୍ତର୍ଗତ ତୁଷରା ଭଳି ଏକ ପଲ୍ଲୀରେ ଜନ୍ମଗ୍ରହଣ କରିଥିଲେ ମଧ ତାଙ୍କର ବହୁମୁଖୀ ପ୍ରତିଭା ଲୁଚି ରହପାରିଥିଲା। ସେ ଥିଲେ ଏକାଧାରରେ କବି; ସାହିତ୍ୟକ, ସଙ୍ଗୀତଜ୍ଞ, ରାଜନୀତିଜ୍ଞ, ଶିକ୍ଷାବିତ୍ ଓ କଣ୍ଠଶିଳ୍ପୀ। ୧୯୪୬ ମସିହା ବେଳକୁ ଯେତେବେଳେ ପଶ୍ଚିମ ଓଡ଼ିଶାରେ ଲୋକଗୀତ ଗୁଡ଼ିକ ଶିକ୍ଷିତ ସମାଜରେ ଆଦର ଲାଭ କରି ନଥିଲା, ସେତେବେଳେ ଉନ୍ନତ ରୁଚିର ସମ୍ବଲପୁରୀ ଗୀତ ରଚନା କରି ବିଧୁବାବୁ ଏ ଅଞ୍ଚଳରେ ଚହଳ ସୃଷ୍ଟି କରିଥିଲେ। ତାଙ୍କ ଗୀତ ଗୁଡ଼ିକରେ ସରଳ ସାବଲୀଳ ପ୍ରକାଶ ଶୈଳୀ ଓ ମନମତାଣିଆ ରାଗିଣୀ ଯୋଗଁ ସବୁ ଶ୍ରେଣୀର ଲୋକଙ୍କ ମନକୁ ଏହା ବିଶେଷ ଭାବରେ ଆକୃଷ୍ଟ କରିପାରିଥିଲା। ଏହି ସମ୍ବଲପୁରୀ ଗୀତ ଗୁଡ଼ିକ ବିଭିନ୍ନ

ଜିଲ୍ଲାମାନଙ୍କରେ ଅତି ଅଳ୍ପ ସମୟରେ ସଂପ୍ରସାରିତ ଓ ପ୍ରଚାରିତ ହୋଇ ପାରିଥିଲା । 'ଅଁଟା ଭାଙ୍ଗି ଭାଙ୍ଗି ଚାଲେ ଗୁରୀରେ ତାର ପବତ୍ କାନି ଫିରେ' ବା ଝୁପୁରୁ ଝୁପୁରୁ ପାଏନ ବରଷେ ପହ୍ଲାରୁଇ ଚାଲ୍‌ରେ ବହେନ୍ ପହ୍ଲାରୁଇ ଚାଲ' କିମ୍ବା 'ଚାଲ୍ ସଙ୍ଗାତ ପଥର୍ ଘାଟରେ ଯାଉଁ ଯାଉଁ କହେମି ମୋର ମନର୍ କଥା ବାଟରେ' ଆଦି ଗୀତି କବିତା ଗୁଡ଼ିକରେ ଭାବ ବ୍ୟଞ୍ଜକ ରସାଳ ପଦାବଳୀରେ ଯେଉଁ ମାଦକତା ଓ ରସପ୍ରାଚୁର୍ଯ୍ୟ ଭରି ରହିଛି । ତାହା ଶ୍ରୋତାମାନଙ୍କୁ ମନକୁ ଆଲୋକିତ କରି ପାରିଛି ଅଦ୍ୟାବଧି । ତେଣୁ ସେଗୁଡ଼ିକ କାଳଜୟୀ ସଙ୍ଗୀତରେ ସମ୍ମାନ ଲାଭ କରି ପାରିଛି । ବାସ୍ତବରେ ବିଧୁବାବୁ ସମ୍ବଲପୁରୀ ଗୀତି କବିତାର ଜଣେ ସଫଳ ସ୍ରଷ୍ଟା ଓ ପଥପ୍ରଦର୍ଶକ ରୂପେ ଚିରସ୍ମରଣୀୟ ହୋଇ ରହିବେ ।

**ସ୍ୱର୍ଗତ ସତ୍ୟନାରାୟଣ ବହିଦାର**- କବି ଶ୍ରୀ ସତ୍ୟନାରାୟଣ ବହିଦାର ସମ୍ବଲପୁରୀ ଗୀତି କବିତାର ସଂକଳନ 'ଫୁଲଚାଙ୍ଗରୀ' 'ଘୁବୁକୁଡୁ' 'ଘବ ଘବୋ' 'ଟକିକ୍ ଚହିଁରା' "ଶ୍ରୀପଞ୍ଚମୀ' 'ଚଉତିସା' ପ୍ରଭୃତି ବ୍ୟତୀତ ସମ୍ବଲପୁରୀ ସଂସ୍କୃତି, ଐତିହ ଓ ଆଧାତ୍ମିକ ଜୀବନ ଉପରେ ଆଧାରିତ ଅନେକ ଗବେଷଣାତ୍ମକ ପ୍ରବନ୍ଧ ତଥା ସମ୍ବଲପୁରୀ ଭାଷାର ବ୍ୟାକରଣ ଓ ଅଭିଧାନ ପ୍ରଣୟନ କରି ଏ ଭାଷାକୁ ଷ୍ଟାଣ୍ଡାର୍ଡ ଭାଷାର ମର୍ଯ୍ୟାଦା ଦେବାକୁ ସଫଳ ଉଦ୍ୟମ କରିଛନ୍ତି । ଶ୍ରୀ ବହିଦାରଙ୍କ ପୂର୍ବରୁ ବିଭିନ୍ନ ଗୀତ ମାଧ୍ୟମରେ ସମ୍ବଲପୁରୀ ସାହିତ୍ୟର କେତେକ ମୌଳିକ ଆବଶ୍ୟକତାର ପରିତପୂର୍ତ୍ତି କରି ଶ୍ରୀ ବହିଦାର ହିଁ ପ୍ରଥମ ଏ ଭଶଷା ଓ ସାହିତ୍ୟର ନୂତନ ରୂପ ଉଦଭାବନ କଲେ । ସତ୍ୟନାରାୟଣ ବହିଦାରଙ୍କ ଜୀବିତାବସ୍ଥାରେ ପ୍ରଦତ୍ତ ସମ୍ବଲପୁର ବିଶ୍ୱବିଦ୍ୟାଳୟର ମାନପତ୍ରରେ ଯଥାର୍ଥରେ କୁହାଯାଇଛି- 'ଅନ୍ଧାର କୁନେ ପଡ଼ିଥିଲା ଗୁଟେ ଭାଷା । ତାକେ ସଜେଇ କରି ଆପନ୍ ଯେନ୍ ସାହିତ୍ୟ ଲେଖକୁଛନ୍ ଆଝିର ସେଥିର ଲାଗି ତାର ଜୟ ଜୟକାର ବାଜୁଛେ । ସମ୍ବଲପୁରୀ ଭାଷାର ବ୍ୟାକରନ୍ ଲେଖିକରି ଆପନ୍ ପହଲା ଚିହ୍ନେଇ ଦେଲେ ଇ ଭାଷାର ନିଜର୍ ରୂପ୍‌ଟା କାଣା । ସମ୍ବଲପୁରୀ ଭାଷାର ବଡ଼େଟେ ଅଭିଧାନ୍ ଲେଖିକରି ଆପନ୍ ଫେର ଦେଖେଇ ଦେଲେ ଇ ଭାଷାର ନିଜର ଗୁଡ଼େ ଠିଆଡ଼ ହେଇ ପାର୍‌ବାର ଟାକତ୍ ଅଛେ ।'

ସତ୍ୟନାରାୟଣ ବାବୁଙ୍କ ଭାଷା ଏକାନ୍ତ ଭାବେ ସାବଲୀଳ, ମଧୁର ଓ ସଙ୍ଗୀତ ଧର୍ମୀ ହୋଇଥିବାରୁ ପାଠକର ହୃଦୟରେ କବିତାନୁଭୂତି ତୀବ୍ର ଓ ମର୍ମସ୍ପର୍ଶୀ ହୋଇଥାଏ । ବିଶୁଦ୍ଧ ସମ୍ବଲପୁରୀ ଭାଷା କବିତାରେ ପ୍ରୟୋଗ କରି ସମ୍ବଲପୁରୀ ଭାଷାର ମୌଳିକତା ରକ୍ଷା କରିବା ତଥା ବୈଶିଷ୍ଟ୍ୟ ବୃଦ୍ଧି କରିବା କବିଙ୍କ ଲକ୍ଷ୍ୟ ହୋଇଥିବାରୁ ଆଧୁନିକ ସହର କଥିତ ସମ୍ବଲପୁରୀ ଭାଷାକୁ କବି ପ୍ରାଧାନ୍ୟ ଦେଇ ନାହାନ୍ତି । ଏଥିପାଇଁ ବହୁଗ୍ରାମୀଣ ସମ୍ବଲପୁରୀ ଭାଷା ଓ ଶବ୍ଦ ପ୍ରୟୋଚ କରି ଗ୍ରାମ୍ୟଲୋକଙ୍କ ଭାବବେଗକୁ ମୂର୍ତ୍ତିମନ୍ତ ଭାବ ପ୍ରକାଶ କରିବାରେ ସଫଳତା

ହାସଲ କରି ପାରିଛନ୍ତି । ଏହି ଭାଷାରେ ରହିଛି ଗ୍ରାମ୍ୟ ଜୀବନର ଅନ୍ତରଙ୍ଗତାବୋଧ, ଦୈନ୍ୟ ଓ ଅଭାବର ଚିତ୍ର ଅଫୁରନ୍ତ ଭାବାବେଗର ପ୍ରକାଶ । ତାଙ୍କର କୁଭଲା, ଜନ୍‌ହକେ ଟିପ୍‌ଲି ଗୁଲେର ଗୁଟି, ବନ୍ଧ ତଲେ ଭାଏଜିଉଟିଆ, ପଲ୍ଲୀରେ ନୂଆଖାଇ, ବଉଲଉଆଁସି, ସୂରୁଯ ଆଉ କର୍ଯ୍ୟାଁ ବଏଠା ପ୍ରଭୃତି କବିତା ଏହା ସ୍ପଷ୍ଟ ପ୍ରମାଣ । 'ଗୁନଗୁନାସନ ମହୁମାଛି କାଇଁଶ କୁହେନ', 'ସରଗ୍ ଧୁଲି', 'ଗମ ଗମାସି ପାଏନ୍ ଭୁରେନ', 'ଲଲ ବରଜର ସକାଲବେଳ ଫଟସି ପଦମଫୁଲ' ପ୍ରଭୃତି କବିଙ୍କ ସରଳ ସଙ୍ଗୀତ ପୂର୍ଣ୍ଣ ରସୋଚ୍ଛଦ କାବ୍ୟିକ ଅଭିବ୍ୟକ୍ତି । ପ୍ରାବନ୍ଧିକ ଶଶୀ ଭୁଷଣ ରାୟ୍ କବିଙ୍କ ଏହି ଭାଷା ସଂପର୍କରେ କହିଛନ୍ତି 'ବାସ୍ତବିକ କବିତାଗୁଡ଼ିକ ଅତି ପ୍ରାଞ୍ଜଳ ଲଳିତ ଓ ଉଚ୍ଛ୍ୱାସମୟ୍' । ଗୀତିକାର ଶ୍ରୀ ବହିଦାରଙ୍କ ଗୀତିକାରେ ଆଞ୍ଚଳିକ ଉପମା ଅଳଙ୍କାର ପ୍ରୟୋଗ ବିଶେଷ ଭାବରେ ଦେଖାଯାଏ । ଯଥା: 'ଗର୍‌ରା ବାଗିର ମୁହୁଁ କି' 'ଗୁରୁଭେଲି-କ୍ଷୀର ଭରା' ଇତ୍ୟାଦି ।

କବି ଶ୍ରୀ ବହିଦାରଙ୍କ ଆଦ୍ୟ କବିତାବଳୀରେ ତାରୁଣ୍ୟର ଉଦ୍ଦାମ ଆବେଗ, ପଲ୍ଲୀ ପ୍ରଭୃତି ପ୍ରୀତି, ପ୍ରେମବିହୀ ମିଳନ, ପ୍ରଭୃତିର ମାର୍ମିକ ଚିତ୍ର ଦେଖାଯାଏ । ପରବର୍ତ୍ତୀ କବିତାବଳୀରେ ଏହି ଆବେଗ ବୌଦ୍ଧିକ ଅନୁଚିନ୍ତା ଓ ଚେତନାରେ ବିଲୟ୍ ଲାଭ କରିଛି । 'ତୋର ଲାଗି ମୋର ଫୁଲ୍ ଫୁଟ୍‌ସି', 'ମୁଇଁ ଓ ତୁଇଁ', 'ଶଶୀ ଓ ଶଶୀମୁଖୀ', 'ବଉଦ ଏ ବ୍ରଜଧୂଳି ଚନ୍ଦ୍ରାଙ୍କିତ କରେ' 'ରେଡିଓ ସଙ୍ଗୀତ', ପଡ଼ିଆ ବାହାଲ ହାଟେ' 'ବଉଲ ଉଆଁସ' ପ୍ରଭୃତିରେ ଆବେଗଦୀପ୍ତ ହୃଦୟର ସ୍ୱତଃସ୍ଫୁର୍ତ୍ତିତ ପ୍ରକାଶ ପାଇଛି । 'ଘୁବକୁତ୍' ର 'ଶଶୀ ଓ ଶଶୀମୁଖୀ' କବିତାରେ 'ଜନ୍‌ହକେ ଟିପିଲି ଗୁଲେର ଗୁଟି ଜନହଟା ପତଲା କେନେ/ତୋର ଖୁସାଥ୍ ଟରାଟ ଫୁଲେ ଗାଲ୍‌ଟା ଟକନ୍ ଯେନେ' କିମ୍ବା 'ଫଗୁନ୍ ମାସର୍ ଆମ୍ ବଉଲେ ଝାଏଁରେ ଟଟେ ଝାଏଁ', 'କୁରେ ଭନ୍ ଭନା ଫୁଟ୍‌ସି ଦନା ଦନା' ପ୍ରଭୃତି ଅନେକ କବିତାର ପଂକ୍ତି ଭିତରେ କାବ୍ୟିକ ଆବେଦନ ତଥା ସୌନ୍ଦର୍ଯ୍ୟ ବୋଧ ପାଠକର ଚିତ୍ତ ଓ ହୃଦୟ୍‌କୁ ରସସିକ୍ତ କରେ । ପୁଣି 'ଧର୍‌ରେ ବୁଆ ଜଙ୍ଗଲ', ରହେବା କେ ନାଇଁ କୁରିଆ ଘର/ଖାଏବାକେ ନାଇଁ ପେଟ ଭର', 'ବର୍ଷାବାଆ' କବିତାରେ 'ଯେନ ଡାଲି ମୁଇଁ ଧଏଲେ ବଲେ ପଟକଲି । ଛିଡ଼ି ଯାଏସି', 'ଗରିବ ଦୁଃଖିର ଖସ୍‌ବା ଲୁହୁ ସର୍‌ଗୁଁ ସକାଲ ସକାଲ ବେଲେ' ଆଦିବହୁ କବିତାରେ ପଲ୍ଲୀର ଦାରିଦ୍ର, ଦୁଃଖ ଅନାଟନର ମାର୍ମିକ ଚିତ୍ର ଦେଖିବାକୁ ମିଳେ । 'ଟିକ୍ ଚହଁରା ସୁନାର ଦେବୀ' ଆମ୍ଭର ସମ୍ବଲପୁର', 'ମା' 'ମହାତ୍ମାଜୀଙ୍କର ଶତବାର୍ଷିକୀ ଉପଲକ୍ଷେ' 'ନୂଆଖାଇ' 'ଉଠରେ ପିଲା ଉଠ୍' ପ୍ରଭୃତି କବିତାରେ କବିମାନସର ଜାତୀୟପ୍ରୀତିର ପରିଚୟ୍ ମିଳେ । ସତ୍ୟନାରାୟଣ ବାବୁଙ୍କ କବିତାରେ ମାନବିକତା ଉଷ୍ମସ୍ପର୍ଶ ଯେପରି ମିଳେ ସେହିପରି ସାଂସ୍କୃତିକ ଜୀବନର ଐକ୍ୟ ଓ ସଂହତିର ଗଭୀର ଅନୁଭବ ସହିତ ଆଧ୍ୟାତ୍ମିକ ଜୀବନର ଗଭୀର ଉପଲବ୍ଧି ମଧ ଦେଖିବାକୁ ମିଳେ । କବି ଓ ଗାଳ୍ପିକ କାଳିନ୍ଦୀ ଚରଣ ପାଣିଗ୍ରାହୀ ଯଥାର୍ଥରେ

କହିଥିଲେ ' ଏତେ ସୁନ୍ଦର କବିତା ଏତେ କମ୍ ସମୟରେ ପଢ଼ି ଶେଷ କରି ଦେବାକୁ ଇଚ୍ଛା ହୁଏ ନାହିଁ ' ସେହିପରି ତାଙ୍କ କବିତାର ସମସ୍ତ ଆଲୋଚନା ଏତେ କମ୍ ସମୟ ଭିତରେ ସାରିବାକୁ କଷ୍ଟ ହୁଏ, ମନହୁଏ ନାହିଁ ।'

**ଶ୍ରୀପତି ପାଣିଗ୍ରାହୀ**- ସରଗ ମଲ୍ଲୀ (ପ୍ରଥମ ଭାଗ ପଚାଶଟି ଗୀତ) ସରଗ ମଲ୍ଲୀ (ଦ୍ୱିତୀୟ ଭାଗ ପଚାଶଟି ଗୀତ) ଏବଂ କଁଷି ଗଜରା (ବାଉନଟି ଗୀତ) ଗୀତିକାର ଶ୍ରୀପତି ପାଣିଗ୍ରାହୀଙ୍କର ସମ୍ବଲପୁରୀ ଅଞ୍ଚଳର ଲୋକଗୀତର ତିନୋଟି ଗୁଚ୍ଛ । ଆକାଶବାଣୀ ଦ୍ୱାରା ବିଭିନ୍ନ କଣ୍ଠଶିଳ୍ପୀଙ୍କ ଦ୍ୱାରା ପରିବେଷିତ ବିଭିନ୍ନ ସ୍ୱାଦର ଏହି ଗୀତ ସବୁରେ ଗୀତିକାର ଶ୍ରୀପାଣିଗ୍ରାହୀ ସାଧାରଣ ଭାବେ ବର୍ଣ୍ଣନାର ପରିପାଟୀ ତଥା ପ୍ରତ୍ୟେକ କ୍ଷେତ୍ରରୁ ବିଷୟ ବସ୍ତୁର ଚୟନ ଓ ସୃଷ୍ଟିରେ ଯେଉଁ ଅନବଦ୍ୟ ସୃଜନୀ ଶକ୍ତିର ପରିଚୟ ଦେଇଛନ୍ତି, ତାହା ପ୍ରଶଂସାହ ।

ମାନବୀୟ ପ୍ରକୃତି, ଏ ଅଞ୍ଚଳର ରୀତି, ସାଧାରଣ ଜୀବନ, ସଂସ୍କୃତି ପ୍ରଭୃତିର ନିଖୁଣ ବର୍ଣ୍ଣନା ତଥା ସାବଲୀଳ ଭାଷାରେ କାବ୍ୟିକ ଉପସ୍ଥାପନା ତାଙ୍କର ରଚନାକୁ ସଙ୍ଗୀତମୁଖର ଓ ରସଗ୍ରାହୀ କରିଛି । ବିଶେଷ ଭାବେ ସୂକ୍ଷ୍ମାତିସୂକ୍ଷ୍ମ ଅନୁଭବ, ଅଭିମାନ ତଥା ଆଚାର ବ୍ୟବହାରକୁ ସେ ଯେଉଁଭଳି ଭାବେ ଗୁରୁତ୍ୱ ସହକାରେ ଗୀତ ମାଧ୍ୟମରେ ସଂଯୋଜନା କରି ପାରିଛନ୍ତି, ତାହା ତାଙ୍କର ଶ୍ରେଷ୍ଠ କଳାତ୍ମକ ସୃଜନୀର ପରିଚୟ ଦିଏ । ଗୀତିକାର ଶ୍ରୀ ପାଣିଗ୍ରାହୀଙ୍କ ରଚନାରେ ଯେଉଁ ସହଜ ସରଳ ମଣିଷର ମନ ଗହନର କଥା ଦେଖିବାକୁ ମିଳେ, ତାହା ତାଙ୍କର ରଚନାକୁ ଶ୍ରୋତା ତଥା ପାଠକର ତୁଣ୍ଡରେ କେବଳ ଧ୍ୱନୀତ କରିଛି ନୁହେଁ ବରଂ ହୃଦୟରେ ରସର ପ୍ରାବଲ୍ୟ ଦେଇଛି ନିଜ ଅନୁସାରେ ସେ ଯଥାର୍ଥ- "ଇ ଭାଷା ଟା ବଡ଼ କଅଁଳ ବଙ୍ଗଲା କୁଶେର ବୁଟା, ବୁନ୍ଦୁ ଟିପି ଟକ୍ ରସ୍ ଭରିଛେ ଯେନ୍ତା ଖାଏଲେଁ ମିଠା ।

ମୋଟ ଉପରେ ଗୀତିକାର ଶ୍ରୀ ପାଣିଗ୍ରାହୀଙ୍କ ସୃଷ୍ଟିରେ ଅନୁଭବ, ପ୍ରକୃତି, ଅନୁଧ୍ୟାନ ତଥା ବିଷୟ ବ୍ୟକ୍ତିଗତ ହେଲେ ହେଁ, ଏହା ହୃଦୟ ସମୂହର ତନ୍ତ୍ରୀକୁ ସଫଳ ଭାବେ ଝଂକୃତ କରି ପାରିବାର, ପ୍ରତିଧ୍ୱନିତ କରି ପାରିବାର ସାମର୍ଥ ଓ ଗାମ୍ଭୀର୍ଯ୍ୟ ବଜାୟ ରଖିଛି ।

**ବିନୋଦ କୁମାର ପଶାୟତ**- 'କୟାଁ ବଏଠା' କବି ଶ୍ରୀ ବିନୋଦ କୁମାର ପଶାୟତଙ୍କ ବେତାର ପ୍ରଚାରିତ ପଚାଶଟି ସମ୍ବଲପୁରୀ ଗୀତିକବିତାର ଏକ ସଂକଳନ । ଏଥିରେ ସନ୍ନିବେଶିତ ଅଧିକାଂଶ ଗୀତ ବିଭିନ୍ନ ସମୟରେ ବିବିଧ ଭାରତୀ ଏବଂ ଦିଲ୍ଲୀ କେନ୍ଦ୍ରରୁ ମଧ୍ୟ ପ୍ରଚାରିତ ହୋଇସାରିଛି ।

'କୟାଁ ବଏଠା'ରେ କବି ପଶାୟତ ନିଜର ଏକ ସ୍ୱାତନ୍ତ୍ର୍ୟ ଦାବୀ କରନ୍ତି । ସେହି ସ୍ୱାତନ୍ତ୍ର୍ୟ- ତାଙ୍କର ରଚନା ଶୈଳୀ, ଭାବ ପ୍ରକାଶ ଏବଂ ଶବ୍ଦବିନ୍ୟାସ । ଏହି ସ୍ୱାତନ୍ତ୍ର୍ୟର ଏକ ଅନ୍ତରୀଣ ବୈଚିତ୍ର୍ୟ ତାଙ୍କର ପ୍ରତ୍ୟେକ ଗୀତରେ ସୁସ୍ପଷ୍ଟ । ବିଭିନ୍ନ ଗୀତରେ ଯୁକ୍ତି ଓ ଢ଼ଗର ମାର୍ଜିତ ପ୍ରୟୋଗ

ଏବଂ ବିହିତ ବିଷୟବସ୍ତୁର ଚୟନ ପଶ୍ଚିମାଞ୍ଚଳର ସଂସ୍କୃତିର ଏକ ଯଥା ଯଥ ଆଲୋଚ୍ୟ ବହନ କରିଛି । ନୂଆଖାଇ, ଫୁସପୁନି, ଭାଜିସାଗ ଚଟ୍‌କଲା, ଘିଚିଥା ପେଟେ, ଆଦି ଗୀତଗୁଡ଼ିକରେ ଏ ଅଞ୍ଚଳର ରୀତିନୀତି ଠାରୁ ହୃଦୟଗହନ ନିଛକ ବାସ୍ତବତା ପର୍ଯ୍ୟନ୍ତ ସରଳତାର ଏକ ଆବେଗ ମଧ୍ୟଦେଇ ଅବତାରଣା କରାଯାଇଛି । ସୀତା ହୁଅ ସାବତିରୀ ହୁଅ ଗୀତରେ ପ୍ରଚଳିତ ସମାଜରେ ରଙ୍ଗୀନ ମୁଖାର ଆବରଣ ତଳେ ରହି ଆଧୁନିକତାର ଦ୍ୱାହି ଦେଉଥିବା ସମାଜ ତଥା ବ୍ୟକ୍ତିକୁ କବିଙ୍କ ବ୍ୟଙ୍ଗ ଶାଣିତ ହୋଇଯାଇଛି । ଉଦା- ବେଲେ ଖାଏଲେ ପଖାଲ ମୁଠେ ପକା ହବଲି ସପନ ବେଗେ ତାର ଭଙ୍ଗ ଭଙ୍ଗା, ମୟୁର ଭେଲି କୁକ୍‌ରା ତିଆଁ କାଏଁ ଦିଶ୍‌ବା ସୁନ୍ଦର ଇତ୍ୟାଦି ବ୍ୟଙ୍ଗ ବେଶ୍ ଚମତ୍କାର ହୋଇ ପାରିଛି ।

ଏହିଭଳି ପ୍ରତ୍ୟେକ ରସ, ଭାବ, ବିଷୟ ଓ ବର୍ଣ୍ଣନାର ଅବତାରଣା ତଥା ସଂଯୋଜନାରେ କବି ଶ୍ରୀ ପଶାୟତ ଏକ ମୌଳିକ ସୃଜନୀଶକ୍ତିର ପରିଚୟ ଦେଇଛନ୍ତି । ଯେଉଁ ମୁଷ୍ଟିମେୟ ଗୀତିକାରଙ୍କ ନିରବଛିନ୍ନ ନିଷ୍ଠା ସାଧନା ଫଳରେ ଆଜି ସମ୍ବଲପୁରୀ ସଙ୍ଗୀତ ଗୁଡ଼ିକରେ ସାହିତ୍ୟିକ ମୂଲ୍ୟ ବୋଧର ଆରୋପଣ ହୋଇପାରିବା ସଙ୍ଗେ ସଙ୍ଗେ ଏହା ଏକ ଲୋକପ୍ରିୟ ହୋଇପାରିଛି, ତାଙ୍କ ମଧ୍ୟରେ କବି ଶ୍ରୀ ପଶାୟତ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ ।

**ଶ୍ରୀ ଗୋପବନ୍ଧୁ ରଥ**- ଗୋପବନ୍ଧୁ ରଥ ୧୯୭୬ ମସିହାରୁ ଆକାଶବାଣୀ ସମ୍ବଲପୁରର ଜଣେ ସ୍ୱୀକୃତପ୍ରାପ୍ତ ଗୀତିକାର, ସମ୍ବଲପୁରୀ ଉପଭାଷାର ଜଣେ ଗବେଷକ । ତାଙ୍କର 'ରସବତୀ- ରସ ବଲତା' ଛଅସ୍ତରୀଟି ସମ୍ବଲପୁରୀ ଗୀତିକାର ସଂକଳନ ଟିଏ । ଏଥିରୁ ଅଧିକାଂଶ ଗୀତିକାର ଭୋଳାନାଥ ଦର୍ଜୀ, ବିବେକାନନ୍ଦ ମିଶ୍ର, କାଳୀ ପ୍ରସାଦ ଷଡଙ୍ଗୀ, କୁମାରୀ ମୁକ୍ତା ପାତ୍ରୀ, ସନ୍ତୋଷ କୁମାର ମିଶ୍ର, କୁମାରୀ କମଳକୁମାରୀ ବେହେରା, ଯୋଗେଶ୍ୱର ପଣ୍ଡା ପ୍ରଭୃତି ଆକାଶବାଣୀ ଜୟପୁରର କଣ୍ଠଶିଳ୍ପୀମାନଙ୍କ ଦ୍ୱାରା ପ୍ରଚାରିତ ହୋଇଛି । 'ରସ୍‌ବତୀ ରସ୍ ବଲତା' ବାସ୍ତବିକ ରସୋଛଳ ତରୁଣର ଯୌବନ ସଂପର୍କିତ ଚିନ୍ତା ଓ ଚେତନାରେ ତରୁଣ ପ୍ରାଣର ସ୍ୱାଭାବିକ ବାର୍ତ୍ତାହିଁ ବହନ କରିଛି । ଗ୍ରାମ୍ୟ ସୁଲଭ ଅତି ଆଞ୍ଚଳିକ ଅର୍ଥବାହି ଶବ୍ଦ ସଂଯୋଜନାରେ ଗୀତ ଗାଇ ଚାଲିଛନ୍ତି ପ୍ରେମିକ ହୃଦୟର ଭାବକୁ ବ୍ୟକ୍ତ କରି କରି । ଏହା ବ୍ୟତୀତ ଦେଶାତ୍ମବୋଧକ ସଙ୍ଗୀତ, ରସରକେଲି, ଡ଼ାଲଖାଇ, ଗୀତ ଗୁଡ଼ିକ ନୂତନ ବିଷୟବସ୍ତୁକୁ ଉପଜୀବ୍ୟ କରି ସଂପୂର୍ଣ୍ଣ ନୂତନ ଭାବରେ ପରିବେଷଣ କରି କରି ଚାଲିଛନ୍ତି । ତାଙ୍କ ରଚନାରୁ କେତୋଟି ଉଦାହରଣ ଦିଆଯାଇପାରେ ।

୧) ଶୁଇଥିଲି ମୁଇଁ ଟାଙ୍ଗର୍ ଉପରେ ଯେ ଦେଲା ମୋତେ ଛିଇଁରେ ସେ ଟୁକଲ୍‌କେ ବିହା ହେମିନ ମୁଇଁ ଆରୁ କାହାକେ ନାଇଁ ବିହାହୁଏ ମୁଇଁ ।

୨) ତେନା ପିଟିପିଟି ଉଡ଼ିଗଲେ ଟିହା, ଗୁରୀ ନନୀ ମଝାର ଖୁଲି ଠିଆ,

୩)  ମୁଇଁ ଭରିଛେଁ ମୋର ବିହେ କଦମ୍ ଫୁଲର୍ ବାସନା, ଭଅଁରା କାଁଜେ ଯାଉଛେ ଉଡି,

ଯୁବ ସୁଲଭ ଉଛଳ ପ୍ରେମର ଚିତ୍ରଣ କଲାବେଳେ କବିଙ୍କ ଭାଷାରେ ଯେଉଁ ଲାଳିତ୍ୟ ଓ ସାବଲୀଳତା ପ୍ରକାଶ ପାଏ ତାହାହିଁ ତାଙ୍କର ବୈଶିଷ୍ଟ୍ୟ । ରାଧା, ବିଶାଖା, 'ଲଳିତାକୁ ନେଇ କିଶୋରୀ ସୁଲଭ ଚପଳତା ଭିତରେ ଖେଳ ଖେଳେଇଛନ୍ତି ଗୀତିକାର । ଯେମିତି

ରାଧା-ଖମ୍ ଖ୍ମାଲୋ ବାଇଗଡ଼ ମାଲୋ ମଝାର୍ ଖୁମ୍‌କେ ଛାଡ଼ିଦେ ଛାଡ଼ିଦେ ।

ଲଳିତା ବିଲ୍ ବିଲାଲେ ଆମୁଲ୍ କୁଲେ ନନୀର ଝୁଁଡ଼େ ଭରିଦେ, ଭରିଦେ !

ରାଧା-ହିର୍‌ରେ ହିଟା, ହିର୍‌ରେ ହିଟା !

ବିଶାଖା-ତୋର ଦାଦିକିନା ଝୁମ୍‌କା ପିଟା, ଝୁମ୍‌କା ପିଟା !

ପୁଣି କୃଷ୍ଣ- ଜାନ୍ ଜାନା ଜାନା ଜନ୍ କକି ଜାନା ଗୋପିୀଗଣ ଦୁଲେରେ

କୃଷ୍ଣ-କତିଆଁ ପୁତ୍‌ଲି ତିନ୍ ତିନ୍ ଅନା ! ଗୋଗୀଗଣ ଦୁଲେରେ !!'

ପ୍ରକୃତରେ ଗୋପବନ୍ଧୁ ରଥଙ୍କ ଭାଷା ଓ ସଙ୍ଗୀତ ରସରେ ବତୁରି ବତୁରି ରସସିକ୍ତ ଓ ସୁମିଷ୍ଟ ହୋଇପାରିଛି ଏ କଥା ଅଣ ସ୍ୱୀକାର୍ଯ୍ୟ । ତାଙ୍କର 'ରସବତୀ ରସ୍‌ବଲତା', ରସର ଏକ ମନୋଜ୍ଞ ଆଲେଖ୍ୟ ।

**ଶ୍ରୀ ନେତ୍ରାନନ୍ଦ ବାରିକ-** ଯୁବ ଗୀତିକାର ଶ୍ରୀ ନେତ୍ରାନନ୍ଦ ବାରିକ ଜଣେ ସଫଳ ଗୀତିକାର ଭାବରେ ଶ୍ରଦ୍ଧାର ଅଧିକାରୀ ହୋଇ ପାରିଛନ୍ତି । ଶ୍ରୀ ନେତ୍ରାନନ୍ଦ ବାରିକଙ୍କ 'ଟୁକରା କଁରେ ବାଁଦ୍' ଶହେ ଦୁଇଟି ସଙ୍ଗୀତର ଅପୂର୍ବ ସମ୍ଭାର ଶ୍ରୀ ଗୋପୀନାଥ ଓଝା, ସଂପାଦକ 'ଦୈବଜ୍ଞ' ଙ୍କ ଦ୍ୱାରା ପ୍ରକାଶିତ ହୋଇ ଆତ୍ମ ପ୍ରକାଶ କରିଛି । ସମ୍ବଲପୁରୀ ଭାଷାର ଖୁଣ୍ଟି ନାଣ୍ଟି ପ୍ରୟୋଗରେ ପଶ୍ଚିମ ଓଡ଼ିଶାର ସରଳ ଜୀବନର ନିଖୁଣ ଚିତ୍ର ପ୍ରଦାନ କରିବାରେ ସେ ସିଦ୍ଧହସ୍ତ । ବର୍ତ୍ତମାନ ପଶ୍ଚିମ ଓଡ଼ିଶାର ଜନଜୀବନର ସମସ୍ୟା ହେଉଛି ଶ୍ରୀ ବାରିକଙ୍କ ପ୍ରଧାନ ଉପଜୀବ୍ୟ ବିଷୟ । ଗ୍ରାମବାସୀମାନେ ଆସ୍ତେ ଆସ୍ତେ କିଭଳି ସହରାଭିମୁଖୀ ହେଉଛନ୍ତି ସେ ବିଷୟଟି ପ୍ରତିଫଳିତ ହୋଇଛି ତାଙ୍କ ଲେଖନୀରେ- "ରସର କେଲି ବୋ .... ଆସିଗଲା ଲମାବେନି ହଜିଗଲା ଖୁସା/ଗାଁ ଗଅଁଲି ଛାଡ଼ିଲୁକେ ସହରେ କଲେ ବସା/ଭୁଲିଗଲେ ମାଟି କାଟି ଭୁଲିଲେକୁଲର ବେଉସା, ମିଛେ ଲୁକେ ହଁସାରେ .... ନାଇଁ ଶୁଭେ ଦୁଲାହୁଲି ପଲ୍ଲାରୁଆର୍ ମଜା/କଲସୀ କରମାଁ ଗଲା ଦେ-ଦେବ୍ ତାର ପୂଜା/ହଳିଆ କୁଠିଆର୍ ଛେର୍-ଛେର୍ ଛେରା/ ଫୁସ୍‌ପୁନୀ ଖେଜା ନାଇଁ, ମିଲେ ଘଜାରେ/ଖେଦିଆନେ ଗାଁ ଆଜି ମଶାନ/ହେଲା କାଏଁ ରଜା... ରାଧାକୃଷ୍ଣଙ୍କ ବିରହ ମିଳନର କାହାଣୀକୁ ଉପଜୀବ୍ୟ କରି ଶ୍ରୀ ବାରିକ ରଚନା କରିଛନ୍ତି 'ସୁର୍‌ମାଳରକା' ଯଥା

ବାଜରେ ମହନ ବଂଶୀ ଝାର୍ ପତର ଉଠୁ ହଁସି/ଫୁଲେ ଫଲେ ବୁନ୍ଦା ବନ ମନ୍‌କେ ରସି ।" (ଶ୍ରୀ ବାରିକଙ୍କ ରଚିତ 'ରସକ୍ରୀଡ଼ା' ଦଣ୍ଡରୁ ଉଦ୍ଧୃତ) କୃଷ୍ଣ-ପୁଣି ଯଉ ରାଧେ ତୋର ଜୀବନ, ଆଜ କରି ପ୍ରୀତି ଦେଉଛ ଦାନ, ଚିଦେଲେ ମୂଲ୍ୟହୀନ..... ରାଧା-ଯେ ରାଧା ସେ କୃଷ୍ଣ ନାଇଁପରା ଭିନ, ସଛ ପାଳର ବାଳେ ରୂପେ ବନମ, ଗୁପ୍ପୁର୍ ଗୁଗ ବସି ବୁନ୍ ଦାବନ, ଧାରା କରିଛି ଭିଆନ, 'ରାଧା, କୃଷ୍ଣ'- ରାଧା କୃଷ୍ଣ ଗୁଟେ ଆମ୍ଭା ୨ ସଙ୍ଗାତରେ ରାସରେ ହେଲା ମିଳନ...। 'ଚୁଟ କୁଲା' ରଚନା କରିବାରେ ମଧ ସେ ନିଜ ପାରଦର୍ଶିତାର ପ୍ରମାଣ ଦେଇଛନ୍ତି । 'ଶୁନ ଶୁନ୍ ଟୁକେଲ୍ ପିଲା । ଶୁନ କହୁଁଛେ ଚୁଟ କୁଲା, ଚୁଟକୁଲାଟା, ଚଟନି ଏନ ଟା, ହଁସ୍‌ଲେ ଧର୍‌ବା ପେଟଫୁଲା..." ପ୍ରେମିକା ଚହୁବଚନ ପ୍ରେମିକାର ବିରହ ଜ୍ୱଳନରେ ଚିତ୍ର ତାଙ୍କର ଲୋକପ୍ରିୟ ସଙ୍ଗୀତ 'ଶୁଲ ଗଲେ ସତର'ରୁ ମିଳେ । 'ହାଏ, ହାଏ, ହାଏ ହାଏ ନାଗରରେ ଶୁଲଗଲେ ସତର/ ଗନୁଥିମି ଦିନବାର ଦେବ ଚିଠିପତର ଶ୍ରୀ ବାରିକ ବିବାହ ପରେ ଯେଉଁ କାନ୍ଦଣା ଝିଅ ମାନେ ମାଁ ବାପା, ବଡ଼ଭାଇଙ୍କ ଆଗରେ ଗାଇଥାନ୍ତି ତାକୁ ଅତି ସରଳ ଭାବରେ ପରିବେଷଣ କରିଛନ୍ତି । "ଛୁଆଦିନୁ" ମତେ କଲ କହକି ମାଁ ଗୋ ମୋର, ଶାଶ୍‌ଘରେ ହେବ ସଭେ ହାଲ୍‌କି ମାଁ ଗୋ ମୋର । ଯାତ୍‌ରା ଦେଖି ଆର୍ କାର୍ ସଙ୍ଗେ ଯିମି ଅଜା ଗୋ ମୋର ତିହାରେ ବାହାରେ ଘରେ ନର୍‌ମି ଅଜାଗୋ ମୋର.... ଇତ୍ୟାଦି । ଦ୍ୱାଇଁ ନିର୍ବଚନ' ପ୍ରସଙ୍ଗରେ ଝିଅପାଇଁ ବର ଠିକ୍ କଲାବେଳେ କିଏ କଣ ଦେଖନ୍ତି ସେ ବିଷୟରେ ଶ୍ରୀ ବାରିକ ଯାହା ଲେଖିଛନ୍ତି ତାହା ଉଦ୍ଧାର ନ କରି ରହିପାରିଲୁ ନାହିଁ । ମାଁ ନୁରସି ଥିଲା ଘର୍ ତୁଲି ଡ଼ାଙ୍ଗ୍‌ରେ ଥିତା, ଖାଇ ପି କରି ସୁଖେ ମୋର ଝିର୍ ଦିନ କାଲ ସରିତା, ବୁଆ ନୁରସି ପଢ଼ାପିଲା ପାଁଚ୍ ଲୁକେ ଲୋକ୍ ହେତା ଅମ୍‌କା ଲୁକର ହୁଏଁ ବଏଲେ ମୋର ନାଁଟା ପଡ଼ତା,X X X ଆର୍ ଶାଲୀ ନୁରୁଥିଲି ରସିଆ ଭେନେଇ କରୁଥିତା ଆଦରରେ ଅନୁଆଁ ଜାତିର ଝିକେ ଜାତିର ପୁସ ଲାଗିଛେ ଇ ସଂସାର । XXX ଟୁକୁଲି ନୁରସି ସୁନ୍ଦ୍‌ରା ବର, କିଛି ନାଇଁ ଥାଉ ପଛେ, କାଗର ଟୁଁଡାଁ ଆନି ଖିଆବା କପାଲେ ଯଦି ଅଛେ, ମନ୍ ଜାନିକରି ମନର୍ ଦେବତା ନନୀ ଯଦି ପାଇଛେ, ଗୁଟେ ଘାଟେ ପାଘନ୍ ପିପାସୁଇ ମଜାସିନା ରହିଛେ, ନନୀର ଗୁସିଁଆ ଥିଲେ କାଏଁଟା ହେବା । ବାକି ସବୁ ଗୁଲିମାରରେ ମନୁଆଁ...' ଆଶ୍ଚର୍ଯ୍ୟର କଥା ଏ ସଂକଳନର ପ୍ରତିଟି ଗୀତ ଅଲଗା ଅଲଗା ବିଷୟକୁ ନେଇ ରଚିତ । ଆବେଦନ ତଥା ଗୁଣ ଧର୍ମରେ ପ୍ରତ୍ୟେକେ ପ୍ରତ୍ୟେକଟିଠାରୁ ଭିନ୍ନ । ଶ୍ରୀ ବାରିକଙ୍କ ରଚନା ଭବିଷ୍ୟତରେ ନୂତନ ସ୍ୱାଦର ସମ୍ବଲପୁରୀ ସଙ୍ଗୀତର ଅପେକ୍ଷା ରଖେ ।

**ଶ୍ରୀ ପର୍ଶୁରାମ ଶତପଥୀ-** ଶ୍ରୀ ପର୍ଶୁରାମ ଶତପଥୀ ଜଣେ ଲୋକପ୍ରିୟ ଗୀତିକାର ଭାବରେ ସମ୍ବଲପୁର ରେଡ଼ିଓ ଷ୍ଟେସନ ମାଧ୍ୟମରେ ଯଥେଷ୍ଟ ଖ୍ୟାତି ଲାଭ କରିଛନ୍ତି । ତାଙ୍କର ଗୀତିକବିତାଗୁଡ଼ିକ ସଂକଳିତ ହୋଇ ୧୯୮୨ ରେ ନୂଆଖାଇ ବେଳକୁ 'ଗାଁ ମାଏଟ' ନାମରେ

ଆତ୍ମପ୍ରକାଶ କରିଛି । ଗୀତିକାରଙ୍କ ସଂସ୍କୃତି ଗୀତର ପରିଚୟ ତାଙ୍କର ସଙ୍ଗୀତଗୁଡ଼ିକରୁ ଜଣାପଡ଼େ । ପଶ୍ଚିମ ଓଡ଼ିଶାର ପର୍ବ-ପର୍ବାଣୀର ନିଛକ ବର୍ଣ୍ଣନା ତାଙ୍କର ଅନକେ କବିତାରେ ମିଳିଥାଏ । ପୌଷ-ପୂର୍ଣ୍ଣମୀ ଦିନ ପଶ୍ଚିମ ଓଡ଼ିଶାର ଗାଁ ଦାଣ୍ଡରେ ଛୋଟ ଛୋଟ ପିଲାମାନେ ଦଳ ଦଳ ହୋଇ ଘର ଘର ବୁଲି ଚାଉଳ ମାଗନ୍ତି । ବାଡି ଖଣ୍ଡେ ଖଣ୍ଡେ ଧରି ଦୁଆର ମୁହଁରେ ଠୁକ୍ ଠୁକ୍ କରି 'ଛେର୍ ଭାଇ ଛେର୍ ଛେରା' ଗୀତ ଗାଇ ଚାଉଳ ମାଗିବା ଓ ଗୋଟିଏ ଜାଗାରେ ରାନ୍ଧି ଖାଇ ମଜାମଜ୍‌ଲିସ୍ କରିବା ଏକ ସ୍ୱାଭାବିକ ଦୃଶ୍ୟ । ଶ୍ରୀ ଶତପଥୀଙ୍କ ଭାଷାରେ 'ଛେର୍ ଛେର୍ ଛେର୍ ଇ ଘରର୍ ବୁଢ଼ି କାହିଁ ଗଲା, କୁଣ୍ଡା ଘାଇ ଛେରେଇ ହେଲା ଟାଏଟ୍ କୁନେଁ ଲୁକି ଦେଲା ଛେର୍ ଛେର୍ ଛେର୍ ଛେରା । XXX ବଛର୍ ହେଲା ଭରନାଁ, ଗୁଡି କୁଠିଆର୍ ପାଉନା, ହିସାବ କିତାବ ସରବା, କାଲ୍‌ହିର୍ କବାର୍ ସର୍‌ବା, ଛେଲିଆ ଛାଡ୍‌ବା ସାଉକାରର୍, ଗାଏ, ବଲଦ୍, ଚରା ।" ଭାରତର ଅନ୍ନଦାତା କୃଷକ ପାଇଁ ଶ୍ରୀ ଶତପଥୀ ଅନେକ ଗୀତିକବିତା ସୃଷ୍ଟି କରିଛନ୍ତି । ଉଦାହରଣ ସ୍ୱରୂପ ' ଚଷା ଭାଏରେ, ଡେବିରି ହାତେଁ ନଙ୍ଗଲ କଏଁଟ, ଭୁକ୍‌ନି ହାତେ ବାଡ଼ି, ହଲିଆ ଗୀତେଁ ହଲ୍ ଘଉତୁ ମାଟିର୍ ସଙ୍ଗେ ଲଢ଼ି, ମୁଡ଼ରେ ପାଗିଡ଼ିକ ଭିଡ଼ୀ ବାବୁରେ, ଝାଲେଁ ଯାଉ ବୁଡ଼ୀ ପାଖେଁ ବେଁଟିଆ କାହାଲି ଟାଙ୍ଗର ଜମି ଦେସୁ ଦାଜି ଭାଏଗା, ଗାମଛା ଅଟେଁ ଭିଡି, ମୋର ଚଷା ଭାଏରେ ।" ପୁରାଣର ବିଷୟ ବସ୍ତୁକୁ ଅବଲମ୍ବନ କରି ପୌରାଣିକ ଚରିତ୍ରମାନଙ୍କୁ ଗ୍ରାମ୍ୟ ଲୋକଙ୍କ ବେଶପୋଷାକରେ ଉପସ୍ଥାପନ କରିବାରେ ଶ୍ରୀ ଶତପଥୀ ସିଦ୍ଧହସ୍ତ । ଶ୍ରୀ ଶତପଥୀ ଲେଖିଛନ୍ତି- 'ହରିହର ଦିନେଁ ପଡ଼ଲେ ଭେଟ, ହର ଯାଇ ଆଗେ ଛେକିଲେ ବାଟ, ପଚାରିଲେ ହରି ଅଛ କାଏଁ ବନେ, ନୁକୋ ବାକୋ ସଭେ ଅଛନ୍ ତ ସେନେଁ, କାନ୍ଦିଣ କଇଲେ ହରି, କାଣାଁ କହେମି ହର ମୋର୍ ଦୁଃଖର୍ ଖବର ଦୁଃଖ ତ ଗଲାନ ସରି । ଭାରିଜା ଗୁଟାକ ଏଖେଁ ତ ଟେରି ଚଣ୍ଡାଳୁଣୀ ଘରୁ ଆସେ କିନ୍ଦିରି ବଡ଼କା ଦଦା ଟେହ୍ନା ଦେଖିଲେଁ ରାଗ; ମଲ୍ ସହ ଏନ୍ତା ମାଏଝି ଛାଡ଼ିଦେ ଆଗ, ଇଆଡେ ବଡ଼ଖା ପିଲା, ଶୁନଁ ଆହେ ହର ମାର୍‌ବା ଏନ୍‌ତା ଶର ଦେଖି କରି ଘଡ଼ି ବେଲା ।"

ଗ୍ରାମ୍ୟ ଜୀବନରେ ଦୋଷ ଦୁର୍ବଳତା କବିଙ୍କର ଦୃଷ୍ଟିରେ ବାଦ ଯାଇନି । ଶାଣିତ ବ୍ୟଙ୍ଗ ମାଧମରେ ସେ ଆକ୍ରମଣ କରିଛନ୍ତି; ନୀତିଶିକ୍ଷା ଦେଇଛନ୍ତି ସମାଜଗଠନର ମହତ୍ ଉଦ୍ଦେଶ୍ୟ ନେଇ । "ମୁଲ୍ ମଏଧଁ ମାଏପୋ ନାଇଁ ପୋର ନାଁଟା ବଇରାଗି, ମୁଲ୍ ମଏଧୁଁ କନିଆଁ ନାଇଁ ଝିର ନାଆଁଟା ଘର୍‌ଜୁଗି । ଜନମ ମଏଧୁଁ ଆଏଖିଁଟେ ନାଇ ସେ ହସୁଛେ ଟେରାକେ, ଛୁଟା ଆଉଛେ ମାଡ଼କେ ଧାଇଁ ହାତେ ଧରି କରି ମେର୍‌ହାକେ, ଟଡ୍‌ଫିଟେ ନାଇ ମୁଡ୍ ଫଟେ ନାଇଁ ହେସି କେଡ଼େ ବଦ୍‌ରାଗି...ଇତ୍ୟାଦି । ଜୁଆଖେଳ ଓ ମଦ କିଭଳି ଗ୍ରାମ୍ୟ ତରୁଣୀର ସ୍ୱପ୍ନର ସଂସାରକୁ ଭାଙ୍ଗି ରୁଜି ଛାରଖାର କରିଦିଏ ତାର ଏକ ମର୍ମାନ୍ତିକ ଚିତ୍ର ଫୁଟି ଉଠିଛି ତାଙ୍କ କବିତାରେ ।" ଆଗୋ ଗୁଣ ସାଗର ସାଙ୍ଗଧର ମୁଇଁ ଯାଉଛେଁ ମାଆ ଘର୍‌କେ ପାଏଲ ତୁମର ଘର ତୁମ୍ କୁ

ଜୁହାର ଶହେ ଜୁହାର । ବିକି ଖାଏଲ ରୂପାର୍ ଦରବ ଗହନା କଲ ମାଲି ବିକି ଭାଂଜି ତୁମର ପେଟେଁ ଗଲା ମୁଦି ଚୁଡ଼ି, ବାପ୍ ଘରୁଁ ଯାହା ଅନିଥିଲି ମୁଇଁ କର୍‌ଲ ନାରଖାର ।"

ସରଳ ଗ୍ରାମ୍ୟ ତରୁଣୀର ମନଗହନରେ ଉଙ୍କିମାରେ ପ୍ରେମର ଉତ୍ତାଳ ତରଙ୍ଗର ସ୍ୱପ୍ନିଳ ବର୍ଣ୍ଣବିଭା । ପ୍ରେମିକ ପାଇଁ ଝୁରିମରେ କୁଣ୍ଠିତ ଯୌବନା ପଲ୍ଲୀବଧୁ । ଅନ୍ତର ତଳେ ଚାପି ହୋଇଯାଏ ହୃଦୟର କେତେ ମରମ ବେଦନା । କବି କହନ୍ତି- " ଯାରେ କୁଇଲି ଯା ଉଡ଼ଯା ଯାରେ ଉଡି ଉଡି, କହିଦେ ମନର୍ ରଜାକେ ଜୀବନ୍ ଯାଏ ଛାଡି । ଦିନ ରାଏତ୍ ମୋର ନାଇ ସରୁଛେ, ହେଡେଇ ହେଡେଇ ମନ ଝୁରୁଛେ କେନ୍ କଥାକେ ଗା ମନ୍ ନାଇନ, ସବୁତ ଦେଲିନ ଛାଡ଼ି । ଶ୍ରୀ ଶତପଥୀଙ୍କ ଦୃଷ୍ଟିରେ ପଶ୍ଚିମ ଓଡ଼ିଶାର ଗ୍ରାମ୍ୟ ଜୀବନର ସରଳତା, ସୁଖ ଦୁଃଖ ଜୀବନ ଜିଜ୍ଞାସର ସ୍ୱର, ପ୍ରେମ, ବିରହ, ହାସ୍ୟ ଅଶ୍ରୁ ସବୁକିଛି ଏକ ଜୀବନ୍ତ ଆବେଦନ ନେଇ ଉପସ୍ଥିତ ହୋଇଛି । ତାଙ୍କର 'ଗାଁ ମାଏଟ୍' ବାସ୍ତବିକ ପଶ୍ଚିମ ଓଡ଼ିଶାର ଜନଜୀବନର ଏକ ସୁନ୍ଦର ଆଲେଖ୍ୟ ।

**ଶ୍ରୀ ନରସିଂହ ପ୍ରସାଦ ଗୁରୁ**- ଜଣେ ବୟୋଜେଷ୍ଠ ଗୀତିକାର ଭାବରେ ଶ୍ରୀ ନରସିଂହ ଗୁରୁ ପଶ୍ଚିମ ଓଡ଼ିଶାର ଗାଁ ଗହଳିରେ ବେଶ ଆଦୃତ ହୋଇ ପାରିଛନ୍ତି । ତାଙ୍କର ଗୀତିକବିତା ଗୁଡ଼ିକ କୁଆଁ ତାରା (୧୯୬୫) କୁରେ ଫୁଲର ଝୁମ୍ପା' (୧୯୬୯) ଓ 'ଢ଼ୋଲ ମୁହୁରୀ' ତିନୋଟି ପୁସ୍ତକରେ ସଙ୍କଳିତ ହୋଇ ଆତ୍ମପ୍ରକାଶ କରିଛି । ଜଣେ ନିଷ୍ଠ ନୀରବ ସାଧକ ଭାବରେ ସେ ପଶ୍ଚିମ ଓଡ଼ିଶାର ସଂସ୍କୃତ ଉପରେ ଆଧାରିତ ଦୁଇ ଉପନ୍ୟାସ 'ତୀର୍ଥମାଟି' ଓ 'ମାଟି ଆକାଶ' ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଅଗଣିତ ଗୀଦି କବିତା ଗୁଡ଼ିକ ସୃଷ୍ଟି କରି ଚାଲିଛନ୍ତି ।

ବିଭିନ୍ନ ଋତୁର ସଂକ୍ରମଣ ପଲ୍ଲୀ ଜୀବନରେ କିଭଳି ଭାବରେ ହର୍ଷୋତ୍‌ଫୁଲ୍ଲ ପ୍ରାଣବାହାର ସଞ୍ଚାର ଘଟେ । ପ୍ରକୃତିପ୍ରାଣ ଗୀତିକାର ଶ୍ରୀ ଗୁରୁଙ୍କ ରଚନାରେ ତାର ଦୃଷ୍ଟାନ୍ତ ବିରଳ ନୁହେଁ । ଉଦା:- "ଚଇତ ମାସର ମହୁଆ ପବନ ଦିହିକରେ ସିରି ସିରି, ଝାର ପରବତ ମହକି ଯାଉଛେ ଫୁଲ ଫୁଲ କରେ କିରି କିରି ।" "ଚାଲ ସଙ୍ଗାତ ଯାତରା ଦେଖବ ଯିମା/ହରିଶଙ୍କରର ଝରନା ପାନି ପିଇମାରେ ।" "ଆ ଆରେ କଲିଆମେଘ୍ ଜର୍ ଜର୍ ଦେ ବରଷି/ମାଟିର ଛାତି ଦୁଲକେଇ ଦେ କରାପାଏନ୍ ଦେ ପରସି ।" (ଢ଼ୋଲମୁହୁରୀ) 'କୁରେ ଫୁଲର ଝୁମ୍ପା' ବହିରୁ ଏକ ଉଦାହରଣ ଦେଲେ ସପ୍ରାଙ୍ଗିକ ହେବ ନାହିଁ । "ଖଲ୍ ଖଲ୍ ଖଲ୍ ଖଲେଇ ଆଏସୁ ଯା ଯହାନବର/ କେତେ ଧରୁ ପାହାଡ ଡ଼ାଲୁ ହରବରେଇ ଆଏସୁ ଧାଇଁ । ଜୀବିକା ନିର୍ବାହ ଗ୍ରାମବାସୀଙ୍କ ସଂଘର୍ଷର ଘବରା ଜୀବନ ଭିତରେ ବି ଆନନ୍ଦର ଏକ ଅନ୍ତରୀଣ ପ୍ରବାହ ଛୁଟିଛି ଏ ଦିଗ ପ୍ରତି ଗୀତିକାରଙ୍କ ନିଘା । ଯଥା:- ସଭାଜନ ହୋ ଇ ପେଟ ଲାଗି ସଭେ ଯାକର୍ ବାଇ, କମେଇ କମେଇ ତହକେ ବିକଲ.ପେଟ ପୁରେ ନାଇଁ କି ଦୁଃଖ ସରେ ନାଇଁ ।" ସରଳ ଗ୍ରାମ୍ୟଜୀବନରେ ସହରୀ ସଭ୍ୟତାର

ଅବାଞ୍ଛିତ ସଂକ୍ରମଣରୁ କବି ଭୁଲି ପାରିନାହାନ୍ତି । ତେଣୁ ସେ ଲେଖିଛନ୍ତି- "ଗାଁ ଗଁଲିର୍ ବାବୁ ହୋ ଗାଁ ଗଁଲିର୍ ବାବୁ ଚକମକିଆ ଫେରବ ଦେଖି ନାଇ ମଲ୍ ମଲ୍ ହେବୁ ହୋ ନାଇ ଚୁଙ୍ଗ ଚୁଙ୍ଗ ହେବୁ ।

ସରଳ ତରଳ ଗ୍ରାମ୍ୟଜୀବନର ତରୁଣ ତରୁଣୀ ପ୍ରାଣରେ କେଉଁ ଉଛନ୍ନ ପ୍ରବାହ ଛୁଟେ ତାକୁ ଲୋକଭାଷାରେ ନିଚୋଳ ରୂପରେ ଫୁଟେଇଛନ୍ତି ଗୀତରେ ।

ଯଥା- 'ଯା ଯା କୁଇଲିରେ ଡ଼େଣା ଝାଡ଼ି ଉଡ଼ି ଯା ଯା, ମନର କଥା କେତେ ବୁଝାଇ କହୁଛେଁ, ସୁନାଗୁରୀର୍ ନିକେ ନେଇଯା' ହାଓରେ ଫୁଲ୍ ରସିଆରେ ପଦେ କହିଯାରେ ଆରୁ କାହିଁଅବ ନାଇଁଦେବୁ ମନ' 'ସୂରଜମୁଖୀ ଫୁଲ କହଁର ମନୁ ମତେ ନାଇଁ କର୍‌ବୁ ପର୍' ।

ଗୀତିକାର ଶ୍ରୀ ଗୁରୁ ଅନେକ ଭକ୍ତିମୂଳକ ଗୀତ ଭଜନ ଜଣାଣ ଆଦି ଲୋକଭାଷାର ବର୍ଣ୍ଣନା କରିଛନ୍ତି ଯାହା ଆକାଶବାଣୀ ମାଧ୍ୟମରେ ପଲ୍ଲୀ ଜୀବନରେ ଭକ୍ତିଚେତନାକୁ ଉଚ୍ଚକିତ କରିଥାଏ । ବିଶେଷତଃ ଶୁଦ୍ଧ ରାଗାନୁଗା ପ୍ରେମ ଭକ୍ତି ଧର୍ମ ବା କୃଷ୍ଣ କୈନ୍ଦ୍ରିକ ବୈଷ୍ଣବଧର୍ମ ପଶ୍ଚିମ ଓଡ଼ିଶାର ଜନଜୀବନରେ ଏକ ଆଲୋଡ଼ନ ସୃଷ୍ଟି କରିଆସିଛି । ଏ ଅଞ୍ଚଳର ଦଣ୍ଡନାଚ ବା ରାଧାକୃଷ୍ଣଲୀଳା ଘରେ ଘରେ ଲୋକପ୍ରିୟତା ଅର୍ଜନ କରିଛି । ଏଇ ରାଧାକୃଷ୍ଣଙ୍କର ପ୍ରେମ ବିରହ କାହାଣୀକୁ ଉପଜୀବ୍ୟ କରି କବି ଅନେକ ଗୀତ ରଚନା କରିଛନ୍ତି । ଯଥା- ' ମଥୁରା ଗଲା ଦିନୁରେ ଧନ ଖାଲି ପିଡ଼ିଛେ ବୃନ୍ଦାବନ' 'କଦମ୍ ଡାଲ୍ ଝାଏଁ କରୁଛେ ଯମୁନା ଖଁଡି ଖାଲି ଆଖିରେ ଲୁହେ ଗାଧି ଯାଏସନ୍ ଯେତେ ଗୁପରବାଲୀ' କୃଷ୍ଣଙ୍କର ମଥୁରା ଗମନରେ ବୃନ୍ଦାବନର କରୁଣ ବିରହ ଦୃଶ୍ୟର ମାର୍ମିକ ବର୍ଣ୍ଣନାରେ ଏ ପଦ ଗୁଡ଼ିକ ଜନିତ ରାଧିକା ପ୍ରାଣର ଉଦ୍‌ବେଗ ପରିପ୍ରକାଶ ଦେଖନ୍ତୁ- 'କାହ୍ନରେ ନାଇବଜା ଆର୍ ମହନ ମୁରଲୀ ରାଧା ରାଧା କଳି ନାଇଁ ବଜାରେ ମହନ ମୁରଲୀ, 'ଶ୍ୟାମ ମୁରଲୀଧର ଆରୁ ନାଇଁ ହେବୁ ଅଝଟରେ ତୋରଲାଗି ମନା ରୂପର ବାଟ ଘାଟ ।

ସଂସାରରେ ଇନ୍ଦ୍ରିୟ ପରବଶ ମଣିଷ ଜୀବନର ଦୟନୀୟ ଅବସ୍ଥା, ମଣିଷ ଜୀବନର ଅଳିକତା ଆଦି ତତ୍ତ୍ୱନିଷ୍ଠ ଦର୍ଶନ ମଧ୍ୟ ସରଳ ତରଳ ବୋଧଗମ୍ୟ ଭାଷାରେ କବି ଲେଖନୀରେ ଫୁଟି ଉଠିଛି । ଉଦାହରଣ:- 'ଇ ସଂସାରେ ସବୁ ମିଛ୍ ଭାଇ ହରି ନାମ ଏକା ସାର୍ । ଶେଷରେ ଇଶ୍ୱରଙ୍କ ପ୍ରତି ସଂପୂର୍ଣ୍ଣ ଆତ୍ମା ସମର୍ପଣହିଁ ଜୀବନର ଏକଇ ପନ୍ଥା । ଆଧିଭୌତିକ ତାର ଏଇ ଦର୍ଶନକୁ କବି ଲେଖିଛନ୍ତି- ନୀଲମନି ନୀଲରତା/ତୋର ପାଦେ ଗୁହାରି ଧନ ତୋର ପାଦେ ଶରନ' । ଗ୍ରାମଦେବତୀ ପ୍ରତି ସରଳ ପଲ୍ଲୀବାସୀଙ୍କ ଆଗାଡ଼ ବିଶ୍ୱାସକୁ ରୂପଦେଇ କବି ଲେଖିଛନ୍ତି- 'ଗରାମପତି ଗୋ ଗାଁର ଗୋ ଗାଁର ଛେଦ୍‌କୁଡ଼ରେ ରହିଛୁ ତୁହି ।' ଇତ୍ୟାଦି ତାଙ୍କର ଅଗଣୀତ ସଙ୍ଗୀତ ପଶ୍ଚିମ ଓଡ଼ିଶାର ସରଳ ପଲ୍ଲୀ ପ୍ରାଣର ଅକୁହା ଭାଷାକୁ ଫୁଟାଇ ପାରିଛି ଏଥିରେ

ସନ୍ଦେହ ନାହିଁ ।

ପଶ୍ଚିମ ଓଡ଼ିଶାର ସବୁଜ ଅରଣ୍ୟାନି, ବିସ୍ତୃତ ପର୍ବତମାଳା, ଉନ୍ନତ ଯୌବନା ନିର୍ଝରିଣୀ ଶାନ୍ତ ସରଳ ଜନଜୀବନକୁ ମିଶେଇ ଦେଲେ ଜୀବନବୀଣା ଯେଉଁ ତନ୍ତ୍ରୀ ସ୍ପର୍ଶ କାତର ମୂର୍ଚ୍ଛନା ତୋଳେ ତାହାହିଁ ପ୍ରକୃତି କୋଲରେ ଜୀଇଁ ରହିଥିବା ମଣିଷ-ପ୍ରାଣର ଦୁଃଖସୁଖ, ହର୍ଷବିଷାଦ, ସାଫଲ୍ୟ-ବୈଫୁଲ୍ୟର ନିରୋଳ ପ୍ରକାଶ । ସରଳତାର ଛାଞ୍ଚରେ ଜଟା ମଣିଷର ଦୃଷ୍ଟିରେ ପ୍ରେମ, ବିବାହ, ଅଭିମାନ ତାର ଦୈନନ୍ଦିନ ଚଳଣୀର ଗାଥାକୁ ଲୋକଭାଷାର ସୂତ୍ରରେ ଯୋଡି ଉପସ୍ଥାପିତ କରିବା ପାଇଁ ପଶ୍ଚିମ ଓଡ଼ିଶାର ଆଗମନ ଗୀତିକାର ଗୀତିକବିତା ସୃଷ୍ଟି କରିଚାଲିଛନ୍ତି । ନିର୍ଝରଣୀର କଳକଳ ଗତି ଯେମିତି ଚିରକାଳ, ସଙ୍ଗୀତର ଆବେଗ, ଆବେଦନ ସେମିତି ଚିରନ୍ତନ । ପଶ୍ଚିମ ଓଡ଼ିଶାର ଜନଜୀବନ ସଂସ୍କୃତିର ଅମର ଆଲେଖ୍ୟ ସମ୍ବଲପୁରୀ ଗୀତିକବିତାର ପ୍ରତି ଛତ୍ରେ ଫୁଟି ଉଠିଛି ।



# ବୀର ସୁରେନ୍ଦ୍ର ସାଏ ଓ ସ୍ୱାଧୀନତା ଆନ୍ଦୋଳନ

ନବୀନ କୁମାର ସାହୁ

ଭାରତରୁ ଇଂରେଜ ଶାସନ ଲୋପ କରିବା ନିମନ୍ତେ ୧୮୫୭ ସାଲରେ ଯେଉଁ ସଶସ୍ତ୍ର ବିଦ୍ରୋହ ହୋଇଥିଲା ତହିଁର ନେତୃତ୍ୱ ନେଇଥିଲେ ସମ୍ରାଟ ଦ୍ୱିତୀୟ ବାହାଦୁର ଶାହ, ନାନା ସାହେବ, ରାଣୀ ଲକ୍ଷ୍ମୀବାଇ ଓ ତାନ୍ତିଆ ଟୋପେ । ସେହି ବିଦ୍ରୋହରେ ବିହାରର ଜଗଦୀଶପୁର ଜମିଦାର କନୱାର ସିଂହ, ବରେଲିର ଖାଁ ବାହାଦୁର ଖା ଏବଂ ଓଡ଼ିଶାର ସୁରେନ୍ଦ୍ର ସାଏ ଜନ୍ମଭୂମି ନିମନ୍ତେ ସର୍ବସ୍ୱ ତ୍ୟାଗକରି ଯେଉଁ ଅସାଧାରଣ ବୀରତ୍ୱ ପ୍ରଦର୍ଶନ କରିଥିଲେ ଏବଂ ଶେଷରେ ଶହୀଦ୍ ହୋଇଥିଲେ ସେଥିପାଇଁ ସେ ଜାତିର ଚିର ସ୍ମରଣୀୟ ।

ସୁରେନ୍ଦ୍ର ସାଏଙ୍କର ବିଦ୍ରୋହକୁ ସଂକୀର୍ଣ୍ଣ ଦୃଷ୍ଟିରେ ବିଚାର କରି କେତେକେ ମତ ପ୍ରଦାନ କରନ୍ତି ଯେ ସେ ସମ୍ବଲପୁର ରାଜସିଂହାସନ ଲାଭ କରିବା ଆଶାରେ କେବଳ ନିଜ ସ୍ୱାର୍ଥ ସାଧନ ଉଦ୍ଦେଶ୍ୟରେ ବିଦ୍ରୋହ କରିଥିଲେ । ଇଂରେଜ ଶାସନ ବିଲୋପ ତାଙ୍କ ବିଦ୍ରୋହର ଲକ୍ଷ୍ୟ ନଥିଲା । ସେହି ସମାଲୋଚନକମାନେ ସୁରେନ୍ଦ୍ର ସାଏଙ୍କର ଐତିହାସିକ ବିଦ୍ରୋହରେ ଜାତୀୟତା ଭାବରେ ପ୍ରେରଣା ଅପେକ୍ଷା ଆଞ୍ଚଳିକ ପ୍ରୀତିର ଅଧିକ ପ୍ରାଧାନ୍ୟ ଥିବା ଯୁକ୍ତି ଦର୍ଶାଇଥାନ୍ତି । ମାତ୍ର ସେହି ଧରଣର ମତବାଦ ଊନବିଂଶ ଶତାବ୍ଦୀର ବାସ୍ତବ ପରିବେଶ ଓ ଭାବଧାରା ଉପରେ ପର୍ଯ୍ୟବେସିତ ନହୋଇ ଆଧୁନିକ ଜାତୀୟତା ବାଦର ଧାରଣା ଦ୍ୱାରା ପ୍ରଭାବିତ ହୋଇଥିବା ଜଣାପଡ଼େ । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭାରତ ହିମାଚଳଠାରୁ କୁମାରୀକା ଯାଏ ଏକ ଜାତୀୟତା ଭାବଦ୍ୱାରା ଉଦବୁଦ୍ଧ ହୋଇ ପାରି ନଥିଲା । ସେତେବେଳେ ଓଡ଼ିଆ, ବଙ୍ଗାଳୀ, ମହାରାଷ୍ଟ୍ରୀ, ପଞ୍ଜାବୀ, ହିନ୍ଦୁସ୍ଥାନୀ, ତାମିଲ, କର୍ଣ୍ଣାଟୀ ଆଦି ବିଭିନ୍ନ ଜାତିର ଲୋକ ଥିଲେ । ମାତ୍ର କେହି ଭାରତୀୟ ନଥିଲେ । ସେମାନେ ସମସ୍ତେ ଯେ ଏକ ଭାରତୀୟ ଜାତି ସେହି ଐକ୍ୟ ଭାବ ସେ କାଳରେ ବିକାଶ ଲାଭ କରିପାରି ନଥିଲା । ସୁତରାଂ ୧୮୫୭ ସାଲର ବିଦ୍ରୋହରେ ଯେଉଁମାନେ ଅସ୍ତ୍ରଧାରଣା କରିଥିଲେ ଅଥବା ନେତୃତ୍ୱ ନେଇଥିଲେ ସେମାନେ ଯେ ସମଗ୍ର ଭାରତ ଜାତି ପାଇଁ ଲଢୁଥିଲେ ସେହି ଧାରଣା ବା ପ୍ରେରଣା ସେତେବେଳେ ନଥିଲା । ନାନା ସାହେବ, ତାଙ୍କର

ପିତା ଦ୍ୱିତୀୟ ବାଜିରାଓ ପାଉଥିବା ପେନସନରୁ ବର୍ଜିତ ହେବା ହେତୁ ବିଦ୍ରୋହରେ ଯୋଗଦାନ କରି ନେତୃତ୍ୱ ନେଇଥିଲେ । ତାଙ୍କର ଏଜେଣ୍ଟ ଆଦିମ୍ ଉଲ୍ଲା ଖାଁ ବିଲାତକୁ ଯାଇ କୋମ୍ପାନୀଙ୍କର ଡ଼ିରେକ୍ଟର ମାନଙ୍କୁ ପେନସନ୍ ପ୍ରଶ୍ନର ପୁନର୍ବିଚାର ପାଇଁ ପ୍ରବର୍ତ୍ତାଇ ଥିଲେ । ତାଙ୍କର ସେହି ଅନୁରୋଧ ପ୍ରତ୍ୟାଖ୍ୟାନ କରାଯିବା ପରେ ନାନା ସାହେବ ବିଦ୍ରୋହରେ ଝାସ ଦେଇଥିଲେ । ଏପରିକି ୧୮୫୭ ସାଲରେ ବିଦ୍ରୋହ ଲାଗିଯିବା ପରେ ସୁଦ୍ଧା ସେ ଘୋଷଣା କରିଥିଲେ ଯେ ଯଦି କୋମ୍ପାନୀ ତାଙ୍କୁ ନିଜ ପିତାଙ୍କର ପେନ୍‌ସନ୍ ପ୍ରଦାନ କରିବାରେ ସମ୍ମତ ହୁଅନ୍ତି ତେବେ ସେ ବିଦ୍ରୋହର ମୂଳରେ ଯେ ସର୍ବଭାରତୀୟ ଜାତୀୟତା ଭାବ ରହିଥିଲା ସେପରି ଭାବିବା ନିଶ୍ଚିତ ଭାବରେ ଭ୍ରାନ୍ତି ଜନକ । ସେ ବିଦ୍ରୋହ କରିଥିଲେ କେବଳ ଝାନ୍ସି ନିମନ୍ତେ ଏବଂ ଝାନ୍ସିର ଉଦ୍ଧାର ନିମନ୍ତେ ହିଁ ଯୁଦ୍ଧ କରି ସେ ମୃତ୍ୟୁ ବରଣ କରିଥିଲେ । ଶେଷ ପର୍ଯ୍ୟନ୍ତ ରାଣୀଙ୍କର ଡାକରାଥିଲା "ମେରେ ଝାନ୍ସି ଦେ'ଙ୍ଗୀ ନହିଁ ।" ଇନ୍ଦ୍ରିୟାସକ୍ତ,ଦୁର୍ବଳ ମନା ଅଯୋଧ୍ୟାର ନବାବ ଓ୍ୱାଜିଦ୍ ଅଲି ଶାହଙ୍କୁ ସର୍ବଭାରତୀୟ ନେତା ରୂପେ ସ୍ଥାନ ଦେବାରେ ଆଦୌ ଯଥାର୍ଥତା ନାହିଁ । ଏପରିକି ଦିଲ୍ଲୀର ନାମମାତ୍ର ସମ୍ରାଟ ଦ୍ୱିତୀୟ ବାହାଦୂର ଶାହ କାହିଁକି ବିଦ୍ରୋହରେ ଯୋଗଦେଲେ ତାହା ସେ ନିଜେ ଜାଣି ନାହାନ୍ତି ବୋଲି ତାଙ୍କର ବିଚାର କାଳରେ ସ୍ୱୀକାର କରିଥିଲେ । ସେ ବିଦ୍ରୋହ କରିଥିବା ହେତୁ ନିଜେ ଯେପରି ବିସ୍ମୟ ପ୍ରକାଶ କରିଥିଲେ କୋମ୍ପାନୀ ସରକାର ମଧ୍ୟ ସେହିପରି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ୧୮୫୭ ସାଲରେ ବିରାଟ ବିଦ୍ରୋହ ଅତି ଗୁରତର ଆକାର ଧାରଣ କରିଥିବା ବେଳେ ମଧ୍ୟ ଭାରତୀୟ ଜନସାଧାରଣ ଅଧିକାଂଶ ତାହାପ୍ରତି ଉଦାସୀନ ଥିବା ଜଣାପଡ଼େ । ତାହା ହେଲେ ହେଁ ସେହି ଐତିହାସିକ ବିଦ୍ରୋହକୁ ଜାତୀୟ ବିଦ୍ରୋହ ବୋଲି କହିବା ଏବଂ ସେହି ବିଦ୍ରୋହର ନେତୃଗଣଙ୍କୁ ଜାତୀୟ ନେତା ରୂପେ ପ୍ରତିପାଦନ କରିବାର ବିଶେଷ କାରଣ ରହିଅଛି । ସେହି ବିଦ୍ରୋହ ଭାରତରେ ଇଂରେଜ ସରକାର ବିରୁଦ୍ଧରେ ହିଁ ପରିଚାଳିତ ହୋଇଥିଲା ଏବଂ ତାହାର ଲକ୍ଷ୍ୟ ଥିଲା ଇଂରେଜ ଶାସନ ସଂପୂର୍ଣ୍ଣ ରୂପେ ଲୋପ କରିଦେବା । କେବଳ ସେହି କାରଣରୁ ହିଁ ତାହାକୁ ଜାତୀୟ ବିଦ୍ରୋହ ବୋଲି କୁହାଯାଇ ପାରେ । ତାହାକୁ କେବଳ ଏକ ଅସନ୍ତୁଷ୍ଟ ସିପାହୀ ଗୋଷ୍ଠୀର ବିଦ୍ରୋହ ବୋଲି କହିବା ଆଦୌ ଯୁକ୍ତି ସଙ୍ଗତ ନୁହେଁ । କାରଣ ସେହି ବିଦ୍ରୋହରେ ଯେଉଁ ସାଧାରଣ ଜନତା ଯୋଗଦାନ କରିଥିଲେ, ସେମାନଙ୍କର ସଂଖ୍ୟା ବିଦ୍ରୋହୀ ସିପାହୀଙ୍କ ଠାରୁ ବହୁ ଗୁଣରେ ବେଶୀ । ବିଦ୍ରୋହ ଶାନ୍ତ ହେବାପରେ ହଜାର ହଜାର ନାଗରିକଙ୍କର ବିଚାର କରାଯାଇ ଦଣ୍ଡ ଦିଆ ଯାଇଥିଲା । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ସମ୍ବଲପୁରରେ ଜଣେ ସୁଦ୍ଧା ଇଂରେଜ ସିପାହୀ ବିଦ୍ରୋହରେ ଯୋଗଦାନ କରିନଥିଲେ । ମାତ୍ର ଅଗଣିତ ନାଗରିକ ଅସ୍ତ୍ର ଧାରଣ କରିଥିଲେ ସେଠାରୁ ଇଂରେଜଙ୍କର ଆଧିପତ୍ୟ ଲୋପ କରିବା ଉଦ୍ଦେଶ୍ୟରେ । ପୃଥିବୀ ଇତିହାସରେ ଯେଉଁ

ସବୁ ଦେଶରେ ସ୍ୱାଧୀନତା ସମର ହୋଇଛି ସେଠାରେ ଜନସାଧାରଣ ସମସ୍ତେ ସେ ବିଦ୍ରୋହରେ ସକ୍ରିୟ ଅଂଶ ଗ୍ରହଣ କରିଅଛନ୍ତି ତାହା ନୁହେଁ। ସବୁ କ୍ଷେତ୍ରରେ ଅଗ୍ରଣୀ ହୋଇ ଅଛନ୍ତି କେବଳ ମୁଷ୍ଟିମେୟ ଯୋଦ୍ଧା ଏବଂ ସେମାନଙ୍କର ବିଦ୍ରୋହକୁ ହିଁ ଜାତୀୟ ବିଦ୍ରୋହ ରୂପେ ଗ୍ରହଣ କରାଯାଇଅଛି। ଫରାସୀ ରାଷ୍ଟ୍ର ବିପ୍ଳବ, ଆମେରିକାର ସ୍ୱାଧୀନତା ସମର କିମ୍ବା ରୁଷିଆର ରାଷ୍ଟ୍ର ବିପ୍ଳବ ସର୍ବତ୍ର ବିଦ୍ରୋହ କରି ଅଛନ୍ତି ଦେଶର ଅଳ୍ପ ସଂଖ୍ୟକ ସୈନିକ ଓ ଦେଶପ୍ରେମୀ ନାଗରିକ। ମାତ୍ର ସେସବୁ ବିପ୍ଳବ କିମ୍ବା ଜାତିର ସ୍ୱାଧୀନତା ସମର ରୂପେ ଇତିହାସରେ ସ୍ୱୀକୃତି। ଭାରତର ୧୮୫୭ ସାଲର ବିଦ୍ରୋହରେ ସମସ୍ତ ଭାରତବାସୀ ଯୋଗଦାନ କରି ନାହାନ୍ତି ତେଣୁ ତାହା ଜାତୀୟ ବିଦ୍ରୋହ ନୁହେଁ ବୋଲି ଯୁକ୍ତି କରିବା ଆଦୌ ସମୀଚୀନ ନୁହେଁ। ଇଂରେଜ ସରକାରଙ୍କର ସାମରିକ ଶକ୍ତି ଓ କୌଶଳ ଯୋଗୁଁ ଉକ୍ତ ବିପ୍ଳବତ ବିଫଳ ହୋଇଥିଲେ ସୁଦ୍ଧା ତାହା ଯେ ଭାରତରୁ ଇଂରେଜ ଶାସନ ଲୋପ କରିବା ନିମନ୍ତେ, ଭାରତୀୟ ମାନଙ୍କର ପ୍ରଥମ ସଶସ୍ତ୍ର ବିଦ୍ରୋହ ତହିଁରେ ସନ୍ଦେହର ଅବକାଶ ନାହିଁ।

ସୁରେନ୍ଦ୍ର ସାଏ ସେହି ଐତିହାସିକ ବିଦ୍ରୋହର ନେତୃତ୍ୱ ନେଇଥିଲେ ପଶ୍ଚିମ ଓଡ଼ିଶାରେ। ସେ ଥିଲେ ଇଂରେଜ ସରକାରଙ୍କର ଆଜୀବନ ଶତ୍ରୁ। ୧୮୫୭ ସାଲ ବିଦ୍ରୋହର ବହୁ ପୂର୍ବରୁ ସେ ଇଂରେଜ ଶାସନ ହଟାଇବା ନିମନ୍ତେ ଅସ୍ତ୍ର ଧାରଣ କରି ଅକଥନୀୟ ଦୁଃଖ ବରଣ କରିଥିଲେ। ସମ୍ବଲପୁରରେ ଇଂରେଜଙ୍କର ଶଠତା ଓ କୂଟନୀତି ସେ ଉତ୍ତମ ରୂପେ ଉପଲବ୍ଧି କରିଥିଲେ ଏବଂ ତାହା ବିରୁଦ୍ଧରେ ହିଁ ସେ ଆଜୀବନ ସଂଗ୍ରାମ କରିଥିଲେ।

୧୮୫୭ ସାଲରେ ତୃତୀୟ ମରହଟ୍ଟା ଯୁଦ୍ଧରେ ବିଜୟୀ ହୋଇ ଇଂରେଜମାନେ ସମ୍ବଲପୁର ରାଜା ଜୟନ୍ତ ସିଂହ ଓ ତାଙ୍କର ପୁତ୍ର ମହାରାଜା ସାଏଙ୍କୁ ମରହଟ୍ଟାଙ୍କର ଚାନ୍ଦା ଦୁର୍ଗରୁ ମୁକ୍ତକରି ଆଣିଲେ। ବୃଦ୍ଧ ଜୟନ୍ତ ସିଂହ ସମ୍ବଲପୁର ସିଂହାସନ ଫେରି ପାଇଥିଲେ ଇଂରେଜଙ୍କ ଦୟାରୁ। ୧୮୧୮ ସାଲରେ ଜୟନ୍ତ ସିଂହଙ୍କର ମୃତ୍ୟୁ ହେବା ସମୟରେ ମହାରାଜ ସାଏ ପ୍ରାପ୍ତ ବୟସ୍କ ହୋଇ ନଥିବାରୁ ସମ୍ବଲପୁରର ଶାସନ ଇଂରେଜ ହାତରେ ନ୍ୟସ୍ତ ହୋଇଥିଲା। ୧୮୨୦ ସାଲରେ ମହାରାଜ ସାଏ ସମ୍ବଲପୁରର ରାଜଗାଦି ଲାଭ କଲେ। ମାତ୍ର ସେ ପୂର୍ବ ରାଜାମାନଙ୍କ ପରି ନିଜକୁ ଅଠରଗଡ଼ର ଅଧିପତି ରୂପେ ଘୋଷଣା କରିପାରି ନଥିଲେ। ସମ୍ବଲପୁର ଅଧୀନରେ ଥିବା ଗଡ଼ଜାତ ରାଜ୍ୟମାନଙ୍କୁ ଇଂରେଜ ସରକାର ୧୮୨୧ ସାଲରେ ପୃଥକ୍ ପୃଥକ୍ ସନନ୍ଦ ପ୍ରଦାନ କଲେ ଏବଂ ସମ୍ବଲପୁର ସହିତ ସେ ଗୁଡ଼ିକର ରାଜନୈତିକ ସମ୍ପର୍କ ଓ ପରଂପରା ବିଚ୍ଛିନ୍ନ କରି ଦେଇଥିଲେ। ସମ୍ବଲପୁରରେ ଜଣେ ବ୍ରିଟିଶ୍ ଏଜେଣ୍ଟ ଅବସ୍ଥାପିତ ହୋଇ ରାଜ୍ୟର ରାଜସ୍ୱ ଆଦାୟ ଓ ସୈନ୍ୟ ନିୟନ୍ତ୍ରଣ ଦାୟିତ୍ୱ ତୁଲାଇଲେ। ମହାରାଜ ସାଏ ସେହି ଏଜେଣ୍ଟଙ୍କ ହସ୍ତରେ କ୍ରୀଡ଼ନକ

ହୋଇ ରହିଲେ । ୧୮୨୭ ସାଲରେ ଅପୁତ୍ରିକ ହୋଇ ସେ ମୃତ୍ୟୁ ମୁଖରେ ପଡ଼ିଲେ । ତାହାପରେ ତାଙ୍କର ଉତ୍ତରାଧିକାରୀ କିଏ ହେବ ସେହି ପ୍ରଶ୍ନ ଏକ ବିଶେଷ ସମସ୍ୟା ସୃଷ୍ଟି କରିଥିଲା ।

ମହାରାଜ ସାଏଙ୍କ ପରେ ସମ୍ବଲପୁର ରାଜଗାଦିର ନ୍ୟାୟ ସଂଗତ ଉତ୍ତରାଧିକାରୀ ଥିଲେ ଖିଣ୍ଡାର ଧରମ ସିଂହଙ୍କର ଜ୍ୟେଷ୍ଠ ପୁତ୍ର ସୁରେନ୍ଦ୍ର ସାଏ । ମାତ୍ର ସେ ଯେ ମହାରାଜା ସାଏଙ୍କ ଭଳି ଇଂରେଜଙ୍କର କ୍ରୀଡ଼ନକ ହୋଇ ରହିବେ ନାହିଁ ତାହା ବ୍ରିଟିଶ୍ ଶାସକମାନଙ୍କୁ ବେଶ୍ ଜଣାଥିଲା । ମହାରାଜା ସାଏଙ୍କର ମୃତ୍ୟୁ ସମ୍ବାଦ ପ୍ରାୟ ପାଞ୍ଚବର୍ଷ କାଳ ଗୋପନୀୟ ଭାବରେ ରଖାଗଲା ଏବଂ ତାଙ୍କର ବିଧବାରାଣୀ ମୋହନ କୁମାରୀଙ୍କ ନାମରେ ସମ୍ବଲପୁରର ଶାସନ କାର୍ଯ୍ୟ ବ୍ରିଟଶ୍ ଏଜେଣ୍ଟ ଦ୍ୱାରା ପରିଚାଳିତ ହେଲା ।

ମହାରାଜା ସାଏ ସେ ଇହ ଜଗତରେ ନାହାନ୍ତି ସେହି ଜନରବ ରାଜ୍ୟସାରା ବ୍ୟାପି ଯାଇଥିଲା ମାତ୍ର ତାହା ନିଶ୍ଚିତ ଭାବରେ ଜାଣିବାର ଉପାୟ ନଥିଲା । ବ୍ରିଟିଶ୍ ଏଜେଣ୍ଟ ଘୋଷଣା କରିଥିଲେ ଯେ ମହାରାଜା ସାଏ ପୀଡ଼ିତ ଥବା ହେତୁ ରାଣୀ ମୋହନ କୁମାରୀ ରାଜ୍ୟର ଶାସନ ବିଷୟ ବୁଝାମଣା କରୁଅଛନ୍ତି । ମାତ୍ର ସେହି ଘୋଷଣା ସମସ୍ତଙ୍କର ସନ୍ଦେହ ଓ କୌତୁହଳ ବୃଦ୍ଧି କରିଥିଲା । ୧୮୩୩ ସାଲରେ ସୁରେନ୍ଦ୍ର ସାଏ ବିଶ୍ୱସ୍ତ ସୂତ୍ରରୁ ଜାଣିପାରିଲେ ଯେ ମହାରାଜା ସାଏଙ୍କର ବହୁଦିନରୁ ମୃତ୍ୟୁ ଘଟିଛି ଏବଂ ସମ୍ବଲପୁର ରାଜଗାଦିରୁ ତାଙ୍କର ଦାବୀ ଏଡ଼ାଇ ଦେବା ନିମନ୍ତେ ଇଂରେଜ ସରକାର ଦୀର୍ଘ ପାଞ୍ଚବର୍ଷ ଧରି ହୀନ ଚକ୍ରାନ୍ତ ଚଳାଇ ଆସି ଅଛନ୍ତି । ତାହା ଜାଣିବା ପରେ ସୁରେନ୍ଦ୍ର ସାଏ ଇଂରେଜଙ୍କ ବିରୁଦ୍ଧରେ ବିପ୍ଲବର ଆୟୋଜନ କରିଥିଲେ । ସମ୍ବଲପୁରର କୋହ୍ଲ ଓ ଗଣ୍ଡ ଜାତିର ଲୋକେ ତାଙ୍କର ଆହ୍ୱାନରେ ବିପ୍ଲବରେ ଯୋଗ ଦେଇଥିଲେ । ବିଦ୍ରୋହ ଦମନ କରିବା ନିମନ୍ତେ ଲେଫ୍ଟନାଣ୍ଟ ହିଜନ୍ସ ହଜାରିବାଗରୁ ସୈନ୍ୟ ଘେନି ସମ୍ବଲପୁର ଆସିଲେ । ମାତ୍ର ବିଦ୍ରୋହୀମାନେ ସେଥିରେ ଦବି ନଯାଇ ଆହୁରି ପ୍ରବଳ ଭାବରେ ମାତି ଉଠିଲେ । ଅବସ୍ଥା ଅସମ୍ଭାଳ ହେବାରୁ କେପେଟନ୍ ଉଇଲ୍‌କିନ୍‌ସନ୍ ରାମଗଡ଼ ସେନା ଛାଉଣିରୁ ସୈନ୍ୟ ଘେନି ସମ୍ବଲପୁର ଆସିଲେ । ବହୁ ବିଦ୍ରୋହୀଙ୍କୁ ଧରି ନିର୍ମମ ଭାଚରେ ହତ୍ୟା କରାଗଲା । ମାତ୍ର ବିଦ୍ରୋହ ଆଦୌ ଶାନ୍ତ ହେଲାନାହିଁ । ପରିଶେଷରେ ଉଇଲ୍‌କିନ୍‌ସନ୍ ରାଣୀ ମୋହନ କୁମାରୀଙ୍କୁ ଶାସନ କ୍ଷମତାରୁ ଅପସାରିତ କରି ତାଙ୍କୁ କଟକଠାରେ ରହିବାର ବ୍ୟବସ୍ଥା କରିଦେଇଥିଲେ । ରାଣୀଙ୍କର ଇଛା ଅନୁସାରେ ବରପାଲି ଜମିଦାର ବଂଶୀୟ ନାରାୟଣ ସିଂହଙ୍କୁ ଆଣି ସେ ସମ୍ବଲପୁର ରାଜଗାଦିରେ ବସାଇଥିଲେ । ନାରାୟଣ ସିଂହ ମହାରାଜା ସାଏଙ୍କ ପରି ଜଣେ ଅଯୋଗ୍ୟ ଓ ଦୁର୍ବଳମନା ଶାସକ ଥିଲେ ଏବଂ ବ୍ରିଟିଶ୍ ସରକାରଙ୍କର ଅତ୍ୟନ୍ତ ଅନୁଗତ ହୋଇ ଶାସନ ପରିଚାଳନା କରୁଥିଲେ । ସମ୍ବଲପୁର ରାଜଗାଦି ପାଇଁ ତାଙ୍କର ନ୍ୟାଯ୍ୟ ଅଧିକାର ଆଦୌ ନଥିଲା । ସୁରେନ୍ଦ୍ର

ସାଏଙ୍କୁ ସେହି ଅଧିକାରରୁ ବଞ୍ଚିତ କରି ଏକ ସଖୀ କଣ୍ଢେଇ ରାଜା ସମ୍ବଲପୁରରେ ସ୍ଥାପନ କରିବା ବ୍ରିଟିଶ୍ ସରକାରଙ୍କ ଉଦ୍ଦେଶ୍ୟ ଥିଲା । ମାତ୍ର ସରକାରଙ୍କର ସେହି ନୀତି ରାଜ୍ୟରେ ଭୀଷଣ ପ୍ରତିକ୍ରୀୟା ସୃଷ୍ଟି କଲା ଏବଂ ଚାରିଆଡ଼େ ଅଶାନ୍ତି ଓ ଉପଦ୍ରବ ଦେଖାଦେଲା । ସମ୍ବଲପୁରର ହଜାର ହଜାର ଆଦିବାସୀ ସୁରେନ୍ଦ୍ର ସାଏଙ୍କର ଦାବୀକୁ ସମର୍ଥନ ଜଣାଇ ବିଦ୍ରୋହରେ ମାତି ଉଠିଲେ । ଦୁର୍ଦ୍ଧର୍ଷ ଗଣ୍ଡ ଜାତିର ଲୋକେ ଇଂରେଜ ବା ନାରାୟଣ ସିଂହଙ୍କର ସମର୍ଥକ ମାନଙ୍କୁ ଯେଉଁଠି ଦେଖିଲେ ହତ୍ୟା କଲେ ଏବଂ ଗ୍ରାମେ ଗ୍ରାମେ ଲୁଟତରାଜ କରି ବିଭିଷିକା ସୃଷ୍ଟି କଲେ । ସେହି ବିଦ୍ରୋହ ଲୋକ ମୁଖରେ 'ଗଣ୍ଡମାରୁ' ନାମରେ ପରିଚିତ । ଗଣ୍ଡ ନେତା ବନ୍ଦିଆ ରାଏ ଓ ମହାପାତ୍ର ରାୟ୍ ରାଜା ନାରାୟାଣ ସିଂହଙ୍କର ସହାୟକ ବାଲାଜୀ ଦାଶ (ବାଲୁକେଶ୍ୱର ଦାଶ)ଙ୍କୁ ବରଗଡ଼ ନିକଟସ୍ଥ ତୋରା ଗ୍ରାମରେ ହତ୍ୟା କରିଥିଲେ । ବାଲଜୀ ଦାଶ ବହୁ ସୈନ୍ୟ ଘେନି ବରଗଡ଼ ଅଞ୍ଚଳକୁ ଗଣ୍ଡ ମାନଙ୍କ ଆକ୍ରମଣରୁ ରକ୍ଷା କରିବା ପାଇଁ ଉଦ୍ୟମ କରିଥିଲେ । ତାଙ୍କର ନିଧନ ପରେ ନାରାୟଣ ସିଂହ ଅତିଶୟ ବିବ୍ରତ ହୋଇ ପଡିଲେ । ସେ ବାଲଜୀ ଦାଶଙ୍କ ପୁତ୍ର ନାରାୟଣ ଦାଶଙ୍କୁ ବରଗଡ଼ ଗ୍ରାମକୁ ମାଫି ଦେଇଥିଲେ । ତାହା ଶିରକଟା ମାଫି ନାମରେ ଲୋକ ସାଧାରଣରେ ପରିଚିତ ।

ଲଖନପୁରର ଗଣ୍ଡ ଜମିଦାର ବଳଭଦ୍ର ଦେଓ ସେହି 'ଗଣ୍ଡମାରୁ' ବିଦ୍ରୋହର ଜଣେ ବିଶିଷ୍ଟ ନେତା ଥିଲେ । ସେ ଇଂରେଜଙ୍କର ସମର୍ଥକ ମାନଙ୍କୁ ବହୁ ସଂଖ୍ୟାରେ ହତ୍ୟା କରିଥିଲେ । ଇଂରେଜ ସରକାର ବିଦ୍ରୋହ ଦମନ ନିମନ୍ତେ ବହୁ ସୈନ୍ୟ ଆଣି ସମ୍ବଲପୁରରେ ଠୁଳ କରିଥିଲେ । ସେମାନେ ସୁରେନ୍ଦ୍ର ସାଏଙ୍କର ଲୋକପ୍ରିୟତା ଓ ସୈନ୍ୟବଳ ଦେଖି ବିପଦ ମଣିଲେ ଏବଂ ତାଙ୍କୁ ଯେ କୌଣସି ପ୍ରକାରେ ଦମନ କରିବା ସାମରିକ ଉଦ୍ୟମ କରିଥିଲେ । ବାର ପାହାଡ଼ରେ ଦେବ୍ରିଗଡ଼ ଠାରେ ସୁରେନ୍ଦ୍ର ସାଏ ଓ ବଳଭଦ୍ର ଦେଓ ଏକତ୍ର ଅବସ୍ଥାନ କରିବା ଖବର ପାଇ ଦଳେ ଇଂରେଜ ଫୌଜ ଅତର୍କିତ ଭାବରେ ସେହି ସ୍ଥାନ ଘେରାଉ କଲେ । ସେଠାରେ ଯେଉଁ ଖଣ୍ଡଯୁଦ୍ଧ ଲାଗିଲା ତହିଁରେ ବଳଭଦ୍ର ଦେଓ ଇଂରେଜଙ୍କର ଗୁଳି ଆଘାତରେ ପ୍ରାଣତ୍ୟାଗ କଲେ । ମାତ୍ର ସୁରେନ୍ଦ୍ର ସାଏ ଜଙ୍ଗଲ ଭିତରେ ଖସି ପଳାଇ ଯାଇ ଆତ୍ମରକ୍ଷା କରିଥିଲେ ।

ରାମପୁର ଜମିଦାର ଦୁର୍ଜୟ୍ ସିଂହ ଇଂରେଜଙ୍କର ଅନୁଗତ ହୋଇ ଗୁପ୍ତଚର କାର୍ଯ୍ୟରେ ଲିପ୍ତଥିଲେ । ତାଙ୍କୁ ତହିଁରୁ ନିବୃତ୍ତ ହେବାପାଇଁ ସୁରେନ୍ଦ୍ର ସାଏ ଏକାଧିକ ବାର ଅନୁରୋଧ କରିଥିଲେ ହେଁ ସେ ତହିଁରେ କର୍ଣ୍ଣପାତ କରି ନଥିଲେ । ୧୮୪୦ ସାଲରେ ସୁରେନ୍ଦ୍ରଙ୍କର ଦଳେ ସମର୍ଥକ ରାମପୁର ଆକ୍ରମଣ କରି ରାଜବାଟିକୁ ପୋଡି ଧ୍ୱଂସ କରିଦେଲେ । ଏବଂ ଦୁର୍ଜୟ୍ ସିଂହ ଓ ତାଙ୍କର ପୁତ୍ରଙ୍କୁ ହତ୍ୟା କରିଥିଲେ । ତାହାପରେ ଇଂରେଜଙ୍କ ସହିତ ପ୍ରକାଶ୍ୟ ସଂଗ୍ରାମ ଲାଗି ଯିବାର ଆଶଙ୍କା କରି ସୁରେନ୍ଦ୍ର ସାଏ ଅସ୍ତ୍ର ଶସ୍ତ୍ର ସଂଗ୍ରହରେ ଲାଗିଲେ । ପାଟଣା ରାଜା ହୀରାବ୍ରଜଧର ଦେଓଙ୍କ

ଠାରୁ ସାହାଯ୍ୟ ଭିକ୍ଷା କରିବା ନିମନ୍ତେ ସୁରେନ୍ଦ୍ର ସାଏ ଓ ଭାଇ ଉଦନ୍ତ ସାଏ ବଡ଼ ବାପା ବଳରାମ ସାଏଙ୍କ ସହିତ ପାଟଣା ଅଭିମୁଖରେ ଯାଉଥିବା ବେଳେ ସମ୍ବଲପୁର ନିକଟସ୍ଥ ଦେହେରି ପାଲି ଗ୍ରାମରେ ଇଂରେଜ ଫୌଜଙ୍କ ହସ୍ତରେ ବନ୍ଦୀ ହେଲେ । ସମ୍ବଲପୁର ଏସିଷ୍ଟାଣ୍ଟ କମିଶନର ଡେଜର୍ ଓସ୍ୱାଲ ସେମାନଙ୍କର ବିଚାର କରି ସୁରେନ୍ଦ୍ର ସାଏଙ୍କୁ ୫ ବର୍ଷ, ଉଦନ୍ତଙ୍କୁ ୭ ବର୍ଷ ଏବଂ ବଳରାମ ସାଏଙ୍କୁ ଆଜୀବନ କାରାଦଣ୍ଡ ପ୍ରଦାନ କରିଥିଲେ । ପରେ ରାଜା ନାରାୟଣ ସିଂହଙ୍କ ଅଭିଯୋଗ କ୍ରମେ ସେମାନଙ୍କୁ ସମସ୍ତଙ୍କୁ ଆଜୀବନ ଜେଲ ଦଣ୍ଡ ଦିଆଯାଇ ହଜାରିବାଗ ଜେଲରେ ଆବଦ୍ଧ କରି ରଖାଗଲା । ସେହି ଜେଲ ଭିତରେ ବୃଦ୍ଧ ବଳରାମ ସାଏଙ୍କର ମୃତ୍ୟୁ ହୋଇଥିଲା ।

ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ବୀର ସୁରେନ୍ଦ୍ର ସାଏ ୨୪ ବର୍ଷ ଯୁବକ ଥିବାବେଳେ ୧୮୩୩ ସାଲରୁ ଇଂରେଜ ବିରୁଦ୍ଧରେ ପ୍ରକାଶ୍ୟ ଭାବରେ ବିଦ୍ରୋହ କରି ଆସିଥିଲେ । ମହାରାଜା ସାଏଙ୍କ ମୃତ୍ୟୁ ବେଳକୁ ତାଙ୍କର ବୟସ ଥିଲା ମାତ୍ର ୧୮ ବର୍ଷ ସେହି ତରୁଣ ବୟସରେ ସୁଦ୍ଧା ସେ ଇଂରେଜ ସରକାରଙ୍କର ଘୋର ସନ୍ଦେହ ଜନକ ହୋଇଥିଲେ ଏବଂ ତାଙ୍କୁ ସମ୍ବଲପୁର ରାଜଗାଦିରୁ ବଞ୍ଚିତ କରିବା ପାଇଁ ସରକାର ଯେ କୌଣସି ହୀନ ଉପାୟର ଆଶ୍ରୟ ନେବା ପାଇଁ ପଶ୍ଚାତ୍‌ପଦ ହୋଇନଥିଲେ । ଇଂରେଜଙ୍କର ବିରାଟଶକ୍ତି ବିରୁଦ୍ଧରେ ଯୁବକ ସୁରେନ୍ଦ୍ରଙ୍କର ପ୍ରାଥମିକ ବିଦ୍ରୋହ ବିଫଳ ହେବା ସ୍ୱାଭାବିକ । କିନ୍ତୁ ହଜାରିବାଗ ଆଜୀବନ ବନ୍ଦୀ ଭାବରେ ଆବଦ୍ଧ କରି ଇଂରେଜ କର୍ତ୍ତୃପକ୍ଷ ଶାନ୍ତି ଅନୁଭବ କରିଥିଲେ ଏବଂ ଆଶ୍ୱସ୍ତିର ନିଃଶ୍ୱାସ ମାରିଥିଲେ ସମ୍ବଲପୁରର ନାମମାତ୍ର ରାଜା ନାରାୟଣ ସିଂହ ।

ସୁରେନ୍ଦ୍ର ସାଏ ହଜାରିବାଗ ଜେଲ୍‌ରେ ରହିଥିବା ବେଳେ ତେଣେ ଦୁଇଟି ବିଶିଷ୍ଟ ଘଟଣା ଘଟିଥିଲା । ୧୮୪୯ ସାଲରେ ନାରାୟଣ ସିଂହଙ୍କର ମୃତ୍ୟୁ ପରେ ଗଭର୍ଣ୍ଣର ଜେନେରାଲ ଡେଲହାଉସୀ ରାଜ୍ୟସ୍ୱତ୍ୱ ଲୋପନୀତି ବଳରେ ସମ୍ବଲପୁରକୁ ଇଂରେଜ ସାମ୍ରାଜ୍ୟଭୁକ୍ତ କରିଥିଲେ । ୧୮୫୭ ସାଲରେ ଭାରତରେ ଇଂରେଜଙ୍କ ବିରୁଦ୍ଧରେ ସଶସ୍ତ୍ର ବିଦ୍ରୋହ ଆରମ୍ଭ ହୋଇଥିଲା ।

୧୮୫୭ ମାର୍ଚ୍ଚ ୨୯ ତାରିଖ ଦିନ ବାରାକ୍‌ପୁର ଛାଉଣିର ସିପାହୀମାନେ ଘୁଷୁରୀ ଚର୍ବିଲଗା ବନ୍ଧୁକ ଟୋଟା ଦାନ୍ତରେ ଛିଡାଇବା ପାଇଁ ଅସମ୍ମତ ପ୍ରକାଶ କଲେ । ଗୋରା ଏଡ୍‌ଜୁଟାଣ୍ଟ ସିପାହୀ ମଙ୍ଗଳ ପାଣ୍ଡେଙ୍କୁ ଛିଡ଼ାଇବା ପାଇଁ ବାଧ କରିବାରୁ ସେହି ବ୍ରାହ୍ମଣ ସିପାହୀ ଏଡ୍‌ଜୁଟାଣ୍ଟଙ୍କୁ ସମସ୍ତଙ୍କ ସମ୍ମୁଖରେ ହତ୍ୟା କଲେ । ତାହା ହେଲା ସେହି ବିରାଟ ଐତିହାସିକ ବିଦ୍ରୋହର ଆରମ୍ଭ । ତାହାର ଦୁଇମାସ ମଧ୍ୟରେ ବିଦ୍ରୋହ ଭାରତର ବିଭିନ୍ନ ଅଞ୍ଚଳରେ ବ୍ୟାପି ଯାଇଥିଲା । ଜୁଲାଇ ୩୦ ତାରିଖ ଦିନ ହଜାରିବାଗ ଠାରେ 'ଛୋଟ ବର୍ଦ୍ଧମାନ କା ପଲଟନ' ବିଦ୍ରୋହ କରିଥିଲେ । ସେମାନଙ୍କୁ

ଦମନ କରିବା ନିମନ୍ତେ ଯେଉଁ ରାମଗଡ଼ ସେନାଙ୍କୁ ୩୧ ତାରିଖ ଦିନ ପଠାଗଲା ସେମାନେ ସମସ୍ତେ ବିଦ୍ରୋହୀଙ୍କ ସହିତ ହାତ ମିଳାଇଥିଲେ । ଅଗଷ୍ଟ ୧ ତାରିଖରେ ହଜାରିବାଗର ଦୁର୍ଗ ପ୍ରାଚୀର ଭାଙ୍ଗି ବନ୍ଦୀମାନଙ୍କୁ ଛାଡି ଦିଆଗଲା ଏବଂ ସୁରେନ୍ଦ୍ର ଉଦନ୍ତ ଜେଲ ଭିତରୁ ମୁକ୍ତ ହୋଇ ଆସିଲେ । ସୁରେନ୍ଦ୍ର ସାଏ ଦେଖିଲେ ଚାରିଆଡେ ବିଦ୍ରୋହ ନିଆଁ ଜଳୁଛି ଏବଂ ଇଂରେଜ ଶାସନ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡିଛି । ଦୀର୍ଘ ୧୭ ବର୍ଷ କାଳ ଇଂରଜଙ୍କର ବନ୍ଦୀଶାଳାରେ ଆବଦ୍ଧ ହୋଇ ରହିବା ପରେ ଦେଶପ୍ରେମୀ ବିଦ୍ରୋହୀଙ୍କ ଦ୍ୱାରା ମୁକ୍ତିଲାଭ କରି ସୁରେନ୍ଦ୍ରଙ୍କର ଏକମାତ୍ର ଚିନ୍ତା ହେଲା ସେହି ଅବସରରେ ସମ୍ବଲପୁରରୁ ଇଂରେଜଙ୍କୁ ହଟାଇବା । ସମ୍ବଲପୁର ସିଂହାସନ ପ୍ରାପ୍ତି ଲାଳସା ନୁହେଁ, ସମ୍ବଲପୁରକୁ ଇଂରେଜଙ୍କ କବଳରୁ ରକ୍ଷା କରିବା ହିଁ ତାଙ୍କ ବିଦ୍ରୋହର ଲକ୍ଷ ଥିଲା । ଅବଶ୍ୟ, ସମ୍ବଲପୁର ସିଂହାସନ ଜଣେ ନ୍ୟାର୍ଯ୍ୟ ହକଦାର ରୂପେ ତାଙ୍କ ପକ୍ଷରେ ସେତେବେଳେ ଶୂନ୍ୟଥିବ । ସମ୍ବଲପୁର ଗାଦି ଅଧିକାର କରିବା ଓ ସମ୍ବଲପୁରରୁ ଇଂରେଜଙ୍କ ପ୍ରଭୁତ୍ୱ ଲୋପ କରିବା ଲକ୍ଷ୍ୟ ଦୁଇଟିକୁ ପରସ୍ପର ଠାରୁ ପୃଥକ କରି ହେବନାହିଁ । ତେଣୁ ସୁରେନ୍ଦ୍ର ସାଏ ସଂକୀର୍ଣ୍ଣ ସ୍ୱାର୍ଥ ସାଧନ ନିମନ୍ତେ ବିଦ୍ରୋହ କରିଥିଲେ ବୋଲି କେହି ଯୁକ୍ତି କରିପାରନ୍ତି । କିନ୍ତୁ ଘଟଣାଚକ୍ର ଏବଂ ତତ୍କାଳୀନ ପରିସ୍ଥିତିକୁ ବିଚାର କଲେ ସୁରେନ୍ଦ୍ର ସାଏଙ୍କ ବିଦ୍ରୋହକୁ ସଂକୀର୍ଣ୍ଣ ସ୍ୱାର୍ଥ ପ୍ରଣୋଦିତ କହିବା ନିରର୍ଥକ ଓ ଭ୍ରାନ୍ତିଜନକ ।

ଛୋଟନାଗପୁର ଠାରେ ରାମଗଡ଼ ସେନାର ସୈନିକ ମାନେ ଯେପରି ବିଦ୍ରୋହରେ ଯୋଗଦାନ କରିଥିଲେ ସମ୍ବଲପୁରଠାରେ ସେଇ ଛାଉଣିର ସୈନିକ ସେପରି ବିଦ୍ରୋହ କରିବା ଦୂରେଥାଉ ସେହି ବିଦ୍ରୋହ ଦମନ କରିବା ପାଇଁ ଇଂରେଜଙ୍କୁ ସାହାଯ୍ୟ କରିଥିଲେ । ସୁରେନ୍ଦ୍ର ସାଏ ସମ୍ବଲପୁରର, ସେନାନାୟକ ଶେଖ ଛକଡି ଖାଁଙ୍କୁ କେତେ ବୁଝାଇଲେ, ମାତ୍ର ସେ ଓଲଟା ତାଙ୍କର ଚିଠିପତ୍ର ଇଂରେଜଙ୍କୁ ଦେଖାଇ ସେମାନଙ୍କ ଠାରୁ 'ସାବାସ' ଶବ୍ଦ ଶୁଣି ଆତ୍ମତୃପ୍ତି ଲାଭ କରିଥିଲେ । ଏଥିରୁ ଏକଥା ଅତିସ୍ପଷ୍ଟ ଯେ ସମ୍ବଲପୁରରେ ୧୮୫୭ ସାଲରେ ବିଦ୍ରୋହ ସିପାହୀଙ୍କର ବିଦ୍ରୋହ ନଥିଲା । ତାହାଥିଲା ଜନତାଙ୍କର ବିଦ୍ରୋହ । କୋହ୍ଲ, ବିଞ୍ଝାଲ, ଗଣ୍ଡ, ଶବରଆଦି ବଣ ଜଙ୍ଗଲରେ ଲୋକେ ଅସ୍ତ୍ର ଧାରଣ କରିଥିଲେ ଇଂରେଜଙ୍କ ବିରୁଦ୍ଧରେ ବୀର ସୁରେନ୍ଦ୍ର ସାଏଙ୍କର ନେତୃତ୍ୱରେ । ଘେଁସ ଜମିଦାର ପରିବାରର ତିନିଭାଇ ହାତୀ ସିଂହ, କୁଞ୍ଜଲ ସିଂହ ଓ ବୈରୀ ସିଂହ ଲଖନପୁର ଜମିଦାର ବଳଭଦ୍ର ଦେଓଙ୍କର ତିନିପୁତ୍ର - କମଳ ସିଂହ, ନୀଳାମ୍ବର ସିଂହ ଓ ଖଗେଶ୍ୱର ସିଂହ, ଜୁଜୁମୁରାର ମଧୁ ଗୌନ୍ତିଆ, କୋଲାବିରାର କରୁଣାକର ଗଡ଼ତିଆ, ସେନାଖଣ୍ଡର ନାରାୟଣ ସିଂହ ଏବଂ ସେମାନଙ୍କ ଛଡା ଗଜରାଜ ସିଂହ, ନୁହ୍ମା ଦେଓ୍ୱାନ, ଫତେ ସିଂହ, ମୋହନ ସିଂହ, ମାଲିକ ରାମ ବରିହା ପ୍ରଭୃତି ଶହ ଶହ ବୀର ବିଦ୍ରୋହରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ସୁରେନ୍ଦ୍ର ସାଏଙ୍କ ପରିବାରର ସମସ୍ତେ - ତାଙ୍କର ପାଞ୍ଚ ଭାଇ, ଉଦନ୍ତ ସାଏ, ଉଜ୍ଜ୍ୱଳ ସାଏ, ଛବିଲ ସାଏ, ଧ୍ରୁବ ସାଏ ଓ ମେଦିନୀ ସାଏ ଏବଂ ତାଙ୍କର ଏକମାତ୍ର ପୁତ୍ର ମିତ୍ରଭାନୁ ସେହି ବିଦ୍ରୋହରେ ଝାସ ଦେଇଥିଲେ । ଧରଣୀ ମିଶ୍ର, ମୁଣ୍ଡା ମିଶ୍ର, ଲୋକନାଥ ପଣ୍ଡା, ପଦ୍ମଲାଭ ଗୁରୁ, ମୃତ୍ୟୁଞ୍ଜୟ ପାଣିଗ୍ରାହୀ, ଜଗବନ୍ଧୁ ହୋତା ଆଦି ବିଖ୍ୟାତ ବ୍ରାହ୍ମଣ ନେତୃବର୍ଗ ପ୍ରତିକ୍ଷେତ୍ରରେ ବିଦ୍ରୋହୀ ମାନଙ୍କୁ ଉତ୍ସାହିତ ଓ ଉପଦେଶ ଦେଇ ସେମାନଙ୍କ ପ୍ରାଣରେ ଶକ୍ତି ସଞ୍ଚାର କରିଥିଲେ । ହଜାର ହଜାର ଲୋକ ଜୀବନ ଉତ୍ସର୍ଗ କରି ଇଂରେଜଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବାରେ ସେମାନଙ୍କର କି ସ୍ୱାର୍ଥ ନିହିତ ଥିଲା ? ସମ୍ବଲପୁରରେ ୧୮୫୭ ସାଲର ବିଦ୍ରୋହ ଯେ ସଂପୂର୍ଣ୍ଣ ଦେଶପ୍ରେମ ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲା ଏବଂ ଇଂରେଜଙ୍କ କବଳରୁ ସମ୍ବଲପୁରକୁ ଉଦ୍ଧାର କରିବା ଯେ ସେହି ବିଦ୍ରୋହର ଏକମାତ୍ର ଉଦ୍ଦେଶ୍ୟ ଥିଲା ତାହା ନିଶ୍ଚିତ ଭାବରେ କୁହା ଯାଇପାରେ ।

ତେଣେ ଭାରତର ବିଭିନ୍ନ ଅଞ୍ଚଳରେ ୧୮୫୭ ସାଲ ଶେଷବେଳକୁ ବିଦ୍ରୋହର ଶକ୍ତିହ୍ରାସ ପାଇବାକୁ ଲାଗିଲା । ସେହିବର୍ଷ ସେପ୍ଟେମ୍ବର ମାସରେ ଦିଲ୍ଲୀର ସମ୍ରାଟ ବାହାଦୁର ଶାହ ହୋଇଥିଲେ । ତାଙ୍କର ଦୁଇପୁତ୍ର ଓ ଏକ ନାତିଙ୍କୁ ଗୁଳିକରି ମାରି ଦିଆ ଯାଇଥିଲା । ୧୮୫୮ ଜୁନ୍ ମାସରେ ରାଣୀ ଲକ୍ଷ୍ମୀବାଈ ଗ୍ୱାଲିୟର ଦୁର୍ଗ ପ୍ରାଚୀର ଉପରେ ଯୁଦ୍ଧରେ ଥିବା ବେଳେ ଗୁଳିଖାଇ ଟଳି ପଡ଼ିଲେ । ତାନ୍ତିଆ ଟୋପେ ପଳାୟନ କଲାବେଳେ ସିନ୍ଧିଆଙ୍କର ଜଣେ ସାମନ୍ତ ତାଙ୍କୁ ୧୮୫୯ ଏପ୍ରିଲ ମାସରେ ଧରିଲେ । ଦିନ୍‌କର ରାଓ ସିନ୍ଧିଆ ଇଂରେଜଙ୍କ ଠାରୁ ପ୍ରଶଂସାପତ୍ର ପାଇବା ପାଇଁ ଚରମ ବିଶ୍ୱାସଘାତକତା ପୂର୍ବକ ତାନ୍ତିଆ ଟୋପେଙ୍କୁ ସେମାନଙ୍କ ହାତରେ ଅର୍ପଣ କରିଥିଲେ । ଦେଶପ୍ରେମୀ ଟୋପେଙ୍କୁ ଫାଶି ଦିଆ ଯାଇଥିଲା । ନାନା ସାହେବଙ୍କ ଅବସ୍ଥା କ'ଣ ହେଲା କିଛି ଜଣା ପଡିଲା ନାହିଁ । ୧୮୫୮ ସାଲ ଜୁଲାଇ ମାସ ବେଳକୁ ଭାରତର ବିଭିନ୍ନ କ୍ଷେତ୍ରରେ ବିଦ୍ରୋହ ପ୍ରଶମିତ ହୋଇ ଯାଇଥିଲା । ମାତ୍ର ତାହା ପ୍ରଜ୍ୱଳିତ ହୋଇ ରହିଲା କେବଳ ସମ୍ବଲପୁରରେ ଆହୁରି ଦୀର୍ଘ ଚାରିବର୍ଷ, ୧୮୬୨ ମେ ମାସ ପର୍ଯ୍ୟନ୍ତ ।

୧୮୫୮ ମାର୍ଚ୍ଚ ୧୯ ତାରିଖରେ କର୍ଣ୍ଣେଲ ଫଷ୍ଟର ସମ୍ବଲପୁରର ସର୍ବୋଚ୍ଚ ସେନାପତି ଓ ଡେପୁଟି କମିଶନର ହୋଇ ଆସିଥିଲେ । ତାଙ୍କୁ କମିଶନରଙ୍କ ଅଧିକାର ଓ କ୍ଷମତା ପ୍ରଦାନ କରାଯାଇଥିଲା । ସେ ସିଂହଭୂମ୍ ଠାରେ ବିଦ୍ରୋହ ସଂପୂର୍ଣ୍ଣ ରୂପେ ଦମନ କରି ପାରିଥିବାରୁ ପଦୋନ୍ନତି ପାଇ ସମ୍ବଲପୁରକୁ ପ୍ରେରିତ ହୋଇଥିଲେ ସୁରେନ୍ଦ୍ର ସାଏଙ୍କୁ ଦମନ କରିବା ଉଦ୍ଦେଶ୍ୟରେ । ତାଙ୍କର ଶାସନ କାଳରେ ବିଭୀଷିକାର ରାଜତ୍ୱ ଚାଲିଲା । ବହୁ ବିଦ୍ରୋହୀଙ୍କୁ ଧରି କଠୋର ଦଣ୍ଡ ଦିଆଗଲା ଏବଂ ବିଦ୍ରୋହୀ ଜମିଦାର ଓ ଗୌନ୍ତିଆ ମାନଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଯାଇଥିଲା । ସେହି ଦମନ ନୀତିରେ ବିଦ୍ରୋହୀମାନେ ଆହୁରି ଅଧିକ ଉତ୍ସାହରେ ମାତିଲେ ଏବଂ ସୁରେନ୍ଦ୍ର ସାଏଙ୍କୁ

ଭୟଭୀତ କରିବା ଚେଷ୍ଟା ବିଫଳ ହୋଇଥିଲା । ଭାରତରେ ଅନ୍ୟତ୍ର ବିଦ୍ରୋହ ଦମନ କରିବାରେ ସମର୍ଥ ହୋଇଥିଲା ଏନ୍‌.ଫିଲ୍‌ଡ ରାଏଫଲ, ଟେଲିଗ୍ରାଫ ଓ ଟେଲିଫୋନ୍‌। ନାନା ସାହେବ ଏନ୍‌ଫିଲଡ ରାଏଫଲକୁ ଲକ୍ଷ୍ୟ କରି କହୁଥିଲେ - "ଆମେ କାହାକୁ ଖାତିର କରୁନାହୁଁ, ସେହି ନୀଳ ଟୋପିକୁ ହିଁ ଆମର ବିଶେଷ ଡର ।" ମାତ୍ର ସମ୍ବଲପୁରରେ ସେତେବେଳେ ଯେଉଁ ଗରିଲା ଯୁଦ୍ଧ ଚାଲିଲା ସେହି ଏନ୍‌ଫିଲ୍‌ଡ କିଛି କାମକୁ ଆସି ନଥିଲା । ଜଙ୍ଗଲ ଓ ପାହାଡ଼ ଲଢ଼େଇରେ ଟେଲିଗ୍ରାଫ୍‌, ଟେଲିଫୋନ୍‌ ଆଦି ସାହାଯ୍ୟ କରି ପାରି ନଥିଲା । ଫଷ୍ଟର ନିର୍ଭର କରିଥିଲେ ନିଜର କଠୋର ନୀତି ଉପରେ । ପାଟଣା ରାଜା ହୀରାବ୍ରଜଧରଙ୍କୁ ଧମକ ଦେଇ ତାଙ୍କ ହାତରେ ସେ ସୁରେନ୍ଦ୍ରଙ୍କ ଭାଇ ଉଜ୍ଜ୍ୱଳ ସାଏଙ୍କୁ ଧରାଇଥିଲେ ଏବଂ ତାଙ୍କୁ ବିନା ବିଚାରରେ ଫାଶି ଦେଇଥିଲେ । ଭେଡେନ୍‌କୁ ଅତର୍କିତ ଭାବରେ ଆକ୍ରମଣ କରି ଜମିଦାରଙ୍କୁ ହତ୍ୟା କରିଥିଲେ, ଖରସଲ ଜମିଦାରଙ୍କୁ ଧରିଆଣି ଫାଶିଖୁଣ୍ଟରେ ଝୁଲାଇଥିଲେ, ଘେଁସ ଜମିଦାରଙ୍କ ଭାଇ ବୈରୀ ସିଂହଙ୍କୁ ଏବଂ କୋଲାବିରା ଜମିଦାରଙ୍କୁ ମଧ୍ୟ ଫାଶି ଦେଇଥିଲେ । ବରଗଡ଼ ଜମିଦାରୀ ଲୋପକରି ତାହା ରାଏଗଡ଼ର ଅନ୍ତର୍ଭୁକ୍ତ କରିଥିଲେ । ଖଡ଼ିଆଳ ଓ ଗାଙ୍ଗପୁର ରାଜାମାନଙ୍କୁ ଭୟଭୀତ କରାଇ ସୁରେନ୍ଦ୍ରଙ୍କ ପ୍ରତି ସେମାନଙ୍କର ସମସ୍ତ ସାହାଯ୍ୟ ବନ୍ଦ କରି ଦେଇଥିଲେ । ମାତ୍ର ଫଷ୍ଟରଙ୍କର ବିଭିଷିକାମୟ ନୀତି ବିଦ୍ରୋହ ଦମନ କରିବାରେ ବ୍ୟର୍ଥ ହୋଇଥିଲା ଏବଂ ସେ ୧୮୬୧ ସାଲରେ ସମ୍ବଲପୁରରୁ ବିଦାୟ ନେବାବେଳେ ନିଜକୁ ଜଣେ ଅଯୋଗ୍ୟ ଶାସକ ରୂପେ ପ୍ରମାଣିତ କରି ସାରିଥିଲେ ।

୧୮୬୧ ଏପ୍ରିଲ ମାସରେ ଫଷ୍ଟରଙ୍କ ସ୍ଥାନରେ ମେଜର ଇମ୍ପେ ଡେପୁଟି କମିଶନର ରୂପେ ସମ୍ବଲପୁରକୁ ଆସିଲେ । ସେ କଠୋର ନୀତିର ଆଦୌ ପକ୍ଷପାତୀ ନଥିଲେ । କୋହଳ ନୀତି ଅବଲମ୍ବନ କରି ଉଦାରତା ଓ ମଣିଷ ପଣିଆ ଦ୍ୱାରା ବିଦ୍ରୋହୀମାନଙ୍କର ହୃଦୟ ଜୟ କରିବା ପାଇଁ ସେ ଦୃଢ଼ ସଂକଳ୍ପ କଲେ । ସେ ସମସ୍ତଙ୍କୁ କ୍ଷମା ଘୋଷଣା କରି ବ୍ୟାଜାପ୍ତ ସମ୍ପତ୍ତି ଓ ଜମିଦାରୀ ମାନ ପ୍ରକୃତ ଅଧିକାରୀଙ୍କୁ ଫେରାଇ ଦେବା ପାଇଁ କଥା ଦେବାରୁ ବହୁ ସଂଖ୍ୟକ ବିଦ୍ରୋହୀ ଅସ୍ତ୍ର ସମ୍ବରଣ କରି ଆତ୍ମ ସମର୍ପଣ କରିଥିଲେ । ସେ ପ୍ରତ୍ୟକ୍ଷ ବିଦ୍ରୋହ କରୁଥିବା ଲୋକଙ୍କୁ ମଧ୍ୟ ଖାଦ୍ୟ ଓ ଅର୍ଥ ସାହାଯ୍ୟ ଦେବାରେ ଆପତ୍ତି କରୁ ନଥିଲେ । ଏପରିକି ସୁରେନ୍ଦ୍ର ସାଏ ଓ ତାଙ୍କର ଆତ୍ମୀୟମାନେ ଅତି ଅସୁବିଧାରେ ପଡିଥିବା ଜାଣି ସୁରେନ୍ଦ୍ରଙ୍କ ନିକଟକୁ ପାଞ୍ଚଶତ ଟଙ୍କା ପଠାଇ ଦେଇଥିଲେ । ସେହି ଉଦାର ନୀତି ହେତୁ ଇମ୍ପେ ସମସ୍ତଙ୍କର ଶ୍ରଦ୍ଧା ଓ ବିଶ୍ୱାସଭାଜନ ହୋଇଥିଲେ । ୧୮୬୨ ଜାନୁୟାରୀ ୭ ତାରିଖ ଦିନ ସୁରେନ୍ଦ୍ର ସାଏଙ୍କର ପୁତ୍ର ମିତ୍ରଭାନୁ ଇମ୍ପେଙ୍କ ପାଖକୁ ଆସି ଆତ୍ମ ସମର୍ପଣ କରିଥିଲେ । ତାହାପରେ ଜାନୁୟାରୀ ୧୭ ତାରିଖରେ ସୁରେନ୍ଦ୍ର ସାଏଙ୍କର ଦୁଇଜଣ

ଭାଇ ଉଦନ୍ତ ଓ ଧ୍ରୁବ ମଧ ଇମ୍ପେଙ୍କ ଠାରେ ଆତ୍ମସମର୍ପଣ କରିଲେ । ସମସ୍ତଙ୍କୁ ଉପଯୁକ୍ତ ସମ୍ମାନ ଓ ଆଦର ପ୍ରଦର୍ଶନ କରାଯାଇ ଥିଲା । ଇମ୍ପେଙ୍କର ସୁପାରିଶ ଅନୁସାରେ ଭାରତ ସରକାର ସୁରେନ୍ଦ୍ର ସାଏଙ୍କୁ ମିଶାଇ ତାଙ୍କର ପରିବାରର ସମସ୍ତଙ୍କ ନିମନ୍ତେ ବାର୍ଷିକ ଭତ୍ତା ମୋଟ ୪୬୦୦ ଟଙ୍କା ମଞ୍ଜୁର କରିଥିଲେ ।

୧୮୬୨ ମେ ମାସ ୧୬ ତାରିଖ ସନ୍ଧ୍ୟାରେ ସମ୍ବଲପୁର ନଗର ନିକଟବର୍ତ୍ତୀ ଏକ ଅଜ୍ଞାତ ସ୍ଥାନରେ ଇମ୍ପେ ଏବଂ ସୁରେନ୍ଦ୍ର ସାଏଙ୍କ ମଧ୍ୟରେ ଏକାନ୍ତରେ ଭେଟ ହୋଇଥିଲା । ସେତେବେଳେ ସେ ଦୁହିଙ୍କର ଦେହରକ୍ଷୀ ସୁଦ୍ଧା ଉପସ୍ଥିତ ନଥିଲେ ଏବଂ ଉଭୟେ ନିରସ୍ତ୍ର ଭାବରେ ପରସ୍ପରକୁ ପୂର୍ବ ନିର୍ଦ୍ଧାରିତ ରୂପେ ସାକ୍ଷାତ କରିଥିଲେ । ସେହି ସାକ୍ଷାତକାର ଆଫଜଲ ଖାଁ ଓ ଶିବାଜୀଙ୍କର ଭେଟ ସଦୃଶ ଛଳନା ଓ କୂଟନୀତି ଦ୍ୱାରା ଆଛନ୍ନ ହୋଇ ନଥିଲା ଉଭୟ ଉଭୟଙ୍କ ଠାରେ ସଂପୂର୍ଣ୍ଣ ବିଶ୍ୱାସ ରଖି ନିର୍ମଳ ମନରେ ଭେଟାଭେଟି ହୋଇଥିଲେ । ସେହି ମିଳନ ଫଳରେ ସୁରେନ୍ଦ୍ର ସାଏ ନିଜର ବିଦ୍ରୋହ ବନ୍ଦ ରଖିଲେ ଏବଂ ଶାନ୍ତିରେ ବସବାସ କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ଇମ୍ପେଙ୍କର ଉଦାର ନୀତି ଓ ମାନବିକତା ପରିଶେଷରେ ବିଜୟ ହାସଲ କରିଥିଲା ।

ମାତ୍ର କମଳ ସିଂହ, ଗଜରାଜ ସିଂହ ଓ କୁଞ୍ଜଲ ସିଂହ ଇମ୍ପେଙ୍କର କୋହଳ ନୀତିରେ ବିଶ୍ୱାସ ସ୍ଥାପନ କରି ପାରିନଥିଲେ ଏବଂ ସୁରେନ୍ଦ୍ର ସାଏଙ୍କର ଆତ୍ମ ସମର୍ପଣ ପରେ ସୁଦ୍ଧା ସେଇ ଭାଇ ତିନିଜଣ ବିଦ୍ରୋହ ଚାଲୁ ରଖିଲେ । ମୋହନ ସିଂହ ଓ ସୋଲିକ ରାମ ବରିହା ଆଦି କେତେକ ବିପ୍ଳବୀ ନେତା ସେମାନଙ୍କ ସହିତ ସହଯୋଗ କରିଥିଲେ । ସମ୍ବଲପୁରର ପୋଲିସ ସୁପରିଣ୍ଟେଡେଣ୍ଟ ବେରିଲ.ଏବଂ ତାଙ୍କର ସହକାରୀ ପୋଲିସ ଅଫିସର ଷ୍ଟିଉଆର୍ଟ ଗୁପ୍ତ ରିପୋର୍ଟ ଦେଇ ଡେପୁଟି କମିଶନର ଇମ୍ପେଙ୍କୁ ଜଣାଇଲେ ଯେ ସୁରେନ୍ଦ୍ର ସାଏଙ୍କର ଆତ୍ମସମର୍ପଣ ଏକ ଛଳନା ମାତ୍ର ଏବଂ ସେ ସରକାରଙ୍କ ଠାରୁ ଭତ୍ତା ନେଇ ତେଣେ କମଳ ସିଂହ ଓ କୁଞ୍ଜଲ ସିଂହ ଆଦିଙ୍କର ବିଦ୍ରୋହରେ ସହଯୋଗ ସ୍ଥାପନ କରିଅଛନ୍ତି । ମାତ୍ର ଇମ୍ପେ ସେମାନଙ୍କର ସେହି ରିପୋର୍ଟକୁ ଭ୍ରାନ୍ତିକର ଓ ଅବାସ୍ତବ ବୋଲି ଅଗ୍ରାହ୍ୟ କରିଥିଲେ । କମଲ ସିଂହ ଓ ତାଙ୍କର ସହକର୍ମୀ ଆତ୍ମ ସମର୍ପଣ ନ କରିବାରୁ ଇମ୍ପେ ସେମାନଙ୍କୁ ଦମନ କରିବା ପାଇଁ ନିଜେ ବହୁ ସୈନ୍ୟ ଘେନି ବାର ପାହାଡ଼ ଅଞ୍ଚଳ ଅବରୋଧ କରିଥିଲେ । ମାତ୍ର ଜଙ୍ଗଲ ଓ ପାହାଡରେ ଦିନରାତି ଅବିଶ୍ରାନ୍ତ ବୁଲି ସେ ଅସୁସ୍ଥ ହୋଇ ପଡିଲେ । ୧୮୬୩ ସାଲ ଡିସେମ୍ବର ମାସରେ ସମ୍ବଲପୁର ଠାରେ ତାଙ୍କର ମୃତ୍ୟୁ ହୋଇଥିଲା । ନୂତନ ଡେପୁଟି କମିଶନର କ୍ୟାପ୍‌ଟେନ୍ କମ୍ବର ଲେଜ୍ ୧୮୬୪ ଜାନୁୟାରୀ ୧୯ ତାରିଖରେ ସମ୍ବଲପୁର ଆସି କାର୍ଯ୍ୟଭାର ଗ୍ରହଣ କରିଥିଲେ ।

ଇମ୍ପେଙ୍କର ଅକାଳ ମୃତ୍ୟୁ ସୁରେନ୍ଦ୍ର ସାଏଙ୍କର ଭାଗ୍ୟ ବିପର୍ଯ୍ୟୟର କାରଣ ହେଲା । ପୋଲିସ ଅଫିସର ବେରିଲ୍ ଓ ଷ୍ଟିଉଆଟ୍ ଡେପୁଟି କମିଶନର କମ୍ପର ଲେଜ୍‌ଙ୍କୁ ଧାରଣା ଦେଲେ ଯେ ସୁରେନ୍ଦ୍ର ସାଏ ଇଂରେଜଙ୍କର ଆଶ୍ରୟରେ ରହି ବିଦ୍ରୋହୀ ମାନଙ୍କ ସହି ସହଯୋଗ ସ୍ଥାପନ କରିଅଛନ୍ତି । କମ୍ପର ଲେଜ୍ ସେମାନଙ୍କର କଥା ପୁରା ମାତ୍ରାରେ ଗ୍ରହଣ କରି ଇମ୍ପେଙ୍କର କୋହଳନୀତିର ତୀବ୍ର ସମାଲୋଚନା କରିଥିଲେ । ଜାନୁୟାରୀ ୧୩ ତାରିଖ ରାତ୍ରରେ ଅତର୍କିତ ଭାବରେ ସୁରେନ୍ଦ୍ର ସାଏ ଓ ତାଙ୍କର ଭାଇମାନଙ୍କୁ ଏବଂ ପୁତ୍ର ମିତ୍ରଭାନୁଙ୍କୁ ସେମାନଙ୍କର ସାଥୀ ଓ ଆତ୍ମୀୟଙ୍କ ସହିତ ଖିଣ୍ଡା, ଡାଲବ, ବୋଣ୍ଡା ଆଦି ଗ୍ରାମରେ ଧରାଗଲା ଏବଂ ସେମାନଙ୍କୁ ବନ୍ଦୀକରି ସମ୍ବଲପୁରକୁ ଅଣାଗଲା । ଜାନୁୟାରୀ ୨୬ ତାରିଖ ଦିନ ସେହି ୧୫ ଜଣ ବନ୍ଦୀଙ୍କୁ ବିଚାର ନିମନ୍ତେ ରାୟପୁରକୁ ପଠାଗଲା । ପରେ ଆଉ କେତେଜଣ ବନ୍ଦୀଙ୍କୁ ସନ୍ଦେହରେ ବନ୍ଦୀକରି ରାୟପୁର ଅଣାଗଲା । ସମ୍ବଲପୁରର ଡେପୁଟି କମିଶନର ସେହି ବନ୍ଦୀମାନଙ୍କ ବିରୁଦ୍ଧରେ ଯେଉଁ ରିପୋର୍ଟ ପଠାଇଥିଲେ ତାହା ସେମାନଙ୍କର ଦୋଷ ପ୍ରମାଣ କରିବା ନିମନ୍ତେ ଯଥେଷ୍ଟ ନଥିଲା । ଛତିଶଗଡ଼ କମିଶନର୍ ସେସନ୍ ଜଜ୍ ରୂପେ ମୋକଦ୍ଦମା ବିଚାର କରି ୧୮୬୪ ଜୁନ୍ ୨୩ ତାରିଖରେ ରାୟ ଦେଇଥିଲେ । ସେହି ରାୟ ଅନୁସାରେ ସୁରେନ୍ଦ୍ର ସାଏ, ଉଦନ୍ତ ସାଏ, ଖଗେଶ୍ୱର ଦେଓ, ଧ୍ରୁବସାଏ, ମେଦିନୀ ସାଏ, ମିତ୍ରଭାନୁ ସାଏ, ଲୋକନାଥ ଗୌନ୍ତିଆ, ଶ୍ରଦ୍ଧାକର ମଲ୍ଲିକ, ମୃତ୍ୟୁଞ୍ଜୟ ପାଣିଗ୍ରାହୀ ଓ ଜଗବନ୍ଧୁ ହୋତା ଯାବତ୍ ଜୀବନ କାରାବାସ ଦଣ୍ଡ ପାଇଲେ ଏବଂ ମୀନକେତନ ଦେଓ, ମୋହନ ଦେଓ, ଧରଣୀ ମିଶ୍ର ଓ ପଦ୍ମନାଭ ଗୁରୁ ପ୍ରତ୍ୟେକ ୭ ବର୍ଷ ଲେଖାଏଁ ଜେଲ ଦଣ୍ଡରେ ଦଣ୍ଡିତ ହେଲେ । ସେହି ବନ୍ଦୀମାନେ ଛତିଶଗଡ଼ କମିଶନରଙ୍କ ଅଦାଲତରେ ଅପିଲ କରିଥିଲେ ମଧ୍ୟ ପ୍ରଦେଶର ଜୁଡିସିଏଲ୍ କମିଶନର ଜନ୍ ସ୍କାର୍ଲେଟ କେମ୍ପବେଲ୍ ସମ୍ବଲପୁର ଡେପୁଟି କମିଶନରଙ୍କ ରିପୋର୍ଟ ମାନ ଦେଖି ତାହା ସଂପୂର୍ଣ୍ଣ ଜାଲଥିବା ଜାଣି ପାରିଲେ । ପୋଲିସ ଅଫିସର ବେରିଲ ଓ ଷ୍ଟିଉଆର୍ଟ ଯେଉଁ ରିପୋର୍ଟ ଦେଇଥିଲେ ତାହା ମନଗଢ଼ା ଓ ଅପ୍ରାମାଣିକ ବୋଲି ସେ ପ୍ରକାଶ କରିଥିଲେ । ତେଣୁ ସୁରେନ୍ଦ୍ର ସାଏ ଓ ଅନ୍ୟ ସମସ୍ତ ବନ୍ଦୀଙ୍କୁ ନିର୍ଦ୍ଦୋଷ ବୋଲି ଘୋଷଣା କରି ସେମାନଙ୍କୁ ଖଲାସ୍ କରିଦେବା ନିମନ୍ତେ ରାୟ ଦେଇଥିଲେ ।

ଜୁଡିସିଏଲ୍ କମିଶନରଙ୍କର ରାୟ ପ୍ରକାଶ ପାଇବା ପରେ ସମ୍ବଲପୁରର ଇଂରେଜ ଅଫିସରଙ୍କର ଚକ୍ରାନ୍ତ ପଦାରେ ପଡିଗଲା । ମାତ୍ର ସେ କାଳରେ ବିଚାର ବିଭାଗ ଅପେକ୍ଷା ଶାସନ ବିଭାଗର କ୍ଷମତା ଅଧିକ ଥିଲା ଏବଂ ବ୍ରିଟିଶ୍ ସାମ୍ରାଜ୍ୟର ନିରାପତ୍ତାକୁ ଆଳକରି ଶାସକମାନେ ଯେ କୌଣସି ଅନ୍ୟାୟନୀତି ଅବଲମ୍ବନ କରି ପାରୁଥିଲେ । ମଧ୍ୟପ୍ରଦେଶର ଚିଫ୍ କମିଶନର ୧୮୧୮ ସାଲର ୩ ନମ୍ବର ରେଗୁଲେସନ୍ ଅନୁସାରେ ଆସାମୀମାନଙ୍କ ମଧ୍ୟରୁ ସାତଜଣଙ୍କୁ

ଅଟକବନ୍ଦୀ ରୂପେ ନାଗପୁରରେ ରହିବାପାଇଁ ଆଦେଶ ଦେଇଥିଲେ । ସେହି ସାତଜଣ ହେଉଛନ୍ତି - ସୁରେନ୍ଦ୍ର ସାଏ, ଉଦନ୍ତ ସାଏ, ଧ୍ରୁବ ସାଏ, ମେଦିନୀ ସାଏ, ଲୋକନାଥ ପଣ୍ଡା, ମିତ୍ରଭାନୁ ସାଏ ଏବଂ ଖଗେଶ୍ୱର ଦେଓ । ପରେ ୧୮୬୬ ସାଲ ଏପ୍ରିଲ ମାସରେ ସେମାନଙ୍କୁ ଆସିର୍ ଗଡ଼ ଦୁର୍ଗରେ ଆବଦ୍ଧ କରି ରଖା ଯାଇଥିଲା । ସେଠାରେ ୧୮୭୬ ସାଲରେ ମେଦିନୀ ସାଏଙ୍କର ମୃତ୍ୟୁ ହୋଇଥିଲା । ୧୮୭୭ ଜାନୁୟାରୀ ପହିଲା ତାରିଖରେ ଧ୍ରୁବ ସାଏ ଓ ମିତ୍ରଭାନୁ ସାଏଙ୍କୁ ମୁକ୍ତି ପ୍ରଦାନ କରା ଯାଇଥିଲା । ଉଦନ୍ତ ସାଏ, ଲୋକନାଥ ପଣ୍ଡା ଓ ଖଗେଶ୍ୱର ଦେଓଙ୍କ ସମ୍ବନ୍ଧରେ ଏପର୍ଯ୍ୟନ୍ତ କିଛି ଜଣା ପଡିନାହିଁ । ୧୮୮୪ ସାଲ ଫେବୃୟାରୀ ୨୮ ତାରିଖରେ ରାତି ୧ଟା ବେଳ (ରାତି ୧୨ଟାରେ ୨୭ ତାରିଖ ଶେଷ ହୋଇଥିଲା) ବୀର ସୁରେନ୍ଦ୍ର ସାଏ ସେହି ଆସିର୍‌ଗଡ଼ ଦୁର୍ଗରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ବୀର ସୁରେନ୍ଦ୍ର ସାଏ ଭାରତର ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରିଅଛନ୍ତି । ତାଙ୍କର ସ୍ମୃତି ଆମର ସ୍ମୃତି ଯେ ଏ ଜାତିକୁ ଚିରକାଳ ଉଦ୍‌ବୁଦ୍ଧ କରିବ ସେଥିରେ ସନ୍ଦେହ ନାହିଁ ।



# ସମ୍ବଲପୁରୀ ବ୍ୟଞ୍ଜନରେ ସଂଧ୍ୱନି

ମାଧବ ସାହୁ

ଧ୍ୱନ୍ୟାତ୍ମକ (Phonetic) ଦୃଷ୍ଟିରୁ ଅଳ୍ପ ଭିନ୍ନ ଦୁଇଟି ଧ୍ୱନି ସମପରିବେଶରେ ଭିନ୍ନ ଅର୍ଥଦ୍ୟୋତନ କଲେ ଦୁହେଁ ସେହି ଭାଷାରେ ସ୍ୱତନ୍ତ୍ର ଧ୍ୱନିଗ୍ରାମ ହୋଇଥାନ୍ତି । ବର୍ନାଡ ବ୍ଲକଙ୍କ ମତରେ ଧ୍ୱନିଗ୍ରାମ ଧ୍ୱନିମାନଙ୍କର ସମୂହ ଯାହା ଭାଷା ବିଶେଷରେ ସେହି ପ୍ରକାରର ଅନ୍ୟ ସମୂହଠାରୁ ବ୍ୟତିରେକୀ (Contrastive) ହୋଇଥାଏ । ଏଥିରୁ ଜଣାଯାଏଯେ ଧ୍ୱନିଗ୍ରାମ ସମାନ ଭାବରେ ଉଚ୍ଚାରିତ ଧ୍ୱନିମାନଙ୍କର ସମୂହ ଓ ତାର ସ୍ୱତନ୍ତ୍ର ସତ୍ତା ମଧ୍ୟ ଅଛି । ଏହିପରି ପ୍ରତ୍ୟେକ ଧ୍ୱନି କ୍ରମରେ ପରସ୍ପରଠାରୁ ସୂକ୍ଷ୍ମ ଉଚ୍ଚାରଣଗତ ପାର୍ଥକ୍ୟ ରହିଛି । ମୂଳ ଭାଷାଭାଷୀ ଏହି ସୂକ୍ଷ୍ମ ଉଚ୍ଚାରଣ ଗତ ପାର୍ଥକ୍ୟ ପ୍ରତି ଧ୍ୟାନ ଦିଏନାହିଁ, କିନ୍ତୁ ଦ୍ୱିତୀୟ ଭାଷାରୂପେ ଶିଖୁଥିବା ବ୍ୟକ୍ତି ଏହିପରି ଶ୍ରେଣୀଭୁକ୍ତ ଭିନ୍ନ ଭିନ୍ନ ଧ୍ୱନିକୁ ସେହି ଧ୍ୱନିଗ୍ରାମର ସଂଧ୍ୱନି (Allophones) କୁହାଯାଏ । ଏହି ସଂଧ୍ୱନି ଗୁଡ଼ିକ ଶବ୍ଦମାନଙ୍କର ଭିନ୍ନ ଭିନ୍ନ ସ୍ଥିତିରେ ଆସନ୍ତି । ଏଣୁ ଏହାକୁ ପରିପୂରକ ବଣ୍ଟନ (Complementary Distribution) କୁହାଯାଏ । ଏକ ସଂଧ୍ୱନି ସ୍ଥାନରେ ଅନ୍ୟ ଏକ ସଂଧ୍ୱନି ବ୍ୟବହାର କଲେ ଶବ୍ଦର ଅର୍ଥରେ କୌଣସି ପରିବର୍ତ୍ତନ ହେବନାହିଁ ସତ୍ୟ, କିନ୍ତୁ କାନକୁ ଅଡୁଆ ଶୁଣାଯିବ । ସମ୍ବଲପୁରୀ ଭାଷାର ବ୍ୟଞ୍ଜନମାନଙ୍କର ମଧ୍ୟ ସଂଧ୍ୱନି ସମୂହ ରହିଛି । ନିମ୍ନରେ ସଂଧ୍ୱନି ଗୁଡ଼ିକର ଏକ ସଂକ୍ଷିପ୍ତ ଆଲୋଚନା କରାଗଲା ।

ସମ୍ବଲପୁରୀ ସ୍ପର୍ଶ ବ୍ୟଞ୍ଜନମାନଙ୍କ ମଧ୍ୟରେ ଟ/ର/ଏକାଧିକ ସଂଧ୍ୱନି ରହିଅଛି । ଅଘୋଷ ପ୍ରତିବର୍ତ୍ତିତ (Retroflex) ସ୍ପର୍ଶଧ୍ୱନି ଏହି ବ୍ୟଞ୍ଜନର ଏକ ସଂଧ୍ୱନି ଅଟେ ଓ ସାଧାରଣ ଭାବରେ ବ୍ୟବହୃତ ହୋଇଥାଏ । କିନ୍ତୁ କେତେକ ବିଶେଷ ପରିବେଶରେ ଏହା ଅପ୍ରତିବର୍ତ୍ତିତ (Non-retroflex) ହୋଇପଡେ । ଉଦାହଣ ସ୍ୱରୂପ/ସ/ଧ୍ୱନିପରେ ବ୍ୟବହୃତ/ଟ/ବର୍ତ୍ସ୍ୟ ଭାବରେ ଉଚ୍ଚାରିତ ହୁଏ ଯଥା - 'କଷ୍ଟ', 'ନଷ୍ଟ' ଇତ୍ୟାଦି । ଏହି କ୍ଷେତ୍ରରେ/ଟ/ପୂର୍ବରୁ/ସ/ପ୍ରତିବର୍ତ୍ତିତ ଭାବରେ ଉଚ୍ଚାରିତ ହୋଇଥାଏ ।

ଅଳ୍ପପ୍ରାଣ ଘୋଷ ପ୍ରତିବର୍ତ୍ତିତ /ଡ/ମଧ୍ୟ/ସ /ପୂର୍ବରୁ ଅପ୍ରତିବର୍ତ୍ତିତ ହୋଇପଡେ ।

ଉଦାହରଣ ସ୍ୱରୂପ 'ଗାତସି'। କେତେକ ଭାଷାଭାଷୀ/ତ/ ପରେ ଉଚ୍ଚାରିତ/ସ /କୁ /ତ ପରିବର୍ତ୍ତେ ପ୍ରତିବର୍ତ୍ତିତ ଭାବରେ ଉଚ୍ଚାରଣ କରିଥାନ୍ତି। ମଧ ଓ ପ୍ରାନ୍ତ କ୍ଷେତ୍ରରେ ତ/ ଅପ୍ରତିବର୍ତ୍ତିତ ଭାବରେ ଉଚ୍ଚାରିତ ହୋଇଥାଏ। ତେଣୁ ପ୍ରତିବର୍ତ୍ତିତ ଏବଂ ଅପ୍ରତିବର୍ତ୍ତି/ତ/କୁ ଏହି ବ୍ୟଞ୍ଜନର ସଂଧ୍ୱନି ଭାବରେ ବିଚାର କରାଯାଇ ପାରେ।

ଅଳ୍ପପ୍ରାଣ ଦନ୍ତ୍ୟ/ତ/ କେତେକ ପରିବେଶରେ ବର୍ତ୍ସ୍ୟ ଭାବରେ ମଧ ଉଚ୍ଚାରଣ କରାଯାଇଥାଏ। ବିଶେଷ କରି ବର୍ତ୍ସ୍ୟ ଓ ବର୍ତ୍ସ୍ୟ-ତାଲବ୍ୟ ବ୍ୟଞ୍ଜନ ଗୁଡ଼ିକ ପରେ ଏହା ବର୍ତ୍ସ୍ୟ ଭାବରେ ଉଚ୍ଚାରିତ ହୋଇଥାଏ। ଉଦାହରଣ ସ୍ୱରୂପ 'ସର୍ତ' ଶବ୍ଦରେ ଥିବା/ତ/। ଏଣୁ କୁହାଯାଇ ପାରେ ଯେ ଦନ୍ତ୍ୟ (ତ) ଓ ବର୍ତ୍ସ୍ୟ (ତ) ଏକ ବ୍ୟଞ୍ଜନର ସଂଧ୍ୱନି ଅଟନ୍ତି।

ସମ୍ବଲପୁରୀ ଭାଷାରେ ନାସିକା ବ୍ୟଞ୍ଜନ ଗୁଡ଼ିକ କ୍ଷେତ୍ର ବିଶେଷରେ ବିଭିନ୍ନ ଭାବରେ ଉଚ୍ଚାରିତ ହୁଅନ୍ତି। ଏହି ଉଚ୍ଚାରଣ ଗତ ବିଭିନ୍ନତା ନାସିକା ବ୍ୟଞ୍ଜନ ପରେ ଥିବା ଅନ୍ୟ ବ୍ୟଞ୍ଜନ ଉପରେ ନିର୍ଭର କରିଥାଏ। ଉଦାହରଣ ସ୍ୱରୂପ ଓଷ୍ଠ୍ୟ ନାସିକ୍ୟ ବ୍ୟଞ୍ଜନ/ମ/ ସଂଘର୍ଷ ବିହୀନ ସପ୍ରବାହ ଓଷ୍ଠ୍ୟ/ୱ/ ପୂର୍ବରୁ ଓଷ୍ଠ୍ୟତ୍ୱ ହରାଇ ଦନ୍ତ୍ୟ ଭାବରେ ଉଚ୍ଚାରିତ ହୁଏ। ଯଥା 'ସମ୍ୱା'

ସେହିପରି ବର୍ତ୍ସ୍ୟ ନାସିକ୍ୟ ବ୍ୟଞ୍ଜନ/ନ/କେତେକ କ୍ଷେତ୍ରରେ ବିଶେଷ କରି/ବ/ଛ/ଜ/ ଝ/ ପୂର୍ବରୁ ବର୍ତ୍ସ୍ୟ ତାଲବ୍ୟ ନାସିକ୍ୟ ଭାବରେ ଉଚ୍ଚାରିତ ହୁଏ। ଯଥା - 'ବଞ୍ଚା', 'ସଞ୍ଜେ'।

କେତେକ ଭାଷାଭାଷୀଙ୍କ କ୍ଷେତ୍ରରେ /ଛ/ଓ/ଝ/ ପୂର୍ବରୁ ନ/ଥିଲେ ଉଭୟଙ୍କ ଉଚ୍ଚାରଣ ମଧରେ ଏକ /+/ଯୋଗ ହୋଇଥାଏ। ଯଥା - 'ବନ୍+ଝା'

ଏହିପରି କ୍ଷେତ୍ରରେ /ନ/ଧ୍ୱନିଟର ଉଚ୍ଚାରଣ ସାମାନ୍ୟ ଦୀର୍ଘ ହୋଇଥାଏ।

ଦନ୍ତ୍ୟ ସ୍ପର୍ଶ ବ୍ୟଞ୍ଜନ ମାନଙ୍କ ପୂର୍ବରୁ ଉଚ୍ଚାରିତ ଦନ୍ତ୍ୟ ନାସିକ ବ୍ୟଞ୍ଜନ (ନ)କୁ ନାସିକା ବ୍ୟଞ୍ଜନ/ନ/ର ଅନ୍ୟ ଏକ ସଂଧ୍ୱନି ବୋଲି ବିଚାର କରାଯାଇ ପାରେ।

ଯଥା - 'ଜାନ୍ତା' ଓ 'ଆନ୍ଧା'।

ସଘୋଷ ବର୍ତ୍ସ୍ୟପର ନାଥର୍କ୍ୟ ବ୍ୟଞ୍ଜନ/ଣ/ସଘୋଷ ଲୁଣ୍ଠିତ ବର୍ତ୍ସ୍ୟ/ର୍/ପୂର୍ବରେ ଥିଲେ ନାସିକ୍ୟ ବର୍ତ୍ସ୍ୟ (ର୍) ଭାବରେ ଉଚ୍ଚାରଣ ହୁଏ। ଯଥା - 'ପଁର୍ରା' ଓ 'ଗଁର୍ରା' ଇତ୍ୟାଦି।

/ର୍/ ଏକ ଲୁଣ୍ଠିତ ବର୍ତ୍ସ୍ୟ ବ୍ୟଞ୍ଜନ ଅଟେ, କିନ୍ତୁ ପ୍ରତିବର୍ତ୍ତିତ ସ୍ପର୍ଶ ବ୍ୟଞ୍ଜନ ପୂର୍ବରେ ଥିଲେ ଏହା ବର୍ତ୍ସ୍ୟପର ପ୍ରତିବର୍ତ୍ତିତ ଭାବରେ ଉଚ୍ଚାରିତ ହୁଏ। ଯଥା - କର୍ତି।

ସଘୋଷ ବର୍ତ୍ସ୍ୟ ପାର୍ଶ୍ୱିକ ବ୍ୟଞ୍ଜନ/ଲ/ ଦନ୍ତ୍ୟ ସ୍ପର୍ଶ ବ୍ୟଞ୍ଜନ ପୂର୍ବରେ ଥିଲେ ଦନ୍ତ୍ୟ ଭାବରେ ଉଚ୍ଚାରିତ ହୁଏ। ଯଥା - 'ଫାଲ୍ତୁ' ଓ 'ଜଲ୍ଦି' ଇତ୍ୟାଦି।

ପ୍ରତିବର୍ତ୍ତିତ ସ୍ପର୍ଶ ବ୍ୟଞ୍ଜନ ପୂର୍ବରେ ବା ପରେ ଯଦି /ଲ୍/ଥାଏ, ତେବେ ତାହା ମଧ ଏକ

ଦୁର୍ବଳ ପ୍ରତିବର୍ତ୍ତିତ ଭାବରେ ଉଚ୍ଚାରିତ ହୁଏ । ଯଥା - 'ପଟ୍‌ଲ' ଓ 'ଉଲ୍‌ଟା' ଇତ୍ୟାଦି ।

ଅଘୋଷ ବର୍ତ୍ସ୍ୟ ସଂଘର୍ଷୀ/ସ୍/ କେତେକ କ୍ଷେତ୍ରରେ ଆଦ୍ୟସ୍ୱରାଗତ/ଇ/ ସହିତ ଉଚ୍ଚାରିତ ହୋଇଥାଏ । ଯଥା - 'ଇସ୍‌କୁଲ୍' ।

କାକଲ୍ୟ ମହାପ୍ରାଣ/ହ୍/ ସଘୋଷ ଓ ଅଘୋଷ ଭାବରେ ଉଚ୍ଚାରିତ ହୋଇଥାଏ । ପ୍ରାନ୍ତ ପରିବେଶରେ ଓ ସ୍ୱରଧ୍ୱନି ପରେଥିବା/ହ/ସଘୋଷ ହୋଇଥାଏ । ଯଥା - 'କହ୍' ।

ସମ୍ବଲପୁରୀ ଭାଷାର ଅନ୍ୟ ଏକ ବିଶେଷତ୍ୱ ହେଉଛି ଯେ କେତେକ କ୍ଷେତ୍ରରେ ସଘୋଷ ବ୍ୟଞ୍ଜନ ଅଘୋଷରେ ପରିଣତ ହୋଇଥାଏ । ଉଦାହରଣ ସ୍ୱରୂପ ଓଷ୍ଠ୍ୟ ସ୍ପର୍ଶ ବ୍ୟଞ୍ଜନ/ବ୍/ ଯଦି ଅଘୋଷ ସ୍ପର୍ଶ ବ୍ୟଞ୍ଜନ ପୂର୍ବରେ ଥାଏ ତେବେ ତାହା ଅଘୋଷ ଭାବରେ ଉଚ୍ଚାରିତ ହୁଏ । ଉଦାହରଣ ସ୍ୱରୂପ 'ଦେବ୍‌କି' 'ଦେପ୍‌କି' ଭାବରେ ଉଚ୍ଚାରିତ ହୋଇଥାଏ ।

ବ୍ୟଞ୍ଜନ ଧ୍ୱନିର ପ୍ରବାହ (Released) ଏବଂ ନିଃପ୍ରବାହ (Unreleased) ପ୍ରକ୍ରୀୟା ସମ୍ବଲପୁରୀ ଭାଷାର ଏକ ବିଶେଷ ଲକ୍ଷଣ ଅଟେ । ପ୍,ତ୍,ଟ,କ୍,ବ୍,ଦ୍,ଡ୍,ଗ୍ । ଆଦି ବ୍ୟଞ୍ଜନ ଗୁଡ଼ିକ ଶବ୍ଦର ପ୍ରାନ୍ତ ପରିବେଶରେ ପ୍ରବାହ ବିନା ଉଚ୍ଚାରିତ ହୋଇଥାନ୍ତି । କିନ୍ତୁ ଧ୍ୱନିର ଉଚ୍ଚାରଣ ପରେ ଏ ଗୁଡିକ realeased ହୋଇଥାନ୍ତି । ଅପର ପକ୍ଷରେ/ମ୍,ନ୍,ସ୍,ଜ୍,ଲ୍/ ଆଦି ବ୍ୟଞ୍ଜନ ଗୁଡ଼ିକ ପ୍ରାନ୍ତ ପରିବେଶରେ unreleased ହୋଇଥାନ୍ତି । ଏହି କ୍ଷେତ୍ରରେ ଭାଷଣାବୟବ ଗୁଡ଼ିକ ସ୍ଥାନ ପରିବର୍ତ୍ତନ ନକରି ଠିକ୍ ସେହି ସ୍ଥାନରେ ରହି ଯାଆନ୍ତି ।

ଉପରୋକ୍ତ Post-vocalic ବ୍ୟଞ୍ଜନ ଗୁଡ଼ିକର ଅପ୍ରବାହିତ ବା unreleased ରୂପର ଉଦାହରଣ ନିମ୍ନରେ ଦିଆଗଲା ।

ଯଥା :- "ବାପ୍" ଶବ୍ଦରେ ଥିବା (ପ୍);
"ହକ୍" ଶବ୍ଦରେ ଥିବା (କ୍);
"ପ୍ରାଗ୍" ଶବ୍ଦରେ ଥିବା (ଗ୍);
"ଆମ୍" ଶବ୍ଦରେ ଥିବା (ମ୍);
"ସାସ୍" ଶବ୍ଦରେ ଥିବା (ସ୍); ଏବଂ
"ଟାଲ୍" ଶବ୍ଦରେ ଥିବା (ଲ୍) ଇତ୍ୟାଦି ।

Post-vocalic ଅଘୋଷ ଅଳ୍ପପ୍ରାଣ ସ୍ପର୍ଶ ବ୍ୟଞ୍ଜନ ଗୁଡ଼ିକ ନିମ୍ନଲିଖିତ ପରିସ୍ଥିତିରେ unreleased ହୋଇଥାନ୍ତି । ଯଥା :-

୧. ଶବ୍ଦର ପ୍ରାନ୍ତବିନା ଅନ୍ୟ ପରିବେଶରେ ଥିବା ଅଘୋଷ ଅଳ୍ପପ୍ରାଣ ବ୍ୟଞ୍ଜନ ପୂର୍ବରେ

ଥିଲେ । ଉଦାହରଣ ସ୍ୱରୂପ - "ଉପ୍କା" ଶବ୍ଦରେ ଥିବା /ପ୍/ ଏବଂ "ଉଡ୍‌ଡୁକା" ଶବ୍ଦରେ ଥିବା /ଡ୍/ ।

୨. ପ୍ରାନ୍ତ ବିନା ଅନ୍ୟ ପରିବେଶରେ ଥିବା ଅଘୋଷ ଅଳ୍ପପ୍ରାଣ /ଚ୍/ ପୂର୍ବରୁ ଥିଲେ । ଉଦାହରଣ ସ୍ୱରୂପ, "ଉକ୍ଚା" ଶବ୍ଦରେ ଥିବା /କ୍/ ;ଏବଂ "ଖପ୍ଚା" ଶବ୍ଦରେ ଥିବା /ପ୍/ ଇତ୍ୟାଦି ।

୩. ପ୍ରାନ୍ତବିନା ଅନ୍ୟ ପରିବେଶରେ ଥିବା ନାସିକ୍ୟ ବ୍ୟଞ୍ଜନ ପୂର୍ବରୁ ଥିଲେ । ଉଦାହରଣ ସ୍ୱରୂପ - "ଆତମା" ଶବ୍ଦରେ ଥିବା /ତ୍/ ; ଏବଂ "ଚିକ୍ନା" ଶବ୍ଦରେ ଥିବା /କ୍/ ଇତ୍ୟାଦି ।

୪. ପ୍ରାନ୍ତବିନା ଅନ୍ୟ ପରିବେଶରେ ଥିବା ପାର୍ଶ୍ୱିକ ବ୍ୟଞ୍ଜନ/ଲ୍/ର ପୂର୍ବରୁ Post-vocalic ଅଘୋଷ ଅଳ୍ପପ୍ରାଣ ସ୍ପର୍ଶ ଗୁଡ଼ିକ ଉଭୟ unreleased ଓ released ଭାବରେ ଉଚ୍ଚାରିତ ହୋଇ ପାରନ୍ତି । ଉଦାହରଣ ସ୍ୱରୂପ-

"ସଁପ୍ଲା" ଶବ୍ଦରେ /ପ୍/ ; ଏବଂ "ପାତ୍ଲା" ଶବ୍ଦରେ /ତ/ ଇତ୍ୟାଦି ।

Post-vocalic ସଘୋଷ ଅଳ୍ପପ୍ରାଣ ସ୍ପର୍ଶ ବ୍ୟଞ୍ଜନ ଗୁଡ଼ିକ ନିମ୍ନଲିଖିତ ପରିସ୍ଥିତିରେ unreleased ଭାବରେ ଉଚ୍ଚାରିତ ହୁଅନ୍ତି ଯଥା :-

୧. ପ୍ରାନ୍ତବିନା ଅନ୍ୟ ପରିବେଶରେ ଥିବା ସଘୋଷ ଅଳ୍ପପ୍ରାଣ ସ୍ପର୍ଶ ବ୍ୟଞ୍ଜନ ପୂର୍ବରୁ । ଉଦାହରଣ ସ୍ୱରୂପ,

"ଦବ୍କା" ଶବ୍ଦରେ /ବ୍/ ; ଓ "ହତ୍ତା" ଶବ୍ଦରେ /ତ୍/ ଇତ୍ୟାଦି ।

୨. ପ୍ରାନ୍ତବିନା ଅନ୍ୟ ପରିବେଶରେ ଥିବା ସଘୋଷ ଅଳ୍ପପ୍ରାଣ ତାଲବ୍ୟ ବ୍ୟଞ୍ଜନ/ଜ/ ପୂର୍ବରୁ । ଉଦାହରଣ ସ୍ୱରୂପ - "ଉଦ୍‌ଜାନ" ଶବ୍ଦରେ /ଦ୍/ ; ଏବଂ "ଉବ୍‌ଜା" ଶବ୍ଦରେ/ବ୍ ଇତ୍ୟାଦି ।

୩. ପ୍ରାନ୍ତବିନା ଅନ୍ୟ ପରିବେଶରେ ଥିବା ନାସିକ୍ୟ ବ୍ୟଞ୍ଜନ ପୂର୍ବରୁ । ଉଦାହରଣ ସ୍ୱରୂପ,

"ଲଦ୍‌ମି" ଶବ୍ଦରେ /ଦ୍/ ; ଏବଂ "ଚାବ୍‌ମି" ଶବ୍ଦରେ /ବ୍/

କେତେକ ଭାଷାଭାଷୀଙ୍କ କ୍ଷେତ୍ରରେ ବିଶେଷକରି ନାସିକ୍ୟ ବ୍ୟଞ୍ଜନ/ନ୍/ ପୂର୍ବରୁ ଓ ଅନୁନାସିକ ସ୍ୱରଧ୍ୱନି ପରେ ଏହା c) ଭାବରେ ଉଚ୍ଚାରିତ ହୋଇଥାଏ । ଉଦାହରଣ ସ୍ୱରୂପ,

"ଚାଁଦ୍‌ନି" ଶବ୍ଦରେ/ଦ୍/ ;

୪. ପ୍ରାନ୍ତବିନା ଅନ୍ୟ ପରିବେଶରେ ପାର୍ଶ୍ୱିକ ବ୍ୟଞ୍ଜନ/ଲ/ ପୂର୍ବରୁ ସଘୋଷ ଅଳ୍ପପ୍ରାଣ ସ୍ପର୍ଶ ବ୍ୟଞ୍ଜନ ଉଭୟ ଓ ଭାବରେ ଉଚ୍ଚାରିତ ହୋଇଥାଏ ଉଦାହରଣ ସ୍ୱରୂପ,

"ଦୁବ୍ଲା" ଶବ୍ଦରେ /ବ୍/ ; ଏବଂ "ଭାଗ୍ଲା" ଶବ୍ଦରେ /ଗ୍/ ଇତ୍ୟାଦି ।